# ଅର୍ଥର ଅର୍ଥ

ମୂଳ ରଚନା - ସି. କେ. ଅଗଡେନ୍
ଆଇ. ଏ. ରିଚାର୍ଡସ୍

ଅନୁବାଦ - ନିତ୍ୟାନନ୍ଦ ଦର୍ଜୀ

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ଅର୍ଥର ଅର୍ଥ

ମୂଳ ରଚନା :

ସି. କେ. ଅଗଡେନ,

ଆଇ. ଏ. ରିଚାର୍ଡସ୍

ଅନୁବାଦ :

ଶ୍ରୀ ନିତ୍ୟାନନ୍ଦ ଦର୍ଜୀ,

ଅଧ୍ୟାପକ, ଦର୍ଶନ ବିଭାଗ

ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

୧୯୮୦



ପ୍ରକାଶକ :

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

ଭୁବନେଶ୍ୱର

# MEANING OF MEANING

( FOR DEGREE LEVEL STUDENTS )

Published under the Centrally sponsored scheme of production of books and literature in the Regional Languages at the University level by the Government of India in the Ministry of Education and Social Welfare ( Department of Education ), New Delhi.

Written by

**C. K. Agden & I. A. Richards.**

Translated by : **Sri Nityananda Durzie,**
Department of Philosophy,
Christ College, Cuttack.

Reviewed by : **Dr. Ganeswar Misra,**
Retired Professor of Philosophy,
Sahidnagar, Bhubaneswar.

Language Scrutinised by : **Smt Haripriya Mohapatra**
M. A. (oriya), M. A (Sans) Language expert
Text Book Bureau

Published by : The Orissa State Bureau of Text Book Preparation and Production, Bhubaneswar.
First Edition : 1980/1000



Publication No.—306

Paper used for printing of this book was made available by the Government of Orissa at concessional rate.

Printed at : Kalyan Press, Cuttack.

**Price** : Rs. 15.50

# ପ୍ରସ୍ତାବନା

ମାତୃଭାଷା ମାଧ୍ୟମରେ ଶିକ୍ଷାଦାନଦ୍ୱାରା ଛାତ୍ରଛାତ୍ରୀମାନେ ପାଠ୍ୟ ବିଷୟ ସହଜରେ ଆୟତ୍ତ କରିଥା'ନ୍ତି । ଏହାଦ୍ୱାରା ସେମାନଙ୍କ ମାନସିକ ଶକ୍ତିର ବିକାଶ ସହଜ ହୋଇଥାଏ । ଏହି ଲକ୍ଷ୍ୟ ସାଧନ ପାଇଁ ଭାରତ ସରକାରଙ୍କ ନିର୍ଦ୍ଦେଶ ତଥା ସହାୟତା କ୍ରମେ 'ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା' ଗଠିତ । ଓଡ଼ିଆ ଭାଷାରେ ବିଶ୍ୱବିଦ୍ୟାଳୟ ଉପଯୋଗୀ ପାଠ୍ୟପୁସ୍ତକ ପ୍ରସ୍ତୁତ କରିବା ଉକ୍ତ ସଂସ୍ଥାର ଦାୟିତ୍ୱ । ଅଦ୍ୟାବଧି ବହୁ ପାଠ୍ୟପୁସ୍ତକ ଓ ପାଠ୍ୟସହାୟକ ପୁସ୍ତକ ଏହି ସଂସ୍ଥାପକ୍ଷରୁ ପ୍ରକାଶିତ ହୋଇଛି । ପ୍ରସ୍ତୁତ 'ଅର୍ଥର ଅର୍ଥ' ପୁସ୍ତକଟି ପ୍ରସିଦ୍ଧ ପାଶ୍ଚାତ୍ୟ ଲେଖକ ସି କେ ଅଗଡେନ୍ ଓ ଆଇ. ଏ. ରିଚ୍ଚାର୍ଡସଙ୍କ ଦ୍ୱାରା ଇଂରାଜୀରେ ଲିଖିତ 'Meaning of Meaning' ପୁସ୍ତକର ଏକ ସାର୍ଥକ ଅନୁବାଦ । କଟକ ଖ୍ରୀଷ୍ଟ କଲେଜର ଦର୍ଶନ ବିଭାଗର ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ଦାସ ଏହାର ଓଡ଼ିଆ ଅନୁବାଦ କରିଛନ୍ତି, ବାଣୀବିହାର ଦର୍ଶନ ବିଭାଗର ପୂର୍ବତନ ମୁଖ୍ୟ ଅଧ୍ୟାପକ ଡକ୍ଟର ଗଣେଶ୍ୱର ମିଶ୍ର ଏହାର ସମୀକ୍ଷା କରିଛନ୍ତି ଏବଂ ପାଠ୍ୟପୁସ୍ତକ ସଂସ୍ଥାର ଭାଷାବିଶେଷଜ୍ଞ ଶ୍ରୀମତୀ ହରପ୍ରିୟା ମହାପାତ୍ର ଏହାର ଭାଷା ସଂଶୋଧନ କରିଛନ୍ତି । ଆମେ ସଂସ୍ଥାପକ୍ଷରୁ ଏମାନଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛୁଁ ।

ଆମର ଆଶା, 'ଅର୍ଥର ଅର୍ଥ' ପୁସ୍ତକଟି ଛାତ୍ରଛାତ୍ରୀ, ଅଧ୍ୟାପକ ତଥା ଜିଜ୍ଞାସୁ ବ୍ୟକ୍ତିମାନଙ୍କ ଦ୍ୱାରା ଆଦୃତ ହେବ ।

ଭୁବନେଶ୍ୱର

ତା ୨୫ । ୫ । ୮୦

**ସଂକର୍ଷଣ ମହାପାତ୍ର**

ନିର୍ଦ୍ଦେଶକ

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ
ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ଅନୁବାଦକଙ୍କ ବକ୍ତବ୍ୟ :

ବିଶ୍ୱବିଖ୍ୟାତ ପାଶ୍ଚାତ୍ୟ ଲେଖକ ସି. କେ ଅଗଡେନ୍ ଓ ଆଇ. ଏ. ରିଚାର୍ଡ୍ସଙ୍କ ପ୍ରଣୀତ ସୁବିଦିତ ଗ୍ରନ୍ଥ 'ମିନିଂ ଅଫ୍ ମିନିଂ'ର ଓଡ଼ିଆ ଅନୁବାଦ ଯେ ପ୍ରକାଶିତ ହେବାକୁ ଯାଉଅଛି, ଏହା ମୋ ପକ୍ଷରେ ବିଶେଷ ଭାବେ ଆନନ୍ଦଦାୟକ । ଏହି ଗ୍ରନ୍ଥର ଅନୁବାଦ କରିବାକୁ ଯାଇ, ମୋତେ କଠୋର ଶ୍ରମ ଓ କଷ୍ଟ ସ୍ୱୀକାର କରିବାକୁ ହୋଇଅଛି । କାରଣ ଏକେତ ଗୋଟିଏ ପାଶ୍ଚାତ୍ୟ ଭାଷାର ପୁସ୍ତକକୁ ଭାରତୀୟ ଭାଷାରେ ଅନୁବାଦ କରିବା ଏକ ଜଟିଳ ବ୍ୟାପାର । ଅଧିକନ୍ତୁ 'ମିନିଂ ଅଫ୍ ମିନିଂ' ପରି ଦର୍ଶନ, ନୃତତ୍ତ୍ୱ, ସମାଜତତ୍ତ୍ୱ, ଭାଷାତତ୍ତ୍ୱ ଆଦି ବହୁ ବିଷୟ ସଂବଳିତ ଏକ ଉଚ୍ଚକୋଟୀର ଗ୍ରନ୍ଥର ଅନୁବାଦ ଯେ ଅତ୍ୟନ୍ତ ଦୁରୂହ ବ୍ୟାପାର, ଏହା ନିଶ୍ଚୟ ସ୍ୱୀକୃତ ହେବ । ମୂଳ ପୁସ୍ତକରେ ଲାଟିନ୍, ଗ୍ରୀକ୍, ଫରାସୀ, ଜର୍ମାନ ପ୍ରଭୃତି ଭାଷାର ଉଦ୍ଧୃତମାନ ରହିଅଛି । ସେ ସବୁ ଭାଷାରେ ମୁଁ ଅଭିଜ୍ଞ ନ ହେଲେ ମଧ୍ୟ, ବିଦ୍ୱାନ୍ ମାନଙ୍କର ତଥା ଅଭିଧାନାଦିର ସାହାଯ୍ୟ ନେଇ ସେଗୁଡ଼ିକର ସଫଳ ଓଡ଼ିଆ ଅନୁବାଦ ନିମନ୍ତେ ଯତ୍‌ସମ୍ଭବୋଚିତ ଚେଷ୍ଟା କରିଅଛି । ଏଥିନିମନ୍ତେ ଖ୍ରୀଷ୍ଟ କଲେଜର ସାହିତ୍ୟ ବିଭାଗର ଅଧ୍ୟାପକମାନେ ମଧ୍ୟ ମୋତେ ଅକୁଣ୍ଠ ସାହାଯ୍ୟ ପ୍ରଦାନ କରିଛନ୍ତି । ଏହି ଅବସରରେ ମୁଁ ମୋର ବିଦ୍ୱାନ୍ ବନ୍ଧୁମାନଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛି ।

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଏହି ଉପାଦେୟ ପୁସ୍ତକଟିର ଅନୁବାଦ ଦାୟିତ୍ୱ ମୋତେ ଦେଇଥିବାରୁ ମୁଁ ସଂସ୍ଥାର କର୍ମକର୍ତ୍ତାମାନଙ୍କୁ ଧନ୍ୟବାଦ ଜଣାଉଛି । ଉତ୍କଳ ବିଶ୍ୱବିଦ୍ୟାଳୟ ଦର୍ଶନ ବିଭାଗର ପୂର୍ବତନ ମୁଖ୍ୟ ଅଧ୍ୟାପକ ଡକ୍ଟର ଗଣେଶ୍ୱର ମିଶ୍ର ଏହାର ସମୀକ୍ଷା କରି ମୂଲ୍ୟବାନ ପରାମର୍ଶମାନ ଦେଇଛନ୍ତି । କଟକ ଖ୍ରୀଷ୍ଟ କଲେଜର ଅଧ୍ୟକ୍ଷ ଡକ୍ଟର ଦେବେନ୍ଦ୍ରନାଥ ମହାନ୍ତି ଏହାର ଭାଷା ପରିମାର୍ଜନାରେ ମଧ୍ୟ ମୋତେ ସାହାଯ୍ୟ ପ୍ରଦାନ କରିଛନ୍ତି । ତେଣୁ ଏମାନଙ୍କ ନିକଟରେ ମୁଁ ଋଣୀ ।

ଓଡ଼ିଶାର ବିଦ୍ୱାନ୍ ପାଠକ, ଜିଜ୍ଞାସୁ ତଥା ଗବେଷକମାନେ ଏହି ପୁସ୍ତକଟିର ଅଧ୍ୟୟନ ଦ୍ୱାରା ଯଦି ଯତ୍‌କିଞ୍ଚିତ ଉପକୃତ ହୁଅନ୍ତି, ତେବେ ମୋର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

**ନିତ୍ୟାନନ୍ଦ ଦର୍ଶୀ**

ତା ୨୫ । ୫ । ୮୦

# ପ୍ରଥମ ସଂସ୍କରଣର

## ମୁଖବନ୍ଧ

ପରବର୍ତ୍ତୀ ପୃଷ୍ଠାମାନଙ୍କରେ ରହିଥିବା ନିବନ୍ଧାବଳୀର କେତେକାଂଶ ବହୁ ପୂର୍ବରୁ ଅର୍ଥାତ୍ ୧୯୧୦ ସାଲରେ ଲେଖା ଯାଇଥିଲା । ଏଥିରୁ ଅଧିକାଂଶ ପତ୍ର-ପତ୍ରିକାର ଲେଖା ଆକାରରେ ୧୯୨୦-୨୨ ମଧ୍ୟରେ ପ୍ରକାଶିତ ହୋଇଥିଲା । ଚିନ୍ତା ଉପରେ ଭାଷାର ପ୍ରଭାବରୁ ଉଦ୍ଭୂତ ଅସୁବିଧାମାନଙ୍କୁ ସାକ୍ଷାତ୍‌ରୂପେ ବିଚାର କରିବାର ପ୍ରୟାସରୁ ଏହାର ସୃଷ୍ଟି ହୋଇଛି ।

କେତେକ ପ୍ରାଚୀନ ସମସ୍ୟା ଏପର୍ଯ୍ୟନ୍ତ ଦାର୍ଶନିକ ଓ ତତ୍ତ୍ୱବେତ୍ତାମାନଙ୍କ ବିଚାର କ୍ରମରେ ଉପେକ୍ଷିତ ବୋଲି ବିବେଚନା କରାଯାଉଥିଲା । କିନ୍ତୁ ଏଥିରେ ଦାବୀ କରାଯାଇଛି ଯେ ପ୍ରତୀକ ପଦ୍ଧତିର ବିଜ୍ଞାନରେ (୧) ଅର୍ଥାତ୍ ଚିନ୍ତା ଉପରେ ଭାଷାର ପ୍ରଭାବର ଅଧ୍ୟୟନରେ ଏହି ସମସ୍ୟାଗୁଡ଼ିକର ଏକ ନୂତନ ସମାଧାନ ପନ୍ଥା

---

(୧) 'ପ୍ରତୀକ'ର ବିଭିନ୍ନ ଆଭିଧାନିକ ଅର୍ଥ ହେତୁରୁ ପ୍ରତୀକପଦ୍ଧତି ଶବ୍ଦଟିର କେତେକ ଐତିହାସିକ ସଂପୃକ୍ତ ରହିଛି । ପ୍ରତୀକର ଏହି ବିଭିନ୍ନ ଅର୍ଥ ଏଠାରେ ଉଲ୍ଲେଖଯୋଗ୍ୟ । ଏହି ଶବ୍ଦର ଏକ ଅନ୍ତର୍ନିହିତ ତାତ୍ପର୍ଯ୍ୟ ସର୍ବଦା ରହିଥାଏ । ତାହା ହେଉଛି ସଙ୍କେତ ବା ନିଦର୍ଶନ (token) (ଏକାଠି ରହିଥିବା କୌଣସି ବସ୍ତୁ) । ଏତଦ୍-ଅତିରିକ୍ତ ଦୁଇଟି ଭିନ୍ନ ଭିନ୍ନ ସମୟରେ ଏହି ଶବ୍ଦର ଦୁଇଟି ସ୍ୱତନ୍ତ୍ର ବ୍ୟବହାର ଆଗରୁ ରହିଛି । ଏଥିରୁ ଗୋଟିଏ ହେଉଛି ଯାଜକୀୟ ଦେଶୀୟ ବ୍ୟବହାର । ଏହି ଶବ୍ଦଟି ଯେତେବେଳେ ଧର୍ମନୀତି ପ୍ରତି ପ୍ରଯୁଜ୍ୟ ହେଉଥିଲା । ଏହି ଧର୍ମନୀତି ଜଣେ ଖ୍ରୀଷ୍ଟଧର୍ମାବଲମ୍ବୀର 'ସଙ୍କେତ' ବୋଲି ବିବେଚିତ ହେଉଥିଲା ଏବଂ ତଦ୍ଦ୍ୱାରା ଜଣେ ମ୍ଳେଚ୍ଛଠାରୁ ତାହାର ପାର୍ଥକ୍ୟ ପ୍ରତିପାଦିତ ହେଉଥିଲା । ଅଷ୍ଟମ ହେନେରୀ ଏହି ଅର୍ଥରେ "ଧର୍ମନୀତି ବା ପ୍ରତୀକତତ୍ତ୍ୱ" ବିଷୟରେ କହିଛନ୍ତି । ଏହି ଅର୍ଥର ଏକ ପୌରାଣିକ ଅପଭ୍ରଂଶରେ (୧୪୫୦-୧୫୩୦, Myrr our ladye, ୩୨, ୩୧୨) ଉଲ୍ଲେଖ ରହିଛି, "ଏହି ଧର୍ମନୀତିକୁ ସିମ୍ବୋଲମ୍ (Simbolum) କୁହାଯାଏ, ଅର୍ଥାତ୍ ଏହା ହେଉଛି କେତେକ ଖଣ୍ଡର ସଂଗ୍ରହଣ, କାରଣ ଯିଶୁଖ୍ରୀଷ୍ଟଙ୍କ ଦ୍ୱାରା ପ୍ରେରିତ ୧୨ ଜଣ ଧର୍ମସଂସ୍କାରକଙ୍କ ମଧ୍ୟରୁ ପ୍ରତ୍ୟେକେ ଏଥିରେ ଖଣ୍ଡେ ଲେଖାଏଁ ଯୋଗ କରିଛନ୍ତି ।" Schlesinger ଙ୍କ Geschichte des

ନିହିତ । ଆହୁରି ମଧ୍ୟ, ଏହି ସମସ୍ୟାଗୁଡ଼ିକର ଏପ୍ରକାର ଅନୁସନ୍ଧାନ ବିଶିଷ୍ଟ ବିଜ୍ଞାନ-ମାନଙ୍କରେ ଅନୁସୃତ ପଦ୍ଧତିମାନଙ୍କ ସହିତ ସମଞ୍ଜସ । କେତେକ ଅନିର୍ଦ୍ଦିଷ୍ଟ କଳ୍ପନା ସହିତ ଏହି ନୂତନ ଅଧ୍ୟୟନର ସମ୍ବନ୍ଧ ଅଛି ବୋଲି ମନେ ହୋଇପାରେ, କିନ୍ତୁ ଏପ୍ରକାର କଳ୍ପନାରୁ ଏହି ନୂତନ ଅଧ୍ୟୟନକୁ ପୃଥକ୍ କରାଯିବାରେ ଏହି ବିଜ୍ଞାନ-ମାନଙ୍କ ଅବଦାନ ରହିଛି ।

ବିଶେଷତଃ ବୈୟାକରଣ ମହଲରେ ଏକ ଅସ୍ୱସ୍ତିକର ଭାବ ଦେଖାଦେଇଛି । ସମସ୍ତ ମାନବୀୟ ଭାବ ବିନିମୟ କ୍ଷେତ୍ରରେ ଭାଷାର ଏକ କେନ୍ଦ୍ରିକ ସ୍ଥାନ ରହିଥିଲେ ସୁଦ୍ଧା ପ୍ରାଚୀନ ପଦ୍ଧତିରେ ତାହାର ଅଧ୍ୟୟନ ଏ ଅବଧି ଯେପରିଭାବେ କରାଯାଇଛି, ତଦ୍ଦ୍ୱାରା ମୌଳିକ ସମସ୍ୟାଗୁଡ଼ିକର ସମାଧାନରେ ଯେ ସଫଳତା ମିଳିନାହିଁ, ଏକଥା ଅନୁଭୂତ ହୋଇଛି । ଅବହେଳିତ ହୋଇ ରହିଯାଇଥିବା ବିଷୟାବଳୀ ପ୍ରତି ଧ୍ୟାନ ଦେବାକୁ ଚଳିତ ଶତାବ୍ଦୀର ଆରମ୍ଭରୁ ଏପର୍ଯ୍ୟନ୍ତ ବାରମ୍ବାର ପ୍ରଯନ୍ କରାଯାଇଛି । କିନ୍ତୁ କଷ୍ଟମନ୍ଦସ୍ତୁ ଭାଷାବିତ୍‌ମାନଙ୍କ ଦ୍ୱାରା **ଦି ଫିଲସଫି ଅଫ୍ ଲେଙ୍ଗୁଏଜ** (ଭାଷାର ଦର୍ଶନ), **ପ୍ରିନ୍ସିପଲ୍ସ ଡି ଲିଙ୍ଗୁଇଷ୍ଟିକ୍ ଥିଓରିକ୍** (ଭାଷାସିଦ୍ଧାନ୍ତର ସୂତ୍ରାବଳୀ) ଓ **ଫେରୋଇକେଟ ସୁନକେନ୍ ସୁର ଗ୍ରୁଣ୍ଡ ଲେଙ୍ଗୁ ଆଇନେର କ୍ରିଟିକ୍ ଡେଆର ଆଲକେମାଇନେନ୍ ଗ୍ରାମାଟିକ୍ ଉଣ୍ଡ ସ୍ପ୍ରାଖ୍‌ଫିଲୋଜୋଫି**

---

Symbols (୧୯୨୩) ପୁସ୍ତକରୁ ଏ ବିଷୟର ଅନ୍ୟାନ୍ୟ ପୁଙ୍ଖାନୁପୁଙ୍ଖ ଐତିହାସିକ ବିବରଣୀ ମିଳିପାରିବ ।

ଦ୍ୱିତୀୟତଃ ୧୮୯୦ରୁ ୧୮୯୯ ମଧ୍ୟରେ ପ୍ରତୀକବାଦୀ (Symbolist) ବିଶେଷଣ ପଦଟିର ବ୍ୟାପକଭାବେ ବ୍ୟବହାର କରାଯାଇଛି । ଯେଉଁ ଫରାସୀ କବିମାନେ ସମସ୍ତପ୍ରକାର ଆକ୍ଷରିକ ଓ ବର୍ଣ୍ଣନାତ୍ମକ ରଚନା ବିରୁଦ୍ଧରେ ବିଦ୍ରୋହ କରି ନିର୍ଦ୍ଦିଷ୍ଟ ବସ୍ତୁ, ଶବ୍ଦ ଓ ଧ୍ୱନି ଗୁଡ଼ିକରେ ପ୍ରତୀକାତ୍ମକ ବା ଗୁହ୍ୟ ଅର୍ଥମାନ ଆରୋପ କରୁଥିଲେ, ସେମାନଙ୍କୁ ବିଶେଷିତ କରିବା ନିମନ୍ତେ ଏହି ବିଶେଷଣ ପଦଟିର ବ୍ୟବହାର କରାଯାଉଥିଲା । ସେହିପରି, ଯେଉଁ ଚିତ୍ରକରମାନଙ୍କ ଉଦ୍ଦେଶ୍ୟ 'ଉପସ୍ଥାପନ' ବା 'ଗଠନ' ନହୋଇ ବରଂ ହେଉଛି 'ସୂଚନ', ସେମାନଙ୍କୁ ପ୍ରତୀକବାଦୀରୂପେ କଳା ସମାଲୋଚକମାନେ ଶିଥିଳଭାବେ ବର୍ଣ୍ଣନା କରିଥାନ୍ତି । କିନ୍ତୁ ପରବର୍ତ୍ତୀ ପୃଷ୍ଠାମାନଙ୍କରେ ରହିଥିବା ବିଷୟାବଳୀରେ ଏପରି ଏକ ଦୃଷ୍ଟିକୋଣରେ ସୂଚନା ରହିଛି, ଯହିଁରୁ ଏହି ଉଭୟ ପ୍ରକାର ଅନିର୍ଦ୍ଦିଷ୍ଟ ବ୍ୟବହାରକୁ ସଙ୍କେତ ଓ ପ୍ରତୀକ ପଦ୍ଧତିରେ ଯଥାଯଥ ସ୍ଥାନ ଦିଆଯାଇ ପାରିବ । ପୁଣି ଏଥିରେ ପ୍ରତୀକ ପଦ୍ଧତିର ସେହି ଦିଗଗୁଡ଼ିକ ପ୍ରତି ପ୍ରାଧାନ୍ୟ ଦିଆଯାଇଛି, ଯେଉଁଗୁଡ଼ିକୁ ଉପେକ୍ଷା କରିଥିବା ଦ୍ୱାରା ସୌନ୍ଦର୍ଯ୍ୟ ବିଜ୍ଞାନ ଓ ଦର୍ଶନ ଉଭୟରେ ମିଥ୍ୟା ସମସ୍ୟା ଗୁଡ଼ିକର ଉଦ୍ଭବ ହୋଇଛି ।

(ସାର୍ବିକ ବ୍ୟାକରଣ ଓ ଭାଷାଦର୍ଶନ ସମ୍ବନ୍ଧୀୟ ଏକ ସମୀକ୍ଷାର ଭିତ୍ତିଗତ ପ୍ରାକ୍ ଗ୍ରନ୍ଥାବଳୀ) ପରି ନାମ ଦିଆଯାଇ ଅନେକ ଗ୍ରନ୍ଥ ପ୍ରଣୀତ ହୋଇଥିଲେ ସୁଦ୍ଧା ସାଧାରଣତଃ ଏଗୁଡ଼ିକରେ ଫଳପ୍ରଦ ସୂଚନାର ଅଭାବ ରହିଛି । ଏହି ଗ୍ରନ୍ଥଗୁଡ଼ିକ ମୁଖ୍ୟ ସମସ୍ୟାମାନଙ୍କ ଆବିଷ୍କାର କରିନାହିଁ କି ଗୌଣ ହେଉ ପଛକେ, କୌଣସି ଚିତ୍ତାକର୍ଷକ ଗବେଷଣୀୟ କ୍ଷେତ୍ରର ଭିତ୍ତିସ୍ଥାପନ କରିନାହିଁ । ଅବଶ୍ୟ ବ୍ରେଆଲ୍‌ଙ୍କ **ସେମାଣ୍ଟିକ୍‌ସ** (ସଙ୍କେତାର୍ଥ ମୀମାଂସା) ପରି ଅଳ୍ପ କେତେକ ଗ୍ରନ୍ଥରେ ଏହାର ବ୍ୟତିକ୍ରମ ଘଟିଛି । ଜେସ୍‌ପର୍ସନଙ୍କ ପରି ଜଣେ ଅତି ଅଭିଜ୍ଞ ବିଶେଷଜ୍ଞ ତାଙ୍କ ସର୍ବାଧୁନିକ ଗ୍ରନ୍ଥରେ କହିଛନ୍ତି, "ଆଧୁନିକ ଭାଷାବିଜ୍ଞାନରେ ଦୃଷ୍ଟିକୋଣରେ ବ୍ୟାପକତା ସ୍ପଷ୍ଟରୂପେ ପ୍ରତିଫଳିତ ନୁହେଁ ।" ଦୃଷ୍ଟିକୋଣର ଏହି ସଙ୍କୀର୍ଣ୍ଣତା ପାଇଁ "ଭାଷାର ମୂଲ୍ୟାୟନ ସହିତ ସମ୍ପୃକ୍ତ ସମସ୍ତ ସମସ୍ୟାପ୍ରତି ଭାଷାବିଜ୍ଞାନୀଙ୍କ ଅବହେଳା"କୁ ସେ ଦାୟୀ କରିଛନ୍ତି । ଦୁର୍ଭାଗ୍ୟକୁ ଏକ ଆଦର୍ଶ ଅଧ୍ୟୟନ ନିମନ୍ତେ ସେ ନିଜେ ଯାହା ସୁପାରିଶ କରିଛନ୍ତି, ଅର୍ଥାତ ଯେଉଁ ତିନୋଟି ପ୍ରଶ୍ନର ବିଶ୍ଳେଷଣ କରିବାକୁ ସେ ଭାଷାବିଜ୍ଞାନୀମାନଙ୍କୁ ଆବେଦନ କରିଛନ୍ତି, ତାହା ଅର୍ଥର କେନ୍ଦ୍ରିକ ସମସ୍ୟାକୁ କିମ୍ବା ଚିନ୍ତା ଓ ଭାଷାର ସମ୍ବନ୍ଧମାନଙ୍କୁ ଆଦୌ ସ୍ପର୍ଶ କରୁନାହିଁ କହିଲେ ଚଳେ । ଏହି ପ୍ରଶ୍ନ ତିନୋଟି ହେଉଛି :

ଗୋଟିଏ ଶବ୍ଦ କିମ୍ବା ଗୋଟିଏ ଆକାରକୁ ଅନ୍ୟ ଗୋଟିଏ ଶବ୍ଦ କିମ୍ବା ଆକାରଠାରୁ ଅଧିକ ପସନ୍ଦ କରିବାର ନିର୍ଣ୍ଣାୟକ ନୀତି କଅଣ ?

ଭାଷାମାନଙ୍କରେ ଯେଉଁ ପରିବର୍ତ୍ତନଗୁଡ଼ିକ ସମସ୍ତାନୁକ୍ରମେ ଘଟୁଥିବାର ଆମେ ଲକ୍ଷ୍ୟ କରୁଛୁ, ସାମୂହିକଭାବେ ସେଗୁଡ଼ିକୁ ହିତକର କି ଅହିତକର ବୋଲି ବିବେଚନା କରାଯିବ ?

ଏକ ଆନ୍ତର୍ଜାତିକ ଭାଷାଗଠନ ସମ୍ଭବପର ହେବ କି ?

ଯେଉଁ ପ୍ରାରମ୍ଭିକ ବିଷୟଗୁଡ଼ିକ ଅବହେଳିତ ହୋଇ ରହିଛି, ସେଗୁଡ଼ିକର ପୁଙ୍ଖାନୁପୁଙ୍ଖ ପରୀକ୍ଷା ବିନା ଭାଷାବିଜ୍ଞାନୀଙ୍କ ଦ୍ୱାରା ଏହି ପ୍ରଶ୍ନ ତିନୋଟିର ଫଳପ୍ରଦ ଆଲୋଚନା କରାଯାଇପାରିବା ସମ୍ଭବପର ନୁହେଁ । ଏ ପ୍ରକାର ଗବେଷଣାରେ ଦାର୍ଶନିକ ଓ ମନୋବିଜ୍ଞାନୀମାନେ ବିଦଗ୍ଧ ଅଛନ୍ତି ବୋଲି ପ୍ରାୟଶଃ ମନେ କରାଯାଇଥାଏ । କିନ୍ତୁ ଆମେ ଆମର ନବମ ପରିଚ୍ଛେଦରେ ଦେଖିବା ଯେ ଏ କ୍ଷେତ୍ରରେ ସହାୟକ ହେବା ଯୋଗ୍ୟ ବିଶେଷ କିଛି ସେମାନେ କରି ନଥିବା ଏକ ଦୁଃଖଦାୟକ ବିଷୟ ହୋଇ ଏପର୍ଯ୍ୟନ୍ତ ରହିଛି ।

ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ କୌଣସି ବିଷୟକୁ 'ପାଠ୍ୟବିଷୟ' ବୋଲି କୁହାଯାଉଥିବା ବିଷୟର ଅନ୍ତର୍ଭୁକ୍ତ ବୋଲି ସ୍ୱୀକାର କରି ନପାରିଲେ ତାହାର

ବିଷୟର ଆଲୋଚନା କରିବାରେ ଅସୁବିଧା ଅନୁଭବ କରନ୍ତି । ସେମାନେ ପୁଣି କେବଳ ସେହି ବିଷୟକୁ ହିଁ ପାଠ୍ୟ ବିଷୟ ରୂପେ ସ୍ୱୀକାର କରନ୍ତି, ଯଦି ତାହା ଅନ୍ତତଃ କୌଣସି ଏକ ସ୍ଥାନରେ ଅଧ୍ୟାପକମାନଙ୍କ ଦ୍ୱାରା ଶିକ୍ଷା ଦିଆଯାଉ ଥାଏ ଏବଂ ହୁଏତ ସେ ବିଷୟରେ ପରୀକ୍ଷାମାନ କରାଯାଉଥାଏ । ସେମାନେ ମନେ କରାଇଦେବା ଆବଶ୍ୟକ ଯେ ଏକ ସମୟରେ ଏହିପରି କୌଣସି ପାଠ୍ୟ ବିଷୟ ନଥିଲା ଏବଂ ଏହି ନିକଟ ଅତୀତରେ ପାଞ୍ଚୋଟି ମାତ୍ର ଏପ୍ରକାର ପାଠ୍ୟ ବିଷୟ ରହିଥିଲା । କିନ୍ତୁ ଏକଥା ମଧ୍ୟ ଠିକ୍ ଯେ ଯେଉଁ ଅନୁସନ୍ଧାନ କ୍ଷେତ୍ର ସହିତ ଆମର ପରିଚୟ ସ୍ୱଳ୍ପ, ତହିଁରେ ପ୍ରବେଶ କରିବା କାଳରେ ଆମେ ଏକ ଅସ୍ୱସ୍ତି ଅନୁଭବ କରିଥାଉଁ । ବହୁ ଆଲୋଚିତ ବିଷୟ କ୍ଷେତ୍ରରେ ପ୍ରଧାନ ପ୍ରବେଶ—ପଥଗୁଡ଼ିକ ଉପଯୁକ୍ତ ସ୍ଥାନରେ ଥାଉ ବା ନଥାଉ, ସୁନିର୍ଦ୍ଦିଷ୍ଟ ହୋଇ ରହିଥାଏ ଏବଂ ମନୋଯାତ୍ରୀର ପ୍ରାୟତଃ ହୃଦ୍‌ବୋଧ ହୋଇଥାଏ ଯେ ଦର୍ଶନୀୟ ହୋଇଥାଉ ବା ନଥାଉ, ସେ କୌଣସି ଏକ ପ୍ରସିଦ୍ଧ ସ୍ଥାନରେ ପହଞ୍ଚିବ ଓ ସେଠାରେ ଯଥାରୀତି ସେ ସମ୍ମାନିତ ଓ ସୁପ୍ରତିଷ୍ଠିତ ବ୍ୟକ୍ତିଙ୍କ ସାହଚର୍ଯ୍ୟ ପାଇବ । କିନ୍ତୁ ଏକ ନୂତନ କିମ୍ବା ପ୍ରାନ୍ତୀୟ ବିଷୟ କ୍ଷେତ୍ରରେ ତାହାକୁ ଅଧିକ ପରିମାଣରେ ଆତ୍ମନିର୍ଭରଶୀଳ ହେବାକୁ ପଡ଼ିବ । ଅନୁରକ୍ତି ଓ ପ୍ରାଧାନ୍ୟ ଦୃଷ୍ଟିରୁ କେଉଁ ସ୍ଥାନର ମୂଲ୍ୟ ବେଶୀ ଏବଂ ସେଠାରୁ କି ଫଳ ପାଇବା ଆଶା କରାଯାଇ ପାରେ, ତାହା ନିଜେ ଯାତ୍ରୀକୁ ହିଁ ସ୍ଥିର କରିବାକୁ ପଡ଼ିବ । ଏ କ୍ଷେତ୍ରରେ ସେ ହେଉଛି ଜଣେ ମୂଲ୍ୟବାନ୍ ବସ୍ତୁସନ୍ଧାନୀ ବ୍ୟକ୍ତି ତୁଲ୍ୟ । ଏହି ଗ୍ରନ୍ଥରେ ଯେଉଁ ସାହସିକ ଉଦ୍ୟମର ବିବରଣୀ ଲିପିବଦ୍ଧ ହୋଇଛି, ତାହା ଯଦି କୌଣସି ବ୍ୟକ୍ତିକୁ ପ୍ରତୀକମାନଙ୍କ ଅଧ୍ୟୟନରେ ସାହାଯ୍ୟ କରେ, ତେବେ ଏହି ଉଦ୍ୟମ ସାର୍ଥକ ହୋଇଛି ବୋଲି ଲେଖକଦ୍ୱୟ ମନେ କରିବେ । କିନ୍ତୁ ଉଲ୍ଲେଖ ଅନାବଶ୍ୟକ ଯେ ଏହା ଆହୁରି ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଲି ସେମାନେ ବିଶ୍ୱାସ କରନ୍ତି ।

ଯେଉଁ ସମସ୍ୟାମାନ ଅବହେଳିତ ହୋଇ ରହିଛି, ସେଥିପ୍ରତି ଦୃଷ୍ଟି ଆକର୍ଷଣ କରିବାର ବିନମ୍ର ଉଦ୍ଦେଶ୍ୟ ପୂରଣ ନିମନ୍ତେ ହିଁ ସେମାନେ ଏକ ପରିଶିଷ୍ଟ ସଂଯୋଗ କରିଛନ୍ତି । ତହିଁରେ ଅନ୍ୟାନ୍ୟ ଲେଖକଙ୍କ ଦ୍ୱାରା ଅତୀତରେ କରାଯାଇଥିବା ଅନୁରୂପ ପ୍ରଚେଷ୍ଟାର ମୁଖ୍ୟ ବୈଶିଷ୍ଟ୍ୟ ଗୁଡ଼ିକୁ ସୂଚିତ କରୁଥିବା କେତେକ ସୁନିର୍ବାଚିତ ଅନୁଚ୍ଛେଦ ସ୍ଥାନ ପାଇଛି ।

ପ୍ରତୀକ-ପଦ୍ଧତି-ବିଜ୍ଞାନର ଭିତ୍ତି ସ୍ଥାପନ ଦିଗରେ ଲେଖକଦ୍ୱୟଙ୍କ ନିଜସ୍ୱ ଅବଦାନ ମଧ୍ୟରୁ ନିମ୍ନୋକ୍ତ ବିଷୟଗୁଡ଼ିକ ସର୍ବାଧିକ ମୂଲ୍ୟବାନ୍ ବୋଲି ସେମାନଙ୍କ ମନେ ହୋଇଛି :

(୧) କାରଣିକତା ମାଧ୍ୟମରେ ଅର୍ଥକରଣର ଏକ ବିବରଣୀ । ଏତଦ୍ଦ୍ୱାରା ସଙ୍କେତ-ସଞ୍ଚିତ ରୂପେ ବିଚାର ଆଲୋଚନା କରାଯାଇ ତହିଁରୁ ଫଳ ଲାଭ କରିବା ସମ୍ଭବପର

ହୋଇଛି । ଏହି ଫଳମାନଙ୍କ ମଧ୍ୟରେ ଏକ ବିଭଜନର ସୂତ୍ରପାତ ହୋଇଥିବା ଲକ୍ଷ୍ୟ କରାଯାଇପାରେ । ଯେଉଁ ବିଷୟରେ ବୋଧଗମ୍ୟଭାବେ କଥାବାର୍ତ୍ତା କରାଯାଇପାରେ ଓ ଯେଉଁ ବିଷୟରେ ବୋଧଗମ୍ୟଭାବେ କଥାବାର୍ତ୍ତା କରାଯାଇନପାରେ, ଏହି ଦୁଇଟି ବିଷୟର ପାର୍ଥକ୍ୟ ରକ୍ଷା କରିବା ଏହି ବିଭଜନର ଲକ୍ଷ୍ୟ ।

(୨) ଭାଷାର କାର୍ଯ୍ୟଗୁଡ଼ିକର ପ୍ରଜ୍ଞାପନାତ୍ମକ ଓ ସଂବେଗାତ୍ମକ ରୂପେ ଦୁଇଟି ବର୍ଗରେ ବିଭଜନ । ବିଶ୍ୱାସ କରାଯାଏ ଯେ ବିଜ୍ଞାନମାନଙ୍କରେ କରାଯାଇଥିବା ବହୁ ପ୍ରସିଦ୍ଧ ବାଦାନୁବାଦ ଏହି ଦୁଇଟି ବର୍ଗର ବ୍ୟାମିଶ୍ରଣରୁ ଉଦ୍ଭୂତ ବୋଲି ପ୍ରଦର୍ଶନ କରାଯାଇ-ପାରିବ । ବହୁ କ୍ଷେତ୍ରରେ ଗୋଟିଏ ଗୋଟିଏ ଶବ୍ଦକୁ ଉଭୟ ବିବୃତି ଦେବା ନିମନ୍ତେ ଓ ଅନୁଭୂତିର ଉଦ୍ରେକ ନିମନ୍ତେ ବ୍ୟବହାର କରାଯାଇଥାଏ । ଏତଦ୍ଦ୍ୱାରା ଯେଉଁ କାଳ୍ପନିକ ମତଦ୍ୱୈଧମାନ ଜାତ ହୁଏ, ଭାଷାର କାର୍ଯ୍ୟଗୁଡ଼ିକୁ ନବୁଝି ତହିଁରୁ ନିସ୍ତାର ପାଇବା ସମ୍ଭବପର ନୁହେଁ । ଭାଷାର ବିଭିନ୍ନ କାର୍ଯ୍ୟ ସମ୍ବନ୍ଧରେ ଜ୍ଞାନଲାଭ କଲେ ପ୍ରାଣତତ୍ତ୍ୱବାଦ ଓ ଯାନ୍ତ୍ରିକତାବାଦ ମଧ୍ୟରେ, ଜଡ଼ବାଦ ଓ ଆଧ୍ୟାତ୍ମ୍ୟବାଦ ମଧ୍ୟରେ, ଧର୍ମ ଓ ବିଜ୍ଞାନ ମଧ୍ୟରେ ରହିଥିବା ବାଦାନୁବାଦ ପରି ବହୁ ବାଦାନୁବାଦ ନିରାକୃତ ହୋଇଯିବ । ଆହୁରି ମଧ୍ୟ, ଯେଉଁ ପରିସ୍ଥିତିରେ କବିତାର ଏକ ସାଧାରଣ ପୁନରୁତ୍‌ଥାନ ସମ୍ଭବପର, ସେହି ପରିସ୍ଥିତି ପୁନଃସଂସ୍ଥାପିତ ହୋଇ ପାରିବ ।

(୩) ଉଭୟ ଜ୍ଞାନ ମୀମାଂସା ପରିସରରେ ଏବଂ ସମସ୍ତ ଆଲୋଚନା କ୍ଷେତ୍ରରେ ଜ୍ଞାନୋନ୍ନତ ବିରୋଧର କେନ୍ଦ୍ର ସ୍ୱରୂପ ‘ଅର୍ଥ’ର ବିଶ୍ଳେଷଣ ତଥା ତାତ୍ପର୍ଯ୍ୟ ଉଦ୍‌ଘାଟନ ।

(୪) ଚିନ୍ତା ବିଭ୍ରାଟ ହେତୁ ଯାହାକୁ ‘ବାଚନିକ ପ୍ରଶ୍ନ’ ବୋଲି ଅଭିହିତ କରାଯାଏ, ତାହାର ପରୀକ୍ଷା । ମତ ପାର୍ଥକ୍ୟ ରହିଥିବା କେତେକ ବିଷୟକୁ ପୁରାପୁରି ବା ବହୁଲାଂଶରେ ‘ବାଚନିକ’ ବୋଲି ବର୍ଣ୍ଣିନା କରାଯାଉଥିବା କଥା ଶ୍ରୁତିଗୋଚର ହେବାଠାରୁ ଆଉ ଅଧିକ ସାଧାରଣ ବିଷୟ ଆଲୋଚନା କ୍ଷେତ୍ରରେ କିଛି ନାହିଁ । ସମସ୍ତ ସମୟରେ ବାଦାନୁବାଦର ଅଂଶୀଦାରମାନେ ଭିନ୍ନ ଭିନ୍ନ ବସ୍ତୁର ସୂଚନା ପାଇଁ ସେହି ଏକ ଶବ୍ଦାବଳୀ ବ୍ୟବହାର କରୁଥାନ୍ତି; ସମସ୍ତ ସମୟରେ ସେମାନେ ସେହି ଏକ ବସ୍ତୁର ସୂଚନା ପାଇଁ ଭିନ୍ନ ଭିନ୍ନ ଶବ୍ଦାବଳୀ ବ୍ୟବହାର କରୁଥାନ୍ତି । ଏହି ଦୁଇଟିର ପ୍ରତ୍ୟେକ କ୍ଷେତ୍ରରେ ଅବଲୀଳାକ୍ରମେ ପ୍ରୟୋଗ ଯୋଗ୍ୟ ଏକ ସଂଜ୍ଞାପ୍ରବନ୍ଧଦ୍ୱାରା ଅସୁବିଧାର ଦୂରୀକରଣ ସମ୍ଭବପର । କିନ୍ତୁ ବାଦାନୁବାଦର ଅଂଶୀଦାରମାନେ ବହୁ କ୍ଷେତ୍ରରେ ସେହି ଏକ (କିମ୍ବା ଭିନ୍ନ ଭିନ୍ନ) ଶବ୍ଦାବଳୀ ବ୍ୟବହାର କରୁଥାନ୍ତି, ଯାହା ଆଦୌ କୌଣସି ବିଷୟକୁ ସୂଚିତ କରୁ ନଥାଏ । ଏ କ୍ଷେତ୍ରରେ ଭାଷା-ପରିସ୍ଥିତି ପ୍ରତି ଅଧିକ ସଚେତନ ଭାବେ ସଚେତନ ରହି ଶବ୍ଦ ପ୍ରୟୋଗ କ୍ଷେତ୍ରରେ ସଂଯମଶୀଳ ହେବାକୁ ପରାମର୍ଶ ଦିଆଯାଇପାରେ ।

ଆଲୋଚ୍ୟ ସମସ୍ୟାର ସାକ୍ଷାତ୍‌ଭାବେ ବିଚାର କରିବାକୁ ଏ ଯାଏଁ କୌଣସି ବିଜ୍ଞାନ ସମର୍ଥ ହୋଇନାହିଁ । ଏଠାରେ ଯାହା ମୌଳିକ ଭାବେ ସମ୍ପୃକ୍ତ, ତାହା ହେଉଛି ସାମୂହିକଭାବେ ସଙ୍କେତଗୁଡ଼ିକର ଏବଂ ସେଗୁଡ଼ିକର ବ୍ୟାଖ୍ୟାର ଏକ ସିଦ୍ଧାନ୍ତବାଦ । ଏ ବିଷୟଟିର ଏପରି ଏକ ସ୍ୱାତନ୍ତ୍ର୍ୟ ରହିଛି ଯେ ସହଯୋଗମୂଳକ ଅଧ୍ୟୟନ ଏ କ୍ଷେତ୍ରରେ ଅପରିହାର୍ଯ୍ୟ । ବହୁ ଉଦ୍ୟମୀ ଅନୁସନ୍ଧାନକାରୀ ଅନ୍ୟର ବିନା ସହାୟତାରେ ଗବେଷଣା କରି ଏ କ୍ଷେତ୍ରରେ ହତାଶ ହୋଇଛନ୍ତି ଓ ବିଷୟଟିକୁ ପରିତ୍ୟାଗ କରିଛନ୍ତି । ଏହି ବିଷୟଟି ଏକ ବିଚିତ୍ର ଧରଣର ବୋଲି ଅନେକ ସମୟରେ ସନ୍ଦେହ କରାଯାଇଛି । ଏହି ସନ୍ଦେହର ନିରାକରଣ ନିମନ୍ତେ ତଥା ଗବେଷଣାକୁ ଏକ ପ୍ରାୟୋଗିକ ସ୍ତରରେ ଉପନୀତ କରାଇବାକୁ କେବଳ ଏହି ସହଯୋଗମୂଳକ ପ୍ରଚେଷ୍ଟାଦ୍ୱାରା ହିଁ ଯୁକ୍ତିଯୁକ୍ତ ଭାବେ ଆଶା କରାଯାଇ ପାରେ । ଐତିହାସିକ ଅନୁସନ୍ଧାନ ଫଳରେ ଜଣାପଡ଼ିଛି ଯେ ଅନାବିଷ୍କୃତ ହୋଇ ରହିଥିବା ଏଣ୍ଟିସ୍ଥେନାସ୍‌ଙ୍କ ଗ୍ରନ୍ଥ ଏବଂ ପ୍ଲେଟୋଙ୍କ **କ୍ରେଟିଲସ୍** ରଚିତ ହେବା ପରେ ଆଉ ସାତଗୋଟି ମୁଖ୍ୟ ପଦ୍ଧତିରେ ଏ ବିଷୟର ଆଲୋଚନା ପ୍ରୟାସ କରାଯାଇଛି । ସେଗୁଡ଼ିକ ହେଲା ବୈୟାକରଣିକ ପଦ୍ଧତି (ଆରିଷ୍ଟଟଲ୍, ଡାଇନୋସିଅସ୍ ଥ୍ରେକ୍ସ), ତତ୍ତ୍ୱଶାସ୍ତ୍ରୀୟ ପଦ୍ଧତି (ନାମବାଦୀଗଣ, ମାଇନଙ୍ଗ୍), ଭାଷାବୈଜ୍ଞାନିକ ପଦ୍ଧତି (ହମ୍ବୋଲ୍ଟକେ, ମ୍ୟାକ୍‌ସମୁଲର), ମନୋବୈଜ୍ଞାନିକ ପଦ୍ଧତି (ଲକ୍ ଷ୍ଟାଉଟ), ତର୍କଶାସ୍ତ୍ରୀୟ ପଦ୍ଧତି (ଲାଇବନିଜ୍, ରସେଲ), ସମାଜବିଜ୍ଞାନମୂଳକ ପଦ୍ଧତି (ଷ୍ଟାଇନ୍‌ଥଲ, ଉଣ୍ଡ୍‌ଟ) ଏବଂ ପଦସଂସ୍କାର ମୂଳକ ପଦ୍ଧତି (ବାଲଡୁଇନ୍, ହୁସେର୍ଲ) । ଏହି ସମସ୍ତ ଅଧ୍ୟୟନରୁ ତଥା ଲେଡି ଓ‌ଏଲବି, ମାର୍ଟି ଓ ସି. ଏସ୍. ପାୟର୍ସଙ୍କ ସ୍ୱାଧୀନ ଗବେଷଣାରୁ ଏବଂ ମାଉଥନେରଙ୍କ **କ୍ରିଟିକ୍ ଡେଆର ସ୍ପ୍ରାଖେ** (ଭାଷା ସମୀକ୍ଷା), ଆର୍ଡମେନଙ୍କ **ଡି ବେଡେଉଟୁଙ୍ଗ ଡେସ୍ ଭଆରଟେସ୍** (ଶବ୍ଦମାନଙ୍କ ଅର୍ଥ) ଏବଂ ଟେଏନେଙ୍କ **ଦେ ଲ ଇଣ୍ଟେଲିଜେନସ** (ବୁଦ୍ଧିବିଷୟକ ନିବନ୍ଧ)ରୁ ଲେଖକଦ୍ୱୟ ଶିକ୍ଷା ଏବଂ ବେଳେ ବେଳେ ଆମୋଦ ଲାଭ କରିଛନ୍ତି ।

ଡକ୍ଟର ମାଲିନୋସ୍କିଙ୍କଠାରେ ଲେଖକଦ୍ୱୟ ବିଶେଷଭାବେ ଋଣୀ । ସେମାନଙ୍କ ଗ୍ରନ୍ଥର ମୁଦ୍ରଣ କାଳରେ ସେ ଇଂଲଣ୍ଡକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଭାଷାତତ୍ତ୍ୱ ଓ ମନସ୍ତତ୍ତ୍ୱର ଅସାଧାରଣରୂପେ ଦୁର୍ଭେଦ୍ୟ ସୀମାନ୍ତପ୍ରଦେଶସ୍ଥିତ ମାନବଜାତିତତ୍ତ୍ୱର ସେ ଥିଲେ ଜଣେ କ୍ଷେତ୍ରକର୍ମୀ । ତାଙ୍କର ବହୁ ବର୍ଷର ଅଭିଜ୍ଞତାରୁ ଲେଖକଦ୍ୱୟ ଲାଭବାନ ହୋଇ ପାରିଛନ୍ତି । ତାଙ୍କଠାରେ ତାତ୍ତ୍ୱିକ ମତଗୁଡ଼ିକର ସମ୍ପୂର୍ଣ୍ଣ ଜ୍ଞାନ ତଥା ପ୍ରୟୋଗ-କ୍ଷେତ୍ରରେ ଅଭିଜ୍ଞତା, ଏ ଦୁଇଟିର ଏକ ଅନବଦ୍ୟ ସମନ୍ୱୟ ଘଟିଛି । ସେ ଯେ ଏହି ଗ୍ରନ୍ଥର ବହୁବିଧ ସିଦ୍ଧାନ୍ତରୁ ଅନେକ କ୍ଷେତ୍ରରେ ଲେଖକଦ୍ୱୟଙ୍କ ସହିତ ଏକମତ ହୋଇଛନ୍ତି,

ଏହା ବିଶେଷଭାବେ ଉତ୍ସାହପ୍ରଦ ହୋଇଛି । ଆଦିମ ଭାଷାମାନଙ୍କ ଅଧ୍ୟୟନବିଷୟକ ତାଙ୍କ ଲେଖନୀନିଃସୃତ ଏକ ନିବନ୍ଧ ଏହି ଗ୍ରନ୍ଥର ଅନୁପୂରକରୂପେ ପ୍ରକାଶ ପାଇଛି । କେବଳ ମାନବ-ଜାତି-ତତ୍ତ୍ୱବିଦ୍‌ଙ୍କ ପକ୍ଷରେ ଯେ ଏହି ନିବନ୍ଧ ମୂଲ୍ୟବାନ୍, ତାହା ନୁହେଁ; ଶବ୍ଦଗୁଡ଼ିକରେ ଓ ସେଗୁଡ଼ିକର କାର୍ଯ୍ୟମାନଙ୍କରେ ସକ୍ରିୟଭାବେ ଅନୁରକ୍ତ ପ୍ରତ୍ୟେକ ବ୍ୟକ୍ତିଙ୍କ ପକ୍ଷରେ ଏହା ମୂଲ୍ୟବାନ୍ ବିବେଚିତ ହେବ, ଏଥିରେ ଲେଖକଦ୍ୱୟ ନିଃସନ୍ଦେହ ।

ପ୍ରତୀକ ପଦ୍ଧତିର ଏକ ବିଜ୍ଞାନ ବର୍ତ୍ତମାନ ଅନୁନ୍ନତ ଅବସ୍ଥାରେ ଥିଲେ ସୁଦ୍ଧା ଏହାର ଯେ ବ୍ୟାବହାରିକ ଗୁରୁତ୍ୱ ରହିଛି, ଏ କଥାକୁ ବିଶେଷ ପ୍ରାଧାନ୍ୟ ଦେଇ କହିବାର ଆବଶ୍ୟକତା ନାହିଁ । ଶବ୍ଦଗୁଡ଼ିକର ଆମ ବ୍ୟବହାର ଏବଂ ସେଗୁଡ଼ିକ ପ୍ରତି ଆମ ଅଭିବୃତ୍ତିର ପରିବର୍ତ୍ତନ ଦ୍ୱାରା ଆମ ସାମାଜିକ ଓ ବୌଦ୍ଧିକ ଜୀବନର ଅଧିକ ବିକାଶପ୍ରାପ୍ତ ସମସ୍ତ ବ୍ୟାପାର ପ୍ରଭାବିତ ହୋଇଥାଏ ।

କିପରିଭାବେ ଶବ୍ଦଗୁଡ଼ିକ କାର୍ଯ୍ୟ କରେ, ଏହା ଏକ ସମ୍ପୂର୍ଣ୍ଣ ତାତ୍ତ୍ୱିକ ବିଷୟ ବୋଲି ସାଧାରଣତଃ ବିବେଚିତ ହୁଏ ଏବଂ କର୍ମପ୍ରବଣ ବ୍ୟକ୍ତି ପକ୍ଷରେ ଏହା ବିଶେଷ ଅନୁରକ୍ତିର ବିଷୟ ନୁହେଁ ବୋଲି ମନେ କରାଯାଏ । କେତେକ ପରିମାଣରେ ଦୁର୍ବୋଧ୍ୟ ହୋଇଥିବା ପ୍ରଶ୍ନମାନଙ୍କ ସହିତ ଏହି ଗବେଷଣା ସମସ୍ତ ସମୟରେ ସମ୍ପୃକ୍ତ ରହିବା ଅନିବାର୍ଯ୍ୟ, ଏକଥା ସତ୍ୟ । କିନ୍ତୁ ଏହା ସତ୍ତ୍ୱେ କର୍ମପ୍ରବଣ ବ୍ୟକ୍ତିମାନେ ଏହାକୁ ଅବହେଳା କରିବା ଦୂରଦୃଷ୍ଟିର ଅଭାବସୂଚକ । ଭାଷା ଏବେ ଯେପରି ଅବସ୍ଥାରେ ଅଛି, ତାହା ବେଶ୍ ଭଲରୂପେ କାର୍ଯ୍ୟ କରୁଛି—ଏହି ମତ କେବଳ ସେହିମାନେ ହିଁ ଦେଇ ପାରିବେ, ଯେଉଁମାନେ ଭାଷାବ୍ୟବହାର ବିନା ସମ୍ପାଦିତ ହୋଇ ପାରୁଥିବା କାର୍ଯ୍ୟ କ୍ଷେତ୍ରରେ ହିଁ ଭାଷା ବ୍ୟବହାର କରିବାରେ ଅଭ୍ୟସ୍ତ । ଉଦାହରଣ ସ୍ୱରୂପ, ଖବରକାଗଜ ବିକାଳି ବା ମାଂସବିକାଳିର ଯାହା ବକ୍ତବ୍ୟ, ତାହା କେବଳ ଅଙ୍ଗୁଳିନିର୍ଦ୍ଦେଶଦ୍ୱାରା ମଧ୍ୟ ଯଥେଷ୍ଟ ଉତ୍ତମରୂପେ ଜଣାଇଦେଇହେବ । ବିଗତ ଶତାବ୍ଦୀରେ ମନୁଷ୍ୟ ସମ୍ପୂର୍ଣ୍ଣ ନୂତନ ପରିସ୍ଥିତିଗୁଡ଼ିକ ସହିତ ତତ୍ପରରେ ନିଜକୁ ଖାପ ଖୁଆଇବା ନିମନ୍ତେ ଅନ୍ଧଭାବରେ ପ୍ରୟତ୍ନ କରି ଆସିଛି । ଏ ବିଷୟ ପ୍ରତି ଯେଉଁମାନେ ଆଖି ବୁଜି ରହିଛନ୍ତି, ସେମାନଙ୍କ ବ୍ୟତୀତ ଅନ୍ୟ କେହି କହିବେନାହିଁ ଯେ ସଭ୍ୟତାର ଏହି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଉପକରଣର ସମୀକ୍ଷାମୂଳକ ପରୀକ୍ଷଣ ଅନାବଶ୍ୟକ । ଯେଉଁ ବିଷୟଗୁଡ଼ିକୁ ଆଗରୁ ଅଳ୍ପ କେତେଜଣ ବ୍ୟକ୍ତିଙ୍କ ତତ୍ତ୍ୱାବଧାନରେ ଛାଡ଼ି ଦିଆଯାଉଥିଲା, ଏବେ ସେହି ବିଷୟଗୁଡ଼ିକ ଉପରେ ସାଧାରଣ ଘଟଣା ସଂଘଟନର ନିୟନ୍ତ୍ରଣରେ ଅଂଶୀଦାର ରହିଥିବା ସହସ୍ର ସହସ୍ର ବ୍ୟକ୍ତିଙ୍କୁ ନିଜ ବ୍ୟକ୍ତିଗତ ମତ ଗଠନ କରିବାକୁ ସଚେଷ୍ଟ ହେବାକୁ ପଡ଼ିବ । ଏବେ ପୁଣି ଏହି ବିଷୟଗୁଡ଼ିକର ଜଟିଳତା ବହୁ ପରିମାଣରେ ବୃଦ୍ଧି ଲାଭ କରିଛି । ଗୋଟିଏ ବିଷୟ-

ଭିତରକୁ ପ୍ରବେଶ କରିବାର ଏକମାତ୍ର ପନ୍ଥା ହେଉଛି ସେହି ବିଷୟକୁ ଦୀର୍ଘକାଳ ଧରି ଅଧ୍ୟୟନ କରିବା—ଏହି ପ୍ରାଚୀନ ମତ ଯଦି ସତ୍ୟ ହୋଇଥାଏ, ତେବେ ନିକଟ ଭବିଷ୍ୟତ ପାଇଁ ଏହାର କେତେକ ପରିଣତି ରହିଛି, ଯାହାର ଫଳ ନିହାତି ଆମେ ଏପର୍ଯ୍ୟନ୍ତ ହୋଇ ନାହୁଁ । କିନ୍ତୁ ଏହାର ବିକଳ୍ପ ପନ୍ଥା ହେଉଛି ଭାବ ବିନିମୟର ସ୍ତରକୁ ଉନ୍ନତ କରିବା । ଭାବ ବିନିମୟର ପଦ୍ଧତିାବଳୀ, ତନ୍ନିହିତ ସଙ୍କଟ ଓ ଅସୁବିଧାମାନଙ୍କ ଅଧ୍ୟୟନ ଦ୍ୱାରା ତାହାର ସ୍ତରକୁ ଉନ୍ନତ କରାଯାଇପାରେ । ଭାବବିନିମୟକୁ ବ୍ୟାପକତମ ଅର୍ଥରେ ଗ୍ରହଣ କଲେ ଏହି ଉଦ୍‌ଯୋଗର ପ୍ରାୟୋଗିକ ଦିଗ ହେଉଛି ଶିକ୍ଷା ।

ଯେଉଁ ଦୃଷ୍ଟିକୋଣରୁ ଲେଖକଦ୍ୱୟ ଭାଷାର ଏକ କଠୋର ପରୀକ୍ଷା କରିଛନ୍ତି, ସେହି ଦୃଷ୍ଟିକୋଣ ପ୍ରତି ଏବେ କେହି ଧ୍ୟାନ ଦେଉନାହାନ୍ତି; କିନ୍ତୁ ସେପରି ଏକ ପରୀକ୍ଷା ଯେ ଅତ୍ୟନ୍ତ ପ୍ରୟୋଜନ, ଏଥିରେ ସେମାନେ ନିଃସନ୍ଦେହ । ତେଣୁ ଏହି ସନ୍ଦର୍ଭଟି ବର୍ତ୍ତମାନ ଅବସ୍ଥାରେ ଯେଉଁ ଆକାରରେ ରହିଛି, ସେହିପରି ଭାବେ ହିଁ ତାହାକୁ ପ୍ରକାଶିତ କରିଦେବା ଉଚିତ ମନେ ହୋଇଛି । ସେମାନଙ୍କ ଜୀବନ ଅନ୍ୟାନ୍ୟ କାର୍ଯ୍ୟକଳାପରେ ଏତେ ବ୍ୟସ୍ତ ରହୁଛି ଯେ ଏହାକୁ ଅଧିକ ପୂର୍ଣ୍ଣତା ଦେଇ ଅଧିକ ବିଧିବଦ୍ଧ ଆକାରରେ ଆଉ ଥରେ ଲେଖିବାକୁ ଯଥେଷ୍ଟ ଅବସର ମିଳିବା ପର୍ଯ୍ୟନ୍ତ ଅପେକ୍ଷା କରିବା ବୋଧହୁଏ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଅପେକ୍ଷା କରିବା ସହିତ ସମାନ ହୋଇଯିବ । ସୁତରାଂ ବର୍ତ୍ତମାନ ଅବସ୍ଥାରେ ହିଁ ସନ୍ଦର୍ଭଟିକୁ ପ୍ରକାଶ କରିଦେବା ବରଂ ଶ୍ରେୟସ୍କର । ଏହାର ତ୍ରୁଟି ଓ ଦୁର୍ବଳତା ସମ୍ବନ୍ଧରେ ଅଧିକାଂଶ ସମାଲୋଚକ ଯେଉଁ ଧାରଣା କରିବେ, ତାହାଠାରୁ ଅଧିକ ଭଲଭାବେ ଲେଖକଦ୍ୱୟ ନିଜେ ସଚେତନ ବୋଲି ସେମାନେ ବିଶ୍ୱାସ କରନ୍ତି । ଭାଷାର ମୌଳିକ ସମୀକ୍ଷାର ବର୍ଣ୍ଣନା ଦେଉଥିବା ବ୍ୟକ୍ତିଙ୍କ ପକ୍ଷରେ କେତେକ ବିଶେଷ ଧରଣର ଅସୁବିଧା ଅନିବାର୍ଯ୍ୟରୂପେ ଜାତ ହୋଇଥାଏ । ଏହି କାରଣରୁ ଏହି ସନ୍ଦର୍ଭରେ ଯେଉଁସବୁ ଦୋଷ ତ୍ରୁଟି ରହିଛି, ସେ ବିଷୟରେ ତ ସେମାନେ ଆହୁରି ଅଧିକ ସଚେତନ ।

ଯେତେବେଳେ ଅର୍ଥ ଆଡ଼କୁ ଦୃଷ୍ଟି ଆକର୍ଷଣ କରିବାର ପ୍ରଚେଷ୍ଟା ସମର୍ଥନ ଲାଭ କରିବା ସମ୍ଭବପର, ସେହି ସମୟ ବର୍ତ୍ତମାନ ଉପଗତ ବୋଲି ମନେକରିବାର ଦୁଇଟି କାରଣ ରହିଛି । ପ୍ରଥମତଃ ମନୋବିଜ୍ଞାନୀମାନେ ଏହି ସମସ୍ୟାର ଗୁରୁତ୍ୱ ସ୍ୱୀକାର କରିବାକୁ ଅଧିକତରଭାବେ ଏବେ ପ୍ରସ୍ତୁତ ହୋଇଗଲେଣି । ଅଧ୍ୟାପକ ପିଅର (ରିମେମ୍ବରିଂ ଏଣ୍ଡ ଫର୍‌ଗେଟିଂ [ସ୍ମରଣ ଓ ବିସ୍ମରଣ] ୧୯୨୩, ପୃ ୫୯ ରେ) ଲେଖିଛନ୍ତି, "ଅର୍ଥର ମନସ୍ତାତ୍ତ୍ୱିକ ପ୍ରକୃତିର ଆବିଷ୍କାର ଯଦି ସମ୍ପୂର୍ଣ୍ଣରୂପେ ସଫଳ ହୋଇଥାନ୍ତା, ତେବେ ତାହା ମନସ୍ତତ୍ତ୍ୱର ସମ୍ପୂର୍ଣ୍ଣ ବିନାଶ ସାଧନ କରିଦେଇପାରିଥାନ୍ତା ।" ଦ୍ୱିତୀୟତଃ, ବିଜ୍ଞ ତଥା ନିଷ୍ଠାପରାୟଣ ବ୍ୟକ୍ତିମାନେ ଅତି ଦୟନୀୟ ଭାବେ ଯେପରି ବାଚନିକ ଆକାର ଉପରେ

ନିର୍ଭରଶୀଳ ହେଉଛନ୍ତି, ତାହାର ନିୟମକରଙ୍କୁ ଆଉ ଅଧିକ ଦିନ ସ୍ଥଗିତ ରଖାଯାଇ-ପାରିବ ନାହିଁ—ଏହା ଏବେ ଅନୁଭୂତ ହୋଇଛି । ଉଦାହରଣ ସ୍ୱରୂପ, ଆମେ ଦେଖିବାକୁ ପାଉଁ ଯେ ଲର୍ଡ ହ୍ୟୁ ସେସିଲ୍ ବିବାହ ବିଚ୍ଛେଦ ପ୍ରତି ତାଙ୍କ ଅଭିବୃତ୍ତି ସମ୍ବନ୍ଧରେ ଯୁକ୍ତି-ସମ୍ବଳିତ ଏକ ବିବୃତିର ଉପସଂହାର ସ୍ୱରୂପ ନିମ୍ନୋକ୍ତ ଉକ୍ତି ଦେଇଛନ୍ତି, "ମୋତେ ଯେପରି ଜଣାପଡ଼ୁଛି, ଗୋଟିଏ ବିଷୟକୁ ଖ୍ରୀଷ୍ଟିୟାନ ରୂପେ ଖ୍ରୀଷ୍ଟିୟାନମାନେ ପ୍ରତିରୋଧ କରିବାକୁ ବାଧ୍ୟ । ତାହା ହେଉଛି ଖ୍ରୀଷ୍ଟଙ୍କ ଦ୍ୱାରା ପ୍ରକାଶିତ ତଥ୍ୟାନୁସାରେ ଯାହା ବ୍ୟଭିଚାର, ତାହାକୁ ବିବାହ ଆଖ୍ୟା ଦେବାର ପ୍ରସ୍ତାବ" (ଦି ଟାଇମସ୍, ୨ ଜାନୁୟାରୀ ୧୯୨୩) ।

ଏହି ଗ୍ରନ୍ଥରେ, ଯାହା କେତେକ ବ୍ୟକ୍ତିଙ୍କୁ ସୁପ୍ରତ୍ୟକ୍ଷ ମନେ ହୋଇପାରେ, ତହିଁରେ ପ୍ରାଧାନ୍ୟ ଅର୍ପଣ କରାଯାଇଛି; ପକ୍ଷାନ୍ତରେ, ଏପରି କେତେକ ପଦ ବ୍ୟବହାର କରାଯାଇଛି, ଯାହା ଅନୁସନ୍ଧାନର କେତେକ ଅଂଶକୁ ଅନ୍ୟାନ୍ୟ ଅଂଶ ଅପେକ୍ଷା ନ୍ୟୂନ ସୁବୋଧ କରି ପକାଇଛି । ଏକ ପରିବର୍ତ୍ତିତ ଦୃଷ୍ଟିକୋଣରୁ ବିଷୟଟିର ବିଚାର କରାଯାଉ-ଥିବାରୁ ଉପର୍ଯ୍ୟୁକ୍ତ ବ୍ୟବସ୍ଥା ଉପସ୍ଥିତ ଗ୍ରନ୍ଥ ତୁଲ୍ୟ ଏକ ଗ୍ରନ୍ଥରେ ଅନିବାର୍ଯ୍ୟ । କିନ୍ତୁ ଏହା ସତ୍ତ୍ୱେ ଆଶା କରାଯାଏ ଯେ ଗ୍ରନ୍ଥନିହିତ ବିଷୟାବଳୀ ସହିତ ଆଗରୁ ପରିଚିତ ହୋଇ ନଥିବା ବ୍ୟକ୍ତିମାନେ ମଧ୍ୟ ଟିକିଏ ଧୈର୍ଯ୍ୟ ସହକାରେ ଅଧ୍ୟୟନ କଲେ, ସମଗ୍ର ଆଲୋଚନାଟିକୁ ହୃଦୟଙ୍ଗମ କରିପାରିବେ । ବିବରଣୀଟିକୁ ଯୁକ୍ତିଯୁକ୍ତ ସୀମା ମଧ୍ୟରେ ରଖିବାକୁ ସ୍ଥାନ ବିଶେଷରେ ଆଲୋଚନାକୁ ସଙ୍କୁଚିତ କରାଯାଇଛି । ତେଣୁ ଗ୍ରନ୍ଥର ଅଂଶ ସ୍ୱରୂପ ପଠିତ ହେବା ଲକ୍ଷ୍ୟରେ ସୂଚୀପତ୍ରରେ ଏକ ପୂର୍ଣ୍ଣାଙ୍ଗ ପଠନୀୟ ବିଷୟ ତାଲିକା ପ୍ରଦତ୍ତ ହୋଇଛି ।

ଏକ ସାରାଂଶ, ବିଶେଷ ବିଶେଷ ସମସ୍ୟା ସମ୍ବନ୍ଧରେ କେତେକ ପରିଶିଷ୍ଟ ଏବଂ ଅନେକ ପ୍ରତି-ନିର୍ଦ୍ଦେଶ ଗ୍ରନ୍ଥ ସହିତ ସଂଯୋଗ କରାଯାଇଛି । ଏତଦ୍ଦ୍ୱାରା ଯେଉଁମାନେ ଆଲୋଚିତ କ୍ଷେତ୍ରର ପ୍ରତ୍ୟେକ ଅଂଶ ପ୍ରତି ସମସ୍ତରେ ମନୋଯୋଗ ଦେବାର ସୁଯୋଗ ପାଇନାହାନ୍ତି ଏବଂ ଯେଉଁମାନେ ଏ ବିଷୟରେ ଅଧିକ ଅଧ୍ୟୟନ କରିବାକୁ ଅଭିଳାଷ ପୋଷଣ କରନ୍ତି, ଏହି ଉଭୟ ଶ୍ରେଣୀର ପାଠକ ଉପକୃତ ହେବେ ।

ମେଗଡେଲିନ୍ କଲେଜ, କେମ୍ବ୍ରିଜ
ଜାନୁୟାରୀ ୧୯୨୩

ସି. କେ. ଅଗଡେନ୍
ଆଇ. ଏ. ରିଚାର୍ଡସ

# ମୂଳପାଠ ବିଷୟକ ସୂଚୀପତ୍ର

( ଇଂରାଜୀ ଗ୍ରନ୍ଥର ପୃଷ୍ଠାସୂଚକ ସଂଖ୍ୟାଗୁଡ଼ିକୁ ବାଦ ଦିଆଯାଇଛି )

## ୧ମ ପରିଚ୍ଛେଦ

### ଚିନ୍ତା, ଶବ୍ଦ ଓ ବସ୍ତୁ

ଅର୍ଥ, ଭାଷାର କେନ୍ଦ୍ରିକ ସମସ୍ୟା, ସର୍ବାଧିକ ସଂପୃକ୍ତ ବିଜ୍ଞାନମାନଙ୍କ ଦ୍ୱାରା ଅବହେଳିତ ।। ବିଶ୍ଳେଷଣର ଅଗ୍ରଗତି ଘଟିଲେ ବିଶେଷତଃ ୮ମ ପରିଚ୍ଛେଦରେ, ଦାର୍ଶନିକମାନଙ୍କ ଦ୍ୱାରା କରାଯାଇଥିବା ଏହାର ଆଲୋଚନାକୁ ପୁଙ୍ଖାନୁପୁଙ୍ଖ ଭାବେ ବିଚାର କରାଯିବ । ଭାଷାବୈଜ୍ଞାନିକ ଅଧ୍ୟୟନ ପଦ୍ଧତି—ଅଧ୍ୟାପକ ପୋଷ୍ଟଗେଟଙ୍କ ସୁସ୍ପଷ୍ଟ ଉପସ୍ଥାପନା ।। ଶବ୍ଦାର୍ଥବିଜ୍ଞାନର ଅସାଫଲ୍ୟ; ବି ଏଲ୍ ।। ଏଫ୍. ଡି. ସସୁର ଓ ଭାଷା (la langue) ।। ମନୋବିଜ୍ଞାନର ପ୍ରଗତି ଫଳରେ ପ୍ରତୀକମାନଙ୍କ ଏକ ବୈଜ୍ଞାନିକ ଅଧ୍ୟୟନ ସମ୍ଭବପର ।

ସମସ୍ତ ଆଲୋଚନା ଓ ଅନୁସନ୍ଧାନରେ ପ୍ରତୀକମାନଙ୍କ ଗୁରୁତ୍ୱ—ଚିନ୍ତା ଉପରେ ପ୍ରତୀକମାନଙ୍କ ପ୍ରଭାବର ଅଧ୍ୟୟନ ହେଉଛି ପ୍ରତୀକ ବିଜ୍ଞାନ ।। ପ୍ରତୀକମାନଙ୍କ ବହୁବିଧ କାର୍ଯ୍ୟ—ନିର୍ଦ୍ଦେଶର ଜ୍ଞାପନ ଓ ଶୃଙ୍ଖଳାବିଧାନ କ୍ଷେତ୍ରରେ ପ୍ରତୀକମାନଙ୍କ କାର୍ଯ୍ୟ ପ୍ରଥମେ ବିଚାର୍ଯ୍ୟ ।। ପ୍ରତୀକମାନଙ୍କ ସଂବେଗାତ୍ମକ କାର୍ଯ୍ୟର ବିଚାର ୭ମ ପରିଚ୍ଛେଦ ପର୍ଯ୍ୟନ୍ତ ସ୍ଥଗିତ । ପ୍ରତୀକ, ନିର୍ଦ୍ଦେଶ ଓ ନିର୍ଦ୍ଦେଶ୍ୟର ଏକ ସୁବିଧାଜନକ ରେଖାଚିତ୍ର ।। ବସ୍ତୁ ସହିତ ଶବ୍ଦର ସମ୍ପର୍କ—ପ୍ରତ୍ୟେକ୍ଷ; ବ୍ୟାଖ୍ୟା ମାଧ୍ୟମରେ ।। ବାଚନିକ ସଂକ୍ଷିପ୍ତୀକରଣରେ ସଙ୍କଟ । ତାହାର ପରିହାର ଦ୍ୱାରା ବିଜ୍ଞାନରେ ଅଗ୍ରଗତି—ଆପେକ୍ଷିକତା; ମନୋ-ବିଶ୍ଳେଷଣ ।।

ଭ୍ରାନ୍ତ ଅର୍ଥକରଣ । ଭ୍ରାନ୍ତ ନିର୍ଦ୍ଦେଶଜନିତ ଜଟିଳତା; ମିଥ୍ୟା କଥନ ।। ଏ ପ୍ରକାର ଗୌଣପ୍ରାଧାନ୍ୟମୁକ୍ତ ଉପଜାତ ସମସ୍ୟାମାନ ।। ଆମ ଦ୍ୱାରା କରାଯାଇଥିବା ଅନ୍ୟମାନଙ୍କ ପର୍ଯ୍ୟବେକ୍ଷଣ ଉପରେ ପ୍ରତିଷ୍ଠିତ ଏକ ବ୍ୟାଖ୍ୟା ସିଦ୍ଧାନ୍ତର ଆବଶ୍ୟକତା ।। ଅନ୍ତର୍ନିରୀକ୍ଷଣର ସନ୍ଦେହାତ୍ମକ ପରିଣତି-ଭାବ ଆଦାନ ପ୍ରଦାନ କ୍ଷେତ୍ରରେ ଏକ ଅହଂମାନ୍ୟବାଦୀ ବିବରଣୀର ଅସମ୍ଭାବ୍ୟତା; ବାଲ୍ଡୁଇନ ।। ସଙ୍କେତ ପରିସ୍ଥିତିର ବିବିଧତା ଓ ସର୍ବତ୍ର ଉପସ୍ଥିତି । ପ୍ରକୃତିର ବିଶିଷ୍ଟ ସ୍ଥାନ ।

# ୨ୟ ପରିଚ୍ଛେଦ

## ଶବ୍ଦ-ଶକ୍ତି

ବିମୂର୍ତ୍ତ ଓ ଯାନ୍ତ୍ରିକର ଏକ ଚିରସ୍ଥାୟୀ ଉତ୍ସରୂପେ ପ୍ରତୀକ । ଅଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରଚଳିତ ପ୍ରତୀକ-ପୂଜା । ମନୁଷ୍ୟ ଜାତିର ସର୍ବାଧିକ ଆଦିମ ଧାରଣା ଓ ସମ୍ବେଗମାନଙ୍କ ବାହକ ସ୍ୱରୂପ ଭାଷା । ଆତ୍ମାରୂପେ ନାମ—ଗୁପ୍ତ ନାମାବଳୀ ।।

ଏ ପର୍ଯ୍ୟନ୍ତ ତିଷ୍ଠି ରହିଥିବା ଶାବ୍ଦିକ ଅନ୍ଧ ବିଶ୍ୱାସ—ତାହାର ପ୍ରଶସ୍ତ ପରି-ବ୍ୟାପ୍ତିର କାରଣମାନ—ଆଧୁନିକ ଦର୍ଶନରେ ସଂପୂର୍ଣ୍ଣରୂପେ ବାଚନିକ ହୋଇଥିବା ସଂରଚନମାନ । ତଥାକଥିତ ସତ୍ତ୍ୱିକଗତ; ନବ୍ୟ ପ୍ଲେଟୋବାଦୀ ରୂପେ ବାଚିଁ ରହେଲ ।

ଭାଷାସମ୍ବନ୍ଧୀୟ ଗ୍ରୀକ୍ ମତ—ଆଦିମ ଶବ୍ଦଇନ୍ଦ୍ରଜାଲର ପରିଣତ ରୂପେ ପ୍ଲେଟୋବାଦ ।। ହେରାକ୍ଲାଇଟସ୍, ପାଇଥାଗୋରସ୍ ।। ପାରମିନାଇଡ୍ସଙ୍କ—ପାଇଥା-ଗୋରସ୍ ସଂପ୍ରଦାୟର ନାମ-ଆତ୍ମାରୁ ପ୍ଲେଟୋଙ୍କ 'ପ୍ରତ୍ୟୟମାନ'ଙ୍କ ସୃଷ୍ଟି—ପ୍ଲେଟୋଙ୍କ କ୍ରେଟିଲସ୍ ଗ୍ରନ୍ଥକୁ ଉପେକ୍ଷା ।। ଶବ୍ଦମାନଙ୍କ ଉପରେ ଆରିଷ୍ଟଟଲଙ୍କ ନିର୍ଭରଶୀଳତା; ତାଙ୍କ ତର୍କଶାସ୍ତ୍ର ବ୍ୟାକରଣ ଉପରେ ପ୍ରତିଷ୍ଠିତ—ହ୍ୱେଉଏଲ ଓ ଗୋମ୍ପର୍ଜଙ୍କ ସାକ୍ଷ୍ୟ ନିର୍ଦ୍ଦେଶ—ଭାଷାତ୍ମକ କୌଶଳ ହେଉଛି ଗ୍ରୀକ୍ ଦ୍ୱନ୍ଦ୍ୱମୂଳକର ବୈଶିଷ୍ଟ୍ୟ ।। ଆରିଷ୍ଟଟଲୀୟ ବାଚନିକତା ସମ୍ବନ୍ଧରେ ମାଉଥନେରଙ୍କ ସମାଲୋଚନା—ଓ ଇଣ୍ଟର ପ୍ରିଟେସନେ । ରୋମରେ ଶାବ୍ଦିକ ଅନ୍ଧ ବିଶ୍ୱାସ ।। ଗ୍ରୀକ୍‌ମାନେ ଯେ ଭାଷାର ଯାନ୍ତ୍ରିକାରକ ପ୍ରଭାବକୁ ହୃଦୟଙ୍ଗମ କରିପାରି ଥିଲେ, ତାହାର ସାକ୍ଷ୍ୟ ପ୍ରମାଣ ।। ବୌଦ୍ଧ ଧର୍ମରେ ଏହା ଆହୁରି ସ୍ପଷ୍ଟ—କିନ୍ତୁ କେବଳ ଏନେସିଡେମିସ୍ ଓ ସଂଶୟବାଦୀମାନେ ପ୍ରାଚୀନ କାଳରେ ସଂକେତ ସମସ୍ୟାର ଅଧ୍ୟୟନ ବୈଜ୍ଞାନିକ ରୀତିରେ କରିଥିଲେ ।।

ପ୍ରାଚ୍ୟ ହେଉଛି ବାଚନିକ ଅନ୍ଧବିଶ୍ୱାସର ପ୍ରକୃତ ବାସସ୍ଥଳୀ—ବଶୀଭୂତକରଣ: ବାଚନିକ ଇନ୍ଦ୍ରଜାଲ ଓ ବାଚନିକ ଚିକିତ୍ସା । ଏବେ ସୁଦ୍ଧା ବାଚନିକ ଇନ୍ଦ୍ରଜାଲ ଅବାଧ ଗତିରେ ପ୍ରଚଳିତ—କିନ୍ତୁ ନୂତନ ରୀତିରେ—ରହସ୍ୟବାଦୀ ରୂପେ ତର୍କବିଦ୍‌ଗଣ ।। ବାଚନିକ ବହିଷ୍କରଣ ସମ୍ବନ୍ଧରେ ଶରନୋ—ତତ୍ତ୍ୱଶାସ୍ତ୍ରରେ ଭାବାତ୍ମକ ପ୍ରତିଧ୍ୱନି ।। ଆଧୁନିକ ଚିକିତ୍ସାରେ ଶବ୍ଦ ଇନ୍ଦ୍ରଜାଲ ।।

ସଙ୍କେତ ଓ ପ୍ରତୀକ ପରିସ୍ଥିତିମାନଙ୍କ ଏକ ବିଶ୍ଳେଷଣ ଦ୍ୱାରା ହିଁ ଆମେ ଏ ପ୍ରକାର ପ୍ରଭାବଗୁଡ଼ିକରୁ ମୁକ୍ତ ରହିପାରିବା। କେବଳ ଏହି ନିକଟ ଅତୀତରେ ହିଁ ଏହି ସମସ୍ୟାର ସ୍ଥିତି ଉପଲବ୍ଧ ହୋଇଛି—ହିଉଲିଅମ ଓକ୍‌କାମଙ୍କଠାରୁ ଆରମ୍ଭ କରି ମାଉଥନେରଙ୍କ ପର୍ଯ୍ୟନ୍ତ ସମସ୍ୟାର ବୈଜ୍ଞାନିକ ରୀତିରେ ଅଧ୍ୟୟନର ପୂର୍ବଗାମୀଗଣ ॥

ପରବର୍ତ୍ତୀ ସୋପାନ। ପ୍ରତୀକମାନଙ୍କ ଅର୍ଥର ବିଶ୍ଳେଷଣ ନିମନ୍ତେ ଏକ ସଙ୍କେତ ସିଦ୍ଧାନ୍ତ ଅପରିହାର୍ଯ୍ୟ—ଏହି ସିଦ୍ଧାନ୍ତ ଦ୍ୱାରା ବାଚନିକ ଇନ୍ଦ୍ରଜାଲ ଉପରେ ଆଲୋକପାତ ॥

## ୩ୟ ପରିଚ୍ଛେଦ

### ସଂକେତ ପରିସ୍ଥିତି

ସଙ୍କେତ-ସିଦ୍ଧାନ୍ତ ଉପରେ ଅର୍ଥ-ସିଦ୍ଧାନ୍ତ ନିର୍ଭରଶୀଳ—ନିର୍ଦ୍ଦେଶ, ଅର୍ଥାତ୍ ଚିନ୍ତା ଓ ଯାହାର ତାହା ଚିନ୍ତା ଏ ଦୁଇଟିର ସମ୍ବନ୍ଧ ଅଦ୍ୱିତୀୟ ନୁହେଁ ॥ 'ପ୍ରତିଜ୍ଞପ୍ତି' ସହିତ ପରିଚିତିର ତଥାକଥିତ ସାକ୍ଷାତ ସମ୍ବନ୍ଧ; କାନାଜ, ଲିପ୍‌ସ, ହୁସେର୍ଲ, ଭେନ୍ ଗିନେକେନ ॥ ଜ୍ଞାନ ସମ୍ବନ୍ଧୀୟ ପୂର୍ବବର୍ତ୍ତୀ ମନସ୍ତାତ୍ତ୍ୱିକ ବିବରଣୀ—ସାହଚର୍ଯ୍ୟ, ସମାକଳନ ଓ ସମ୍ପୂରଣ ମାଧ୍ୟମରେ ପ୍ରଦତ୍ତ—ପର୍ଯ୍ୟାପ୍ତରୂପେ ଗତିଶୀଳ ନୁହେଁ—ସ୍ମାରକ କାରଣିକତା ମାଧ୍ୟମରେ ପରିବର୍ତ୍ତନ; ସେମନ୍। ଉଦାହରଣ ଓ ବ୍ୟାଖ୍ୟା; ଲିପ୍ସେର୍ଟ୍ଟ ମର୍ଗାନଙ୍କ ଗୋଟି ପୋକ।

କାରଣିକ ଭାଷାରେ ତ୍ରୁଟି। ପୁନଃ ପୁନଃ ସଘଟିତ ପ୍ରସଙ୍ଗମାନଙ୍କ ମାଧ୍ୟମରେ ପୁନର୍ବିଚାର ॥ ମନସ୍ତାତ୍ତ୍ୱିକ ଓ ବାହ୍ୟ ପ୍ରସଙ୍ଗମାନଙ୍କ ଉଦାହରଣ। ପ୍ରସଙ୍ଗର ସଂଜ୍ଞା। କିପରିଭାବେ ପ୍ରସଙ୍ଗମାନଙ୍କ ପୁନର୍ସଂଘଟନ ହୁଏ—ପ୍ରସଙ୍ଗମାନଙ୍କ ସାମାନ୍ୟତା ଓ ସେମାନଙ୍କ ସମ୍ଭାବ୍ୟତା ॥

ପ୍ରତିମା ଉପରେ ପ୍ରତିଷ୍ଠିତ ବିବରଣୀର ତ୍ରୁଟି ମାନସିକ ଜୀବନର ବିଳାସରୂପେ ପ୍ରତିମାମାନ ॥ ତତ୍ଜନିତ ସଙ୍କଟ ॥ ରସେଲ୍—ପ୍ରତୀକ୍ଷା ପରି ଏକ ଦୁରୂହ କ୍ଷେତ୍ରରେ ନିର୍ଦ୍ଦେଶର ପ୍ରସଙ୍ଗବାଦର ଉଦାହରଣ ସହ ବ୍ୟାଖ୍ୟା-ନିର୍ଦ୍ଦେଶର ସତ୍ୟତା ଓ ମିଥ୍ୟାତ୍ୱ ହେଉଛି ଏକ ପ୍ରସଙ୍ଗର କେବଳ ପୌନଃପୁନିକ ସଂଘଟନ ବା ଅସଂଘଟନ ସମ୍ବନ୍ଧୀୟ ଏକ ପ୍ରଶ୍ନ—ଯାହାର ସଙ୍କେତମାନ ହିଁ ବିଶ୍ୱାସ ସେହି ପ୍ରତୀକ୍ଷା କ୍ଷେତ୍ରକୁ ଏହି ମତର

ସଂପ୍ରସାରଣ, ପୁଣି ବିଶେଷରୁ ବିଶେଷ ସମ୍ବନ୍ଧରେ ବ୍ୟାଖ୍ୟାକରଣର ସମସ୍ତ କ୍ଷେତ୍ରକୁ ଏହି ମତର ସଂପ୍ରସାରଣ ॥ ସାଧାରଣ ନିର୍ଦ୍ଦେଶମାନଙ୍କ ସଂପ୍ରସାରଣ ॥ ଆଦିମ ନିର୍ଦ୍ଦେଶମାନଙ୍କ ସାମାନ୍ୟ ଓ ବିଶେଷ ତର୍କଶାସ୍ତ୍ରୀୟ ପ୍ରତୀକାତ୍ମକ ସାମାନ୍ୟ ଓ ବିଶେଷ ନୁହେଁ—ସାମାନ୍ୟ ନିର୍ଦ୍ଦେଶମାନଙ୍କ ସନ୍ତିାବଳୀ ॥ ଅନ୍ତର୍ଭୁକ୍ତ ଓ ଅଣ-ଅନ୍ତର୍ଭୁକ୍ତ ନିର୍ଦ୍ଦେଶମାନ ଅର୍ଥାତ୍ ସମସ୍ତ ଓ କେତେକ ପ୍ରତି ନିର୍ଦ୍ଦେଶମାନ ॥ ପ୍ରସଙ୍ଗ ସମ୍ବନ୍ଧୀୟ ଏକ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ହେଉଛି ମନସ୍ତତ୍ତ୍ୱର ଏକ ଭବିଷ୍ୟତ୍ କାର୍ଯ୍ୟ ॥

ମିଥ୍ୟା ବିଶ୍ୱାସର ନିର୍ଦ୍ଦେଶ୍ୟ ॥ ନିର୍ଦ୍ଦେଶରୂପେ ପ୍ରତିଜ୍ଞପ୍ତି; ଅର୍ଥାତ୍ ମାନସିକ ପ୍ରଣାଳୀମାନଙ୍କ ସମ୍ବନ୍ଧାତ୍ମକ ବୈଶିଷ୍ଟ୍ୟ । ନିର୍ଦ୍ଦେଶମାନଙ୍କ ଗଠନରୂପେ 'ତାର୍କିକ ଆକାର'—ମିଶ୍ର ନିର୍ଦ୍ଦେଶରେ ନିର୍ଦ୍ଦେଶମାନଙ୍କ ଅନ୍ତର୍ଭୁକ୍ତି ॥ ସମସ୍ତ ଜଟିଳ ନିର୍ଦ୍ଦେଶ ସରଳ ନିର୍ଦ୍ଦେଶମାନଙ୍କୁ, ଅର୍ଥାତ୍ ଅନିର୍ଦ୍ଦିଷ୍ଟ ଓ ସତ୍ୟ ହୋଇଥିବା ପ୍ରତ୍ୟୟ ଓ ସଂପ୍ରତ୍ୟୟ-ମାନଙ୍କୁ ବିଶ୍ଳେଷଣୀୟ ॥ କେବଳ ଜଟିଳତା ଓ ଭାବାତ୍ମକ-ସଂକଳ୍ପମୂଳକ ବୈଶିଷ୍ଟ୍ୟରେ ହିଁ ପ୍ରତ୍ୟୟ ଓ ବିଶ୍ୱାସ ପରସ୍ପର ପୃଥକ୍—ନିର୍ଦ୍ଦେଶର ନିର୍ଦ୍ଦିଷ୍ଟତା କେବଳ ଜଟିଳତା ମାଧ୍ୟମରେ ହିଁ ଲଭ୍ୟ ॥ ସତ୍ୟ ସରଳ ନିର୍ଦ୍ଦେଶମାନଙ୍କ ଦ୍ୱାରା ଗଠିତ ମିଥ୍ୟା ନିର୍ଦ୍ଦେଶ ॥ ମିଶ୍ର ମିଥ୍ୟା ବିଶ୍ୱାସମାନଙ୍କ ଉଦାହରଣ ॥ ଆଧୁନିକ ବୈଜ୍ଞାନିକ ଅଭିବୃତ୍ତିମାନଙ୍କ ସହିତ ନିର୍ଦ୍ଦେଶର ପ୍ରସଙ୍ଗବାଦର ସଙ୍ଗତି—ପ୍ରସଂଗବିଦ୍ୟତାର ମତବାଦ ଉପରେ ତାହାର ନିର୍ଭରଶୀଳତା ॥ ପ୍ରସଂଗବିଦ୍ୟତାର ଏକ ମତବାଦ ଗଠନ ଦିଗରେ କେତେକ ସୂଚନା ॥ ଭ୍ରାନ୍ତ ଅର୍ଥକରଣ, ପ୍ରାସଙ୍ଗିକତା, ସଂବେଗାତ୍ମକ ବାଧା ॥

# ୪ର୍ଥ ପରିଚ୍ଛେଦ

## ପ୍ରତ୍ୟକ୍ଷଣରେ ସଂକେତାବଳୀ

ପ୍ରତ୍ୟକ୍ଷଣରେ ବ୍ୟାଖ୍ୟା ସିଦ୍ଧାନ୍ତର ପ୍ରୟୋଗ । 'ଆମେ କଣ ଦେଖୁଁ ?'—ପ୍ରଶ୍ନର ଅସୁବିଧାଗୁଡ଼ିକ ଭନ୍ନିହିତ ସଂକେତ ପରିସ୍ଥିତିକୁ ଅବହେଳା କରିବା ହେତୁ ଜାତ; ହେଲ୍ମହୋଲ୍ଜ୍ ॥ ଏଗୁଡ଼ିକ ମନ ଦ୍ରୁତାକାତ୍ମକ ପ୍ରଣାଳୀ ହେତୁରୁ ମଧ୍ୟ ଜାତ ହୁଏ ॥

ଅର୍ଥ କରାଯାଉଥିବା ପ୍ରାଥମିକ ସଂକେତ ରୂପେ ଆମ ଇନ୍ଦ୍ରିୟମାନଙ୍କ ପରିବର୍ତ୍ତନ ॥ ସ୍ନାୟୁମାନଙ୍କରେ ସଂଘଟିତ ଏକ ଘଟଣାରୂପେ ସାକ୍ଷାତ ଅବବୋଧ—ଜଡ଼ବାଦ ଦୋଷାରୋପର ଖଣ୍ଡନ ॥ ଏହି ମତଟି ହେଉଛି ଏ ପର୍ଯ୍ୟନ୍ତ ମିଳିଥିବା ସାକ୍ଷ୍ୟ ପ୍ରମାଣ

ସଙ୍କେତ ନିର୍ଦ୍ଦେଶମାନଙ୍କ ଏକ ସର୍ବାଧିକ ବ୍ୟାପକ ସମ୍ଭବ ଗଠନ-ମାନ । ସୁତରାଂ ବର୍ତ୍ତମାନ ଅବସ୍ଥାରେ ଏହା ଅଖଣ୍ଡନୀୟ ।। ଉପସ୍ଥିତ ସଙ୍କେତ ଉନ୍ମୋଚନ ଦ୍ୱାରା କେତେକ ପ୍ରସିଦ୍ଧ ବିରୋଧାଭାସର ନିରାକରଣ ।। ସମ୍ଭବତଃ ଏକ ଅଣ-ତତ୍ତ୍ୱଶାସ୍ତ୍ରୀୟ ପଦ୍ଧତିରୂପେ ପ୍ରତୀକମାନଙ୍କ ଏ ପ୍ରକାର ସମ୍ପ୍ରସାରଣ ।।

## ୫ମ ପରିଚ୍ଛେଦ

### ପ୍ରତୀକପଦ୍ଧତିର ସୂତ୍ରାବଳୀ

ଭାବ ଆଦାନ ପ୍ରଦାନର ସ୍ୱୀକାର୍ଯ୍ୟମାନ—ସୁସଙ୍ଗତ ପ୍ରତୀକାନୁଭବ କରଣର ବିଜ୍ଞାନ ରୂପେ ତର୍କଶାସ୍ତ୍ର ।।

ଏକତ୍ୱ ସୂତ୍ର । ଗାଣିତିକ ପ୍ରତୀକମାନଙ୍କ ସ୍ୱାତନ୍ତ୍ର୍ୟ—ଗଣିତର ସ୍ୱଭାବ ।। ଭିଟ୍‌ଗେନ୍‌ଷ୍ଟାଇନ୍, ରଗ୍‌ନାନୋ, ଜେମସ୍ ମିଲ୍ ।। ନିର୍ଦ୍ଦେଶମାନଙ୍କ ଏକରୂପତା ।। ପ୍ରତୀକ ପ୍ରତିସ୍ଥାପନ ।।

ସ୍ୱକୀୟ ସୂତ୍ର । ନିର୍ଦ୍ଦେଶର ତାଦାତ୍ମ୍ୟ ଓ ନିର୍ଦ୍ଦେଶ୍ୟର ତାଦାତ୍ମ୍ୟ-ଆଲୋଚନା କ୍ଷେତ୍ରରେ ଅସୁବିଧା ।।

ସମ୍ପ୍ରସାରଣ ସୂତ୍ର । 'ଦର୍ଶନ'ର ଉତ୍ସ—ନିର୍ଦ୍ଦେଶର ସ୍ତର—ନିହିତ ସଙ୍କେତ ପରିସ୍ଥିତିକୁ ସମ୍ପ୍ରସାରଣ ପରିସ୍ଫୁଟ କରିବା ଆବଶ୍ୟକ । ପ୍ରତୀକାତ୍ମକ ଅତିବୃଦ୍ଧି ଓ ସଂକ୍ଷିପ୍ତୀକରଣ—'ସାମାନ୍ୟ' ଗୁଡ଼ିକ ହେଉଛି ପ୍ରତୀକାତ୍ମକ ସୁବିଧାଜନକ ଉପାୟ—ସତ୍ତା ଅଧିଷ୍ଠିତ ଏକ ଜଗତର ମିଥ୍ୟା ପ୍ରତୀକ ।। ରସେଲ୍ ।। ଉପକରଣ ରୂପେ ଭାଷା ।। ମିଥ୍ୟା ପ୍ରତୀକଠାରୁ ଅଯଥାର୍ଥ ପ୍ରତୀକର ପାର୍ଥକ୍ୟ ପ୍ରଦର୍ଶନ—ଆଲୋଚ୍ୟ ମଣ୍ଡଳ ।।

ବାସ୍ତବତା ସୂତ୍ର । ନିର୍ଦ୍ଦେଶ୍ୟର ଆବିଷ୍କାର ପ୍ରଣାଳୀ ସନ୍ନିକଟ ନିର୍ଦ୍ଦେଶ୍ୟ ।। ପ୍ରଣାଳୀର ଉଦାହରଣମାନ ।।

ସଙ୍ଗତି ସୂତ୍ର । ନିରର୍ଥକତା ଓ 'ବିପ୍ରତିଷେଧ'ର ନିରାକରଣ । ଛନ୍ଦର ନିୟମାବଳୀ ।।

ଐକ୍ୟକତା ସୂତ୍ର । ନିର୍ଦ୍ଦେଶ୍ୟର 'ସ୍ଥାନ' । ପ୍ରତୀକାତ୍ମକ ଉପକରଣରୂପେ 'ସ୍ଥାନ' । ମିଥ୍ୟା ପ୍ରତୀକସୃଷ୍ଟିମାନଙ୍କ ଭାଷାନ୍ତରୀକରଣ ଓ ସମ୍ପ୍ରସାରଣ-ଶିକ୍ଷାଦାନ ଓ ବାଦାନୁବାଦରେ ସମ୍ପ୍ରସାରଣର ଗୁରୁତ୍ୱ ।।

# ଷଷ୍ଠ ପରିଚ୍ଛେଦ

## ସଂଜ୍ଞା

ସଂଜ୍ଞା ସିଦ୍ଧାନ୍ତ କେତୋଟି ଅସୁବିଧାର ସମ୍ମୁଖୀନ ॥ (i) 'ବାଚନିକ' ଓ 'ବାସ୍ତବ' ସଂଜ୍ଞା ॥ (ii) ସଂଜ୍ଞା ଓ ବିବୃତି (iii) ତତ୍କାଳ କାର୍ଯ୍ୟସାଧକ ସଂଜ୍ଞା—ପ୍ରସଙ୍ଗ କ୍ଷେତ୍ର (v) ବସ୍ତ୍ୱର୍ଥିକ ଓ ଗୁଣାର୍ଥିକ ସଂଜ୍ଞା ॥

ସଂଜ୍ଞା ପ୍ରବିଧି—ପ୍ରସ୍ଥାନ ବିନ୍ଦୁର ନିର୍ବାଚନ, ଯାହା ସହିତ ସନ୍ଦେହାତ୍ମକ ନିର୍ଦ୍ଦେଶ୍ୟମୂଳକ ସଂଯୋଗ କରାଯିବ—ମୌଳିକ ସମ୍ବନ୍ଧର ସ୍ୱରୂପ ସଂଖ୍ୟା ସ୍ୱଳ୍ପ—ଏହାର କାରଣମାନ ॥ ପ୍ରସ୍ଥାନ ବିନ୍ଦୁମାନଙ୍କ ବିଶୃଙ୍ଖଳ ନୀତି ॥ ଇଙ୍ଗିତ ଭାଷାର ସୁବିଧାମାନ ॥ ଜଟିଳ ଓ ପରୋକ୍ଷ ସମ୍ବନ୍ଧମାନ ॥ ସଂଜ୍ଞାର ସାଧାରଣ ପନ୍ଥାମାନଙ୍କ ବର୍ଣ୍ଣନ ॥

ଆଲୋଚନା କ୍ଷେତ୍ରରେ ଏହି ପ୍ରବିଧିର ପ୍ରୟୋଗ—ଗୋଟିଏ ପ୍ରତୀକର ଏକମାତ୍ର ସଂଜ୍ଞା ଅନ୍ୱେଷଣ ଦୋଷ—ସୁସଙ୍ଗତ ଓ ସାମଗ୍ରିକ ସଂଜ୍ଞା ॥ ଅଣପ୍ରତୀକାତ୍ମକ ଅର୍ଥାତ୍ ଅସଂଜ୍ଞେୟ ପଦ ॥ 'ଭଲ' ହେଉଛି ଏହାର ଦୃଷ୍ଟାନ୍ତ ॥ ଶବ୍ଦସମ୍ବାଦ ଉପରେ ଉଦ୍ଦେଶ୍ୟର ପ୍ରଭାବ ॥ ବିଭିନ୍ନ ବ୍ୟବହାରରେ ସାଧାରଣ ଉପାଦାନ ଅନ୍ୱେଷଣମୂଳକ ଭ୍ରାନ୍ତି । ଏହି ଅଭ୍ୟାସର କାରଣମାନ ॥ ନୂତନ ଶବ୍ଦମାନ ପ୍ରବେଶ କରାଇବାରେ ଅସୁବିଧା ॥ ପୃଥକ୍-କରଣ ପଦ୍ଧତି ॥ ଅନୁଭୂତିଲବ୍ଧ ନିୟମମାନ—ବାଦବିବାଦଗତ ଛଳମାନଙ୍କ ନାମକରଣ—ସୋଫେନ୍ ହାଞ୍ଜିଆରଙ୍କ ପ୍ରସ୍ତାବ ॥ ତିନୋଟି ଚାତୁରୀକତା ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଧାରଣ; ଧ୍ୱନ୍ୟାତ୍ମକ (ମିଲ୍‌ଙ୍କ ବ୍ୟବହାର); ବସ୍ତୁକରଣମୂଳକ ଚାତୁରୀକତା; ଦ୍ୱୈତାର୍ଥକ ଚାତୁରୀକତା ॥ ବାଦାନୁବାଦ କ୍ଷେତ୍ରରେ ଅସଦାଚରଣ ବିରୁଦ୍ଧରେ ଅନ୍ୟାନ୍ୟ ସୁରକ୍ଷା ବ୍ୟବସ୍ଥା । ସଙ୍କଟଜନକ ଶବ୍ଦାବଳୀ: ଉତ୍ତେଜକ, ଅପଭ୍ରଂଶ, ଉଦାସୀନ (ମ୍ୟେଥ୍ୟୁ ଆର୍ନଲ୍‌ଡ୍) ଭ୍ରମଣଶୀଳ (ଲକ୍) ॥ ପରବର୍ତ୍ତୀ ନିଷ୍ପ୍ରବିଧିର ଉପାଦେୟତା ॥

# ୭ମ ପରିଚ୍ଛେଦ

## ସୌନ୍ଦର୍ଯ୍ୟର ଅର୍ଥ

ସୌନ୍ଦର୍ଯ୍ୟ ସମ୍ବନ୍ଧରେ ଯୁଗ ଯୁଗ ଧରି କରାଯାଉଥିବା ଆଲୋଚନା ହେଉଛି ସଂଜ୍ଞା ସିଦ୍ଧାନ୍ତକୁ ପରୀକ୍ଷା କରି ଦେଖିବାର ଏକ ଯଥୋପଯୁକ୍ତ କ୍ଷେତ୍ର—ସୌନ୍ଦର୍ଯ୍ୟବିଜ୍ଞାନରେ ବିଶୃଙ୍ଖଳା ॥ ରୁପର୍ଟ ବ୍ରୁକ୍; ବେନେଡେଟୋ କ୍ରୋଚେ ॥ ଶବ୍ଦଟିର ବ୍ୟବହାରମାନଙ୍କ

ପୃଥକ୍କରଣ ॥ ଏହି ବ୍ୟବହାରମାନଙ୍କ ପାରସ୍ପରିକ ସମ୍ବନ୍ଧ ॥ ସମକାଳୀନ ଓ ପାରମ୍ପରିକ ସମ୍ବନ୍ଧଯୁକ୍ତ ପଦମାନ ॥

ଭାଷାର ବହୁବିଧ କାର୍ଯ୍ୟ—ସର୍ବୋତ୍ତମ ସମାଲୋଚକଙ୍କ କ୍ଷେତ୍ରରେ ଆପାତ-ନିରର୍ଥକତାର ପୁନରାବୃତ୍ତି; ଲଂଗିନସ୍, କଲେରିଜ, ବ୍ରାଡଲେ, ମେକେଲ ॥ ଶବ୍ଦମାନଙ୍କ ପ୍ରତୀକାତ୍ମକ ଓ ସଂବେଗାତ୍ମକ ବ୍ୟବହାର ଉକ୍ତି ଓ ସନ୍ନିବଦ୍ଧ ଅନୁରୋଧ—ବକ୍ତା ଓ ଶ୍ରୋତା ॥ ପ୍ରତୀକାତ୍ମକ ଓ ସଂବେଗାତ୍ମକ କାର୍ଯ୍ୟଦ୍ୱୟ ପରସ୍ପର ପୃଥକ୍—ପରୀକ୍ଷା ପଦ୍ଧତି ରୂପେ ସତ୍ୟତାବାଦ—ଏହି ପରୀକ୍ଷା ପଦ୍ଧତି ପ୍ରୟୋଗରେ ସଙ୍କଟ ॥

ବୈୟାକରଣ ମାନଙ୍କ ଦ୍ୱାରା ଏହି ବିବିଧତା ଅବହେଳିତ; ଫନ ଡେଆର ଗେବେଲେନସ୍ ଭେନଡ୍ରେଜ୍ ॥ କଳ୍ପନାତ୍ମକ ଅଧ୍ୟୟନ ପଦ୍ଧତି ॥ ବେର୍ଗସଁ, ଷ୍ଟିଫେନ୍ ॥ ବୁଦ୍ଧି ବନାମ ସ୍ୱଜ୍ଞା ସମସ୍ୟାର ସମାଧାନ ॥ ସୌନ୍ଦର୍ଯ୍ୟବିଜ୍ଞାନମୂଳକ ଅବବୋଧ ରୂପେ 'ଜ୍ଞାନର କାର୍ଯ୍ୟ ତୁଲାଉଥିବା ବସ୍ତୁ' ॥ ସମନ୍ୱୟ ହିସାବରେ ଶାନ୍ତି ଓ ସନ୍ତୋଷ—ଭାଷାର ବ୍ୟବହାର ଦ୍ୱୟ ମଧ୍ୟରେ ପାରସ୍ପରିକ ବାଧା ॥ ଡି. ଏଇଚ୍. ଲରେନ୍ସ ଓ ସୂର୍ଯ୍ୟ ॥

## ୮ମ ପରିଚ୍ଛେଦ
## ଦାର୍ଶନିକମାନଙ୍କ ଅର୍ଥ

ଦାର୍ଶନିକମାନେ ଅର୍ଥ ପ୍ରତି ଧ୍ୟାନ ଦେଇନାହାନ୍ତି ॥ ମାଇଣ୍ଡ ପତ୍ରିକାରେ ପ୍ରକାଶିତ ୧୯୨୦-୨୧ରେ କରାଯାଇଥିବା ତର୍କାଲୋଚନାର ସାରାଂଶ; ସିଲର୍, ରସେଲ୍, ଜୋଆକିମ୍, ସିଜୱିକ୍, ଷ୍ଟ୍ରଙ୍ଗ ॥ ସମସାମୟିକ ଭାବେ ଟ୍ରେନ୍ ପତ୍ରିକାରେ ପ୍ରକାଶିତ ବାଗ୍‌ଘାତ ସମ୍ବନ୍ଧୀୟ ଆଲୋଚନା—ସ୍ନାୟୁ ବିଜ୍ଞାନବିଦ୍‌ଙ୍କୁ ସାହାଯ୍ୟ କରିବାରେ ପ୍ରଚଳିତ ମନୋବିଜ୍ଞାନର ଅସାମର୍ଥ୍ୟ; ପାର୍ଟନସ୍ ॥

ନିକଟ ଅତୀତରେ ଆମେରିକୀୟ ଅବଦାନ—ସମୀକ୍ଷାତ୍ମକ ବାସ୍ତବବାଦୀ ବୃନ୍ଦ ॥ ସେମାନଙ୍କ ଆଲୋଚନାରେ 'ଅର୍ଥ' ପଦ ସର୍ବତ୍ର ବିଦ୍ୟମାନ—ଡ୍ରେକ୍, ଲଭଜଏ, ପ୍ରେଟ, ରୋଜର୍ସ, ସାନ୍ତାୟନା, ସେଲର୍ସ, ଷ୍ଟ୍ରଙ୍ଗ—ସମୀକ୍ଷାରହିତଭାବେ 'ଅର୍ଥ' ଶବ୍ଦର ବ୍ୟବହାର ହେଉଛି ସେମାନଙ୍କ ଏକତାର ମୁଖ୍ୟ ସଂଯୋଜକ ॥ ମୁ୍ୟନ୍‌ଷ୍ଟେରବର୍ଗଙ୍କ ରଚନାରେ ଏହା ସର୍ବାଧିକ କଳଙ୍କିତ ॥ ମୁ୍ୟନ୍‌ଷ୍ଟେରବର୍ଗଙ୍କ ପ୍ରଶସ୍ତି ଗାନ, ଅଧ୍ୟାପକ ମୁଅର ॥ ମୁଅରଙ୍କର ଶବ୍ଦ ସମ୍ଭାର ॥

ଆହୁରି ଅଧିକ ବିଲକ୍ଷଣମୂଳ ଦୃଷ୍ଟାନ୍ତ; ବ୍ରେଡ, ନେଟେଲ୍‌ସିପ, ହାଲଡେନ୍, ରସେଲ୍ ।। କନକ ।। ସ୍ୱୀକୃତିପ୍ରାପ୍ତ ମତତନ୍ତ୍ର; ସାତଜଣ ଅଧ୍ୟାପକ ।। ମନୋବିଶ୍ଳେଷଣ; ସୂଚନମ୍ । ଅର୍ଥନିଷ୍ଠାବାଦୀଗଣ ।। ଥିଓହ୍ୱାସିକଗଣ । ସର୍ବାଧିକ ସୁସ୍ପଷ୍ଟ ଭାବେ ଚିନ୍ତା କରୁଥିବା ବ୍ୟକ୍ତିମାନେ ମଧ୍ୟ; ଜି. ଇ. ମୁଅର ।। କଳାକାର, ଈଶ୍ୱରବିଜ୍ଞାନବିଦ୍ ଓ ଅନ୍ୟମାନେ । ସମ୍ବେଗାତ୍ମକ ଦୃଢୋକ୍ତିର ସମର୍ଥନ ସ୍ୱର ଲହରୀ ।।

## ୯ମ ପରିଚ୍ଛେଦ

## ଅର୍ଥର ଅର୍ଥ

ଦାର୍ଶନିକମାନଙ୍କ ଭାଷା-ଅଭ୍ୟାସର ଉନ୍ନତିବିଧାନର ବାଞ୍ଛନୀୟତା—୭ମ ପରିଚ୍ଛେଦରେ ଯେପରି କରାଯାଇଛି, ସେହିପରିଭାବେ ସଂଜ୍ଞାମାନଙ୍କ ଏକ ତାଲିକା ପ୍ରସ୍ତୁତି ।। ଷୋହଳଗୋଟି ମୁଖ୍ୟ ସଂଜ୍ଞାର ନିଃସରଣ ।। କ୍ରମାନ୍ୱୟରେ ସେଗୁଡ଼ିକର ଆଲୋଚନା । ଶବ୍ଦଗୁଡ଼ିକର ଏକ ଆନ୍ତରିକ ଗୁଣ ରୂପେ (୧ମ), ଏବଂ ଏକ ଅବିଶ୍ଳେଷଣୀୟ ସମ୍ବନ୍ଧରୂପେ (୨ୟ) ଅର୍ଥର ଆଲୋଚନା ଅନାବଶ୍ୟକ ବୋଲି ବିବେଚିତ । ଆଭିଧାନିକ ଅର୍ଥ (୩ୟ)ର ବିଷୟ ଆପାତତଃ ସ୍ଥଗିତ । ତାର୍କିକ ବ୍ୟଞ୍ଜିମତା ରୂପେ ଲକ୍ଷଣାର୍ଥ (୪ର୍ଥ) ଏବଂ ବାଚ୍ୟାର୍ଥ; ଜନସନ୍, ରସେଲ୍, ମିଲ୍ ।। ବସ୍ତୁକୃତ ଲକ୍ଷଣାର୍ଥ ରୂପେ ସାର (୫ମ) ।। ପ୍ରକ୍ଷେପ କ୍ରିୟା ରୂପେ ଅର୍ଥ (୬ଷ୍ଠ) ହେଉଛି ଏକ ରୂପକ, ଶିଲର୍ । ଅଭିପ୍ରାୟ ରୂପେ (୭ମ) ଅର୍ଥର ବିଶ୍ଳେଷଣ; ଜୋସେଫ ଗାର୍ଡିନର୍ ।। ଭ୍ରାନ୍ତନିର୍ଦ୍ଦେଶ ଜନିତ ଜଟିଳତା ।। ଭାବାତ୍ମକ-ସଂକଳ୍ପମୂଳକ ଦିଗ ।। ଗୋଟିଏ ସଂସ୍ଥିତିରେ ସ୍ଥାନରୂପେ ଅର୍ଥ (୮ମ) ।। ଏକ ଅନିର୍ଦ୍ଦିଷ୍ଟ ବ୍ୟବହାର । ଏହା ସମସ୍ତ ସମୟରେ ବ୍ୟାବହାରିକ ପରିଣତି ରୂପେ ଅର୍ଥ (୯ମ)କୁ ସଙ୍କୁଚିତ ହୋଇଥାଏ ।। ଉଇଲିଅମ ଜେମସ୍ ଓ ଅର୍ଥ କ୍ରିୟାବାଦୀଗଣ । ପକ୍ଷାନ୍ତରେ, ଯାହା ନିହିତ, ସେହିରୂପେ ଅର୍ଥ (୧୦ମ)କୁ ଏହା ପରିବର୍ତ୍ତିତ ହୋଇଥାଏ । ସଂବେଗାତ୍ମକ ସହଗୃହୀ ରୂପେ ଅର୍ଥ (୧୧ଶ) ।। ଅର୍ବାନ ।।

ପ୍ରାକୃତିକ ସଂକେତମାନଙ୍କ ସୂଚନ (୧୨ଶ)—ଉଦାହରଣମାନ ।। ମନୋବିଶ୍ଳେଷକଙ୍କ 'ର କାରଣ' ରୂପେ 'ଅର୍ଥ' । ନିର୍ଦ୍ଦେଶର ପ୍ରସଙ୍ଗବାଦରେ ମନସ୍ତାତ୍ତ୍ୱିକ ପ୍ରସଙ୍ଗ ରୂପେ ଅର୍ଥ (୧୩ଶ କ) । ଏହି ମତବାଦର ଆହୁରି ଅଧିକ ବ୍ୟାଖ୍ୟା ।। ଦୃଷ୍ଟାନ୍ତମାନ ଓ ଆପତ୍ତିମାନ । ଅନ୍ତର୍ନିରୀକ୍ଷଣ ଲବ୍ଧ ସାକ୍ଷ୍ୟ ପ୍ରମାଣଗୁଡ଼ିକର ସନ୍ତ୍ୟାପନ ପରୀକ୍ଷାର ଆବଶ୍ୟକତା ।।ଅବ୍ୟବହିତ ଦୃଢ଼ ବିଶ୍ୱାସ ସୈଦ୍ଧାନ୍ତିକ ନୁହେଁ । ଅପକର୍ଷଣମୂଳକ

ଚଳନ୍ତାରେ କାହିଁକି ପ୍ରତୀକମାନଙ୍କ ଉପରେ ଆମେ ଆସ୍ଥା ସ୍ଥାପନ କରିବା ଅନିବାର୍ଯ୍ୟ ।। ନିର୍ଦ୍ଦେଶର ପ୍ରସଙ୍ଗବାଦରେ ନିର୍ଦ୍ଦେଶ ରୂପେ ଅର୍ଥ (୧୩ଶ ଖ) । ସତ୍ୟର ସନ୍ତ୍ୱସମ୍ବନ୍ଧବାଦ ଅନାବଶ୍ୟକ । ବକ୍ତା ଓ ଶ୍ରୋତା ସମ୍ବନ୍ଧରେ ପୁନରାଲୋଚନା ।। ପ୍ରସଙ୍ଗମାନଙ୍କ ସୀମିତ-କରଣ ହେଉଛି ଖାଦ ବିନମସ୍ତ- ସିଦ୍ଧାନ୍ତ ନିମନ୍ତେ ଏକ ସମସ୍ୟା । ବକ୍ତା ଯାହାକୁ ନିର୍ଦ୍ଦେଶ କରିବା ଉଚିତ, ସେହି ରୂପେ ଅର୍ଥ (୧୪ଶ); ଉତ୍ତମ ବ୍ୟବହାର ।। ପ୍ରଙ୍ଗକର ନିର୍ଦ୍ଦେଶମାନ ଅନ୍ୟୋନ୍ୟ ସଂପାତୀ ହେବା ବିଷୟକୁ ଅଭିଧାନ ଲକ୍ଷ୍ୟ କରେ ।। ପ୍ରତୀକ ପରିସ୍ଥିତି ହେତୁ ଅର୍ଥରେ ଜଟିଳତା (୧୫ଶ ଓ ୧୬

## ୧୦ମ ପରିଚ୍ଛେଦ

### ପ୍ରତୀକ ପରିସ୍ଥିତି

ଶବ୍ଦଗୁଡ଼ିକର ବ୍ୟବହାର କ୍ଷେତ୍ରରେ ନିର୍ଦ୍ଦେଶର ପ୍ରସଙ୍ଗବାଦର ପ୍ରୟୋଗ— ଶ୍ରୋତା କ୍ଷେତ୍ରର ବିଚାର ପ୍ରଥମେ କରାଯିବା ଆବଶ୍ୟକ ।। ପ୍ରାଥମିକ ଅବସ୍ଥାରେ ଧ୍ୱନିଗୁଡ଼ିକୁ ଶବ୍ଦରୂପେ ଚିହ୍ନୋଟ କରାଯାଏ । ଏହା ଆବଶ୍ୟକ ରୂପେ ଜ୍ଞାତସାରରେ କରାଯାଇଥିବା ଏକ କ୍ରିୟା ନୁହେଁ । ଏହି କ୍ରିୟାଗୁଡ଼ିକ ଶୈଶବାବସ୍ଥାରେ ସମ୍ପାଦିତ ।। ବ୍ୟାଖ୍ୟାର ପ୍ରରମାନ ।।

ପ୍ରତୀକମାନଙ୍କ ଜଟିଳତା ଓ ନିର୍ଦ୍ଦେଶମାନଙ୍କ ଜଟିଳତା ମଧ୍ୟରେ କୌଣସି ନିବିଡ଼ ସମ୍ବାଦିତା ନାହିଁ ।। ବର୍ଣ୍ଣନାତ୍ମକ ଅଭିବ୍ୟକ୍ତି ନିମନ୍ତେ ଆବଶ୍ୟକ ହେଉଥିବା ପ୍ରସଙ୍ଗ-ମାନଙ୍କଠାରୁ ସ୍ୱକୀୟ ନାମ ନିମନ୍ତେ ଆବଶ୍ୟକ ହେଉଥିବା ପ୍ରସଙ୍ଗମାନ ଅଧିକ ସରଳ— କାରଣମାନ ଓ ଦୃଷ୍ଟାନ୍ତାବଳୀ ।। ଅପକର୍ଷଣର ସୁବିଧା ନିମନ୍ତେ ପ୍ରତୀକମାନଙ୍କ ବ୍ୟବହାର — ଶବ୍ଦଗୁଡ଼ିକର ଶିକ୍ଷା ଅନ୍ୟାନ୍ୟ ଶବ୍ଦ ମାଧ୍ୟମରେ ହୁଏ । ରୂପକ ହେଉଛି ଅପକର୍ଷଣର ଆଦିମ ପ୍ରତୀକାନ୍ୱିତକରଣ ।।

ବକ୍ତାଠାରେ ପ୍ରତୀକାନ୍ୱିତକରଣ ପ୍ରକ୍ରିୟା । ଏ ବିଷୟରେ ଜଣେ ଅନ୍ୟ ଜଣଂକ ଠାରୁ ସୁସ୍ପଷ୍ଟ ରୂପେ ପୃଥକ୍ ।। ପ୍ରତୀକ ଉପରେ ନିର୍ଦ୍ଦେଶର ବିଭିନ୍ନ ମାତ୍ରାର ନିର୍ଭର-ଶୀଳତା ।। ଏହି ପାର୍ଥକ୍ୟମାନଂକ ବ୍ୟାବହାରିକ ଗୁରୁତ୍ୱ ସମଧିକ ।। ବକ୍ତାର ବେଳେ-ବେଳେ ଶାବ୍ଦିକ-ସ୍ୱାଧୀନତା ଓ ବେଳେବେଳେ ଶାବ୍ଦିକ-ନିର୍ଭରଶୀଳତା ଥାଏ ।। ଏହି ପ୍ରକ୍ରିୟାମାନଂକ ଉପରେ ପ୍ରକୃତବିଜ୍ଞାନର ଆଲୋକପାତ—ବାଗ୍‌ଘାତ ।। ଅପାଫଲ୍ସର

ବିଭିନ୍ନ ସ୍ତର—ବ୍ୟାକରଣ ଉପରେ ଏହାର ପ୍ରଭାବ—ପ୍ରତୀକ ପଦ୍ଧତିର ପ୍ରାକୃତିକ ଇତିହାସ ରୂପେ ବ୍ୟାକରଣ—ଆଲୋଚ୍ୟ ମଣ୍ଡଳ ଉପରେ ଉତ୍ତମ ବ୍ୟବହାରର ନିର୍ଭରଶୀଳତା ।। ଏକ ଆଦର୍ଶ ବିଜ୍ଞାନ ରୂପେ ବ୍ୟାକରଣର ପ୍ରକୃତ କାର୍ଯ୍ୟ ।। ନିର୍ଦ୍ଦେଶାତ୍ମକ ଓ ସମ୍ବେଗାତ୍ମକ କାର୍ଯ୍ୟମାନଙ୍କ ସହିତ ଅସଂପୃକ୍ତଭାବେ ପ୍ରତୀକମାନଙ୍କ ଅଧ୍ୟୟନ ହେଉଛି କେବଳ ଏକ ଖେଳ-କୌତୁକ ।।

ଭାଷାର କାର୍ଯ୍ୟମାନଙ୍କ ବିବିଧତା । (i) ଯଥାଯଥ ପ୍ରତୀକାନ୍ୱିତକରଣ । (ii) ବକ୍ତାର ଶ୍ରୋତାଙ୍କ ପ୍ରତି ଅଭିବୃତ୍ତିର ସଂକେତ ରୂପେ ପ୍ରତୀକ ।। (iii) ନିଜର ନିର୍ଦ୍ଦେଶ୍ୟ ପ୍ରତି ଅଭିବୃତ୍ତିର ସଂକେତ ରୂପେ ପ୍ରତୀକ । (iv) ଉଦ୍ଦେଶ୍ୟ ପୂରଣର ଉପାୟ ରୂପେ ପ୍ରତୀକ । (v) ନିର୍ଦ୍ଦେଶରେ ସ୍ୱାଚ୍ଛନ୍ଦ୍ୟ ଓ ଅସ୍ୱାଚ୍ଛନ୍ଦ୍ୟର ସଂକେତ ରୂପେ ପ୍ରତୀକ ।।

ଭାଷାର କାର୍ଯ୍ୟମାନଙ୍କ ଏହା ସମ୍ଭବତଃ ଏକ ନିଃଶେଷୀ ତାଲିକା । ବାକ୍ୟ-ଆକାର ହେଉଛି ପ୍ରତୀକାନ୍ୱିତକରଣ ଓ ସଂବେଗାତ୍ମକ ବିନ୍ୟାସାବଳୀର ଏକ ସମନ୍ୱୟନ ।। ପାରସ୍ପରିକ କ୍ରିୟା-ପ୍ରତିକ୍ରିୟାର ଉଦାହରଣ ।। ଭାଷାନ୍ତରୀକରଣର ସମସ୍ୟାମାନ ।। ବୈୟାକରଣମାନଙ୍କ ଦ୍ୱାରା ଏହି ବିବିଧତା ଅବହେଳିତ ସମସ୍ତ ସମୟରେ କାର୍ଯ୍ୟ ଦୁଇଟି ସ୍ୱୀକୃତ ।। ଶ୍ରୋତା ଧରଟି ଉପେକ୍ଷିତ ବୋଲି ଦୋଷାରୋପ । ଭୁଣ୍ଡ୍‌ଟଙ୍କ ଅଭିବ୍ୟକ୍ତ (Ausdruckr) ବ୍ୟବହାର । ଶ୍ରୋତା-ସମ୍ବନ୍ଧରେ ଡିଟ୍ରିକ୍, ଫନ ହମବୋଲ୍‌ଡ୍‌ଟ, ଡ଼ି ସସର, ମାର୍ଟିନାକ୍ ଓ ଅନ୍ୟମାନଙ୍କ ମନ୍ତବ୍ୟ ।। ବୃନଟଙ୍କ ପଦ୍ଧତି ।।

ଭାଷାର କାର୍ଯ୍ୟଦ୍ୱୟ ମଧ୍ୟରେ ସମନ୍ୱୟନର ଉଦାହରଣମାନ । ଗୋଟିକୁ ଅନ୍ୟଠାରୁ ଗୌଣ କରିବା—କାବ୍ୟିକ ଭାଷା ଏହାର ମୁଖ୍ୟ ଦୃଷ୍ଟାନ୍ତ—କବିଙ୍କ ଶାବ୍ଦିକ ଅବଲମ୍ବନ—ଲଫକାଡ଼ିଓ ହେର୍ଣ୍ଣଙ୍କ ଦ୍ୱାରା ଶବ୍ଦଗୁଡ଼ିକର ବର୍ଣ୍ଣନା ।। ଶେଲି ଓ ବୃତକ ।। ଶବ୍ଦଗୁଡ଼ିକର ରାଗ, ଛନ୍ଦ ଯତିପାତାଦି ବିନ୍ୟାସ ଓ ଅନ୍ୟାନ୍ୟ ପରିଣତି ।। ରୂପକର ସଂବେଗାତ୍ମକ ବ୍ୟବହାର । ଯଥାଯଥ ପ୍ରତୀକାନ୍ୱିତ କରଣ ଉପରେ ଏହି ପରିଣତିମାନଙ୍କ ପ୍ରଭାବ ।। ଏହି ପ୍ରଭାବକୁ ବୁଝି ନ ପାରିବା ହେତୁରୁ ଉତ୍ପନ୍ନ ଗଣ୍ଡଗୋଳ ଗୁଡ଼ିକ ।।

ସମୂହଭାବେ ଭାଷାକୁ ଉତ୍ତମରୂପେ ବୁଝିବାର ସାମାଜିକ ଓ ବୈଜ୍ଞାନିକ ପରିଣତିମାନ—ଆହୁରି ଅଧିକ ଅନୁସନ୍ଧାନର ଅତ୍ୟାବଶ୍ୟକତା ।। ଏହି ସୁଯୋଗ ବର୍ତ୍ତମାନ ଉନ୍ମୁକ୍ତ । ଏକ ପୃଥକ୍ ବିଜ୍ଞାନର ସୃଷ୍ଟି—ଏହାର ପରିସର ଓ ଭବିଷ୍ୟତ ସୁଫଳ ।।

"ସମସ୍ତ ଜୀବନ୍ତ ଆମ ବଚନ ସମ୍ବନ୍ଧୀୟ ପ୍ରଶ୍ନକୁ—ଅର୍ଥାତ୍ ଆମ ଭାବବିନିମୟର ମାଧ୍ୟମକୁ ପ୍ରତ୍ୟାବୃତ୍ତ ହୁଏ ।"

—ହେନେରୀ ଜେମସ୍ ।

"ଭ୍ରାନ୍ତିର ଦେହ ଭାଷାରେ ରହିଥିଲେ, ତାହାକୁ ବିନାଶ କରିବା ଯେତେ କଷ୍ଟକର, ଅନ୍ୟ କୁଆପି ତାହାର ବିନାଶ ସେତେ କଷ୍ଟକର ନୁହେଁ ।"

ବେନଥାମ୍ ।

"ଆମକୁ ଭାଷା ବ୍ୟବହାର କରିବାକୁ ହିଁ ପଡ଼େ, ଯାହା ଆବଶ୍ୟକ ରୂପେ ପ୍ରାକ୍ ଅବଧାରିତ ପ୍ରତ୍ୟୟମାନଙ୍କ ଦ୍ୱାରା ଗଠିତ । ଅଜ୍ଞାତସାରରେ ଗୃହୀତ ହୋଇ ରହିଥିବା ଏ ପ୍ରକାର ଧାରଣାଗୁଡ଼ିକ ସର୍ବାପେକ୍ଷା ଅଧିକ ବିପଜ୍ଜନକ ।"

—ସଏନ କେଆର

"ଗୋଟିଏ ଭାଷା-ଗୋଷ୍ଠୀର ବୈୟାକରଣିକ ଗଠନସାଦୃଶ ହେତୁ ଗୋଟିଏ ପ୍ରକାର ଦାର୍ଶନିକ ପଦ୍ଧତିର ସମସ୍ତ ବିଷୟ ସାବଲୀଳଭାବେ ଗତିଶୀଳ ହୁଏ । କିନ୍ତୁ ଅନ୍ୟାନ୍ୟ ପ୍ରକାର ସମ୍ଭାବନା ପାଇଁ ସତେ ଯେପରି ଗତିପଥ ରୁଦ୍ଧ ।"

—ନିତ୍ସେ

"ଅନ୍ତତଃ ଯେଉଁ ବିଷୟଗୁଡ଼ିକରେ କୌଣସି ଗଭୀର ଭାବପ୍ରବଣତା ନଥିତ, ସେ ସମ୍ବନ୍ଧରେ ଜଣେ ଇଂରେଜ, ଜଣେ ଫରାସୀ, ଜଣେ ଜର୍ମାନ ଓ ଜଣେ ଇଟାଲୀୟ କୌଣସି ମତେ ସମ୍ପୂର୍ଣ୍ଣ ସମପ୍ରକାରରେ ଚିନ୍ତା କରିବାକୁ ସମର୍ଥ ହୋଇପାରନ୍ତି ନାହିଁ । ସେମାନଙ୍କ ବାଚନିକ ଉପାୟ ନଥାଏ ।"

— ଅଧ୍ୟାପକ ଜେ. ଏସ୍. ମେକେଞ୍ଜି ।

"ଆଦିମ ଚିନ୍ତାରେ ନାମ ଓ ନାମିତ ବସ୍ତୁ ଏପରିଭାବେ ପରସ୍ପରସଂପୃକ୍ତ ଯେ ଗୋଟିଏ ଅନ୍ୟଟିର ଅଂଶରୂପେ ବିବେଚିତ । ବସ୍ତୁଗୁଡ଼ିକଠାରୁ ଶବ୍ଦଗୁଡ଼ିକର ଅସଂପୂର୍ଣ୍ଣ ବିଚ୍ଛେଦ ସମ୍ଭବଭାବେ ଗ୍ରୀକ୍ ଚିନ୍ତାଧାରାର ଏକ ବୈଶିଷ୍ଟ୍ୟ ।"

—ହାର୍ବାର୍ଟ ସ୍ପେନସର୍ ।

"ଯେ କୌଣସି କିଛି ଗୋଟିକର ଏକ ନାମ ଦିଆଗଲେ, ତାହା ସ୍ୱାଧୀନ ତଥା ନିଜସ୍ୱ ସ୍ଥିତି ରହିଥିବା ଏକ ବସ୍ତୁ ବା ସତ୍ତା ହେବା ସୁନିଶ୍ଚିତ ବୋଲି ବିଶ୍ୱାସ କରିବା

ମଧ୍ୟ ଏକ ବଳିଷ୍ଠ ପ୍ରବୃତ୍ତି ହୋଇ ରହିଆସିଛି । ସେହି ନାମଦ୍ୱାରା ସୂଚିତ କୌଣସି ବାସ୍ତବ ବସ୍ତୁ ଯଦି ନ ମିଳେ, ତେବେ ସେହି କାରଣରୁ ସେହିପରି କୌଣସି ବସ୍ତୁ ନାହିଁ ବୋଲି ମନୁଷ୍ୟମାନେ ମନେକରି ନାହାନ୍ତି । ସେମାନେ ବରଂ କଳ୍ପନା କରନ୍ତି ଯେ ତାହା ହେଉଛି ଅସାଧାରଣରୂପେ ଦୁର୍ବୋଧ ଓ ରହସ୍ୟ ଜନକ କୌଣସି ଏକ ମହାନ୍ ବସ୍ତୁ, ଯାହା ଇନ୍ଦ୍ରିୟଗ୍ରାହ୍ୟ ହେବା ସମ୍ଭବପର ନୁହେଁ ।"

**ଜେ. ଏସ୍. ମିଲ୍ ।**

"ବୈୟାକରଣମାନଙ୍କ ଅଧ୍ୟୟନୀୟ ପରିସରରେ ଅନଧିକାର ପ୍ରବେଶ କରି ଶବ୍ଦସଂବନ୍ଧୀୟ ବାଦବିବାଦରେ ଦାର୍ଶନିକମାନେ ନିଜକୁ ନିୟୋଜିତ ରଖିବା ବିଷୟଠାରୁ ଆଉ ଅଧିକ ପ୍ରଥାଗତ ବିଷୟ କିଛି ନାହିଁ । କିନ୍ତୁ ସେତେବେଳେ ସେମାନେ ମନେକରୁଥାନ୍ତି ଯେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଓ ଉଦ୍‌ବେଗମୂଳକ ବିଷୟର ବାଦାନୁବାଦରେ ସେମାନେ ବିନିଯୁକ୍ତ ରହିଛନ୍ତି ।"

**—ହ୍ୟୁମ୍ ।**

"ଅନ୍ୟ ଲୋକେ ଯେଉଁ ଶବ୍ଦଗୁଡ଼ିକ ବ୍ୟବହାର କରନ୍ତି, ଠିକ୍ ସେହି ଶବ୍ଦଗୁଡ଼ିକୁ ବ୍ୟବହାର କରି ମନୁଷ୍ୟମାନେ ସନ୍ତୁଷ୍ଟ ରହନ୍ତି, ଯେତେ ଯେପରି ସେହି ଏକ ଧ୍ୱନି ଆବଶ୍ୟକରୂପେ ସେହି ଏକ ଅର୍ଥର ବାହକ ।"

**— ଲକ୍ ।**

"ଏକ ବାଚନିକ ଆଲୋଚନା ଗୁରୁତ୍ୱପୂର୍ଣ୍ଣ ହୋଇଥାଇପାରେ କିମ୍ବା ନ ହୋଇ ଥାଇପାରେ ; କିନ୍ତୁ ତାହା ଯେ ବାଚନିକ ଏହା ଜାଣି ରଖିବା ଅନ୍ତତଃ ବାଞ୍ଛନୀୟ ।"

**—ସାର୍ ଜି. କର୍ଣ୍ଣେୱାଲ୍ ଲିଉଇ ।**

"ବୈଜ୍ଞାନିକ ବାଦାନୁବାଦଗୁଡ଼ିକ ପ୍ରାୟଶଃ ଶବ୍ଦାର୍ଥସମ୍ବନ୍ଧୀୟ ମତଦ୍ୱୈଧରେ ପର୍ଯ୍ୟବସିତ ।"

**ଅଧ୍ୟାପକ ଏ. ଶୁଷ୍ଟେର୍**



# ପ୍ରଥମ ପରିଚ୍ଛେଦ

## ଚିନ୍ତା, ଶବ୍ଦ ଓ ବସ୍ତୁ

ଆସ, ଅଗ୍ନିର ଅନ୍ତୁର ନିକଟବର୍ତ୍ତୀ ହେବା, ତେବେ ଆମେ ଯାହା କହୁଛୁଁ, ତାହା ଦେଖିପାରିବା ।

—ଫାର୍ଣ୍ଣାଣ୍ଡୋପୋଙ୍କ ଦ ବ୍ରୁବକ୍

ଚିନ୍ତା ଉପରେ ଭାଷାର ପ୍ରଭାବ ବିଜ୍ଞ ଓ ଅଜ୍ଞ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଛି । ଅତି ପ୍ରାଚୀନ କାଳରୁ ଲାଓସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ—

"ଯେ ଜାଣେ ସେ କହେନା, ଯେ କହେ ସେ ଜାଣେନା ।"

ସମସ୍ତ ସମୟରେ ବିଜ୍ଞ ବ୍ୟକ୍ତିମାନେ ଏହି କ୍ଷେତ୍ରରେ ନିଜକୁ ସର୍ବାପେକ୍ଷା ଅଧିକ ଅଜ୍ଞ ବୋଲି ପ୍ରକୃତରେ ପ୍ରମାଣିତ କରିଦେଇଛନ୍ତି । ସୁପ୍ରସିଦ୍ଧ ବେଣ୍ଟଲି କେମ୍ବ୍ରିଜର ଟ୍ରିନିଟି କଲେଜର ଅଧ୍ୟକ୍ଷ ଥିଲେ, ବ୍ରିଷ୍ଟଲର ଆର୍କଡେକନ ଥିଲେ ଏବଂ ଆହୁରି ଏହିପରି ଦୁଇଟି ପଦବୀର ଅଧିକାରୀ ଥିଲେ । ସେ ହିଁ କହିଥିଲେ—"ପ୍ରଳୟ ଆଗରୁ ଥିବା ବସ୍ତୁ ଓ ସ୍ଥାନମାନଙ୍କର ଯେଉଁ ନାମଗୁଡ଼ିକର ଉଲ୍ଲେଖ ଧର୍ମଶାସ୍ତ୍ରରେ ରହିଛି, ସେଥିରୁ ଆମ୍ଭେମାନେ ନିଶ୍ଚିତରୂପେ ଜାଣୁ ଯେ ମନୁଷ୍ୟ ସମାଜର ଆଦିମ ଭାଷା ହିବ୍ରୁ । ଅନ୍ୟ କୌଣସି ପ୍ରମାଣର ଆବଶ୍ୟକତା ଏଠାରେ ନାହିଁ ।" ଭାଷା ଓ ତାହାର ଅର୍ଥବିଷୟକ ଅନ୍ୟ କେତେକ ଅଭିମତ ସଂଗ୍ରହ କରାଯାଇ ବିପରୀତ ପୃଷ୍ଠାରେ ଉଲ୍ଲିଖିତ ହୋଇଛି । ବିଜ୍ଞତାସୂଚକ ହେଉ ବା ଅଜ୍ଞତାସୂଚକ ହେଉ, ସେଗୁଡ଼ିକ ଅନ୍ତତଃ ଏପରି କେତେକ ପ୍ରଶ୍ନ ଉତ୍ଥାପନ କରନ୍ତି, ଯାହାର ଉତ୍ତର ଶୀଘ୍ର ବା ବିଳମ୍ବରେ ଦେବା ବାଞ୍ଛନୀୟ । ଅବଶ୍ୟ ଏଇ କେତେବର୍ଷ ମଧ୍ୟରେ ସାଧାରଣତଃ ସ୍ୱୀକାର କରାଯାଇଛି ଯେ ଅର୍ଥଗତ ଏହି ସମସ୍ୟାର ସ୍ଥିତି ଓ ପ୍ରାଧାନ୍ୟ ରହିଛି । କିନ୍ତୁ ଯେଉଁମାନେ ଏହାର ସମାଧାନ ପାଇଁ ଚେଷ୍ଟା କରିଛନ୍ତି, କେତେକ ଦୁଃଖପ୍ରଦ ଆକସ୍ମିକ ଘଟଣା ହେତୁ ସେମାନେ ନିଜର ଇଚ୍ଛାକାଙ୍କ୍ଷା ପରିହାର କରିବାକୁ ପ୍ରାୟ ବାଧ୍ୟ ହୋଇଛନ୍ତି । ଏଥି ନିମନ୍ତେ ବାର୍ଦ୍ଧକ୍ୟ (ଯେପରି ଲାଇବ୍‌ନିଜ୍‌ଙ୍କ କ୍ଷେତ୍ରରେ) ଅଥବା ଦାରିଦ୍ର୍ୟ (ଯେପରି ସି. ଏସ୍. ପାସ୍ୱର୍ଣ୍ଣଙ୍କ କ୍ଷେତ୍ରରେ) ଅଥବା ଉଭୟ ବାର୍ଦ୍ଧକ୍ୟ ଓ ଦାରିଦ୍ର୍ୟ ଦାୟୀ । ଯେଉଁ ପ୍ରଣାଳୀରେ ଏହି ସମସ୍ୟାର ସମାଧାନ ଦିଗରେ ଚେଷ୍ଟା ଆବଶ୍ୟକ, ତାହା ମଧ୍ୟ ଏପର୍ଯ୍ୟନ୍ତ ସନ୍ଦେହାତ୍ମକ ହୋଇ ରହିଛି । ପ୍ରତ୍ୟେକ

ବିଜ୍ଞାନ ଏହି ଅପ୍ରିୟ କାର୍ଯ୍ୟ ତୁଲାଇବାର ଦାୟିତ୍ୱ ଅନ୍ୟ ବିଜ୍ଞାନ ଉପରେ ନିକ୍ଷେପ କରିବାକୁ ଉଦ୍ୟତ ହୋଇଛି । ତତ୍ତ୍ୱବିଜ୍ଞାନୀମାନେ ଯେଉଁସବୁ ଭ୍ରାନ୍ତିର ବଶବର୍ତ୍ତୀ ହୋଇଛନ୍ତି ଏବଂ ଯେଉଁସବୁ ବିଷୟ ବସ୍ତୁରକୁ ନେଇନାହାନ୍ତି, ପରବର୍ତ୍ତୀ ଆଲୋଚନାରେ ସେଥି ସହିତ ଆମ୍ଭମାନଙ୍କୁ ବହୁ ପରିମାଣରେ ସଂପୃକ୍ତ ହେବାକୁ ପଡ଼ିବ; ଭାଷାତତ୍ତ୍ୱବିଦ୍‌ଙ୍କର ମଧ୍ୟ ଏହି ଦୃଷ୍ଟିଣରେ ଅଂଶ ରହିଛି । କିନ୍ତୁ ଜଣେ ଭାଷାତତ୍ତ୍ୱବିତ୍ ହିଁ ନିକଟ ଅତୀତରେ ସମ୍ଭବତଃ ସୁସ୍ପଷ୍ଟ ଅନୁଭବ କରି ପାରିଛନ୍ତି ଯେ ଏଠାରେ ଏକ ଅଧିକ ବ୍ୟାପକ ଆଲୋଚନାର ଆବଶ୍ୟକତା ରହିଛି । ସ୍ୱର୍ଗତ ଡକ୍ଟର ପୋଷ୍ଟଗେଟ ଲେଖିଥିଲେ—"ଶବ୍ଦ ଓ ଘଟଣାର ସହସମ୍ବନ୍ଧମୂଳକ ପ୍ରଶ୍ନଠାରୁ ଅଧିକ ହୃଦୟସ୍ପର୍ଶୀ-ଅନୁଶୀଷା, ବିଶୃଙ୍ଖଳା ଓ ଅନିଷ୍ଟକାରକ ପ୍ରଶ୍ନ ମାନବଜାତିର ସମଗ୍ର ଇତିହାସରେ ନାହିଁ । 'ଧର୍ମ', 'ଦେଶପ୍ରେମ' ଓ 'ସମ୍ପତ୍ତି' ପରି ଶବ୍ଦମାନଙ୍କର ଉଲ୍ଲେଖ ହିଁ ଏହି ସତ୍ୟର ପ୍ରମାଣ ନିମନ୍ତେ ଯଥେଷ୍ଟ । ବ୍ୟାପକତମ ଅର୍ଥରେ ଶବ୍ଦ ଓ ଘଟଣା ଏହି ପଦ ଦୁଇଟି ବ୍ୟବହାର କରି ତନ୍ମଧ୍ୟସ୍ଥ ସହସମ୍ବନ୍ଧର ସ୍ୱଭାବ ଅନୁସନ୍ଧାନ ହେଉଛି ଅର୍ଥ-ବିଜ୍ଞାନର ଯଥାର୍ଥ ଓ ବୃହତ୍ତମ ସମସ୍ୟା । ପ୍ରତ୍ୟେକ ପ୍ରଚଳିତ ଶବ୍ଦ ଆମ ମାନସିକ ଚେତନା ଏବଂ ଇତିହାସର ଘଟଣା ଉପରେ ଆଧାରିତ—ଏହି ଉକ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସମ୍ଭବପର ନୁହେଁ । କିନ୍ତୁ ଏହି ଘଟଣାଗୁଡ଼ିକ କି ପ୍ରକାର ହୋଇପାରେ, ତାହା ନିର୍ଦ୍ଧାରଣ କରିବା ଏକ ସଂପୂର୍ଣ୍ଣ ସ୍ୱତନ୍ତ୍ର ବ୍ୟାପାର । ଏହା ଏକ ନିଶ୍ଚିତ ଆଦିମ ଧାରଣା ଯେ ନାମ ବସ୍ତୁର ସୂଚକ ବା ତାହାର ବର୍ଣ୍ଣନାତ୍ମକ ଅଭିବ୍ୟକ୍ତି । ଏଥିରୁ ନିଃସୃତ ହେବ ଯେ ନାମର ଉପସ୍ଥିତିରୁ ବସ୍ତୁର ସ୍ଥିତି ସମ୍ବନ୍ଧରେ ଯୁକ୍ତି କରିବା ସମ୍ଭବପର । ଏହା ହେଉଛି ଆଦିମ ବ୍ୟକ୍ତିର ଏକ ସରଳ ଧାରଣା ।"

ଏହିପରି ଭାବରେ ଅର୍ଥ-ତତ୍ତ୍ୱର ମୌଳିକ ବିଷୟରୂପେ ଶବ୍ଦ ଓ ଘଟଣା ମଧ୍ୟରେ ଥିବା ସମ୍ବନ୍ଧର ସୁସ୍ପଷ୍ଟ ବିଶ୍ଳେଷଣର ଆବଶ୍ୟକତା ଉପରେ ପ୍ରାଧାନ୍ୟ ଦେବାବେଳେ ଡକ୍ଟର ପୋଷ୍ଟଗେଟ ନିଜେ ସଂପୂର୍ଣ୍ଣରୂପେ ସଚେତନ ଥିଲେ ଯେ ଏହି ମତବାଦର ଦାର୍ଶନିକ ଓ ମନସ୍ତାତ୍ତ୍ୱିକ ଦିଗକୁ କେତେକ ସ୍ତରରେ ଉପେକ୍ଷା କରିହେବା ସମ୍ଭବପର ନୁହେଁ । ସେ ଏହା ଲେଖିଲାବେଳେ (୧୮୯୭) ଶବ୍ଦାର୍ଥବିଜ୍ଞାନ ଶବ୍ଦ ଓ ଘଟଣା ମଧ୍ୟରେ ଥିବା ବ୍ୟବଧାନର ସଂଯୋଜନ ନିମନ୍ତେ କିଛି ବ୍ୟବସ୍ଥା କରିବ ବୋଲି ଆଶା କରିବା ଅମୂଳକ ନଥିଲା । କିନ୍ତୁ ଭାଷା ଇତିହାସର କେତେକ ଚିତ୍ତାକର୍ଷକ ଘଟଣା ପ୍ରତି ଏମ୍. ବ୍ରିଏଲଙ୍କ ଗବେଷଣା ଦୃଷ୍ଟି ଆକର୍ଷଣ କରିଥିଲେ ହେଁ ଏବଂ ଶବ୍ଦ ବ୍ୟୁତ୍ପତ୍ତିର ଶିକ୍ଷାମୂଳକ ସମ୍ଭାବନା ନୂତନ ଅନୁରକ୍ତିର ଉଦ୍ରେକ କରିଥିଲେ ହେଁ, ତାହାର ଶେଷ ପରିଣତି ନୈରାଶ୍ୟମୂଳକ ଥିଲା । ନିମ୍ନୋକ୍ତ ଉଦ୍ଧୃତାଂଶ ତୁଲ୍ୟ ଏକ ଅନୁଚ୍ଛେଦରେ ଭାଷା ପ୍ରତି ନିହିତ ମନୋଭାବକୁ ବିଚାର କଲେ ଜଣାଯିବ ଯେ ଏହି ନୈରାଶ୍ୟ ଅନିବାର୍ଯ୍ୟ ଥିଲା । ଶବ୍ଦଗୁଡ଼ିକୁ ନିର୍ଦ୍ଦିଷ୍ଟାର୍ଥକ

ମନେକରି ସେଗୁଡ଼ିକର ବ୍ୟବହାର, ଅସଙ୍ଗତ ରୂପକ ଭାଷାର ନିରବଚ୍ଛିନ୍ନ ଆଶ୍ରୟ । ମୁଖ୍ୟ ପଦସମୂହର ବସ୍ତୁକରଣ ଇତ୍ୟାଦି ପ୍ରଶ୍ନଟିର ସମାଧାନ ପ୍ରତି ଏକ ଅନୁପଯୁକ୍ତ ମନୋଭାବର ସୂଚନା ଦିଏ ।

"ସତ୍ତ୍ୱବାଚକ ବିଶେଷ୍ୟଗୁଡ଼ିକ ହେଉଛି ବସ୍ତୁମାନଙ୍କ ସହିତ ସଯୋଜିତ ସଙ୍କେତ : ଗୋଟିଏ ନାମରେ ଯେତେ ସତ୍ୟତା ରହିପାରେ, ଠିକ୍ ସେହି ପରିମାଣର ସତ୍ୟତା ସେଗୁଡ଼ିକରେ ରହିଥାଏ । ଏହି ପରିମାଣ ଆବଶ୍ୟକରୂପେ ବସ୍ତୁସତ୍ତ୍ୱ ପରିମାଣ ତୁଳନାରେ ଅଳ୍ପ । ବସ୍ତୁର ସର୍ବାପେକ୍ଷା ଅଧିକ ଉପଯୁକ୍ତ ଅଭିବ୍ୟକ୍ତି ହେଉଛି ଗୁଣବାଚକ ବିଶେଷ୍ୟ, କାରଣ ଏହା ମନର ଏକ ସରଳ କାର୍ଯ୍ୟ ଦର୍ଶାଇ ଥାଏ । **ସଂକୋଚନୀୟତା ଓ ଅମରତ୍ୱ—ଏହି ଶବ୍ଦ ଦୁଇଟିକୁ ମୁଁ** ବ୍ୟବହାର କଲାବେଳେ ପ୍ରତ୍ୟୟରେ ଯାହା ମିଳିବ, ଶବ୍ଦରେ ମଧ୍ୟ ତାହା ମିଳିବ । କିନ୍ତୁ ମୁଁ ଯଦି ପ୍ରକୃତିରେ ବିଦ୍ୟମାନ ଏକ ବସ୍ତୁତତ୍ତ୍ୱ ନିଏଁ, ତେବେ ଏହି ତତ୍ତ୍ୱ ବା ବସ୍ତୁ ମନରେ ଯେଉଁ ସମସ୍ତ ପ୍ରତ୍ୟୟର ଉଦ୍ରେକ କରିବ, ସେ ସବୁକୁ ଶବ୍ଦରେ ପ୍ରବେଶ କରାଇବା ଭାଷା ପକ୍ଷରେ ଅସମ୍ଭବ ହୋଇ ପଡ଼ିବ । ତେଣୁ ନିର୍ବାଚନ କରିବାକୁ ଭାଷା ବାଧ୍ୟ ହୁଏ । ସମସ୍ତ ପ୍ରତ୍ୟୟ ମଧ୍ୟରୁ ଏହା କେବଳ ଗୋଟିକୁ ହିଁ ନିର୍ବାଚିତ କରିପାରେ । ଏହିପରି ଭାବେ ଭାଷା ଏପରି ଗୋଟିଏ ନାମର ସୃଷ୍ଟି କରେ, ଯାହା କେବଳ ଏକ ସଙ୍କେତ ହେବା ନିମନ୍ତେ ପର୍ଯ୍ୟାପ୍ତ ନୁହେଁ ।"

"ଏହି ନାମଟି ଗୃହୀତ ହେବା ନିମନ୍ତେ ମୂଳରୁ ତହିଁରେ କୌଣସି ଏକ ଦିଗରୁ କେତେକ ସତ୍ୟ ଓ ଦୃଷ୍ଟିଆକର୍ଷକ ଲକ୍ଷଣ ରହିବା ଯେ ଆବଶ୍ୟକ, ଏଥିରେ ସନ୍ଦେହ ନାହିଁ; ପ୍ରଥମରେ ଏହା ଯେଉଁମାନଙ୍କ ସମକ୍ଷରେ ଉପସ୍ଥାପିତ କରାଯାଏ, ସେମାନଙ୍କ ମନ ଏଥିରେ ସନ୍ତୁଷ୍ଟ ହେବା ଆବଶ୍ୟକ । କିନ୍ତୁ କେବଳ ପ୍ରାରମ୍ଭିକ ସ୍ତରରେ ହିଁ ଏହି ସର୍ତ୍ତ ପୂରଣର ଆବଶ୍ୟକତା ରହିଛି । ଥରେ ଗୃହୀତ ହୋଇଗଲେ, ଶବ୍ଦଟି ତାହାର ବ୍ୟୁତ୍ପତ୍ତିଗତ ତାତ୍ପର୍ଯ୍ୟରୁ ଅବିଳମ୍ବେ ମୁକ୍ତ ହୋଇଯାଏ । ନଚେତ୍ ଏହି ତାତ୍ପର୍ଯ୍ୟ ମାନସିକ ବିଚଳନ ଘଟାଇ ପାରେ । ପ୍ରଥମ ପ୍ରଣେତାର ଅଜ୍ଞତା ହେତୁ ଅଥବା ସଙ୍କେତ ଓ ସଙ୍କେତିତ ବସ୍ତୁ ଅନ୍ତର୍ଗତ ସାମଞ୍ଜସ୍ୟରେ ବ୍ୟାଘାତ ସୃଷ୍ଟିକାରକ କେତେକ ମଧ୍ୟବର୍ତ୍ତୀ ପରିବର୍ତ୍ତନ ହେତୁ ବହୁ ବସ୍ତୁ ଭ୍ରାନ୍ତ ଭାବେ ନାମିତ ହୋଇଛି । ତଥାପି ଶବ୍ଦଗୁଡ଼ିକ ଅଭ୍ରାନ୍ତରୂପେ ଯଥାର୍ଥ ହୋଇଥିଲେ ଯେଉଁ ଉଦ୍ଦେଶ୍ୟ ସାଧିତ ହୋଇଥାନ୍ତା, ସେହି ଉଦ୍ଦେଶ୍ୟ ସେଗୁଡ଼ିକ ଦ୍ୱାରା ସାଧିତ ହୋଇଥାଏ । କୌଣସି ବ୍ୟକ୍ତି ସେଗୁଡ଼ିକର ପୁନରାଲୋଚନା କରିବାକୁ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରେନାହିଁ । ସେଗୁଡ଼ିକ ଏକ ମୌନ ସମ୍ମତି ବଳରେ ଗୃହୀତ ହୋଇ ଯାଇଛନ୍ତି ଏବଂ ଏହି ସମ୍ମତି ବିଷୟରେ ଆମେ ସଚେତନ ସୁଦ୍ଧା ନୋହୁଁ ।" ବ୍ରେଲଙ୍କ ସେମାଣ୍ଟିକ୍ସ ପୃ ୧୭୧-୨)

"ଗୋଟିଏ ନାମରେ ଯେତେ ସତ୍ୟତା ରହିପାରେ ସେହି ପରିମାଣର ସତ୍ୟତା" ବାକ୍ୟାଂଶଗୁଡ଼ିକରେ "ରହିଥାଏ"—ଏହାର ଅର୍ଥ ଠିକ୍ କିପରିଭାବେ କରାଯିବ ? କିପରିଭାବେ "ପ୍ରତ୍ୟୟରେ ଯାହା ମିଳିବ, ଶବ୍ଦରେ ମଧ୍ୟ ତାହା ମିଳିବ ?" "ଗୋଟିଏ ପ୍ରତ୍ୟୟ ନିର୍ବାଚନ କରିବାକୁ ଭାଷା ବାଧ୍ୟ ହୁଏ" ଏବଂ ତଦ୍ଦ୍ୱାରା "ଯାହା ସଙ୍କେତ ହେବା ନିମନ୍ତେ ଧାର୍ଯ୍ୟ ନୁହେଁ" ସେହିପରି ଏକ ନାମର ସୃଷ୍ଟି କରେ—ଭାଷାର ଏହା ଏକ ଅସମଞ୍ଜସ ଧାରଣା । ପୁଣି ନାମକରଣ କ୍ଷେତ୍ରରେ 'ଯାଥାର୍ଥ୍ୟ' ଏବଂ ସଙ୍କେତ ଓ ସଂକେତିତ ବସ୍ତୁର ସମ୍ବନ୍ଧ କ୍ଷେତ୍ରରେ 'ସାମଞ୍ଜସ୍ୟ' ଶବ୍ଦର ପ୍ରୟୋଗ ନିତାନ୍ତ ଭାବେ ବ୍ୟାଖ୍ୟାସାପେକ୍ଷ । ଏହା କେବଳ ଏକ ଛିଦ୍ରାନ୍ୱେଷଣମୂଳକ ସମାଲୋଚନା ନୁହେଁ । ଯେଉଁ ପ୍ରକାଶଭଙ୍ଗୀ ବିରୁଦ୍ଧରେ ଆପତ୍ତି କରାଯାଉଛି, ତାହା ଭାଷାବିଜ୍ଞାନ ଠିକ୍ ଯେଉଁ ବିଷୟର ବ୍ୟାଖ୍ୟା ଦେବାରେ ସମ୍ପୃକ୍ତ, ତାହାକୁହିଁ ଗୋପନ ରଖି ଦେଉଛି । ଏହିପରି ଶିଥିଳ ବାଗ୍‌ବାହୁଲ୍ୟର ବିପଦ ସମ୍ବନ୍ଧରେ ଯଥେଷ୍ଟ ଅଧିକ ପରିମାଣର ସମୀକ୍ଷାମୂଳକ ସଚେତନତା ବିନା ଏହି ବିଜ୍ଞାନ ସମକ୍ଷରେ ରହିଥିବା ଯଥାର୍ଥ କାର୍ଯ୍ୟର ସଫଳ-ସମ୍ପାଦନ-ପ୍ରୟାସ କରାଯାଇ ନପାରେ । ଏକ ବୈଜ୍ଞାନିକ ବିଷୟର ଆଲୋଚନା ରୂପକ ଭାଷାର ପ୍ରୟୋଗ ଦ୍ୱାରା କରାଯିବା ସମ୍ଭବପର ନୁହେଁ । ବିଶ୍ଳେଷଣାତ୍ମକ ଏବଂ ବିବିକ୍ତ ଭାଷାରେ କୁତତ୍ତ୍ୱ ସୃଷ୍ଟି କରିବା ଭାଷାତତ୍ତ୍ୱବିଦ୍‌ଙ୍କ ଚାଲିସ ପଦ୍ଧତିର ଏକ ବିଧି ହୋଇ ରହିନାହିଁ । ଏହି ଦୃଷ୍ଟିକୋଣରୁ ତର୍କବିତ୍ ଏଥି ନିମନ୍ତେ ବହୁ ଅଧିକ ପରିମାଣରେ ଯୋଗ୍ୟ । କିନ୍ତୁ ଭାଷାରେ ଥିବା ତାହାର ପାରଙ୍ଗମତା ସେ କହୁଥିବା ବିଷୟବସ୍ତୁକୁ ତାହାଠାରୁ ଲୁଚାଇ ରଖେ । ଏତଦ୍ଦ୍ୱାରା ସେ କେବଳ ଭାଷାଗତ ବିନ୍ୟାସକୁ ଗ୍ରହଣ କରି ନେବାରେ ଅଭ୍ୟସ୍ତ ହୋଇଯାଏ; ଭାଷାଗତ ବିନ୍ୟାସରେ ସୀମିତ ରହିବା ତାହାର ବିଶିଷ୍ଟ ଲକ୍ଷ୍ୟ ସାଧନ ନିମନ୍ତେ ଯଥେଷ୍ଟ ।

ଭାଷାର କାର୍ଯ୍ୟକଳାପ ସମ୍ବନ୍ଧରେ ଯେଉଁମାନେ ଅନୁସନ୍ଧାନ କରିବାକୁ ପ୍ରସ୍ତୁତ ହୁଅନ୍ତି, ସେମାନଙ୍କ ଉପରେ ଭାଷାର ଦୌରାତ୍ମ୍ୟ କେତେ ଅଧିକ ହୋଇଥାଏ, ତାହା ସ୍ୱର୍ଗତ ଏଫ୍. ଡ଼. ସସରଙ୍କ ଚିନ୍ତାଧାରାରେ ସୁସ୍ପଷ୍ଟରୂପେ ପ୍ରତିଫଳିତ ହୋଇଛି । ସମ୍ଭବତଃ ଅଧିକାଂଶ ଫରାସୀ ଓ ସୁଇସ୍ ଛାତ୍ର ମନେକରନ୍ତି ଯେ ଏହି ଲେଖକ ସର୍ବପ୍ରଥମେ ଭାଷା-ଶାସ୍ତ୍ରକୁ ଏକ ବୈଜ୍ଞାନିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ କରିଥିଲେ । ଏହି ଲେଖକଙ୍କର ପ୍ରାରମ୍ଭିକ ପ୍ରଶ୍ନ ହେଉଛି—"ଭାଷାଶାସ୍ତ୍ରର ଯୁଗପତ୍ ସାମଗ୍ରିକ ଓ ମୂର୍ତ୍ତି ବିଷୟବସ୍ତୁଟି କ'ଣ ?" ଭାଷାଶାସ୍ତ୍ରର ଏହିପରି ଏକ ବିଷୟବସ୍ତୁ ଅଛି କି ?—ଏହି ପ୍ରଶ୍ନ ସେ ଉତ୍ଥାପନ କରି ନାହାନ୍ତି । ସେ ଅନ୍ଧ ଭାବରେ ଆଦିମ ପ୍ରବୃତ୍ତିର ଅନୁସରଣ କରି ଗୋଟିଏ ଶବ୍ଦରୁ ଅନୁମାନ କରି ନେଇଛନ୍ତି ଯେ ତାହା ଏକ ବସ୍ତୁପାଇଁ ବ୍ୟବହୃତ ଏବଂ ସେହି ବସ୍ତୁର ଆବିଷ୍କାର କଲେ ଦୃଢ଼ ପ୍ରତିଜ୍ଞ ହୋଇ ବାହାରି ପଡ଼ିଛନ୍ତି । ତା'ପରେ ସେ କହିଛନ୍ତି ଯେ

ବଚନ [Le langage] ଏକ ଘଟଣାପୁଞ୍ଜରୂପେ ଯଥେଷ୍ଟ ପରିମାଣରେ ମୂର୍ତ୍ତ ହୋଇଥିଲେ ସୁଦ୍ଧା ସାମଗ୍ରିକ ନୁହେଁ । ତାହାର ଧ୍ୱନି ଗୁଡ଼ିକରୁ ବଚନର ଗତି ଆପାତତଃ । ବଚନ ତଥା ଧ୍ୱନି ଉଭୟ ତନ୍ତ୍ରୀର ବାହକ ସ୍ୱଭାବରେ ପ୍ରତ୍ୟୟର ସୂଚନା ଦିଅନ୍ତି । ପୁଣି ସେ କହନ୍ତି ଯେ ପ୍ରତ୍ୟୟଗୁଡ଼ିକର ଏକ ସାମାଜିକ ତଥା ଏକ ବୈୟକ୍ତିକ ଦିଗ ରହିଛି ଏବଂ ପ୍ରତ୍ୟେକ ମୁହୂର୍ତ୍ତରେ ଭାଷାର ଅପାଦନ ହେଉଛି ଏକ ପ୍ରତିଷ୍ଠିତ ପଦ୍ଧତି ତଥା ଏକ କ୍ରମ-ବିକାଶ । "ଏହିପରି ଭାବେ ଯେ କୌଣସି ଦିଗରୁ ପ୍ରଶ୍ନଟିର ବିଚାର କଲେ ମଧ୍ୟ କୌଣସି ସ୍ଥାନରେ ଆମେ ଭାଷାର ସାମଗ୍ରିକ ବସ୍ତୁସ୍ୱରୂପକୁ ପାଇ ପାରୁନାହଁୁ ।" ତା ପରେ ଯେ କଣ ଖୋଜୁଛନ୍ତି ଅଥବା କାହିଁକି ସେହିପରି ଏକ ବସ୍ତୁ ରହିବା ଉଚିତ, ତାହାର କୌଣସି କାରଣ ଅଛି କି ନାହିଁ, ତାହା ନିଜକୁ ପଚାରିବାକୁ ସେ ଏହି କ୍ଷେତ୍ରରେ ଅପେକ୍ଷା କରି ନାହାନ୍ତି । ତତ୍ ପରିବର୍ତ୍ତେ, ସମସ୍ତ ବିଜ୍ଞାନର ଆରମ୍ଭ କାଳରେ ଯାହା ହେଉଥିଲା ବୋଲି ଆମେ ଜାଣୁ, ସେହି ସୁପରିଚିତ ପ୍ରଣାଳୀର ଅନୁସରଣ କରି ଏକ ଉପଯୁକ୍ତ ବସ୍ତୁସ୍ୱରୂପ ଗଢ଼ି ତୋଳିଛନ୍ତି । ତାହା ହେଉଛି ଭାଷା, 'la langue'; ଏହା ବଚନ ନୁହେଁ । "ଭାଷା କ'ଣ ? ଆମପ୍ରାଇଁ ଏହା ଏପରି ଏକ ଜିନିଷ ଯାହାକୁ ବଚନ (le langage) ସହିତ ବ୍ୟାମିଶ୍ରଣ କରି ଦିଆଯାଇ ନପାରେ । ଏହା ହେଉଛି ବଚନର କେବଳ ଏକ ନିର୍ଦ୍ଦିଷ୍ଟ ଅଂଶ ଏବଂ ଏହା ମଧ୍ୟ ସତ୍ୟ ଯେ ଏହା ବଚନର ଏକ ମୌଳିକ ଅଂଶ । ଏହା ଯୁଗପତ୍ ବାକ୍‌ଶକ୍ତିର ଏକ ସାମାଜିକ ପରିଣତି ଏବଂ ବ୍ୟକ୍ତିମାନଙ୍କୁ ଏହି ଶକ୍ତି ବ୍ୟବହାର କରିବାକୁ ସୁବିଧା ଦେବା ନିମନ୍ତେ ସମାଜ ଗ୍ରହଣ କରିଥିବା ଆବଶ୍ୟକୀୟ ପ୍ରଥାମାନଙ୍କର ଏକ ଚୟନିକା ।......ଏହାର ନିଜସ୍ୱ ଏକ ସାମଗ୍ରିକତା ରହିଛି ଏବଂ ଏହା ବର୍ଗୀକରଣର ଏକ ନୀତି । ବାଚନିକ ଘଟଣାବଳୀ ମଧ୍ୟରେ ଆମ୍ଭେମାନେ ଏହାକୁ ପ୍ରଥମସ୍ଥାନ ଦେବା ମାତ୍ରେ, ଯେଉଁ ସମୂହତାର ଅନ୍ୟ କୌଣସି ପ୍ରକାର ବର୍ଗୀକରଣ ସମ୍ଭବପର ନୁହେଁ, ତହିଁରେ ଏକ ପ୍ରାକୃତିକ କ୍ରମର ବ୍ୟବସ୍ଥା ହୋଇଯାଏ । ଆହୁରି ମଧ୍ୟ ଭାଷା ହେଉଛି "ସମସ୍ତ ବ୍ୟକ୍ତିଙ୍କଠାରେ ସଂରକ୍ଷିତ ଶାବ୍ଦିକ ପ୍ରତିମାର ଏକ ସମଷ୍ଟି; ଏକ ଦତ୍ତ ସମ୍ପ୍ରଦାୟର ସଭ୍ୟମାନଙ୍କଠାରେ କଥନ ଅଭ୍ୟାସଦ୍ୱାରା ଗଚ୍ଛିତ ଏକ ସମ୍ପତ୍ତି; ଏକ ବ୍ୟାକରଣ ପ୍ରଣାଳୀ, ଯାହା ବସ୍ତୁତଃ ପ୍ରତ୍ୟେକ ମସ୍ତିଷ୍କରେ, ବା ଆହୁରି ଯଥାର୍ଥଭାବେ କହିବାକୁ ଗଲେ ଏକ ଗୋଷ୍ଠୀର ବ୍ୟକ୍ତିମାନଙ୍କ ମସ୍ତିଷ୍କରେ ରହିଛି, କାରଣ ଭାଷା ସେଗୁଡ଼ିକ ମଧ୍ୟରୁ କୌଣସି ଗୋଟିକରେ ପୂର୍ଣ୍ଣତାପ୍ରାପ୍ତ ହୁଏନାହିଁ । ଏହା ସମ୍ପୂର୍ଣ୍ଣତଃ କେବଳ ବ୍ୟକ୍ତିସମଷ୍ଟିରେ ହିଁ ସ୍ଥିତିଶୀଳ ।" (୧)

ଉକ୍ତିର ହ୍ୱାଇଟ ହେଡ଼ଙ୍କ ନାମ ସହିତ ସମ୍ପର୍କିତ ପ୍ରଗାଢ଼ ବିକର୍ଷଣ ପଦ୍ଧତିରୁ ଯେ କୌଣସି ପଦ୍ଧତି ଦ୍ୱାରା ହୁଏତ ଭାଷା [La langue] ପରି ଏକ ଶ୍ରମସାପେକ୍ଷ ପରି-

(୧) Cours de Linguistique Generale ପୃ ୨୩-୩୨ ।

କଳ୍ପନାରେ ଉପନୀତ ହେବା ସମ୍ଭବପର, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏକ ପ୍ରାଥମିକ ବିଜ୍ଞାନର ଦାର୍ଶନିକ ନୀତି ହିସାବରେ ଏହା ଏକ ଅବାସ୍ତବ ନୀତି । ଆହୁରି ମଧ୍ୟ ଅନୁସନ୍ଧାନର ସମ୍ଭବପରତା ସୀମା ବହିର୍ଭୂତ କ୍ଷେତ୍ରରେ ଶାବ୍ଦିକ ସତ୍ତା ଉଦ୍ଭାବନର ଏହି କୌଶଳ ପରବର୍ତ୍ତୀ ସଙ୍କେତ ସିଦ୍ଧାନ୍ତ ନିମନ୍ତେ ମାରାତ୍ମକ ପ୍ରମାଣିତ ହୋଇଥିଲା । (୨)

---

(୨) ଡି ସସରଙ୍କ ମତରେ ସଙ୍କେତରେ ଏକ ଦ୍ୱିବିଧତା ରହିଛି । ସେଥିରୁ ଗୋଟିଏ ହେଉଛି ଏକ ସପ୍ରତ୍ୟୟ (signifie) ଏବଂ ଅନ୍ୟଟି ହେଉଛି ଏକ ଧ୍ୱନି ପ୍ରତିମା (signifiant) । ଏହି ଦୁଇଟିଯାକ ହେଉଛି ମନସ୍ତାତ୍ତ୍ୱିକ ସତ୍ତା । ସେ କହନ୍ତିକି ଯେ ସପ୍ରତ୍ୟୟ ବିନା ଧ୍ୱନି ପ୍ରତିମା ଏକ ସଙ୍କେତ ହୋଇପାରିବ ନାହିଁ (ପୃ ୧୦୦) । ଆମ୍ଭେମାନେ ପରେ ଦେଖିବା ଯେ ଏହି ବିବରଣୀର ଅସୁବିଧା ହେଉଛି—ଏଠାରେ ବ୍ୟାଖ୍ୟା ପ୍ରଣାଳୀକୁ ସଂଜ୍ଞାଦ୍ୱାରା ସଙ୍କେତାନ୍ତର୍ଗତ କରି ଦିଆଯାଇଛି ।

ଡି ସସର ପ୍ରକୃତରେ ଗବ ଅନୁଭବ କରୁଥିଲେ ଯେ ସେ "ଶବ୍ଦ ନୁହେଁ, ବସ୍ତୁର ହିଁ ସଂଜ୍ଞା" ଦେଇ ପାରିବେ । ସେ ଲେଖିଛନ୍ତି, "କେତେଗୁଡ଼ିଏ ଅନେକାର୍ଥକ ଶବ୍ଦ ଏକ ଏବଂ ଅପର ଭାଷାରେ ସାମଞ୍ଜସ୍ୟ ରକ୍ଷାକରନ୍ତି ନାହିଁ; କିନ୍ତୁ ଉପର୍ଯ୍ୟୁକ୍ତ ପଦ୍ଧତି ହେତୁରୁ ଏଥିରେ କୌଣସି କ୍ଷତିର ଆଶଙ୍କା ନାହିଁ । ଉଦାହରଣ ସ୍ୱରୂପ, ଜର୍ମାନ ଭାଷାର Sprache ର ଅର୍ଥ ହେଉଛି 'ଭାଷା' (langue) ଏବଂ 'ବଚନ' (langage)...... ଲାଟିନ୍‌ରେ Sermo ର ତାତ୍ପର୍ଯ୍ୟ ହେଉଛି ବଚନ ଏବଂ ଉପଦେଶ (langage et parole) ଏବଂ lingua ର ଅର୍ଥ ହେଉଛି 'ଭାଷା' (la langue) । ଅନ୍ୟାନ୍ୟ ଭାଷାରେ ମଧ୍ୟ ଏହାର ଅନୁରୂପ ଦୃଷ୍ଟାନ୍ତ ରହିଛି । ଉପର୍ଯ୍ୟୁକ୍ତ ଭାବେ ବିଶୁଦ୍ଧୀକୃତ ଧାରଣାମାନଙ୍କ ମଧ୍ୟରୁ କୌଣସିଟିର ସହିତ କୌଣସି ଶବ୍ଦ ସମ୍ପୂର୍ଣ୍ଣରୂପେ ସାମଞ୍ଜସ୍ୟ ରକ୍ଷା କରେନାହିଁ । ଏହି ହେତୁରୁ ଶବ୍ଦର ସଂଜ୍ଞା ଉଦ୍ଦେଶ୍ୟରେ ପ୍ରସ୍ତାବିତ ପ୍ରତ୍ୟେକ ସଂଜ୍ଞାର କୌଣସି ଉପାଦେୟତା ନାହିଁ । ବସ୍ତୁର ସଂଜ୍ଞା ଦେବା ନିମନ୍ତେ ଶବ୍ଦରୁ ଆରମ୍ଭ କରିବା ହେଉଛି ଏକ ଅବାଞ୍ଛନୀୟ ପଦ୍ଧତି" (ତତ୍ରୈବ ପୃ ୩୨) । ପରେ ପ୍ରଦର୍ଶନ କରି ଦିଆଯିବ ଯେ ଏଠାରେ ସଂଜ୍ଞା ସମ୍ବନ୍ଧରେ ଯେଉଁ ମତ ଗୃହୀତ, ତହିଁରେ ସାଧାରଣ ପଦ୍ଧତି ସମ୍ବନ୍ଧରେ ଏକ ଅସାଧାରଣ ଅଜ୍ଞତା ନିହିତ । ସାଧାରଣ ପଦ୍ଧତି ହେଉଛି ଦୁର୍ବୋଧ ପ୍ରତୀକଗୁଡ଼ିକ ପରିବର୍ତ୍ତେ ଅଧିକ ବୋଧଗମ୍ୟ ପ୍ରତୀକର ବ୍ୟବହାର । ଏହି ଅନଭିଜ୍ଞତାର ଅନ୍ୟ ଏକ ଦୃଷ୍ଟାନ୍ତ ହେଉଛି ଭାଷାଗତ ସଙ୍କେତ ବୁଝାଇବାକୁ 'ପ୍ରତୀକ' ପଦର ବ୍ୟବହାରକୁ ପରିବର୍ଜନ (ପୃ ୧୦୩) । "ପ୍ରତୀକର ଲକ୍ଷଣ ହେଉଛି ଯେ ତାହା କଦାପି ସମ୍ପୂର୍ଣ୍ଣ ସ୍ୱେଚ୍ଛାକୃତ ନୁହେଁ । ତାହା ଶୂନ୍ୟଗର୍ଭ ନୁହେଁ । ଏଠାରେ ସଙ୍କେତ ଓ ସାଙ୍କେତ୍ୟ ମଧ୍ୟରେ ଏକ ସ୍ୱାଭାବିକ ସମ୍ବନ୍ଧର ମୂଳସୂତ୍ର ବିଦ୍ୟମାନ । ନ୍ୟାୟର ପ୍ରତୀକ ହେଉଛି ତରାଜୁ; ଏତତ୍ ପରିବର୍ତ୍ତେ ଯେକୌଣସି ଅନ୍ୟ ଏକ ବସ୍ତୁ ଯଥା—ଶକଟକୁ ବ୍ୟବହାର କରାଯାଇ ନପାରେ ।

ଏକ ଭାଷାତତ୍ତ୍ୱବିତ୍ ହିସାବରେ ଭାଷାଗତ ପ୍ରଥା ପ୍ରତି ଭି ସସରଙ୍କ ପ୍ରଗାଢ଼ ସମ୍ମାନ ରହିଥିଲା; ତେଣୁ ଯାହା ତାଙ୍କଦ୍ୱାରା ଭାଷାର ଏକ ଅଂଶ, ଏକ ଅପରିବର୍ତ୍ତନଶୀଳ ଅର୍ଥ ବୋଲି କଳ୍ପିତ ହୋଇଥିଲା, ତହିଁରେ ହସ୍ତକ୍ଷେପ ତାଙ୍କ ପକ୍ଷରେ ଅସହ୍ୟ ହେଉଥିଲା । ଶରମାନଙ୍କର କାଳ୍ପନିକ 'ଗୃହୀତ' ବ୍ୟବହାର ପ୍ରତି ଏହି ସତର୍କ ଅନୁରକ୍ତି ହେଉଛି ଭାଷାତତ୍ତ୍ୱବିଦ୍‌ଙ୍କର ଏକ ଅଭ୍ୟସ୍ତ ପ୍ରକୃତି । ଏହାର ତେର ମାନବ ପ୍ରକୃତିର ଗଭୀରତମ ପ୍ରଦେଶକୁ ମାଡ଼ି ଯାଇଛି । ଏହି ବିଷୟ ଆମେ ପରବର୍ତ୍ତୀ ଦୁଇଟି ପରିଚ୍ଛେଦରେ ଆଲୋଚନା କରିବା । ଗୋଟିଏ ପାରିଭାଷିକ ଉପକରଣ ଅନ୍ୟାନ୍ୟ ଦୃଷ୍ଟିରୁ ଏତେ ଚମତ୍କାର ହୋଇଥିଲେ ହେଁ ଏହି ବିଷୟରେ ଏତେ ଦୁର୍ବଳ ହେବା **ଅତ୍ୟନ୍ତ କ୍ଷୋଭକାରକ**; କାରଣ ସଙ୍କେତର ଏକ ସାଧାରଣ ବିଜ୍ଞାନ ଅର୍ଥାତ୍ ସଙ୍କେତତତ୍ତ୍ୱକୁ ପ୍ରାରମ୍ଭରୁ ସ୍ୱୀକାର କରିସିବା ହେଉଛି ଉପଯୁକ୍ତ ଦିଗରେ ଏକ ଉଲ୍ଲେଖଯୋଗ୍ୟ ପ୍ରଚେଷ୍ଟା । ଭାଷାତତ୍ତ୍ୱ ଏହାର ଏକ ଶାଖା ଏବଂ ତାହା ଏହାର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଶାଖା । ଦୁର୍ଭାଗ୍ୟବଶତଃ ଏହି ସଙ୍କେତତତ୍ତ୍ୱ ସାଙ୍କେତ୍ୟକୁ ସଂପୂର୍ଣ୍ଣରୂପେ ଅବହେଳା କରିସିବାଦ୍ୱାରା ପ୍ରାରମ୍ଭରୁ ହିଁ ସମର୍ଥନମୂଳକ ବୈଜ୍ଞାନିକ ପଦ୍ଧତି ସହିତ ସମ୍ପର୍କ ଛିନ୍ନ କରି ଦେଇଛି । କିନ୍ତୁ ଏହି ଦୋଷଟି ସୁପ୍ରତ୍ୟକ୍ଷ ହେବା ପର୍ଯ୍ୟନ୍ତ ଭି ସସର ତାଙ୍କ ଗବେଷଣାରେ ଅଗ୍ରଗତି କରିଥିଲେ ପରି ମନେ ହୁଏନାହିଁ । ଠିକ୍ ଏହି ପ୍ରକାର ଅବହେଳା ଦୋଷରୁ ଅଧ୍ୟାପକ ଭିଲବକ୍‌ସଙ୍କ ଆଧୁନିକ କୃତି 'ଲେ ଲେଙ୍ଗେଜ୍ ଏଟ୍ ଲା ପେନ୍‌ସି' ମଧ୍ୟ ଚିନ୍ତା ଓ ସଂର ଭାଷାର ପ୍ରଭାବ ବିଷୟକ ଅଧ୍ୟୟନରୂପେ ନିଷ୍ଫଳ ହୋଇଛି ।

ଦାର୍ଶନିକମାନେ ଏବଂ ଭାଷାତତ୍ତ୍ୱବିଦ୍‌ମାନେ ସମଜ୍ଞବରେ ସେମାନଙ୍କ ଚେଷ୍ଟାରେ ଅକୃତକାର୍ଯ୍ୟ ହୋଇଛନ୍ତି । ଭାଷାତତ୍ତ୍ୱରେ ଅନୁରକ୍ତ ଏକ ତୃତୀୟ ଅନୁସନ୍ଧିତ୍ସୁ ଦଳର ବ୍ୟକ୍ତିମାନେ ରହିଛନ୍ତି । ଏମାନେ ହେଲେ ମାନବଜାତିତତ୍ତ୍ୱବିଦ୍ । ଏମାନଙ୍କ ମଧ୍ୟରୁ ଅନେକେ ମନସ୍ତତ୍ତ୍ୱରେ ପ୍ରାରମ୍ଭିକ ତାଲିମ ପାଇ ସାରିବା ପରେ ମାନବଜାତିତତ୍ତ୍ୱ ଅଧ୍ୟୟନରେ ଆଗ୍ରହୀ ହୋଇଛନ୍ତି । ଆଦିମ ମାନବସମାଜରେ ପ୍ରଚଳିତ ଭାଷାର ମୌଳିକ ଉପାଦାନ ପ୍ରତି ଅନ୍ତର୍ଦୃଷ୍ଟି ନଥିଲେ, ଏହି ସମାଜ ସମ୍ବନ୍ଧୀୟ ଏକ ଯଥାର୍ଥ ବିବରଣୀ ଦେବା ସମ୍ଭବପର ନୁହେଁ । ପ୍ରଚଳିତ ଭାରତୀୟ ୟୁରୋପୀୟ ଭାଷାର ବ୍ୟାକରଣ ଗତ ପାର୍ଥକ୍ୟକୁ ଆଦିମ ଭାଷାରେ ପ୍ରୟୋଗ କରି ଏହି ଅନ୍ତର୍ଦୃଷ୍ଟି ଲାଭ କରିବା ସମ୍ଭବପର ନୁହେଁ । ଏହି ପଦ୍ଧତି ନିଶ୍ଚିତରୂପେ ବହୁ କ୍ଷେତ୍ରରେ ଭ୍ରାନ୍ତ । ତେଣୁ ଏହି ପରିସ୍ଥିତିରେ ଆଶା କରିବା କଥା ଯେ ଏକ ଦତ୍ତ ପରିବେଶରେ ଆଦିମ ଭାଷା ବ୍ୟବହାର କରୁଥିବା ବକ୍ତା କି ପ୍ରକାର ଆଚରଣ କରେ, ତାହାର ପର୍ଯ୍ୟବେକ୍ଷଣ ନିଜେ କରି ପ୍ରତ୍ୟେକ କ୍ଷେତ୍ରଗବେଷକ ଏହି ଭାଷାଗତ ବ୍ୟାକରଣ ପୁନର୍ଗଠନ କରିବା ଆବଶ୍ୟକ । ଦୁର୍ଭାଗ୍ୟବଶତଃ ଏପରି କରିଥାଇ-ଥିବାର ଦୃଷ୍ଟାନ୍ତ ବିରଳ; କାରଣ ଏଥିରେ ଗୁରୁତର ଅସୁବିଧା ରହିଛି । ସମ୍ଭବତଃ

ମନସ୍ତାତ୍ତ୍ୱିକ ପରିଭାଷାର ଆକସ୍ମିକ ଆଗମ ହେତୁ ଗବେଷକ ବକ୍ତାର ବାସ୍ତବ ପରିସ୍ଥିତିକୁ ଅବହେଳା କରି ଯାଇ କେବଳ ତାହାର ମାନସିକ 'ପ୍ରତ୍ୟୟ'ର ବିଚାର କରି ଦେଉନ୍ତି ଏବଂ ଏହି ଗୁଡ଼ିକ ହିଁ ଭାଷାରେ ଅଭିବ୍ୟକ୍ତ ବୋଲି ଗ୍ରହଣ କରି ନଥାନ୍ତି । ଆମେରିକୀୟ-ଭାରତୀୟ ଭାଷାଗୁଡ଼ିକ ଉପାଦାନ ଯୋଗାଉଥିବା ଏକ ବ୍ୟାପକ ବିଷୟବସ୍ତୁକୁ ନେଇଁ ଯେଉଁ ମାନବଜାତିତତ୍ତ୍ୱବିଦ୍‌ମାନେ କାର୍ଯ୍ୟ କରୁଛନ୍ତି, ସେମାନଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ ଉଦ୍ଭାବନକ୍ଷମ ଓ ପ୍ରଭାବଶାଳୀ ବ୍ୟକ୍ତି ହେଉଛନ୍ତି ଡକ୍ଟର ବୋଆଜ୍ । ଭାଷା-ମାନଙ୍କର ବସ୍ତୁନିଷ୍ଠ ଆଲୋଚନାରେ ସେ ଯେଉଁ ତିନୋଟି ବିଷୟ ବିଶେଷ ବୋଲି ସ୍ଥିର କରିଛନ୍ତି, ସେଗୁଡ଼ିକ ହେଉଛି—

ପ୍ରଥମତଃ, ଭାଷାର ଧ୍ୱନ୍ୟାତ୍ମକ ଉପାଦାନ,

ଦ୍ୱିତୀୟତଃ, ଧ୍ୱନିବର୍ଗଦ୍ୱାରା ଅଭିବ୍ୟକ୍ତ ପ୍ରତ୍ୟୟବର୍ଗ,

ତୃତୀୟତଃ, ଏ ଦୁଇଟିର ସମନ୍ୱୟ ଏବଂ ଧ୍ୱନିବର୍ଗର ପ୍ରକାରାନ୍ତରକରଣ ପଦ୍ଧତି ।

ଡକ୍ଟର ବୋଆଜ ସ୍ପଷ୍ଟତଃ କହିଛନ୍ତି—"ସମସ୍ତ ବଚନର ଉଦ୍ଦେଶ୍ୟ ହେଉଛି ପ୍ରତ୍ୟୟଗୁଡ଼ିକର ଆଦାନ ପ୍ରଦାନ ।" କିନ୍ତୁ ବହିଃସ୍ଥ ଅନୁସନ୍ଧାନକାରୀ ପକ୍ଷରେ ପ୍ରତ୍ୟୟ-ଗୁଡ଼ିକର ଜ୍ଞାନ କେବଳ ପରୋକ୍ଷ ହୋଇପାରେ । ସୁତରାଂ ଶବ୍ଦ ଓ ବସ୍ତୁର ପ୍ରତୀକ ହୋଇଥିବା କୌଣସି ପ୍ରତ୍ୟୟ ଯଦି ଥାଏ, ତେବେ ତାହାର ମାଧ୍ୟମରେ ଶବ୍ଦ ଓ ବସ୍ତୁର ସଂଯୋଗକାରୀ ଏକ ତତ୍ତ୍ୱ ଏଠାରେ ଆବଶ୍ୟକ ହେଉଛି । ଏହା କହିବାର ତାତ୍ପର୍ଯ୍ୟ ହେଉଛି ଯେ ଶବ୍ଦ ଓ ପ୍ରତ୍ୟୟର ସମ୍ବନ୍ଧ ତଥା ପ୍ରତ୍ୟୟ ଓ ବସ୍ତୁର ସମ୍ବନ୍ଧକୁ ଭିନ୍ନ ଭିନ୍ନ ଭାବେ ବିଶ୍ଳେଷଣ କରି ଦେଖିବା ଦରକାର । ଆହୁରି ମଧ୍ୟ ଅନେକ ଭାଷା, ବିଶେଷତଃ ଆଦିମ ଭାଷା, ମୁଖ୍ୟତଃ ପ୍ରତ୍ୟୟ ସହିତ ଆଦୌ ସମ୍ପୃକ୍ତ ନୁହେଁ । ଏହା ପ୍ରତ୍ୟୟ ସହିତ ସମ୍ପୃକ୍ତ ବୋଲି ସ୍ୱୀକାର କରିବାକୁ ହେଲେ ସଂବେଗ ଓ ଅଭିବୃତ୍ତି ଗୁଡ଼ିକ ମଧ୍ୟ 'ପ୍ରତ୍ୟୟ'ର ଅନ୍ତର୍ଗତ ବୋଲି ଧରିନେବାକୁ ହେବ ଏବଂ ଏତଦ୍ଦ୍ୱାରା ପରିଭାଷାଗତ ଅସୁବିଧା ଜାତ ହେବ । ପ୍ରତ୍ୟୟର ଜ୍ଞାପନ ଅତିରିକ୍ତ ବଚନଦ୍ୱାରା ବକ୍ତାର ଅଭିବୃତ୍ତି, ଅଭିଳାଷ ଓ ଅଭିପ୍ରାୟ ମଧ୍ୟ ବ୍ୟକ୍ତ ହୋଇଥାଏ, (୧) ତାହାର ସ୍ୱତନ୍ତ୍ର ଆଲୋଚନା ଆବଶ୍ୟକ । ଏହି

(୧) ପ୍ରତ୍ୟୟଠାରୁ ଅଧିକ ବିଷୟକୁ ଅନ୍ତର୍ଗତ କରି ସଂଜ୍ଞା ଦେବାର ଦୃଷ୍ଟାନ୍ତ ନାହିଁ—ଏକଥା ନୁହେଁ । ଡ. ସପିର ହେଉଛନ୍ତି କାନାଡ଼ାର ଜିଓଲୋଜିକାଲ ସର୍ଭେ ସଂସ୍ଥାର ଏନ୍‌ଥ୍ରୋପୋଲୋଜି ବିଭାଗର ମୁଖ୍ୟ । ସେ ଜଣେ ମାନବଜାତିତତ୍ତ୍ୱବିତ୍ ଏବଂ ଆମେରିକୀୟ ସମ୍ପ୍ରଦାୟ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ରହିଛି । ତାଙ୍କର ଆଧୁନିକ ଭାଷାତତ୍ତ୍ୱଗ୍ରନ୍ଥ ହେଉଛି ଏହି ବିଷୟର ସର୍ବାପେକ୍ଷା ଚିତ୍ତାକର୍ଷକ ଏବଂ ଉଲ୍ଲେଖନୀୟ ଅଧ୍ୟୟନମାନଙ୍କ ମଧ୍ୟରୁ ଅନ୍ୟତମ । ଏଥିରେ ଭାଷାର ସଂଜ୍ଞା "ପ୍ରତ୍ୟୟ, ସଂବେଗ ଏବଂ ଅଭିଳାଷ ଗୁଡ଼ିକୁ

ଦିଗ ପ୍ରତି ଧ୍ୟାନ ନ ଦେବା ଗବେଷଣାରତ ଏହି ମାନବଜାତିତତ୍ତ୍ୱବିଦ୍ ଦଳର ଏ ପର୍ଯ୍ୟନ୍ତ ଏକ ଦୋଷ ହୋଇ ରହିଛି ।

---

ସ୍ୱେଚ୍ଛାକୃତଭାବେ ରଚିତ ପ୍ରତୀକମାନଙ୍କର ଏକ ସହାୟ ମାଧ୍ୟମରେ ଆଦାନ ପ୍ରଦାନ କରିବାର ଏକ ସମ୍ପୂର୍ଣ୍ଣ ମାନବୀୟ ଏବଂ ଅଣ-ପ୍ରବୃତ୍ତିମୂଳକ ପଦ୍ଧତି" ବୋଲି ଧରାଯାଇଛି । (Language, ୧୯୨୨, ପୃ ୭) । କିନ୍ତୁ ଏଥିରେ ସଂବେଗାତ୍ମକ ଉପାଦାନର ବିଚାର ଏତେ ଅତ୍ୟଳ୍ପ ପରିମାଣରେ କରାଯାଇଛି ଯେ ଏକ ବୈୟାକରଣ ସାଧ ସମ୍ବନ୍ଧୀୟ ଆଲୋଚନାରେ, ଯଥା—ଲାଟିନ୍‌ରେ ଶବ୍ଦବ୍ୟବହାର କ୍ରମ ବହୁପ୍ରକାର ହୋଇପାରେ ବୋଲି ପ୍ରଦର୍ଶନ କରିବା କ୍ଷେତ୍ରରେ, ନିମ୍ନଲିଖିତ ବକ୍ତବ୍ୟ ଲିପିବଦ୍ଧ ହୋଇ ରହିଛି । 'hominem femina videt' ରୁ 'videt femina hominem' କୁ ପରିବର୍ତ୍ତିତ କରିବାଦ୍ୱାରା "ଆଲଙ୍କାରିକ ଅଥବା **ଶୈଳୀମୂଳକ** ପାର୍ଥକ୍ୟର **ସମ୍ଭାବନା** ବ୍ୟତୀତ ଅତ୍ୟନ୍ତ ଅଳ୍ପ ପାର୍ଥକ୍ୟ ରହିଛି କିମ୍ବା ଆଦୌ କୌଣସି ପାର୍ଥକ୍ୟ ନାହିଁ ।" (ପୃ ୬୫) ଉପର୍ଯ୍ୟୁକ୍ତ ଉଦ୍ଧୃତରେ ରେଖାଙ୍କନ ଆମେ କରିଛୁଁ ।

ପୁଣି, 'The farmer killls the duckling' [କୃଷକ ବତକ ଛୁଆକୁ ହତ୍ୟା କରେ]—ଏହି ଜଟିଳ ପ୍ରଙ୍ଗକ ସମ୍ବନ୍ଧୀୟ ଆଲୋଚନାର ଚାରି ମର୍ମ ଦେବାକୁ ଯାଇ ଏହି ଲେଖକ ମନ୍ତବ୍ୟ ଦେଇଛନ୍ତି—"ଏହି ପାଞ୍ଚୋଟି ଶବ୍ଦ ବିଶିଷ୍ଟ କ୍ଷୁଦ୍ର ବାକ୍ୟଦ୍ୱାରା ତେରଗୋଟି ଭିନ୍ନ ଭିନ୍ନ ସଂପ୍ରତ୍ୟୟ [concept] ଅଭିବ୍ୟକ୍ତ ହୋଇଛି" (ପୃ ୧୦୩) । ଏକ ପରବର୍ତ୍ତୀ ସ୍ତରରେ ଆମ୍ଭେମାନେ ଲକ୍ଷ୍ୟ କରିବା ଯେ 'ସଂପ୍ରତ୍ୟୟ' ପଦର ବ୍ୟବହାର ଏହିପ୍ରକାର ବିଶ୍ଳେଷଣରେ ବିଶେଷତଃ ଦୁର୍ଭାଗ୍ୟଜନକ । ପୁଣି ପ୍ରଚଳିତ ତତ୍ତ୍ୱ ବୈଜ୍ଞାନିକ ଗଣ୍ଡଗୋଳରେ ଏତେ ଭରପୂର ହୋଇ ରହିଥିବା ଏକ ଶବ୍ଦସମ୍ଭାର ବ୍ୟବହାର ଅପରିହାର୍ଯ୍ୟ ପରିଣତି ସ୍ୱରୂପ ଆଲୋଚନା ଏଠାରେ ଅସଂପୂର୍ଣ୍ଣ ।

'ମୂର୍ତ୍ତି ସଂପ୍ରତ୍ୟୟ'—ବାସ୍ତବ ପଦାର୍ଥ ଏବଂ 'ବିଶୁଦ୍ଧ ସମ୍ବନ୍ଧାତ୍ମକ ସଂପ୍ରତ୍ୟୟ' (ବିବିକ୍ତ ଧରଣର ସମ୍ପର୍କ ସ୍ଥାପନ) ଉଭୟଙ୍କୁ ସଂପ୍ରତ୍ୟୟର ଅନ୍ତର୍ଭୁକ୍ତ କରିବାକୁ ବାଧ୍ୟ ହେବାଦ୍ୱାରା ସପିର ଏହି ପୁସ୍ତକରେ ପ୍ରତୀକଭାଷାର ଆଭ୍ୟନ୍ତରୀଣ ମୁଖ୍ୟ ପାର୍ଥକ୍ୟ ଗୁଡ଼ିକୁ (ତୁଳନା କର—ପଞ୍ଚମ ପରିଚ୍ଛେଦର ପଦଟୀକା-ପରିଶିଷ୍ଟ ସୂଚିତ ପୃଷ୍ଠା) ପ୍ରଦର୍ଶନ କରିବାକୁ ଅସମର୍ଥ ହୋଇଥିଲେ । ଅବଶ୍ୟ ଏହି ପୁସ୍ତକଟି ତାଙ୍କର Language as Symbol and as Expression ର କେବଳ ଏକ ପ୍ରାରମ୍ଭିକ ପ୍ରକରଣରୂପୀ । ପୁନି ଭାଷାନୁଶୀଳକରଣର ବିସ୍ତୃତ ଆଲୋଚନା କଲାବେଳେ (ଦଶମ ପରିଚ୍ଛେଦର ପଦଟୀକା-ପରିଶିଷ୍ଟ ସୂଚିତ ପୃଷ୍ଠା) ଆମ୍ଭେମାନେ ଦେଖିବାକୁ ପାଇବା ଯେ ସେହି କ୍ଷେତ୍ରରେ ମଧ୍ୟ ଏହି ଶବ୍ଦସମ୍ଭାର ତାଙ୍କ ପକ୍ଷରେ ଅନୁପଯୋଗୀ ପ୍ରମାଣିତ ହୋଇଛି ।

ଆହୁରି ଏକ ଅନ୍ୟ ଦୃଷ୍ଟିକୋଣରୁ ମଧ୍ୟ ପ୍ରଚଳିତ ଭାଷାତାତ୍ତ୍ୱିକ ମତବାଦଗୁଡ଼ିକର ଦୋଷ ଦୁର୍ବଳତା ଲକ୍ଷ୍ୟ କରିବାରେ ଏହି ସମସ୍ତ ବିଶେଷଜ୍ଞ ଅସମର୍ଥ ହୋଇଛନ୍ତି । ଦ୍ରୁତଗତିରେ ଲୋପ ପାଇ ଯାଉଥିବା ଭାଷାଗୁଡ଼ିକର ସବିଶେଷ ବିବରଣୀ ଲିପିବଦ୍ଧ କରି ରଖିବାରେ ମାନବଜାତିତତ୍ତ୍ୱବିଦ୍‌ମାନେ ବ୍ୟସ୍ତ । ଧ୍ୱନ୍ୟାତ୍ମକ ନିୟମାବଳୀ ଏବଂ ବ୍ୟୁତ୍ପତ୍ତି ସଙ୍କାନ୍ତ ନୂତନ ବିଶଦ କଳାକୌଶଳର ଅନୁଧ୍ୟାନ କରିବାରେ ଭାଷାତତ୍ତ୍ୱବିଦ୍‌ମାନେ କର୍ମରତ । ପୁଣି 'ଦର୍ଶନ' ଚର୍ଚ୍ଚାରେ ଦାର୍ଶନିକମାନେ ସର୍ବଦା ନିୟୋଜିତ । ସୁତରାଂ ଆଲୋଚନା କାଳରେ ଯଥାର୍ଥରେ କଣ ଘଟେ, ତାହାର ଏକ ଉନ୍ନତ ବ୍ୟାଖ୍ୟାର ଯେ ନିତାନ୍ତ ଆବଶ୍ୟକତା ରହିଛି, ଏ କଥାକୁ କେହି ଧ୍ୟାନ ଦେଇ ନାହାନ୍ତି । ଆଦାନ ପ୍ରଦାନ ପଦ୍ଧତିର ବିଶ୍ଳେଷଣ ଅଂଶିକତଃ ମନସ୍ତାତ୍ତ୍ୱିକ । ମନୋବିଜ୍ଞାନ ଏବେ ଏପରି ଏକ ସ୍ତରରେ ପହଞ୍ଚିଛି ଯେ ଏହି ମନସ୍ତାତ୍ତ୍ୱିକ ଅଂଶର ସଫଳ ରୂପାୟନ କରାଯାଇପାରେ । ଏହା ନ ହେଲା ପର୍ଯ୍ୟନ୍ତ ପ୍ରତୀକବାଦ ସମ୍ବନ୍ଧୀୟ ବିଜ୍ଞାନକୁ ଆବଶ୍ୟିକ ରୂପେ ସ୍ଥଗିତ ରଖିବାକୁ ହୋଇଥିଲା । କିନ୍ତୁ ଏବେ ଅର୍ଥ ସମ୍ବନ୍ଧରେ ଅବାନ୍ତର କଥା କହିବା ବା ଶବ୍ଦଗୁଡ଼ିକ ଯେପରିଭାବେ ଆମ୍ଭମାନଙ୍କୁ ପ୍ରତାରିତ କରିଥାନ୍ତି, ସେ ସମ୍ବନ୍ଧରେ ଅଜ୍ଞ ରହିବାର କୌଣସି କାରଣ ନାହିଁ ।

ପାଶ୍ଚାତ୍ୟ ଜଗତରେ ସର୍ବତ୍ର ଏହା ସ୍ୱୀକୃତ ହୋଇଥାଏ ଯେ ଲୋକେ ବାରମ୍ବାର ପରସ୍ପର ଦେଖା ସାକ୍ଷାତ କରିବା ଆବଶ୍ୟକ; ଏବଂ କଥାବାର୍ତ୍ତା ହେବା କେବଳ ଆନନ୍ଦ-ଦାୟକ ନୁହେଁ, ବିଶେଷ କିଛି କହିବାକୁ ନ ଥିବା ସମୟରେ ସୁଦ୍ଧା କିଛି କହିବା ହେଉଛି ଏକ ସାଧାରଣ ସୌଜନ୍ୟ । ସ୍ୱର୍ଗତ ଅଧ୍ୟାପକ ମହାଫିଙ୍କ **ପ୍ରିନ୍‌ସିପଲ୍‌ସ ଅଫ୍ ଦି ଆର୍ଟ ଅଫ୍ କନ୍‌ଭର୍‌ସେସନ୍** (କଥୋପକଥନ କଳାର ନିୟମାବଳୀ) ପୁସ୍ତକରୁ ଏହି ମନ୍ତବ୍ୟଟି ଗୃହୀତ : "ପ୍ରତ୍ୟେକ ସଭ୍ୟ ମନୁଷ୍ୟ ଅନୁଭବ କରେ ବା ଅନୁଭବ କରିବା ଉଚିତ ଯେ ଏହା ତାହାର କର୍ତ୍ତବ୍ୟ; ଏହା ଏକ ସାର୍ବଜନୀନ ସଦ୍‌ଗୁଣ, ଯାହା ସମସ୍ତେ ଅଭ୍ୟାସ କରିବା ଆବଶ୍ୟକ ।" ଯେଉଁମାନେ ଏଥିରେ ସଫଳ ନୁହନ୍ତି, ସେମାନେ ସମାଜ-ଦ୍ୱାରା ଅବହେଳିତ ଅଥବା ନିନ୍ଦିତ ହୋଇ ଦଣ୍ଡଭୋଗ କରନ୍ତି ।

ଯେତେବେଳେ କିଛି କହିବାକୁ ନାହିଁ, ସେତେବେଳେ କିଛି କହିବା ହେଉଛି ଯେ ଏକ କଳା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏହା ମଧ୍ୟ ସେହିପରି ନିଧାର୍ଯ୍ୟଭାବେ ଏବଂ ତାହାଠାରୁ କୌଣସି ଗୁଣରେ ନ୍ୟୂନ ହୋଇ ନ ଥିବା ଏକ କଳା ଯେ ଯେତେବେଳେ ଅନେକଗୁଡ଼ିଏ ବିଷୟ କହିବାକୁ ଥାଏ, ସେଠାରେ ନିଜର ବିବକ୍ଷିତ ବିନ୍ୟସ୍ତଟିକୁ ସୁସ୍ପଷ୍ଟ-ଭାବେ କହିବା । ପୁଣି କଥାର ଅର୍ଥ କରିବା ନିମନ୍ତେ ଯଦି ଉପଯୁକ୍ତ ପ୍ରଣାଳୀର ଅଭାବ

ରହିଥାଏ, ତେବେ ମଧ୍ୟ ବୌଦ୍ଧିକ ବିନୋଦନ ସ୍ତରକୁ କଥୋପକଥନ ଉଠି ପାରିବ କି ନାହିଁ, ତାହା ସନ୍ଦେହଜନକ ।

ଭାଷା ଏବଂ ବିଭିନ୍ନ ପ୍ରକାର ପ୍ରତୀକର ମାନବୀୟ ବ୍ୟାପାରରେ ଯେଉଁ ଅଂଶ ରହିଛି ତତ୍ସମ୍ବନ୍ଧରେ, ବିଶେଷତଃ ଏଗୁଡ଼ିକର ଚିନ୍ତା ଉପରେ ପଡ଼ୁଥିବା ପ୍ରଭାବ ସମ୍ବନ୍ଧରେ ଅଧ୍ୟୟନ ହେଉଛି ପ୍ରତୀକବାଦ । ବସ୍ତୁମାନଙ୍କ ସମ୍ବନ୍ଧରେ ଚିନ୍ତା କଲାବେଳେ ପ୍ରତୀକଗୁଡ଼ିକ ଯେଉଁ ପ୍ରକାରରେ ଆମ୍ଭମାନଙ୍କୁ ସାହାଯ୍ୟ କରନ୍ତି, ବା ବାଧା ଦିଅନ୍ତି, ସେଗୁଡ଼ିକର ବିଶିଷ୍ଟ ଅନୁସନ୍ଧାନ ନିମନ୍ତେ ପୃଥକ୍ କରଣ ହେଉଛି ପ୍ରତୀକବାଦର କାର୍ଯ୍ୟ ।

ପ୍ରତୀକଗୁଡ଼ିକ ନିର୍ଦ୍ଦେଶ ଦିଅନ୍ତି, ଶୃଙ୍ଖଳିତ କରନ୍ତି, ଲିପିବଦ୍ଧ ଓ ଜ୍ଞାପନ କରନ୍ତି । କେଉଁ ବିଷୟକୁ ନେଇ ସେଗୁଡ଼ିକ ଏହି ସବୁ କାର୍ଯ୍ୟ କରନ୍ତି, ତାହା ବ୍ୟକ୍ତ କରିବାକୁ ହେଲେ ଚିନ୍ତା ଓ ବସ୍ତୁ (୧) ମଧ୍ୟରେ ଯେଉଁ ପାର୍ଥକ୍ୟ ସର୍ବଦା ରକ୍ଷା କରାଯାଏ, ସେହି ପାର୍ଥକ୍ୟ ଆମ୍ଭମାନଙ୍କୁ ଏଠାରେ ରକ୍ଷା କରିବାକୁ ହେବ । ଯାହା ନିର୍ଦ୍ଦେଶିତ,

---

(୧) ଏଠାରେ କରାଯାଉଥିବା ବିଶ୍ଳେଷଣ ନିମନ୍ତେ ବସ୍ତୁ (thnig) ଶବ୍ଦଟି ଯଥୋପଯୁକ୍ତ ନୁହେଁ; କାରଣ ଲୌକିକ ଆଲୋଚନାରେ ଏହାର ବ୍ୟବହାର ଭୌତିକ ସତ୍ତ୍ୱ କ୍ଷେତ୍ରରେ ସୀମିତ ରଖାଯାଏ । ଏହି ହେତୁରୁ ଦାର୍ଶନିକମାନେ 'ସତ୍ତ୍ୱ', 'ପଦାର୍ଥ' ବା 'ବିଷୟ' ('Entity' 'ens' or 'object') ଶବ୍ଦକୁ ଯାହା ସ୍ଥିତିଶୀଳ, ତାହାର ସାଧାରଣ ନାମ ରୂପେ ବ୍ୟବହାର କରନ୍ତି । ତେଣୁ ଯାହା ସମ୍ବନ୍ଧରେ ଆମ୍ଭେମାନେ ଚିନ୍ତା କରୁଥାଉଁ ବା ନିର୍ଦ୍ଦେଶିତ କରୁଥାଉଁ, ତାହାକୁ ବୁଝାଇବାକୁ ଏକ ପାରିଭାଷିକ ଶବ୍ଦର ବ୍ୟବହାର ଯଥାର୍ଥ ହେବ ବୋଲି ମନେ କରାଯାଇଛି । 'Object' ବିଷୟର ଆଦିମ ବ୍ୟବହାର ଏହି ଅର୍ଥରେ କରାଯାଉଥିଲେହେଁ ଏହାର ଏକ ଦୁର୍ଭାଗ୍ୟଜନକ ଇତିହାସ ରହିଛି । ତେଣୁ referent [ନିର୍ଦ୍ଦେଶ୍ୟ] ଶବ୍ଦକୁ ଏହି ଅର୍ଥରେ ପ୍ରୟୋଗ କରାଯାଉଛି । Agent ବା reagent ପରି ଅନ୍ୟାନ୍ୟ ent-ପ୍ରତ୍ୟୟାନ୍ତ ଶବ୍ଦ ସହିତ ତୁଳନା କରି ବିଚାର କଲେ 'referent'ର ବ୍ୟୁତ୍ପତ୍ତିଗତ ଆକାର ହେତୁରୁ ତାହାର ଏହି ବ୍ୟବହାରର ଯାଥାର୍ଥ୍ୟରେ ସନ୍ଦେହ ଉପୁଜିପାରେ । କିନ୍ତୁ, ଲାଟିନ୍ ଭାଷାର ବର୍ତ୍ତମାନ-କାଳୀନ participle ର କେତେକ କ୍ଷେତ୍ରରେ (ଯଥା—equo ରେ vehens), ବ୍ୟବହାର ଗତ ଭିନ୍ନତା ସ୍ୱୀକାର କରାଯାଏ । ଇଂରାଜୀର ସତ୍ତ୍ୱବାଚକ ବିଶେଷ୍ୟ ଯଥା—'reagent', 'extent' ଏବଂ 'incident' କ୍ଷେତ୍ରରେ ଏହାର ସାଦୃଶ୍ୟ ରହିଛି ବୋଲି କୁହାଯାଇପାରେ । ସୁତରାଂ ପରବର୍ତ୍ତୀ ଆଲୋଚନାମାନଙ୍କରେ 'referent' ଶବ୍ଦ କର୍ତ୍ତା ପରିବର୍ତ୍ତେ ବ୍ୟବହୃତ ନ ହୋଇ ଗୋଟିଏ ବସ୍ତୁ ପାଇଁ ବ୍ୟବହୃତ ହେବା ବିଷୟରୁ କୌଣସି ଗଣ୍ଡଗୋଳ ଜାତ ନ ହେବା କଥା ।

ଶୃଙ୍ଖଳିତ, ଲିପିବଦ୍ଧ ଓ ଜ୍ଞାପିତ ହୁଏ, ତାହା ହେଉଛି ଚିନ୍ତା (ବା ଯାହାକୁ ଆମ୍ଭେମାନେ ସାଧାରଣ ଭାବେ ନିର୍ଦ୍ଦେଶ [reference] ବୋଲି କହିବା ।) କିନ୍ତୁ ବାସ୍ତବରେ ସାଧକଙ୍କ ଘାସ କାଟିଲେ ମଧ୍ୟ ଆମ୍ଭେମାନେ ଯେପରି ମାଳୀ ଘାସ କାଟେ ବୋଲି କହିଥାଉଁ, ସେହିପରି ପ୍ରତୀକମାନଙ୍କର ଚିନ୍ତା ସହିତ ସାକ୍ଷାତ୍ ସମ୍ବନ୍ଧ ଥିବାର ଆମ୍ଭେମାନେ ଜାଣିଥିଲେ ସୁଦ୍ଧା, ଆମ୍ଭେମାନେ ଏହା ମଧ୍ୟ କହିଥାଉଁ ଯେ ପ୍ରତୀକଗୁଡ଼ିକ ଘଟଣାକୁ ଲିପିବଦ୍ଧ କରନ୍ତି ଏବଂ ବାସ୍ତବତାକୁ ଜ୍ଞାପିତ କରନ୍ତି ।

ଭାଷା ପରିସ୍ଥିତିର ମୁଖ୍ୟ ଉପାଦାନଗୁଡ଼ିକୁ ଗ୍ରହଣ କରିବା ଦ୍ୱାରା ଆମ୍ଭେମାନେ ସହଜରେ କେତେକ ସମସ୍ୟା ଓ ଅସୁବିଧା ବିମସ୍ଥ ଉତ୍ଥାପନ କରୁଁ; କିନ୍ତୁ ସମଗ୍ର ବିଷୟଟିର ଅଧିକ ପୁଙ୍ଖାନୁପୁଙ୍ଖ ବିଚାର କଲେ ଏଗୁଡ଼ିକ ତିରୋହିତ ହୋଇଯାଏ । ଏବେ ପ୍ରତ୍ୟେକେ ଜାଣନ୍ତି ଯେ ଶବ୍ଦଗୁଡ଼ିକର ନିଜସ୍ୱ 'ଅର୍ଥ' ନାହିଁ, ଯଦିଓ ପରବର୍ତ୍ତୀ ପରିଚ୍ଛେଦରେ ଆମ୍ଭେମାନେ ଦେଖିବା ଯେ ଏଗୁଡ଼ିକର ଅର୍ଥ ରହିଛି ବୋଲି ଆଗରୁ ସାର୍ବଜନୀନ ଭାବେ ଲୋକେ ବିଶ୍ୱାସ କରୁଥିଲେ । ଯେତେବେଳେ ଜଣେ ଚିନ୍ତକ ସେଗୁଡ଼ିକର ବ୍ୟବହାର କରେ, କେବଳ ସେତିକିବେଳେ ସେଗୁଡ଼ିକ କୌଣସି ବିଷୟ ସମ୍ବନ୍ଧରେ ବ୍ୟବହୃତ ହୁଅନ୍ତି ଅଥବା ଗୋଟିଏ ଦୃଷ୍ଟିରୁ 'ଅର୍ଥଯୁକ୍ତ' ହୁଅନ୍ତି । ଶବ୍ଦଗୁଡ଼ିକ ହେଉଛନ୍ତି ଉପକରଣ । ଭାଷାର ସମସ୍ତ ମନନମୂଳକ, ବୌଦ୍ଧିକ ପ୍ରୟୋଗ କ୍ରମରେ ଶବ୍ଦର ଏହି ନିର୍ଦ୍ଦେଶାତ୍ମକ ବ୍ୟବହାର ସର୍ବଶ୍ରେଷ୍ଠ ହେବା ବିଧେୟ; କିନ୍ତୁ ଏହି ବ୍ୟବହାର ବ୍ୟତୀତ ଶବ୍ଦର ଅନ୍ୟାନ୍ୟ ଭୂମିକା ମଧ୍ୟ ରହିଛି ଏବଂ ଏହି ସବୁକୁ ଶବ୍ଦର ସଂବେଗାତ୍ମକ କାର୍ଯ୍ୟର ଅନ୍ତର୍ଭୁକ୍ତ କରାଯାଏ । ବିବୃତ କଥନ ଏବଂ ବୌଦ୍ଧିକ ଜ୍ଞାପନ ସମ୍ବନ୍ଧୀୟ ସମସ୍ୟାର ଆଧାର ଗଠିତ ହୋଇଗଲା ପରେ ଏହି କାର୍ଯ୍ୟଗୁଡ଼ିକର ପରୀକ୍ଷା ସନ୍ତୋଷଜନକଭାବେ କରାଯାଇ ପାରେ । କିନ୍ତୁ ଏତଦ୍ଦ୍ୱାରା ଭାଷାର ସଂବେଗାତ୍ମକ ଦିଗର ପ୍ରାଧାନ୍ୟକୁ କ୍ଷୁଣ୍ଣ କରାଯାଉ-ନାହିଁ । ଯେଉଁ ବ୍ୟକ୍ତି ଲୋକାୟତିକ ବା ଆବେଗ ବଚନ ସହିତ ମୁଖ୍ୟତଃ ସଂପୃକ୍ତ, ସେ ଏହି ଅଧ୍ୟୟନ କ୍ରମର ବିପରୀତ ବିଧାନ କରିବାକୁ ଅଧିକ ସୁବିଧାଜନକ ମନେ କରିପାରେ । ବୈଜ୍ଞାନିକମାନଙ୍କ ମଧ୍ୟରେ ସୁଦ୍ଧା, ଆଲୋଚନାରେ ବ୍ୟବହୃତ ଶବ୍ଦଗୁଡ଼ିକର ଆଚରଣ ହେତୁ ବାସ୍ତବିକ ଏପରି ଅନେକ ଅସୁବିଧା ଉଠେ ଯେ ପ୍ରାରମ୍ଭିକ ସ୍ତରରେ ମଧ୍ୟ ଆମ୍ଭେମାନେ ଏହି ଅଣପ୍ରତୀକାତ୍ମକ ପ୍ରଭାବଗୁଡ଼ିକର ବିଚାର କରିବାକୁ ବାଧ୍ୟ ହେଉଁ । କିନ୍ତୁ ଏଠାରେ ବିଭିନ୍ନ ଦୃଷ୍ଟିକୋଣରୁ 'ଅର୍ଥ'ର ବିଶ୍ଳେଷଣ ସହିତ ଆମ୍ଭେମାନେ ମୁଖ୍ୟତଃ ସଂପୃକ୍ତ । ସୁତରାଂ ସଂବେଗାତ୍ମକ, କୂଟନୈତିକ କିମ୍ବା ଅନ୍ୟ କୌଣସି ପ୍ରକାର ବାଧାବିଘ୍ନ-ଦ୍ୱାରା ଜଟିଳ ହୋଇ ନଥିବା ମନନମୂଳକ ବଚନ କ୍ଷେତ୍ରରେ ଚିନ୍ତା, ଶବ୍ଦ ଏବଂ ବସ୍ତୁ ଯେପରିଭାବେ ସମ୍ବନ୍ଧାନ୍ୱିତ ହୋଇଥିବାର ଦେଖାଯାଏ, ତାହାର ଆଲୋଚନାରୁ କାର୍ଯ୍ୟାରମ୍ଭ

କରିବା ବାଞ୍ଛନୀୟ ଏବଂ ଏହି ସମ୍ପର୍କରେ ସର୍ବାଦୌ ଲକ୍ଷ୍ୟଯୋଗ୍ୟ ବିଷୟ ହେଉଛି ଶବ୍ଦ ଓ ବସ୍ତୁ ମଧ୍ୟରେ ଥିବା ସମ୍ବନ୍ଧର ପରୋକ୍ଷତା ।

ଏହି ବିଷୟଟିକୁ ଗୋଟିଏ ରେଖାଚିତ୍ର ସାହାଯ୍ୟରେ ସରଳଭାବେ ଦର୍ଶାଇ ଦିଆଯାଇପାରେ । ଯେ କୌଣସି ଏକ ଉକ୍ତି ଦେବା ବା ତାହା ବୁଝି। ପଡ଼ୁଥିବା କ୍ଷେତ୍ରରେ ଯେଉଁ ତିନୋଟି କାରକ [factor] ନିହିତ ଥାଏ, ସେଗୁଡ଼ିକୁ ତ୍ରିଭୁଜର କୋଣଗୁଡ଼ିକ ସ୍ଥାନରେ ଅବସ୍ଥାପିତ କରାଯାଇ ପାରେ ଏବଂ ତନ୍ମଧ୍ୟସ୍ଥ ସମ୍ବନ୍ଧକୁ ତ୍ରିଭୁଜର ବାହୁଦ୍ୱାରା ଉପସ୍ଥାପିତ କରାଯାଇପାରେ । ଉପରେ ଯେଉଁ ବିଷୟର ଉଲ୍ଲେଖ କରାଯାଇଥିଲା, ସେହି ଦୃଷ୍ଟିରୁ ତ୍ରିଭୁଜର ବାହୁଦ୍ୱୟ ତୁଳନାରେ ଭୂମି ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର ବୋଲି କୁହାଯାଇପାରେ । ଏତଦ୍ୱାରା ଉଲ୍ଲିଖିତ ବିଷୟର ପୁନରାବୃତ୍ତି ମାତ୍ର ହେଉଛି ।

ଗୋଟିଏ ଚିନ୍ତା ଏବଂ ପ୍ରତୀକ ମଧ୍ୟରେ କାରଣ-ସମ୍ବନ୍ଧ ବିଦ୍ୟମାନ । ଆମ୍ଭେମାନେ କହିବା ସମୟରେ ଯେଉଁ ପ୍ରତୀକତତ୍ତ୍ୱର ପ୍ରୟୋଗ କରୁଁ, ତାହାର ଆଂଶିକ କାରଣ ହେଉଛି ଆମ୍ଭମାନଙ୍କ ନିର୍ଦ୍ଦେଶ [reference] ଏବଂ ଆଂଶିକ କାରଣ ହେଉଛି ସାମାଜିକ ତଥା ମନସ୍ତାତ୍ତ୍ୱିକ କାରକ [factors] ଅର୍ଥାତ୍ ଆମ୍ଭମାନଙ୍କ ନିର୍ଦ୍ଦେଶର ଲକ୍ଷ୍ୟ, ଅନ୍ୟ ଲୋକଙ୍କ ଉପରେ ପ୍ରତୀକର ପ୍ରସ୍ତାବିତ ପରିଣତି ଏବଂ ଆମ୍ଭମାନଙ୍କ ନିଜର ଅଭିବୃତ୍ତି । କଥିତ ବିଷୟକୁ ଆମ୍ଭେମାନେ ଶୁଣିବା ବେଳେ ପ୍ରତୀକଗୁଡ଼ିକ ଏକ ନିର୍ଦ୍ଦେଶିତ କାର୍ଯ୍ୟ କରିବାକୁ ଏବଂ ଏକ ଅଭିବୃତ୍ତି ଗ୍ରହଣ କରିବାକୁ ଆମ୍ଭମାନଙ୍କୁ ପ୍ରଭାବିତ କରେ । ପରିସ୍ଥିତି ଅନୁଯାୟୀ ଏହି ଅଭିବୃତ୍ତି ଅଳ୍ପାଧିକ ପରିମାଣରେ ବକ୍ତାର ଅଭିବୃତ୍ତି ସଦୃଶ ।

---

* ତୁଳନା କର-ପଞ୍ଚମ ପରିଚ୍ଛେଦ—ପଦଟୀକା ପରିଶିଷ୍ଟ ମୂଳତ ପୃଷ୍ଠା ।

ଚିନ୍ତା ଏବଂ ନିର୍ଦ୍ଦେଶ୍ୟ ମଧ୍ୟରେ ଏକ ସମ୍ବନ୍ଧ ମଧ୍ୟ ରହିଛି । ଏହା ଅଳ୍ପାଧିକ ପରିମାଣରେ ସାକ୍ଷାତ୍ (ଯଥା—ଦେଖୁଥିବା ଏକ ରଙ୍ଗୀନ୍ ସମତଳ ପୃଷ୍ଠ ଆମ୍ଭେମାନେ ଯେତେବେଳେ ଅବହିତ ରହୁଁ ବା ତତ୍ସମ୍ବନ୍ଧରେ ଚିନ୍ତା କରୁଁ) ଅଥବା ପରୋକ୍ଷ (ଯଥା—ଆମ୍ଭେମାନେ ଯେତେବେଳେ ନେପୋଲିଅନ୍‌ଙ୍କୁ ନିର୍ଦ୍ଦେଶିତ କରୁଁ ବା ଚିନ୍ତା କରୁଁ) । ଏହି ଶେଷୋକ୍ତ କ୍ଷେତ୍ରରେ କିମ୍ବା ଓ ତାହାର ନିର୍ଦ୍ଦେଶ୍ୟ ମଧ୍ୟରେ ଏକ ସୁଦୀର୍ଘ ସଙ୍କେତ ସ୍ଥିତି-ଶୃଙ୍ଖଳ ଥାଇପାରେ : ଶବ୍ଦ—ଐତିହାସିକ—ସମସାମୟିକ କାଗଜପତ୍ର—ପ୍ରତ୍ୟକ୍ଷଦର୍ଶୀ—ନିର୍ଦ୍ଦେଶ୍ୟ (ନେପୋଲିଅନ୍) ।

ପ୍ରତୀକ ଏବଂ ନିର୍ଦ୍ଦେଶ୍ୟ ମଧ୍ୟରେ ପରୋକ୍ଷ ସମ୍ବନ୍ଧ ଗୋଟିକ ବ୍ୟତୀତ ଅନ୍ୟ କୌଣସି ପ୍ରାସଙ୍ଗିକ ସମ୍ବନ୍ଧ ନାହିଁ । ଗୋଟିଏ ନିର୍ଦ୍ଦେଶ ପରିବର୍ତ୍ତେ ପ୍ରତୀକଟି ଜଣକଦ୍ୱାରା ବ୍ୟବହୃତ ହେବାରେ ହିଁ ଏହି ପରୋକ୍ଷ ସମ୍ବନ୍ଧ ପର୍ଯ୍ୟବସିତ; ଅର୍ଥାତ୍ ପ୍ରତୀକ ଓ ନିର୍ଦ୍ଦେଶ ସାକ୍ଷାତ୍ ଭାବେ ସମ୍ବନ୍ଧାନ୍ୱିତ ନୁହନ୍ତି; (ବ୍ୟାକରଣଗତ କାରଣ ହେତୁରୁ ଆମ୍ଭେମାନେ ଯେତେବେଳେ ଏହିପରି ଏକ ସମ୍ବନ୍ଧ ଅପାଦିତ କରୁଁ, ତାହା କେବଳ ଏକ ଆରୋପିତ ସମ୍ବନ୍ଧ (୧) ହେବ; ତାହା ବାସ୍ତବ ସମ୍ବନ୍ଧଠାରୁ ଭିନ୍ନ) । କିଭିଳିକର ବାସ୍ତବସ୍ୱର ମାଧ୍ୟମରେ ପ୍ରତୀକ ଓ ନିର୍ଦ୍ଦେଶ ମଧ୍ୟରେ କେବଳ ଏକ ପରୋକ୍ଷ ସମ୍ବନ୍ଧ ରହିପାରେ (୨) ।

---

(୧) ଷଷ୍ଠ ପରିଚ୍ଛେଦର ପଦଟୀକା-ପରିଶିଷ୍ଟ ମୁଦ୍ରିତ ପୃଷ୍ଠା ଦେଖ ।

(୨) ନିର୍ଦ୍ଦେଶ୍ୟ ପରିବର୍ତ୍ତେ ବ୍ୟବହୃତ ପ୍ରତୀକଟି ଅଳ୍ପାଧିକ ପରିମାଣରେ ସାକ୍ଷାତ୍‌ରୂପେ ତାହାର ସଦୃଶ ହୋଇଥିଲେ, ତାହା ଏକ ବ୍ୟତିକ୍ରମ ଦୃଷ୍ଟାନ୍ତ ହେବ । ଉଦାହରଣ ସ୍ୱରୂପ, ଯେତେବେଳେ ପ୍ରତୀକଟି ଏକ ଧ୍ୱନ୍ୟନୁକରଣ ଶବ୍ଦ ବା ପ୍ରତିମା ବା ଇଙ୍ଗିତ ବା ଅଙ୍କିତ ଚିତ୍ର । ଏହି କ୍ଷେତ୍ରରେ କିଭିଳିକଟି ପୂର୍ଣ୍ଣତା ପ୍ରାପ୍ତ । ତାହାର ଭୂମି ଯୋଗାଇ ଦିଆଯାଇଛି । ଏହାର ପରିଣତି ସ୍ୱରୂପ ନିହିତ ସମସ୍ୟା ବହୁ ପରିମାଣରେ ସରଳୀକୃତ ହେଲ ପରି ମନେ ହୁଏ । ଏହି କାରଣରୁ ସାଧାରଣ ଭାଷା-ସ୍ଥିତିକୁ ସମ୍ଭବତଃ ଅଧିକ ଆଦିମ ଆକାରକୁ ପରିବର୍ତ୍ତିତ କରିବା ନିମନ୍ତେ ବହୁ ପ୍ରୟାସ କରାଯାଇଛି । ଇଙ୍ଗିତର ସମର୍ଥନ ଲାଭ କରିପାରୁ ନ ଥିବା ଭାଷାଗୁଡ଼ିକ ନିଜ ନିଜର ପ୍ରୟୋଗ କ୍ଷେତ୍ରରେ ଯେଉଁ ପରିମାଣରେ କାର୍ଯ୍ୟକାରୀ ହୁଏ, ତହିଁରୁ ଯଥେଷ୍ଟ ଅଧିକ ପରିମାଣରେ ଇଙ୍ଗିତ ଭାଷାମାନଙ୍କର ନିଜ ନିଜର ଯଥାଯଥ ପ୍ରୟୋଗ କ୍ଷେତ୍ରରେ କାର୍ଯ୍ୟକାରିତା ରହିଛି । ଇଙ୍ଗିତ ଭାଷାମାନଙ୍କର ଅଧିକ ପୂର୍ଣ୍ଣତା ପ୍ରାପ୍ତ ହେବା ଯେ ଏହାର କାରଣ, ଏଥିରେ ସନ୍ଦେହ ନାହିଁ । ତେଣୁ ଗୋଟିଏ ଦୃଶ୍ୟର କେବଳ ବର୍ଣ୍ଣନା ଦେବା ପରିବର୍ତ୍ତେ ଯଦି ତାହାକୁ ଯଥାଯଥଭାବେ ଅଭିନୟ ମାଧ୍ୟମରେ ପ୍ରଦର୍ଶନ କରି ଦିଆଯାଏ, ତେବେ କଣ ଘଟିଥିଲ, ଅତ୍ୟନ୍ତ ସୁସ୍ପଷ୍ଟରୂପେ ଜଣାପଡ଼ିଯାଏ । କିନ୍ତୁ ସ୍ୱୀକାର କରିବାକୁ ହେବ ଯେ ସାଧାରଣ

'କୁକୁର' ଶବ୍ଦ ଏବଂ ରାସ୍ତାରେ ବୁଲୁଥିବା କେତେକ ପରିଚିତ ବସ୍ତୁ ମଧ୍ୟରେ କୌଣସି ସାକ୍ଷାତ୍ ସମ୍ବନ୍ଧ ନାହିଁ ଏବଂ କେବଳ ଏତିକି ସମ୍ବନ୍ଧ ରହିଛି ଯେ ଏହି ଜୀବକୁ ନିର୍ଦ୍ଦେଶିତ କରିବା ନିମନ୍ତେ ଆମ୍ଭେମାନେ ଏହି ଶବ୍ଦଟିର ପ୍ରୟୋଗ କରୁ—ଏହି କଥାରେ ଜୋର ଦେବା ଅନାବଶ୍ୟକ ମନେ ହୋଇପାରେ । କିନ୍ତୁ ଶବ୍ଦ ଓ ବସ୍ତୁ ମଧ୍ୟରେ ସାକ୍ଷାତ୍ ଅର୍ଥ-ସମ୍ବନ୍ଧ ମତବାଦ ଏକଦା ସର୍ବବାଦୀ ସ୍ୱୀକୃତ ହୋଇ ରହିଥିଲା ଏବଂ ଏହା ଯେଉଁ ପ୍ରକାର ସରଳୀକରଣର ପ୍ରରୂପ, ତାହା ହେଉଛି ଚିନ୍ତା ସମ୍ମୁଖୀନ ହେଉଥିବା ପ୍ରାୟ ସମସ୍ତ ଅସୁବିଧାର ଯେ ଉତ୍ସ—ଏକଥା ଆମେ ପରେ ଅନୁଭବ କରିପାରିବା । ପରବର୍ତ୍ତୀ ସ୍ତରରେ ଜଣାପଡ଼ିବ ଯେ ବ୍ୟାମିଶ୍ରଣ ଘଟାଇବା ଓ ବାଧା ଦେବାର ଶକ୍ତି ଏ ପ୍ରକାର ସରଳୀକରଣରେ ରହିଛି ଏବଂ ଏହା ଅନେକାଂଶରେ ଆଦାନପ୍ରଦାନର ପର୍ତ୍ତି ଗ୍ରନ୍ଥିକ ହେତୁରୁ ଘଟିଥାଏ । ଯଦି ଭାଷାର ବ୍ୟବହାର କରାଯାଏ, ତେବେ ତାହା ଏକ **ତତ୍ପର** ଉପକରଣ ହେବା ଆବଶ୍ୟକ । ଗୋଟିଏ ଅଭିବ୍ୟକ୍ତି ବହୁଳଭାବେ ବ୍ୟବହୃତ ହେବ କି ନା ନିର୍ଦ୍ଧାରଣ କରିବା ନିମନ୍ତେ ବିଗ୍ରହ ବିମର୍ଷ ମଧ୍ୟରେ ତାହାର ଯାଥାର୍ଥ୍ୟ ଅପେକ୍ଷା ତାହାର ସରଳତା ଓ ଅନାୟାସଲଭ୍ୟତାର ପ୍ରାଧାନ୍ୟ ସର୍ବଦା ଅଧିକ । ଶବ୍ଦ ଓ ବସ୍ତୁ ମଧ୍ୟରେ, ବାକ୍ୟାଂଶ ଓ ପରିସ୍ଥିତି ମଧ୍ୟରେ ଏକ ସାକ୍ଷାତ ସରଳ ସମ୍ବନ୍ଧ ବୁଝାଇବାକୁ 'ଅର୍ଥ' ପରି ଏକ ସଂକ୍ଷିପ୍ତ ଶବ୍ଦକୁ ସର୍ବଦା ବ୍ୟବହାର କରାଯାଇଥାଏ । ଯଦି ଏହିପରି ସମ୍ବନ୍ଧର ସ୍ଥିତି ସ୍ୱୀକାର କରାଯାଇ ପାରନ୍ତା, ତେବେ ଅବଶ୍ୟ ଅର୍ଥର ପ୍ରକୃତିବିମର୍ଷକ କୌଣସି ସମସ୍ୟାର ଉଦ୍ଭବ ହୁଅନ୍ତା ନାହିଁ ଏବଂ ଯେଉଁମାନେ ଏଥି ସହିତ ସଂପୃକ୍ତ, ସେମାନଙ୍କ ମଧ୍ୟରୁ ଅଧିକାଂଶ ବ୍ୟକ୍ତି ଏହି ବିଷୟର ଆଲୋଚନା କରିବା ପାଇଁ ନାସ୍ତି କରିଦେବା

---

ପରିସ୍ଥିତିରେ ଆମ୍ଭମାନଙ୍କ ଚିଭ୍ନିଜ କ୍ଷେତ୍ରରେ ଭୂମିର ଅଭାବ ରହିଛି; ପ୍ରତୀକ ଏବଂ ନିର୍ଦ୍ଦେଶ୍ୟ ମଧ୍ୟରେ ସାକ୍ଷାତ୍ ସମ୍ବନ୍ଧ ନାହିଁ । ଆହୁରି ମଧ୍ୟ ଏହା ସ୍ୱୀକାର୍ଯ୍ୟ ଯେ ଏହି ଅଭାବ ହେତୁରୁ ହିଁ ଭାଷାର ଅଧିକାଂଶ ସମସ୍ୟା ଜାତ ହୋଇଥାଏ । ପ୍ରତିରୂପମୂଳକ ଓ ଅପ୍ରତିରୂପମୂଳକ ଭାଷା ତତ୍ତ୍ୱ ଦୃଷ୍ଟିରୁ ସମ୍ପୂର୍ଣ୍ଣ ଭିନ୍ନ । ପରିବର୍ତ୍ତେ ବ୍ୟବହୃତ ହେବା ଓ ପ୍ରତିରୂପ ହେବା ସମ୍ବନ୍ଧ ପରସ୍ପର ଭିନ୍ନ । କିନ୍ତୁ ପ୍ରତୀକ ଓ ନିର୍ଦ୍ଦେଶ୍ୟ ମଧ୍ୟରେ ଯେପରି ଏକ ସମ୍ବନ୍ଧ ରହିଛି, ସେହିପରି ମନେକରି ସମସ୍ତ ସମୟରେ କହିବା ସୁବିଧାଜନକ ହୋଇଥାଏ । ପାଠକଟାଳୀ ଦୃଷ୍ଟାନ୍ତ ସହିତ ସାଦୃଶ୍ୟ ରକ୍ଷାକରି ଆମ୍ଭେମାନେ ଏଠାରେ କହୁଁ ଯେ ପ୍ରତୀକ ନିର୍ଦ୍ଦେଶ୍ୟକୁ ନିର୍ଦ୍ଦେଶ କରେ ! ଏହି ଅଭିବ୍ୟକ୍ତିର ଦ୍ୱିବନ୍ଦ୍ୱ ପ୍ରକୃତି ବିସ୍ମୃତ ନ ହେଲେ ଏଠାରେ ଗଣ୍ଡଗୋଳ ଅନିବାର୍ଯ୍ୟ ନୁହେଁ । ପରବର୍ତ୍ତୀ ପରିଶିଷ୍ଟ-୨ର ପଞ୍ଚମ ବିଭାଗରେ ଉପର୍ଯ୍ୟୁକ୍ତ ରେଖାଚିତ୍ର ସଂପୃକ୍ତ ବଚନ-ସ୍ଥିତିର କ୍ରମବିକାଶ ସମ୍ବନ୍ଧରେ ଡକ୍ଟର ମାଲିନୋସ୍କି ଏକ ଉପାଦେୟ ବିବରଣୀ ଦେଇଛନ୍ତି ।

ଯୁକ୍ତମୁକ୍ତ ହୋଇଥାନ୍ତା । କିନ୍ତୁ ଦୈନନ୍ଦିନ ଜୀବନର ଘଟଣାଗୁଡ଼ିକର ପ୍ରଚଳିତ ପ୍ରତୀକ-ଦ୍ୱାରା ପ୍ରକାଶ ରୀତିକୁ ପରିହାର କରି ତତ୍ତ୍ୱ ପରିବର୍ତ୍ତେ ଅଧିକ ଯଥାଯଥ ବିବରଣୀ ଦେବାର ପ୍ରଯତ୍ନ ହେତୁ ବିଜ୍ଞାନମାନଙ୍କରେ ଏତେ ଅଧିକ ସଂଖ୍ୟକ ଘଟଣାର ଚିତ୍ତାକର୍ଷକ ପରିବର୍ତ୍ତନ ଘଟୁଛି ଯେ ଏବେ 'ଅର୍ଥ' ହେଉଛି କେବଳ 'ଅର୍ଥ'—ଏପ୍ରକାର ସମୀକ୍ଷା ରହିତ କୌଣସି ମତବାଦ ଜନପ୍ରିୟ ହେବାର ଅବକାଶ ନାହିଁ । ସାଧାରଣତଃ ସରଳ ଓ ସନ୍ତୋଷଜନକ ବୋଲି ଗୃହୀତ ହେଉଥିବା ଧାରଣା ଗୁଡ଼ିକର ସମାଲୋଚନାମୂଳକ ବିଶ୍ଳେଷଣରେ ପ୍ରବୃତ୍ତ ହେବା ପୂର୍ବରୁ ନିୟମାନୁଗତ ଭାବେ ଯାହା ଆବଶ୍ୟକ, ତାହା ହେଉଛି—ଘଟଣାମାନଙ୍କର ଗୃହୀତ ବ୍ୟାଖ୍ୟା ସହିତ କେତେକ ନୂତନ ଘଟଣା ବିମୂଢ଼ଜନକଭାବେ ବିରୋଧୀ ହେବା । ପଦାର୍ଥବିଜ୍ଞାନର ବିପ୍ଲବାତ୍ମକ ପରିବର୍ତ୍ତନ କ୍ଷେତ୍ରରେ ଏହି ପରିସ୍ଥିତିର ଉଦ୍ଭବ ନିକଟ ଅତୀତରେ ହୋଇ ଯାଇଛି । କିନ୍ତୁ ସମସାମୟିକତା ସମ୍ବନ୍ଧୀୟ ସରଳ ସ୍ୱାଭାବିକ ଧାରଣା, ଯଥା—ଏହା ଏକ ଦୁଇପଦ ବିଶିଷ୍ଟ ସମ୍ବନ୍ଧ—ଏହି ବିଷୟରେ ସନ୍ଦେହ କରିବା ପୂର୍ବରୁ ଏହି ବିପ୍ଳବ ସହିତ ଆଉ ଏକ ବିଷୟ ଆବଶ୍ୟକ ହେଲା । ତାହା ହେଉଛି ସ୍ୱୟମ୍ଭୂ ଓ ଆବଶ୍ୟିକରୂପେ ଅନନୁସନ୍ଧେୟ (୧) କୌଣସି ତଥ୍ୟକୁ ସ୍ୱୀକାର୍ଯ୍ୟ ସ୍ୱରୂପ ଗ୍ରହଣ କରି-ନେବାରେ ପ୍ରବଳ ଅନିଚ୍ଛା । ଯାହାହେଉ, ଏ ପ୍ରକାର ସନ୍ଦେହର ପରିଣତି ହେଉଛି ଆପେକ୍ଷିକ ତତ୍ତ୍ୱ । ଠିକ୍ ସେହି ଦୁଇଟି ଅଭିପ୍ରେରଣା, ଅର୍ଥାତ୍ ନୂତନ ଅସଙ୍ଗତ ଘଟଣା ଏବଂ ବ୍ୟାଖ୍ୟାର ଅନ୍ୱେଷଣରେ ଅଜ୍ଞାତ ତତ୍ତ୍ୱର ବ୍ୟବହାର ପ୍ରତି ବିମୁଖତା ମନୋବିଜ୍ଞାନରେ ହଟ୍ଟଗୋଳର ଉଦ୍ରେକ କରିଛି । କିନ୍ତୁ ଏଠାରେ ଆବଶ୍ୟକ ହେଉଥିବା ପରିବର୍ଦ୍ଧିତ ତଥ୍ୟ ପରିବେକ୍ଷଣ ଏ ପର୍ଯ୍ୟନ୍ତ କରାଯାଇ ନାହିଁ । ମନୋବିଜ୍ଞାନରେ କୌଣସି କୋପାରନିକାସୀୟ ପରିବର୍ତ୍ତନ ଘଟିନାହିଁ । କିନ୍ତୁ ଏହାକୁ ସହଯୋଗୀ ବିଜ୍ଞାନମାନଙ୍କର ସମକକ୍ଷ କରିବାକୁ ହେଲେ ଏଥିରେ ଏକାଧିକ ପରିବର୍ତ୍ତନର ଆବଶ୍ୟକତା ରହିଛି ।

ଏହା ଉଲ୍ଲେଖନୀୟ ଯେ ମନୋବିଜ୍ଞାନରେ ଏବେ ଯେଉଁ ଉତ୍ତେଜନା ପ୍ରକାଶ ପାଉଛି, ତାହା ସମ୍ପୂର୍ଣ୍ଣରୂପେ ନହେଲେ ସୁଦ୍ଧା ମୁଖ୍ୟତଃ ଅନୁଭବ ଏବଂ ସଙ୍କଳ୍ପସଙ୍କାନ୍ତୀୟ । ପୁରାତନ ଚିନ୍ତା ସମ୍ବନ୍ଧୀୟ ସମସ୍ୟାରୁ ମନୋବିଶ୍ଳେଷରେ ଜନପ୍ରିୟ ସଫଳତା ଆଡ଼କୁ ଦୃଷ୍ଟି ଆକର୍ଷିତ ହୋଇ ଯାଇଛି । ତଥାପି ଅନ୍ୟ ସମସ୍ତ ବିଜ୍ଞାନର ଫଳାଫଳ ତଥା ମନୋ-ବିଜ୍ଞାନର ନିଜସ୍ୱ ଅନୁସନ୍ଧାନର ସମଗ୍ର କଳାକୌଶଳ ଚିନ୍ତା କ୍ଷେତ୍ରର ଅଗ୍ରଗତି ଉପରେ ନିର୍ଭରଶୀଳ ହୋଇଥିବାରୁ ଜ୍ଞାନ ଆହରଣ ବା 'ଅର୍ଥ' ସମସ୍ୟା ଏ ପର୍ଯ୍ୟନ୍ତ କେନ୍ଦ୍ରିକ ସମସ୍ୟା ହୋଇ ରହିଛି । ପ୍ରସ୍ତାବଯୋଗ୍ୟ ଅନ୍ୟ ଯେ କୌଣସି ବିଷୟ ଅପେକ୍ଷା ଏହି ବିଷୟରେ ହିଁ ସମୀକ୍ଷା ସମ୍ଭବତଃ ଅଧିକ ଲାଭଦାୟକ ଓ ନୂତନ ଅଭିଜ୍ଞାନ୍ୟାସର ସହାୟକ ।

---

(୧) ସ୍ଥାନବିନ୍ଦୁ ଓ ମୁହୂର୍ତ୍ତଗୁଡ଼ିକ ଅତି ବିଲକ୍ଷଣମୂଳକ ବାଚନିକ ସଂସ୍ଥା ।

ବ୍ୟବହାରବାଦୀ ମନୋବିଜ୍ଞାନୀମାନେ ମଧ୍ୟ ଯଥାର୍ଥରେ ଏକଥା ଦର୍ଶାଇ ଦେଇଛନ୍ତି ଯେ ଏହି ପ୍ରଶ୍ନ ଅତି ନିବିଡ଼ଭାବେ ଶବ୍ଦବ୍ୟବହାର ସହିତ ସମ୍ପୃକ୍ତ ।

କିନ୍ତୁ ପଦାର୍ଥବିଜ୍ଞାନର ସମସ୍ୟା ପରି ସମସ୍ୟାମାନଙ୍କ ସମାଧାନପ୍ରୟାସ ଅପେକ୍ଷା ବହୁତ ଅଧିକ ପରିମାଣରେ ଅର୍ଥସମସ୍ୟାର ସମାଧାନ ପ୍ରୟାସ ପାଇଁ ଏହାର ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ଆବଶ୍ୟକ । ପଦାର୍ଥ ବିଜ୍ଞାନର ପ୍ରତ୍ୟେକ ମହାନ୍ ଅଗ୍ରଗତି ଦ୍ୱାରା ଏକ ସାଧାରଣତଃ ଗୃହୀତ ତତ୍ତ୍ୱଶାସ୍ତ୍ରୀୟ ବ୍ୟାଖ୍ୟା ଭ୍ରାନ୍ତ ପ୍ରତିପାଦିତ ହୋଇଥାଏ । ଆଗରୁ ଏହି ବ୍ୟାଖ୍ୟା ଏକ ସୁବିଧାଜନକ ସଙ୍କେତନାଭ୍ୟନ୍ତ ପ୍ରତୀକାତ୍ମକ ସଂକ୍ଷିପ୍ତୀକରଣଦ୍ୱାରା ପ୍ରତିଷ୍ଠିତ ହୋଇ ରହିଥାଏ । କିନ୍ତୁ ଏ ପ୍ରକାର ସଂକ୍ଷିପ୍ତୀକୃତ ଅଭିବ୍ୟକ୍ତିଜାତ ଗଣ୍ଡଗୋଳ ଓ ବାଧା ତଥା ଏହି ଅଭିବ୍ୟକ୍ତିଗୁଡ଼ିକ ଦ୍ୱାରା ସଂରକ୍ଷିତ ଓ ସଞ୍ଜୀବିତ ସମୀକ୍ଷାରହିତ ସରଳ ମତବାଦଗୁଡ଼ିକର ସଂଖ୍ୟା ଅନ୍ୟାନ୍ୟ କ୍ଷେତ୍ର ଅପେକ୍ଷା ମନୋବିଜ୍ଞାନରେ ଏବଂ ବିଶେଷତଃ ଜ୍ଞାନ ସିଦ୍ଧାନ୍ତରେ ସର୍ବାଧିକ । ଏହାର କାରଣ ହେଉଛି, ମନୋବିଜ୍ଞାନରେ ପ୍ରତୀକମାନଙ୍କର କାର୍ଯ୍ୟକାରିତା ସମ୍ବନ୍ଧରେ କୌଣସି ପ୍ରାରମ୍ଭିକ ଅନୁସନ୍ଧାନ ନ କରି ଯେପରି ସର୍ବଦା କୌଣସି ପ୍ରଶ୍ନର ସମାଧାନ ଚେଷ୍ଟା ସେଗୁଡ଼ିକର ମାଧ୍ୟମରେ କରାଯାଇଥାଏ ଏବଂ ତଦ୍ୱାରା ତଥାକଥିତ ତତ୍ତ୍ୱମୀମାଂସାମୂଳକ ଦୁରୂହତାରେ ସମସ୍ୟାଗୁଡ଼ିକ ଭରପୂର ହୋଇ ରହିଥାଏ, ଅନ୍ୟ କୌଣସି ସମସ୍ୟା ତଦ୍ରୂପ ନୁହେଁ ।

ପ୍ରତୀକମାନଙ୍କର କାରଣ ଓ ପରିଣାମ ସମ୍ବନ୍ଧରେ ଅଧିକ ପୁଙ୍ଖାନୁପୁଙ୍ଖଭାବେ ଏବେ ଆମ୍ଭମାନଙ୍କୁ ବିଚାର କରି ଦେଖିବାକୁ ହେବ । (୧) ପ୍ରତୀକ ବ୍ୟବହାର ପଦ୍ଧତିର ରକ୍ଷଣଶୀଳ ଓ ଧାରଣକ୍ଷମ ଉପଯୋଗିତା ବ୍ୟତୀତ ଅନ୍ୟ ଯେ କୌଣସି ଉପାଦେୟତା ଥାଉ ନା

---

(୧) ଚିନ୍ତା କିମନ୍ତେ କୌଣସି ନା କୌଣସି ପ୍ରକାର ପ୍ରତୀକର ଆବଶ୍ୟକତା ଅଛି କି ନାହିଁ, ନିର୍ଦ୍ଧାରଣ କରିବା ହିଁ ଏକ ଦୁରୂହ ସମସ୍ୟା । ଏହା The meaning of Psychology (ସପ୍ତଦଶ ପରିଚ୍ଛେଦ) ଏବଂ ଏହି ପୁସ୍ତକର ଦଶମ ପରିଚ୍ଛେଦରେ ଆଲୋଚିତ ହୋଇଛି । କିନ୍ତୁ ଚିନ୍ତାର ଲିପିବଦ୍ଧକରଣରେ ଏବଂ ଆଦାନ ପ୍ରଦାନରେ (ପରିଚିତି ଜ୍ଞାନ ବ୍ୟତୀତ) ନିଧାର୍ଯ୍ୟରୂପେ ପ୍ରତୀକର ଆବଶ୍ୟକତା ରହିଛି । ଆଭ୍ୟନ୍ତରୀଣ କଥାବାର୍ତ୍ତା ଆକାରର ନ ହୋଇ ଚିନ୍ତା ସଂଗୃହୀ ହୋଇ ରହିଥିବା ପର୍ଯ୍ୟନ୍ତ ମନେହୁଏ, ପ୍ରତୀକର ଆବଶ୍ୟକତା ନାହିଁ । ଚିନ୍ତା ଯେତେବେଳେ ସ୍ୱଗତ କଥାବାର୍ତ୍ତାର ଆକାର ଧାରଣ କରେ, କେବଳ ସେତିକବେଳେ ହିଁ ପ୍ରତୀକର ବ୍ୟବହାର ଦେଖାଯାଏ । ସ୍ୱାଭାବିକ ପରିସ୍ଥିତିରେ ଚିନ୍ତାର ବାସ୍ତବ ପ୍ରଗତି ସହଗ୍ରସ୍ତ ପ୍ରତୀକ ବ୍ୟବହାର ସହିତ ଅତି ନିବିଡ଼ଭାବେ ଜଡ଼ିତ ।

କାହିଁକି, ତାହାର ଅନୁପାଦେୟତା ମଧ୍ୟ ରହିଛି, ଏହା ଅନୁଭୂତସିଦ୍ଧ । ସ୍ଥୂଳ ଧରଣର ଚାତୁରିକ ଗଣ୍ଡଗୋଳ ବହୁଦିନରୁ ସ୍ୱୀକୃତ ହୋଇଛି । କିନ୍ତୁ ସୂକ୍ଷ୍ମ ତଥା ବାରମ୍ବାର ଘଟୁଥିବା ଚାତୁରିକ ଗଣ୍ଡଗୋଳ ପ୍ରତି ସେତେ ଦୃଷ୍ଟି ଦିଆଯାଇ ନାହିଁ । ପରବର୍ତ୍ତୀ ପରିଚ୍ଛେଦମାନଙ୍କରେ ଏହି ପ୍ରକାର ବହୁ ଦୃଷ୍ଟାନ୍ତ ଦିଆଯିବ । ଏଗୁଡ଼ିକରୁ ଅଧିକାଂଶ ଦର୍ଶନର ଇତିହାସରୁ ସଂଗୃହୀତ, କାରଣ ଏହି କ୍ଷେତ୍ରରେ ହିଁ ଏ ପ୍ରକାର ଗଣ୍ଡଗୋଳ ସମସ୍ୟାନୁକ୍ରମେ ଅଧିକ ସୁସ୍ପଷ୍ଟ ହୋଇଥାଏ । ଶବ୍ଦଗୁଡ଼ିକ କୌଣସି ନା କୌଣସି ଭାବେ ବସ୍ତୁର ଅଂଶ ଅଥବା ଏଗୁଡ଼ିକ ସର୍ବଦା ତଦୀୟ ସହସମ୍ବନ୍ଧୀ ବସ୍ତୁ ଆପାଦିତ କରନ୍ତି—ଏହି ଅନ୍ଧବିଶ୍ୱାସରେ ଉପର୍ଯ୍ୟୁକ୍ତ ଗଣ୍ଡଗୋଳଗୁଡ଼ିକର ମୂଳସୂତ୍ର ରହିଛି ବୋଲି ପରେ ପ୍ରଦର୍ଶିତ ହେବ ଏବଂ ଏପର୍ଯ୍ୟନ୍ତ ଶକ୍ତିଶାଳୀ ହୋଇ ରହିଥିବା ଏହି ସହଜାତପ୍ରବୃତ୍ତିମୂଳକ ବିଶ୍ୱାସର ଐତିହାସିକ ଦୃଷ୍ଟାନ୍ତ ବହୁ ବିଭିନ୍ନ କ୍ଷେତ୍ରରୁ ଯୋଗାଇ ଦିଆଯିବ । ଭିନ୍ନ ଭାବରେ କହିଲେ ମୌଳିକ ଓ ସର୍ବାପେକ୍ଷା ଅଧିକ ସଙ୍ଘାତକ ଦୋଷ ହେଉଛି ଯେ ଉପର୍ଯ୍ୟୁକ୍ତ ଦାବି ନିର୍ଭୁଳ ଭୂମି ରହିତ ହୋଇ ରହିନାହିଁ ।

ଯେ କୌଣସି ନିର୍ଦ୍ଦେଶର ସମ୍ପୂର୍ଣ୍ଣତାରେ ତାରତମ୍ୟ ରହିଛି । ଏହା ଅଳ୍ପାଧିକ ପରିମାଣରେ ନିକଟବର୍ତ୍ତୀ ଓ ସୁସ୍ପଷ୍ଟ ଏବଂ ଅଳ୍ପାଧିକ ପରିମାଣରେ ତତ୍‌ସମ୍ପୃକ୍ତ ବସ୍ତୁକୁ 'ଧାରଣକ୍ଷମ' । ନିର୍ଦ୍ଦେଶର ପୂର୍ଣ୍ଣତାର ତାରତମ୍ୟ ହେତୁ ତତ୍‌ସହଗୃହୀ ବ୍ୟବହୃତ ପ୍ରତୀକର—ଅର୍ଥାତ୍ ସମସ୍ତ ପ୍ରକାର ପ୍ରତିମା, ଶବ୍ଦ, ସମ୍ପୂର୍ଣ୍ଣ ବାକ୍ୟ ବା ବାକ୍ୟାଂଶର—ଅତି ନିବିଡ଼ ପର୍ଯ୍ୟବେକ୍ଷଣୀୟ ସମ୍ବନ୍ଧ ନ ଥାଏ । ତେଣୁ କୌଣସି ଆଲୋଚନାରେ ଜଣକର ମନ୍ତବ୍ୟର ସ୍ୱଭାବରୁ ସହସା ଆମ୍ଭେମାନେ ତାହାର ମତ ନିର୍ଦ୍ଧାରଣ କରି ନ ପାରୁ । ମୂଳର ଅଂଶୀଦାରମାନଙ୍କୁ ପରସ୍ପର ସଂସର୍ଗରେ ରଖିବା ଓ ଭୁଲ୍ ବୁଝାମଣାର ପଥରୋଧ କରିବା ନିମନ୍ତେ ଏକ ପଦ୍ଧତିର ଆବଶ୍ୟକତା ରହିଛି ଅର୍ଥାତ୍ ଆମ୍ଭମାନଙ୍କ ଏକ ସଙ୍କାସିଦ୍ଧାନ୍ତ ରହିବା ଦରକାର । ଜ୍ଞାନସିଦ୍ଧାନ୍ତ ବା ନିର୍ଦ୍ଦେଶସିଦ୍ଧାନ୍ତ ଦ୍ୱାରା ହିଁ କେବଳ ଏହିପରି ଏକ ପଦ୍ଧତି ଯୋଗାଇ ଦିଆଯାଇପାରେ । ଏତଦ୍ଦ୍ୱାରା ଜ୍ଞାତାଠାରେ ଯେଉଁ ଶକ୍ତିର ଆରୋପ କରିଯାଏ, ତାହାକୁ ଏଡ଼ି ଦେଇ ହେବ । ପ୍ରଚଳିତ ମତବାଦଗୁଡ଼ିକରେ ଏହା କରିଯାଏ ନାହିଁ । ଏ ପ୍ରକାର ଶକ୍ତିର ଅଧିକାରୀ ବୋଲି ନିଜକୁ ମନେ କରିବା ଜ୍ଞାତା ପକ୍ଷରେ ସୁଖକର ହୋଇପାରେ, କିନ୍ତୁ ଯେଉଁ ଗୋଟିଏ ପ୍ରକାର ଅନୁସନ୍ଧାନ ଏ ପର୍ଯ୍ୟନ୍ତ ଲାଭଜନକ ଭବେ କରିଯାଇ ପାରିଛି, ଅର୍ଥାତ୍ ଯାହାକୁ ସାଧାରଣତଃ ବୈଜ୍ଞାନିକ ଅନୁସନ୍ଧାନ ବୋଲି କୁହାଯାଏ, ତହିଁରେ ଜ୍ଞାତା ଏହି ଶକ୍ତିର ଅଧିକାରୀ ବୋଲି ମନେ କରିଯାଏ ନାହିଁ ।

ସାଧାରଣତଃ ଯେତେବେଳେ ଆମ୍ଭେମାନେ ଏକ କଥିତ ବିଷୟ ଶୁଣୁଁ, ଆମ୍ଭେମାନେ ସ୍ୱଭାବତଃ ଏକ ଅବ୍ୟବହିତ ସିଦ୍ଧାନ୍ତକୁ ଲମ୍ଫ ଦେଉଁ । ସିଦ୍ଧାନ୍ତଟି ହେଉଛି, ଆମ୍ଭେମାନେ ନିଜେ ସେହି କଥା କହୁଥିଲେ, ଯେଉଁ ବିଷୟକୁ ନିର୍ଦ୍ଦେଶିତ କରିଥାନ୍ତୁ, ବକ୍ତା ସେହି

ବିଷୟକୁ ହିଁ ନିର୍ଦ୍ଦେଶ ଦେଉଛି । କେତେକ କ୍ଷେତ୍ରରେ ଏ ପ୍ରକାର ବ୍ୟାଖ୍ୟା ଠିକ୍ ହୋଇପାରେ; ପ୍ରମାଣିତ ହୁଏ ଯେ ବକ୍ତା ତାହାହିଁ ନିର୍ଦ୍ଦେଶ ଦେଇଛି । କିନ୍ତୁ ଇଙ୍ଗିତଭଙ୍ଗୀଦ୍ୱାରା ଉପସ୍ଥାପନଯୋଗ୍ୟ ବିଷୟଠାରୁ ଅଧିକ ସୂକ୍ଷ୍ମ ବିଷୟର ଉପସ୍ଥାପନ ଯେଉଁ ଆଲୋଚନାମାନଙ୍କରେ ଚେଷ୍ଟା କରାଯାଇଥାଏ, ସେଗୁଡ଼ିକର ଅଧିକାଂଶ କ୍ଷେତ୍ରରେ ଏହି ବ୍ୟାଖ୍ୟା ଠିକ୍ ନୁହେଁ । ଏ କଥାକୁ ଅସ୍ୱୀକାର କରିବା ହେଉଛି ଆମ୍ଭମାନଙ୍କ ସହକାରୀ ଇଙ୍ଗିତଭଙ୍ଗୀଗୁଡ଼ିକୁ ଅବହେଳା କରିଯିବା । କିନ୍ତୁ ଏହି ଭାଷାଗୁଡ଼ିକର ନିଜସ୍ୱ ସୀମିତ ପରିସରରେ ଶୁଦ୍ଧତା ଏପର୍ଯ୍ୟନ୍ତ ରହିଥିବା ଯେ କୌଣସି କଥିତ ବା ଲିଖିତ ପ୍ରତୀକ ପଦ୍ଧତି ପହଞ୍ଚି ପାରିଥିବା ଶୁଦ୍ଧତାଠାରୁ ବହୁ ଉନ୍ନତ । ଏହାର ବ୍ୟତିକ୍ରମ କେବଳ ଗଣିତ, ବିଜ୍ଞାନ ଓ ସଙ୍ଗୀତରେ ସମ୍ଭବପର । ଗାଣିତିକ ଓ ବୈଜ୍ଞାନିକ ସଙ୍କେତ ତଥା ସଙ୍ଗୀତ ସ୍ୱରଲିପିର ଏକ ବୈଶିଷ୍ଟ୍ୟ ଓ ସ୍ୱାତନ୍ତ୍ର୍ୟ ରହିଛି । ସାକ୍ଷାତ୍‌ଭାବେ ଇଙ୍ଗିତର ସହଯୋଗିତା ଓ ସମର୍ଥନ ଲାଭ କରି ପାରୁ ନ ଥିବା କ୍ଷେତ୍ରରେ ଶବ୍ଦଗୁଡ଼ିକ ବର୍ତ୍ତମାନ ଅବସ୍ଥାରେ ଭାବର ଆଦାନପ୍ରଦାନର ଏକ ଅତି ଅସଂପୂର୍ଣ୍ଣ ମାଧ୍ୟମ ହୋଇ ରହିଛି । ସ୍ୱଗତ ଚିନ୍ତନ କ୍ଷେତ୍ରରେ ମଧ୍ୟ ଚିନ୍ତା ପ୍ରାୟତଃ ଅଗଣିତ ନିମନ୍ତେ ପ୍ରସ୍ତୁତ, କିନ୍ତୁ ତାହାର ସ୍ୱାଭାବିକ ପ୍ରତୀକ ବ୍ୟବହାର ପଦ୍ଧତିର ବିଶ୍ୱାସଘାତକତା ହେତୁ ତାହା ବାଧାପ୍ରାପ୍ତ ହୁଏ । ଏଥିରୁ କଥୋପକଥନ ଉଦ୍ଦେଶ୍ୟରେ କେତେ ପରିମାଣରେ ସ୍ୱାଧୀନତା ହାସଲ କରାଯାଏ । ଯେଉଁମାନେ ମତ-ଗୁଡ଼ିକର ତୁଳନାକରି ଦେଖିବାକୁ ଆନ୍ତରିକ ପ୍ରୟାସ କରିଛନ୍ତି, ସେମାନେ ଏହି ସ୍ୱାଧୀନତା ସହିତ ସର୍ବଦା ପରିଚିତ ।

ପ୍ରତାରଣା ନିମନ୍ତେ ଶବ୍ଦଗୁଡ଼ିକର ବ୍ୟବହାର କରାଯାଇ ପାରେ । ଏହି ସୁପରିଚିତ ପ୍ରଣାଳୀକୁ ଆମ୍ଭେମାନେ ଏଠାରେ ବିଚାରକୁ ନେଉ ନାହୁଁ । ଏକ ପରବର୍ତ୍ତୀ ପରିଚ୍ଛେଦରେ **ନିର୍ଦ୍ଦେଶକୁ ପ୍ରତୀକାନ୍ୱିତ କରିବାର** ମାଧ୍ୟମ ହେବା ପରିବର୍ତ୍ତେ **ଉଦ୍ଦେଶ୍ୟ ଅଭିବୃଦ୍ଧି**ର ସାଧନ ରୂପେ ଭାଷାର ଭୂମିକା ବିଷୟ ଯେତେବେଳେ ପୂର୍ଣ୍ଣାଙ୍ଗରୂପେ ଆଲୋଚିତ ହେବ, ସେତେବେଳେ ଆମ୍ଭେମାନେ ଦେଖିବା ଯେ କିପରି ବକ୍ତାର ଅଭିପ୍ରାୟ ପରିସ୍ଥିତିକୁ ଜଟିଳ କରିପାରେ । କିନ୍ତୁ ବାଚନିକ ଉଦ୍ଭାବନ କ୍ଷମତା ଯେତେଦୂର ଅଗ୍ରସର ହୋଇପାରେ, ତାହା ଗ୍ରହଣ କରି ନେବାକୁ ଜଣେ ସାଧୁବ୍ୟକ୍ତି ଅପ୍ରସ୍ତୁତ ହୋଇ ଯାଇ ପାରେ । ଧର୍ମଗ୍ରନ୍ଥର ଯେଉଁ ବ୍ୟାଖ୍ୟାକାରମାନେ ଉଭୟ ଜଗତର ସର୍ବୋତ୍ତମ ପଦାର୍ଥର ଉପଭୋଗ କାମନା କରନ୍ତି, ସେମାନେ ସର୍ବଦା ଏହି ସମ୍ଭାବନାଗୁଡ଼ିକୁ ସଂପୂର୍ଣ୍ଣଭାବେ ଉପଯୋଗ କରିବାର ସୁବିଧା ନେଇଛନ୍ତି । ଉଦାହରଣ ସ୍ୱରୂପ, ଏଠାରେ ସ୍ୱର୍ଗତ ଡକ୍ଟର ଲିମେନ୍ ଏବଟଙ୍କ ବ୍ୟାଖ୍ୟାର ଏକ ନମୁନା ଦିଆଯାଉଛି । ଡକ୍ଟର ଲିମେନ୍ ଏବଟ ଜଣେ ଧର୍ମଯାଜକ, ବିଧିବ୍ୟବସ୍ଥାର ଲେଖକ ଏବଂ ସଂପାଦକ ଥିଲେ । ତାଙ୍କର ଏହି ଲେଖା ଶ୍ରୀ ଅପ୍‌ଟନ୍ ସିନ୍ କ୍ଲେଆରଙ୍କ ଚେଷ୍ଟା ହେତୁରୁ ଏବେ ସୁପ୍ରସିଦ୍ଧ ହୋଇ ଯାଇଛି । ବିଂଶ

ଶତାବ୍ଦୀର ଅର୍ଥନୈତିକ ପଦ୍ଧତିକୁ ଖ୍ରୀଷ୍ଟିଆନ ଧର୍ମ ନିନ୍ଦା କରେ କି ? ଧର୍ମପୁସ୍ତକରେ ଯେ କେତେକ ଅଡୁଆ ଶବ୍ଦ ରହିଛି, ଏଥିରେ ସନ୍ଦେହ ନାହିଁ। କିନ୍ତୁ ଯାହା ଏଠାରେ ଆବଶ୍ୟକ, ତାହା ହେଉଛି ସାମାନ୍ୟ 'ବ୍ୟାଖ୍ୟାକରଣ' ।

"ଯୀଶୁ କହି ନ ଥିଲେ—'ପୃଥିବୀରେ ତୁମ ନିଜ ପାଇଁ ସମ୍ପତ୍ତି ଜମାକରି ରଖନାହିଁ' । ସେ କହିଥିଲେ—ପୃଥିବୀରେ ତୁମ ନିଜପାଇଁ ସମ୍ପତ୍ତି ଜମାକରି ରଖନାହିଁ, **ଯେଉଁଠାରେ କୀଟାଣୁ ଓ କଳଙ୍କ ଦ୍ୱାରା ତାହା କଳଙ୍କିତ ହୋଇଯାଏ ଏବଂ ଯେଉଁଠାରେ ଚୋରମାନେ ଭାଙ୍ଗି ପଶିଯାନ୍ତି ଓ ଚୋରି-କରନ୍ତି ।'** ଏବଂ କୌଣସି ବୁଦ୍ଧିବୃତ୍ତିସମ୍ପନ୍ନ ଆମେରିକାବାସୀ ଏହିପରି ଭାବେ ଜମାକରି ରଖେ ନାହିଁ । ଶ୍ରୀ ରକ୍‌ଫେଲର୍‌ଙ୍କ ତୈଳକୂପଗୁଡ଼ିକ ନିକଟକୁ କୌଣସି କୀଟାଣୁ ଓ କଳଙ୍କ ପହଞ୍ଚି ପାରନ୍ତି ନାହିଁ ଏବଂ ଚୋରମାନେ ଗୋଟିଏ ରେଳରାସ୍ତାକୁ ଭାଙ୍ଗି ପଶି ପ୍ରାୟତଃ ଚୋରି କରନ୍ତି ନାହିଁ । ଯାହା ଯୀଶୁ ନିନ୍ଦା କରିଥିଲେ, ତାହା ହେଉଛି ଧନସଂଚୟ ।"

ତେଣୁ ନୂତନ ପୃଥିବୀର ପ୍ରଧାନ ଧର୍ମଶାସ୍ତ୍ରଜ୍ଞମାନଙ୍କ ମଧ୍ୟରୁ ଜଣଙ୍କର ମତରେ ପ୍ରତ୍ୟେକ ମୂଳଧନ-ବିନିଯୋଗ, ପ୍ରତ୍ୟେକ ପାର୍ଥିବ ଧନାର୍ଜନର ଯୋଗ୍ୟତାନୁସାରେ ତାହା ନିନ୍ଦନୀୟ କି ନୁହେଁ ବିଚାର କରାଯାଇପାରେ । ଏଠାରେ କୌଣସି ଧରାବନ୍ଧା ନୀତି ନାହିଁ । ଯେତେବେଳେ ବିଜ୍ଞାନ ଦ୍ୱାରା କୀଟାଣୁ ଓ କଳଙ୍କ ବିନଷ୍ଟ ହୋଇଯିବେ, ସେତେବେଳେ ଖ୍ରୀଷ୍ଟିୟାନ୍ ଅର୍ଥ ବିନିଯୋଗକାରୀର ସମ୍ଭବତଃ କୌଣସି ସମସ୍ୟା ରହିବ ନାହିଁ । କିନ୍ତୁ ଇତି ମଧ୍ୟରେ ଜରୁରୀ ଆବଶ୍ୟକତା କର୍ପୂରମିଶ୍ରିତ ତୈଳ ଦ୍ୱାରା ପ୍ରାୟ ପୂରଣ ହୋଇଯିବ ବୋଲି ମନେ କରାଯାଇ ପାରେ । ସିନ୍ଧକଟା ଚୋରଦଳ ଏଥିରେ ବିଚଳିତ ହେବେ ନାହିଁ; କୀଟାଣୁମାନଙ୍କ ପାଇଁ ଏହା ଏକ ଅଭିଶପ୍ତ ଅବସ୍ଥା ସୃଷ୍ଟି କରିବ; ଏବଂ କଳଙ୍କର ଆଶଙ୍କା ସଂପୂର୍ଣ୍ଣଭାବେ ଦୂର ହେବ ।

ଏହା ସହିତ ଘନିଷ୍ଠଭାବେ ସଂପୃକ୍ତ ଅନ୍ୟ ଏକ ପ୍ରକାର ବାଚନିକ ଉଦ୍ଭାବନ କ୍ଷମତାର ଦୃଷ୍ଟାନ୍ତ ହେଉଛି ଶ୍ରୋତାକୁ ଭ୍ରାନ୍ତଭାବେ ପରିଚାଳିତ କରିବା ନିମନ୍ତେ ସ୍ୱେଚ୍ଛାକୃତଭାବେ ପ୍ରତୀକ ବ୍ୟବହାର କରିବା । ଏହି ପ୍ରଣାଳୀର ସମର୍ଥନ ପାଗଳବ୍ୟକ୍ତି କ୍ଷେତ୍ରରେ ରହିଛି । ପାଗଳବ୍ୟକ୍ତିଠାରୁ ତାହାର କ୍ଷୁର ଥିବା ସ୍ଥାନ ବିଷୟକୁ ଲୁଚାଇ ରଖିବାକୁ ଆମ୍ଭମାନଙ୍କ ଇଚ୍ଛା ଏହିର ଏକ ପ୍ରସିଦ୍ଧ ଦୃଷ୍ଟାନ୍ତ । କିନ୍ତୁ ଏହାଠାରୁ ଅଧିକ ବ୍ୟାପକତର ସମର୍ଥନର ଚେଷ୍ଟା ମଧ୍ୟ କରାଯାଇଛି । ଶୁଣିବାକୁ ମିଳେ ଯେ ଖ୍ରୀଷ୍ଟୀୟ ଯୁଗରେ "ଦଲିଲ ପତ୍ରରେ ମିଥ୍ୟା ଜିନିଷ ପୁରାଇ ଦେବା, ମିଥ୍ୟା ଗଳ୍ପର ଉଦ୍ଭାବନ କରିବା, ଏବଂ ସମସ୍ତ ପ୍ରକାର ଜାଲ୍ କାରବାରର ଆଶ୍ରୟ ନେବା ଦ୍ୱାରା କ୍ୟାଥଲିକ ଗିର୍ଜା

ପ୍ରକୃତରେ ଏକ ମିଥ୍ୟା-ପ୍ରତିଷ୍ଠାନରେ ପରିଣତ ହୋଇଥିଲା (୧) ।" ଶବ୍ଦକୁ ନେଇ ଖେଳିବା ପ୍ରଥାର ବିରୋଧ କରା ଯାଉ ନ ଥିଲା; ଶବ୍ଦକୁ ଗୋଟିଏ ଅର୍ଥରେ ବକ୍ତା ନିଜେ ଗ୍ରହଣ କରୁଥିଲେ ଏବଂ ଶ୍ରୋତା ଯେପରି ଅନ୍ୟ ଏକ ଅର୍ଥରେ ଗ୍ରହଣ କରେ, ତାହା ଇଚ୍ଛା କରି ତାହାକୁ ବ୍ୟବହାର କରୁଥିଲେ (୨) । ଊନବିଂଶ ଶତାବ୍ଦୀରେ ଆଲ୍‌ଫୋଁସୋ ଡି ଲିଗୋରି ସ୍ୱର୍ଗୀୟ ସୁଖଲାଭ କରିବା ନିମନ୍ତେ ଯୋଗ୍ୟବ୍ୟକ୍ତିବୋଲି ବିବେଚିତ ହୋଇଥିଲେ । ଆଲ୍‌ଫୋଁସୋ ଦ୍ୱ୍ୟର୍ଥକ ଶବ୍ଦ ପ୍ରୟୋଗରେ ତିନୋଟି ପ୍ରକାର ଭେଦର ବର୍ଣ୍ଣନା କରିଥିଲେ । ଉତ୍ତମ କାରଣ ସହ ସେଗୁଡ଼ିକର ବ୍ୟବହାରକୁ ସମର୍ଥନ କରାଯାଉଥିଲା (୩) । ଗୋଟିଏ ଉତ୍ତମ କାରଣ ହେଉଛି—"ଏକ ସାଧୁ ଉଦ୍ଦେଶ୍ୟ, ଯଥା—ଆମର ସ୍ୱର୍ଗୀୟ ପାର୍ଥିବ ଉତ୍ତମ ପଦାର୍ଥର ସଂରକ୍ଷଣ (୪) ।" ବିଂଶ ଶତାବ୍ଦୀର ଯୁଦ୍ଧଖୋର ଜାତୀୟବାଦର ଉଗ୍ରତା ଆହୁରି କେତେକ 'ଉତ୍ତମ କାରଣ'ର ସଂଯୋଗ କରିଛି; କାରଣ ଶତ୍ରୁ ରାଷ୍ଟ୍ର ଏବଂ ଶତ୍ରୁଆଚରଣ କରୁଥିବା ବ୍ୟକ୍ତିମାନଙ୍କ ସହିତ ସମସ୍ତ କାରବାର ସ୍ୱର୍ଗୀୟ ଓ ପାର୍ଥିବ ଉତ୍ତମ ପଦାର୍ଥ ସଂରକ୍ଷଣ ପଦ୍ଧତିର ଅଙ୍ଗ ସ୍ୱରୂପ ବୋଲି ସାମରିକ ନୀତି ସହିତ ଗ୍ରହଣ କରେ । ଯୁଦ୍ଧ ସମୟରେ ଶବ୍ଦଗୁଡ଼ିକ ପ୍ରତାରଣା-କଳାକୌଶଳର ଏକ ସ୍ୱାଭାବିକ ଅଂଶ ହୋଇଯାଏ । ଏହି ଶ୍ରେଣୀର ନୈତିକତା ବିଷୟର ସାରାଂଶ ଚମତ୍କାର ଭାବେ ଲର୍ଡ଼ ଉଲ୍‌ସେଲି ଦେଇଛନ୍ତି : "ସାଧୁତା ହିଁ ସର୍ବୋତ୍ତମ ପନ୍ଥା" ଏବଂ ପରିଶେଷରେ ସତ୍ୟର ହିଁ ସର୍ବଦା ଜୟହୁଏ—ଏହି ଦୃଢ଼ ବିଶ୍ୱାସକୁ ଆମ୍ଭେମାନେ ସବୁବେଳେ କହିବାରେ ଲାଗିଥିବା । ଶିଶୁର ହସ୍ତଲିଖନ ପୁସ୍ତକ ପାଇଁ ଏହି ସୁନ୍ଦର ବାକ୍ୟଗୁଡ଼ିକ ବେଶ୍ ଉପଯୋଗୀ; କିନ୍ତୁ

---

(୧) Wester marck, *The Origin and Development of Moral Ideas.* ଦ୍ୱିତୀୟଖଣ୍ଡ, ପୃ ୧୦୦ ।

(୨) Alagona, *Compendium Manualis D. Navarri XII*, 88 ପୃ ୯୪ ।

(୩) Alfonso di Liguori, *Theologia Moralis III*, *151*, ପ୍ରଥମଖଣ୍ଡ, ପୃ ୨୪୯ ।

(୪) Meyrick, *Moral and Devotional Theology of the Theology of the Church of Rome*, ପ୍ରଥମ ଖଣ୍ଡ, ପୃ ୩ । ଆହୁରି ତୁଳନା କର—Wester marck—କଥିତ ଗ୍ରନ୍ଥ ।

ଯୁଦ୍ଧରେ ଏହି ବିଶ୍ୱାସ ଉପରେ ଆସ୍ଥା ରଖି ଯେଉଁ ଲୋକ କାର୍ଯ୍ୟ କରେ, ସେ ବରଂ ପଲାୟନପାଇଁ ତାହାର ଝଣ୍ଡାକୁ ଖୋଳଦ୍ଧତରେ ସାଇତି ରଖିବା ଭଲ (୧) ।

ଆମ୍ଭେମାନେ ଦେଖିବା ଯେ ଶବ୍ଦଗୁଡ଼ିକ ପ୍ରତି ଆଧୁନିକ ମନୁଷ୍ୟର ଅଭିବୃତ୍ତି ଠାରୁ ଗ୍ରୀକ୍‌ମାନଙ୍କ ଅଭିବୃତ୍ତି କହିବାକରେ ବିଶେଷ ପୃଥକ ନୁହେଁ । ପେଲୋପୋନେସିଆନ୍ ଯୁଦ୍ଧ ପରେ ଶାନ୍ତି ସମୟର ବାଚନିକ କଳାକୌଶଳ ପଦ୍ଧତି ସମ୍ପୂର୍ଣ୍ଣରୂପେ ଅକାମୀ ହୋଇ ପଡ଼ିଥିଲା ବୋଲି ଲେଖା ରହିଥିବା ଦେଖି ବିସ୍ମିତ ହେବାର କିଛି ନାହିଁ । ଥୁସିଡ଼ାଇଡ଼ିସ୍ କହିଛନ୍ତି ଯେ ତା'ପରେ ତାହାକୁ ଆଉ ବ୍ୟବହାରୋପଯୋଗୀ କରିଯାଇ ପାରି ନ ଥିଲା । "ଆଗରୁ ଶବ୍ଦର ଅର୍ଥ ଯେପରିଭାବେ ବସ୍ତୁ ତତ୍ତ୍ୱ ସଂପୃକ୍ତ ଥିଲା, ସେହିପରି ଭାବେ ସଂପୃକ୍ତ ହୋଇ ଆଉ ରହିଲା ନାହିଁ । ମଣିଷମାନେ ଯେପରି ଉଚିତ ମନେକଲେ, ସେହିପରି ଭାବେ ତାହାକୁ ପରିବର୍ତ୍ତିତ କରି ଦେଇଥିଲେ ।" ଏହି ପରିସ୍ଥିତିର ମୁକାବିଲା କରିବା ପାଇଁ ଗ୍ରୀକ୍‌ମାନେ ସମର୍ଥ ନ ଥିଲେ । ଆମ୍ଭମାନଙ୍କ ବିଜ୍ଞତା ହେତୁ ଆମ୍ଭେମାନେ ଏପରି କେତେକ ସଂସ୍ଥା ଗଢ଼ି ତୋଳିଛୁଁ ଯେ ମନେହୁଏ ତଦ୍ୱାରା ଆମ୍ଭେମାନେ ସେମାନଙ୍କଠାରୁ ଆହୁରି ଅଧିକ ଅସମର୍ଥ ହୋଇ ପଡ଼ିଛୁଁ (*) ।

(୧) *Soldier's Pocket Book for Field Service* ପୃ ୭୪ ।

(*) ଏବେ ଶ୍ରୀ ମଣ୍ଟେଗୁ (*Disenchantment* ପୃ ୧୦୧) ଏହି କଥାଟିକୁ ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି, "ଯୁଦ୍ଧରେ ପ୍ରତାରଣାର ଏକମାତ୍ର ନୂତନ ବୈଶିଷ୍ଟ୍ୟ ହେଉଛି ଏହାର ଉପଯୋଗ ନିମନ୍ତେ ଆଧୁନିକ ମନୁଷ୍ୟର ଅଧିକ ଉନ୍ନତ ଉପକରଣ । ଏହି ପ୍ରତାରଣା ଆଧୁନିକ ମନୁଷ୍ୟ ହାତରେ ଗିଡ଼ିଅନ୍‌ଙ୍କ ତୂରୀ ଅପେକ୍ଷା ଅଧିକ ଶକ୍ତିଶାଳୀ ଏକ ଯନ୍ତ୍ର ହୋଇଯାଇଛି ।······ଆଜିକାଲି ଲ୍ୟୁଇସ୍ ବନ୍ଧୁକ ସାହାଯ୍ୟରେ ସେ ତାହାର ସ୍ଥୂଳ ପଦାର୍ଥଗୁଡ଼ିକୁ ଶତ୍ରୁ ଉପରକୁ ନିକ୍ଷେପ କରୁଛି । ତାହା ସହିତ ସାମଞ୍ଜସ୍ୟ ରକ୍ଷାକରି ଏବେ ତା' ହାତରେ ରହିଛି ସମ୍ବାଦପତ୍ରର ଛାପାଖାନା । ତା' ସାହାଯ୍ୟରେ ଆଦୌ ନଥିବା ପଦାର୍ଥ ସେ ଶତ୍ରୁ ମୁଣ୍ଡରେ ଆରୋପ କରି ଦେଇ ପାରୁଛି ।" ଭ୍ରାନ୍ତ ଦିଗରେ ପରିଚାଳିତ କରିବାର ଆଧୁନିକ ପଦ୍ଧତିର ଏହା ଏକ ସାମୟିକ ଉପଯୋଗ । ଶାନ୍ତି ଫେରିଆସିବା ପରେ ଏହି ଅଭ୍ୟାସ ଦୂର ହୋଇଯାଏ ନାହିଁ କି ? ଶ୍ରୀ ମଣ୍ଟେଗୁ କହନ୍ତି ଯେ ଏହା ହୁଏନାହିଁ । "ତୁମେ ଯେଉଁସବୁ ଅସ୍ତ୍ରଶସ୍ତ୍ର ଯୁଦ୍ଧରେ ବ୍ୟବହାର କର, ତାହାର ଆଂଶିକ ମୂଲ୍ୟ ଶାନ୍ତି ସମୟରେ ଦେବାକୁ ପଡ଼େ । ଅନ୍ୟ ଜିନିଷ ପରି ପ୍ରଚୁର-ଅସ୍ତ୍ରର ମଧ୍ୟ ମୂଲ୍ୟ ରହିଛି ।" ବାଚନିକ ଯନ୍ତ୍ରର ପ୍ରୟୋଗରୁ ଫାଇଦା ଉଠାଇଥିବା ଲୋକେ ନିଜ ନିଜର ବେସାମରିକ କର୍ମକ୍ଷେତ୍ରକୁ ଫେରିଆସିବା ହେଉଛି, ଏହି ଯନ୍ତ୍ରର ଉପଯୋଗିତାର ଏକ ବିଜୟ ଯାତ୍ରା ଏବଂ ଯେଉଁସବୁ ଦେଶର ସର୍ବସାଧାରଣଙ୍କ ଉପରେ ଶବ୍ଦର ପ୍ରଭାବ ଅକ୍ଷୁଣ୍ଣ ରହିଛି, ସେହିସବୁ ଦେଶରେ ବହୁବର୍ଷ ପର୍ଯ୍ୟନ୍ତ ଏହାର ପରିଣାମ ଅନୁଭୂତ ହେଉଥିବ ।

ଅପେକ୍ଷାକୃତ ସୀମିତ ପରିସରରେ ସ୍ୱେଚ୍ଛାକୃତ ଭାବେ ଭ୍ରାନ୍ତ ବାଟରେ ପରିଚାଳିତ କରିବା ପଦ୍ଧତିକୁ ସଂଶୋଧନ ପଦ୍ଧତି ରୂପେ ଫଳପ୍ରଦଭାବେ ଅଧ୍ୟୟନ କରାଯାଇ ପାରେ । ନାଉମେନ୍‌ଙ୍କ **ଗ୍ରାମାର ଅଫ୍ ଏସ୍‌ସେଣ୍ଟର** ବିବରଣୀ ପ୍ରଦାନ ଅବସରରେ ଡକ୍ଟର ଇ. ଏ. ଏବଟ 'ପିଚ୍ଛିଳିକରଣ' ପ୍ରଣାଳୀର ବର୍ଣ୍ଣନା ଦେଇଛନ୍ତି । ଏହା ହେଉଛି ହେତୁବାକ୍ୟରୁ ସିଦ୍ଧାନ୍ତକୁ ଅବନମନର ପଥକୁ ସ୍ନେହସିକ୍ତ କରିବା କଳା । ଏହି କଳାକୁ ଚତୁରତାର ସହିତ ଆଜିକାଲି ଏବଂ କାହିଁ ପ୍ରୟୋଗ କରିଥିଲେ, ତାହାର ଦୃଷ୍ଟାନ୍ତ ପୂର୍ବରୁ ପ୍ରଦତ୍ତ ହୋଇଛି । ଉତ୍ତମରୂପେ ସ୍ନେହସିକ୍ତ କରିବା ନିମନ୍ତେ ବିଭିନ୍ନ ଯୋଗ୍ୟତାର ଆବଶ୍ୟକତା ରହିଛି :

"ପ୍ରଥମତଃ, ସୂକ୍ଷ୍ମ ପାର୍ଥକ୍ୟ ବିଶିଷ୍ଟ ଏପରି ଶବ୍ଦମାନଙ୍କ ମନୋନୟନ କରିବାକୁ ହେବ, ଯଦ୍ଦ୍ୱାରା ସହଜରେ ଏବଂ ସ୍ୱାଭାବିକଭାବେ ଅତ୍ୟଳ୍ପ ମାତ୍ରାରେ ପରସ୍ପର ପୃଥକ୍ ହୋଇଥିବା ଅନେକଗୁଡ଼ିଏ ବାକ୍ୟ ଗଠନ କରାଯାଇପାରିବ । ଏହି ବାକ୍ୟଗୁଡ଼ିକର କ୍ରମାନୁସ୍ୟ ବ୍ୟବହାର ଦ୍ୱାରା 'କ ଧଳା ଅଟେ' ସ୍ୱୀକାରୋକ୍ତିରୁ ଆରମ୍ଭ କରି 'କ କଳା ଅଟେ' ସ୍ୱୀକାରୋକ୍ତିରେ ଉପନୀତ ହେବା ସମ୍ଭବପର । ଦ୍ୱିତୀୟତଃ, ତର୍କ ଓ ଦେବଗୁଡ଼ିକ ପ୍ରତି ଏକ ଆନ୍ତରିକ ଓ ସମ୍ପୂର୍ଣ୍ଣ ତାଚ୍ଛଲ୍ୟ ମନୋଭାବ ପୋଷଣ କରିବାକୁ ହେବ ।······ନିଜକୁ ମନୁଷ୍ୟ ବୋଲି ପରିଚୟ ଦେଉଥିବା ବୟଃପ୍ରାପ୍ତ ଶିଶୁମାନଙ୍କ ପାଇଁ ଦେବଗୁଡ଼ିକ ଖେଳନା ଓ ମିଠାଇ ବ୍ୟତୀତ ଆଉ କ'ଣ ହୋଇପାରେ (୧) ?"

କିନ୍ତୁ ବାସ୍ତବ ନିର୍ଦ୍ଦେଶ୍ୟ ସମ୍ବନ୍ଧରେ ସନ୍ଦେହ ନ ଥିବା କ୍ଷେତ୍ରରେ ସୁଦ୍ଧା ଶବ୍ଦର ଶକ୍ତିକୁ କେବଳ ଯଥାର୍ଥ ଭାବ ବିନିମୟ ନିମନ୍ତେ ପ୍ରୟୋଗ ନ କରି କିପରି ଭ୍ରାନ୍ତ ବାଟରେ ପରିଚାଳିତ କରିବାର ପଦ୍ଧତି ସ୍ୱରୂପ ପ୍ରୟୋଗ କରାଯାଏ ଏବଂ ଏପରି କରାଯିବା ଅଭ୍ୟାସର ପରିସର କେତେ ବ୍ୟାପକ ସେ କଥା ବୋଧହୁଏ କଦାଚିତ୍ ହୃଦୟଙ୍ଗମ କରାଯାଇଥାଏ । ପୃଥିବୀର ବର୍ତ୍ତମାନ ଅବସ୍ଥାରେ ଏହି ଅସୁବିଧାକର ଅବସ୍ଥା ଜାତି, ଧର୍ମ, ବର୍ଣ୍ଣ ଓ ସ୍ତ୍ରୀ-ପୁରୁଷ ଭେଦ ନିର୍ବିଶେଷରେ ସମସ୍ତ ବ୍ୟକ୍ତି ଓ ସମାଜରେ ସମଭାବରେ ପ୍ରଚଳିତ ଏବଂ ଏହାର ସ୍ଥିତି ସମ୍ବନ୍ଧରେ ଅବହିତ ନ ରହିଲେ ସରଳ ବିଶ୍ୱାସୀ ବ୍ୟାଖ୍ୟାକାର ଅତ୍ୟନ୍ତ ଭ୍ରାନ୍ତ ବାଟରେ ପରିଚାଳିତ ହେବାର ସମ୍ଭାବନା ରହିଛି ।

ଏହି ଗ୍ରନ୍ଥର ମୂଳରୁ ଶେଷ ପର୍ଯ୍ୟନ୍ତ ଆମେ କେବଳ ଯଥାର୍ଥ ଭାବ ଆଦାନପ୍ରଦାନ ସମ୍ବନ୍ଧରେ ଆଲୋଚନା କରିଛୁ । କେବଳ ନବମ ପରିଚ୍ଛେଦରେ ଭ୍ରାନ୍ତ ନିର୍ଦ୍ଦେଶର ଉଦ୍ରେକ-କାରକ ଶବ୍ଦାର୍ଥର ଉତ୍ପନ୍ନ-ବ୍ୟବହାର ସମ୍ବନ୍ଧରେ ସମୀକ୍ଷାର ଆବଶ୍ୟକତା ଅନୁଭୂତ ହେବ । ଅନ୍ୟତ୍ର, ପ୍ରତୀକକୁ ପ୍ରତୀକ ରୂପେ ପ୍ରୟୋଗ କରିବା କ୍ଷେତ୍ରରେ ନିହିତ ବାଚନିକ

---

(୧) *Phylomythus* ପୃ ୨୧୪ ।

ବିଶ୍ୱାସଘାତକତା ସହିତ ଆମ୍ଭେମାନେ ସଂପୃକ୍ତ । ଭାବ ଆଦାନପ୍ରଦାନର ସର୍ତ୍ତାବଳୀର ପରୀକ୍ଷା ଦ୍ୱାରା ଆମ୍ଭେମାନେ ଦେଖିପାରିବା ଯେ କେଉଁ କାରଣରୁ ବ୍ୟବହୃତ ଯେ କୌଣସି ପ୍ରତୀକାତ୍ମକ ପଦ୍ଧତି ଅସଂପୂର୍ଣ୍ଣ ହେବାର ସମ୍ଭାବନା ଥାଏ ।

କିନ୍ତୁ ଯଦ୍ୟପି ଆମ୍ଭମାନଙ୍କ ଭାଷାଗତ ପରିଣାମ ବିଶ୍ୱାସଘାତକତାପୂର୍ଣ୍ଣ, ତଥାପି ଏହା ଅପରିହାର୍ଯ୍ୟ । ପୁଣି ଏହାଠାରୁ ଦଶଗୁଣ ଅଧିକ ପୂର୍ଣ୍ଣତାପ୍ରାପ୍ତ ହୋଇଥିଲେ ସୁଦ୍ଧା ଅନ୍ୟ ଏକ ସଂପୂର୍ଣ୍ଣ ପରିଣାମ ଦ୍ୱାରା ଯେ ନିଶ୍ଚିତ ରୂପେ ଅବସ୍ଥାର ଉନ୍ନତି ଘଟିବ, ଏକଥା କୁହାଯାଇ ନ ପାରେ । ଯାହା ଏଠାରେ ଆବଶ୍ୟକ, ତାହା ସର୍ବଦା ଯେ ନୂତନ ଶବ୍ଦର ଉଦ୍ଭାବନ ଏହା ନୁହେଁ ; ପ୍ରତୀକରୂପେ ବ୍ୟବହୃତ ଶବ୍ଦମାନଙ୍କୁ ନିୟନ୍ତ୍ରଣ କରିବା ନିମନ୍ତେ ଏକ ପଦ୍ଧତି, ଯଦ୍ଦ୍ୱାରା ସେଗୁଡ଼ିକ କୌଣସି ପରିସ୍ଥିତିରେ ଜଗତର କେଉଁ ବିଷୟର ନିର୍ଦ୍ଦେଶ ନିମିତ୍ତ ବ୍ୟବହୃତ, ଅକ୍ଳେଶରେ ଆବିଷ୍କାର କରି ହେବ, ତାହାର ଆବଶ୍ୟକତା ରହିଛି । ଏକ ଯଥୋପଯୁକ୍ତ ସଙ୍କେତସିଦ୍ଧାନ୍ତ ଏହି ପଦ୍ଧତି ଯୋଗାଇପାରିବା ଆବଶ୍ୟକ ।

କିନ୍ତୁ ସଂଜ୍ଞାସିଦ୍ଧାନ୍ତ ସଂକେତସିଦ୍ଧାନ୍ତର ପରବର୍ତ୍ତୀ ହେବା ସୁନିଶ୍ଚିତ ; ଏହା ସଙ୍କେତସିଦ୍ଧାନ୍ତର ପୂର୍ବବର୍ତ୍ତୀ ହୋଇ ନ ପାରେ । ସଙ୍କେତ ପରିସ୍ଥିତି ଦ୍ୱାରା ଯେ ବିବିକ୍ତ ଚିନ୍ତା ଓ ବ୍ୟାବହାରିକ ବ୍ୟାପାର ଉଭୟ କ୍ଷେତ୍ରରେ କେଡ଼େ ବୃହତ୍ ଏକ ଅଞ୍ଚଳ ଅଧିକୃତ, ତାହା ହୃଦୟଙ୍ଗମ କରାଯାଏ ନାହିଁ । କିନ୍ତୁ ଏକ ସଂକେତ ପରିସ୍ଥିତିରେ ବିବରଣୀକୁ ଯଦି ବୈଜ୍ଞାନିକ କରିବାକୁ ହୁଏ, ତେବେ ତାହା ସର୍ବାପେକ୍ଷା ଅଧିକ ଉପଯୁକ୍ତ ଦୃଷ୍ଟାନ୍ତଗୁଡ଼ିକର ପର୍ଯ୍ୟବେକ୍ଷଣ ଦ୍ୱାରା ପ୍ରତିଷ୍ଠିତ ହେବା ଆବଶ୍ୟକ; ଏକ ବ୍ୟତିରେକ ଦୃଷ୍ଟାନ୍ତରୁ ତାହାର ସାଧାରଣ ନୀତି ନିର୍ଦ୍ଧାରଣ କରିବା ବିଧେୟ ହେବ ନାହିଁ । କ'ଣ ଘଟୁଛି ପର୍ଯ୍ୟବେକ୍ଷଣ କରିବା ନିମନ୍ତେ ସଂକେତର ବସ୍ତୁତଃ ବ୍ୟାଖ୍ୟା କରୁଥିବା ବ୍ୟକ୍ତି ସୁବିଧାଜନକ ପରିସ୍ଥିତିରେ ନ ଥାଏ ।

ଅନ୍ୟାନ୍ୟ ଲୋକଙ୍କ ପର୍ଯ୍ୟବେକ୍ଷଣରୁ ଏବଂ ତାହାର ମୂଲ୍ୟାଙ୍କନ କିପରି ଭାବେ କରାଯାଏ ନିଜେ ଜାଣିଥିବା ସମସ୍ତର ଅନ୍ତର୍ନିରୀକ୍ଷଣରୁ କେବଳ ସାକ୍ଷ୍ୟପ୍ରମାଣ ସଂଗ୍ରହ କରି ଆମର ସଙ୍କେତ ସିଦ୍ଧାନ୍ତ ରଚିତ ହେବା ଉଚିତ । ଅନ୍ୟାନ୍ୟ ଲୋକଙ୍କ ସମ୍ବନ୍ଧରେ ଆମର ସମସ୍ତ ଜ୍ଞାନ ଆମ୍ଭମାନଙ୍କ ନିଜ ଅବସ୍ଥାର ଜ୍ଞାନରୁ ଅନୁମିତ ବୋଲି ଧରି ନେଇ, ସେହି ହେତୁରୁ ଉପର୍ଯ୍ୟୁକ୍ତ ପଦ୍ଧତି ପରିବର୍ତ୍ତେ ଅପର ପଦ୍ଧତିର ପ୍ରୟୋଗ କରିବା ଦ୍ୱାରା ଅହଂମାତ୍ରବାଦର ଅଚଳ ଅବସ୍ଥାରେ ଉପନୀତ ହେବା ହିଁ ସାର ହେବ । ଏଥିରୁ ଏବେ ସୁଦ୍ଧା ଆଧୁନିକ ପରିକଳ୍ପନା ପ୍ରତ୍ୟାବର୍ତ୍ତିତ ହେବାକୁ ବାକି ଅଛି ! ଯେଉଁମାନେ ତାଙ୍କପରି ସଙ୍କେତର ବ୍ୟାଖ୍ୟା କରୁଥିବା ଅନ୍ୟାନ୍ୟ ଲୋକ ମଧ୍ୟ ନିଃସନ୍ଦେହରୂପେ ରହିଛନ୍ତି ଏବଂ ଏମାନଙ୍କ ଅଧ୍ୟୟନ କରାଯାଇ ପାରେ ବୋଲି ଗ୍ରହଣ କରନ୍ତି, ସେମାନଙ୍କ ପକ୍ଷରେ ସ୍ୱୀକାର

କରିନେବା କଷ୍ଟକର ହେବନି ଯେ ଏହି ଲୋକଙ୍କର ଅନ୍ୟମାନଙ୍କ ଆଚରଣ ପର୍ଯ୍ୟବେକ୍ଷଣ ଅନ୍ତତଃ ଏକ ଆଧାର ଯୋଗାଇ ପାରିବ । ନିଜର ଅନ୍ତର୍ନିରୀକ୍ଷଣ ଏକ ବିଶିଷ୍ଟ ଓ ପ୍ରତାରଣାପୂର୍ଣ୍ଣ କ୍ଷେତ୍ର, କିନ୍ତୁ ଏତଲ୍ଲବ୍ଧ ବିଷୟବସ୍ତୁକୁ ଉପର୍ଯ୍ୟୁକ୍ତ ଆଧାରରେ ସମନ୍ୱିତ କରାଯାଇ ପାରିବ । ସମସ୍ତ ବିଜ୍ଞାନର ଏହା ହିଁ ଯେ ଗତି, ଏକଥାର ଉଲ୍ଲେଖ ଅନାବଶ୍ୟକ । ଯେ କୌଣସି ବୁଦ୍ଧିମାନ ଡାକ୍ତର ନିଜେ ରୋଗଗ୍ରସ୍ତ ହେଲେ ନିଜର ଅନ୍ତର୍ନିରୀକ୍ଷଣ ବଳରେ ରୋଗର ନିର୍ଣ୍ଣୟ ନକରି ଜଣେ ସହକର୍ମୀକୁ ଡାକନ୍ତି ।

ଯାହା ଆମ୍ଭମାନଙ୍କ ଅଭ୍ୟନ୍ତରରେ ଘଟୁଛି, ତାହା କାହିଁକି ଆଂଶିକତଃ ଆମ୍ଭମାନଙ୍କଠାରୁ ଲୁକକାୟିତ ରହିବ, ତାହାର ବାସ୍ତବିକ କେତେକ ଉତ୍ତମ କାରଣ ରହିଛି ଏବଂ ସାଧାରଣତଃ ଆମେ ନିଜେ ଯାହା କରୁଛୁ, ତାହା ଅପେକ୍ଷା ଅନ୍ୟମାନେ ଯାହା କରୁଛନ୍ତି, ତାହାର ଆମ୍ଭେମାନେ ଅଧିକ ଉତ୍ତମ ବିଚାରକ ହୋଇଥାଉଁ । ଅନ୍ୟମାନଙ୍କ ମୁଣ୍ଡ ଭିତରେ କଣ ରହିଛି, ତାହାକୁ ଯନ୍ତ୍ର ସହିତ ନିରୀକ୍ଷଣ କରିବା ଆଗରୁ ସାଧାରଣତଃ ବିଶ୍ୱାସ କରାଯାଉଥିଲା ଯେ ଆତ୍ମାନାମକ ଏକ ସତ୍ତା ତହିଁରେ ବାସ କରେ । ଏହା ଏକ ଶିଶୁସୁଲଭ ବିଶ୍ୱାସ । ଶିଶୁମାନେ ସାଧାରଣତଃ ବିଶ୍ୱାସ କରନ୍ତି ଯେ ମୁଣ୍ଡର ଖପୁରି ଭିତରେ ଏକ କ୍ଷୁଦ୍ର ମନୁଷ୍ୟ ରହିଛି । ଆଖି ଦୁଇଟି ହେଉଛି ଆତ୍ମାର ଝରକା; ସେହି କ୍ଷୁଦ୍ର ମନୁଷ୍ୟ ସେଠାକୁ ଆସି ବାହାରକୁ ଅନାଏ ଏବଂ କାନପାଖକୁ ଯାଇ ଶୁଣେ । ଏହି ବିଶ୍ୱାସର ସପକ୍ଷରେ ଶିଶୁର ବଳିଷ୍ଠ ଅନ୍ତର୍ନିରୀକ୍ଷଣଲବ୍ଧ ସାକ୍ଷ୍ୟ ପ୍ରମାଣ ରହିଛି । ଛୁରିକା ଓ ଅଣୁବୀକ୍ଷଣ ଯନ୍ତ୍ରର ବ୍ୟବହାର ବିନା ଏହି ବିଶ୍ୱାସକୁ ତିଳେମାତ୍ର ପରିବର୍ତ୍ତନ କରିବାକୁ କଷ୍ଟକର ହୋଇଥାନ୍ତା । ଏହି ସରଳ ସମାଧାନ ପ୍ରଚେଷ୍ଟା କୌଣସି ନା କୌଣସି ପ୍ରକାରେ ଏହି ପଦ୍ଧତିର ଏକ ଆବଶ୍ୟକତା ବୋଲି ମନେ କରାଯାଉଥିବା ପ୍ରଚ୍ଛନ୍ନ ଅହଂମାତ୍ରବାଦ ମୂଳକ ଅର୍ଥାପତ୍ତିଦ୍ୱାରା ବ୍ୟାଖ୍ୟାକରଣର ଅଧିକାଂଶ ଦାର୍ଶନିକ ଓ ମନସ୍ତାତ୍ତ୍ୱିକ ଆଲୋଚନା ଅନୁପଯୁକ୍ତ ହୋଇଯାଏ । 'ପ୍ରତ୍ୟୟ' ଏବଂ 'ଶବ୍ଦ'ରେ ଅର୍ଥାତ୍ ଆମ ନିଭୃତର ବାମ ଦିଗରେ ଯଦି ଅନୁସନ୍ଧାନର ବିଷୟବସ୍ତୁକୁ ସୀମିତ ରଖାଯାଏ ଏବଂ ନିଜ ବହିର୍ଭୂତ ଜଗତର ସମସ୍ତ ସ୍ପଷ୍ଟ ସ୍ୱୀକୃତିକୁ ବାଦ ଦିଆଯାଏ, ତେବେ ପ୍ରତ୍ୟକ୍ଷଣ ସମର୍ଥନ ଏବଂ ଅର୍ଥକରଣ ସମ୍ପର୍କୀୟ ଜ୍ଞାନ ପରି ବିଷୟଗୁଡ଼ିକରେ ଗଣ୍ଡଗୋଳ ପ୍ରବେଶ କରାଇବା ଅନିବାର୍ଯ୍ୟ ହେବ (୧) ।

---

(୧) ଚିନ୍ତା ଓ ବସ୍ତୁ ଉପରେ Baldwinଙ୍କ ସୁବିସ୍ତୃତ ସନ୍ଦର୍ଭ [ *Thoughts and Thinks*] ତୁଲ୍ୟ ଗ୍ରନ୍ଥମାନଙ୍କରେ ଏହି ପ୍ରବୃତ୍ତି ବିଶେଷତଃ ଲକ୍ଷ୍ୟ କରାଯାଇ ପାରେ । ଏହି ସନ୍ଦର୍ଭରେ 'ନିସ୍ପନ୍ଦନ' ଓ 'ଅନ୍ତର୍ବସ୍ତୁ'ର ଏକ ମନସ୍ତାତ୍ତ୍ୱିକ ଉପକରଣ

ଆମ୍ଭେମାନେ ଯଦି ଏକ ରାସ୍ତା ଛକ ପାଖରେ ଛିଡ଼ାହୋଇ ଗୋଟିଏ ସ୍ତମ୍ଭରେ **ଗ୍ରାଣ୍ଟଚେଷ୍ଟରକୁ** ବୋଲି ଏକ ପଥନିର୍ଦ୍ଦେଶକ ଫଳକର ଜଣେ ପରିବ୍ରାଜକ ସମ୍ମୁଖୀନ ହୋଇଥିବା ଦେଖୁ, ତେବେ ସେହି ପରିସ୍ଥିତିରେ ଆମ୍ଭେମାନେ ସାଧାରଣତଃ ତିନୋଟି ଗୁରୁତ୍ୱପୂର୍ଣ୍ଣ ଉପକାରକ ଥିବାର ଲକ୍ଷ୍ୟ କରୁ ! ଆମ୍ଭେମାନେ ନିଶ୍ଚିତ ଯେ (୧) ଗୋଟିଏ ସଙ୍କେତ ରହିଛି, (୨) ଯାହା ଗୋଟିଏ ସ୍ଥାନକୁ ନିର୍ଦ୍ଦେଶ କରୁଛି ଏବଂ (୩) ଜଣେ ବ୍ୟକ୍ତି ତାହାର ଅର୍ଥ କରୁଛି । ସଙ୍କେତର ବିଚାର କରାଯାଉଥିବା ସମସ୍ତ ପରିସ୍ଥିତି ଏହି ପରିସ୍ଥିତି ସଦୃଶ । ଜଣେ ଡାକ୍ତର ତାଙ୍କର ରୋଗୀର ତାପ ଇତ୍ୟାଦି ଥିବାର ଲକ୍ଷ୍ୟ କରି କହନ୍ତି ଇନ୍‌ଫ୍ଲୁଏଞ୍ଜା ବୋଲି ନିର୍ଣ୍ଣୟ କରନ୍ତି—ଏ କଥା କୁହାଯାଏ । ଏହିପରିଭାବେ କହିବା ଦ୍ୱାରା ଆମ୍ଭେମାନେ ସ୍ପଷ୍ଟ କରିଦେଉନାହୁଁ ଯେ ଏଠାରେ ମଧ୍ୟ ସଙ୍କେତ ନିହିତ । ଆମ୍ଭେମାନେ ରୋଗର ଲକ୍ଷଣ କଥା କହିଲି ବେଳେ ମଧ୍ୟ ଏଗୁଡ଼ିକ ଯେ ଅନ୍ୟାନ୍ୟ ପ୍ରକାର ସଙ୍କେତସମଷ୍ଟି ସହିତ ଘନିଷ୍ଠଭାବେ ସମ୍ବନ୍ଧାନ୍ୱିତ, ସେ ବିଷୟ ଚିନ୍ତା କରୁ ନା । କିନ୍ତୁ ଆମ୍ଭେମାନେ ଯଦି କହୁଁ ଯେ ତାପ ଇତ୍ୟାଦିକୁ ଡାକ୍ତର ଇନ୍‌ଫ୍ଲୁଏଞ୍ଜାର ସଙ୍କେତ ବୋଲି ଅର୍ଥ କରନ୍ତି, ତେବେ ଯାହାହେଉ ଆମେ ଏକ ଅନୁସନ୍ଧାନର ପଥ ଉନ୍ମୁକ୍ତ କରୁଛୁଁ । ଅନୁସନ୍ଧାନଟି ହେଉଛି, ଛକ ରାସ୍ତାରେ ଥିବା ବସ୍ତୁଟିକୁ ପରିବ୍ରାଜକ ଯେପରି ଭାବରେ ଗ୍ରହଣ କରିଛି ଏବଂ ତାପମାପକ ଯନ୍ତ୍ରପ୍ରଦର୍ଶିତ ଚିହ୍ନ ଓ ଫଣ ଫଣ ମୂର୍ତ୍ତିକୁ ଡାକ୍ତର ଯେପରି ଭାବେ ଗ୍ରହଣ କରିଛନ୍ତି—ଏ ଦୁଇଟି ମଧ୍ୟରେ କୌଣସି ସାଧାରଣ ବିଷୟ ରହିଛି କି ନା ।

ତନ୍ନ ତନ୍ନ କରି ପରୀକ୍ଷା କରି ଦେଖିଲେ ଜଣାଯିବ ଯେ ଯେଉଁ ପରିସ୍ଥିତିଗୁଡ଼ିକୁ ଆମେ ସଙ୍କେତ ପରିସ୍ଥିତି ବୋଲି ଗ୍ରହଣ କରୁ ନା, ସେଗୁଡ଼ିକ ମଧ୍ୟରୁ ବହୁ ସଂଖ୍ୟକ ପରିସ୍ଥିତି ମୁଖ୍ୟତଃ ଏହି ଧରଣର । ରସାୟନବିତ୍ ତାଙ୍କ ପରୀକ୍ଷାନଳୀର ରସାୟନିକ ଦ୍ରବ୍ୟରେ ଲିଟମସ୍ କାଗଜ ଖଣ୍ଡେ ବୁଡ଼ାଇ ତାହାର ଲାଲ ହେବାକୁ ଅମ୍ଳର ଏବଂ ନୀଳ ହେବାକୁ କ୍ଷାରର ଚିହ୍ନ ବୋଲି ଅର୍ଥ କରନ୍ତି । ଜଣେ ହିନ୍ଦୁ ଭବିଷ୍ୟତ୍-ବକ୍ତା ଖଣ୍ଡେ କଳା ମେଘ ଲକ୍ଷ୍ୟ କରି ମନ୍ତବ୍ୟ ଦିଅନ୍ତି, "ବର୍ଷା ହେବ" । ଲାଓକୁନ୍‌ଙ୍କ ମୂର୍ତ୍ତିକୁ ପରୀକ୍ଷା ନିରୀକ୍ଷା କରି ଲେସିଂ ସିଦ୍ଧାନ୍ତ ଗ୍ରହଣ କରନ୍ତି ଯେ ପିତା ଲଓକୁନଙ୍କ ଭଙ୍ଗୀ ଶାନ୍ତ ଭାବରେ ପ୍ରକାଶ କରୁଛି । ଜଣେ ନିଉଜିଲଣ୍ଡର ସ୍କୁଲ ଛାତ୍ରୀ ତାହାର ହସ୍ତୋଲିକାଲ

---

ସମ୍ବନ୍ଧରେ ଉଲ୍ଲେଖ ରହିଛି । ଏହାସହିତ ପରବର୍ତ୍ତୀ ଭାବବିନିମୟ ସମ୍ବନ୍ଧୀୟ ଆଲୋଚନାର ଦାବୀକୁ ପରସ୍ପର ସଙ୍ଗତ କରିବା ଏକ ଦୁଷ୍କର ବ୍ୟାପାର । ଆରିଷ୍ଟଟଲ୍ ଏହିପରି ଭାବେ ନିର୍ଦ୍ଦେଶ୍ୟକୁ ଉପେକ୍ଷା କରି ଯାଇ ଥିବାରୁ ବୈୟାକରଣ ବିଶ୍ଳେଷଣରେ ଯେଉଁ ଆବର୍ତ୍ତନ ଆବଶ୍ୟକ ହୋଇଛି, ତାହାର ସମୀକ୍ଷା ପରିଶିଷ୍ଟ-କ ରେ କରାଯାଇଛି ।

ମାନୁଏଲ୍ ଫର୍ ଦ ଇଣ୍ଡିକ୍ ଅଫ୍ ଲୋଅର ଗ୍ରେଡ୍—ଇତିହାସ ପୁସ୍ତକର ଗୋଟିଏ ପୃଷ୍ଠାର କେତେକ ଅକ୍ଷରକୁ ଦେଖେ ଏବଂ ଜାଣେ ଯେ ରାଣୀ ଆନ୍ ମରି ଗଲେଣି ।

ଯେଉଁ ପଦ୍ଧତି ସଂକେତ ବ୍ୟାଖ୍ୟାକରଣରେ (୧) ସାଧାରଣ ବୈଶିଷ୍ଟ୍ୟ ଥିବାର ସ୍ୱୀକାର କରେ, ତହିଁରେ ମଧ୍ୟ ବିପଦର ଆଶଙ୍କା ରହିଛି । କିନ୍ତୁ କିଛି ଭାବରେ ଭିନ୍ନ

---

(୧) ଏହି ସମସ୍ତ କ୍ଷେତ୍ରରେ ଗୋଟିଏ ସଙ୍କେତର ଠିକ୍ ଭାବେ ହେଉ ବା ଭୁଲ ଭାବେ ହେଉ ଅର୍ଥ କରାଯାଇଛି, ଅର୍ଥାତ୍ ଗୋଟିଏ ଜିନିଷର କେବଳ ଅନୁଭବ ବା ଉପଭୋଗ କରାଯାଉନାହିଁ, ତାହା ଅନ୍ୟ ଏକ ଜିନିଷର ନିର୍ଦ୍ଦେଶ ଦେଉଛି ବୋଲି ବୁଝା ଯାଉଛି । ଯେ କୌଣସି ଅନୁଭୂତ ବିଷୟକୁ ମଧ୍ୟ ଏହିପରିଭାବେ ବୁଝାଯାଇ ପାରିବ, ଅର୍ଥାତ୍ ତାହା ମଧ୍ୟ ଏକ ସଙ୍କେତ ହୋଇ ପାରିବ । ଏଠାରେ ମନେ ରଖିବା ଗୁରୁତ୍ୱପୂର୍ଣ୍ଣ ଯେ ବ୍ୟାଖ୍ୟାକରଣ ବା ଯାହା ବ୍ୟାଖ୍ୟାକାରଠାରେ (ବା ତାହାର ମନରେ) ଘଟେ, ତାହା ସଙ୍କେତଠାରୁ ଏବଂ ଯାହାର ତାହା ସଙ୍କେତ ବା ସଙ୍କେତ ଯାହାକୁ ନିର୍ଦ୍ଦେଶ କରେ ତାହାଠାରୁ ଭିନ୍ନ । ଯେଣୁ ଯଦି ଆମ୍ଭେମାନେ ଗୋଟିଏ ସଙ୍କେତର ଅର୍ଥ ବିଷୟ କହୁଁ ତେବେ ଦାର୍ଶନିକ, ମନୋବୈଜ୍ଞାନିକ ଏବଂ ତାର୍କିକମାନେ ଯେପରି କରିବାରେ ଅଭ୍ୟସ୍ତ, ସେହିପରି ଗଣ୍ଡଗୋଳ କରି ନ ପକାଇବା ଉଚିତ । ସେମାନେ ଗୋଟିଏ ସଙ୍କେତ ଏବଂ ଯାହାକୁ ତାହା ନିର୍ଦ୍ଦେଶ କରେ ଏହି ଦୁଇଟି ମଧ୍ୟରେ ଥିବା (ଆରୋପିତ) ସମ୍ବନ୍ଧକୁ ନିର୍ଦ୍ଦେଶ୍ୟ (ଯାହା ନିର୍ଦ୍ଦେଶିତ) ସହିତ ଅଥବା ବ୍ୟାଖ୍ୟାକରଣ ପ୍ରଣାଳୀ (ବ୍ୟାଖ୍ୟାକାରର ମନୋଗତ 'ପ୍ରକ୍ରିୟା') ସହିତ ଗଣ୍ଡଗୋଳ କରି ପକାନ୍ତି । ଏହି ପ୍ରକାର ଗଣ୍ଡଗୋଳ ହିଁ ସଙ୍କେତ ଓ ତାହାର ଅର୍ଥ ବିଷୟରେ ଆଗରୁ ହୋଇଥିବା ଏତେ ପରିମାଣର କାର୍ଯ୍ୟକୁ ନିଷ୍ଫଳ କରି ଦେଇଛି । ବିଶେଷତଃ ସେହି ଗୋଟିଏ ଶବ୍ଦ 'ଅର୍ଥ'କୁ ଉଭୟ ମୁଣ୍ଡ ଭିତରର 'ପ୍ରକ୍ରିୟା' (ମାନସିକ ପ୍ରତିମା, ସହଗ୍ରହିତା ଇତ୍ୟାଦି, ଯାହା ସଙ୍କେତର ବ୍ୟାଖ୍ୟା କରିବାରେ ସେମାନଙ୍କୁ ସମର୍ଥ କରେ) ନିମନ୍ତେ ଏବଂ ନିର୍ଦ୍ଦେଶ୍ୟ (ଯେଉଁ ବସ୍ତୁକୁ ସଙ୍କେତ ନିର୍ଦ୍ଦେଶ କରେ) ନିମନ୍ତେ ବ୍ୟବହାର କରିବା ଦ୍ୱାରା ଦାର୍ଶନିକମାନେ ଗ୍ରାଣ୍ଟଚେଷ୍ଟର, ଇନ୍‌ଫ୍ଲୁଏଞ୍ଜା, ରାଣୀ ଆନ୍ ଏବଂ ବସ୍ତୁତଃ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡକୁ ସେମାନଙ୍କ ମୁଣ୍ଡଭିତରେ ସମାନଭାବେ ସ୍ଥାନ ଦେବା ପାଇଁ ବାଧ୍ୟ ହୋଇଛନ୍ତି, ଅଥବା ଯଦି ଏତଦ୍ଦ୍ୱାରା ପ୍ରମସ୍ତିଷ୍କୀୟ ପ୍ରାଚୁର୍ଯ୍ୟ ଘଟିବ ବୋଲି ଭୀତ ସଞ୍ଚାର ହୋଇଛି, ତେବେ ଅନ୍ତତଃ 'ସେମାନଙ୍କ ମନ ମଧ୍ୟରେ' ସ୍ଥାନ ଦେଇଛନ୍ତି; ଏବଂ ଏହା ଏପରିଭାବେ କରାଯାଇଛି ଯେ ଏହି ସମସ୍ତ ବସ୍ତୁ ସୁବିଧାଜନକଭାବେ 'ମାନସିକ' ହୋଇ ଯାଇଛନ୍ତି । ଅତଏବ, 'ଅର୍ଥ' ଶବ୍ଦର ବ୍ୟବହାର ଅତ୍ୟନ୍ତ ସାବଧାନତା ସହକାରେ କରାଯିବା ଆବଶ୍ୟକ, କାରଣ ଏହାର ବ୍ୟଞ୍ଜନାଗୁଡ଼ିକରେ ବିପଦର ଆଶଙ୍କା ରହିଛି ।

ଭିନ୍ନ ହୋଇଥିବା ଅନେକଗୁଡ଼ିଏ ବିଷୟର ଏକ ନୂତନ ପ୍ରକାର ଅଧ୍ୟୟନର ପଥ ଏହା ଉନ୍ମୁକ୍ତ କରିଦିଏ ।

ଯେଉଁ କ୍ଷେତ୍ରରେ ସଙ୍କେତସିଦ୍ଧାନ୍ତର ଏକ ବିଶିଷ୍ଟ ବ୍ୟବହାର ରହିଛି, ତାହାର ଦୃଷ୍ଟାନ୍ତ ସ୍ୱରୂପ ଆମର ଚତୁର୍ଥ ପରିଚ୍ଛେଦର ବିଷୟବସ୍ତୁକୁ ଉପସ୍ଥାପିତ କରାଯାଇ ପାରେ । ଆମ୍ଭେମାନେ ଯଦି ହୃଦୟଙ୍ଗମ କରିପାରିବା ଯେ ଅବବୋଧ ମାତ୍ର ହୋଇନଥିବା ସମସ୍ତ ପ୍ରତ୍ୟକ୍ଷ କ୍ଷେତ୍ରରେ ସଙ୍କେତ ପରିସ୍ଥିତି ନିହିତ, ତେବେ ଯେଉଁ ସମସ୍ୟାମାନଙ୍କରେ ଏକ ଅଚଳ ଅବସ୍ଥାର ସୃଷ୍ଟି ହୋଇପରି ମନେହୁଏ, ସେଠାରେ ସମାଧାନର ଏକ ନୂତନ ପଦ୍ଧତି ଆମେ ପାଇ ପାରିବା । ଯାହାକୁ ଆମେ 'ଚିହ୍ନିବା' ବୋଲି ନାମ ଦେଉଛୁ, ତାହାକୁ 'ପ୍ରତ୍ୟକ୍ଷ' କରିବା ମାତ୍ରେ ଆମେ କେତେକ ଦତ୍ତ ବିଷୟ (ଇନ୍ଦ୍ରିୟମାନଙ୍କରେ ପରିବର୍ତ୍ତନ)କୁ ଅର୍ଥ କରୁଛୁ ଏବଂ ସେଗୁଡ଼ିକୁ ନିର୍ଦ୍ଦେଶ୍ୟର ସଙ୍କେତ ରୂପେ ଗ୍ରହଣ କରୁଛୁ । ସେହିପରି ଗୋଟିଏ ଶବ୍ଦର ଅର୍ଥକରଣ ଆଗରୁ ମଧ୍ୟ ଏକ କ୍ରମାଗତ ଧ୍ୱନିସମଷ୍ଟି ଅଥବା ଅକ୍ଷରସମଷ୍ଟିକୁ ଏକ ଶବ୍ଦ ରୂପେ ପ୍ରାୟ ସ୍ୱତଃସ୍ଫୂର୍ତ୍ତଭାବେ ଅର୍ଥ କରି ଯାଉଛୁ । ଏକ ନୂତନ ପ୍ରବିଧିର ପ୍ରୟୋଗ ଦ୍ୱାରା ବାହ୍ୟ ଜଗତ ଅତିରିକ୍ତ ମାନସିକ ଘଟଣା, 'ପ୍ରକ୍ରିୟା' ବା ଅର୍ଥକରଣ ପ୍ରଣାଳୀରେ ହିଁ ନିହିତ ଥିବା ସଙ୍କେତସ୍ଥିତିର ମଧ୍ୟ ଆମେ ଅନୁସନ୍ଧାନ କରି ପାରିବା; ପ୍ରାଚୀନ ମନସ୍ତତ୍ତ୍ୱର ଅନୁକରଣ କରି ଅନ୍ତର୍ନିରୀକ୍ଷଣରୁ ଇଚ୍ଛା ମୁତାବକ ସାମାନ୍ୟୀକରଣରେ ଆମକୁ ସୀମିତ ହେବାକୁ ପଡ଼ିବ ନାହିଁ କିମ୍ବା ଚରମପନ୍ଥୀ ବ୍ୟବହାର ବାଦୀଙ୍କ (୧) ସହମତ ହୋଇ ସଙ୍କେତର ଉପସ୍ଥିତି ସତ୍ତ୍ୱେ ମାନସିକ ପ୍ରତିମା ଏବଂ ଅନ୍ୟାନ୍ୟ 'ମାନସିକ' ଘଟଣାଗୁଡ଼ିକର ସ୍ଥିତିକୁ ଆମକୁ ଅସ୍ୱୀକାର କରିବାକୁ ପଡ଼ିବ ନାହିଁ । ସଙ୍କେତ ସିଦ୍ଧାନ୍ତ ଦ୍ୱାରା ପ୍ରସ୍ତାବିତ ଏବଂ ଭାଷାମୂଳକ ବିଶ୍ଳେଷଣ ଦ୍ୱାରା ସମର୍ଥିତ ଦ୍ୱୈତଭାଷା ପ୍ରକଳ୍ପ ସାର୍ବଜନୀନ ଚେତନାଶୂନ୍ୟକରଣର ତାର୍କିକ ଆବଶ୍ୟକତା ଅନୁଭବରୁ ଡକ୍ଟର ଉଆଟସନ୍ ଏବଂ ତାଙ୍କର ଅନୁଗାମୀମାନଙ୍କୁ ଅବ୍ୟାହତି ଦେବ । ଆମ୍ଭମାନଙ୍କ

---

(୧) ପ୍ରତୀକାତ୍ମକ ଉପକରଣର ଦ୍ୱୈତକରଣ ହେତୁରୁ ଶରୀର-ମନ ସମସ୍ୟାର ଉଦ୍ଭବ ହୁଏ ବୋଲି ଚତୁର୍ଥ ପରିଚ୍ଛେଦରେ ଯୁକ୍ତି କରାଯାଇଛି । ଆହୁରି ମଧ୍ୟ ତୁଳନା କର—C. K. Ogden କୃତ *The meaning of psycology* (୧୯୨୬), ୨ୟ ପରିଚ୍ଛେଦ । ଏଥିରେ ଏହି ମତ ଗ୍ରହଣ କରୁଥିବା ସମସାମୟିକ ବିଶେଷଜ୍ଞମାନଙ୍କ ମତାମତ ଉଦ୍ଧାର କରି ଏହି ମତକୁ ସମର୍ଥନ କରାଯାଇଛି ।

ବର୍ତ୍ତମାନ ଓ ଭବିଷ୍ୟତ ଆଚରଣ ବିଶେଷତଃ ସ୍ୱପ୍ନର ଆଧୁନିକ ବ୍ୟାଖ୍ୟାର (୧) ସର୍ବାପେକ୍ଷା ଅଧିକ ଉପାଦେୟ ସଙ୍କେତ ହେଉଛି ମାନବୀକ ପ୍ରତିମା ଇତ୍ୟାଦି । ପ୍ରତୀକ ଅର୍ଥକରଣର ବିଶୃଙ୍ଖଳ ଚେଷ୍ଟା ସମ୍ବନ୍ଧରେ ଏବଂ ମନୋବିଶ୍ଳେଷଣକାରୀଙ୍କ ମୂଲ୍ୟବାନ ପରିଶ୍ରମକୁ କଳଙ୍କିତ କରି ପକାଉଥିବା ଗଠନଗତ ସମ୍ବନ୍ଧରେ ଏକ ଭିନ୍ନତ ବ୍ୟବହାର-ବାଦର ଅନେକ କହୁ କହିବାର ଅଛି ।

ଯେ କୌଣସି 'ସଙ୍କେତ ସ୍ଥିତି' ସମ୍ବନ୍ଧରେ ଉଦ୍ରେକ ହେଉଥିବା ସମସ୍ୟାଗୁଡ଼ିକର ସାଧାରଣ ଆକାର ସମାନ । ସଂପୃକ୍ତ ଉପାଦାନଗୁଡ଼ିକ ମଧ୍ୟରେ ଥିବା ସମ୍ବନ୍ଧଗୁଡ଼ିକ ଅବଶ୍ୟ ଭିନ୍ନ ଭିନ୍ନ; କିନ୍ତୁ ପ୍ରକାରଗତ ଦୃଷ୍ଟିରୁ ସେଗୁଡ଼ିକ ସମାନ । ତେଣୁ ଗୋଟିଏ କ୍ଷେତ୍ରର, ଯଥା:—ପ୍ରତୀକ କ୍ଷେତ୍ରର, ସମସ୍ୟା ଗୁଡ଼ିକର ସଂପୂର୍ଣ୍ଣ ବର୍ଗୀକରଣ ପ୍ରଥମରୁ ଅତ୍ୟନ୍ତ ଭିନ୍ନ ଧରଣର ବୋଲି ମନେ ହେଉଥିବା କ୍ଷେତ୍ରମାନଙ୍କର ସମପ୍ରକାର ସମସ୍ୟାଗୁଡ଼ିକ ଉପରେ ଆଲୋକପାତ କରିବ ବୋଲି ଆଶା କରିଯାଇପାରେ । ଉପରେ ଦିଆଯାଇଥିବା ଉଦାହରଣମାନଙ୍କରେ ଭିନ୍ନ ଭିନ୍ନ ପ୍ରକାର ସଙ୍କେତସ୍ଥିତିର ବିଚାର କଲାବେଳେ ଆମ୍ଭେ-ମାନେ ଦେଖୁ ଯେ ମନୁଷ୍ୟମାନେ ପରସ୍ପର ଭାବବିନିମୟ ନିମିତ୍ତ ଏବଂ ଚିନ୍ତାର ଉପକରଣ ସ୍ୱରୂପ ଯେଉଁ ସଙ୍କେତଗୁଡ଼ିକର ବ୍ୟବହାର କରନ୍ତି, ସେଗୁଡ଼ିକର ଏକ ବିଶିଷ୍ଟ ସ୍ଥାନ ରହିଛି । ଏହି ସଙ୍କେତସମଷ୍ଟିକୁ ଏକ ସ୍ୱତନ୍ତ୍ର ନାମ ଦେବା ସୁବିଧାଜନକ ହେବ । ସୁତରାଂ ଶବ୍ଦ, ଶବ୍ଦ ସମନ୍ୱୟ, ପ୍ରତିମା, ଭଙ୍ଗୀ ଏବଂ ଅଙ୍କିତ ଚିତ୍ର ବା ଅନୁକରଣମୂଳକ ଧ୍ୱନି ପରି ସଙ୍କେତଗୁଡ଼ିକ ପାଇଁ **ପ୍ରତୀକ** ପଦକୁ ଆମେ ବ୍ୟବହାର କରିବା । ମାନବୀୟ ଜୀବନ ଓ ଚିନ୍ତା ଉପରେ ଅପ୍ରତ୍ୟାଶିତ ଓ ଅସଂଖ୍ୟ ପ୍ରକାରରେ  ଥିବା ପ୍ରତୀକାତ୍ମକ ପ୍ରଭାବ କଦାପି ସଂପୂର୍ଣ୍ଣରୂପେ ସ୍ୱୀକୃତ ହୋଇନାହିଁ । ଇତିହାସରେ ଏହି ଅଧ୍ୟାୟ ଅଧ୍ୟୟନରେ ବର୍ତ୍ତମାନ ଆମେ ପ୍ରବେଶ କରିବା ।

★

---

(୧) ଉପସ୍ଥିତ ଗ୍ରନ୍ଥର ପରିଭାଷାରେ ମନୋବିଶ୍ଳେଷଣକାରୀର ଅନେକ 'ପ୍ରତୀକ' ସଙ୍କେତ ମାତ୍ର ବୋଲି ବିବେଚିତ ହେବ; ସେଗୁଡ଼ିକ ଭାବ ବିନିମୟ ଉଦ୍ଦେଶ୍ୟରେ ବ୍ୟବହୃତ ହୁଅନ୍ତି ନାହିଁ । କିନ୍ତୁ ମନୋବିଶ୍ଳେଷଣ ସାହିତ୍ୟରେ, ବିଶେଷତଃ ସଂବେଗାତ୍ମକ ପ୍ରାଚୁର୍ଯ୍ୟ ସମ୍ବନ୍ଧରେ ବ୍ୟାପକତର ଆକାରର ଅର୍ଥକରଣର ଆବଶ୍ୟକତା ଉପରେ ଅତି ଉପାଦେୟ ପ୍ରାଧାନ୍ୟ ଅର୍ପିତ ହୋଇଛି । ଉଦାହରଣ ସ୍ୱରୂପ, ତୁଳନା କର— Dr. Jelliffeଙ୍କ "The Symbol as an Energy Condenser (*Journal of Nervous and Mental Diseases* ଡିସେମ୍ବର ୧୯୧୯), ଯଦିଓ ଯାହା ଉପରେ କୁହାଯାଇଛି ଏବଂ ଯାହା ପରେ କୁହାଯିବ, ସେହି ଦୃଷ୍ଟିରୁ ଅନ୍ୟାନ୍ୟ ଅନେକ ମନୋବିଶ୍ଳେଷଣାତ୍ମକ ଅଭିବ୍ୟକ୍ତି ତୁଲ୍ୟ ଏହି ରୂପକ ଅଭିବ୍ୟକ୍ତିଟିର ମଧ୍ୟ ଅତ୍ୟଧିକ ସଂପ୍ରସାରଣ ଅନୁଚିତ । (ତୁଳନା କର—ଟୀକା ପରିଶିଷ୍ଟ ସୂଚିତ ପୃଷ୍ଠା ।)

# ଦ୍ୱିତୀୟ ପରିଚ୍ଛେଦ

## ଶବ୍ଦଶକ୍ତି

ଜାଣି ରଖ, ଶବ୍ଦ ହେଉଛି ଏକ ଜୀବନ୍ତ ବସ୍ତୁ ··
ଶବ୍ଦ ହେଉଛି କିମ୍ବା ଏବଂ କିମ୍ବା ହିଁ ଈଶ୍ୱର—

ଭିକ୍ଟର ହ୍ୟୁଗୋ ।

ହେ ଏଥେନ୍ସର ନାଗରିକଗଣ ! ମୁଁ ଦେଖୁଛି,
ତୁମ୍ଭେମାନେ ସର୍ବତୋଭାବେ ଦେବଗଣଙ୍କ ପ୍ରତି
ଅତ୍ୟନ୍ତ ଭକ୍ତ ବିନମ୍ର—

ଟରସସ୍‌ର ପଲ୍ ।

ଏହି ସବୁ ବିଷୟକୁ ଯେ ଯଥୋପଯୁକ୍ତଭାବେ ବିଚାର
କରିବ, ସେ ଦେଖି ପାରିବ ଯେ ଶବ୍ଦଗୁଡ଼ିକରେ
ଏକ ପ୍ରକାର ସମ୍ମୋହନ ବା ବଶୀଭୂତକରଣ ଶକ୍ତି
ରହିଛି । ଏହା ସେଗୁଡ଼ିକୁ ଏପରି ଏକ ବଳ
ସହିତ କାର୍ଯ୍ୟକାରୀ କରାଏ, ଯାହାକୁ ସ୍ୱାଭାବିକଭାବେ
ବର୍ଣ୍ଣନା କରିବା ଆମର ସାମର୍ଥ୍ୟ ବହିର୍ଭୂତ—

ସାଉଥ ।

ଅତି ପ୍ରାଚୀନ କାଳରୁ ମନୁଷ୍ୟମାନେ ଚିନ୍ତା ପ୍ରଣାଳୀର ସାହାଯ୍ୟ ନିମନ୍ତେ ଏବଂ ନିଜ ନିଜ ସାଫଲ୍ୟର ଲିପିବଦ୍ଧକରଣ ନିମନ୍ତେ ଯେଉଁ ପ୍ରତୀକଗୁଡ଼ିକର ବ୍ୟବହାର କରିଛନ୍ତି, ତାହା ବିସ୍ମୟ ଓ ଭ୍ରମର ଏକ ନିରବଚ୍ଛିନ୍ନ ଉତ୍ସ ହୋଇ ରହିଛି । ବସ୍ତୁ-ନିୟନ୍ତ୍ରଣର ସାଧନରୂପେ ଶବ୍ଦମାନଙ୍କ ସାମର୍ଥ୍ୟ ସମଗ୍ର ମାନବଜାତିର ଏପରି ଚିତ୍ତାକର୍ଷକ ହୋଇଛି ଯେ ପ୍ରତ୍ୟେକ ଯୁଗର ମନୁଷ୍ୟ ତହିଁରେ ଏକ ଗୂଢ଼ ଶକ୍ତି ନିହିତ ବୋଲି ଗ୍ରହଣ କରିଛି ! ଏହି ବିଷୟରେ ଆଦ୍ୟ ମିଶରୀୟ କବିର ଅଭିବୃତ୍ତି ଓ ଆଧୁନିକ କବିର ଅଭିବୃତ୍ତି ମଧ୍ୟରେ ବିଶେଷ କୌଣସି ପାର୍ଥକ୍ୟ ନାହିଁ ବୋଲି ପ୍ରଥମ ଦୃଷ୍ଟିରେ ମନେ ହେବ । ୱାଲ୍ଟ ହ୍ୱିଟ୍‌ମେନ୍ କହିଛନ୍ତି, "ସମସ୍ତ ଶବ୍ଦ ହେଉଛି ଆଧ୍ୟାତ୍ମିକ । ଶବ୍ଦମାନଙ୍କ ଅପେକ୍ଷା ଅଧିକ ଆଧ୍ୟାତ୍ମିକ କିଛି ନାହିଁ । ସେଗୁଡ଼ିକ କେଉଁଠୁ ଆସିଲେ ? କେତେ ସହସ୍ର ଓ କେତେ ଦଶସହସ୍ର ବର୍ଷ ଧରି ସେଗୁଡ଼ିକ ଚାଲିଛନ୍ତି ?" ଶବ୍ଦ

ସମ୍ବନ୍ଧୀୟ ଅନ୍ଧ ବିଶ୍ୱାସର ପ୍ରବଳ ପ୍ରଭାବକୁ ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ ନକଲେ ଆମେମାନେ କେତେକ ବ୍ୟାପକ ଭାଷାଗତ ଅଭ୍ୟାସର ସୁଦୃଢ଼ତାକୁ ବୁଝି ପାରିବା ନାହିଁ । ଅତି ସାବଧାନତା ସହକାରେ ଚିନ୍ତନକୁ ସୁଦ୍ଧା ଏହି ଅଭ୍ୟାସଗୁଡ଼ିକ ଏବେମଧ୍ୟ ଦୋଷଦୁଷ୍ଟ କରିପକାଉଛନ୍ତି ।

ଅଧିକାଂଶ ଲୋକଙ୍କ କ୍ଷେତ୍ରରେ ଏବଂ ସାଧାରଣ ଆଲୋଚ୍ୟ ବିଷୟରେ ପୁରୁଷାନୁକ୍ରମେ ପ୍ରଚଳିତ ଏହି ପ୍ରଥାର ପ୍ରଭାବ ଭାଷାରେ ଯେପରି, ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ତଦ୍ରୂପ ସର୍ବବ୍ୟାପୀ । "ଏକ ଯୁଗର ଓ ଏକ ଦେଶର ଦୁଇଜଣ ବ୍ୟକ୍ତିଙ୍କ ମୁଣ୍ଡକୁ ଖୋଲି ଯଦି ଆମେ ସେ ଦୁହିଁଙ୍କ ଭାବନାଗୁଡ଼ିକୁ ପଢ଼ି ପାରନ୍ତୁ, ଏବଂ ଗୋଟିକର ପ୍ରଜ୍ଞାର ସର୍ବନିମ୍ନ ସ୍ତରର ଭାବନାଗୁଡ଼ିକ ସହିତ ଅନ୍ୟଟିର ପ୍ରଜ୍ଞାର ସର୍ବୋଚ୍ଚ ସ୍ତରର ଭାବନାଗୁଡ଼ିକୁ ତୁଳନା କରନ୍ତୁ, ତେବେ ସମ୍ଭବତଃ ଆମକୁ ଜଣାଯାଆନ୍ତା ଯେ ଭାବନାଗୁଡ଼ିକ ଦୁଇଟି ଭିନ୍ନ ଉପଜାତୀୟ ଜୀବର ।...ଅନ୍ଧ ବିଶ୍ୱାସ ବଞ୍ଚି ରହେ, କାରଣ ସମାଜର ସୁଶିକ୍ଷିତ ବ୍ୟକ୍ତିଙ୍କ ଧାରଣାରେ ତାହା ଘୃଣାଜନକ ହେଲେ ସୁଦ୍ଧା ଅନ୍ୟାନ୍ୟ ବ୍ୟକ୍ତିଙ୍କ ଚିନ୍ତା ଓ ଅନୁଭୂତି ସହ ତଥାପି ସୁସଙ୍ଗତ ରହିଥାଏ । ଏହି ଶେଷୋକ୍ତ ବ୍ୟକ୍ତିବର୍ଗ ସେମାନଙ୍କଠାରୁ ଉନ୍ନତ ତାହା ବ୍ୟକ୍ତିଙ୍କ ଅନୁପ୍ରେରଣାରେ ସଭ୍ୟତାର ଏକ ଆବରଣ ଧାରଣ କରିଥିଲେ ହେଁ ଅନ୍ତରରେ ମ୍ଲେଚ୍ଛ ବା ଅସଭ୍ୟ ହିଁ ରହିଥାନ୍ତି (୧) ।"

ଅନ୍ଧବିଶ୍ୱାସର ଅବଶେଷ କେତେ ପରିମାଣରେ ଯେ ସେମାନଙ୍କ ଅତି ନିକଟରେ ଜୀବନ୍ତ ଅବସ୍ଥାରେ ରହିଛି, ସେ ସମ୍ବନ୍ଧରେ ଅଧିକାଂଶ ଶିକ୍ଷିତ ବ୍ୟକ୍ତି ସମ୍ପୂର୍ଣ୍ଣଭାବେ ଅଜ୍ଞ । ଅତୀତର ଅଦୃଶ୍ୟ ହାତଦ୍ୱାରା ସେମାନଙ୍କ ନିଜର ଆଚରଣ କିପରିଭାବେ ପରିଚାଳିତ ହେଉଛି, ତାହା ମଧ୍ୟ ସେମାନେ ଆହୁରି କମ୍ ହୃଦୟଙ୍ଗମ କରନ୍ତି । ଡକ୍ଟର ଫ୍ରେଜର କହନ୍ତି, "ଯେଉଁ ମାନଙ୍କ ଅଧ୍ୟୟନ ଏହି ବିଷୟରେ ଅନୁସନ୍ଧାନ କରିବାକୁ ସେମାନଙ୍କୁ ପ୍ରବୃତ୍ତ କରିଛି, କେବଳ ସେହିମାନେ ହିଁ ଜାଣନ୍ତି ଯେ ଅଦୃଶ୍ୟ ଶକ୍ତିମାନଙ୍କ ପ୍ରଭାବରୁ ଏହିପରି ମଧୁଚକ୍ର ସଦୃଶ ଆକାର ଧାରଣ କରିଥିବା ଆମ ପାଦତଳର ଭୂମିର ଗଭୀରତା କେତେ ।"

ମାନବବିଜ୍ଞାନବିତ୍ ଏକଥା ସ୍ୱୀକାର କରେ ଯେ ସାଗରର ଉପରିଭାଗ ତୁଲ୍ୟ ଆମ ସମାଜର ଉପରିଭାଗ ସର୍ବଦା ଆନ୍ଦୋଳିତ ଅବସ୍ଥାରେ ଥାଇପାରେ । କିନ୍ତୁ ମହାସାଗରର ଆଭ୍ୟନ୍ତରୀଣ ପ୍ରଦେଶ ତୁଲ୍ୟ ଏହାର ଆଭ୍ୟନ୍ତରୀଣ ପ୍ରଦେଶ ପ୍ରାୟ ଶାନ୍ତାବସ୍ଥାରେ ଥାଏ । ପ୍ରତିଦିନ ସେହି ସୁଗଭୀର ପ୍ରଦେଶରେ ଅବଗାହନ ଦ୍ୱାରା ହିଁ କେବଳ ଆମେ ଆମର ସ୍ୱଜାତୀୟ ବ୍ୟକ୍ତିବର୍ଗର ସଂସ୍ପର୍ଶରେ ଆସି ପାରିବା । ଏକ ବିଶିଷ୍ଟ କ୍ଷେତ୍ର ଅର୍ଥାତ୍ ଭାଷାରେ, ଏକ ବା ଅପର

---

(୧) J. G. Frazer, *Psyche's Task* ପୃ ୧୬୯ ।

ସ୍ୱତନ୍ତ୍ର ବୈଜ୍ଞାନିକ-ତର୍କ-ପଦ୍ଧତିର ସୁବିଧା ତ୍ୟାଗ କରି, ଯେଉଁ ଏକ ଅବିଶୁଦ୍ଧ ସ୍ରୋତର ଜଳ ପାନ କରିବା ଦ୍ୱାରା ହିଁ ଆମେ ସାମାଜିକ ଜୀବନରେ ଅଂଶ ଗ୍ରହଣ କରି ପାରିବା । ଭାବବିନିମୟ ପ୍ରସ୍ତାବ କାଳରେ, ଅର୍ଥକରଣର ଚେଷ୍ଟା କଲାବେଳେ, ଯଦି ଆମର ମୁକ୍ତ-ଚିନ୍ତାରେ ପୁଞ୍ଜୀଭୂତ ବାଚନିକ ତଥ୍ୟର ମେଘ ଫାଟି ଯାଏ, ତେବେ ଏପର୍ଯ୍ୟନ୍ତ ପ୍ରାପ୍ତ କୌଣସି ବ୍ୟକ୍ତି ତହିଁରୁ ରକ୍ଷା ପାଇବା ନିମନ୍ତେ ଯନ୍ତ୍ରକୃତ ପ୍ରତିରକ୍ଷାର ବ୍ୟବସ୍ଥା ସୁଦ୍ଧା କରାଯାଇନାହିଁ ।

ଶବ୍ଦହିଁ ଆମ ଜୀବନର ସର୍ବାଧିକ ରକ୍ଷଣଶୀଳ ଦଳ । ଯେଉଁ ଅଲଙ୍ଘ୍ୟ ବାଚନିକ ରଜ୍ଜୁଦ୍ୱାରା ଆମର ବୁଦ୍ଧିପରିମାଣର ଚିନ୍ତା ପରିବେଷ୍ଟିତ, ତାହାର ସ୍ଥିତି ସ୍ୱୀକାର କରିବାକୁ ଏଇ ଅଳ୍ପଦିନ ତଳେ ମାନବବିଜ୍ଞାନର ବିଦ୍ୟାର୍ଥୀମାନେ ଆରମ୍ଭ ମାତ୍ର କରିଛନ୍ତି । "ଧାରାର ବଂଶାନୁକ୍ରମେ ଲବ୍ଧ ସାଧାରଣ ବ୍ୟବସ୍ଥା ଆମର ଚତୁର୍ଦ୍ଦିଗରେ ଘେରି ରହିଛି ! ସ୍ୱାଭାବିକଭାବେ ଓ ଆମର ବିନା ଓଜରେ ଆପତ୍ତିରେ ସ୍ଥାନୀୟ ବାୟୁତୁଲ୍ୟ ଏହା ଆମର କରଗତ ହୋଇଯାଏ । କିନ୍ତୁ, ତଥାପି ଏହା ଆମକୁ ଅନୁଗତ କରେ, ଆମର ବୌଦ୍ଧିକ ଗତିକୁ ଅସଂଖ୍ୟ ସୀମାରେ ସୀମିତ ରଖେ । ଏହାର ନିୟନ୍ତ୍ରଣ ଅଧିକ ଦୃଢ଼ ଓ ଅନିବାର୍ଯ୍ୟ; କାରଣ ସର୍ବାପେକ୍ଷା ସରଳ ଅର୍ଥର ପ୍ରକାଶ ନିମିତ୍ତ ବ୍ୟବହାର କରିବାକୁ ଆମେ ବାଧ୍ୟ ହେଉଥିବା ଭାଷାଟିରେ ହିଁ ଏହା ନିହିତ । ସୁତରାଂ ଆମେ ନିଜେ ନିଜେ ଆଦୌ ଚିନ୍ତନ ଆରମ୍ଭ କରିବା ପୂର୍ବରୁହିଁ ଏହା ଗୃହୀତ ତଥା ସ୍ୱାଭାବିକ ବୋଲି ପରିଗଣିତ ହୋଇ ସାରିଥାଏ (୧) ।" ପୁଣି ଆମ ଭାଷାର ଗଠନ ପଦ୍ଧତିରୁ ଆମେ ମୁକ୍ତି ପାଇବାକୁ ଚିନ୍ତା କରିବା ସୁଦ୍ଧା ଏକ ଦୁରୂହ ବ୍ୟାପାର । ଆମେ ଲାଙ୍ଗୁଡ଼ବିହୀନ ହେବା ପରେ ସହସ୍ର ସହସ୍ର ବର୍ଷ ବିତିଗଲାଣି, କିନ୍ତୁ ବୃକ୍ଷବାସୀ ମନୁଷ୍ୟର ଆବଶ୍ୟକତା ପୂରଣ ନିମନ୍ତେ ସଂଗଠିତ ମାଧ୍ୟମରେ ଆମେ ଏ ପର୍ଯ୍ୟନ୍ତ ଭାବ ବିନିମୟ କରି ଆସୁଛୁ । ଭାଷାର ଧ୍ୱନି ଓ ଶବ୍ଦ ଭାଷା-ଉତ୍ପତ୍ତିର ପ୍ରାଚୀନତାର ପରିଚାୟକ । ସେହିପରି ସେହି ଧ୍ୱନି ଓ ଶବ୍ଦର ବ୍ୟଞ୍ଜନା ଏବଂ ସେଗୁଡ଼ିକର ବ୍ୟବହାର ତଥା ଆମର ଆଦ୍ୟ ଜନକ-ଜନନୀଙ୍କ ଦ୍ୱାରା ତଦୁପରି ଆରୋପିତ ଗଠନ ପ୍ରଣାଳୀ ସହିତ ଯେଉଁ ଚିନ୍ତନ-ଅଭ୍ୟାସ ଗଢ଼ି ଉଠିଛି, ତାହା ମଧ୍ୟ ଏକ ତାତ୍ପର୍ଯ୍ୟ-ପୂର୍ଣ୍ଣ ନିରବଚ୍ଛିନ୍ନତାର ପରିଚାୟକ ।

ଆଦିମ ମାନବର ଭାଷାଗତ ଭ୍ରମ ଆମ ପକ୍ଷରେ ହାସ୍ୟାସ୍ପଦ ହୋଇପାରେ । କିନ୍ତୁ ଯେଉଁ ବଚନପଦ୍ଧତି ଉପରେ ଆମେ ଏତେ ତତ୍ପର ହୋଇ ଆସ୍ଥା ସ୍ଥାପନ କରୁ ଏବଂ

---

(୧) F. M. Cornford, *from religion to philosophy*, ପୃ ୪୫ ।

ଯାହା ସାହାଯ୍ୟରେ ଆମ ତତ୍ତ୍ୱବିଜ୍ଞାନୀମାନେ ସୃଷ୍ଟି ପ୍ରକୃତିର ରହସ୍ୟ ଉଦ୍‌ଘାଟିତ ହୁଏ ବୋଲି ଏବେ ସୁଦ୍ଧା ଜାହିର କରୁଛନ୍ତି; ତାହା ଯେ ସେହି ଆଦିମ ମାନବ ଦ୍ୱାରା ପ୍ରଯୋଜିତ ଏବଂ ତାହା ଯେ ସ୍ଥୂଳଭାବରେ ନ୍ୟୂନ କିମ୍ବା ଅକ୍ଳେଶ-ସଂଶୋଧନୀୟଭାବରେ ଅଧିକ ହୋଇ ନ ଥିବା ଆହୁରି ଅନ୍ୟାନ୍ୟ ଭ୍ରମ ପାଇଁ ଦାୟୀ ହୋଇପାରେ, ଏକଥା ଆମେ ବିସ୍ମୃତ ହୋଇପାରୁଁ କି ? ଗୁପ୍ତ ଅଥବା ଗୁହ୍ୟ ଶବ୍ଦସମ୍ଭାର ଏବଂ ସମସ୍ତ ପ୍ରକାର ନିଷିଦ୍ଧ ଶବ୍ଦଗୁଡ଼ିକର ପ୍ରଚଳନ କଥା ଏଠାରେ ମନେ ପକାଇ ଦେବା ଯଥେଷ୍ଟ ହେବ । ଜଣେ ରାଜକୁମାର ବିବାହିତ ହୋଇ ପାରିବା ପୂର୍ବରୁ ଅଥବା ଜଣେ ରାକ୍ଷସକୁ ବ୍ୟର୍ଥ-ମନୋରଥ କରିଦେବା ପୂର୍ବରୁ ଯେଉଁ ଗଳ୍ପରେ ଗୋଟିଏ ନାମ (ଟମ୍-ଟିଟ୍-ଟଟ୍, ରିର୍ଗାଲୁଷା, ରମ୍ପଲ-ଷ୍ଟିଲ୍‌ଟସ୍କିନ୍, ଫିନ୍ନୁର, ପ୍ରଭୃତି) ଆବିଷ୍କାର କରିବାକୁ ପଡ଼େ, ସେହି ଗଳ୍ପର ଉଦାହରଣମାନ ପ୍ରାୟ ପ୍ରତ୍ୟେକ ୟୁରୋପୀୟ ଦେଶ ଏବେ ସୁଦ୍ଧା ଯୋଗାଇ ଦେଇ-ପାରିବ (୧) । ଯାଦୁଚର୍ମବାଦର ଆଧୁନିକ ଅଭିବୃଦ୍ଧିର ପରିଣତି ହେଉଛି ନିର୍ଦ୍ଦେଶିତ ବିଷୟର ଏକ ପ୍ରାସଙ୍ଗିକ ବିବରଣୀ ପ୍ରଦାନ । ଏହା ସ୍ମୃତି ଓ କଳ୍ପନାରେ ଭାଷାର ଭୂମିକା ଉପରେ ଅତ୍ୟନ୍ତ ଗୁରୁତ୍ୱ ଆରୋପ କରେ । ଏଥିରୁ ସୁସ୍ପଷ୍ଟ ହୁଏ ଯେ ମନୋବୈଜ୍ଞାନିକ ବିଶ୍ଳେଷଣ ସମ୍ବନ୍ଧରେ ହେବା ପୂର୍ବରୁ ଶକ୍ତିସମ୍ପନ୍ନ ଶବ୍ଦମାନଙ୍କ ଏକ ବିଶିଷ୍ଟ ଜଗତର ଅର୍ଥାତ୍ ନାମଗୁଡ଼ିକ ଦ୍ରବ୍ୟସତ୍ତା ହୋଇଥିବାର ସାକ୍ଷ୍ୟ-ପ୍ରମାଣ ଅକାଟ୍ୟ ମନେ ହୋଇଥିବ ।

ପ୍ରାଚୀନ ମିଶର ଦେଶରେ ଅଷ୍ଟମ ବା ନାମ-ଆତ୍ମାର ବିବାଦନକୁ ବାଧା ଦେବା ପାଇଁ ଏବଂ ଦେବତାମାନଙ୍କ ନାମ ସହ ତାହାର ମଧ୍ୟ ନିରବଚ୍ଛିନ୍ନତା ଘଟାଇବା ପାଇଁ ପ୍ରତିଷେଧକ ବ୍ୟବସ୍ଥା କରି ଯାଇଥିଲା (୨) । ପିରାମିଡ୍-ମୂଳମନ୍ତ୍ରରେ ଖେର୍ଣ୍ଣ [Khern] ନାମକ ଏକ ଦେବତାଙ୍କ ଉଲ୍ଲେଖ ରହିଛି । ଖେର୍ଣ୍ଣର ଅର୍ଥ ଶବ୍ଦ । ଏହି ଶବ୍ଦ ଦେବତାଙ୍କ ମନୁଷ୍ୟର ବ୍ୟକ୍ତିତ୍ୱ ପରି ବ୍ୟକ୍ତିତ୍ୱ ଥିଲା ! ଏହାଙ୍କ ସଙ୍କଳ୍ପର ବ୍ୟାଖ୍ୟା ଥଥ୍ [Thoth]ଙ୍କ ଦ୍ୱାରା ଶବ୍ଦଗୁଡ଼ିକର ମାଧ୍ୟମରେ କରାଯାଇଥିବାରୁ ବିଶ୍ୱର ସୃଷ୍ଟି ହେଲା । ଏକଦା ମନୁଷ୍ୟ ସମାଜର ଅଧିକାଂଶ ବ୍ୟକ୍ତି ବିଶ୍ୱାସ କରୁଥିଲେ ଯେ ନାମ ହେଉଛି ମନୁଷ୍ୟର ସେହି ଏକତ୍ୱ-

(୧) J. A. Macculloch, *The childhood of Fiction*, ପୃ୨୭-୩୦ । ଏହି ପ୍ରସଙ୍ଗସଂପୃକ୍ତ ବିଷୟାବଳୀର ସଂଗ୍ରହ କରିବାରେ Macculloch ହେଉଛନ୍ତି ଶେଷ ବ୍ୟକ୍ତି । ସେ ଏବଂ ତାଙ୍କ ପୂର୍ବରୁ Mr. Clodd [ତାଙ୍କର *Tom-Tit-Tot* ପୁସ୍ତକରେ] ଏହି ସବୁ ବିଷୟ ବାଚନିକ ଇନ୍ଦ୍ରଜାଲର ସାଧାରଣ ଅଭ୍ୟାସ ସହିତ ସମ୍ବନ୍ଧାନ୍ୱିତ ବୋଲି ଦର୍ଶାଇଛନ୍ତି ।

(୨) Budge, The book of the Dead, ପୃ ୮୭-୯୦ ।

ବଧାସ୍ପଦ ଅଂଶ ଯାହା ଆସ୍ମା ସହିତ ସମାନ ଅଥବା ତାହା ମନୁଷ୍ୟର ଏପରି ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଯେ ସମଗ୍ର ମନୁଷ୍ୟ ପରିବର୍ତ୍ତେ ତାହା ବ୍ୟବହୃତ ହୋଇପାରେ, ଯେପରି କାରଖାନାରେ କାମ କରୁଥିବା ଲୋକଙ୍କୁ 'ହାତ' (Factory hands) ବୋଲି ମାଲିକ କହନ୍ତି । ବାଇବେଲ୍‌ର **ପ୍ରକାଶିତ ବାକ୍ୟ** ଅଧ୍ୟାୟରେ ଲେଖା ରହିଛି, "ସାତ ସହସ୍ର ଲୋକଙ୍କ ନାମ ଭୂମିକମ୍ପରେ ନିହତ ହେଲି ।" ପୁଣି ସାର୍ଦ୍ଦୀ-ମଣ୍ଡଳୀକୁ ପ୍ରେରିତ ଚିଠିରେ ଲେଖା ଅଛି, "ତୁମ ସାର୍ଦ୍ଦୀରେ ଏପରି କେତେକ ନାମ ଅଛି, ଯେଉଁମାନେ ସେମାନଙ୍କ ବସ୍ତ୍ର ମଳିନ କରି ନାହାନ୍ତି ।" ସମ୍ଭ୍ରାନ୍ତ ପଶୁର ମୁଣ୍ଡରେ "ଈଶ୍ୱର ନିନ୍ଦାର ନାମ" ରହିଛି । ଈଶ୍ୱର ନିନ୍ଦା ସଦର୍ଭ ହିଁ ଠିକ୍ ଏହିପରି ଏକ ଦୃଷ୍ଟାନ୍ତ, କାରଣ ଈଶ୍ୱର ନିଜ ନାମର ଅପବ୍ୟବହାରକରଣ ହେତୁରୁ ବ୍ୟକ୍ତିଗତଭାବେ ଅସନ୍ତୁଷ୍ଟ ହୁଅନ୍ତି ବୋଲି ମନେ କରିଯାଏ । ଅଷ୍ଟମ ହେନେରିଙ୍କ ରାଜତ୍ୱ କାଳରେ ସୁଦ୍ଧା ଜଣେ ପିଲାକୁ ପୋଡ଼ାଇ ମାରି ଦିଆଯାଇଥିଲା । ତାହାର ଦୋଷ ଥିଲା ଯେ ସେ ପବିତ୍ର ଧର୍ମାନୁଷ୍ଠାନ ସମ୍ବନ୍ଧରେ କେତେକ ଅସାର କଥା ଅକସ୍ମାତ୍ ଶୁଣିବାକୁ ପାଇ ଅଜ୍ଞାନତା-ବଶତଃ ତାହାର ପୁନରାବୃତ୍ତି କରିଥିଲା (୧)

**ବିଶ୍ୱରଚୟିତାମାନଙ୍କ ବିବରଣୀ** ପୁସ୍ତକରେ ମାନୋହକୁ ସଦାପ୍ରଭୁଙ୍କ ଦୂତ କହିଛନ୍ତି, "ମୋର ନାମ ଗୁପ୍ତ (ଅଥବା 'ଅକଥନୀୟ' ଅଧ୍ୟାପକ ଜି. ଏଫ୍. ମୁଅରଙ୍କ ଅନୁସାରେ) ବୋଲି ଜାଣି ସୁଦ୍ଧା ତୁମେ କାହିଁକି ତାହା ସମ୍ବନ୍ଧରେ ପଚାରୁଛ ?" ପ୍ରାୟ ସମସ୍ତ ଆଦିମ ସମ୍ପ୍ରଦାୟର ଲୋକମାନେ ନିଜ ନିଜ ନାମ ଉକ୍ତ ହେବା ବିଷୟକୁ ଅତି-ମାତ୍ରାରେ ନାପସନ୍ଦ କରନ୍ତି । ନିଉଜିଲଣ୍ଡର ଜଣେ ସର୍ଦ୍ଦାରର ନାମ ଡୁଆଇ (wai) ଥିଲା । ଡୁଆଇର **ଅର୍ଥ** ପାଣି । ତେଣୁ ପାଣିର ଗୋଟିଏ ନୂଆ ନାମ ଦେବାର ଆବଶ୍ୟକତା ପଡ଼ିଲା । ଏହି ଅଭିବୃତ୍ତିର ସାର୍ବଜନୀନତା ପ୍ରଦର୍ଶନ କରିବାକୁ ଫ୍ରେଜରଙ୍କ **ଗୋଲ୍‌ଡେନ୍ ବାଓ** ପୁସ୍ତକରେ ଶାବ୍ଦିକ-ଅକରଣୀୟତାର ଅସଂଖ୍ୟ ଦୃଷ୍ଟାନ୍ତ ସଂଗୃହୀତ ହୋଇଛି । କେବଳ ସର୍ଦ୍ଦାର ନୁହନ୍ତି, ଦେବତା ଓ ପୁରୋହିତମାନେ ମଧ୍ୟ ଏହି ଶବ୍ଦାଡ଼ମ୍ବରର ଶିକାର ହୋଇଥିଲେ । କେତେକ ପୁରୋହିତଙ୍କ ଦେହରେ ଦେବତା ବାସ କରନ୍ତି ବୋଲି ମନେ କରାଯାଉଥିଲା । (ଏହି ବିଶ୍ୱାସ ହେତୁରୁ କେଣ୍ଟନ୍-ଅଧିବାସୀମାନେ ଏହି ଧରଣର ଅନୁଗୃହୀତ ବ୍ୟକ୍ତିବିଶେଷଙ୍କ ପ୍ରତି 'ଦେବାଧାର' ପଦ ପ୍ରୟୋଗ କରିବାକୁ ଅନୁପ୍ରାଣିତ ହୋଇଥିଲେ ।) ଓସିରିସ୍‌ଙ୍କ ନାମ କହିଦେବା କମନ୍ତେ ହେରୋଡୋଟସ୍ (୨ୟ, ୧୩୨, ୧୭୧) କିପରି ମନାକରି ଦେଇଥିଲେ ତାହା ଆମେ ଜାଣୁଁ । ଆଲ୍ଲାଙ୍କ ସତ୍ୟ ଓ ମହାନ୍

---

(୧) Pike, *History of crime in England*, ୨ୟ ଖଣ୍ଡ, ପୃ ୪୬ ।

ନାମ ହେଉଛି ଏକ ଗୁପ୍ତନାମ (୧) । ସେହିପରି ବ୍ରାହ୍ମଣ୍ୟ ଧର୍ମର (୨) ଦେବତାମାନଙ୍କ ନାମ ଏବଂ କନଫୁସିଅସ୍‌ଙ୍କ (୩) ପ୍ରକୃତ ନାମ ଗୁପ୍ତ ରଖାଯାଇଛି । ଧର୍ମପରାୟଣ ଇହୁଦୀମାନେ ଯାହ୍ୱେ (Jahweh) ନାମ ସମ୍ପୂର୍ଣ୍ଣରୂପେ ଅନୁକ୍ତ ରଖିଥିଲେ ବୋଲି ମନେହୁଏ (୪) । ଆମେ ଏହା ସହିତ 'ମଙ୍ଗଳମୟଙ୍କୁ ଧନ୍ୟବାଦ' ('Thank Goodness'), 'ଈଶ୍ୱରଙ୍କ ରାଣ' (Morbleu)—ଏବଂ କଥାକୁ ଫ୍ରେଞ୍ଚ ଭାଷାରେ କହିବାର ଅଧିକାଂଶ କ୍ଷେତ୍ରର ତୁଳନା କରିପାରୁ । ହିନ୍ଦୁମାନଙ୍କ ମଧ୍ୟରେ ଏକ ପ୍ରଥା ପ୍ରଚଳିତ ଅଛି : ଯଦି ଗୋଟିଏ ଶିଶୁ ମରିଯାଏ, ତେବେ ତାହାର ପରବର୍ତ୍ତୀ ଶିଶୁକୁ ଗୋଟିଏ ଲଜ୍ଜାକର ନାମରେ ନାମିତ କରାଯାଏ । ଗୋଟିଏ ପୁରୁଷ ଶିଶୁକୁ କୁରିଆ (Kuriya) ବା ଗୋବରିଆ ବୋଲି ଡକାଯାଏ । ଯମ ଅବଶ୍ୟ ଲୋକଙ୍କୁ ସେମାନଙ୍କ ନାଁ ଅନୁସାରେ ଜାଣେ, ସୁତରାଂ ଅଯୋଗ୍ୟ ଲୋକ ତାହାଙ୍କର ଆଖିରେ ପଡ଼ିବେ ନାହିଁ । ସେହିପରି ପରମେଶ୍ୱର ପ୍ରତ୍ୟେକ ଲୋକକୁ ତାହାର ନାମଦ୍ୱାରା ଜାଣନ୍ତି—"ଏବଂ ସଦାପ୍ରଭୁ ମୋଶାଙ୍କୁ କହିଲେ, 'ତୁମ୍ଭେ ଆମ୍ଭ ଦୃଷ୍ଟିରେ ଅନୁଗ୍ରହର ପାତ୍ର ହୋଇଅଛ ଏବଂ ଆମ୍ଭେ ନାମଦ୍ୱାରା ତୁମ୍ଭଙ୍କୁ ଜାଣୁଁ ।" ପ୍ରତ୍ୟେକ ପ୍ରାଚୀନ ମିଶରୀୟ ବ୍ୟକ୍ତିର ଦୁଇଟି ନାମ ଥିଲା—ଗୋଟିଏ ନାମ ପୃଥିବୀ ପାଇଁ ଉଦ୍ଦିଷ୍ଟ ଏବଂ ଅନ୍ୟ ନାମରେ ସେ ଦୈବୀଶକ୍ତିଙ୍କଠାରେ ପରିଚିତ । ଆବ୍ରାଇନିଆର ଖ୍ରୀଷ୍ଟିଆନମାନଙ୍କ ଜୀବନ ସମୟରେ ଦିଆଯାଉଥିବା ଦ୍ୱିତୀୟ ନାମ କଦାପି ପ୍ରକାଶ କରାଯାଏ ନାହିଁ । ରୋମର ରକ୍ଷକ-ଦେବତାଙ୍କ ଏକ ଅଜ୍ଞାପନୀୟ ନାମ ଥିଲା । ପ୍ରାଚୀନ ଗ୍ରୀସର କେତେକ ଅଞ୍ଚଳରେ ଦେବତାମାନଙ୍କ ପବିତ୍ର ନାମଗୁଡ଼ିକ କଳୁଷିତ ହୋଇଯିବାର ସମ୍ଭାବନାକୁ ଲୋପ କରିବା ଉଦ୍ଦେଶ୍ୟରେ ସେଗୁଡ଼ିକୁ ଶିଳାଫଳକରେ ଖୋଦାଇ କରି ସମୁଦ୍ରରେ ବୁଡ଼ାଇ ଦିଆଯାଏ ।

ଶିଶୁମାନେ ନିଜ ନାମ ଗୋପନ ରଖିବାକୁ ପ୍ରାୟଶଃ ଏହିପରି ବ୍ୟଗ୍ର ଥାଆନ୍ତି । ଠିକ୍ ଯେପରି ଶିଶୁମାନେ କୌଣସି ବସ୍ତୁର ନାମ କ'ଣ ଜାଣିବାକୁ ସର୍ବଦା ଦାବୀ କରନ୍ତି (ବସ୍ତୁଟିର ନାମ ରହିଥିଲେ କଦାପି ଏହା କହଯାଏ ନାହିଁ) ଏବଂ ନାମଟିକୁ ଏକ ମୂଲ୍ୟବାନ

---

(୧) Sell, *The Faith of Islam* ପୃ ୧୮୫ ।

(୨) Hopkins, *Religions of India* ପୃ ୧୮୫ ।

(୩) Friend, *Folk Lore Record* ୪ର୍ଥ ପୃ ୭୭ ।

(୪) Herzog-Plitt, Real-Encyclopadie ୬ଷ୍ଠ ପୃ ୫୦୧ । ନେଷ୍ଟ୍ର ଅକଥନୀୟ ନାମ ପରିବର୍ତ୍ତେ ଆଦୋନାଇ (Adonai) ରହିଛି । ଏଥିରେ ସ୍ୱରବର୍ଣ୍ଣ ପରିବର୍ତ୍ତନ କରି ଆମେ ଜେହୋବା (Jehovah) ନାମ ପାଇଛୁଁ ।

ଅର୍ଜିତ ଜ୍ଞାନ ରୂପେ ବିବେଚନା କରନ୍ତି, ଯେପରି ପ୍ରତ୍ୟେକ ତାରକାର ଗୋଟିଏ ଗୋଟିଏ ନାମ ରହିଛି ବୋଲି ଆମେ ଧାରଣା କରୁଁ । "ସେ ତାରକାଗୁଡ଼ିକର ସଂଖ୍ୟା ଗଣିପାରନ୍ତି ଏବଂ ସେମାନଙ୍କ ନାମଦ୍ୱାରା ସେ ସମସ୍ତଙ୍କୁ ଡାକନ୍ତି ।" ଏଠାରେ ଆମେ "ଦୈବଙ୍କୁ ଦୈବ କୁହାଯିବା ଯଥାର୍ଥ"—ଏହି କୌତୁକିଆ ପ୍ରବଚନର ଉଲ୍ଲେଖ କରିପାରୁଁ; ପ୍ରତୀକବାଦ ବିଷୟକ ପ୍ରତ୍ୟେକ ଗ୍ରନ୍ଥର ମୁଖପତ୍ରରେ ଏହାର ଉଲ୍ଲେଖ କରିଯାଇପାରେ ।

ଏହିପ୍ରକାର ବାଚନିକ ଅନ୍ଧବିଶ୍ୱାସର ଅନିଷ୍ଟକାରିତାରୁ ଯେ କୌଣସି ପୂର୍ବବର୍ତ୍ତୀ ଯୁଗ ଅପେକ୍ଷା ବିଂଶ ଶତାବ୍ଦୀ କେତେକ ଦୃଷ୍ଟିରୁ ଅଧିକ ସାଙ୍ଘାତିକ ଭାବେ ରୋଗାକ୍ରାନ୍ତ । କିନ୍ତୁ ଭାବ ଆଦାନପ୍ରଦାନ-ପଦ୍ଧତିମାନଙ୍କର ଉନ୍ନତବିଧାନ ତଥା ଅନେକ ବିଶିଷ୍ଟ ଧରଣର ପ୍ରତୀକପଦ୍ଧତିର ଉଦ୍ଭାବନ ହେତୁ ଏହି ରୋଗର ରୂପ ଯଥେଷ୍ଟ ପରିମାଣରେ ପରିବର୍ତ୍ତିତ ହୋଇ ଯାଇଛି । ଧର୍ମର ଅଭ୍ରାନ୍ତ-ସମର୍ଥକ ତଥ୍ୟାବଳୀ ଏପର୍ଯ୍ୟନ୍ତ ଯେ କେବଳ ଅସାଧାରଣଭାବେ ତିଷ୍ଠି ରହିଛି ତାହା ନୁହେଁ, ଏହା ପୂର୍ବାପେକ୍ଷା ଆହୁରି ପ୍ରତାରଣାମୂଳକ ଆକାର ଧାରଣ କରିଛି । ଏହାକୁ ସୁବିସ୍ତୃତ ରୂପେ ପରିବ୍ୟାପ୍ତ କରୁଥିବା ପ୍ରଭାବଗୁଡ଼ିକ ଯେଉଁ ଜଟିଳତାର ସୃଷ୍ଟି କରୁଛି, ତାହା ଆମ ହାତରେ ଥିବା ଆଜିକାଲି-କାର ପ୍ରତୀକାତ୍ମକ ଉପକରଣ ପକ୍ଷରେ ଦୁର୍ଭେଦ୍ୟ ହୋଇ ରହିଛି । ସାମ୍ପ୍ରତିକ ଏବଂ ଶିକ୍ଷିତ ବ୍ୟକ୍ତିମାନେ ଏକ ବିପୁଳ ଅର୍ଦ୍ଧପାରିଭାଷିକ ଶବ୍ଦସମ୍ଭାରର ଅଧିକାରୀ ହୋଇଛନ୍ତି, କିନ୍ତୁ ଏଗୁଡ଼ିକର ଯଥାଯଥ ପ୍ରୟୋଗ ସମ୍ବନ୍ଧରେ ଅନୁସନ୍ଧାନ କରିବାକୁ ସେମାନଙ୍କ ସୁଯୋଗ ବା ଆଗ୍ରହର ଅଭାବ ରହିଛି । ଗଣିତର ନିକଟବର୍ତ୍ତୀ କ୍ଷେତ୍ରଗୁଡ଼ିକରେ ବିଶ୍ଳେଷଣାତ୍ମକ ଚିନ୍ତା-ନିପୁଣ ବ୍ୟକ୍ତିମାନେ ସାଫଲ୍ୟମଣ୍ଡିତ ହୋଇଛନ୍ତି; କିନ୍ତୁ ଏହି କ୍ଷେତ୍ରରେ ପ୍ରତୀକ ଓ ବସ୍ତୁର ବିଚ୍ଛେଦ ସର୍ବାପେକ୍ଷା ଅଧିକ ସୁସ୍ପଷ୍ଟ ଏବଂ ବସ୍ତୁକରଣର ପ୍ରବୃତ୍ତି ସର୍ବାପେକ୍ଷା ଅଧିକ ଦୁର୍ଦ୍ଦମନୀୟ । ସ୍ଥୂଳ ଧରଣର ପ୍ରତୀକ ବ୍ୟବହାର ପ୍ରଥା (R ନସ୍ୟ)ର ଜ୍ଞାନ ବିସ୍ତୃତିଲାଭ କରୁଛି ଏବଂ ଯୁଗୋପଯୋଗୀ ବୈଜ୍ଞାନିକ ଚିନ୍ତା ଓ ସର୍ବସାଧାରଣଙ୍କ ଚିନ୍ତା ମଧ୍ୟରେ ଥିବା ବ୍ୟବଧାନ ବୃଦ୍ଧି ପାଉଛି । ପରିଶେଷରେ, ରାଜନୈତିକ ଓ ବ୍ୟାବସାୟିକ ଉଦ୍ଦେଶ୍ୟରେ ଛାପାଖାନାକୁ ବ୍ୟବହାର କରି କେତେକ ସୁପରିଚିତ ପ୍ରଶ୍ନୋତ୍ତରର ବାରମ୍ବାର ପୁନରାବୃତ୍ତି ତଥା ପରିପ୍ରଶ୍ନର ଦ୍ୱାରା ଫାଇଦା ଉଠାଯାଉଛି ।

ଆଦିମ ଭାଷାତ୍ମକ ଅଭିବୃତ୍ତି କେବଳ ଯେ ଧର୍ମ ଜଗତର ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ନିରବଚ୍ଛିନ୍ନଭାବେ ତିଷ୍ଠି ରହିଛି ଏକଥା ନୁହେଁ, ଏହା ଗଭୀର ଚିନ୍ତାଶୀଳ ବ୍ୟକ୍ତିର ନିବନ୍ଧରେ ମଧ୍ୟ ତଦ୍ରୂପ ଭାବେ ଜୀବନ୍ତ । ଆଧୁନିକ ଚିନ୍ତାଧାରାର ବାସ୍ତବିକ ଏହା ଏକ ସର୍ବାଧିକ ବିଚିତ୍ର ଲକ୍ଷଣ । ଊନବିଂଶ ଶତାବ୍ଦୀର ଦର୍ଶନରେ ଏକ ପ୍ରତ୍ୟୟବାଦୀ ପରମ୍ପରା ପ୍ରାଧାନ୍ୟ ଲାଭ କରିଥିଲା । ସାକ୍ଷାତ୍ ଗବେଷଣା ପରିବର୍ତ୍ତେ ଏକ ଅଦ୍ଭୁତ ପ୍ରକାର ବିଶାଳ ପ୍ରତୀକାତ୍ମକ ଉପକରଣର ତର୍ଦ୍ଧ୍ୱରେ ସୁବିସ୍ତାରିତ ଉପଯୋଗ କରାଗଲା (ଏଠାରେ ହେଗେଲୀୟ

ବୃତ୍ତାନ୍ୟାସ୍ର ଏକ ଚିତ୍ତାକର୍ଷକ ଦୃଷ୍ଟାନ୍ତ ଯୋଗାଉଅଛୁ) ଏବଂ ଏହା ହିଁ ଅବଧାନକେନ୍ଦ୍ରର ସ୍ଥାନ ଅଧିକାର କରି ବସିଲା । ଏକ ପ୍ଲେଟୋବାଦକୁ ଭିତ୍ତି କରି ଗାଣିତିକ ରହସ୍ୟ-ଗୁନ୍ଥିକର ସୂକ୍ଷ୍ମ ବିଶ୍ଳେଷଣ ସହିତ ବିଂଶ ଶତାବ୍ଦୀର ଆରମ୍ଭ ହେଲା । ଏହି ବିଶ୍ଳେଷଣ ୧୯୨୧ର ସମୀକ୍ଷାତ୍ମକ ବାସ୍ତବବାଦର କେତେକ ଦାର୍ଶନିକଙ୍କ ବିଶ୍ଳେଷଣ (୧) ଠାରୁ ମଧ୍ୟ ଆହୁରି ଦୃଷ୍ଟିଆକର୍ଷକ । ନିମ୍ନଲିଖିତ ଉଦ୍ଧୃତି ଏହାର ଏକ ଦୃଷ୍ଟାନ୍ତ—

"ଯାହା ଚିନ୍ତାର ଏକ ବିଷୟବସ୍ତୁ ହୋଇପାରେ ଅଥବା କୌଣସି ସତ୍ୟ ବା ମିଥ୍ୟା ପ୍ରତିଜ୍ଞପ୍ତିରେ ରହିପାରେ ଅଥବା **ଏକ** ବୋଲି ଗଣିତ ହୋଇପାରେ, ତାହାକୁ ମୁଁ **ପଦ** ବୋଲି କହେଁ ।......ଜଣେ ମନୁଷ୍ୟ, ଗୋଟିଏ ମୁହୂର୍ତ୍ତ, ଗୋଟିଏ ସଂଖ୍ୟା, ଗୋଟିଏ ଶ୍ରେଣୀ, ଗୋଟିଏ ସମ୍ବନ୍ଧ, ଗୋଟିଏ ଅଳୀକ କଳ୍ପନା କିମ୍ବା ଅନ୍ୟ କିଛୁ ଯାହାକୁ ଉଲ୍ଲେଖ କରାଯାଇ ପାରେ, ତାହା ନିଶ୍ଚିତରୂପେ ଗୋଟିଏ ପଦ ଏବଂ ଏହିପରି ଏକ ଜିନିଷ ପଦ ନୁହେଁ ବୋଲି କହିବା ନିଶ୍ଚିତରୂପେ ସର୍ବଦା ମିଥ୍ୟା । ସତ୍ତ୍ୱାଠାରେ ବା ସତ୍ତ୍ୱାତ୍ମକ ବିଶେଷ୍ୟରେ ସାଧାରଣତଃ ଯେଉଁସବୁ ଗୁଣର ଆରୋପ କରାଯାଏ, ପଦ ସେସବୁ ଗୁଣର ଅଧିକାରୀ ।......ପ୍ରତ୍ୟେକ ପଦ ଅପରିବର୍ତ୍ତନଶୀଳ ଓ ଅବିନାଶ୍ୟ । ଗୋଟିଏ ପଦ ଯାହା, ତାହା ହିଁ; କୌଣସି ପରିବର୍ତ୍ତନ ତହିଁରେ କଳ୍ପନା କରାଯାଇ-ନପାରେ, ଯାହା ତାହାର ତାଦାତ୍ମ୍ୟକୁ ନଷ୍ଟକରି ନଦିଏ ଏବଂ ତାହାକୁ ଅନ୍ୟଏକ ପଦ କରି ନପକାଏ ।......ପଦମାନଙ୍କ ମଧ୍ୟରେ ଦୁଇଟି ପ୍ରକାର ଭେଦ ସମ୍ଭବପର । ମୁଁ ସେ ଦୁଇଟିକୁ ଯଥାକ୍ରମେ **ବସ୍ତୁ** ଏବଂ **ସଂପ୍ରତ୍ୟୟ** ବୋଲି କହିବି (୨) ।"

ଏହି ଅଭୂତ ବାଚନିକ ଅନ୍ତର୍ଭେଦୀ ଶକ୍ତି ସାହାଯ୍ୟରେ ସୁସ୍ପଷ୍ଟରୂପେ ପରିଜ୍ଞାତ ବହୁ ସଫଳତା ମିଳିଛି ବୋଲି ଦାବୀ କରାଯାଇଛି । ଉଦାହରଣ ସ୍ୱରୂପ ଯେଉଁ ମତବାଦ "ଯଥାର୍ଥ ସତ୍ତ୍ୱାତ୍ମକ ବିଶେଷ୍ୟମାନଙ୍କଠାରୁ କୌଣସି ପ୍ରକାରେ ନ୍ୟୂନସତ୍ତ୍ୱମୂଳକ, ନ୍ୟୂନ ଆତ୍ମବର୍ତ୍ତିତାମୂଳକ, ନ୍ୟୂନ ତାଦାତ୍ମ୍ୟମୂଳକ ବିଶେଷଣ ବା ଗୁଣ ବା ଆଦର୍ଶ ବସ୍ତୁବିଷୟକ, ତାହା ସମ୍ପୂର୍ଣ୍ଣରୂପେ ଭ୍ରାନ୍ତ ବୋଲି ମନେ ହୋଇଛି ।" (୩) କେତେକ ପୂର୍ବର୍ତ୍ତୀଙ୍କ ଦାର୍ଶନିକ ଚିନ୍ତାଧାରାକୁ ପରିବର୍ଜନ କରାଯାଇଛି, କାରଣ "ଅନେକ ପଦର ସ୍ୱୀକାର (ଜଣେ ମନୁଷ୍ୟ ଓ ଗୋଟିଏ କାଳ୍ପନିକ ବସ୍ତୁର ଉଭୟର ସହିତ) ଏକତ୍ୱବାଦର ବିନାଶ କରିଛି ।" (୪)

---

(୧) ତୁଳନାକର, ୮ମ ପରିଚ୍ଛେଦ, ବିଶେଷତଃ ପଦଟୀକା—୨୭୭ ପୃଷ୍ଠା ।

(୨) B. Russell, *The Principles of Mathematics* (୧୯୦୩), ୧ମ ଖଣ୍ଡ, ପୃ ୪୩-୪୪ ।

(୩) ତତ୍ରୈବ ପୃ ୪୭

(୪) ତତ୍ରୈବ ପୃ ୪୪

ଆହୁରି ମଧ୍ୟ ଏକ ଆଧୁନିକ ପ୍ଲେଟୋବାଦ ପୁନର୍ଗଠିତ ହୋଇଛି, ଯଦ୍ଦ୍ୱାରା 'ପଦମାନ'ଙ୍କ ଦ୍ୱାରା 'ଦ୍ରବ୍ୟ' କେତେକ 'ବସ୍ତୁ'ର ଏକ ଜଗତ ଅର୍ଥାତ୍ ସାମାନ୍ୟମାନଙ୍କ ଏକ ଜଗତ ପୁନଃ ପ୍ରତିଷ୍ଠିତ ହୋଇଛି । ଏଠାରେ ମୁକ୍ତ ଏକ ବାସସ୍ଥାନ ଗଢ଼ି ତୋଳାଇଛି; "ଅଥବା ବରଂ ଏହା ହିଁ କହିବା ଠିକ୍ ହେବ ଯେ [ମୁକ୍ତ] ଏପରି ଏକ ଶାଶ୍ୱତ ବାସସ୍ଥାନ ଖୋଜି ପାଇଛି, ଯେଉଁଠାରେ ଆମର ଆଦର୍ଶଗୁଡ଼ିକ ସମ୍ପୂର୍ଣ୍ଣରୂପେ ଚରିତାର୍ଥ ଏବଂ ଆମର ସର୍ବୋତ୍ତମ ଆଶା ବ୍ୟର୍ଥ ନୁହେଁ । ମୁକ୍ତ ଖୋଜି ପାଇଥିବା ଏହି ଜଗତରେ ସମ୍ଭବପର ନିଜର ଅକ୍ଷୁଣ୍ଣ ସ୍ୱାଧୀନତାକୁ ଆମେ ଯେତେବେଳେ ସମ୍ପୂର୍ଣ୍ଣରୂପେ ବୁଝିପାରିବା, କେବଳ ସେତେବେଳେ ହିଁ ଏହାର ସୌନ୍ଦର୍ଯ୍ୟର ନିଗୂଢ଼ ଗୁରୁତ୍ୱ ବିଷୟ ଆମେ ହୃଦୟଙ୍ଗମ କରିପାରିବା ।" (୧) ଏହାର କାରଣ ହେଉଛି ଏଠାରେ ପ୍ରତ୍ୟେକ ଜିନିଷ "ଅପରିବର୍ତ୍ତନୀୟ, ନିର୍ଭୁଲ, ଦୃଢ଼ ଏବଂ ଗାଣିତିକ, ତାର୍କିକ, ତାତ୍ତ୍ୱିକ ସ୍ଥବଧାରର ପ୍ରକୃତିକମାନଙ୍କ ତଥା ପୂର୍ଣ୍ଣତାକୁ ଜୀବନଠାରୁ ଅଧିକ ମୂଲ୍ୟ ଦେଉଥିବା ସମସ୍ତ ବ୍ୟକ୍ତିଙ୍କ ନିମନ୍ତେ ଆନନ୍ଦଦାୟକ ।" "ସମସ୍ତ ଚିନ୍ତା ଓ ଅନୁଭବର ଆଧାର" ହୋଇଥିଲେ ହେଁ "କ୍ଷଣସ୍ଥାୟୀ, ଅସ୍ପଷ୍ଟ, ତୀକ୍ଷ୍ଣସୀମାବର୍ଜିତ, ସୁସ୍ପଷ୍ଟ ଯୋଜନା ବା ସଂଗଠନ-ରହିତ ସ୍ଥିତିଶୀଳ ଜଗତ ଅପେକ୍ଷା ଉପର୍ଯ୍ୟୁକ୍ତ ଜଗତ କର୍ମପ୍ରବଣ ବ୍ୟକ୍ତିଙ୍କ ପକ୍ଷରେ ଅଧିକ କାମ୍ୟ ବୋଲି ସୁପାରିଶ କରାଯାଇଥିଲା । ଉଭୟ ଜଗତ ସମଭାବରେ ରହିଛି, ସମଭାବରେ ଧ୍ୟାନଯୋଗ୍ୟ । "ଆମର ଚରିତ୍ରକୃତ ଅନୁଯାୟୀ ଆମେ ଏକ ବା ଅପରଟିର ବିଚାର କରିବାକୁ ଅଧିକ ପସନ୍ଦ କରିବା (୨) ।"

ପ୍ରତୀକବାଦର ବୈଜ୍ଞାନିକ ଅଧ୍ୟୟନ ନିମନ୍ତେ ପ୍ଲେଟୋଙ୍କ ଦ୍ୱାରା କରାଯାଇଥିବା ପ୍ରୟାସ ଆଧୁନିକ ପ୍ଲେଟୋବାଦୀଙ୍କ ଦ୍ୱାରା ଆଦୌ ଅନୁସୃତ ହୁଏନାହିଁ କହିଲେ ଚଳେ । ଏହା ଏକ କ୍ଷୋଭକର ବିଷୟ ! କିନ୍ତୁ ଲକ୍ଷ୍ୟ କରିବା କୌତୂହଳଜନକ ହେବ ଯେ ଗ୍ରୀକ୍-ଚିନ୍ତାଧାରା ପ୍ରତି ସେମାନଙ୍କ ମତବାଦର ସାମଞ୍ଜସ୍ୟ ସେମାନେ ସ୍ୱୀକାର କରନ୍ତି । କାରଣ

(୧) *Mysticism and Logic* (୧୯୧୮) ପୃ ୬୧

(୨) B. Russell, *The Problems of Philosophy*, Home University Library, ପୃ ୧୫୬ । ସମ୍ପୂର୍ଣ୍ଣରୂପେ ଭାଷାତ୍ମକ ଭିତ୍ତି ଉପରେ ପ୍ରତିଷ୍ଠିତ ବୋଲି ଜଗତର ଯେଉଁ ଅଂଶକୁ ଏବେ ଶ୍ରୀ ରସେଲ୍ ସ୍ୱୀକାର କରିବେ, ତାହା ତାଙ୍କର ୧୯୨୧ର *Analysis of Mind*ରେ ପରିକଳ୍ପିତ ବିଶ୍ୱ ପ୍ରତି ତଥାପି ସଲଗ୍ନୀକୃତ ହୋଇ ରହିଛି । ଏହା ପରବର୍ତ୍ତୀ ପଦଟୀକା—ପରିଶିଷ୍ଟ ସୂଚିତ ପୃଷ୍ଠାରେ ରହିଛି । ଏଥିରେ ଯେଉଁ ଅସଙ୍ଗତିଗୁଡ଼ିକ ରହିଥିବାର ଧରିପଡ଼ୁଛି ବୋଲି ତାଙ୍କର ସମାଲୋଚକମାନେ ଦାବୀ କରନ୍ତି, ତାହା ସେଠାରେ ବୁଝା ପଡ଼ିବ ।

ଉଭୟ ସେହି ଏକ ଗୂଢ଼ାତ୍ମକ ଅଭ୍ୟାସରୁ ଉତ୍ପନ୍ନ । ଆଧୁନିକ ତାର୍କିକର ପଦ୍ଧତି ତାହାର ଗଠନର ମୌଳିକ ଭିତ୍ତିଭୂମିଗୁଡ଼ିକୁ ପ୍ରଚ୍ଛନ୍ନ ରଖିବା-ଅଭିମୁଖୀ । କିନ୍ତୁ ଗ୍ରୀକ୍ ଦର୍ଶନରେ ଏହି ଭିତ୍ତିଭୂମିଗୁଡ଼ିକ ସୁସ୍ପଷ୍ଟରୂପେ ପରିପ୍ରକାଶିତ । ପ୍ରାଚୀନ ଲେଖକଙ୍କ ରଚନା ଆଦିମ ଶାବ୍ଦିକ ଇନ୍ଦ୍ରଜାଲର ମୃତଚିହ୍ନରେ ଭରପୂର । ବସ୍ତୁଗୁଡ଼ିକର ବର୍ଗୀକରଣ ହେଉଛି ସେଗୁଡ଼ିକୁ ନାମିତ କରିବା ଏବଂ ଐନ୍ଦ୍ରଜାଲିକତା ହେଉଛି ଗୋଟିଏ ବସ୍ତୁ ବା ବସ୍ତୁଗୋଷ୍ଠୀର ନାମକୁ ତାହାର ଆତ୍ମା ବୋଲି ବିବେଚନା କରିବା । ସେଗୁଡ଼ିକର ନାମ ଜାଣିବା ହେଉଛି ସେଗୁଡ଼ିକର ଆତ୍ମା ଉପରେ ପ୍ରଭୁତ୍ୱର ଅଧିକାରୀ ହେବା । ମାନବୀୟ ବା ଅତି-ମାନବୀୟ କୌଣସି ବସ୍ତୁ ଶବ୍ଦମାନଙ୍କ ପ୍ରଭାବବହିର୍ଭୂତ ନୁହେଁ । ଭାଷା ହିଁ ସତ୍ତାର ସାମଗ୍ରିକ ଗଠନର ଏକ ପ୍ରତିରୂପ, ଏକ ଛାୟା-ଆତ୍ମା । ଲୋଗୋସ ମତବାଦ [doctrine of the *Logos*]କୁ ବିଭିନ୍ନ ଭାବେ କଳ୍ପନା କରାଯାଇଛି, ଯଥା—ପରମ ତତ୍ତ୍ୱ, ଦୈବୀ ଆତ୍ମିକ ସତ୍ତା ସମସ୍ତ ବସ୍ତୁର 'ଅର୍ଥ' ବା ହେତୁ ଏବଂ ନାମର 'ଅର୍ଥ' ବା ସତ୍ତା [୧] ।

ପ୍ରାଚୀନ ଦାର୍ଶନିକମାନେ ଯେଉଁ ଧର୍ମସମ୍ବନ୍ଧୀୟ ବିଷୟାବଳୀକୁ ନିଜ ନିଜ ଦର୍ଶନ-ପଦ୍ଧତିର ଅନ୍ତର୍ଭୁକ୍ତ କରି ନେଇଥିଲେ, ତାହାକୁ ଉତ୍ତରାଧିକାରୀ ସୂତ୍ରରେ ଗ୍ରୀକ୍‌ମାନେ ଲାଭ କରି ସ୍ପଷ୍ଟତଃ ତାହାରି ସାହାଯ୍ୟରେ ସତ୍ତା ଅଧିଷ୍ଠିତ ଏକ ପରଜଗତ ରହିଛି ବୋଲି ଗ୍ରହଣ କରି ନେଇଥିଲେ । ବସ୍ତୁପ୍ରକୃତି ଅର୍ଥାତ୍ ସେମାନଙ୍କ **ପଦାର୍ଥବିଜ୍ଞାନର** ବିଷୟବସ୍ତୁ ଅତୀନ୍ଦ୍ରିୟ ବୋଲି ବିବେଚିତ ହୋଇଥିଲା । ଉଦାହରଣ ସ୍ୱରୂପ, ଥେଲିଜଙ୍କ ମତରେ, ଆତ୍ମା ଓ ଭୂତପ୍ରେତ ଯେଉଁ ପ୍ରକାର ସୂକ୍ଷ୍ମ ପଦାର୍ଥ ବୋଲି ସର୍ବଦା ଗୃହୀତ ହୋଇ ଆସିଛି, ପଦାର୍ଥ ବିଜ୍ଞାନ ସେହିପ୍ରକାର ସୂକ୍ଷ୍ମ ଅତୀନ୍ଦ୍ରିୟ ପଦାର୍ଥ ସହିତ ସମ୍ପୃକ୍ତ । ଶରୀରଠାରୁ ଏହାର ଏକମାତ୍ର ପାର୍ଥକ୍ୟ ହେଉଛି ଏହା ଅନୁପଲବ୍ଧ ଓ ଅଦୃଶ୍ୟ । ଏଥିରୁ ଜଣାପଡ଼ୁଛି ଯେ ପ୍ରଥମରେ କାଳ୍ପନିକ ବସ୍ତୁ-ଅଧିଷ୍ଠିତ ଏହି ସତ୍ତାଜଗତରେ ସେହି ସର୍ବନିମ୍ନ ପରିମାଣର ଭୌତିକତା ରହିଥିଲା, ଯାହା ବିନା କିଛି କଳ୍ପନୀୟ ନୁହେଁ । କିନ୍ତୁ ଯେତେବେଳେ ତାର୍କିକତାର ଅଭିବୃଦ୍ଧି ଘଟିଲା ଏବଂ ଶବ୍ଦର ପ୍ରଭାବ ଅଧିକ ଦୃଷ୍ଟି ଆକର୍ଷଣ କଲା, ଏହି ଭୌତିକତା କ୍ରମଶଃ ଲୋପ ପାଇଗଲା । **ପିଥାଗୋରିଅସ୍**, ୬୦୦ ଏବଂ **ପେତୋ** ୮୦ ବେଳକୁ ପ୍ଲେଟୋ ବିଶୁଦ୍ଧ ପ୍ରତ୍ୟୟର ଏକ ଜଗତ ରଚନା କରି ପାରିଥିଲେ । ଏହା ଶୁଦ୍ଧ, ସ୍ୱର୍ଗୀୟ, ଅମର, ବୋଧଗମ୍ୟ, ଏକାକାର, ଅଭିନ୍ନୀୟ, ଅପରିବର୍ତ୍ତନୀୟ ନାମ-ଆତ୍ମା-ଗୁଡ଼ିକର ନିବାସ ସ୍ଥଳୀ । ଏହି ଜଗତ ମଧ୍ୟ **ପଦାର୍ଥବିଜ୍ଞାନର** ଆଲୋଚ୍ୟ ବସ୍ତୁ ବୋଲି ବର୍ଣ୍ଣିତ ହେଉଥିଲା ।

---

[୧] Cornford, କଥିତ ଗ୍ରନ୍ଥ, *From Religion to Philosophy*, ପୃ ୧୪୧, ୮୭, ୨୪୮ ।

ଏହି ବିବର୍ତ୍ତନ ମୁଖ୍ୟତଃ ପାଇଥାଗୋରୀୟବାଦର ପ୍ରଭାବ ହେତୁରୁ ଘଟିଥିଲା ବୋଲି ପ୍ରଦର୍ଶିତ ହୋଇଛି ଏବଂ ଏହାର ମଧ୍ୟବର୍ତ୍ତୀ ସୋପାନଗୁଡ଼ିକ ଦର୍ଶନ-ଇତିହାସ ଗ୍ରନ୍ଥମାନଙ୍କରେ ଏକ ସ୍ୱତନ୍ତ୍ର ଅନୁଚ୍ଛେଦର ବିଷୟ ହୋଇ ରହିଛି । ହେରାକ୍ଲାଇଟସ୍ ହେଉଛନ୍ତି ପ୍ରଥମ ବ୍ୟକ୍ତି, ଯେ ଶବ୍ଦଗୁଡ଼ିକୁ ବସ୍ତୁପ୍ରକୃତିର ରହସ୍ୟଗର୍ଭରୂପେ ବିବେଚନା କରିବାର ପ୍ରସ୍ତାବ କାଢିଥିଲେ । ପ୍ଲେଟୋଙ୍କ ଉପରେ ତାଙ୍କର ପ୍ରଭାବ **କ୍ରେଟିଲସ୍** ପୁସ୍ତକରେ ସୁସ୍ପଷ୍ଟ ହୋଇଁ ଯାଇଛି । ହେରାକ୍ଲାଇଟସ୍ ଦେଖିଲେ ଯେ ନିରନ୍ତର ଛିନ୍ନଭିନ୍ନ ପରିବର୍ତ୍ତନଶୀଳ ଜଗତର ସର୍ବାପେକ୍ଷା ଅଧିକ ସ୍ଥିରତା ଭାଷାରେ ହିଁ ରହିଛି । ସମସ୍ତ ମନୁଷ୍ୟଙ୍କଠାରେ ଥିବା ସାଧାରଣ ବିଜ୍ଞତାର ଏହା ଅଭିବ୍ୟକ୍ତି । ତାଙ୍କ ମତରେ ମାନବୀୟ ବଚନର ଗଠନର ଜଗତର ଗଠନ ପ୍ରତିଫଳିତ । ଏହା ଜାଗତିକ ଗଠନର ଏକ ମୂର୍ତ୍ତିମନ୍ତ ଅବତାର—"ବାହ୍ୟତଃ ଭିନ୍ନ ଭିନ୍ନ ଅନେକ ପ୍ରକାରରେ ଯେମିତି ଗୋଟିଏ ଅର୍ଥ ରହିପାରେ ଶବ୍ଦ [Logos] ଜାଗତିକ, ଅଥଚ ଜାଗତିକ ଗଠନର ଆଧାର (୧) ।"

ପଶ୍ଚାତ୍ତରେ ପାଇଥାଗୋରୀୟ ସମ୍ପ୍ରଦାୟଭୁକ୍ତ ଦାର୍ଶନିକମାନେ ମୁଖ୍ୟତଃ ସଂଖ୍ୟା-ପ୍ରତୀକ ଯୋଗୁ ହିଁ ସମସ୍ୟାରେ ପଡ଼ିଥିଲେ । ଆରିଷ୍ଟଟଲ୍ କହିଛନ୍ତି (୨), "ପ୍ରତ୍ୟେକ ବସ୍ତୁ ତାହାର ସମଗ୍ର ବୈଶିଷ୍ଟ୍ୟରେ ସଂଖ୍ୟାମାନଙ୍କ ଅନୁରୂପରେ ଗଠିତ ହୋଇଥିବା ପରି ଏବଂ ସଂଖ୍ୟାଗୁଡ଼ିକ ସମଗ୍ର ବିଶ୍ୱର ଚରମ ବସ୍ତୁ ପରି ମନେ ହେଉଥିବାରୁ, ସେମାନଙ୍କ ହୃଦ୍‌ବୋଧ ହୋଇଥିଲା ଯେ ସଂଖ୍ୟାଗୁଡ଼ିକର ଉପାଦାନ ହେଉଛି ପ୍ରତ୍ୟେକ ବସ୍ତୁର ଉପାଦାନ ।" ବସ୍ତୁତଃ, ଜଗତ ଏକରୁ ସଂଖ୍ୟାଗୁଡ଼ିକ ବହିର୍ଗତ ହେବା ତୁଲ୍ୟ ବୋଲି ଗ୍ରହଣ କରିବା ମାତ୍ରକେ, ପାଇଥାଗୋରସବାଦ ତାହାର ସର୍ବଶେଷ ଅବସ୍ଥାରେ, ନିଜ ନିଜର ଅମରତ୍ୱ ତଥା ସ୍ୱତନ୍ତ୍ର ସ୍ଥିତି ଦାବୀ କରୁଥିବା ସଂଖ୍ୟା-ଆତ୍ମାଗୁଡ଼ିକରୁ ସମସ୍ତ ବସ୍ତୁ ଗଠିତ—ଏହି ମତରେ ଆସି ପହୁଞ୍ଚିଥିଲା (୩) ।

---

(୧) Cornford, କଥିତ ଗ୍ରନ୍ଥ, ପୃ ୧୯୨ ।

(୨) *Metaphysics*, A.୫, A. E. Taylorଙ୍କ ଅନୁବାଦ ।

(୩) ପାଇଥାଗୋରସବାଦ ଏବଂ ସଂଖ୍ୟାଦର୍ଶନର ଏକ ବିବରଣୀ Dr. Allendyଙ୍କ ଦ୍ୱାରା *Le Symbolisme des Nombres, Essai d' Arithmosophie*, ୧୯୨୧ରେ ସାଧାରଣଭାବେ ଯୋଗାଇ ଦିଆଯାଇଛି । ଗ୍ରନ୍ଥକାରଙ୍କ ଉଦ୍ଦେଶ୍ୟ ହେଉଛି—"ଯେଉଁ ସଂଖ୍ୟାମୂଳକ ଦୃଢ଼କାଠି ବଳରେ ସମସ୍ତ ଯୁଗ ଓ ସମସ୍ତ ସମ୍ପ୍ରଦାୟର ଧର୍ମମୂଳକ ଓ ଗୁହ୍ୟ ଦର୍ଶନ ତାହାର ଶିକ୍ଷାକୁ ଯୋଡ଼ାଇ ରଖିଛି, ତାହାର କେତେଗୁଡ଼ିଏ ଦିଗକୁ ପରୀକ୍ଷା କରିବା । ······ଏହି ଦୃଷ୍ଟିରୁ ସଂଖ୍ୟାଗୁଡ଼ିକର ଅଧ୍ୟୟନ

ଏହାର ପରବର୍ତ୍ତୀ ଦାର୍ଶନିକ ପାରମିନାଇଡ଼ିଜ ନଞର୍ଥକ ପ୍ରଶ୍ନର ଭୂମିକା ଅନୁଶୀଳନରେ ବ୍ୟସ୍ତ ଥିଲେ । ଯଦି 'ଗରମ ନ ହେବା'ର ଅର୍ଥ ଯାହା, 'ଥଣ୍ଡା'ର ଅର୍ଥ କେବଳ ତାହା, ଏବଂ 'ଆଲୋକ ନ ହେବା'ର ଅର୍ଥ ଯାହା, 'ଅନ୍ଧକାର'ର ଅର୍ଥ କେବଳ ତାହା, ତେବେ ବସ୍ତୁର ଅନୁପସ୍ଥିତି ସମ୍ବନ୍ଧରେ ଆମେ କଥାବାର୍ତ୍ତା କରିବା କିପରିଭାବେ ସମ୍ଭବ ହୁଏ ? ସେ କହିଛନ୍ତି, "ନର-ମାନବବୃନ୍ଦ ଦୁଇଟି ପଦାର୍ଥର ନାମ ଦେବାକୁ ସ୍ଥିର କରିଛନ୍ତି, ଯହିଁରୁ ଗୋଟିକର ନାମ ସେମାନେ ଦେବା ଅନୁଚିତ; ଏବଂ ଏହିଠାରେ ହିଁ ସେମାନେ ଭ୍ରାନ୍ତ ହୋଇଛନ୍ତି ।" ଯେଉଁ ବସ୍ତୁଗୁଡ଼ିକ ଆଦୌ ନାହିଁ, ସେଗୁଡ଼ିକର, ଅର୍ଥାତ୍ ଅଣ-ବସ୍ତୁ ଗୁଡ଼ିକର ନାମ ସେମାନେ ଦେଇଛନ୍ତି । ପାରମିନାଇଡ଼ିଜ ଉଠାଇଥିବା ନେତିମୂଳକ ବିଷୟର ସମସ୍ୟା ପ୍ଲେଟୋଙ୍କୁ ପ୍ରଥମ ଥର ପାଇଁ ଚିନ୍ତା ଓ ଭାଷାର ସମ୍ବନ୍ଧପରୀକ୍ଷା ଅଭିନିବେଶ ସହକାରେ କରିବାକୁ ପ୍ରବୃତ୍ତ କରିଥିଲା [ସୋଫିଷ୍ଟ ୨୬୮] । କିନ୍ତୁ ଏହା ସହିତ ପାରମିନାଇଡ଼ିଜ ତାଙ୍କ ନିଜର ଏକ-ଓ-ଅନେକ ସମ୍ବନ୍ଧୀୟ ରହସ୍ୟ ପ୍ରହେଳିକାକୁ ମଧ୍ୟ ପ୍ଲେଟୋଙ୍କ ହାତରେ ଅର୍ପଣ କରିଥିଲେ । ଏହାର ମୂଳ ମଧ୍ୟ ଭାଷାରେ ହିଁ ନିହିତ । ସୁତରାଂ ନାମ-ଆତ୍ମାମାନଙ୍କ ଦ୍ୱାରା ଅଧ୍ୟୁଷିତ ତାଙ୍କର ଆଦର୍ଶ ଜଗତ ଏବଂ ତାହାର ରକ୍ତ-ମାଟିର ଜଗତ ସହିତ ସମ୍ବନ୍ଧ ବ୍ୟତୀତ ଭାଷାସିଦ୍ଧାନ୍ତ ଚର୍ଚ୍ଚାରେ ନିୟୋଜିତ ରହିବା ନିମନ୍ତେ ପ୍ଲେଟୋଙ୍କର ଯଥେଷ୍ଟ କାରଣ ରହିଥିଲା । [ଏଠାରେ ଉଲ୍ଲେଖ କରିଯାଇପାରେ ଯେ ଧର୍ମଶାସ୍ତ୍ର-ବିଶାରଦମାନେ ନିଗ୍ରୋମାନଙ୍କ ଦେହରେ ଆତ୍ମାର ସ୍ଥିତି ସମ୍ବନ୍ଧରେ ସନ୍ଦେହ କରି ଯୁକ୍ତିତର୍କରେ ପ୍ରବୃତ୍ତ ହୋଇଥିଲେ, ପ୍ଲେଟୋ ସେହିପରି ସୌନ୍ଦର୍ଯ୍ୟଗତ କାରଣରୁ ରକ୍ତ-ମାଟିର ଜଗତସ୍ଥ ବସ୍ତୁରେ 'ପ୍ରତ୍ୟୟମାନଙ୍କ' ସ୍ଥିତି ସ୍ୱୀକାର କରିବାକୁ ଦ୍ୱିଧା ବୋଧ କରୁଥିଲେ ।]

ଉପର୍ଯ୍ୟୁକ୍ତ କାରଣରୁ ପ୍ଲେଟୋଙ୍କ ଭାଷାସମ୍ବନ୍ଧୀୟ ମତାମତ ରହିଥିବା **ଦି କ୍ରେଟିଲସ୍** ତର୍କଗ୍ରନ୍ଥକୁ ଆଧୁନିକ ଯୁଗରେ ଯେପରିଭାବେ ଉପେକ୍ଷା କରାଯାଉଛି, ତାହା ନିଶ୍ଚୟ ବଡ଼ ଦୁର୍ଭାଗ୍ୟର ବିଷୟ । ପ୍ଲେଟୋଙ୍କ ପ୍ରତ୍ୟୟ ବା ନାମ-ଆତ୍ମା ସମ୍ବନ୍ଧୀୟ ମତବାଦ ପାଇଥାଗୋରସବାଦୀଙ୍କଠାରୁ ଗୃହୀତ । କିନ୍ତୁ ଜଣେ ବୈଜ୍ଞାନିକ ଭାବରେ ପ୍ଲେଟୋ ନାମ ଓ ତାହାର ଅର୍ଥବିଷୟକ ସମସ୍ୟାକୁ ସମ୍ମୁଖୀନ ହେବା ସନ୍ତବପର ସମସ୍ୟାମାନଙ୍କ ମଧ୍ୟରେ ଏକ ସର୍ବାଧିକ କଷ୍ଟକର ସମସ୍ୟା ବୋଲି ବିବେଚନା କରି ସତତ ତାହାର ସମାଧାନର ଚେଷ୍ଟା କରୁଥିଲେ । ତୁଳନାତ୍ମକ ଭାଷାବିଜ୍ଞାନ, ବ୍ୟାକରଣ

---

ସମସ୍ତ ଗୁହ୍ୟତନ୍ତ୍ର ଓ ସମସ୍ତ ଦେବବିଦ୍ୟାର ଭିତ୍ତିଭୂମି ହେବ ।" ଏହାର ଫଳସ୍ୱରୂପ ଯେଉଁ ଅଲୌକିକ କ୍ରିୟାମିଶ୍ରିତ ପରିସ୍ଥିତିର ଉଦ୍ଭବ ହୁଏ, ତହିଁରୁ ଶବ୍ଦ-ଇନ୍ଦ୍ରଜାଲ ଅପେକ୍ଷା ସଂଖ୍ୟା ଇନ୍ଦ୍ରଜାଲ ଯେ ନ୍ୟୂନ ମାତ୍ରାରେ ପ୍ରଚଳିତ ନ ଥିଲା, ତାହାର ପର୍ଯ୍ୟାପ୍ତ ସାକ୍ଷ୍ୟ ପ୍ରମାଣ ଯେ କୌଣସି ଅନୁସନ୍ଧିତ୍ସୁ ବ୍ୟକ୍ତି ପାଇ ପାରିବେ ।

ଓ ମନସ୍ତତ୍ତ୍ୱ ଯେଉଁ ଯୁଗରେ ସମ୍ପୂର୍ଣ୍ଣରୂପେ ଅଜ୍ଞାତ ଥିଲା, ସେହି ଯୁଗରେ କରାଯାଇଥିବା ତାଙ୍କ ବିଶ୍ଳେଷଣ ଏକ ଉଲ୍ଲେଖଯୋଗ୍ୟ କୃତିତ୍ୱ । କିନ୍ତୁ ସୁସଙ୍ଗତଭାବେ ପ୍ରତୀକ ଓ ପ୍ରତୀକାନ୍ୱିତ ଚିନ୍ତା ମଧ୍ୟରେ ପାର୍ଥକ୍ୟ ରକ୍ଷା କରିବାରେ ସେ ଅକୃତକାର୍ଯ୍ୟ ହୋଇଛନ୍ତି ।

ଗ୍ରୀକ୍ ପରିକଳ୍ପନାର ମୁଖ୍ୟ ପ୍ରଥା ବାଚନିକ ସମାଧାନ ପନ୍ଥାର ଅନୁଗତ ରହିଥିଲା । ଡକ୍ଟର ହ୍ୱେଉଏଲ୍ ଲେଖିଛନ୍ତି ଯେ ପ୍ରକୃତିକୁ ବୁଝିବାର ଦୁଇଟି ପନ୍ଥା ରହିଛି; "ଗୋଟିଏ ହେଉଛି କେବଳ ଶବ୍ଦଗୁଡ଼ିକୁ ଏବଂ ସେଗୁଡ଼ିକଦ୍ୱାରା ଉଦ୍ଦିଷ୍ଟ ଚିନ୍ତାଗୁଡ଼ିକୁ ପରୀକ୍ଷା କରିବା ଏବଂ ଅନ୍ୟଟି ହେଉଛି ଏହି ଧାରଣାଗୁଡ଼ିକୁ ଜାତ କରୁଥିବା ଘଟଣା ଓ ବସ୍ତୁଗୁଡ଼ିକ ପ୍ରତି ଧ୍ୟାନ ଦେବା ......ଗ୍ରୀକ୍‌ମାନେ ପ୍ରଥମ ଅର୍ଥାତ୍ **ବାଚନିକ** ବା **ଧାରଣାତ୍ମକ** ପନ୍ଥାର ଅନୁସରଣ କରିଥିଲେ ଓ ଅକୃତକାର୍ଯ୍ୟ ହୋଇଥିଲେ ।" ପୁଣି ସେ ଲେଖିଛନ୍ତି, "ଭାଷାର ସାଧାରଣ ବ୍ୟବହାରଗୁଡ଼ିକରୁ ସୂକ୍ଷ୍ମ ଅନ୍ୱେଷଣ ପ୍ରବୃତ୍ତି ଅତି ପ୍ରାଚୀନ କାଳରେ ରହିଥିବା ବିଷୟର ଆବିଷ୍କାର କରାଯାଇ ପାରେ ।......ଏହିପ୍ରକାର ପରିକଳ୍ପନାର ଚୂଡ଼ାନ୍ତ କୃତିତ୍ୱ ଆରିଷ୍ଟଟଲଙ୍କ କ୍ଷେତ୍ରରେ ରହିଛି ।" (୧) ଟ୍ରେଣ୍ଡେଲେନ୍-ବର୍ଗଙ୍କ (୨) ସମୟରୁ ଏକଥା ସାଧାରଣତଃ ସ୍ୱୀକୃତ ହୋଇ ଆସୁଛି ଯେ ଆରିଷ୍ଟଟଲଙ୍କ ଦର୍ଶନପଦ୍ଧତିରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିବା ପଦାର୍ଥମାନଙ୍କ (categories)ର ଏବଂ ଅନ୍ୟାନ୍ୟ ଅନୁରୂପ ଭେଦର ଅଧ୍ୟୟନ ଗ୍ରୀକ୍ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତି ଦୃଷ୍ଟି ନଦେଇ କରାଯାଇ ନପାରେ । ଗୋମପେର୍ଜ୍ କହିଛନ୍ତି, "ଆରିଷ୍ଟଟଲ କହିବାର ଭାଷାର ଆକାରଦ୍ୱାରା ନିଜକୁ ପରିଚାଳିତ କରିଛନ୍ତି । ଭାଷାର ବନ୍ଧନରୁ ନିଜକୁ ମୁକ୍ତ ରଖିବାର ଅସାମର୍ଥ୍ୟ ହେତୁ ଏହା ଯେ ସର୍ବଦା ଘଟିଛି, ଏକଥା ନୁହେଁ । କିନ୍ତୁ ଦ୍ୱନ୍ଦ୍ୱନ୍ୟାୟର ଦାବୀ ଯେତେଥର ତାହାଙ୍କୁ ନିଜର ଦୃଷ୍ଟିକୋଣ ପରିତ୍ୟାଗ କରି ଯିବାକୁ ଅନୁମତି ଦେଇନାହିଁ, ସେତେଥର ଅନ୍ତତଃ ସେ ତାହାହିଁ କରିଛନ୍ତି ।......ଏହିପରି ଭାବେ ସାଧାରଣ

---

(୧) *History of the Inductive Sciences*, ୧ମ ପୃ ୨୭,୨୯ ।

(୨) *Kategorientehre*, ପୃ ୨୦୯ । ଏଥିରେ ସୂଚିତ କରାଯାଇଛି ଯେ ଏହି ବର୍ଗୀକରଣକୁ ଭାଷାତ୍ମକ ବିଚାର "ପରିଚାଳିତ କରିଛି, କିନ୍ତୁ ନିର୍ଦ୍ଧାରିତ କରିନାହିଁ ।" ପ୍ରଥମ ଶତାବ୍ଦୀରେ ସୁଦ୍ଧା ବିଭିନ୍ନ ଆରିଷ୍ଟଟଲୀୟ-ମତ-ସଂଗ୍ରାହକ ଦାର୍ଶନିକମାନେ ଗ୍ରହଣ କରି ନେଇଥିଲେ ଯେ ପଦାର୍ଥ-ବର୍ଗୀକରଣ (categories) ସମ୍ପୂର୍ଣ୍ଣରୂପେ ଶବ୍ଦମାନଙ୍କ ସହିତ ସମ୍ପୃକ୍ତ; ଯଦିଓ Dr. P. Rotta ଯେପରି ସୂଚିତ କରିଛନ୍ତି (*La Filosotia del Linguaggio nella Patristica e nella Scholastica* ପୃ ୫୬), ସମ୍ଭବତଃ ନାମମାତ୍ରବାଦ-ବାସ୍ତବବାଦ ସଂଘର୍ଷ ଦୃଷ୍ଟିରୁ ପଦାର୍ଥ-ବର୍ଗୀକରଣ କରାଯାଇଥିଲା ।

ଧରଣର ଜ୍ଞାନ ଓ ନିର୍ଦ୍ଦିଷ୍ଟ ବିଜ୍ଞାନମାନଙ୍କର ଜ୍ଞାନ ମଧ୍ୟରେ ଏକ ପାର୍ଥକ୍ୟ ରକ୍ଷା କରା-ଯାଇଛି; ଏହାର ଏକମାତ୍ର ଭିତ୍ତି ହେଉଛି—ନିର୍ଦ୍ଦିଷ୍ଟ ବିଜ୍ଞାନଗୁଡ଼ିକର ନାମମାନଙ୍କରେ ସେଗୁଡ଼ିକର ଉଦ୍ଦେଶ୍ୟ ଅନ୍ତର୍ଭୁକ୍ତ। ......ଭାଷାଗତ ଔଚିତ୍ୟର ବିଗ୍ରହଦ୍ୱାରା ପଦାର୍ଥ-ମାନଙ୍କ ବର୍ଗୀକରଣରେ ସେ ପ୍ରାୟତଃ ପରିଚାଳିତ ହୋଇଛନ୍ତି। ସୁତରାଂ ଏହି ପରିସ୍ଥିତିରେ ସ୍ୱୀକୃତ ହେବା ଆବଶ୍ୟକ ଯେ ଏହି ବର୍ଗୀକରଣକୁ ସତ୍ତ୍ୱସମ୍ପର୍କିତ କ୍ଷେତ୍ରରେ ପ୍ରୟୋଗ କରିବାରୁ ସେ କ୍ଷାନ୍ତ ରହିବା ଉଚିତ ହୋଇଥାନ୍ତା।" (୧)

**ଦି ଇଣ୍ଟରପ୍ରିଟେସନ** ପୁସ୍ତକରେ ଏମ୍ମୋନିଅସ୍ ପ୍ରଦତ୍ତ ପାର୍ଶ୍ୱ-ଟୀକାରୁ ଯେପରି ଜଣାପଡ଼ୁଛି, ପ୍ରତ୍ୟେକ ପଦର ଏକ ନିର୍ଦ୍ଦିଷ୍ଟ ସରଳ ଅର୍ଥ ଥାଏ—ଏହି ଧାରଣା ଉପରେ ଆରିଷ୍ଟଟଲଙ୍କ ସମୟର ଦ୍ୱନ୍ଦ୍ୱାତ୍ମକ ବାଦାନୁବାଦ ପ୍ରଥା ପ୍ରତିଷ୍ଠିତ ଥିଲା। ପ୍ରଶ୍ନକର୍ତ୍ତା ପଚାରୁଥିଲେ, "ଆଳଙ୍କାରିକ ଅଭିବ୍ୟକ୍ତି ମୂଲ୍ୟାଙ୍କନଯୋଗ୍ୟ କି ?" ଏବଂ ଅନ୍ତତଃ ଗୋଟିଏ ପ୍ରକାର ପ୍ରଚଳିତ ପ୍ରଥାରେ ଉତ୍ତରଦାତା କେବଳ 'ହଁ' କିମ୍ବା 'ନାହିଁ' କହି ଏହାର ଉତ୍ତର ଦେବେ ବୋଲି ଆଶା କରାଯାଉଥିଲା। କେତେକ ଶବ୍ଦକୁ ଅନେକାର୍ଥକ ବୋଲି ବିବେଚନା କରାଯାଉଥିଲା; ମୁଖ୍ୟତଃ ପ୍ରଚଳିତ ଶବ୍ଦସମ୍ଭାରରେ ଶବ୍ଦଗୁଡ଼ିକର 'ବିପରୀତାର୍ଥକ ଶବ୍ଦ' ଅଧ୍ୟୟନର ଏହା ପରିଣତି। ଆରିଷ୍ଟଟଲ ତାଙ୍କ **ଟପିକସ** ପୁସ୍ତକରେ ଶ୍ଳିଷ୍ଟାର୍ଥ ସମ୍ବନ୍ଧୀୟ ବିଭିନ୍ନ ନିୟମର ଉଲ୍ଲେଖ କରିଛନ୍ତି। ପ୍ରତିବାଦୀକୁ କୌଣସି ପ୍ରକାର ବାଚନିକ ଅସଙ୍ଗତିରେ ପକାଇବା ଉଦ୍ଦେଶ୍ୟରେ ରଚିତ ଅନ୍ୟାନ୍ୟ ଉପାୟର ମଧ୍ୟ ବର୍ଣ୍ଣନା ରହିଛି।

ଅଭାବ ଓ ପଦାର୍ଥମାନଙ୍କ ସମ୍ବନ୍ଧରେ ଆରିଷ୍ଟଟଲୀୟ ସିଦ୍ଧାନ୍ତ "ପ୍ରଚଳିତ ବାଚନିକ ଆକାରଗୁଡ଼ିକୁ ଏକ କୁସଂସ୍କାରମୂଳକ ଧର୍ମବିଶ୍ୱାସର ବିଷୟବସ୍ତୁ କରି ସେଗୁଡ଼ିକ ସତେ ଯେପରି ବାସ୍ତବ ଦେବତା, ସେହିପରି କରିପକାଇଥିଲା"—ଏହା ପ୍ରଦର୍ଶନ କରିବାକୁ ମଉଥନେର ସୁବିସ୍ତୃତ ଯୁକ୍ତି ଉପସ୍ଥାପନ କରିଛନ୍ତି। ତାପରେ ସେ ମନ୍ତବ୍ୟ ପ୍ରକାଶ କରିଛନ୍ତି ଯେ "ଆରିଷ୍ଟଟଲବାଦ ଅପ୍ରଚଳିତ ହୋଇଯିବାର କାରଣ ହେଉଛି, ଦର୍ଶନର ଇତିହାସରେ ଅନ୍ୟ ଯେକୌଣସି ପ୍ରସିଦ୍ଧ ଲେଖକଙ୍କ ତୁଳନାରେ ସମ୍ଭବତଃ ସେହି ଶବ୍ଦଗୁଡ଼ିକ ପ୍ରତି ଅଧିକ କୁସଂସ୍କାରଗ୍ରସ୍ତଭାବେ ଅନୁରକ୍ତ ଥିଲେ। ତାଙ୍କ ତର୍କଶାସ୍ତ୍ରରେ ସୁଦ୍ଧା ଭାଷାର ଆକସ୍ମିକ ପ୍ରୟୋଗ ଅର୍ଥାତ୍ ତାଙ୍କ ମାତୃଭାଷାର ଆକସ୍ମିକ ପ୍ରୟୋଗ ଉପରେ ସେ

(୧) T Gomperz, *Greek thinkers* ୪ର୍ଥ ପୃଷ୍ଠା ୪୦-୪୧।

ସମ୍ପୂର୍ଣ୍ଣରୂପେ ନିର୍ଭରଶୀଳ । ଶବ୍ଦଗୁଡ଼ିକ ପ୍ରତି ତାଙ୍କର କୃତ୍ସ୍ୱାରମୂଳକ ଶ୍ରଦ୍ଧା କସ୍ମିନ୍ କାଳେ ହ୍ରାସ ପାଉ ନଥିଲା ।'' (୧) ପୁଣି ମଉଥନେର ଲେଖିଛନ୍ତି—

''ପୁରା ଦୁଇହଜାର ବର୍ଷ କାଳ ମାନବୀୟ ଚିନ୍ତା ଏହି ବ୍ୟକ୍ତିଙ୍କ ପରିକଳ୍ପିତ ସାର-ଶବ୍ଦର ପ୍ରଭାବରେ ରହିଥିଲା ଏବଂ ଏହି ପ୍ରଭାବର ପରିଣତି ସମ୍ପୂର୍ଣ୍ଣତଃ କ୍ଷତିକାରକ ହୋଇଛି । ଏକ ଶବ୍ଦସଂସ୍କାରନିର୍ମିତ ଏପରି ସ୍ଥାୟୀ ଶକ୍ତିର ଆଉ ପଟାନ୍ତର ନାହିଁ ।''(୨)

ଏ ପ୍ରକାର ବାଚନିକ ଧାରଣାସହିତ **ଡି ଇଣ୍ଟରପ୍ରିଟେସନେରେ** ଆରିଷ୍ଟଟଲଙ୍କ ଉପସ୍ଥାପିତ ମତବାଦଗୁଡ଼ିକୁ ସଙ୍ଗତ କରାଇବା ଏକ ଦୁଷ୍କର ବ୍ୟାପାର— ଏହା ଏକ କୌତୁହଳର ବିଷୟ । **ଡି ଇଣ୍ଟରପ୍ରିଟେସନେରେ** ସେ ଦୃଢ଼ତାର ସହିତ କହିଛନ୍ତି ଯେ ଶବ୍ଦଗୁଡ଼ିକ ମୁଖ୍ୟତଃ ମାନସିକ ବୃତ୍ତିମାନଙ୍କର ଏବଂ କେବଳ ଗୌଣ-ଭାବରେ ହିଁ ବସ୍ତୁମାନଙ୍କର ସଂକେତ । ବୃତ୍ତିଗୁଡ଼ିକ ସହିତ ଏହି ବସ୍ତୁଗୁଡ଼ିକର ସାଦୃଶ୍ୟ ଥାଏ । (୩) ଆରିଷ୍ଟଟଲ ପ୍ରତିଜ୍ଞପ୍ତିର ଏକ ସୁବିସ୍ତୃତ ମତବାଦ ଉପସ୍ଥାପିତ କରିଛନ୍ତି । ଏହା ଅସମ୍ପୂର୍ଣ୍ଣ ଏବଂ ଅଶେଷ ଗଣ୍ଡଗୋଳର ଉତ୍ସ ହୋଇ ରହିଛି । ତଥାପି ତାଙ୍କର ତାର୍କିକ ଉଦ୍ଦେଶ୍ୟକୁ ସାମୂହିକଭାବେ ବିଚାର କଲେ ଯାହା ସୂଚିତ ହେବ, ତହିଁରୁ ଭାଷା ପ୍ରତି ଯଥେଷ୍ଟ ଅଧିକ ସମାଲୋଚନାମୂଳକ ଅଭିବୃତ୍ତି ତାଙ୍କର ପ୍ରତିଜ୍ଞପ୍ତି-ମତବାଦରେ ପ୍ରକାଶିତ ହୋଇଛି, କାରଣ **କ୍ରେଟିଲସ୍**ରେ ପ୍ଲେଟୋ ଉତ୍ଥାପନ କରିଥିବା ମୁଖ୍ୟ

---

(୧) Mauthner, *Aristotle*, ଇଂରାଜୀ ଅନୁବାଦ ପୃ ୮୪, ୧୦୩-୪ । ତୁଳନା କର—ଏହି ଲେଖକଙ୍କ *Kritik der Sprache*, ତୃତୀୟ ଖଣ୍ଡ ପୃ ୪, ''ଯଦି ଆରିଷ୍ଟଟଲ ଚୀନା ବା ଡେକୋଟା ଭାଷା କହୁଥାନ୍ତେ, ତେବେ ତାହାଙ୍କୁ ଏକ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର ତର୍କପଦ୍ଧତିର ପ୍ରୟୋଗ କରିବାକୁ ପଡ଼ିଥାନ୍ତା; ଅଥବା ଅନ୍ତତଃ ତାଙ୍କର ପଦାର୍ଥ-ସିଦ୍ଧାନ୍ତ ସଂପୂର୍ଣ୍ଣ ଭିନ୍ନ ଧରଣର ହୋଇଥାନ୍ତା ।''

(୨) ତତ୍ରୈବ, ପୃ ୧୯ ବ୍ୟାକରଣ ଉପରେ ଆରିଷ୍ଟଟଲଙ୍କ ପ୍ରଭାବସମ୍ବନ୍ଧୀୟ ଆଲୋଚନା ପାଇଁ ପରିଶିଷ୍ଟ-କ ମଧ୍ୟ ଦେଖ ।

(୩) *De Interpretatione* ୧୬. a. ୩ ସୁଲ୍ଲାଙ୍କ ଲୁଣ୍ଠିତ ଦ୍ରବ୍ୟର ଅଂଶ ସ୍ୱରୂପ ଥିଓ ଫ୍ରେଷ୍ଟସଙ୍କ ଗ୍ରନ୍ଥାଗାରର ଗ୍ରନ୍ଥଗୁଡ଼ିକୁ ଏଥେନ୍‌ସରୁ ରୋମକୁ ଅଣାଯିବା ପରେ ପ୍ରଥମଥର ପାଇଁ ରୋଡ଼ସ୍‌ର ଏଣ୍ଡ୍ରୋନିକସ ଆରିଷ୍ଟଟଲଙ୍କ ପୂର୍ଣ୍ଣାଙ୍ଗ ଗ୍ରନ୍ଥାବଳୀର ସଙ୍କଳନ କରିଥିଲେ । ସେ ଏହି ପୁସ୍ତକକୁ ଆରିଷ୍ଟଟଲଙ୍କ ପ୍ରଣୀତ ଗ୍ରନ୍ଥ ନୁହେଁ ବୋଲି ବିବେଚନା କରିଥିବା ଉଲ୍ଲେଖଯୋଗ୍ୟ । କିନ୍ତୁ ଏହା ଆରିଷ୍ଟଟଲଙ୍କ ପ୍ରଣୀତ ଗ୍ରନ୍ଥ ବୋଲି ମାଇୟର (Maier) ଯୁକ୍ତି ଉପସ୍ଥାପିତ କରିଛନ୍ତି । ଏହି ଯୁକ୍ତି ପଣ୍ଡିତମାନଙ୍କୁ ଏହା ଆରିଷ୍ଟଟଲୀୟ ଗ୍ରନ୍ଥ ବୋଲି ଗ୍ରହଣ କରିବାକୁ ପ୍ରବର୍ତ୍ତାଇଛି ।

ପ୍ରଶ୍ନର ସମାଧାନ ନିମନ୍ତେ ଆରିଷ୍ଟଟଲଙ୍କୁ ଏଠାରେ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିନାହିଁ । ସେ କହନ୍ତି ଯେ ସମସ୍ତ ତାତ୍ପର୍ଯ୍ୟସମ୍ବଳିତ ବଚନ କେବଳ ପ୍ରଥାଦ୍ୱାରା ହିଁ ତାତ୍ପର୍ଯ୍ୟଯୁକ୍ତ ହୁଏ; ପ୍ରକୃତି ଦ୍ୱାରା ନୁହେଁ ଅଥବା ପ୍ରାକୃତିକ ଉପକରଣରୂପେ ନୁହେଁ । ଏତଦ୍ୱାରା ଧ୍ୱନ୍ୟନୁକରଣର ଭୂମିକା ସମ୍ବନ୍ଧରେ ପ୍ଲେଟୋଙ୍କ ସୂକ୍ଷ୍ମଦୃଷ୍ଟିସମ୍ପନ୍ନ ମନ୍ତବ୍ୟକୁ ସେ ଉପେକ୍ଷା କରି ଯାଇଛନ୍ତି । ତ ଇଣ୍ଟରପ୍ରିଟେସନେରେ ସାର୍ଥବଚନର ବିଭିନ୍ନ ବିଭାଗକୁ ଇଚ୍ଛାକରି ବାଦ୍ ଦିଆଯାଇଛି ଏବଂ **ବର୍ଣ୍ଣନାତ୍ମକ** କୁହାଯାଉଥିବା ବଚନଗୁଡ଼ିକୁ ହିଁ କେବଳ ବିଚାର କରିବାକୁ ଏଥିରେ ଆମକୁ ଆହ୍ୱାନ ଦିଆଯାଇଛି । ଏଗୁଡ଼ିକ ସତ୍ୟ କିମ୍ବା ମିଥ୍ୟାର ଘୋଷଣା କରନ୍ତି ଏବଂ ଏଗୁଡ଼ିକର ହିଁ କେବଳ ତର୍କଶାସ୍ତ୍ରରେ ସ୍ଥାନ ରହିଛି । ଅନ୍ୟାନ୍ୟ ପ୍ରକାର, ଅର୍ଥାତ୍ ଅନୁରୋଧମୂଳକ, ଆଦେଶମୂଳକ, ପ୍ରଶ୍ନମୂଳକ ଇତ୍ୟାଦି ବଚନଗୁଡ଼ିକୁ ଅଳଙ୍କାରଶାସ୍ତ୍ର ବା କାବ୍ୟତତ୍ତ୍ୱର (୧) ଅନ୍ତର୍ଭୁକ୍ତ କରିବା ଅଧିକ ସ୍ୱାଭାବିକ ବୋଲି ବିବେଚିତ ହୋଇଛି ।

ସାମୂହିକଭାବେ ଗ୍ରୀକ୍ ସାହିତ୍ୟଗତ ସାକ୍ଷ୍ୟ-ପ୍ରମାଣରୁ ଅନୁମାନ କରାଯାଇପାରେ ଯେ ଗ୍ରୀକ୍ ଦର୍ଶନରେ ବାଚନିକ ଜ୍ଞାପସ୍ଥାରର ଏକ ମୁଖ୍ୟ ଭୂମିକା ରହିବା ସ୍ୱାଭାବିକ । ଉଦାହରଣ ସ୍ୱରୂପ, ଏଣ୍ଟିଲନ୍ ଓ ସୋଫୋକ୍ଲେନ୍ ଯେ ସୁନିଶ୍ଚିତଭାବେ ଶବ୍ଦବ୍ରହ୍ମବାଦରେ

---

(୧) *Poetics* (୧୪୫୬ margoliouth, ପୃ ୧୯୮)ରେ "ଯେଉଁ କାର୍ଯ୍ୟକଳାପର ଉପକରଣ ହେଉଛି ବଚନ ଏବଂ ବାକ୍ୟଗୁଡ଼ିକ ହେଉଛି ପ୍ରମାଣ ଓ ଖଣ୍ଡନ; କରୁଣା, ଭୟ, କ୍ରୋଧ ଇତ୍ୟାଦି ପରି ସଂବେଗର ଉଦ୍ରେକ; ଅତ୍ୟୁକ୍ତି ଏବଂ ଅପକର୍ଷଣ" ସେହି କାର୍ଯ୍ୟକଳାପର ପୁଣି ଥରେ ପରୋକ୍ଷ ଉଲ୍ଲେଖ ଆରିଷ୍ଟଟଲ କରିଛନ୍ତି । ଭାଷାର ବର୍ଣ୍ଣନାତ୍ମକ ବା 'ବସ୍ତୁନିଷ୍ଠ' ବ୍ୟବହାର (D. ୧୨, ୧୭ a ୬) ଉପରେ Ammonius ମନ୍ତବ୍ୟ ଦେଇ ଥିଓଫ୍ରେଷ୍ଟସଙ୍କ ଅପ୍ରାପ୍ୟ ପୁସ୍ତକମାନଙ୍କ ମଧ୍ୟରୁ ଗୋଟିକର ଏକ ଅନୁଚ୍ଛେଦ ବିଷୟ ସୂଚିତ କରିଛନ୍ତି । ତହିଁରେ ବସ୍ତୁ ସହିତ ସମ୍ପୃକ୍ତ 'ବସ୍ତୁନିଷ୍ଠ' ଭାଷାକୁ ଅନ୍ୟାନ୍ୟ ପ୍ରକାର ଭାଷାଠାରୁ ପୃଥକ୍ କରାଯାଇଛି । ଶେଷୋକ୍ତ ଭାଷାଗୁଡ଼ିକ ଶ୍ରୋତା ଉପରେ ତାହାର ପରିଣତି ସହିତ ସମ୍ପୃକ୍ତ ଏବଂ କୁହାଯାଉଥିବା ବ୍ୟକ୍ତି ଦୃଷ୍ଟିରୁ ଭିନ୍ନ ଭିନ୍ନ ହୋଇଥାଏ । ଏହି ଭିନ୍ନ ଭିନ୍ନ ପ୍ରଣାଳୀ ପରବର୍ତ୍ତୀ ଆରିଷ୍ଟଟଲୀୟ ଦାର୍ଶନିକଙ୍କ ମତରେ ପାଞ୍ଚ ପ୍ରକାର । ଷ୍ଟୋଇକ୍‌ମାନଙ୍କ ଦ୍ୱାରା ଏଗୁଡ଼ିକ ଅଧିକ ବିସ୍ତାରିତ ହୋଇଥିଲା । ତୁଳନାକର—Prantl (*Geschichie der Logik* ୧ମ ଖଣ୍ଡ ପୃ ୪୪୧), Steinthal (*Geschichie der Sprachwissenschaft bei den Griechen und Romern* ୧ମ ଖଣ୍ଡ ପୃ ୩୧୭), *H. Maier, psychologie des Emotionalen Denkens* ପୃ ୯-୧୦ ।

ବିଶ୍ୱାସ କରୁଥିଲେ—ଏହା ଗ୍ରହଣ କରିବା ଫର୍ରରଙ୍କ ପକ୍ଷରେ ଅନିବାର୍ଯ୍ୟ ହୋଇଛି । ଆମେ ପରେ ଦେଖିବା ଯେ ଶବ୍ଦବ୍ରହ୍ମବାଦ ଆଦିମ ଶାବ୍ଦିକ ଇନ୍ଦ୍ରଜାଲ ସହିତ ସର୍ବଦା ଜଡ଼ିତ । ସେ ଆହୁରି ପ୍ରଦର୍ଶନ କରିଛନ୍ତି ଯେ କର୍ମପ୍ରବଣ ରୋମାନ୍‌ମାନେ ସୁଦ୍ଧା ଏ ପ୍ରକାର ବିଶ୍ୱାସର ଶିକାର ହୋଇଥିଲେ । ଏ ସମସ୍ତଙ୍କଠାରେ ଓିସୋନିଅସଙ୍କ ଭାଷାର ପ୍ରତିଧ୍ୱନି ଶୁଣାଯାଇଥାନ୍ତା :—

କାରଣ ଭବିଷ୍ୟତ ସମ୍ବନ୍ଧରେ କିଛି ଅନୁମାନ କରି କହିବାକୁ ଗୋଟିଏ ନାମ ଦିଆଯାଏ, ଯାହା ସୌଭାଗ୍ୟସୂଚକ, ପ୍ରଥାଗତ ବା ମୃତ୍ୟୁସୂଚକ ।

ସିସେରୋଙ୍କ ବିବରଣୀରୁ ଆମେ ଜାଣୁ ଯେ ସୈନ୍ୟସଂଗ୍ରହ ତାଲିକାରେ "ଭିକ୍‌ଟର, ଫେଲିକ୍‌ସ, ଫଷ୍ଟସ୍ ଓ ସେକୁଣ୍ଡସ୍ ପରି ନାମଗୁଡ଼ିକ ପ୍ରଥମରେ ଯେପରି ଲେଖାଯାଏ" ସେ ଦିଗରେ ସେମାନେ ଯତ୍ନଶୀଳ ଥିଲେ । "ଭେଲ୍ଭିଅସ୍ ଭେଲେରିଅସ୍ ପରି ଏକ ଶୁଭଶକୁନବାଚକ ଶବ୍ଦ ସୈନ୍ୟତାଲିକାର ଶୀର୍ଷସ୍ଥାନରେ ରଖିବା ପାଇଁ ସେମାନେ ବ୍ୟଗ୍ର ହେଉଥିଲେ । 'ସ୍କିପିଓ' ନାମରେ ଶକୁନ ନିହିତ ଥିବାରୁ ହିଁ ସିଜାର ଜଣେ ଅଜ୍ଞାତ ସ୍କିପିଓକୁ ସ୍ପେନ୍‌ରେ ଏକ ଆଦେଶ ଦେଇଥିଲେ । ଏକ 'ସର୍ବାଧିକ ଘୃଣିତ ନାମଧାରୀ' ବ୍ୟକ୍ତି, ଯାହାକୁ ଡି କ୍ୱିନ୍‌ସି 'ଅନ୍ଧକାରର ବାଦଦୂତ' ଆଖ୍ୟା ଦେଇଥିଲେ ଅର୍ଥାତ୍ ଜଣେ ଆଟ୍ରିଅସ୍ ଅମ୍ବେରକୁ ତାଙ୍କର ବିଦ୍ରୋହୀ ସୈନ୍ୟମାନେ ଅନୁସରଣ କରୁଥିବାରୁ ସ୍କିପିଓ ସେମାନଙ୍କୁ ଗାଳିଗୁଲଜ ଦେଇଥିଲି । ସମ୍ରାଟ ସେଭେରସ୍‌ଙ୍କ ସାମ୍ରାଜ୍ଞୀ ଜୁଲିଆଙ୍କ ନାମ ଅଗଷ୍ଟସ୍‌ଙ୍କ ବ୍ୟଭିଚାରିଣୀ କନ୍ୟାଙ୍କ ନାମ ସହ ସମାନ ହୋଇଥିବାରୁ ସାମ୍ରାଜ୍ଞୀଙ୍କ ଅନୈତିକତା ପାଇଁ ସମ୍ରାଟ ନିଜକୁ ସାନ୍ତ୍ୱନା ଦେଉଥିଲେ ।" (୧) ଠିକ୍ ସେହିପରି ଷଷ୍ଠ ଆଡ୍ରିଅନ୍ ପୋପ୍ ହେବା ସମୟରେ ତାଙ୍କର କାର୍ଡ଼ିନେଲ୍‌ମାନେ ତାହାଙ୍କୁ ନିଜର ନାମ ପରିବର୍ତ୍ତନ କରିବାକୁ ପ୍ରବର୍ତ୍ତାଇଥିଲେ । ଏହାର କାରଣ ହେଉଛି ଯେ ଯେଉଁ ସମସ୍ତ ପୋପ ତାହା କରିନଥିଲେ, ସେମାନେ ନିଜ ନିଜ ଶାସନର ପ୍ରଥମ ବର୍ଷରେ ହିଁ ମୃତ୍ୟୁମୁଖରେ ପଡ଼ିଥିଲେ । (୨)

ଭାଷାତ୍ମକ ସମସ୍ୟା ଗୁଡ଼ିକ ସମ୍ବନ୍ଧରେ ଗ୍ରୀସୀୟ-ରୋମୀୟ ଭାବୁକମାନଙ୍କର ଯେଉଁ ପ୍ରବନ୍ଧଗୁଡ଼ିକ ଉପରେ ଦୃଷ୍ଟି କେନ୍ଦ୍ରୀଭୂତ ହୋଇଥିବ, ସେ ବିଷୟରେ ଚିନ୍ତା କଲାବେଳେ ପ୍ରଥମ ଦୃଷ୍ଟିପାତରେ ଆଶ୍ଚର୍ଯ୍ୟ ଲାଗେ ଯେ ଯେଉଁମାନଙ୍କ ପରିକଳ୍ପନା ଏତେ ଅଧିକ

(୧) F. W. Farrar, *Language and Languages* ପୃ ୨୩୫-୭ ।

(୨) Mervoyer, *Etude surl' association des idies* ପୃ ୩୭୭ ।

ପରମାଣରେ ବାଚନିକ, ସେମାନଙ୍କ ମଧ୍ୟରୁ ଅନେକେ କେତେକ ପ୍ରସଙ୍ଗରେ ସେମାନଙ୍କ ମାଧ୍ୟମ ଭ୍ରାନ୍ତ ବୋଲି ସମ୍ପୂର୍ଣ୍ଣରୂପେ ସଚେତନ ଥିଲେ । **କ୍ରେଟିଲସ**ରୁ ଅସେ ଜାଣୁ ଯେ ପରବର୍ତ୍ତୀ ମୂହର ମାକ୍ଷ୍ୟ-ପ୍ରମାଣ **ସ୍ୱରୂପ** ହେବାକୁ ଶୀଘ୍ରମାନେ ଭାଷାଗତ ସମର୍ଥନ ଲୋଡ଼ିବା ବିଷୟକୁ ପାରମିନାଡ଼ୀୟ ତାର୍କିକମାନେ ଏବଂ ପ୍ରତ୍ୟୟ-ବାଦୀମାନେ ପ୍ରବଳ ବିରୋଧ କରିଥିଲେ । ଭାଷାର ପ୍ରାକ୍ସ୍ୱୀକାରଗୁଡ଼ିକ ବିରୋଧଯୋଗ୍ୟ ବୋଲି **ସ୍ୱୀକାର** କରିବାକୁ ସେତ୍ପରି ପ୍ରସ୍ତୁତ ଥିବା ବିଷୟ ପ୍ଲୋଟିନସ୍ଙ୍କ ଚିନ୍ତାଧାରାରେ ସୁସ୍ପଷ୍ଟ । ନବ୍ୟ ପ୍ଲେଟୋବାଦୀଙ୍କ ମତରେ, "ଭାଷାକୁ ଟାଣି ଓଟାରି ତହିଁରୁ ଆତ୍ମାର **ସ୍ୱଭାବ** ବ୍ୟକ୍ତ କରାଇବା କେବଳ ଅସମ୍ଭବପର । ତାହାକୁ ସେହି ଉଦ୍ଦେଶ୍ୟରେ ପ୍ରୟୋଗ କରିବାର ଚିନ୍ତା ମୁଦ୍ଧା ଅଧିକାଂଶ ଲୋକ କଦାପି କରନ୍ତୁ ନାହିଁ ।" ଅଧିକନ୍ତୁ, "ଶରୀର, ତାହାର ଗୁଣାବଳୀ ଅଥବା ନିର୍ଦ୍ଦିଷ୍ଟ ଶରୀରମାନଙ୍କ ନିର୍ଦ୍ଧାରଣ ପ୍ରତି ପ୍ରଯୁକ୍ତ ହେଲେ ଯେଉଁ ଶବ୍ଦସମଷ୍ଟି ଅର୍ଥପୂର୍ଣ୍ଣ ହେବ, ତଦ୍ବ୍ୟତୀତ ଅନ୍ୟ ଉପାୟ ଦ୍ୱାରା ଆତ୍ମା ଆଦୌ ବର୍ଣ୍ଣନୀୟ ନୁହେଁ ।" (୧)

'ଆତ୍ମା'ର ଆଲୋଚନାରେ ଭାଷାର ଭ୍ରାନ୍ତିଜନକ ଆକାରଗୁଡ଼ିକର ପରିବର୍ଜ୍ଜନ-କ୍ଷେତ୍ରରେ ବୌଦ୍ଧ ଲେଖକମାନେ ଆହୁରି ଅଧିକ ଅଗ୍ରସର ହୋଇଛନ୍ତି । ତାହାକୁ **ସତ୍ତ୍ୱ** (ଜୀବ), **ଅତ୍ତ** (ଆତ୍ମା), **ଜୀବ** (ଜୀବନୀଶକ୍ତି) ବା **ପୁଗ୍‌ଗଲ** (ପୁରୁଷ) କହିବାରେ କିଛି ଯାଏ ଆସେ ନାହିଁ :

"କାରଣ ଏଗୁଡ଼ିକ ହେଉଛି କେବଳ ନାମ, ଅଭିବ୍ୟକ୍ତି, ଭାଷାର ବୃତ୍ତି, ପୃଥିବୀରେ ସାଧାରଣଭାବେ ବ୍ୟବହୃତ ଉପାଧି । ଏଗୁଡ଼ିକରେ ଯେ ସତ୍ୟର ସନ୍ଧାନ ପାଇଛି, ସେ ହିଁ ବାସ୍ତବିକ ଏଗୁଡ଼ିକର ବ୍ୟବହାର କରେ, କିନ୍ତୁ ଏଗୁଡ଼ିକ ଦ୍ୱାରା ଭ୍ରାନ୍ତ ଢଙ୍ଗରେ ପରିଚାଳିତ ହୋଇଯାଏ ନାହିଁ ।" (୨)

ଭାଷା ପ୍ରତି ବୌଦ୍ଧମାନଙ୍କର ଅଭିବୃତ୍ତି ଅନନ୍ୟସାଧାରଣ । (୩) ଲୋକାୟତିକ ବିବରଣ କ୍ଷେତ୍ରରେ ପ୍ରଥାଗତ ଶବ୍ଦସମୂହର ବ୍ୟବହାର କରିବାକୁ ସମ୍ପୂର୍ଣ୍ଣ ପ୍ରସ୍ତୁତ ଥିଲେ, କିନ୍ତୁ ବିଶିଷ୍ଟ ଉଦ୍ଦେଶ୍ୟରେ ବ୍ୟବହାର ପାଇଁ ଅଭିଧର୍ମ କୁହାଯାଉଥିବା ଏକ ସ୍ୱତନ୍ତ୍ର ପ୍ରକାର ପ୍ରତୀକପଦ୍ଧତି ସେମାନେ ଉଦ୍ଭାବନ କରିଥିଲେ ।

---

(୧) Whittaker, *The Neo-Platonists*, ପୃ ୪୨ ।

(୨) ଦୀଘ ନିକାୟ ୧ମ, ୨୦୩; ତୁଳନା କର—C. A. F. Rhys Davids, *Buddhist Psychology* ପୃ ୩୨ ।

(୩) ପ୍ରାଚ୍ୟ ସମ୍ପ୍ରଦାୟମାନଙ୍କର ଚିନ୍ତାର ଏବଂ ଶବ୍ଦ ପ୍ରତି ସେମାନଙ୍କ ଆଚରଣର ସବିଶେଷ ଅଧ୍ୟୟନ ନିମନ୍ତେ କଥିତ ଗ୍ରନ୍ଥ, C. K. Ogden କୃତ *Word Magic*, ଦେଖ ।

ପରବର୍ତ୍ତୀ ଆରିଷ୍ଟଟଲୀୟ ସମ୍ପ୍ରଦାୟଗୁଡ଼ିକର ଏବଂ ବିଶେଷତଃ ଷ୍ଟୋଇକ୍‌ମାନଙ୍କ ଭାଷାସମ୍ବନ୍ଧୀୟ ମତର ରୋମାନ୍ ବ୍ୟାକରଣବିଶାରଦମାନଙ୍କ ଉପରେ ପ୍ରଭୂତ ପ୍ରଭାବ ରହିଥିଲା । (୧) ଏବଂ ସେମାନେ ଭାଷାତତ୍ତ୍ୱ ପ୍ରତି କେତେକ ପରିମାଣରେ ଆକୃଷ୍ଟ ହୋଇଥିଲେ । କିନ୍ତୁ ପ୍ଲେଟୋ ଏବଂ ଆରିଷ୍ଟଟଲ୍ ଯେପରି ସମସ୍ୟାସମୂହରେ ପ୍ରତୀକମାନଙ୍କ ଅଧ୍ୟୟନ ଦିଗରେ ପଦକ୍ଷେପ ନେଇଥିବା ପରି ଜଣାପଡ଼େ, ତଦ୍ରୂପ ଅଧ୍ୟୟନ ଦିଗରେ ଅଗ୍ରସର ହେବାର ସ୍ୱୀକାରୋକ୍ତିସୂଚକ କୌଣସି ସାକ୍ଷ୍ୟପ୍ରମାଣ ପ୍ରାଚୀନ କାଳରେ କୁତ୍ରାପି ମିଳେ ନାହିଁ । ଆମେ ପରେ ଦେଖିବା ଯେ ଏହାର କାରଣ ହେଉଛି ସଂକେତକୁ ସଂକେତ ସ୍ୱରୂପ ଦେଖିବା ଏବଂ ତଦ୍ୱାରା ଯେଉଁ ଅଧିକ ବ୍ୟାପକ ସଙ୍କେତସ୍ଥିତି ଉପରେ ସମସ୍ତ ଚିନ୍ତା ନିର୍ଭରଶୀଳ, ତାହା ସହିତ ସମ୍ପର୍କ ରକ୍ଷା କରି ଶବ୍ଦଗୁଡ଼ିକର କାର୍ଯ୍ୟକୁ ବୁଝିବା-ପ୍ରୟାସର ଅଭାବ । ତଥାପି ଖ୍ରୀଷ୍ଟଧର୍ମର ଅଭ୍ୟୁଦୟ ଦ୍ୱାରା ସମୀକ୍ଷଣ ମନୋବୃତ୍ତିର ଶେଷପ୍ରୟାଣର ଅବ୍ୟବହିତ ପୂର୍ବରୁ ଗ୍ରୀସୀୟ-ରୋମାନୀୟ ଜଗତରେ ଏହି ବିଷୟ ସମ୍ବନ୍ଧୀୟ କେତେକ ଉଲ୍ଲେଖନୀୟ ଆଲୋଚନା ହୋଇଥିଲା ଏବଂ କୈନ୍ଦ୍ରିକ ସମସ୍ୟାର ଯେପରି ସୂକ୍ଷ୍ମ ପରୀକ୍ଷା ତହିଁରେ କରାଯାଇଥିଲା, ତଦ୍ୱାରା ଯଥାର୍ଥ ବୈଜ୍ଞାନିକ ଅଗ୍ରଗତିର ପଥ ଉନ୍ମୁକ୍ତ ହୋଇ ପାରିଥାନ୍ତା । ଧର୍ମର ନେତାମାନେ ଏହି ବିପଦ ସମ୍ବନ୍ଧରେ ସଚେତନ ଥିଲେ ଏବଂ ଏ ବିଷୟରେ ନାଜିଆନ୍ଜସର ସେଣ୍ଟ ଗ୍ରିଗୋରିଙ୍କ ଏକ ଉକ୍ତି ମଧ୍ୟ ରହିଛି । ତହିଁରେ "ସେକ୍‌ସଟସ୍ ଓ ପିର୍‌ହୋ ସମ୍ପ୍ରଦାୟ ଏବଂ ବିରୋଧ ମନୋବୃତ୍ତି ଆମର ସମ୍ପ୍ରଦାୟ ମଧ୍ୟକୁ ଏକ ଅଶୁଭ ଓ ଅନିଷ୍ଟକର ପ୍ଲେଗ ରୋଗ ତୁଲ୍ୟ ଅନଧିକାର ପ୍ରବେଶ କରି କ୍ଷତି ଘଟାଉଥିବା" (୨) ହେତୁ ବିଶୃଙ୍ଖଳ ପରିସ୍ଥିତିର ଉଦ୍ଭବ ହୋଇଛି ବୋଲି

---

(୧) Lersch, *Die Sprachphilosophie* der Alten ୩ୟ ଖଣ୍ଡ, ପୃ ୧୮୪-୭ । ନଦୀ (flumen)ର ସଂଜ୍ଞା "ଯେକୌଣସି ଜଳରାଶି ଯାହା ପ୍ରବହମାନ" ("acquam ipsam,quae fluit") ରୂପେ ଦିଆଯିବା ପାଇଁ Aelius Gallusଙ୍କ ଉକ୍ତି ଉଦ୍ଧାର କରାଯାଏ । Gelliusଙ୍କ ମତରେ Antistius Labeo ବ୍ୟାକରଣ ଓ ଦ୍ୱନ୍ଦ୍ୱନ୍ୟାୟରେ ଅତ୍ୟନ୍ତ ଅନୁରକ୍ତ ଥିଲେ । "ଏହି ମୁଖ୍ୟ ବିଜ୍ଞାନଗୁଡ଼ିକ ନିୟମର ନିଗଡ଼ ବନ୍ଧନରୁ ବହୁ ପରିମାଣରେ ମୁକ୍ତ କରିବାକୁ ଏବଂ ଲାଟିନ ଭାଷାର ଉତ୍ପତ୍ତି ଓ ଯୌକ୍ତିକତା ପ୍ରକାଶ କରିବାକୁ ବ୍ୟବହୃତ ହେଉଥିଲା ।"

(୨) ତୁଳନା କର—N. Maccoll, *The Greek Sceptics* (ପୃ ୧୦୮) । ତହିଁରେ ଉଲ୍ଲେଖ କରାଯାଇଛି ଯେ ତେରଶହ ବର୍ଷ ପରେ ପୁଣି ଥରେ ଯେତେବେଳେ ଆପ୍ତବାକ୍ୟର ସିଦ୍ଧାନ୍ତକୁ ଆକ୍ରମଣ କରାଗଲା, ସେତେବେଳେ ଏହି ସନ୍ଦେହବାଦୀମାନଙ୍କ ଅବଦାନର ଅବଶେଷ ପ୍ରତି ସଙ୍ଗେସଙ୍ଗେ ଦୃଷ୍ଟି ଆକର୍ଷିତ ହେଲା । Foucher 'ନୂତନ ଏକାଡ଼େମୀ'ର ଇତିହାସ ସମ୍ବନ୍ଧରେ ଖଣ୍ଡେ ପୁସ୍ତକ ଲେଖିଲେ, ଏବଂ Sorbiireଙ୍କ ଦ୍ୱାରା ସେକ୍‌ସଟସ୍‌ଙ୍କ ପ୍ରବନ୍ଧଗୁଡ଼ିକ ଅନୂଦିତ ହେଲା ।

ଆପତ୍ତି କରାଯାଇଛି । ଆଲେକ୍‌ଜାଣ୍ଡ୍ରିଆରେ ପିର୍‌ହୋବାଦର ପୁନରୁତ୍ଥାନର ପ୍ରବର୍ତ୍ତକ ଏନେସିଡ଼େମସ୍ ଏବଂ ସେକ୍‌ସଟସ୍ ନାମକ ଜଣେ ଗ୍ରୀକ୍ ଡାକ୍ତର—ଏହି ଉଭୟ ବ୍ୟକ୍ତିଙ୍କ ଦ୍ୱାରା ୧୦୦ ଓ ୨୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ବସ୍ତୁତଃ ସମଗ୍ର ସନ୍ଦେହବାଦର ପରୀକ୍ଷା କରାଯାଇଥିଲା । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ କରାଯାଇଥିବା ଯେ କୌଣସି ବିଶ୍ଳେଷଣଠାରୁ ସେମାନଙ୍କ ପ୍ରଦତ୍ତ ବିଶ୍ଳେଷଣ ଅଧିକ ମୌଳିକ । (୧)

ଭାଷା ପ୍ରତି ଗ୍ରୀସୀୟ-ରୋମାନୀୟ ମନୋବୃତ୍ତିର ଏହି ସଂକ୍ଷିପ୍ତ ପର୍ଯ୍ୟାଲୋଚନା ଏ ବିଷୟର ପ୍ରାକ୍‌ବୈଜ୍ଞାନିକ ପରିକଳ୍ପନାର ଉପସ୍ଥାପନ ନିମନ୍ତେ ଯଥେଷ୍ଟ । ଅଧିକନ୍ତୁ, ପ୍ରାଚ୍ୟ ମତବାଦମାନଙ୍କ ସମ୍ୟକ୍ ସାବଲୀଳ ବୃଦ୍ଧିଠାରୁ ସୁଦ୍ଧା ଆହୁରି ଅଧିକ ପରିମାଣରେ ଆଧୁନିକ ଚିନ୍ତାଧାରା ଉପରେ ଏହାର ପ୍ରଭାବ ପଡ଼ିଥିଲା । ଯେଉଁ ବାଚନିକ ପରିବେଶରେ ସ୍କଲାଷ୍ଟିକମାନଙ୍କ ବା ଗ୍ରୀକ୍ ଦ୍ୱନ୍ଦ୍ୱତର୍କବିଦ୍‌ମାନଙ୍କ ଚିନ୍ତାଧାରା ଗଢ଼ି ଉଠିଥିଲା, ତାହାଠାରୁ ଅଧିକ ସାନ୍ଦ୍ର ପରିବେଶରେ ଅଧିକାଂଶ ଭାରତୀୟ ଦର୍ଶନର ଅଭିବୃଦ୍ଧି ଘଟିଛି । ପବିତ୍ର ଶବ୍ଦ ଓଁର ସୂତ୍ର ଓ ସୁଫି ରହସ୍ୟାନୁଭବୀଙ୍କ ବାଚନିକ ଉଦ୍‌ବୋଧରେକଠାରୁ ମୀମାଂସା-ନ୍ୟାୟ ସମ୍ପର୍କ, ଯୋଗ ଦର୍ଶନ, ବିଜ୍ଞାନବାଦର ପଦାର୍ଥ ଓ ପ୍ରଭାକର ମୀମାଂସକଙ୍କ ଚିନ୍ତାଧାରା(୨) ଅତ୍ୟଳ୍ପ ପ୍ରସିଦ୍ଧି ଲାଭ କରିନାହିଁ । ପରବର୍ତ୍ତୀକାଳରେ ସୁଫି ରହସ୍ୟାନୁଭବୀଙ୍କ (୩) ପ୍ରବନ୍ଧର କେତେକ ଅଂଶ ଓଲ୍ଡର କୁଏଙ୍କ ଦ୍ୱାରା ପୁନଃ ପ୍ରବର୍ତ୍ତିତ ହୋଇଥିଲା ।

ଟ୍ରୋବ୍ରିଅଣ୍ଡ ଯାଦୁକର (୪), ପିରାମିଡ଼ ତାହୁତ୍ୟର ମିଶରୀୟ ଯାଜକ କିମ୍ବା ଆଧୁନିକ ତତ୍ତ୍ୱବିତ୍‌ଙ୍କ ଦ୍ୱାରା ଅନୁସୃତ ଯେ କୌଣସି ପ୍ରଣାଳୀର ଅନୁରୂପ ହୋଇଥାଉ

---

(୧) R. D. Hicks, *Stoic and Epicurean* ବିଶେଷତଃ ପୃ ୩୧୦, Aenesidemus ସମ୍ବନ୍ଧୀୟ ବିବରଣୀ; ଏବଂ ପରବର୍ତ୍ତୀ ପରିଶିଷ୍ଟ-ଗ ଦ୍ରଷ୍ଟବ୍ୟ ।

(୨) Keith, *Indian Logic* ୫ମ ପରିଚ୍ଛେଦ; Dasgupta, *History of Indian Philosophy,* ୧ମ ଖଣ୍ଡ ପୃ ୧୪୮-୯, ୩୪୫—୫୪; Rama Prasad, *Self-Culture or the yogo of Patanjali* ପୃ ୮୮, ୧୪୮, ୧୫୨, ୧୫୭, ୨୧୫; Vedanta Sutras, *Sacred Books of the East* ୪୮ତମ ଖଣ୍ଡ ପୃ ୧୪୮ ।

(୩) *The Science of the Sacred Word* (ଭଗବାନ ଦାସଙ୍କ ଦ୍ୱାରା ଅନୂଦିତ); R. A. Nicholson, *Studies in Islamic Mysticism* ପୃ ୭-୯ ।

(୪) Malinowski, *Argonauts of the Western Pacific,* ପୃ ୪୦୮-୧୦ ।

ନା କାହିଁକ, ମନ୍ତ୍ର, ବାଚନିକ ଇନ୍ଦ୍ରଜାଲ ଏବଂ ବାଚନିକ ଔଷଧର ଇତିହାସ ଏକ ସ୍ୱତନ୍ତ୍ର ଅଧ୍ୟୟନୀୟ ବିଷୟ । ଉଆର୍ଡ଼ ମେଜିକ ପୁସ୍ତକରେ ଏହାର ବିଶଦ ଆଲୋଚନା ରହିଛି । ଉପସ୍ଥିତ ପରିଚ୍ଛେଦବର୍ଣ୍ଣିତ ବିଷୟର ବିସ୍ତାର ରୂପେ ଏହି ପୁସ୍ତକ ପରିକଳ୍ପିତ ।

କୌଣସି ମାନବବିଦ୍ୱେଷୀ ବାଗ୍ମୀ ବ୍ୟକ୍ତିର କାର୍ଯ୍ୟକଳାପ ଯେତେବେଳେ ବିଶ୍ୱବିଳୟର ବିଶୃଙ୍ଖଳ ହୋଇ ପ୍ରସିଦ୍ଧି ଲାଭ କରେ; କିମ୍ବା ପୁନରାବୃତ୍ତିମୂଳକ ସାମ୍ବାଦିକତା ଦ୍ୱାରା ଅନୁମୃତ ସୂଚନାର ଧୀର ମନ୍ଥର ପ୍ରଣାଳୀ ପରିବର୍ତ୍ତେ ଯେତେବେଳେ ଏକ ସୁସ୍ପଷ୍ଟ ଅଧିକାର ସ୍ଥାନ ପାଏ, ସେତିକବେଳେ ହିଁ ଶବ୍ଦମାନଙ୍କ ପ୍ରତି ଆଦିମ ମନୋବୃତ୍ତିରୁ ଚତୁର ବ୍ୟକ୍ତିମାନେ ଏବେ ମଧ୍ୟ ଯେଉଁ ପରିମାଣରେ ଫାଇଦା ଉଠାଉଛନ୍ତି, ତାହା ପୂର୍ଣ୍ଣତଃ ଧରା ପଡ଼ିଯାଏ । କିନ୍ତୁ ଠିକ୍ ଏହି ମନୋବୃତ୍ତିଗୁଡ଼ିକ ହିଁ ଶୈଶବାବସ୍ଥାରେ ସାର୍ବଜନୀନ ଓ ପ୍ରଚଳିତ ବାଚନିକତା ଦ୍ୱାରା ଏପରି ସୁଦୃଢ଼ ହୋଇଥାଏ ଯେ ସର୍ବାପେକ୍ଷା ଅଧିକ ଯଥାଯଥ ବୈଜ୍ଞାନିକ ତାଲିମ ମଧ୍ୟ ବୟସ୍କ ବ୍ୟକ୍ତିକୁ ତାହାର ଭାଷା ମାଧ୍ୟମର ତାତ୍ତ୍ୱିକ ବନ୍ଧନରୁ କେବଳ ପରିମାଣରେ ମୁକ୍ତ ରଖିବାକୁ ପ୍ରାୟ ଅକୃତକାର୍ଯ୍ୟ ହୁଏ କହିଲେ ଚଳେ । ବାସ୍ତବିକ, ଦେଖାଯାଇଛି ଯେ ଠିକ୍ ସେଇମାନେ ହିଁ ସମର୍ଥତମ ତାର୍କିକ, ଯେଉଁମାନେ ନିଜ ନିଜର ବାଚନିକ ପ୍ରବୃତ୍ତି ସାହାଯ୍ୟରେ ଅତି ଅବାସ୍ତବ ଚିନ୍ତା-ପଦ୍ଧତିକୁ ପ୍ରକଟ କରିବାରେ ଆଗେଇ ଯାଇଛନ୍ତି । ଆଧୁନିକ ତାର୍କିକ ଯେଉଁ ଜଗତରେ ବିଶ୍ୱାସ କରେ, ତାହାର ତର୍କବୁଦ୍ଧିମୂଳକ ଭିତ୍ତିଭୂମି ବୈଜ୍ଞାନିକ ପ୍ରଣାଳୀରେ ପରୀକ୍ଷିତ ହେଲେ, ଭବିଷ୍ୟତରେ ହୁଏତ ତାହାକୁ ଏକ ପ୍ରକୃତ ରହସ୍ୟାନୁଭବୀ ବୋଲି ଗଣନା କରାଯିବ ।

ସୁତରାଂ ଆଧୁନିକ ଚିନ୍ତାଧାରାର ଅଧିକ ସଂବେଗାତ୍ମକ ଦିଗ ପ୍ରତି ଦୃଷ୍ଟି ଦେଇ ଯଦି ବସ୍ତୁନିଷ୍ଠାବାଦର ଏକ ବାସ୍ତବ ଉତ୍ପତ୍ତି ଆସରର ଆମେ ସନ୍ଧାନ ପାଉ, ତେବେ ତହିଁରେ ବିସ୍ମିତ ହେବାର କିଛି ନାହିଁ । ବିଶ୍ୱାସ-ପ୍ରତିଷ୍ଠିତ ପରିକଳ୍ପନାର ବିଲକ୍ଷଣଯୁକ୍ତ ବିଶୁଦ୍ଧ ବାଚନିକ ତତ୍ତ୍ୱଗୁଡ଼ିକ ଯେଉଁ ପ୍ରଣାଳୀ ଦ୍ୱାରା ଏହିପରି ଦୁର୍ଜ୍ଜେୟ ଆକାର ଧାରଣ କରିଛନ୍ତି, ତାହାର ପରୀକ୍ଷା ନିକଟ ଅତୀତରେ ରିଗନାନୋଙ୍କ (୧) ଦ୍ୱାରା କରାଯାଇଛି । ଅନୁଭବରୁ ଯେଉଁ ଗୁଣଗୁଡ଼ିକ ପରସ୍ପର ବିରୁଦ୍ଧ ବୋଲି ଉପଲବ୍ଧ, ସେଗୁଡ଼ିକୁ କ୍ରମେ କ୍ରମେ ଭୌତିକତା-ଶୂନ୍ୟ କରି ଦିଆଯାଏ ଏବଂ ସେଗୁଡ଼ିକର ସ୍ଥାନରେ "ବୋଧଗମ୍ୟ ଅନ୍ତର୍ବସ୍ତୁବିହୀନ ଏପରି ବାଚନିକ ବହିରାବରଣ ରଖିଦିଅ ଯେ ସେଗୁଡ଼ିକର ପାରସ୍ପରିକ ଯେତେ ଅଳ୍ପ ପରିମାଣରେ

---

(୧) *The Psychology of Reasoning*, ୧୧ଶ ପରିଚ୍ଛେଦ—ତତ୍ତ୍ୱନିଷ୍ଠ ଯୁକ୍ତି ସମ୍ବନ୍ଧୀୟ ଆଲୋଚନା ।

ହେଲେ ସୁଦ୍ଧା କଳ୍ପନା ନିମନ୍ତେ ଭୌତିକତା ଯୋଗାଇବାକୁ ଯଦି ଏଗୁଡ଼ିକୁ ଛାଡ଼ି ଦିଆ-ଯାଆନ୍ତା, ତେବେ ଏଗୁଡ଼ିକର ଏକିଜ ବ୍ୟବହାର ଅନିବାର୍ଯ୍ୟରୂପେ ମନରେ ଦ୍ୱନ୍ଦ୍ୱ ଜାତ କରନ୍ତା ।" ଏହି ଭୌତିକତାଶୂନ୍ୟକରଣ ଦ୍ୱାରା ଟମାନ୍ତରାଳ ଭାବେ ପ୍ଲାଷ୍ଟିକ୍‌ବାଦର କୃତି ତୁଲ୍ୟ ଏକ ବିରାଟ ଦ୍ୱନ୍ଦ୍ୱନ୍ୟାୟମୂଳକ ସୌଧ ନିର୍ମାଣ କରାଯାଏ । ଏହାର ଉଦ୍ଦେଶ୍ୟ ହେଉଛି ସର୍ବାଧିକ ଅସମ୍ଭବ ବିଷୟରେ ସୁଦ୍ଧା ତାର୍କିକ ଅସଙ୍ଗତିର ଅଭାବ ରହିଛି ବୋଲି ମାନବୀୟ ବିଶ୍ୱର ବୁଦ୍ଧିର ଦୃଢ଼ ସମର୍ଥନ ଲାଭ କରିବା ।(୧)

ଉଦାହରଣ ସ୍ୱରୂପ, ଏହିପରିଭାବେ ଐଶ୍ୱରିକ ସତ୍ତାର ଧାରଣା ଧୀରେ ଧୀରେ "ବିଶୁଦ୍ଧ ଅଥବା ପ୍ରାୟବିଶୁଦ୍ଧ ବାଚନିକ ଗୁଣାବଳୀର ଏକ ସମଷ୍ଟି"ରେ ପର୍ଯ୍ୟବସିତ ହୋଇଛି । ତେଣୁ ପରିଶେଷରେ ଉଇଲିୟମ ଜେମସ୍‌ଙ୍କ ଭାଷାରେ ତାହା "ଦେବଶାସ୍ତ୍ର-ବିଦ୍‌ଙ୍କ ଦ୍ୱାରା କଳ୍ପିତ ତାତ୍ତ୍ୱିକ ଗୁଣାବଳୀର ଏକ ସମବାୟ ହୋଇ ରହିଛି ।" (ଭଗବାନ **ଆଦିକାରଣ** ହୋଇଥିବାରୁ ତାଙ୍କର ନିଜସ୍ୱ ସ୍ଥିତି ରହିଛି । ସେ ହେଉଛନ୍ତି ଅନିବାରଣୀୟ ଓ ପରମତତ୍ତ୍ୱ, ନିରୂପାଧିକ ରୂପେ ଅସୀମ, ସୀମାହୀନ ରୂପେ ପୂର୍ଣ୍ଣ; ସେ ଏକ ଏବଂ ଅଦ୍ୱିତୀୟ, ଆଧ୍ୟାତ୍ମିକ, ତାତ୍ତ୍ୱିକତଃ ମୌଳିକ, ଅପରିବର୍ତ୍ତନୀୟ, ଶାଶ୍ୱତ ସର୍ବଶକ୍ତିମାନ, ସର୍ବଜ୍ଞ, ବିଭୁ ଇତ୍ୟାଦି) "ଏହା ହେଉଛି କେତେକ ପାଣ୍ଡିତ୍ୟପୂର୍ଣ୍ଣ ଆଭିଧାନିକ ବିଶେଷଣର କେବଳ ସ୍ଥାନବିନିମୟ ଓ ସଂଯୋଜନ । ମନେହେବ ଯେ ଈଶ୍ୱର-ମୀମାଂସାବିଶାରଦଙ୍କ ହାତରେ ଏଗୁଡ଼ିକ ହେଉଛି କେତେକ ସମାର୍ଥକ ଶବ୍ଦର ଯାନ୍ତ୍ରିକ ଲଘୁହସ୍ତତାଲବ୍ଧ ଏକ ପଦବିଶୃଙ୍ଖଳ । ଦିବ୍ୟଦୃଷ୍ଟିର ସ୍ଥାନ ବାଚନିକତା ଅଧିକାର କରି ବସିଛି; ଜୀବନର ସ୍ଥାନରେ ରହିଛି ବ୍ୟବସାୟସ୍ୱାର୍ଥିକତା ।" (୨)

ସେହିପରି ସାଧାରଣତଃ ତତ୍ତ୍ୱମୀମାଂସୀୟ ବୋଲି କୁହାଯାଉଥିବା ଯୁକ୍ତିରେ ଭାଷାର ମୁଖ୍ୟ ଭୂମିକା ହେଉଛି, "ସପ୍ରତ୍ୟୟମାନଙ୍କ ସ୍ଥିତିସ୍ଥାପକତାରେ କୌଣସି କ୍ଷତି ନ ଘଟାଇ ଅନିର୍ଦ୍ଦିଷ୍ଟ ସ୍ୱଭାବ, ଅସ୍ପଷ୍ଟ ଓ ପରିବର୍ତ୍ତନଶୀଳ ଧାରଣାଗୁଡ଼ିକୁ ଆବଶ୍ୟକ ସମୟରେ ପୃଥିବୀରୁ ଜାଗରୁକ କରିପାରିବାର ଏକ ଦୃଢ଼ ବାଚନିକ ସମର୍ଥନ" ଯୋଗାଇବା ଏହି ଉଦ୍ଦେଶ୍ୟ ସିଦ୍ଧି ନିମନ୍ତେ ଯେଉଁ ଅଭିବ୍ୟକ୍ତିତନ୍ତ୍ରର ପ୍ରୟୋଗ କରାଯାଏ, ତାହା "ଯଥାସମ୍ଭବ ଅସ୍ପଷ୍ଟ ଓ ରହସ୍ୟଜଡ଼ିତ । ତେଣୁ ଶବେଟ ଉଲ୍ଲେଖ କରିଥିବା ସେହି ତଥାକଥିତ ପଦଗୁଡିକ, ଯାହା 'ଗୂଢ଼ତତ୍ତ୍ୱ ସହକାରେ ଲିଖିତ', ତତ୍ତ୍ୱବିଜ୍ଞାନମାନଙ୍କର

---

(୧) ତୁଳନା କର—Guignebert, "ତ୍ରିମୂର୍ତ୍ତି ସୂତ୍ର" ("*Le dogme de la Trinite*") *Scientia* ସଂଖ୍ୟା ୩୨, ୩୩, ୩୭ (୧୯୧୩-୧୪) ।

(୨) W. James, *The Varieties of Religions Experience*, ପୃ ୪୩୯-୪୭ ।

ଏତେ ପ୍ରିୟ । ଏହାର ଏକମାତ୍ର କାରଣ ହେଉଛି, ଏଗୁଡ଼ିକର ମର୍ମରେ ଯାହା ଅନୁଭୂତିକୁ କରିବାକୁ ଇଚ୍ଛା କରିବ, ତାହାର ଅନୁଭୂତି ତଥା ସମ୍ପୃକ୍ତ ସମ୍ପ୍ରତ୍ୟୟମାନଙ୍କ ଉପରେ ଆଧାରିତ ମତଗୁଡ଼ିକର ବିରୁଦ୍ଧତା ଓ ଅସଙ୍ଗତିକୁ ଲୁକ୍କାୟିତ ରଖିବା ନିମନ୍ତେ ଏଗୁଡ଼ିକ ଅତ୍ୟନ୍ତ ସମ୍ଭବରେ ଉପଯୋଗୀ ।·········ତେଣୁ ବାଚନିକ ପ୍ରତୀକମାନଙ୍କର ଭୂମିକା ହେଉଛି ପରସ୍ପର ଅସଙ୍ଗତ ଗୁଣଗୁଡ଼ିକୁ ବଳପୂର୍ବକ ଅନ୍ୱିତ କରି ରଖିବା, ଯାହାଓ ଯେଗୁଡ଼ିକ ପରସ୍ପର ବିରୋଧୀ ହେବା କାରଣରୁ ଏକ ସମୟରେ ମନଃ ସମକ୍ଷରେ ଉପସ୍ଥାପିତ ହେବା ଅସମ୍ଭବ । ତତ୍ତ୍ୱବିଜ୍ଞାନୀ ହାତରେ ଏଗୁଡ଼ିକ ରହିବାର ଗୁରୁତ୍ୱ ରହିଛି, କାରଣ ସମ୍ପୃକ୍ତ ସମ୍ପ୍ରତ୍ୟୟରୁ ଅଥବା ସଂପ୍ରତ୍ୟୟ ସମଷ୍ଟିରୁ ସେ ସତ୍ତ୍ୱକୁ ଯେପରିଭାବେ ଉପସ୍ଥାପିତ କରିବାକୁ ଇଚ୍ଛା କରୁଥାଏ, ଠିକ୍ ସେହିପରି ଭାବେ ଭିନ୍ନ ଭିନ୍ନ ସମୟରେ ଏକ ବା ଅପର ସିଦ୍ଧାନ୍ତଶୃଙ୍ଖଳ ନିଃସରଣ ଉଦ୍ଦେଶ୍ୟରେ ଏଗୁଡ଼ିକର ବ୍ୟବହାର କରିପାରିବ ।”

ପରିଶେଷରେ ଶବ୍ଦ ସମ୍ପୂର୍ଣ୍ଣରୂପେ ଚିନ୍ତାର ସ୍ଥାନ ଅଧିକାର କରେ । ମେଫିଷ୍ଟୋ-ଫେଲେସ୍ ମନ୍ତବ୍ୟ ପ୍ରକାଶ କରିଥିଲେ—ଯେତେବେଳେ ଧାରଣା ଅସଫଳ ହୁଏ, ସେତେବେଳେ ଗୋଟିଏ ଶବ୍ଦ ଆପେ ଆପେ ଆସି ଠିକ୍ ସମୟରେ ଉପସ୍ଥିତ ହୋଇଯାଏ । ଏହି ପଦ୍ଧତି କଙ୍କଡ଼ାର ଖୋଳପା ଗୁଡ଼ିବା ସଦୃଶ ବୋଲି ରିଗନାନୋ କହିବା ଯଥାର୍ଥ । “ଏହି ବାଚନିକ ଖୋଳପା ବିନା ସମସ୍ତ ବୌଦ୍ଧିକ ଅନ୍ତର୍ବସ୍ତୁର ତିରୋଧାନରେ ଏ ପ୍ରକାର ଅନ୍ତର୍ବସ୍ତୁର ଅତୀତ ସ୍ଥିତିର ସମସ୍ତ ଚିହ୍ନ ମଧ୍ୟ ତିରୋହିତ ହେବା ନିହିତ ରହିବ । କିନ୍ତୁ ଏହି ଖୋଳପା ଯାହା ସଂରକ୍ଷିତ କରେ, ତାହା ଗୋଟିଏ ସମ୍ପ୍ରତ୍ୟୟର ଅତୀତ ସ୍ଥିତି ପ୍ରମାଣ କରେ । ସମ୍ପ୍ରତ୍ୟୟର ଏକ ବାସ୍ତବ ଜୀବନ ଆଗରୁ ଥିବା ହେତୁରୁ ହିଁ, ଏବେ ମଧ୍ୟ ତାହାର ସ୍ଥିତି ରହିଛି ବୋଲି ବିନା ଦ୍ୱିଧାରେ ଗ୍ରହଣ କରାଯାଇପାରେ । ତେଣୁ ଏହି ସଂରକ୍ଷିତ ଜିନିଷଟି ସମସ୍ତ ବୌଦ୍ଧିକ ଅନ୍ତର୍ବସ୍ତୁବିରହିତ ହୋଇଥିଲେ ସୁଦ୍ଧା ସଂବାଦୀ ସଂବେଗର ସମର୍ଥନ ତଥା ତନ୍ନିମିତ୍ତ ଅନୁରାଗର ଏକ ମୂଲ୍ୟବାନ ଆଧାର ହୋଇ ସର୍ବଦା ରହିଥାଏ । ଏହି ସଂବେଗ ଏତେ ତୀବ୍ର ଯେ ଅଭିଳଷିତ ସାଦୃଶ୍ୟଗୁଡ଼ିକ ଆଉ ପ୍ରିୟବସ୍ତୁର ଉପରିଣ ନୁହନ୍ତି, ଏ କଥା ଅନୁଭୂତ ହୁଏ ନାହିଁ ।” (୧)

କିନ୍ତୁ ଏହି ଖୋଳପା, ଏହି ବାଚନିକ ଆବରଣ କେବଳ ବିଦାୟ ସମ୍ବର୍ଦ୍ଧନା-ମୂଳକ ସମର୍ଥନକାରକ ଉକ୍ତି ନୁହେଁ ଏହାର ଏକ ଅନୁଚ୍ଚାରିତ ଶକ୍ତି, ଏକ ‘ଭାବାତ୍ମକ ପ୍ରତିଧ୍ୱନି’ ରହିଛି । ଏଥିପାଇଁ ପରମତତ୍ତ୍ୱ ତୁଲ୍ୟ ପ୍ରତୀକମାନଙ୍କ ଉପଯୋଗକାରୀର ହୃଦ୍‌ବୋଧ ହୁଏ ଯେ ତାହାର ପରିଶ୍ରମ ସଂପୂର୍ଣ୍ଣ ବ୍ୟର୍ଥ ନୁହେଁ । ବର୍କଲେ କହିଛନ୍ତି, “ଭାଷା ଥରେ ସୁପରିଚିତ ହୋଇଗଲେ ଧ୍ୱନିଗୁଡ଼ିକୁ ଶୁଣିବା ବା ଅକ୍ଷରଗୁଡ଼ିକୁ ଦେଖିବା-

(୧) Rignano, କଥିତ ଗ୍ରନ୍ଥ, ୧୧ଶ ପରିଚ୍ଛେଦ ।

ମାନେ ସେହି ଭାବାବେଶଗୁଡ଼ିକର ଉଦ୍ରେକ କରେ, ଯାହା ପ୍ରଥମେ ପ୍ରତ୍ୟୟମାନଙ୍କ ମଧ୍ୟବର୍ତ୍ତିତାରେ ହିଁ ଜାତ ହୋଇଥିଲା, ଯଦିଓ ଏବେ ସେହି ପ୍ରତ୍ୟୟମାନ ସଂପୂର୍ଣ୍ଣରୂପେ ଲୁପ୍ତ ହୋଇଯାଇଛି ।" (୧) ଶବ୍ଦମାନଙ୍କ ପ୍ରତୀକାତ୍ମକ ବ୍ୟବହାରରୁ ଏହିପରି ଭାବେ ଆମେ ସେଗୁଡ଼ିକର ଆବେଗାତ୍ମକ ବ୍ୟବହାରକୁ ଗତି କରୁ ! ଏହିରୂପେ ରିବୋ ବ୍ୟବହୃତ, ଉଦାହରଣ ସ୍ୱରୂପ କବିତାରେ ବ୍ୟବହୃତ ଶବ୍ଦମାନଙ୍କ ସମ୍ବନ୍ଧରେ ଖଣ୍ଡ ଏକ ଯଥାର୍ଥ ମନ୍ତବ୍ୟ ଦେଇଛନ୍ତି, "ସେଗୁଡ଼ିକ ଆଉ ସଂକେତର କାର୍ଯ୍ୟ ନକରି ଧ୍ୱନିର କାର୍ଯ୍ୟ କରିଥାନ୍ତି । ସେଗୁଡ଼ିକ ଏକ ଆବେଗମୂଳକ ମନସ୍ତତ୍ତ୍ୱ ପାଇଁ ସଙ୍ଗୀତଲିପିର କାର୍ଯ୍ୟ କରନ୍ତି ।" (୨) ସୁତରାଂ ଯଦିଓ ଏହି ଚରମ ଅବସ୍ଥାରେ ଶବ୍ଦନାଦୋଙ୍କ ଭାଷାରେ "ତାର୍କିକ ଯୁକ୍ତି ବୌଦ୍ଧିକତା ଦୃଷ୍ଟିରୁ ସଂପୂର୍ଣ୍ଣ ଅବୋଧ ହୋଇପାରେ, ଅର୍ଥାତ୍ ତାହା ପ୍ରକୃତରେ 'ଚିନ୍ତାଶୂନ୍ୟ ସ୍ୱର ବିନ୍ୟାସ' ହୋଇପାରେ; ତଥାପି କ୍ଷତିପୂରଣ ସ୍ୱରୂପ ତାହା ଏକ ଆବେଗାତ୍ମକ ତାତ୍ପର୍ଯ୍ୟ ଆହରଣ କରେ । ଏହି ତାତ୍ପର୍ଯ୍ୟ ତାର୍କିକ ଯୁକ୍ତିର ଏକ ନିଜସ୍ୱ ବୈଶିଷ୍ଟ୍ୟ ହୋଇଯାଏ ଅର୍ଥାତ୍ ତାହା ଛାନ୍ଦସିକ ତଥା ଆବେଗ-ଉଦ୍ଦୀପକ ଏକ-ପ୍ରକାର ସଙ୍ଗୀତମୟ ଭାଷାକୁ ପରିବର୍ତ୍ତିତ ହୋଇଯାଏ ।" ଏହାର ସାଫଲ୍ୟର ସଂପୂର୍ଣ୍ଣ କାରଣ ହେଉଛି ସରଳ ମନରେ ଜାଗରୁକ ସଂକେତାତ୍ମକ ପ୍ରତିଧ୍ୱନିର ଏକ ସୁସଂବଦ୍ଧ ଶୃଙ୍ଖଳ—**ଏତ୍ ରିବୋଆତ୍ ରେକ୍ଟିଓ ସାଇତା ବାର୍ବାସ୍ ବୋମବୁମ୍ ।**

ବ୍ୟାବହାରିକ ବ୍ୟାପାରରେ ଏହି ପ୍ରବୃତ୍ତିଗୁଡ଼ିକ ନ୍ୟୂନ ଶକ୍ତିଶାଳୀ ନୁହେଁ, ବରଂ ଏହା ଏହି କ୍ଷେତ୍ରରେ ଅତ୍ୟନ୍ତ ଅଧିକ ଅନିଷ୍ଟକର । ଏଠାରେ ଡକ୍ଟର ଟ୍ରୁକ୍ସ୍ୟାଙ୍କ ଯୁକ୍ତିର ଦୃଷ୍ଟାନ୍ତ ଦେବା ହିଁ ଯଥେଷ୍ଟ ହେବ । ଏହି ଯୁକ୍ତି ସପକ୍ଷରେ ଅସଂଖ୍ୟ ସାକ୍ଷ୍ୟ-ପ୍ରମାଣ ରହିଛି । "କେତେକ ପ୍ରକାର ଚିନ୍ତାଧାରାର ପ୍ରଭାବରୁ ଓ କେତେକ ପ୍ରକାର ପ୍ରକାଶ-ଭଙ୍ଗୀର ଅଭ୍ୟାସରୁ ଆମର କହିବା ଓ ଲେଖିବା ପ୍ରଥାଗତ ହୋଇଯାଇଛି ଯେ ସତେ ଯେପରି ରୋଗ ହେଉଛି ଏକ ସ୍ୱାଭାବିକ ଜିନିଷ । ଏପ୍ରକାର **ଅନିଷ୍ଟକର** ବାଚନିକ ଅଭ୍ୟାସକୁ ବାଧାଦେବା ଆବଶ୍ୟକ, କାରଣ "ରୋଗର ବାସ୍ତବ ସ୍ଥିତି ସମ୍ବନ୍ଧୀୟ ବିଶ୍ୱାସ ପରିତ୍ୟକ୍ତ ନହେବା ପର୍ଯ୍ୟନ୍ତ ଚିକିତ୍ସାବିଜ୍ଞାନ ପରିସରରେ କୌଣସି ବିରାଟ ଅଗ୍ରଗତି ହେବାର ସମ୍ଭାବନା ନାହିଁ ।" ଆହୁରି ମଧ୍ୟ ରୁରନ୍ତ ଏହି ବାଚନିକ ସମସ୍ୟାର ସମ୍ମୁଖୀନ ହେବା ଆବଶ୍ୟକ, କାରଣ "ପ୍ରଣାଳୀ ଓ ଚିନ୍ତା ସମ୍ବନ୍ଧୀୟ ମତ ବିଷୟରେ ପ୍ରଥମରୁ

---

(୧) *Treatise* ଉପକ୍ରମଣିକା ୪୨୦ ।

(୨) *La Logique des Sentiments* ପୃ ୧୮୭ । ତୁଳନାକର—Erdmann, କଥିତ ଗ୍ରନ୍ଥ ପୃ ୧୨୦ । ଏଠାରେ ଉଦ୍ଦୀପନପଦ୍ଧତିର ଅର୍ଥାତ୍ "ଚିନ୍ତା ଓ ଚିନ୍ତାରହିତ ଉଦ୍ୟମର ସାମୟିକ ଔଜ୍ଜ୍ୱଲ୍ୟ"ର ବିବୃତି କରିଯାଇଛି ।

ନେମତ ନ ହେଲେ ପର୍ଯ୍ୟାପ୍ତ ପରିମାଣର ଉପଯୋଗୀ ମତୈକ୍ୟ ଘଟାଇବା ସମ୍ଭବପର ହେବନାହିଁ ।" (୧) ତକନ୍ଧାକଳାରେ ଚିରଣବର୍ଷର ଅଭିଜ୍ଞତା ରହିଥିବା ଜଣେ ବ୍ୟକ୍ତିଙ୍କ ମୁହଁରୁ ଆମ ପ୍ରସ୍ତାବିତ ମତର ଏପରି ଏକ ଦୃଷ୍ଟି-ଆକର୍ଷକ ସମର୍ଥନକୁ ଲଘୁ ଭାବରେ ଅଗ୍ରାହ୍ୟ କରି ଦିଆଯାଇ ନପାରେ । ଏହାକୁ ଅଗ୍ରାହ୍ୟ କରିବା କେବଳ ବାସ୍ତବ ଘଟଣା-ଗୁଡ଼ିକର ମୂଲ୍ୟାଙ୍କନରେ ଅପାମର୍ଥ୍ୟ ଉପରେ ହିଁ ପ୍ରତିଷ୍ଠିତ ହୋଇପାରେ ବୋଲି ବିଗ୍ରର କରିବା ପାଇଁ ଆହୁରି ଅଧିକ କାରଣ ଡକ୍ଟର ଫ୍ରୁକନ୍ସ୍ୟାଙ୍କ ନିଜେ ତାଙ୍କ ଗ୍ରନ୍ଥର ଅନ୍ୟ ଏକ ପୃଷ୍ଠାରେ ଦର୍ଶାଇଛନ୍ତି । (୨)

ଏପର୍ଯ୍ୟନ୍ତ ମୁଖ୍ୟ ସମସ୍ୟାର ସାକ୍ଷାତ୍ ସମାଧାନ ପ୍ରୟାସ ଦ୍ୱାରା ରହସ୍ୟ ଭେଦର ଚେଷ୍ଟା କେବଳ ଯଥାତଥା କରାଯାଇଛି । ଚତୁର୍ଦ୍ଦଶ ଶତାବ୍ଦୀରେ ଓକ୍‌କାମ୍‌ର ଉଇଲ୍-ଅମଙ୍କ ନାମମାତ୍ରବାଦମୂଳକ ବିଶ୍ଳେଷଣ ରହିଛି । ସପ୍ତଦଶ ଶତାବ୍ଦୀରେ ବେକନ୍ ଓ ହବସ୍‌ଙ୍କ କୃତ । ଲକ୍‌ଙ୍କ **ଏସେ** ଗ୍ରନ୍ଥର ତୃତୀୟ ପୁସ୍ତକ ନହିଁତ ତଥା ଲାଇବନିଜ୍‌ଙ୍କ ଏକ ଦାର୍ଶନିକ-ଭାଷା, ଏକ ସାମାନ୍ୟ ଲକ୍ଷଣର ଆବିଷ୍କାର ପ୍ରଚେଷ୍ଟାରେ ଏହି ଆଲୋଚନା ତାହାର ଶୀର୍ଷ ସ୍ଥାନରେ ପହୁଞ୍ଚେ । ବର୍କଲେ ଓ କଣ୍ଡିଲକ ଏହି ଆଲୋଚନାକୁ ଜୀବନ୍ତ ରଖନ୍ତି । ତା'ପରେ ହର୍ଣ୍ଣେଟୁକେ ଓ ତାଙ୍କର ଅନୁଗାମୀମାନଙ୍କ ଦ୍ୱାରା ଊନବିଂଶ ଶତାବ୍ଦୀର ଆନ୍ଦୋଳନ ଆରମ୍ଭ ହୁଏ । ଏଥିରେ ବିଶେଷ ପ୍ରଭାବଶାଳୀ ହେଉଛି ମିଲ୍, ଟେଏନ୍ ଓ ମଉଥନରଙ୍କ ରଚନା ।

ତୁଳନାତ୍ମକ ଭାଷାତତ୍ତ୍ୱର ପ୍ରୟାସଲବ୍ଧ ଫଳ ଷ୍ଟାଇନ୍‌ଥଲ, ମେକ୍‌ସମ୍ୟୁଲର ଏବଂ ଅନ୍ୟମାନଙ୍କ ଚେଷ୍ଟା ହେତୁ ଜନସାଧାରଣଙ୍କ ଦୃଷ୍ଟିର କେନ୍ଦ୍ରରେ ବହୁଦିନ ଧରି ରହି-ଥିଲେ ସୁଦ୍ଧା ପରିଶେଷରେ ନୈରାଶ୍ୟଜନକ ହୋଇଥିଲା । ଏଥି ସହିତ ଏଠାରେ ଆମେ ସମ୍ପୃକ୍ତ ରହିବାର ଆବଶ୍ୟକତା ନାହିଁ । **ଭାଷାବିଜ୍ଞାନମୂଳକ ଓ ସମାଜବିଜ୍ଞାନ-ମୂଳକ** ସମାଧାନଚେଷ୍ଟା ବସ୍ତୁତଃ ସମଭାବରେ ସଙ୍କେତ-ତଥା-ପ୍ରତୀକ ପରିସ୍ଥିତିର ଏକ ମୌଳିକ ବିଶ୍ଳେଷଣ ଦେବାରେ ଅକୃତକାର୍ଯ୍ୟ ହୋଇଛି ଏବଂ କ୍ଷେତ୍ର-କର୍ମୀକୁ କୌଣସି ଦିଗ୍‌ଦର୍ଶନ ଦେଇପାରିନାହିଁ । ଏହା ଡକ୍ଟର ମାଲିନୋସ୍କି ତାଙ୍କ ପ୍ରବନ୍ଧରେ ପ୍ରଦର୍ଶନ କରିଛନ୍ତି । ଏହି ପ୍ରବନ୍ଧକୁ ଆମେ ଉପସ୍ଥିତ ଗ୍ରନ୍ଥର ଏକ ପରିପୂରକ ଅଂଶ ରୂପେ ସଂଯୋଗ କରିଛୁଁ । ପରିଶିଷ୍ଟ-କରେ ଆମେ ବୈୟାକରଣିକମାନଙ୍କଦ୍ୱାରା ସୃଷ୍ଟ ବିଶୃଙ୍ଖଳାର ବର୍ଣ୍ଣନା ଦେଇଛୁଁ । ପରିଶିଷ୍ଟ ଘ-ରେ ସି. ଏସ୍. ପାର୍ସ୍ଙ୍କ ଲେଖାର ସଂକ୍ଷିପ୍ତ ବିବରଣୀ ଦେବା ବ୍ୟତୀତ ଆମେ ଆହୁରି କେତେକ ଦୃଷ୍ଟାନ୍ତ ଦେଇଛୁ । ସେଗୁଡ଼ିକରେ ସମାଧାନ ନିମନ୍ତେ

(୧) *Influenza* ୧୯୨୨ ପୃ ୧୨, ୬୧, ୫୧୨ ।

(୨) ପରବର୍ତ୍ତୀ ପରିପୂରକ—୨ର ପାଦଟୀକା ସୂଚିତ ପୃଷ୍ଠା ଦ୍ରଷ୍ଟବ୍ୟ ।

ଯେଉଁମାନେ **ଯୁକ୍ତିର** ଆଶ୍ରୟ ନେଇଛନ୍ତି ଏବଂ ଯେଉଁମାନେ ମୁଖ୍ୟତଃ **ପାରିଭାଷିକ ପଦାବଳୀ** ଉପରେ ଆସ୍ଥା ସ୍ଥାପନ କରୁଥିବା ପରି ଜଣାପଡ଼ନ୍ତି, ସେମାନଙ୍କ ପ୍ରୟାସ-ଲବ୍ଧ ଫଳର ବର୍ଣ୍ଣନା ରହିଛି । (ସମାଧାନପନ୍ଥାର ମୁଖ୍ୟ ସାତୋଟି ପ୍ରଣାଳୀ ମଧ୍ୟରୁ) ଅବଶିଷ୍ଟ ଦୁଇଟି ପ୍ରଣାଳୀକୁ ଯେଉଁ ଆଧୁନିକ ଲେଖକମାନେ ପ୍ରୟୋଗ କରିଛନ୍ତି, ସେମାନଙ୍କ ଅର୍ଥାତ୍ ତତ୍ତ୍ୱବିଜ୍ଞାନୀ ଓ ମନୋବିଜ୍ଞାନୀମାନଙ୍କ କାର୍ଯ୍ୟକଳାପ ସହିତ ଆମେ ଏହି ଗ୍ରନ୍ଥର ଅବଶିଷ୍ଟ ପରିଚ୍ଛେଦମାନଙ୍କରେ ବାରମ୍ବାର ସମ୍ପୃକ୍ତ ରହିବୁ । ଏତଦ୍‌ବ୍ୟତୀତ ଏଥିରେ ଆନଟୋଲମଙ୍କ **ଡି ଗ୍ରାମାଟିକୋରୁ** ଆରମ୍ଭକରି ଡେଲ୍‌ଗାର୍ଣ୍ଣୋ (୧୬୬୧), ଉଇଲକିନ୍‌ସ (୧୬୬୮), ଫ୍ରିକେ (୧୬୯୩)ଙ୍କ ଲେଖାର ମଧ୍ୟବର୍ତ୍ତିତାରେ ସିଲ୍‌ବେରର (୧୯୧୨)ଙ୍କ ରଚନା ତଥା କେସିରରଙ୍କ **ଫିଲୋସୋଫି ଡେର ସିମ୍ବୋଲସ୍‌ସେନ ଫୋର୍‌ମେନ୍** (୧୯୨୩) ପର୍ଯ୍ୟନ୍ତ ବାଚନିକ ସ୍ୱାଧୀନତା ହାସଲ ଦିଗରେ ମନୁଷ୍ୟର ପ୍ରଗଢ ପର୍ଯ୍ୟାଲୋଚନା କ୍ଷେତ୍ରରେ ଯାହା ପ୍ରଶଂସାଯୋଗ୍ୟ, ତାହାକୁ ପ୍ରଶଂସା କରିବାପାଇଁ ଚେଷ୍ଟା କରାଯାଇଛି । ଏହି ଚେଷ୍ଟା ଏକ ସ୍ୱତନ୍ତ୍ର ଗ୍ରନ୍ଥ **ଉଆର୍ଡ ମେଜିକ୍‌**ରେ ମଧ କରାଯାଇଛି । ଅତଏବ ଏହି ଗ୍ରନ୍ଥର ଉଲ୍ଲେଖ ଆମେ କରୁଥାଉଛୁ ।

ଏହି ସମସ୍ତ ଚେଷ୍ଟାର ପରିଣତି ସ୍ୱରୂପ ପ୍ରତୀକତତ୍ତ୍ୱର ଏକ ବିଜ୍ଞାନ ସମ୍ଭବପର ହୋଇ ପାରିଛି । କିନ୍ତୁ ଯେଉଁ ବିଶେଷ ଆକାରରେ ଶବ୍ଦ-ଶକ୍ତି ଆଧୁନିକ ଯୁଗରେ ପରିପ୍ରକାଶ ଲାଭ କରେ, ସେଗୁଡ଼ିକୁ ମନେ ରଖିବାର ଆବଶ୍ୟକତା ରହିଛି ।

ଏକ ଶତାବ୍ଦୀ ଆଗରୁ ଜଣେ ସରଳ କବି ପ୍ରଶ୍ନ କରିଥିଲେ (୧)—

ନାମ ଇନ୍ଦ୍ରଜାଲ, ଈଶ୍ୱରାନୁଗ୍ରହର ପ୍ରଭବ<br>
ଉଚ୍ଛ୍ୱାସ-ବିରହେ କିଏ ଅଛି ଗ୍ରାହ୍ୟ ନ କରିବ ?

ଏବେ ଇଟସ୍ କହିଛନ୍ତି, "ସମସ୍ତ ଧ୍ୱନି ଅସଙ୍କେତ୍ୟ, କିନ୍ତୁ ତଥାପି ସେଗୁଡ଼ିକ ଯଥାଯଥ ସଂବେଗ ଉଦ୍ରେକ କରନ୍ତି···ମୁଁ ଏକଥାକୁ ବରଂ ଏହିପରି ହିଁ ବୋଲି ଭାବିବାକୁ ଅଧିକ ପସନ୍ଦ କରେ ଯେ ଧ୍ୱନିଗୁଡ଼ିକ ଆମ ନିକଟକୁ ଏପରି କେତେକ ଅଶରୀରୀ ଶକ୍ତି ଆହ୍ୱାନ କରି ଆଣନ୍ତି, ଯାହାର ଆମ ହୃଦୟ ଉପରେ ପଦକ୍ଷେପକୁ ଆମେ ସଂବେଗ ଆଖ୍ୟା ଦେଉଁ ।"

ପ୍ରାଚୀନ ବିଶ୍ୱାସଗୁଡ଼ିକ ମୃତ ହୋଇପାରେ; କିନ୍ତୁ ପ୍ରବୃତ୍ତି ବା ଆଶା ବଳୀୟାନ ଥାଏ:—

"ଏହାହିଁ ମୋର ବିଶ୍ୱାସ ଯଦିଓ ମୁଁ ଦେଖେଁ ଯେ ସେଗୁଡ଼ିକ ନୁହନ୍ତି, ଏପରି ଶବ୍ଦମାନ ଥାଇପାରେ ଯେଉଁଗୁଡ଼ିକ ବସ୍ତୁ ହିଁ ଅଟନ୍ତି ।" (୨)

---

(୧) Campbell, *The Pleasures of Hope*.

(୨) Byron, *Childe Harold*.

ଯାହାକୁ ଆମେ ଗୋଲାପ କହୁଁ, "ତାହା ଯେ କୌଣସି ଅନ୍ୟ ନାମରେ ନାମିତ ହେଲେ ମଧ୍ୟ ସେହିପରି ସୁଗନ୍ଧ ଦେବ"—ଏକଥା କହୁଥିବାରୁ ଆମେ ଗନ୍ଧ ଅନୁଭବ କରୁଁ । କିନ୍ତୁ ଏକପ୍ରକାର ଗୋଲାପର ନାମ ଯଦି ଲଡପଡ ଗନ୍ଧଯୁକ୍ତ ହୋଇଥାନ୍ତା, ତେବେ ତାହାକୁ ପାଇ ସ୍ୱର୍ଗତ ଏମ୍.କୁଏଙ୍କ ଅନୁଗାମୀମାନେ ଉଲ୍ଲସିତ ହେବାକୁ କୁଣ୍ଠା-ବୋଧ କରନ୍ତେ । ବେର୍ଗସଁ କହୁଛନ୍ତି, "ଚମତ୍କାର ବୋଲି ମନେ କରାଯାଉଥିବା ଗୋଟିଏ ଥାଳିଆ ଖାଦ୍ୟ ଯେତେବେଳେ ମୁଁ ଖାଇବସେ, ତାହାକୁ ପସନ୍ଦ କରିବାର ସୂଚନା ଦେଇ ଯେଉଁ ନାମ ଦିଆ ଯାଇଥାଏ, ତାହା ମୋର ଅନୁଭୂତିର ଓ ଚେତନାର ମଧ୍ୟବର୍ତ୍ତୀ ହୋଇଯାଏ । ତାହାର ସୁଗନ୍ଧ ଆନନ୍ଦଦାୟକ ବୋଲି ମୁଁ ହୁଏତ ବିଶ୍ୱାସ କରିପାରେ; କିନ୍ତୁ ମନୋଯୋଗର ସାମାନ୍ୟ ପ୍ରୟାସ ହୁଏତ ପ୍ରମାଣ କରିଦେଇପାରେ ଯେ ତାହା ଠିକ୍ ନୁହେଁ ।" (୧)

ଶବ୍ଦ-ଶକ୍ତିର ସ୍ୱଭାବ ହୃଦୟଙ୍ଗମ ନକଲେ, ଅସଂଖ୍ୟ ସୂକ୍ଷ୍ମ ପ୍ରକାରରେ ଶବ୍ଦଗୁଡ଼ିକ ଆମର ଏବଂ ଆମ ଉଦ୍ଦିଷ୍ଟ ବସ୍ତୁର ମଧ୍ୟରେ ରହି ଆମକୁ ପ୍ରତାରିତ କରିପାରେ । ତର୍କ-ଶାସ୍ତ୍ରରେ ଆମେ ଦେଖିବୁ ଯେ କେତେକ କାଳ୍ପନିକ ବସ୍ତୁ, ସାମାନ୍ୟ, ଧର୍ମ ଇତ୍ୟାଦିର ସୃଷ୍ଟି କରିବାକୁ ଆମକୁ ପ୍ରତାରିତ କରନ୍ତି; ପରବର୍ତ୍ତୀ ଆଲୋଚନାରେ ଆମକୁ ଏ ବିଷୟରେ ବହୁତ କିଛି କହିବାକୁ ହେବ । ଶବ୍ଦଗୁଡ଼ିକୁ ହିଁ ଅବଧାନକେନ୍ଦ୍ର କରିବାଦ୍ୱାରା ଆମେ ସେଗୁଡ଼ିକର ଆକାରର ନିଷ୍ଫଳ ଅଧ୍ୟୟନ କରିବାକୁ ଉତ୍ସାହିତ ହେଉ ଏବଂ ଏଥି ନିମନ୍ତେ ହିଁ ବ୍ୟାକରଣ ଏତେ ପରିମାଣରେ ନିନ୍ଦିତ ହୋଇଛି । ସଂବେଗାତ୍ମକ ବଳ ମାଧ୍ୟମରେ ସେଗୁଡ଼ିକ ଏପରି ଉତ୍ତେଜନାର ଉଦ୍ରେକ କରନ୍ତି ଯେ ଆଲୋଚନା ଅଧିକାଂଶତଃ ନିଷ୍ଫଳ ହୋଇଯାଏ । ବିଭିନ୍ନ ପ୍ରକାର ଶବ୍ଦୋନ୍ମାଦ ଓ ଲିପ୍ୟୁନ୍ମାଦରୁ ନାମ ଦେବାର ସନ୍ତୋଷ କେତେ ବୁଝାଯାଇ ପାରେ ଏଥିରୁ ବ୍ୟକ୍ତିଗତ ସାମର୍ଥ୍ୟବୋଧ କାଳ୍ପନିକଭାବେ ବୃଦ୍ଧି ପାଏ ।

ଅତୀତରେ ମନୁଷ୍ୟଜାତିର ସେବାରେ ଭାଷାକୁ ଯେଉଁ ବିବିଧ ପ୍ରକାରରେ ପ୍ରୟୋଗ କରାଯାଇଛି ତାହାର ବିଚାର କଲେ ସଂଶୟାତ୍ମକ ପ୍ରତିକ୍ରିୟା ଯେ ବାରଂବାର ସୃଷ୍ଟି ହେବ, ଏଥିରେ ବିସ୍ମିତ ହେବାର କିଛି ନାହିଁ । ଜଣେ ଅପ୍ରସିଦ୍ଧ କିନ୍ତୁ ସମର୍ଥ ଲେଖକ ମନ୍ତବ୍ୟ ଦେଇଛନ୍ତି—

"ମନେକର ଜଣେ ଏକ ବିବୃତି ଦିଏ; *The gostak distims the doshes.* [**ଗୋଷ୍ଟାକ ଡୋସମାନଙ୍କୁ ଡିଷ୍ଟିମ କରେ**] । ଏହାର ଅର୍ଥ କଣ ତୁମେ ଜାଣିନାହିଁ କି ମୁଁ ମଧ୍ୟ ଜାଣିନାହିଁ । କିନ୍ତୁ ଆମେ ଏହା ଇଂରାଜୀ ବୋଲି ଧରି-ନେଲେ, ଆମେ ଜାଣୁ ଯେ *the doshes are distimmed by the gostak*

(୧) *Time and Free-will* ପୃ ୧୩୧ ।

[**ଡୋଡ଼ମାନେ ଗୋଷ୍ଠିକଦ୍ୱାରା ନିର୍ଦ୍ଧିମିତ ହୁଅନ୍ତି**] । ଆମେ ଏହା ମଧ୍ୟ ଜାଣୁ ଯେ **ଡୋଡ଼ମାନଙ୍କର ଏକ ନିର୍ଦ୍ଧିମକର୍ତ୍ତା ହେଉଛି ଏକ ଗୋଷ୍ଠିକ** । ପୁଣି ଯଦି **ଡୋଡ଼୍‌ମାନେ ଗେଲୁନ୍** ହୋଇଥାନ୍ତି, ଆମେ ଜାଣୁ ଯେ **କେତେକ ଗେଲୁନ୍ ଗୋଷ୍ଠିକଦ୍ୱାରା ନିର୍ଦ୍ଧିମିତ ହୁଅନ୍ତି** । ଏହିପରି ଭାବେ ଆମେ ଅଗ୍ରସର ହୋଇପାରୁ ଏବଂ ପ୍ରାୟତଃ ଆମେ ଏହିପରି ହିଁ ଅଗ୍ରସର ହୋଇଥାଉଁ ।"

ପୁଣି, ଦୈନନ୍ଦିନ ଜୀବନରେ କାହା ପରିକଳ୍ପିତ ଶବ୍ଦଗୁଡ଼ିକ ବ୍ୟବହୃତ ହୁଅନ୍ତି ? "ଧରିନିଅ ମେଘ ପଛରେ ଚନ୍ଦ୍ର ଠିକ୍ ଗତି କଲାବେଳେ ଜଣେ ନିଗ୍ରୋ ତା କାନ୍ଧରେ ଗୋଟିଏ ତରଭୁଜ ନାକ ଲୁହାବାଡ଼ ଉପରେ ଡେଇଁସିବା ସହିତ ସଂପୃକ୍ତ ବା ନିହିତ ଘଟଣା ସମଷ୍ଟିକୁ ଏକ ଅବିଭାଜ୍ୟ ଏକକରୂପେ କହିବା ପରିସ୍ଥିତି ଆମ ଜୀବନରେ ବାରମ୍ବାର ଘଟେନାହିଁ ; କିନ୍ତୁ ଏହି ଘଟଣାସମବାୟ ଯଦି ବାରମ୍ବାର ଘଟୁଥାନ୍ତା ଓ ଆମକୁ ଏ ବିଷୟରେ ବାରମ୍ବାର କହିବାକୁ ପଡ଼ୁଥାନ୍ତା ଏବଂ ଏହାର ଘଟିବା ଅର୍ଥନୀତିକୁ ପ୍ରଭାବିତ କରିବାର ସମ୍ଭାବନା ଥାଆନ୍ତା, ତେବେ ତାହାକୁ ବୁଝାଇବା ପାଇଁ ଆମର ହୁଏତ 'ଊପିନ୍' ପରି ଏକ ନାମ ଥାଆନ୍ତା । ତା'ପରେ ଯଥା ସମୟରେ ଲୋକେ ବାଦବିସମ୍ବାଦରେ ଲାଗିପଡ଼ନ୍ତେ—ଊପିନ୍‌ର ସ୍ଥିତିରେ ଆବଶ୍ୟକରୂପେ ଲୁହାବାଡ଼ ନିହିତ କି ନୁହେଁ ଏବଂ ଜଣେ ଶ୍ୱେତକାୟ ବ୍ୟକ୍ତି ଯଦି ଗୋଟିଏ ପଥରକାନ୍ଥ ସହିତ ଉପର୍ଯ୍ୟୁକ୍ତଭାବେ ସଂପୃକ୍ତ ହୋଇଥାନ୍ତି, ତେବେ ସେଠାରେ 'ଊପିନ୍' ପଦର ପ୍ରୟୋଗ କରଯାଇ ପାରିବ କି ନା ।" (୧)

---

(୧) A. Ingraham, *Swain School Lectures* (୧୯୦୩) ପୃ ୧୨୧-୧୮୨, "ଭାଷାର ନବବିଧ ବ୍ୟବହାର" ସମ୍ବନ୍ଧୀୟ ଆଲୋଚନା । ଏହି ନବବିଧ ବ୍ୟବହାର ନିମ୍ନୋକ୍ତ ଭାବେ ଦିଆଯାଏ :

(i) ଅତିରିକ୍ତ ଓ ବ୍ୟାଘାତକାରକ ସ୍ନାୟୁ-ଶକ୍ତିର ନିରାକରଣ ପାଇଁ ।

(ii) ଅନ୍ୟମାନଙ୍କ ଠାରେ ଅର୍ଥାତ୍ ଉଭୟ ମନୁଷ୍ୟ ଓ ଜୀବମାନଙ୍କ କ୍ଷେତ୍ରରେ ଗତିର ନିର୍ଦ୍ଦେଶ ନିମନ୍ତେ ।

(iii) ଭାବ ବିନିମୟ ନିମିତ୍ତ ।

(iv) ଅଭିବ୍ୟକ୍ତିର ମାଧ୍ୟମ ସ୍ୱରୂପ ।

(v) ଲିପିବଦ୍ଧ କରି ରଖିବା ଉଦ୍ଦେଶ୍ୟରେ ।

(vi) ଭୌତିକ ବସ୍ତୁକୁ ଗତିଶୀଳ କରିବାକୁ (ଇନ୍ଦ୍ରଜାଲ) ।

(vii) ଚିନ୍ତାର ସାଧନ ସ୍ୱରୂପ ।

(viii) କେବଳ ଧ୍ୱନିରୂପେ ଆନନ୍ଦ ଦେବାକୁ ।

(ix) ଭାଷାତତ୍ତ୍ୱବିତ୍‌ଙ୍କ ଏକ ଧନ୍ଦା ଯୋଗାଇବା ନିମନ୍ତେ ।

ଯେଉଁମାନେ ପ୍ରଥମ ଥରପାଇଁ ଶାବ୍ଦିକ ଅସୁବିଧାର ସମ୍ମୁଖୀନ ହୁଅନ୍ତି, ସେମାନଙ୍କୁ ଏହି ଅସୁବିଧାଗୁଡ଼ିକର ଅଧ୍ୟୟନ ନିମ୍ନୋକ୍ତ ସିଦ୍ଧାନ୍ତରେ ପ୍ରାୟଶଃ ଉପନୀତ କରାଏ । ସିଦ୍ଧାନ୍ତଟି ହେଉଛି ଏହା "ଏକ ଶାବ୍ଦିକ ବ୍ୟାପାର ମାତ୍ର" ଅଥବା "ଆମେ କଦାପି କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ପାରିବା ନାହିଁ—ତୁମେ ଗୋଟିଏ ପ୍ରକାରରେ କହ, ମୁଁ ଅନ୍ୟ ପ୍ରକାରରେ କହେଁ; ତେବେ ଆମେ ସେହି ଗୋଟିଏ ବିଷୟରେ କହୁଛୁଁ ବୋଲି କିପରି କେବେ ଜାଣି ପାରିବା କିପରି ?" କିନ୍ତୁ ଏହା ଠିକ୍ ନୁହେଁ । ଏହି ଅସୁବିଧାଗୁଡ଼ିକ ଯେପରିଭାବେ ସୃଷ୍ଟି ହୁଏ, ତାହାର ଦୁଇଟି ଉତ୍ତମ ଦୃଷ୍ଟାନ୍ତ ଏବେ ଉପରେ ଉଦ୍ଧୃତ ହୋଇଛି । ଏଗୁଡ଼ିକ ଯେପରିଭାବେ ସୃଷ୍ଟି ହୁଏ, ତାହାର ପୁଙ୍ଖାନୁପୁଙ୍ଖ ଅଧ୍ୟୟନ ଦ୍ୱାରା ଜଣାପଡିବ ଯେ ଭାଷାଗତ ନାସ୍ତିବାଦର କୌଣସି ଭିତ୍ତି ନାହିଁ ।

ଏ ପ୍ରକାର ନାସ୍ତିବାଦ ତଥା ଏ ପର୍ଯ୍ୟନ୍ତ ଆମେ ଆଲୋଚନା କରୁଥିବା ସଂକ୍ଷୋଭନାତ୍ମକ ପ୍ରସ୍ତାବଗୁଡ଼ିକରୁ ନିଷ୍କୃତି ପାଇବାର ସର୍ବୋତ୍ତମ ଉପାୟ ହେଉଛି ଯେପରିଭାବେ ପ୍ରତୀକଗୁଡ଼ିକ ଏହିପରି ପ୍ରଭାବ ବିସ୍ତାର କରି ଥାଆନ୍ତି ଏବଂ ଯେଉଁ ବିଭିନ୍ନ ଦୃଷ୍ଟିରୁ ସେଗୁଡିକର ଅର୍ଥ ରହିଛି ବୋଲି କୁହାଯାଏ, ସେ ସମ୍ବନ୍ଧରେ ଏକ ସୁସ୍ପଷ୍ଟ ଧାରଣା କରିବା । ଏହାର ଏକ ଅନିବାର୍ଯ୍ୟ ଉପକ୍ରମଣିକା ସ୍ୱରୂପ ସର୍ବାଧିକ ସରଳ ପ୍ରତୀକ-ପରିସ୍ଥିତିର ଏକ ବିବରଣୀ ଦେବାର ଆବଶ୍ୟକତା ଅନୁଭୂତ ହୁଏ । ଏତଦ୍ୱାରା କିପରିଭାବେ ଆଦୌ 'ଜାଣିବାକୁ' ବା 'ଚିନ୍ତା କରିବାକୁ' ଆମେ ଆରମ୍ଭ କରୁ, ତାହା ବୁଝିବାକୁ ସମର୍ଥ ହେବା ।

ପ୍ରଥମେ ଆମେ ସଂକେତର ପ୍ରସଙ୍ଗବାଦ ସମ୍ବନ୍ଧରେ ଆଲୋଚନା କରିବା । ଶବ୍ଦ ଓ ବସ୍ତୁ ଏକ ଐନ୍ଦ୍ରଜାଲିକ ବନ୍ଧନରେ ଆବଦ୍ଧ—ଏହି ଆଦିମ ଧାରଣାଉପରେ ଏହି ମତବାଦ ଆଲୋକପାତ କରିବ । ଏହାର କାରଣ ହେଉଛି—କୌଣସି ଏକ 'ପ୍ରସଙ୍ଗ କ୍ଷେତ୍ର'ରେ ଶବ୍ଦ ଓ ବସ୍ତୁ ପ୍ରକୃତରେ ଏକତ୍ରିତ ହେବା ବା ଅନ୍ୱିତ ହେବା ହେତୁରୁ ହିଁ ପ୍ରତୀକଗୁଡିକ ଆମ ଜୀବନରେ ଏତେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଥାଆନ୍ତି ଏବଂ ଏହି ଭୂମିକା ସେଗୁଡିକୁ ଯଥାର୍ଥରେ ବିଗ୍ମୟଜନକ ବସ୍ତୁ ରୂପେ କେବଳ ନୁହେଁ, ବହିର୍ଜଗତ ଉପରେ ଆମ ଶକ୍ତିର ଉତ୍ସରୂପେ ମଧ୍ୟ ଗଢ଼ି ତୋଳିଛି ।

★★★

# ତୃତୀୟ ପରିଚ୍ଛେଦ

## ସଂକେତ-ପରିସ୍ଥିତି

ପ୍ରାଥମିକ ସ୍ତରରେ ସାଧାରଣତଃ ଭାଷାର ଅଧ୍ୟୟନ ଦୁଃଖଦାୟକ ଓ ନିଷ୍ଫଳ ହୋଇଥାଏ; କିନ୍ତୁ ପ୍ରାଥମିକ ଅସୁବିଧା ଗୁଡ଼ିକ ଆନ୍ତରିକ ଅଧ୍ୟବସାୟ ତଥା ମହତ୍ ଉଦ୍ୟମ ବଳରେ ଦୂରୀଭୂତ ହେଲେ, ତତ୍ପରେ ଆମେ ପ୍ରଭୂତ ପରିମାଣରେ ଲାଭବାନ ହୋଇଥାଉଁ ।

—ଭେଲ୍‌କନେଅର୍

ଭାଷାର ପ୍ରତ୍ୟେକ ମତବାଦର କେନ୍ଦ୍ରିକ ପଦ ହେଉଛି ଅର୍ଥ । ଏକ ସନ୍ତୋଷ-ଜନକ ସଂକେତସିଦ୍ଧାନ୍ତ ବିନା ଏହାର ଆଲୋଚନା କରାଯାଇ ନ ପାରେ । କେତେକ ଦୃଷ୍ଟିରୁ (ଯହିଁରେ 'ମୋର ଅର୍ଥ'='ମୁଁ ଯାହା ଚିନ୍ତା କରୁଛି') ଉତ୍ତର ଆବଶ୍ୟକ କରୁଥିବା ପ୍ରଶ୍ନଟି ସଂକ୍ଷେପରେ ହେଉଛି, "ଆମେ କୌଣସି ବିଷୟର ବିଚାର, ବିଶ୍ୱାସ ବା ଚିନ୍ତା କଲାବେଳେ କଣ ଘଟେ, କି ପ୍ରକାର ସତ୍ତ୍ୱରେ ତାହା ପର୍ଯ୍ୟବସିତ ଏବଂ ଆମର ବିଚାରଣ, ବିଶ୍ୱସନ ବା ଚିନ୍ତନ ତୁଲ୍ୟ ମାନସିକ ଘଟଣା ସହିତ ତାହା କିପରିଭାବେ ସଂଯୁକ୍ତ ?" ଏହି ପ୍ରଶ୍ନର ପ୍ରାଚୀନ ସମାଧାନ ପନ୍ଥାର ମାଧ୍ୟମ ହେଉଛି ଅନ୍ତର୍ନିରୀକ୍ଷଣ, ଏବଂ ଅବଧାରଣର ତାର୍କିକ ବିଶ୍ଳେଷଣ । ଏହାର ପରିଣତ ସ୍ୱରୂପ ଦେଖାଯିବ ଯେ ଏହି ଦୃଷ୍ଟିକୋଣରୁ ପ୍ରଦତ୍ତ ସମସ୍ତ ଭିନ୍ନ ଭିନ୍ନ ଉତ୍ତର ଗୋଟିଏ ମତର ହିଁ ପ୍ରକାର ଭେଦ ମାତ୍ର ଏବଂ ସେହି ମତଟି ନିମ୍ନରେ ଯେଉଁ ମତର ରୂପରେଖ ଦିଆଯାଉଛି, ତାହାଠାରୁ ପୃଥକ । ଅର୍ଥାତ୍, ଏହି ଉତ୍ତରଗୁଡ଼ିକ ସମଭାବରେ ଗ୍ରହଣ କରନ୍ତି ଯେ ଆମେ କୌଣସି ବିଷୟରେ ଚିନ୍ତା କଲାବେଳେ ସେହି ବିଷୟ ସହିତ (ଅଥବା କେତେକ ସମୟରେ ଅନ୍ୟ ଏକ ବିଷୟ ସହିତ) ଆମର ଏକ ସଂପୂର୍ଣ୍ଣ ସ୍ୱତନ୍ତ୍ର ଧରଣର ସମ୍ବନ୍ଧ ଥାଏ । ଭିନ୍ନ ଭାବରେ କହିଲେ ଏଠାରେ ଚିନ୍ତନକୁ ଏକ ଅନୁପମ ଘଟଣା ବୋଲି ବିବେଚନା କରାଯାଏ । ସୁତରାଂ ପ୍ରତୀକାନ୍ତକରଣ ଏବଂ ନିର୍ଦ୍ଦେଶସମ୍ବନ୍ଧୀୟ ସମସ୍ୟାମାନଙ୍କ ଆଲୋଚନା ପୃଥକ୍ ଭାବେ କରାଯାଏ ଯତେ ଯେପରି ସେଗୁଡ଼ିକ ସହିତ ସମ୍ବନ୍ଧାନ୍ୱିତ ଅନ୍ୟ କୌଣସି ଅନୁସନ୍ଧାନ କ୍ଷେତ୍ର ନାହିଁ ।

ମନ ଓ ତାହାର ଗ୍ରାହ୍ୟ ବିଷୟର ସମ୍ବନ୍ଧକୁ ଅଦ୍ୱିତୀୟରୂପେ ପ୍ରାକ୍ ସ୍ୱୀକାର କରିନେବା ହେଉଛି ଏହି ମତଗୁଡ଼ିକର କେନ୍ଦ୍ରିକ ନୀତି; ଏତଦ୍‌ବ୍ୟତୀତ ଏଗୁଡ଼ିକ-ମଧ୍ୟରେ ଅନ୍ୟ କୌଣସି ବିଷୟରେ ସମାନତା ନାହିଁ । ଉଦାହରଣ ସ୍ୱରୂପ, କେତେକଙ୍କ-ଦ୍ୱାରା ସମ୍ଭବତଃ ଗୃହୀତ ହୁଏ ଯେ ଯେତେବେଳେ (ଧରିନିଅ) ଆମେ ଜୀବିତ ବୋଲି ଆମେ ବିଶ୍ୱାସ କରୁଥାଉଁ, ସେତେବେଳେ ଏକ ଦେଶ୍‌କାଳବହିର୍ଭୂତ ସତ୍ତ୍ୱ, ଯାହାକୁ 'ଆମେ ଜୀବିତ'-ପ୍ରତିଜ୍ଞପ୍ତି କୁହାଯିବ, ତାହା ସହିତ ଆମେ ଏକ ଅଦ୍ୱିତୀୟ ଧରଣର ସାକ୍ଷାତ୍ ସମ୍ବନ୍ଧରେ ଅନ୍ୱିତ । ଅନ୍ୟମାନେ ଚିନ୍ତା କରନ୍ତି ଯେ ସେମାନଙ୍କ ମତରେ ଏହିପରି କିଛି ନାହିଁ, ଏତଦ୍ ପରିବର୍ତ୍ତେ ଆମେ ସେତେବେଳେ ବିଭିନ୍ନ ପ୍ରକାର ସତ୍ତ୍ୱମାନଙ୍କ ସହିତ ଏକ ବହୁପଦୀ ସମ୍ବନ୍ଧରେ ଅନ୍ୱିତ । ଏହି ସମ୍ବନ୍ଧଟି ପୁଣି ଅଦ୍ୱିତୀୟ ଧରଣର । ଏହି ସତ୍ତ୍ୱମାନଙ୍କ ମଧ୍ୟରେ (ସମ୍ଭବତଃ) ଆମେ ନିଜେ ଏବଂ ନିଶ୍ଚିତରୂପେ ଏପରି କିଛି, ଯାହାକୁ ଏକ ସମ୍ପ୍ରତ୍ୟୟ (ବା 'ସାମାନ୍ୟ' ବା 'ଧର୍ମ') କୁହାଯିବ, ଅର୍ଥାତ୍ ଜୀବିତତ୍ୱ ବା ଜୀବିତ ହେବା ଥାଏ । ଉଭୟ ମତରେ ମାନସିକ ଘଟଣାରୂପେ ଏକ ଚିନ୍ତା ଏବଂ ଯାହା 'ରି' ତାହା ଚିନ୍ତା ଅର୍ଥାତ୍ ସତ୍ତ୍ୱ, ତାହା ଯାହା ହୋଇଥାଉ ନା କାହିଁକି, ଏହି ଦୁଇଟି ମଧ୍ୟରେ ଥିବା ସମ୍ବନ୍ଧ ପ୍ରକାରତା ଦୃଷ୍ଟିରୁ ଅଦ୍ୱିତୀୟ ହେବା ବିଷୟ ଏତେ ସୁପ୍ରତ୍ୟକ୍ଷ ଯେ ତହିଁରେ ସନ୍ଦେହର ଅବକାଶ ନାହିଁ ।

ବାସ୍ତବବାଦୀ ସମ୍ପ୍ରଦାୟର ଦାବୀ ହେଉଛି ଯେ ତାଙ୍କ ମତରେ ଆଧୁନିକ ବୈଜ୍ଞାନିକ ଦୃଷ୍ଟିକୋଣ ନିହିତ । ଏହି ସମ୍ପ୍ରଦାୟର ଏକ ପ୍ରତିନିଧି ହିସାବରେ ଶ୍ରୀ ମେନାର୍ଡ କିନିଜ ଯାହା କହିଛନ୍ତି ତାହାର ଉଦ୍ଧାର କରିଯାଇ ପାରେ । ତାଙ୍କ ମତରେ ଯେଉଁ ବିଭିନ୍ନ ବସ୍ତୁଶ୍ରେଣୀ ସହିତ ଆମେ ସାକ୍ଷାତ୍‌ଭାବେ ପରିଚିତ, ଦାର୍ଶନିକ ଦୃଷ୍ଟିକୋଣରୁ ଆମକୁ ସେଗୁଡ଼ିକଠାରୁ ହିଁ ଆରମ୍ଭ କରିବାକୁ ପଡ଼ିବ । "ଆମର ସାକ୍ଷାତ୍ ପରିଚିତ ଥିବା ସର୍ବପ୍ରଧାନ ବସ୍ତୁଶ୍ରେଣୀମାନଙ୍କ ମଧ୍ୟରେ ରହିଛି ଆମ ନିଜର ସମ୍ବେଦନମାନ; ଏଗୁଡ଼ିକୁ ଆମେ **ଅନୁଭବ** କରୁ ବୋଲି କୁହାଯାଇପାରେ । ତନ୍ମଧ୍ୟରେ ରହିଛି ପ୍ରତ୍ୟୟ ଏବଂ ଅର୍ଥ, ଯାହା ସମ୍ବନ୍ଧରେ ଆମର ଚିନ୍ତା ରହିଥାଏ; ଏଗୁଡ଼ିକୁ ଆମେ **ବୋଧଗମ୍ୟ** କରୁ ବୋଲି କୁହାଯାଇପାରେ । ତନ୍ମଧ୍ୟରେ ଆହୁରି ରହିଛି ଘଟଣା ବା ବୈଶିଷ୍ଟ୍ୟ ବା ଇନ୍ଦ୍ରିୟଦତ୍ତମାନଙ୍କ ସମ୍ବନ୍ଧ ବା ଅର୍ଥ; ଏଗୁଡ଼ିକୁ ଆମେ **ପ୍ରତ୍ୟକ୍ଷ** କରୁ ବୋଲି କୁହା-ଯାଇପାରେ ।······ସାକ୍ଷାତ୍ ପରିଚିତର ବସ୍ତୁମାନଙ୍କୁ ମୁଁ ସମ୍ବେଦନ, ଅର୍ଥ ଓ ପ୍ରତ୍ୟକ୍ଷ ବୋଲି କହେ । ଏଗୁଡ଼ିକଠାରୁ ପୃଥକ ହୋଇଥିବା ଜ୍ଞାନ ଓ ବିଶ୍ୱାସର ବସ୍ତୁକୁ ମୁଁ **ପ୍ରତିଜ୍ଞପ୍ତି** ବୋଲି ଅଭିହିତ କରିବି ।" ସାକ୍ଷାତ୍ ଜ୍ଞାନର ଦୃଷ୍ଟାନ୍ତ ସ୍ୱରୂପ କୁହାଯାଏ ଯେ ପୀତବର୍ଣ୍ଣ-ସମ୍ବେଦନ ସହିତ ପରିଚିତରୁ "ମୁଁ ସାକ୍ଷାତ୍‌ଭାବେ 'ମୋର ପୀତବର୍ଣ୍ଣ

ସଂବେଦନ ରହିଛି' ଏହି ପ୍ରତିଜ୍ଞପ୍ତିର ଜ୍ଞାନକୁ ଗଠନ କରିପାରେ ।" (୧) ଧାରଣା ଜନ୍ମିପାରେ ଯେ ଏହି ଅଦ୍ଭୁତ ଅଥଚ ସୁପ୍ରଚଳିତ ମତ ହେଉଛି ଗୋଟିଏ ସଂପ୍ରଦାୟର ହିଁ ବିଶେଷତ୍ୱ; କିନ୍ତୁ ଏହା ଠିକ୍ ନୁହେଁ । ଆମେ ଏଠାରେ **ଡାକ୍ ଉର୍ଗାଇଲର** ସମର୍ଥନ ବିଷୟ ଉଲ୍ଲେଖ କରିପାରୁ; ଲିପ୍‌ସ (୨) ତାଙ୍କର ଅନୁସନ୍ଧାନର ବିଶିଷ୍ଟ ବସ୍ତୁର ବିଶଦ ବର୍ଣ୍ଣନା ଦେବାକୁ ଯାଇ କହିଛନ୍ତି ଯେ ତାହା "ଦିକ୍ ରହିତ, କାଳ ରହିତ ଓ ନିର୍ବୈକ୍ତିକ"; ଏହି ମତର ଏକ ଅନୁରୂପ ମତ ହୁସେର୍ଲଙ୍କ ଭାଷା-ବିଶ୍ଳେଷଣର (୩) ବହୁ ଅଂଶକୁ ଦୋଷଦୁଷ୍ଟ କରି ପକାଇଛି; ପୁଣି ଫେନ୍ ଗିନେକେନ୍‌ଙ୍କ କଳ୍ପନାବିଳାସ ତ ଆହୁରି ଅଧିକ ଅସାଧାରଣ । ଗିନେକେନ୍ ହେଉଛନ୍ତି ଜଣେ ଚତୁର ଭାଷା-ମନୋବିଜ୍ଞାନୀ । ମାଇନଙ୍ଗଙ୍କ ଚିନ୍ତାଧାରା ଦ୍ୱାରା ତଥା ଈଶ୍ୱରତତ୍ତ୍ୱ ଦ୍ୱାରା ସେ ଯେ ପ୍ରଭାବିତ ହୋଇଥିଲେ, ଏଥିରେ ସନ୍ଦେହ ନାହିଁ । ସେ ଠିକ୍ ଏହି ମତକୁ ଏକ 'ସଂଲଗ୍ନ' ବାଦରୂପେ ଉପସ୍ଥାପିତ କରିଥିଲେ । ଏହି ଲେଖକଙ୍କ ମତାନୁସାରେ ବାଚନିକ ପ୍ରତିମା ଏବଂ ବସ୍ତୁମାନଙ୍କ ପ୍ରତିନିଧିତ୍ୱ ମାଧ୍ୟମରେ ଚିନ୍ତାର ବିବରଣୀ ଦେବା ପର୍ଯ୍ୟାପ୍ତ ନୁହେଁ । "ଆମେ ଏକ ନୂତନ ବଳର ସମ୍ମୁଖୀନ ହେଉ; ଏକ ଅନିବର୍ଦ୍ଧ୍ୟ, ସୁଲଭ୍ୟ ଓ ଜ୍ଞାନାତୀତ ଜିନିଷ······ତାହାର ମାଧ୍ୟମରେ ଆମେ ନୂତନ ଭାବେ ବୁଝୁଁ ଓ ଜାଣୁଁ । ଆମ ଜୀବସ୍ୱଭାବ ମାଧ୍ୟମରେ ଜାଣିବା ଅପେକ୍ଷା ଏହା ଅଧିକ ଉନ୍ନତ । ଆମେ···ଉପସ୍ଥିତ ସତ୍ତ୍ୱ; ଯାହା ବାସ୍ତବରେ ଓ ପ୍ରକୃତରେ ରହିଛି, ତହିଁରେ ସଂଲଗ୍ନ ରହୁଁ···ଏବଂ ଯାହା ସମ୍ଭବପର, ଯାହା **ସାର,** ତହିଁରେ ମଧ୍ୟ ସଂଲଗ୍ନ ରହୁ ।" (୪) ଏହିପରି ଏକ ମତରେ ଯେ ଚିନ୍ତନର ଏକ ବୈଜ୍ଞାନିକ ବିବରଣୀକୁ ମୂଳରୁ ହିଁ ବାଦ ଦିଆ ଯାଇଛି, ଏକଥା ସୁସ୍ପଷ୍ଟ ।

"ଆମେ ଚିନ୍ତାକଲାବେଳେ କ'ଣ ଘଟେ ?"—ଏହି ପ୍ରଶ୍ନରେ ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିର ଅନୁରକ୍ତି ରହିବା କଥା । "ଆମେ ଯେତେବେଳେ ଚିନ୍ତା କରୁଁ, ସେତେବେଳେ ଚିନ୍ତାକରୁଁ" ଏହି ଉତ୍ତରର ରୁଚିତାରୁ ଏପରି ଉତ୍ତର ଦେଉଥିବା ମତଗୁଡ଼ିକର ଅନୁରକ୍ତିର ସ୍ୱଳ୍ପତା ପ୍ରଦର୍ଶିତ ହେଉଛି ବୋଲି ବୁଝାଯାଇପାରେ । ନିମ୍ନରେ ପ୍ରଦତ୍ତ

---

(୧) *A Treatise on Probability* (୧୯୨୧), ପୃ ୧୨-୧୩ ।

(୨) *Psychologische Untersuchungen* ୨ୟ ଖଣ୍ଡ ୧ମ ବିଭାଗ "Zur 'Psychologie' und 'Philosophie'" ପୃ ୪-୧୦ ।

(୩) ପରିଶିଷ୍ଟ-ଘ ଦେଖ । ସେଠାରେ Mr. Russellଙ୍କ ଅନୁରୂପ ମତ (୧୯୦୩) ମଧ୍ୟ ରହିଛି ।

(୪) *Principles de Linguistique Psychologique* ପୃ ୫୨,୫୫ ୬୮-୯ ।

ଆଲୋଚନାରେ ସମ୍ପୂର୍ଣ୍ଣଭାବେ ଢାରଣିକତା ମାଧ୍ୟମରେ ଚନ୍ତନ-ବିବରଣୀର ରୂପରେଖ ଦେବାର ପ୍ରୟାସ କରାଯାଇଛି । ଏଥିରେ ଆପାତ ଦୃଷ୍ଟିରେ ସ୍ୱଭାବତ କୌଣସି ଅଧ୍ୱିତସ୍ତ ସମ୍ବନ୍ଧର ପ୍ରବେଶ କରାଯାଇନାହିଁ । ଏହି ଉଦ୍ଦେଶ୍ୟକୁ ଦୃଷ୍ଟିରେ ରଖି ଚନ୍ତନର କୃତ୍ରିମ ସିଦ୍ଧାନ୍ତ-ବିରୋଧୀ ଏକ ସ୍ୱାଭାବିକ ସିଦ୍ଧାନ୍ତ ଯୋଗାଇବାକୁ ସଙ୍କେତର ବିଶ୍ଳେଷଣ ଦ୍ୱାରା ଆମେ ଆରମ୍ଭ କରିବା ।

ଆମ ଜୀବନର ପ୍ରାୟ ମୂଳରୁ ଶେଷ ପର୍ଯ୍ୟନ୍ତ ବସ୍ତୁଗୁଡ଼ିକୁ ଆମେ ସଙ୍କେତରୂପେ ଗ୍ରହଣ କରୁ । ବ୍ୟାପକତମ ସମ୍ଭବପର ଅର୍ଥରେ ଅନୁଭୂତ ପଦକୁ ବ୍ୟବହାର କରି କୁହାଯାଇପାରେ ଯେ ସମସ୍ତ ଅନୁଭୂତକୁ ହୁଏତ ଭୋଗ କରାଯାଏ କିମ୍ବା ଅର୍ଥ କରାଯାଏ (ଅର୍ଥାତ୍ ସଙ୍କେତ ରୂପେ ବିଶ୍ଳେଷଣ କରାଯାଏ) ଅଥବା ଉଭୟ ଭୋଗ ଓ ଅର୍ଥ କରାଯାଏ । ଅର୍ଥକରଣ ପରସ୍ପର-ବହିର୍ଭୂତ ଅନୁଭୂତର ପରିମାଣ ନିତାନ୍ତ ସ୍ୱଳ୍ପ । ସୁତରାଂ ଅର୍ଥକରଣ ପ୍ରଣାଳୀର ଏକ ବିବରଣୀ ସଙ୍କେତ-ପରିସ୍ଥିତିକୁ ବୁଝିବାର ସ୍ୱଭାବିକ ପରି ଏବଂ ସେହି ହେତୁରୁ ତାହା ହେଉଛି ବିଜ୍ଞତାର ପ୍ରାରମ୍ଭ ସ୍ଥଳ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ଏ ପ୍ରକାର ଏକ ବିବରଣୀର ଆବଶ୍ୟକତା ମନୋବିଜ୍ଞାନର ଏକ ସାଧାରଣ ପ୍ରସଙ୍ଗ ହୋଇ ରହିଥିଲେ ସୁଦ୍ଧା ଆମ ଜ୍ଞାନର ସମାଲୋଚକ ତଥା ବ୍ୟବସ୍ଥାପକମାନଙ୍କ ମଧ୍ୟରୁ ଅଳ୍ପ କେତେକଙ୍କୁ ବାଦ ଦେଲେ ଅନ୍ୟ ସମସ୍ତେ ଏହି ଅବହେଳାର ପରିଣତିକୁ ସମ୍ପୂର୍ଣ୍ଣରୂପେ ଉପେକ୍ଷା କରି ଯାଇଛନ୍ତି ।

ଏହି ବିବରଣୀ ଯୋଗାଇବାର ପ୍ରଚେଷ୍ଟା ବହୁ ବିଭିନ୍ନ ପ୍ରକାଶଭଙ୍ଗୀରେ କରାଯାଇଛି । ସାହଚର୍ଯ୍ୟବାଦୀଙ୍କ ସୂତ୍ର (୧), ସମାକଳନ-ସିଦ୍ଧାନ୍ତ (୨) ଓ ସଂସୂଚନ-ସିଦ୍ଧାନ୍ତ (୩) ଅନ୍ତର୍ବସ୍ତୁ ଅପେକ୍ଷା ପ୍ରଣାଳୀ ମାଧ୍ୟମରେ ବିଷୟଟିକୁ ପୁନର୍ବାର ଉପସ୍ଥାପନ କରିବା ଦିଗରେ ପରିଚାଳିତ ହୋଇଛି : 'ମାନସିକ ରସାୟନ' ସ୍ଥାନରେ 'ପ୍ରବୃତ୍ତି-ଅନୁକ୍ରମ' (୪) ଅବସ୍ଥାପିତ ହେବା ଦ୍ୱାରା ସୁବିଧା ହୋଇଛି ସତ, କିନ୍ତୁ ଗୃହୀତ ମତରେ ମୌଳିକ ପରିବର୍ତ୍ତନ ହୋଇନାହିଁ । ଏହି ବିବରଣୀର ସର୍ବାଧୁନିକ ଆକାର ସେମାନଙ୍କଦ୍ୱାରା

---

(୧) D. Hartley, *Observations on Man* ଦଶମ ପ୍ରତିଜ୍ଞପ୍ତି ।

(୨) G. C. Lange, *Apperception*, ୧ମ ଭାଗ, ୧,୨ ।

(୩) I. Miller, *The Psychology of Thinking*, ପୃ ୧୬୪ ।

(୪) C. Leoyd Morgan, *Instinct and Experience* ପୃ ୧୯୪ ।

ପ୍ରଯୋଜିତ । ମନେହୁଏ, ତାଙ୍କର ପ୍ରକାଶଭଙ୍ଗୀର ନୂତନତ୍ୱ ପୁଣି ଥରେ ସେହି ବିଷୟ-ଗୁଡ଼ିକ ପ୍ରତି ଦୃଷ୍ଟି ଆକର୍ଷଣ କରିଛି, ଯାହା ନିଶ୍ଚିତ ରୂପେ ୧ ଠେ ସୁପରିଚିତ ଯେ ଗୁରୁତ୍ୱପୂର୍ଣ୍ଣ ବୋଲି ବିବେଚିତ ହେଉ ନ ଥିଲି ।

ଅନ୍ୟଥା ମୂଲ୍ୟବାନ ହେଲେ ସୁଦ୍ଧା ସମାଧାନ ପନ୍ଥାର ଏହି ପଦ୍ଧତିଗୁଡ଼ିକ ସଂକେତ-ଅର୍ଥକରଣର ଆଲୋଚନାଠାରୁ ମାନସିକ ପ୍ରଣାଳୀର ମୌଳିକ ନିୟମମାନଙ୍କ ଆଲୋଚନାକୁ ପୃଥକ୍ କରିବା ଅଭିମୁଖୀ ହୋଇଥାଏ; ଏହା ମନସ୍ତତ୍ତ୍ୱ ପକ୍ଷରେ ଦୁର୍ଭାଗ୍ୟଜନକ । ସେଗୁଡ଼ିକ ମୁଖ୍ୟତଃ ସମପ୍ରକାର ସମସ୍ୟାମାନଙ୍କ ପରସ୍ପର ଅସଂପୃକ୍ତ ଆଲୋଚନା ଦିବାକୁ ଯେ ଆମକୁ କେବଳ ପରିଚାଳିତ କରିଛି ଏକଥା ନୁହେଁ, ପୂର୍ବବର୍ତ୍ତୀ ଲେଖକମାନଙ୍କ ଦ୍ୱାରା ଯେଉଁସବୁମାନର ବିଷୟ ସୈଦ୍ଧାନ୍ତିକ ହୋଇ ଯାଇଛି, ତାହାକୁ ହୃଦୟଙ୍ଗମ କରିବା ପାଇଁ ମଧ୍ୟ ସେଗୁଡ଼ିକ ଆମକୁ ଅସମର୍ଥ କରି ପକାଇଛି ।

ଏହି ବିଷୟଟିକୁ ସର୍ବଦା କାରଣିକତା ମାଧ୍ୟମରେ ସୂତ୍ରବଦ୍ଧ କରାଯାଉଥିବାରୁ ସେହି ପରିଭାଷାର ବ୍ୟବହାର କରିବା ସୁବିଧାଜନକ ହେବ । ବୋଧଗମ୍ୟ କରିବା ନିମନ୍ତେ ଏହି ପରିଭାଷାର ବ୍ୟବହାର ପ୍ରାୟ ଅପରିହାର୍ଯ୍ୟ । ଏହାର ଯଥାର୍ଥ ସଂପ୍ରସାରଣ ବିଷୟ ମନେ-ରଖିଲେ, ଏହା ଭ୍ରାନ୍ତିକାରକ ହେବା **ଅନିବାର୍ଯ୍ୟ** ମଧ୍ୟ ନୁହେଁ । ସୁତରାଂ ଏହି ପ୍ରାଥମିକ ବିବରଣୀରେ କାରଣିକ ଭାଷାର ସଂକ୍ଷେପରେ ପ୍ରକାଶ ସାମର୍ଥ୍ୟ ଏବଂ ତାହାର ବିସ୍ତାପଦ-ଗୁଡ଼ିକ ହେତୁ ବିବୃତିଗତ ସୁବିଧା ରହିଥିବାରୁ ହିଁ ତାହାକୁ ବ୍ୟବହାର କରାଯାଉଛି । ପରବର୍ତ୍ତୀ ଅଧିକ ପୂର୍ଣ୍ଣାଙ୍ଗ ବିବରଣୀରେ କାରଣ, କାର୍ଯ୍ୟ ଓ ନିର୍ଭରଣୀଳତାର ସମସ୍ତ ଉଲ୍ଲେଖ ପରିହାର କରାଯାଇଛି । ତହିଁରେ କେବଳ ପର୍ଯ୍ୟବେକ୍ଷଣୀୟ ସହସମ୍ବନ୍ଧ ବା ଘଟଣାମାନଙ୍କ ମଧ୍ୟରେ ଥିବା ପ୍ରାସଙ୍ଗିକ ଏକରୂପତା ବିଷୟ ରହିଛି ।

ବହିଃସ୍ଥ ଉଦ୍ଦୀପନ ହେଉ ବା ଆଭ୍ୟନ୍ତରୀଣ ପ୍ରକ୍ରିୟା ହେଉ, ଯେ କୌଣସି ସଂକେତ ଜୈବିକ ବସ୍ତୁଉପରେ ପରିଣତ ଜୈବିକ ବସ୍ତୁର ଅତୀତ ଇତିହାସ ଉପରେ ଉଭୟ ସାଧାରଣ ଭାବେ ଓ ଅଧିକ ନିର୍ଦ୍ଦିଷ୍ଟଭାବେ ନିର୍ଭରଶୀଳ । ଗୋଟିଏ ଦୃଷ୍ଟିରୁ ବିଚାର କଲେ, ତାହାର ସମଗ୍ର ଇତିହାସ ଯେ ପ୍ରାସଙ୍ଗିକ, ଏଥିରେ ସନ୍ଦେହ ନାହିଁ, କିନ୍ତୁ ସେହି ଇତିହାସର ଅତୀତ ଘଟଣାବଳୀରୁ କେତେକ ଅନ୍ୟାନ୍ୟଗୁଡ଼ିକ ଅପେକ୍ଷା ଅଧିକ ସାକ୍ଷାତ୍‌ଭାବେ ଉପସ୍ଥିତ ବିକ୍ଷୋଭର ପ୍ରକୃତି ନିର୍ଦ୍ଧାରଣ କରେ । ଉଦାହରଣ ସ୍ୱରୂପ, ଆମେ ଦିଆସିଲି କାଠିଟାଏ ମାରିଲାବେଳେ ଆମର ଅଙ୍ଗଚାଳନା ଓ ଘର୍ଷଣର ଶବ୍ଦ ହେଉଛି ଉପସ୍ଥିତ ଉଦ୍ଦୀପନ । କିନ୍ତୁ ତଜ୍ଜନିତ ଯେଉଁ ଉତ୍ତେଜନାର ଉଦ୍ରେକ ହୁଏ, ତାହା ଆମେ ଆଗରୁ କେବେ ଦିଆସିଲି କାଠି ମାରିନଥିଲେ ଯାହା ହୋଇଥାନ୍ତା, ତହିଁରୁ ଭିନ୍ନ । ଆମ ଦେହ-ମନରେ ଦିଆସିଲି କାଠି

ମାରିବାର କେତେକ ସଂସ୍କାରଙ୍କନ (engrams) (୧), କେତେକ ଅବଶେଷ ଚିହ୍ନ ରହିଯାଇଥାଏ । ଆମର ବର୍ତ୍ତମାନର ମାନସିକ ପ୍ରକ୍ରିୟା କ'ଣ ହେବ, ତାହାର ନିର୍ଦ୍ଧାରଣରେ ଏଗୁଡ଼ିକ ସାହାଯ୍ୟ କରନ୍ତି । ଉଦାହରଣ ସ୍ୱରୂପ, ଏହି ମାନସିକ ପ୍ରକ୍ରିୟାରେ ଅନ୍ୟାନ୍ୟ ବିଷୟ ସହିତ ଏତେ ସଚେତନତା ରହିଛି ଯେ ଆମେ ଏକ **ଦିଆସିଲିକାଠି** ମାରୁଛୁ । ସଦୃଶ ପୂର୍ବବର୍ତ୍ତୀ ପରିସ୍ଥିତିମାନଙ୍କ ପରିଣାମ ରହି ନ ଥିଲେ, ଏ ପ୍ରକାର କୌଣସି ସଂଚେତନତା ନ ଥାନ୍ତା । ଅଧିକ ମନେକର ଯେ ଏହି ସଚେତନତା ସହିତ ଏକ ଅଗ୍ନିଶିଖାର ପ୍ରତୀକ୍ଷା ରହିଛି । ଏହି ପ୍ରତୀକ୍ଷାଟି ମଧ୍ୟ ପୂର୍ବବର୍ତ୍ତୀ ଦିଆସିଲି ମାରିବା ପରେ ଅଗ୍ନିଶିଖା ଉତ୍ପନ୍ନ ହେବା ପରିସ୍ଥିତିର ପରିଣାମଜନିତ । ପ୍ରତୀକ୍ଷାଟି ହେଉଛି ସଂସ୍କାରଙ୍କନ ସଂସୃଷ୍ଟିର ଏକ ଅଂଶର ବିକ୍ଷୋଭ । ମୂଳ ଉଦ୍ଦୀପନ ପରିସ୍ଥିତିର ହିଁ ଏକ ଅଂଶ ସହିତ ସାଦୃଶ୍ୟ ଥିବା ଏକ ଉଦ୍ଦୀପନ (ଘର୍ଷଣ) ଦ୍ୱାରା ଏହି ସଂସ୍କାରଙ୍କନ ସଂସୃଷ୍ଟି ଜାଗରୂକ ହୁଏ ।

ଅନ୍ୟ ଏକ ଉଦାହରଣ ଦେଲେ ଏ ବିଷୟଟି ସ୍ପଷ୍ଟତର ହେବ । ଅଧ୍ୟାପକ ଲଏଡ଼ ମର୍ଗାନଙ୍କ ପୁସ୍ତକ **ହେବିଟ୍ ଓ ଇନ୍‌ଷ୍ଟିଂକ୍ଟ** ପୃ ୪୧ରେ ଯେଉଁ ଗୋଟିପୋକର ଇତିହାସ ଆଂଶିକତଃ ଲିପିବଦ୍ଧ ହୋଇ ରହିଛି, ସେହି ପୋକଟି ହେଉଛି ସର୍ବାପେକ୍ଷା ଅଧିକ ପ୍ରସିଦ୍ଧ । ଏହି ପୋକର ଶରୀରରେ ହଳଦିଆ ଓ କଳାଗାର ପଡ଼ିଥିଲା । ଅଧ୍ୟାପକଙ୍କ କୁକୁଡ଼ା ଛୁଆମାନଙ୍କ ମଧ୍ୟରୁ ଗୋଟିଏ ତାହାକୁ ଖୁମ୍ପି ଦେଲା । ତାହାର ସ୍ୱାଦ ଅରୁଚିକର ହେବାରୁ କୁକୁଡ଼ା ଛୁଆଟି ତାହାକୁ ଫୋପାଡ଼ି ଦେଲା । ସେହି ସମୟ-ଠାରୁ କୁକୁଡ଼ା ଛୁଆଟି ସେହି ପ୍ରକାର ଗୋଟିପୋକ ଖୁମ୍ପିବାରୁ ନିବୃତ୍ତ ରହିଲା । କାହିଁକି ? ଏହାର କାରଣ ହେଉଛି, ଏ ପ୍ରକାର ଗୋଟିପୋକକୁ ଦେଖିବା ହେଉଛି ମୂଳ ଅନୁଭୂତିର ସମଗ୍ର ଦେଖିବା-ଖୁମ୍ପିବା-ସ୍ୱାଦ ପ୍ରସଙ୍ଗର ଏକ ଅଂଶ । ସମଗ୍ର ପ୍ରସଙ୍ଗଟି କୁକୁଡ଼ାଛୁଆଠାରେ ଯେଉଁ ବିକ୍ଷୋଭର ସୃଷ୍ଟି କରିଥିଲା, ତତ୍‌ସଦୃଶ ଏକ ବିକ୍ଷୋଭ ଏବେ ଏ ପ୍ରକାର ପୋକ ଦେଖିବା ଦ୍ୱାରା ସୃଷ୍ଟ ହୋଇଛି । ଏ ଦୁଇଟି ବିକ୍ଷୋଭର ସାଦୃଶ୍ୟ ଅନ୍ତତଃ ଖୁମ୍ପିବାରୁ

---

(୧) Semonଙ୍କ ପରିଭାଷା *Die Mneme,* ବିଶେଷତଃ ୨ୟ ଖଣ୍ଡ (ଇଂରାଜୀ ଅନୁବାଦର ବିଶେଷତଃ ପୃ ୧୩୮) । Semonଙ୍କ ମତବାଦର ଏକ ସମାଲୋଚନା ନିମନ୍ତେ କଥିତ ଗ୍ରନ୍ଥ; *Principles of Literary Criticism,* ୧୪ଶ ପରିଚ୍ଛେଦ ଏବଂ କଥିତ ଗ୍ରନ୍ଥ, *The meaning of Psychology,* ୪ର୍ଥ ପରିଚ୍ଛେଦ ଦ୍ରଷ୍ଟବ୍ୟ ।

ଜାଗ୍ରତ ରହିବା ନିମନ୍ତେ ଯଥେଷ୍ଟ । (୧) ଏଠାରେ ସ୍ୱାଦ (ମାନସିକ ପ୍ରତିମା ରୂପେ) ଘଟୁ ବା ନ ଘଟୁ କିଛି ଯାଏ ଆସେ ନାହିଁ ।

ଏହି ସରଳ ଉଦାହରଣଟି ସମସ୍ତ ଅର୍ଥକରଣରେ ଏକ ଲକ୍ଷଣଯୁକ୍ତ ଦୃଷ୍ଟାନ୍ତ । ଅର୍ଥକରଣର ବିଶେଷତ୍ୱ ହେଉଛି, ଅତୀତରେ ଯଦି ଗୋଟିଏ ପ୍ରସଙ୍ଗ ଆମଠାରେ କୌଣସି ପ୍ରତିକ୍ରିୟାର ଉଦ୍ରେକ କରିଥାଏ, ତେବେ ସେହି ପ୍ରସଙ୍ଗର କେବଳ ଏକ ଅଂଶ ପୁନରପି ଘଟିବାଦ୍ୱାରା ଅତୀତର ପ୍ରତିକ୍ରିୟା ପରି ଏକ ପ୍ରତିକ୍ରିୟାର ସୃଷ୍ଟି ହୁଏ । (୨) ସଙ୍କେତ ହେଉଛି ସର୍ବଦା ମୂଳ ଉଦ୍ଦୀପନର କୌଣସି ଅଂଶ ସଦୃଶ ଏକ ଉଦ୍ଦୀପନ; ଏହା ମୂଳ ଉଦ୍ଦୀପନଦ୍ୱାରା ଗଠିତ ସଂସ୍କାରଙ୍କନ (୩) ଜାଗ୍ରତ କରିବା ନିମନ୍ତେ ପର୍ଯ୍ୟାପ୍ତ ।

ସଂସ୍କାରଙ୍କନ ହେଉଛି ଉଦ୍ଦୀପନ ପ୍ରତି ଜୈବିକ ବସ୍ତୁଦ୍ୱାରା ଗଠିତ ଅନୁକୂଳନର (୪) ଅବଶେଷ ଚିହ୍ନ । ଏକ ସଂସ୍କାରଙ୍କନର ଜାଗୃତହେତୁକ ମାନସିକ

---

(୧) ଆବଶ୍ୟକ ସାଦୃଶ୍ୟ ପରିମାଣ ବିଷୟରେ ମତାନୈକ୍ୟ ରହିଛି । ଏଠାରେ ହଳଦିଆ ଓ କଳାରଙ୍ଗ ହେଉଛି ଅରୁଚିକର ସ୍ୱାଦର ସଙ୍କେତ ।

(୨) ସମଗ୍ରାକୃତି-ମନୋବିଜ୍ଞାନର ପରିଭାଷାରେ ଯଦି ଏକ 'ସମଗ୍ରାକୃତି' ('gestalt') ବା 'ସଂସ୍ଥାନ' ('configuration') ଗଠିତ ହୋଇ ଯାଇଛି, ତେବେ ଏକ ବ୍ୟାହତ ତନ୍ତ୍ର ପୂର୍ବବର୍ତ୍ତୀ ଘଟଣା ନିର୍ଦ୍ଧାରିତ 'ଶେଷାବସ୍ଥା' ('endstate') ଆଡ଼କୁ ଗତିଶୀଳ ହେବ । ଏହି ମତ ଓ ପରିଭାଷା କଥିତ ଗ୍ରନ୍ଥ, *The meaning of psychology* ପୃ ୧୦୮-୧୧ ଏବଂ ପୃ ୧୧୪-୧୫ ରେ ଆଲୋଚିତ ହୋଇଛି । ସେଠାରେ ଏକ ଅନୁଚ୍ଛେଦ ରହିଛି; ଦେଖାଯିବ ଯେ ତହିଁରେ ରହିଥିବା ଛଅଗୋଟି ବିଭିନ୍ନ ଶବ୍ଦ-ସମଷ୍ଟି ପରିବର୍ତ୍ତେ ଇଚ୍ଛାକଲେ **ସମଗ୍ରାକୃତି** ଶବ୍ଦର ବ୍ୟବହାର କରାଯାଇ ପାରିବ, (ଯଦିଓ ଅନୁଚ୍ଛେଦଟି ଯେପରିଭାବେ ରହିଛି, ତାହା ଅଧିକ ସୁସ୍ପଷ୍ଟ ବୋଲି ମନେହୁଏ) ।

(୩) ପାଠକ ଯଦି ସଂସ୍କାରଙ୍କନମାନଙ୍କ ସମ୍ବନ୍ଧରେ ସନ୍ଦେହାନ୍ୱିତ ହୁଅନ୍ତି, ତେବେ ସେ ଏଠାରେ "ମୂଳ ଉଦ୍ଦୀପନ ଦ୍ୱାରା ସୃଷ୍ଟ ବିକ୍ଷୋଭ ସଦୃଶ ଏକ ବିକ୍ଷୋଭ ଜାଗ୍ରତ କରିବା" ବୋଲି ପଢ଼ିପାରନ୍ତି ।

(୪) ଏହା ଅନିବାର୍ଯ୍ୟ ରୂପେ ଠିକ୍ ବା ଯଥୋପଯୁକ୍ତ ଅନୁକୂଳନ (adaptation) ନହୋଇ ପାରେ । ଯେପର୍ଯ୍ୟନ୍ତ ଅନୁକୂଳନଟି ସଂଜ୍ଞାନାତ୍ମକ, କେବଳ ତାହାର ହିଁ ବିଚାର ଆମେ ଏଠାରେ କରୁଛୁ । ଏହି ପ୍ରଣାଳୀର ଭାବାତ୍ମକ ବା ସଂକଳ୍ପାତ୍ମକ ବୈଶିଷ୍ଟ୍ୟକୁ ଏଠାରେ ଉପେକ୍ଷା କରି ଦିଆଯାଇପାରେ ।

ପ୍ରକ୍ରିୟା (୧) ମଧ୍ୟ ହେଉଛି ଏହିପରି ଏକ ଅନୁକୂଳନ । ଏହା ସଙ୍କେତନାତ୍ମକ ହୋଇଥିବା ଅବସ୍ଥାରେ, ଯାହା ପ୍ରତି ଏହା ଅନୁକୂଳିତ, ତାହା ହେଉଛି ଏହାର ନିର୍ଦ୍ଦେଶ୍ୟ ଏବଂ ତାହା ହେଉଛି ଯାହା ପରିବର୍ତ୍ତେ ବହିଷ୍ଠାଭିକାରକ ସଙ୍କେତଟି ବ୍ୟବହୃତ ବା ଯାହା ସଙ୍କେତଦ୍ୱାରା ଜ୍ଞାପିତ ।

'ଅନୁକୂଳିତ' ପଦର ବ୍ୟବହାର ସୁବିଧାଜନକ ହୋଇଥିଲେ ହେଁ ଏହି ବିବରଣୀକୁ ସୁସ୍ପଷ୍ଟ କରିବା ନିମନ୍ତେ ତାହାର ବିଶଦୀକରଣ ଆବଶ୍ୟକ । ଉପସ୍ଥିତ ପରିଚ୍ଛେଦର ଅବଶିଷ୍ଟାଂଶ ଏହି ବିଶଦୀକରଣ ସହିତ ସମ୍ପୃକ୍ତ ରହିବ । ଆମ ଦୃଷ୍ଟାନ୍ତର ବିନ୍ଦୁରକୁ ଫେରି ଧରି ନିଆଯାଉ ଯେ ଦିଆସିଲି କାଠି ଅଗ୍ନିର ଉଦ୍ରେକ କରେ ଏବଂ ଆମେ ଏକ ଅଗ୍ନିଶିଖାର ପ୍ରତୀକ୍ଷା କରୁଛୁ । ଏହି କ୍ଷେତ୍ରରେ ଅଗ୍ନିଶିଖା ହେଉଛି ଯାହାପ୍ରତି ଆମେ ଅନୁକୂଳିତ । ଆହୁରି ବିସ୍ତୃତଭାବେ କହିଲେ ମାନସିକ ପ୍ରକ୍ରିୟା ଅର୍ଥାତ୍ ପ୍ରତୀକ୍ଷାଟି ହେଉଛି ଅତୀତରେ ଅଗ୍ନିଶିଖାଗୁଡ଼ିକ ଦ୍ୱାରା ସଜାତ ପ୍ରକ୍ରିୟାଗୁଡ଼ିକ ସଦୃଶ, ଅଧିକନ୍ତୁ ଏହା ଭବିଷ୍ୟତ 'ଆଡ଼କୁ ନିର୍ଦ୍ଦେଶିତ' । ଏହି 'ଆଡ଼କୁ ନିର୍ଦ୍ଦେଶିତ' ଅଭିବ୍ୟକ୍ତିଟି କାହାପାଇଁ ବ୍ୟବହୃତ, ତାହା ଆମେ ଯଦି ଆବିଷ୍କାର କରିପାରିବା, ତେବେ ଆମର ଅର୍ଥକରଣ ବିବରଣୀର ମୁଖ୍ୟ ଅଂଶ ପୂରଣ ହୋଇଯିବ ।

ଭବିଷ୍ୟତ 'ଆଡ଼କୁ ନିର୍ଦ୍ଦେଶିତ' ହେବା ବ୍ୟତୀତ ଆମ ପ୍ରତୀକ୍ଷା ଅଗ୍ନିଶିଖା 'ଆଡ଼କୁ ନିର୍ଦ୍ଦେଶିତ' ମଧ୍ୟ ହୋଇଥାଏ । କିନ୍ତୁ ଏଠାରେ **'ଦ୍ୱାରା ସୃଷ୍ଟ ବିଷୟ ସଦୃଶ'** ଠାରୁ ଅଧିକ କିଛି ପରିବର୍ତ୍ତେ 'ଆଡ଼କୁ ନିର୍ଦ୍ଦେଶିତ' ବ୍ୟବହୃତ ହୋଇନାହିଁ । ଗୋଟିଏ ଚିନ୍ତା ଅଗ୍ନିଶିଖା ଆଡ଼କୁ ନିର୍ଦ୍ଦେଶିତ, ଯେତେବେଳେ ତାହା କୌଣସି ଗୁଣରେ ଅଗ୍ନିଶିଖାଦ୍ୱାରା ସୃଷ୍ଟ ଚିନ୍ତାଗୁଡ଼ିକ ସଦୃଶ । ଆଗରୁ ଉଲ୍ଲିଖିତ ହୋଇଛି ଯେ କାରଣିକ ଭାଷାର ଦୋଷଗୁଡ଼ିକ ଦ୍ୱାରା ଆମେ ଏଠାରେ ଭ୍ରାନ୍ତ ଦିଗରେ ପରିଚାଳିତ ହେବା ଠିକ୍ ହେବନାହିଁ । ପକ୍ଷାନ୍ତରେ ଏହିପରିଭାବେ ସୂଚିତ ସମାଧାନ ପନ୍ଥାକୁ ଆମେ ପରିହାର କରିବା ମଧ୍ୟ ଉଚିତ ହେବନାହିଁ । ଆମେ ପରେ ଦେଖିବା ଯେ ଏହି ଭାଷାର ଯଦି ସଂସ୍କାର କରାଯାଏ, ତେବେ 'ଆଡ଼କୁ ନିର୍ଦ୍ଦେଶିତ' ପରିବର୍ତ୍ତେ ଏ ପ୍ରକାର ଅଭିବ୍ୟକ୍ତିର

---

(୧) ମନସ୍ତାତ୍ତ୍ୱିକ ସମାନ୍ତରବାଦ, ଅନ୍ୟୋନ୍ୟ କ୍ରିୟା ଏବଂ ଦ୍ୱିପକ୍ଷ ପ୍ରକଳ୍ପ ବିଷୟରେ ଏଠାରେ ପ୍ରଦତ୍ତ ବିବରଣୀ ନିରପେକ୍ଷ ବୋଲି ଗ୍ରହଣ କରାଯାଇ ପାରେ, କାରଣ ଶରୀର-ମନ-ସମ୍ବନ୍ଧ ବିଷୟକ ସମସ୍ୟାଟି ଏକ ସମସ୍ୟାଭାସ ମାତ୍ର ହୋଇ ନଥିଲେ, ତାହା ହେଉଛି ଏକ ପରବର୍ତ୍ତୀ ସମସ୍ୟା । ତୁଳନାକର—୪ର୍ଥ ପରିଚ୍ଛେଦ, ପଦଟୀକା ସୂଚିତ ପୃଷ୍ଠା ଏବଂ କଥିତ ଗ୍ରନ୍ଥ, *The Meaning of Psychology*, ୨ୟ ପରିଚ୍ଛେଦ ।

ବ୍ୟବହାର ଅଦ୍ଭୁତ ମନେ ହେବନାହିଁ । ଅଧିକନ୍ତୁ ଏ ପ୍ରକାର ପରିବର୍ତ୍ତିତ 'ଭବିଷ୍ୟତ ଆଡ଼କୁ ନିର୍ଦ୍ଦେଶନା' କ୍ଷେତ୍ରରେ ମଧ୍ୟ ଯଥୋପଯୁକ୍ତ ହେବ ଏବଂ ବସ୍ତୁତଃ ସାଧାରଣଭାବେ ଚିନ୍ତନ ପ୍ରଣାଳୀର ନିର୍ଦ୍ଦେଶନା ବା **ନିର୍ଦ୍ଦେଶ** ବିଷୟର ବ୍ୟାଖ୍ୟା ହେବ ।

କାରଣର ଅପରିମାର୍ଜିତ ଧାରଣା ଏହି କ୍ଷେତ୍ରରେ ହିଁ ବିଶେଷତଃ ଭ୍ରାନ୍ତ କାରକ; ଏହା ସର୍ବାଧିକ ଦୁଃସାହସିକ ଉକ୍ତିକୁ (୧) ସୂଚା 'ସମ୍ବନ୍ଧରେ ଚିନ୍ତା କରିବା' ଓ

(୧) ନିକଟ ଅତୀତରେ Mr. E.B. Holt ଓ Mr. Russell ନିର୍ଦ୍ଦେଶର କାରଣବାଦ ବିପକ୍ଷରେ ମନ୍ତବ୍ୟ କରିଛନ୍ତି । ଏମାନେ ହେଉଛନ୍ତି ବ୍ୟତିକ୍ରମ; କିନ୍ତୁ ଏମାନେ ମଧ୍ୟ ଏହି ମତକୁ ନିର୍ଦ୍ଦିଷ୍ଟ ରୂପ ଦେବାରେ ସଫଳ ହୋଇନାହାନ୍ତି । Mr. E.B. Holtଙ୍କ ମତ ହେଉଛି (*The Trendian wish*, ପୃ ୭୮) ଯେ ଆଚରଣରେ "ପରିବେଶ ପ୍ରତି ଏକ ଯଥାର୍ଥ ବାସ୍ତବ ନିର୍ଦ୍ଦେଶ" ଥାଏ; ତଥାପି ସେ କହିଛନ୍ତି ଯେ "ବିଭ୍ରମ (hallucination) ପରି କ୍ଷେତ୍ରରେ ଅବର୍ତ୍ତମାନ ବସ୍ତୁ ପ୍ରତି ଜଣେ ଯେତେବେଳେ ସଚେତନ ହୁଏ, ସେଠାରେ ମଧ୍ୟ ତାହାର ଶରୀର ସେହି ବସ୍ତୁଗୁଡ଼ିକ ପ୍ରତି ସମାଯୋଜିତ ହୋଇ ରହେ, ଯଦି ଯେପରି ସେଗୁଡିକ ରହିଛନ୍ତି", ପୁଣି ଅନ୍ୟତ୍ର ସେ କହିଛନ୍ତି (ପୃ ୨୦୨) "ଗୋଟିଏ ପିଲା ମାଛ ମାରିବାକୁ ଯାଏ କାହିଁକି ?...... କାରଣ ଏହି ପ୍ରକାର ଏକ ପରିବେଶସ୍ଥ ବସ୍ତୁ ପ୍ରତି, ଅର୍ଥାତ୍ ପୋଖରୀରେ ମାଛ ପ୍ରତି ଏକ ନିର୍ଦ୍ଦିଷ୍ଟ ପ୍ରକାର ପ୍ରତିକ୍ରିୟା ନିମନ୍ତେ ତାହାର ବର୍ଦ୍ଧନଶୀଳ ଦେହ-ମନର ଆଚରଣ ସଗଠିତ ହୋଇସାରିଛି ।......ପିଲାଟିର ଚିନ୍ତା (ଅନ୍ତର୍ବସ୍ତୁ) ହେଉଛି ମାଛ ।" ଦେଖାଯିବ ଯେ ଉପସ୍ଥିତ ପରିଚ୍ଛେଦରେ ଯେଉଁ ନିର୍ଦ୍ଦେଶ-ପ୍ରସଙ୍ଗବାଦର ରୂପରେଖ ଦିଆ-ଯାଇଛି, ତାହା ନିର୍ଦ୍ଦିଷ୍ଟ ପ୍ରକାର ପ୍ରତିକ୍ରିୟାର ଏପରି ଏକ ବିବରଣୀ ଯୋଗାଏ, ଯାହା ଭ୍ରାନ୍ତ ଅଥବା ଯଥାର୍ଥ ଭାବରେ ଅନୁକୂଳିତ ଆଚରଣ କ୍ଷେତ୍ରରେ ସମଭାବରେ ପ୍ରଯୋଜ୍ୟ । Mr, Holtଙ୍କ ବିବରଣୀରେ ଏହା ସମ୍ଭବପର ନୁହେଁ । ପକ୍ଷାନ୍ତରେ, Mr. Russell ଙ୍କ ବକ୍ତବ୍ୟ ବିଗ୍ଚର କଲେ ଦେଖାଯିବ ଯେ Mr. Holtଙ୍କ ପରି ସେ ମଧ୍ୟ ମନ ଓ ବସ୍ତୁ ମଧ୍ୟରେ ସାକ୍ଷାତ୍-ଜ୍ଞାନ-ସମ୍ବନ୍ଧ ମତବାଦକୁ ଏବେ ପରିହାର କରିଛନ୍ତି । କିନ୍ତୁ ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ଆଲୋଚନାରୁ ଉଠୁଥିବା ବିଚାରଗୁଡ଼ିକୁ ସେ ତାଙ୍କର *Analysis of Mind* ର କାରଣିକତା ସମ୍ବନ୍ଧୀୟ ବିବରଣୀରେ ପ୍ରବେଶ କରାଇବା ଦ୍ୱାରା ଏହି ବିବରଣୀର ଉପସ୍ଥାପନକୁ ଅସ୍ପଷ୍ଟ କରିପକାଇଛନ୍ତି । ସେ କହିଛନ୍ତି (ପୃ ୨୩୫), "ଏହା ଏକ ନିତାନ୍ତ ଅସାଧାରଣ ବିଷୟ ଯେ ଅର୍ଥ ହେଉଛି ଏକ; କିନ୍ତୁ ତାହା ଯେଉଁ ବାସ୍ତବ ନିର୍ଦ୍ଦେଶର ସୃଷ୍ଟି କରେ, ତାହା ହେଉଛି ଦ୍ୱୈଧ ଅର୍ଥାତ୍ ସତ୍ୟ ଏବଂ ମିଥ୍ୟା ।" ଜଟିଳ ନିର୍ଦ୍ଦେଶର ବିଶ୍ଳେଷଣ କଲାବେଳେ ଆମେ ଦେଖିବା, କିପରି ଏହି ଅସଙ୍ଗତି ନିରାକୃତ

'ଦ୍ୱାରା ସୃଷ୍ଟହେବା' ଅଭିବ୍ୟକ୍ତି ଦୁଇଟି ସମତୁଲ୍ୟ ବୋଲି ଗ୍ରହଣ କରିବାକୁ ପଷ୍ଟାଭିପଦ କରାଇଛୁ । 'ମୁଁ କ ସମ୍ବନ୍ଧରେ ଚିନ୍ତା କରୁଛି' ବୋଲି କହିବା ଯାହା, 'ମୋର ଚିନ୍ତା କ ଦ୍ୱାରା ସୃଷ୍ଟ ହୋଇଛି' ବୋଲି କହିବା ତାହା—ଏହି ପ୍ରସ୍ତାବଟି ଯେ କୌଣସି ସୁସ୍ଥମତି ବ୍ୟକ୍ତି ପକ୍ଷରେ ଚମକପ୍ରଦ ମନେହେବ । କିନ୍ତୁ ତଥାପି 'ସୃଷ୍ଟ' ପରିବର୍ତ୍ତେ ଆମେ ଯେତେବେଳେ ଏକ ବିସ୍ତୃତ ବିବରଣୀ ଦେଉ, ସେତେବେଳେ ଜଣାପଡ଼େ ଯେ ଏହି ଅଦ୍ଭୁତ ପ୍ରସ୍ତାବରେ ହିଁ ସମାଧାନ ନିହିତ ।

ବାସ୍ତବିକ, କାରଣ ହେଉଛି ଏପରି ଏକ ଜିନିଷ, ଯାହା କାର୍ଯ୍ୟ [ବା ପରିଣତି] ଲୁହାଯାଉଥିବା ଆଉ ଏକ ଜିନିଷର ସଂଘଟନକୁ ବାଧ୍ୟ କରେ—ଏହି ଧାରଣା ଏତେ ସୁପ୍ରତ୍ୟକ୍ଷରୂପେ ଏକ ଆତ୍ମସମାଜ ଯେ ଏହାକୁ ତତ୍ତ୍ୱବିଜ୍ଞାନୀମାନେ ମଧ୍ୟ ପରିହାର କରି-ପାରିଛନ୍ତି । ପକ୍ଷାନ୍ତରେ, ପ୍ରଚଳିତ ବୈଜ୍ଞାନିକ ବିବରଣୀ କାରଣିକତାକୁ ସହି ସମ୍ବନ୍ଧରେ

---

ହୁଏ । ବାସ୍ତବ ନିର୍ଦ୍ଦେଶ ଏବଂ ଏହି ଦୃଷ୍ଟିରୁ 'ଅର୍ଥ' ମଧ୍ୟରେ ଥିବା ପ୍ରକଳ୍ପିତ ପାର୍ଥକ୍ୟ ହେଉଛି ଜଟିଳତାର କେବଳ ଏକ ପରିମାଣଗତ ବ୍ୟାପାର, ଯାହା ପ୍ରତୀକାତ୍ମକ ପ୍ରଥା ହେତୁରୁ ହିଁ ବିରାଟ ମନେହୁଏ । ଆହୁରି ମଧ୍ୟ ଲକ୍ଷ୍ୟ କରାଯାଇପାରେ ଯେ ପ୍ରତିମା ଉପରେ ପ୍ରାଧାନ୍ୟ ଦେବାରେ ଏଠାରେ ଉପସ୍ଥାପିତ ମତଠାରୁ Mr. Rusellଙ୍କ ପ୍ରଦତ୍ତ ଅର୍ଥର କାରଣିକ ବିବରଣୀ ପୃଥକ୍ । ଏ ବିଷୟ ବିଶେଷତଃ ପୃ ୨୯୭ ଓ ପୃ ୨୩୨ ରେ ସୁସ୍ପଷ୍ଟ । Mr. Russel ଙ୍କ ବିବରଣୀରେ ପ୍ରତିମାଗୁଡ଼ିକ ସହିତ ସେଗୁଡ଼ିକର ଅର୍ଥର ସାଦୃଶ୍ୟ ମାଧ୍ୟମରେ ଅଥବା ପ୍ରତିମାଗୁଡ଼ିକର 'କାରଣିକ ସାମର୍ଥ୍ୟ', ପରିଣତିର 'ଯଥୋପଯୁକ୍ତତା' ମାଧ୍ୟମରେ ଅର୍ଥ ବା ନିର୍ଦ୍ଦେଶର ସଂଜ୍ଞା ଦିଆଯାଇଛି । ଏହି ମତ ବିରୁଦ୍ଧରେ ମୁଖ୍ୟ ଆପତ୍ତି-ଗୁଡ଼ିକ ହେଉଛି 'ଯଥୋପଯୁକ୍ତତା'ର ଅସ୍ପଷ୍ଟତା, ଅର୍ଥଗତ ଏକତା ସତ୍ତ୍ୱେ 'କାରଣିକ ସାମର୍ଥ୍ୟ'ର ତାରତମ୍ୟ ଏବଂ ସତ୍ୟତା-ସମସ୍ୟା ସମ୍ପୃକ୍ତ ବିଷୟରେ ଉତ୍ପନ୍ନ ଜଟିଳତା । Professor Eaton ତାଙ୍କର *Symbolism and Truth* (୧୯୨୫) ପୃ ୨୩ରେ ଯେଉଁ ମତ ଗ୍ରହଣ କରିଛନ୍ତି, ତାହା କେତେକାଂଶରେ Mr. Russell ଙ୍କ ମତ ସଦୃଶ; "ଜ୍ଞାନ ସିଦ୍ଧାନ୍ତ ଲକ୍ଷ୍ୟରେ ସର୍ବାପେକ୍ଷା ସରଳ ସମାଧାନ ହେଉଛି ଅର୍ଥକ୍ରିୟାକୁ ଅର୍ଦ୍ଧ୍ରିତସ୍ତ ବୋଲି ଗ୍ରହଣ କରିବା ।······ପ୍ରତ୍ୟେକ ବସ୍ତୁ ପ୍ରତି କେତେକ କ୍ରିୟା ଯଥୋପଯୁକ୍ତ ।" ଅନ୍ୟପକ୍ଷରେ ଉପସ୍ଥିତ ପରିଚ୍ଛେଦର ପ୍ରତିପାଦ୍ୟ ହେଉଛି, ଏହି 'ଯଥୋପଯୁକ୍ତତା'ର ଅନ୍ତରାଳକୁ ପ୍ରବେଶ କରିବା ସମ୍ଭବପର ଓ ଲାଭପ୍ରଦ ।

Mr. Russell ଙ୍କ ଅତ୍ୟାଧୁନିକ ମତାନୁଯାୟୀ (The Dial, ଅଗଷ୍ଟ ୧୯୨୬ ପୃ ୧୧୭-୧୧୯) ଏହା ସ୍ୱୀକୃତ ଯେ ଅର୍ଥର ବ୍ୟାଖ୍ୟା ନିମନ୍ତେ ପ୍ରତିମାର ପ୍ରବେଶ କରାଇବା ଅନୁଚିତ ।

ପରିଣତ କରିବା ଦ୍ୱାରା ତାତ୍ପର୍ଯ୍ୟ ଉଦ୍‌ଘାଟନ ନିମନ୍ତେ ତାହା ଅସମର୍ଥ, କାରଣ ଏକ 'ସଂଯୋଜକ' ପରୀକ୍ଷାର ଅବର୍ତ୍ତମାନରେ ବାକ୍‌ବାହୁଲ୍ୟର ସଘନ ବ୍ୟବହାର ଅପରି-ହାର୍ଯ୍ୟ ହୁଏ । କିନ୍ତୁ ଅନୁଭୂତିର ଏକ ବୈଶିଷ୍ଟ୍ୟ ହେଉଛି ଯେ ତାହା ବାରମ୍ବାର ସଂଘଟିତ ହୁଏ, ଅର୍ଥାତ୍ ଅଳ୍ପାଧିକ ପରିମାଣରେ ସମପ୍ରସଙ୍ଗରେ ଆମେ ଅନୁଭୂତି ଲାଭ କରୁ । ଏହି ବିଷୟଟିକୁ ଆମେ ଯଦି ଆମ ବିବରଣୀର ଭିତ୍ତିଭୂମି ରୂପେ ଗ୍ରହଣ କରୁ, ତେବେ ସଙ୍କେତ-ସିଦ୍ଧାନ୍ତ ନିମନ୍ତେ ଯାହା ଆବଶ୍ୟକ ଏବଂ ପ୍ରାଚୀନ କାରଣ-ସିଦ୍ଧାନ୍ତର ଯାହା ବକ୍ତବ୍ୟ, ସବୁକିଛି ଏହି ବିବରଣୀରୁ ମିଳିପାରିବ । ଏହି ପ୍ରସଙ୍ଗଗୁଡ଼ିକ ମଧ୍ୟରୁ କେତେକ ଅନ୍ୟମାନଙ୍କ ତୁଳନାରେ ଦେଶ ଓ କାଳ ଦୃଷ୍ଟିରୁ ନିକଟତର । ଉଦାହରଣ ସ୍ୱରୂପ, ପଦାର୍ଥବିଜ୍ଞାନର ଅନୁସନ୍ଧେୟ ପ୍ରସଙ୍ଗଗୁଡ଼ିକ କ୍ରମେ କ୍ରମେ ସଙ୍କୀର୍ଣ୍ଣତର ହୋଇ ପରିଶେଷରେ ବିଭେଦକ ସମୀକରଣର ଅଧ୍ୟୟନୀୟ ବିଷୟବସ୍ତୁ ହୋଇଯାଏ । ଯେଉଁ ଅନୁସନ୍ଧେୟ ପ୍ରସଙ୍ଗଗୁଡ଼ିକୁ ମନୋବିଜ୍ଞାନ ଏ ଯାବତ୍ ଆବିଷ୍କାର କରିବାରେ ସଫଳ ହୋଇଛି, ସେଗୁଡ଼ିକ ପ୍ରଶସ୍ତ । ଏଠାରେ ସମ୍ଭବତଃ ଅନ୍ୱିତ ଘଟଣାଗୁଡ଼ିକ ମଧ୍ୟରେ ପ୍ରାୟଶଃ ସମୟର ବ୍ୟବଧାନ ଥାଏ । ଯାହାହେଉ, ପ୍ରସଙ୍ଗଗୁଡ଼ିକର ବାରମ୍ବାର ସଂଘଟନ ହେତୁରୁ ହିଁ କେବଳ ଅର୍ଥକରଣ ସମ୍ଭବପର ହୁଏ । ଏହି ଉକ୍ତିକୁ ଅତ୍ୟନ୍ତ ସାଧାରଣଭାବେ ସ୍ୱୀକାର କରାଯାଏ । କିନ୍ତୁ ପରୀକ୍ଷା କରି ଦେଖିଲେ ଜଣାପିବ ଯେ ଏହାକୁ ଯେପରି ବୋଲି ମନେ କରାଯାଇଛି, ତହିଁରୁ ଯଥେଷ୍ଟ ଅଧିକ ପରିମାଣରେ ଏହା ମୌଳିକ । ବସ୍ତୁତଃ କୌଣସି ବିଷୟକୁ ଅର୍ଥ-କରଣ ବୋଲି କହିବା ହିଁ ହେଉଛି ତାହାକୁ କୌଣସି ପ୍ରକାର ଏକ ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଏକ ଅଙ୍ଗ ବୋଲି କହିବା । ଅର୍ଥକରଣଟି ହିଁ ହେଉଛି ଏକ ପୌନଃପୁନିକ ସଂଘଟନ ।

ଏହି ସ୍ଥାନରେ ଏକ ମୂର୍ତ୍ତ ଦୃଷ୍ଟାନ୍ତର ବିଚାର କରାଯାଇପାରେ । ଜୀବ-ଆଚରଣ ସମ୍ବନ୍ଧୀୟ ଅଧିକାଂଶ ପୁସ୍ତକରେ ଏକ ପ୍ରସିଦ୍ଧ କୁକୁରର ବର୍ଣ୍ଣନା ରହିଛି । ଖାଇବା ଘଣ୍ଟା ବାଜିବା ମାତ୍ରକେ ଘରର ଯେକୌଣସି ଅଂଶରେ, ଏପରିକି ଯେଉଁଠାକୁ ଖାଇବା ପଦାର୍ଥର ଗନ୍ଧ-ସୁବାସ ପହଞ୍ଚିବାର ସମ୍ଭାବନା ସୁଦ୍ଧା ନାହିଁ, ଯେଉଠାରେ ଥିଲେ ମଧ୍ୟ ସେ ଖାଇବା ଘରକୁ ଦୌଡ଼ି ଆସେ । ଖାଉଥିବା ଲୋକଙ୍କ କାଳେ ଯଦି ତା ପ୍ରତି ଦୟାଭାବର ଉଦ୍ରେକ ହେବ, ସେଥିପାଇଁ ଯଥା ସ୍ଥାନରେ ସେ ଉପସ୍ଥିତ ରହେ । ଏହିପରି ଏକ କୁକୁର ଘଣ୍ଟା-ଧ୍ୱନିକୁ ଏକ ସଙ୍କେତ ରୂପେ **ଅର୍ଥ କରୁଛି** । ଏହା ଘଟେ କିପରି ? ଏହାର ଉତ୍ତର ସମ୍ବନ୍ଧରେ ଆମେ ସମସ୍ତେ ଏକମତ ଯେ କୁକୁରର ଅତୀତ ଅନୁଭୂତି ମାଧ୍ୟମରେ ଏହା ସମ୍ଭବପର ହୁଏ । ଏହି ଅନୁଭୂତିରେ, କୁହାଯାଇପାରେ ଯେ ବାରମ୍ବାର ସଂଘଟିତ ହେଉଥିବା ଘଟଣାପୁଞ୍ଜମାନ ରହିଛି । ଏ ପ୍ରକାର ଗୋଟିଏ ଘଟଣାପୁଞ୍ଜ ସ୍ଥୂଳତଃ ନିମ୍ନୋକ୍ତ-ରୂପେ ଗଠିତ : ଘଣ୍ଟାଧ୍ୱନି, ରନ୍ଧା ଖାଦ୍ୟ ଦ୍ରବ୍ୟର ସୁଗନ୍ଧ, ଖାଉଥିବା ଲୋକଙ୍କ ଭୋଜ୍ୟବସ୍ତୁ ଆହାର ପ୍ରତି ଆଶାନ୍ୱିତ ଦୃଷ୍ଟି, ଦାନ, ପରିତୃପ୍ତି । ବିଭିନ୍ନ ସମୟରେ ଏହିପରି ଏକ

ଘଟଣାପୁଞ୍ଜର ବାରମ୍ବାର ସଂଘଟନକୁ ଆମେ **ବାହ୍ୟ** ପ୍ରସଙ୍ଗ ବୋଲି ଅଭିହିତ କରିବା । ଏବେ ଧରାଯାଉ, ଖାଦ୍ୟଦ୍ରବ୍ୟର ସୁଗନ୍ଧ ପହଞ୍ଚି ନ ପାରୁଥିବା ସ୍ଥାନରେ କୁକୁର ଥିବା ଅବସ୍ଥାରେ ସେ ଘଣ୍ଟାଧ୍ୱନି ଶୁଣେ । କିନ୍ତୁ ଅର୍ଥକରଣକ୍ଷମ ଏହି କୁକୁରର ଅତୀତରେ ଘଣ୍ଟାଧ୍ୱନି ସହିତ ଖାଦ୍ୟଦ୍ରବ୍ୟ-ସୁଗନ୍ଧର ଏକତ୍ର ଅନୁଭୂତ ରହିଥିବାରୁ, ଅତୀତର ଘଣ୍ଟାଧ୍ୱନି ଓ ସୁଗନ୍ଧ, ଆଶା ଇତ୍ୟାଦି ସହିତ ବର୍ତ୍ତମାନର ଘଣ୍ଟାଧ୍ୱନି ଏକ ଅସାଧାରଣ ସମ୍ବନ୍ଧରେ ଅନ୍ୱିତ ହୋଇଯାଏ । ସୁତରାଂ କୁକୁରଟି ଯଥାବର୍ଣ୍ଣିତ ଦୂରଦର୍ଶିତା ସହ କାର୍ଯ୍ୟ କରେ ଏବଂ ଖାଇବା ସ୍ଥାନରେ ହାଜର ହୋଇଯାଏ । ଏବେ, ଏହି ମାନସିକ ଘଟଣା ଶୃଙ୍ଖଳ—ତାହାର ବର୍ତ୍ତମାନ ଘଣ୍ଟାଧ୍ୱନି ଶୁଣିବା, ଅତୀତରେ ତାହାର ସମପ୍ରକାର ଧ୍ୱନି ଶୁଣିଥିବା, ଅତୀତରେ ଘଣ୍ଟାଧ୍ୱନି ସହିତ ତାହାର ଖାଦ୍ୟଦ୍ରବ୍ୟର ସୁଗନ୍ଧ ପାଇଥିବା ଇତ୍ୟାଦି ଏବଂ ତତ୍‌ସହିତ ତାହାର ବର୍ତ୍ତମାନର ମାନସିକ ପ୍ରକ୍ରିୟା, ଯାହା ପାଇଁ ସେ ଖାଇବା ଘରକୁ ଦୌଡ଼େ—ଏ ପ୍ରକାର ଏକ ଶୃଙ୍ଖଳକୁ ଆମେ **ମନସ୍ତାତ୍ତ୍ୱିକ** ପ୍ରସଙ୍ଗ ବୋଲି ଅଭିହିତ କରିବା । ଏ ପ୍ରକାର ଏକ ପ୍ରସଙ୍ଗର ଅତି ସାଧାରଣ ବୈଶିଷ୍ଟ୍ୟଗୁଡ଼ିକର ସମାବେଶ ସ୍ପଷ୍ଟତଃ ବାରମ୍ବାର ଘଟିପାରେ । ଏହା ମଧ୍ୟ ସୁସ୍ପଷ୍ଟ ଯେ ଏହାର ଅଙ୍ଗଗୁଡ଼ିକ ଅନିର୍ଦ୍ଦିଷ୍ଟଭାବେ ଅସଂଖ୍ୟ ହୋଇପାରେ ଏବଂ ସେଗୁଡ଼ିକ ମଧ୍ୟରେ ପ୍ରଶସ୍ତ ସମୟ ବ୍ୟବଧାନ ରହିପାରେ । ସମୟର ବ୍ୟବଧାନ ହେତୁରୁ ହିଁ ଏ ପ୍ରକାର ଏକ ମନସ୍ତାତ୍ତ୍ୱିକ ପ୍ରସଙ୍ଗ ଉପର୍ଯ୍ୟୁକ୍ତ ଘଣ୍ଟାଧ୍ୱନି-ସୁଗନ୍ଧ ଧରଣର ବାରମ୍ବାର ଘଟୁଥିବା ଅନୁଭୂତପୁଞ୍ଜକୁ ଅର୍ଥାତ୍ ବାହ୍ୟ ପ୍ରସଙ୍ଗକୁ ସମନ୍ୱିତ କରିବା ପାଇଁ ସମର୍ଥ ହୁଏ । ଅନୁରୂପଭାବେ ଅନୁଭୂତମୂଳକ ସମସ୍ତ ଶିକ୍ଷାରୁ ଦୃଷ୍ଟାନ୍ତ ସଂଗ୍ରହ କରି କୁହାଯାଇପାରେ ଯେ ଅର୍ଥକରଣ ପ୍ରକ୍ରିୟା ହେଉଛି ଏକ ପ୍ରକାର ମନସ୍ତାତ୍ତ୍ୱିକ ପ୍ରସଙ୍ଗର କେବଳ ଏକ ଅସାଧାରଣ (୧) ଅଙ୍ଗ ହେବା । ଏକ ମନସ୍ତାତ୍ତ୍ୱିକ ପ୍ରସଙ୍ଗ ହେଉଛି ବାରମ୍ବାର ଘଟୁଥିବା ଏକ ମାନସିକ ଘଟଣା ଶୃଙ୍ଖଳ; ଏହାର ଘଟଣାଗୁଡ଼ିକ ପରସ୍ପର ସହିତ ଅସାଧାରଣଭାବେ ଅନ୍ୱିତ ହୋଇଥିବାରୁ ଆଂଶିକଭାବେ ସମାନତା ରକ୍ଷା କରି ସେଗୁଡ଼ିକର ମୁଖ୍ୟ ବୈଶିଷ୍ଟ୍ୟମାନ ବାରମ୍ବାର ଘଟିଥାଏ ।

ଏ ପ୍ରକାର ପୌନଃପୁନିକ ସଂଘଟନ ଅଥବା ଆଂଶିକ ସମାନତା ବିନା କୌଣସି ଭବିଷ୍ୟତ୍ ବାଣୀ, କୌଣସି ଅନୁମାନ, କୌଣସି ପ୍ରତ୍ୟଭିଜ୍ଞା, କୌଣସି ଆରୋହ ସାମାନ୍ୟୀକରଣ, ସାକ୍ଷାତ୍ ପ୍ରତୀତ ବହିର୍ଭୂତ ବିଷୟରେ କୌଣସି ଜ୍ଞାନ ବା ସମ୍ଭାବିତ ମତାମତ ପ୍ରଦାନ ଯେ ସମ୍ଭବପର ନୁହେଁ, ଏ କଥା ସ୍ୱୀକାର କରିବାକୁ ବିଶେଷ କୌଣସି ଦ୍ୱିଧାବୋଧ ହେବ ନାହିଁ । ଯାହା ହୃଦୟଙ୍ଗମ କରିବା ଅଧିକ ଦୁଷ୍କର, ତାହା ହେଉଛି—ଏହା ଏତାଦୃଶ ହେବାର ଏକମାତ୍ର କାରଣ ଏହି ପ୍ରକ୍ରିୟା, ପ୍ରତ୍ୟଭିଜ୍ଞା, ଅନୁମାନ ବା ଚିନ୍ତା-

---

(୧) ପରିଶିଷ୍ଟ-ଖ ରେ ଏହି ଅସାଧାରଣତ୍ୱର ଆହୁରି ଅଧିକ ବିଶ୍ଳେଷଣ କରାଯାଇଛି ।

ଗୁଡ଼ିକ କେତେକ ବାରମ୍ବାର ସଂଘଟିତ ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅଙ୍ଗ ବୋଲି ସ୍ୱୀକାର କରିବା । ମୋ ସାମନାରେ ଥିବା ବସ୍ତୁ ରୁଟିକୋଳି ବୋଲି ମୁଁ ଚିହ୍ନିପାରୁଛି ଓ ତାହା ସୁଆଦ ଲାଗିବ ବୋଲି ମୁଁ ଆଶା କରୁଛି । ଏହା କହିବା ହେଉଛି ମୋ ମନୋଗତ ଏକ ବର୍ତ୍ତମାନ ପ୍ରକ୍ରିୟା କେତେକ ଅତୀତ ପ୍ରକ୍ରିୟା (ଅତୀତ ପ୍ରତ୍ୟକ୍ଷଣ ଓ ରୁଟିକୋଳି ଭକ୍ଷଣ) ସହିତ ଏକ ନିର୍ଣ୍ଣୟାତ୍ମକ ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅନ୍ତର୍ଭୁକ୍ତ ବୋଲି କହିବା । ଆମେ ଯେତେଥର ଚିହ୍ନୁଥାଉ ବା ଅନୁମାନ କରୁଥାଉ, ଏହି ମନସ୍ତାତ୍ତ୍ୱିକ ପ୍ରସଙ୍ଗଗୁଡ଼ିକ ସେତେଥର ବାରମ୍ବାର ଘଟୁଥାଏ । ସାଧାରଣତଃ ଏଗୁଡ଼ିକ ବାହ୍ୟ (୧) ପ୍ରସଙ୍ଗମାନଙ୍କ ସହିତ ଅସାଧାରଣଭାବେ (୨) ସଂଯୋଜିତ ହୋଇଥାନ୍ତି (କିମ୍ବା ତତ୍‌ସହିତ ବ୍ୟାପକତର ପ୍ରସଙ୍ଗ ଗଠନ କରନ୍ତି) । ଯେତେବେଳେ ଏହା ହୋଇନଥାଏ, ସେତେବେଳେ ଆମେ ଭ୍ରାନ୍ତ ହୋଇଛୁ ବୋଲି କୁହାଯାଏ ।

ଏ ପ୍ରକାର ସଂଯୋଜନ ଯେଉଁ ସର୍ବାପେକ୍ଷା ସରଳ ପରିଭାଷାରେ ବ୍ୟକ୍ତ କରାଯାଇପାରେ, ତାହା ହେଉଛି ସଙ୍କେତମୂଳକ ପରିଭାଷା । ସମସ୍ତ ଅର୍ଥକରଣର ଅନ୍ତରାଳରେ ଏକ ତତ୍ତ୍ୱ ରହିଛି । ତାହା ହେଉଛି, ଯେତେବେଳେ ଏକ ବାହ୍ୟ ପ୍ରସଂଗର ଗୋଟିଏ ଅଂଶ ଅନୁଭୂତିରେ ପୁନର୍ବାର ଘଟେ, ସେତେବେଳେ କୌଣସି ମନସ୍ତାତ୍ତ୍ୱିକ ପ୍ରସଂଗର (ଅର୍ଥାତ୍ ବହୁ କ୍ଷେତ୍ରରେ ସମୟ ଦୃଷ୍ଟିରୁ ପ୍ରଶସ୍ତ ବ୍ୟବଧାନ ରହିଥିବା ଏକ କାର୍ଯ୍ୟକାରଣ ସମ୍ବନ୍ଧାନ୍ୱିତ ମାନସିକ ଘଟଣା ସମଷ୍ଟିର) ଏକ ଅଂଗ ସହିତ ଏହି ଅଂଶଟିର ସଂଯୋଜନ ମାଧ୍ୟମରେ, ଏହି ଅଂଶଟି ସମସ୍ତ ସମୟରେ ବାହ୍ୟ ପ୍ରସଂଗର ଅବଶିଷ୍ଟାଂଶର ସଂକେତ ହୋଇଥାଏ ।

ଏହି ସ୍ଥୂଳ ବିବରଣୀର ଅନ୍ତର୍ଗତ ବିଷୟାବଳୀର ଉଲ୍ଲେଖ କରିବାକୁ ହେଲେ, ଦୁଇଟି ବିଷୟର ସ୍ପଷ୍ଟୀକରଣ ଆବଶ୍ୟକ । ପ୍ରଥମଟି ପ୍ରସଂଗମାନଙ୍କ (୩) ସହିତ ସଂପୃକ୍ତ; ଦ୍ୱିତୀୟଟି ଏହି ପ୍ରସଙ୍ଗମାନ ଯେଉଁ ଦୃଷ୍ଟିରୁ ସମାନ, ତାହା ସହିତ ସଂପୃକ୍ତ ।

---

(୧) ଆମେ ଯଦି ମନୋବିଜ୍ଞାନର ପ୍ରଶ୍ନ ଆଦୌ ଉତ୍ଥାପନ ନ କରୁ, ତେବେ 'ବାହ୍ୟ'କୁ 'ଭୌତିକ' ବୋଲି ପଢ଼ାଯାଇପାରେ ।

(୨) ତୁଳନା କର—ପଦଟୀକା-ପରିଶିଷ୍ଟ ସୂଚିତ ପୃଷ୍ଠା ଏବଂ ପରିଶିଷ୍ଟ—ଖ ।

(୩) ଉପସ୍ଥିତ ଗ୍ରନ୍ଥର ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ପ୍ରସଂଗ ପଦଟି ସଂପୂର୍ଣ୍ଣ ରୂପେ ଏକ ପାରିଭାଷିକ ଅର୍ଥରେ ବ୍ୟବହୃତ ଏବଂ ଏହା ପଦଟିର ସାଧାରଣ ବ୍ୟବହାରଠାରୁ ଭିନ୍ନ । ପାରିଭାଷିକ ଅର୍ଥରେ ପ୍ରସଂଗ ପଦର ସଂଜ୍ଞା ନିମ୍ନରେ ଦିଆଯାଉଛି । ଏକ ସାହିତ୍ୟିକ ପ୍ରସଂଗ ହେଉଛି ଶବ୍ଦ, ଘଟଣା, ପ୍ରତ୍ୟୟ ଇତ୍ୟାଦିର ଏକ ସମଷ୍ଟି ।

**(୧) ପ୍ରସଙ୍ଗ ହେଉଛି ସତ୍ତାମାନଙ୍କର (ବସ୍ତୁ ଗୁଡ଼ିକର ବା ଘଟଣା-ଗୁଡ଼ିକର) ଏକ ସମବାୟ, ଯାହା କୌଣସି ଏକ ପ୍ରକାରରେ ସମ୍ବନ୍ଧାନ୍ୱିତ । ଏହି ସତ୍ତାମାନଙ୍କ ମଧ୍ୟରୁ ପ୍ରତ୍ୟେକଟିର ଏକ ବୈଶିଷ୍ଟ୍ୟ ଥାଏ; ତଦ୍ଦ୍ୱାରା ସମବୈଶିଷ୍ଟ୍ୟଯୁକ୍ତ ଓ ସମଭାବରେ ସମ୍ବନ୍ଧାନ୍ୱିତ ଅନ୍ୟାନ୍ୟ ସତ୍ତା-ସମବାୟ ଘଟେ; ଏବଂ ଏହି ସମବାୟଗୁଡ଼ିକ 'ପ୍ରାୟ ଏକ ପ୍ରକାରରେ' ଘଟିଥାଏ ।**

ଆମର ଧଆସିଲ କାଠିର ଘର୍ଷଣ ଘଟଣା ଓ ଅଗ୍ନିଶିଖା ଘଟଣାର ସଂଯୋଗକାରକ ସମ୍ବନ୍ଧରେ ସ୍ପଷ୍ଟତଃ ଦେଶ ଓ କାଳର ନିକଟବର୍ତ୍ତିତା ଅନ୍ତର୍ଗତ । ଆମେରିକାରେ ଧଆସିଲ କାଠିର ଘର୍ଷଣ ଓ ଚୀନ୍‌ରେ ଅଗ୍ନିଶିଖାର ଦର୍ଶନଦ୍ୱାରା ଏପରି ଏକ ପ୍ରସଙ୍ଗ ଗଠିତ ହେବନାହିଁ । କିନ୍ତୁ ଗୋଟିଏ ପ୍ରସଙ୍ଗରେ ସଂଯୋଗକାରକ ସମ୍ବନ୍ଧରୂପେ କି ପ୍ରକାର ସମ୍ବନ୍ଧ ଘଟିପାରେ, ସେ ବିଷୟରେ ପ୍ରଥମରୁ କୌଣସି ସୀମାଧାର୍ଯ୍ୟ କରିବା ଯେ ଅନାବଶ୍ୟକ, ଏହା ହୃଦୟଙ୍ଗମ କରିବା ଗୁରୁତ୍ୱପୂର୍ଣ୍ଣ, କାରଣ କେଉଁ ସମ୍ବନ୍ଧଗୁଡ଼ିକ ପ୍ରକୃତରେ ଘଟେ, ତାହା

---

କୌଣସି ଦତ୍ତ କ୍ଷେତ୍ରରେ ତାହା ଯେଉଁ ବିଷୟର ପ୍ରସଂଗ ବୋଲି କୁହାଯାଏ, ସେହି ବିଷୟର ତାହା ମହତ୍ତ୍ୱ ବା ପରିସ୍ଥିତି । ପକ୍ଷାନ୍ତରେ, ଏକ ନିର୍ଣ୍ଣାୟକ ପ୍ରସଂଗ ହେଉଛି ଏ ପ୍ରକାର ଏକ ସମଷ୍ଟି, ଯାହା ବାରମ୍ବାର ସଂଘଟିତ ହୁଏ ଏବଂ ତାହା ଏପରି ଯେ ତାହାର କେତେକ ଅଂଶ ଦତ୍ତ ହୋଇଥିବା ସ୍ଥଳେ, ଅନ୍ତତଃ ଅନ୍ୟ ଗୋଟିଏ ଅଂଶ ନିର୍ଦ୍ଧାରିତ ହୁଏ । ଏହାଠାରୁ ଅସ୍ପଷ୍ଟତର ହୋଇଥିଲେ ହେଁ, ଏହା ସହିତ ଆଂଶିକତଃ ସମାନ ଅର୍ଥରେ ପ୍ରସଂଗ ପଦର ବ୍ୟବହାର Professor Baldwin ଙ୍କ ଦ୍ୱାରା (*Thought and Things* ୧ମ ଖଣ୍ଡ ପୃ ୪୮ରେ) କରାଯାଇଛି ବୋଲି ମନେହୁଏ । କିନ୍ତୁ ସେ ତାଙ୍କର ବିବରଣୀ ଦେବାରେ ଯେତେବେଳେ ଅଗ୍ରସର କରନ୍ତି (ଆହୁରି ମଧ୍ୟ ତୁଳନା କର ପରିଶିଷ୍ଟ-ଘ), ସେତେବେଳେ ସ୍ପଷ୍ଟହୋଇଯାଏ ଯେ ଏହି ସାଦୃଶ୍ୟ ଭ୍ରମାତ୍ମକ । ଉଦାହରଣ ସ୍ୱରୂପ, ସେ କହନ୍ତିନ୍ତି ଯେ ଏକପ୍ରତିମା (୧ମ ଖଣ୍ଡ ପୃ ୮୧) "ଏକ ପ୍ରସଂଗରୂପେ ପରିବର୍ତ୍ତିତ" ହୋଇପାରେ । ଆହୁରି ମଧ୍ୟ "ବ୍ୟକ୍ତ ଏବଂ ଜଡ଼ିତ ଅର୍ଥମାନଙ୍କ ପରିବର୍ଦ୍ଧିତ ପ୍ରସଂଗର ଅନ୍ତର୍ବସ୍ତୁରେ ହିଁ ଅଭିବୃଦ୍ଧି (୨ୟ ଖଣ୍ଡ ପୃ ୨୪୭) କଥାର ସେ ଉଲ୍ଲେଖ କରିଛନ୍ତି । Professor Titchnerଙ୍କ ପ୍ରସଂଗ ପଦର ବ୍ୟବହାର ସହିତ ଏହି ବ୍ୟବହାରର ଅଧିକ ସାଦୃଶ୍ୟ ରହିଛି । ୮ମ ପରିଚ୍ଛେଦରେ ଆମେ ଉଦ୍ଧାର କରିଥିବା ଦ୍ୱିତୀୟ ଅନୁଚ୍ଛେଦ ପରେ ସେ କହିଛନ୍ତି, "ପ୍ରସଙ୍ଗ ପଦ ଦ୍ୱାରା ମୁଁ କେବଳ ସେହି ମାନସିକ ପ୍ରକ୍ରିୟା ବା ମାନସିକ ପ୍ରକ୍ରିୟା-ସଂସୃଷ୍ଟିକୁ ବୁଝେଁ, ଯାହା ଦେହ-ମନର ପାରିପାର୍ଶ୍ୱିକ ପରିସ୍ଥିତି ହେତୁରୁ ମୂଳ ପ୍ରତ୍ୟୟରେ ସଂକ୍ରାନ୍ତ ହୁଏ ।

କେବଳ ଅନୁଭୂତି ଦ୍ୱାରା ହିଁ ଜଣା ପଡ଼ିବ । ଏତଦ୍‌ବ୍ୟତୀତ ପ୍ରସଙ୍ଗ ଗୁଡ଼ିକର ଯେ କୌଣସି ସଂଖ୍ୟକ ଅଙ୍ଗ ରହିପାରେ । କେବଳ ଦୁଇଟି ଅଙ୍ଗବିଶିଷ୍ଟ ଦ୍ୱୈତ ପ୍ରସଙ୍ଗଗୁଡ଼ିକ ବିରଳ ପରି ମନେହୁଏ, ଯଦିଓ ତାତ୍ପର୍ଯ୍ୟ ଉଦ୍‌ଘାଟନ ଉଦ୍ଦେଶ୍ୟରେ, ସେଗୁଡ଼ିକର ସଂଘଟନ ରହିଛି ବୋଲି ମନେକରିବା ସୁବିଧାଜନକ । ପ୍ରସଙ୍ଗନିହିତ ଔପାଦାନିକ ବୈଶିଷ୍ଟ୍ୟମାନ କେତେକ ଅସୁବିଧାର ସମ୍ମୁଖୀନ କରାଇଥାନ୍ତି । ଆମର ଦିଆସିଲି କାଠିର ଘର୍ଷଣ ଘଟଣା ଓ ଅଗ୍ନିଶିଖା ଘଟଣାର ଉଦାହରଣରେ ସେ ଦୁଇଟିକୁ 'ଏକ ଘର୍ଷଣ ହେବା' ଓ 'ଏକ ଅଗ୍ନିଶିଖା ହେବା' ବୋଲି ଉଲ୍ଲେଖ କରାଯାଇପାରେ । କିନ୍ତୁ ସ୍ପଷ୍ଟତଃ ଏଗୁଡ଼ିକ ଅତି ବିସ୍ତୃତ ଗୁଣସମଷ୍ଟିମାନଙ୍କ ସଂକ୍ଷିପ୍ତ ନାମ । ସମସ୍ତ ପ୍ରକାର ଘର୍ଷଣରୁ ଆମେ ଅଗ୍ନିଶିଖାର ପ୍ରତୀକ୍ଷା କରୁ ନା । ପୁଣି ଆମ ଦିଆସିଲି କାଠି ଯଦି ମ୍ୟାଗ୍ନେସିଅମ ଫିତା ପରି ପ୍ରଜ୍ଜ୍ୱଳିତ ହୁଏ, ତେବେ ତାହା ଆମ ପକ୍ଷରେ ବିସ୍ମୟକର ହେବ ।

(୨) 'କେଉଁ ଦୃଷ୍ଟିରୁ ପ୍ରସଙ୍ଗ ଗୁଡ଼ିକ **ପ୍ରାୟ ସମ ପ୍ରକାରରେ** ଘଟିଥାନ୍ତି ?' ଏହି ସମସ୍ୟା ସହିତ ଔପାଦାନିକ ବୈଶିଷ୍ଟ୍ୟ ମନୋନୟନରେ ଏଠାରେ ସୂଚିତ ଅସୁବିଧା ସମ୍ବନ୍ଧାନ୍ୱିତ । ଏହା ସୁସ୍ପଷ୍ଟ ଯେ ଯଦି ପର୍ଯ୍ୟାପ୍ତ ପରିମାଣରେ ସାଧାରଣ ହୋଇଥିବା ବୈଶିଷ୍ଟ୍ୟଗୁଡ଼ିକୁ ନେଇ ପର୍ଯ୍ୟାପ୍ତ ପରିମାଣରେ ସାଧାରଣ ହୋଇଥିବା ସଂଯୋଗକାରକ ସମ୍ବନ୍ଧଗୁଡ଼ିକର ବିଚାର କରିଯାଏ, ତେବେ 'ପ୍ରାୟ ସମାନ' କାହିଁକି, ସର୍ବତୋଭାବେ ସମାନ ହୋଇଥିବା ପ୍ରସଙ୍ଗମାନ ସହଜରେ ମିଳିପାରିବ : ଯଥା—ଯେଉଁ ପ୍ରସଙ୍ଗ ଦୁଇଟି ସତ୍ତ୍ୱଦ୍ୱାରା ଗଠିତ, ପ୍ରତ୍ୟେକର ବୈଶିଷ୍ଟ୍ୟ 'ଏକ ଘଟଣା ହେବା' ଏବଂ ସଂଯୋଗକାରକ ସମ୍ବନ୍ଧ 'ପୌର୍ବାପର୍ଯ୍ୟ' । (୧) ପକ୍ଷାନ୍ତରେ, ଆମେ ଯଦି ଔପାଦାନିକ ବୈଶିଷ୍ଟ୍ୟଗୁଡ଼ିକୁ ଓ ସଂଯୋଗକାରକ ସମ୍ବନ୍ଧକୁ ଅତ୍ୟଧିକ ନିର୍ଦ୍ଦିଷ୍ଟସ୍ୱଭାବବିଶିଷ୍ଟ କରିଦେଉ, ତେବେ ପୌନଃପୁନିକ ସଂଘଟନ ଅନିର୍ଦ୍ଦିଷ୍ଟ ହୋଇଯିବ । ଏହି କାରଣରୁ ଆମ ବିବରଣୀ ସମ୍ଭବ-ପରତାମୂଳକ ହେବା କଥା । ଆମ ଉଦାହରଣରେ, 'ଘର୍ଷଣ' ଓ 'ଅଗ୍ନିଶିଖା'-

---

(୧) ଏହା ଉଲ୍ଲେଖଯୋଗ୍ୟ ଯେ ଯେଉଁ ବୈଶିଷ୍ଟ୍ୟଗୁଡ଼ିକ ଦୃଷ୍ଟିରୁ ଏକ ସଙ୍କେତର ଅର୍ଥ କରିଯାଏ, ସେଗୁଡ଼ିକ 'ଦତ୍ତ' ହେବା ଆବଶ୍ୟକ ନୁହେଁ; ଅର୍ଥାତ୍ ସେଗୁଡ଼ିକ ତହିଁରେ ଥାଏ ବୋଲି ଆମେ ଜାଣିବା ଆବଶ୍ୟକ ନୁହେଁ । ଯେଉଁ ଅର୍ଥକରଣପ୍ରଣାଳୀ ଦ୍ୱାରା ସଂବେଦନ ବ୍ୟତୀତ ଅନ୍ୟାନ୍ୟ ସତ୍ତ୍ୱମାନଙ୍କ ଜ୍ଞାନରେ ଆମେ ଉପନୀତ ହେଉଁ, ତାହାର ବିଚାରରେ ଏହି ପରିସ୍ଥିତି ଗୁରୁତ୍ୱପୂର୍ଣ୍ଣ । ଆହୁରିମଧ୍ୟ ଲକ୍ଷ୍ୟ କରିଯିବା ଉଚିତ ଯେ ଗୋଟିଏ ଔପାଦାନିକ ବୈଶିଷ୍ଟ୍ୟ 'ହୁଏତ କ କିମ୍ବା ଖ କିମ୍ବା ଗ ଇତ୍ୟାଦି ହେବା'—ଏହି ଆକାରର ହୋଇପାରେ ।

ଔପାଦାନିକ-ବୈଶିଷ୍ଟ୍ୟଯୁକ୍ତ ପ୍ରସଙ୍ଗ ବାରମ୍ବାର ଘଟେ (ବା ଏକ ପ୍ରସଙ୍ଗ ଅଟେ) ବୋଲି କହିବା ଯାହା, ନିମ୍ନଲିଖିତ ଉକ୍ତି ଦେବା ତାହା—

**ହୁଏତ** ଯେତେଥର ଘର୍ଷଣ ଥାଏ, ସେତେଥର ଘର୍ଷଣ ସହିତ ଆବଶ୍ୟକ ସମ୍ବନ୍ଧରେ ଅନ୍ୱିତ ଅଗ୍ନିଶିଖା ସମ୍ଭବତଃ ଥିବ,

**ଅଥବା** ଯେତେଥର ଅଗ୍ନିଶିଖା ଥାଏ, ସେତେଥର ଅଗ୍ନିଶିଖା ସହିତ ବିପରୀତ ସମ୍ବନ୍ଧ (converse relation)ରେ ଅନ୍ୱିତ ଘର୍ଷଣ ସମ୍ଭବତଃ ଥିଲା ।

**ଅଥବା** ଏହି ଉଭୟ ଉକ୍ତି ।

ପ୍ରଥମ କ୍ଷେତ୍ରରେ ଅଗ୍ନିଶିଖା ବୈଶିଷ୍ଟ୍ୟ ଦୃଷ୍ଟିରୁ ପ୍ରସଙ୍ଗଟି ନିର୍ଣ୍ଣାୟକ ବୋଲି କୁହାଯାଏ । ଦ୍ୱିତୀୟ କ୍ଷେତ୍ରରେ ଘର୍ଷଣ ବୈଶିଷ୍ଟ୍ୟ ଦୃଷ୍ଟିରୁ ଏବଂ ତୃତୀୟ କ୍ଷେତ୍ରରେ ଉଭୟ ବୈଶିଷ୍ଟ୍ୟ ଦୃଷ୍ଟିରୁ ଏହା ନିର୍ଣ୍ଣାୟକ ବୋଲି କୁହାଯାଏ ।

ସରଳତା ପାଇଁ ଏଠାରେ ଏକ ଦ୍ୱୈତ ପ୍ରସଙ୍ଗର ବିଚାର କରାଯାଇଛି ଏବଂ ସେ ହେତୁରୁ ବିବରଣୀଟି କୃତ୍ରିମ ମନେ ହେଉଛି ତିନି ବା ତତୋଽଧିକ ପଦବିଶିଷ୍ଟ ବହୁପଦୀ ପ୍ରସଙ୍ଗ ମାନଙ୍କରେ ଅନ୍ୟକୌଣସି ଅଧିକ ସମସ୍ୟା ନହିଁତ ନୁହେଁ । ପ୍ରତ୍ୟେକ ପ୍ରସଙ୍ଗ ନିଶ୍ଚିତରୂପେ ଗୋଟିଏ ଗୋଟିଏ ଔପାଦାନିକ ବୈଶିଷ୍ଟ୍ୟର ଏବଂ ହୁଏତ ଅଧିକ ସଂଖ୍ୟକ ବୈଶିଷ୍ଟ୍ୟର ମଧ୍ୟ ନିର୍ଣ୍ଣାୟକ ।

ଏହି ବିବରଣୀରେ ଆମେ ଯତ୍ନର ସହିତ ପ୍ରତିମାର ସମସ୍ତ ଉଲ୍ଲେଖ ବର୍ଜନ କରିଛୁ । ପ୍ରତିମା ହେଉଛି ସଂବେଦନାତ୍ମକ ଅନୁଭୂତିର ପ୍ରତିଛବି ବା ପୁନରଭ୍ୟୁଦୟ ଏବଂ ଚିନ୍ତାର ଅଧିକାଂଶ ବିବରଣୀରେ ତାହା ଅତି ସୁପ୍ରତ୍ୟକ୍ଷଭାବେ ସ୍ଥାନ ପାଇଥାଏ । ପ୍ରତିମା ଉପରେ ନିର୍ଭର କରି ଅର୍ଥକରଣର ଏକ ସିଦ୍ଧାନ୍ତ ପ୍ରତିଷ୍ଠା-ପ୍ରୟାସ କାହିଁକି ସଙ୍କଟପୂର୍ଣ୍ଣ, ତାହାର ଉତ୍ତମ କାରଣମାନ ରହିଛି । ତନ୍ମଧ୍ୟରୁ ଗୋଟିଏ ହେଉଛି କେତେକ ମନରେ ସେଗୁଡ଼ିକ କେବେ ଉଦିତ ହୋଇଛି କି ନା କିମ୍ବା ଆଦୌ ଉଦିତ ହୁଏ କି ନା, ଏ ବିଷୟରେ ଗଭୀର ସନ୍ଦେହ ରହିଛି । ଆଉ ଗୋଟିଏ ହେଉଛି, ଶବ୍ଦଗୁଡ଼ିକର ବିଶେଷ ଭୂମିକା ନଥିବା ଅନେକାନେକ ଅର୍ଥକରଣ କ୍ଷେତ୍ରରେ ପ୍ରତିମା ସୃଷ୍ଟିର ବିଦ୍ୟମାନତା ଅନ୍ତର୍ନିରୀକ୍ଷଣ ଦ୍ୱାରା ଜଣାପଡ଼େ ନାହିଁ । ଅବଶ୍ୟ ସେଗୁଡ଼ିକ ଅତ୍ୟନ୍ତ ସୂକ୍ଷ୍ମଧରଣର ହୋଇ ଥାଇପାରେ; କିନ୍ତୁ ତଦ୍ୱାରା ସାକ୍ଷ୍ୟ-ପ୍ରମାଣ ସ୍ୱରୂପ ସେଗୁଡ଼ିକର ମୂଲ୍ୟ ସନ୍ଦେହାତ୍ମକ ହୋଇଯାଏ । ତୃତୀୟ ଏବଂ ଅଧିକ ଗୁରୁତ୍ୱପୂର୍ଣ୍ଣ କାରଣଟି ହେଉଛି, ପ୍ରତିମାଗୁଡ଼ିକ ବହୁ ପରିମାଣରେ କଳ୍ପନାବିଳାସ ହୋଇଥିବା ପରି ମନେହୁଏ । ଏକ ପ୍ରତିମା, ଧରାଯାଉ ତାହା ହେଉଛି ଏକ ଅଙ୍କର ପ୍ରତିମା; ତାହା ଜାତ ହେବା ପୂର୍ବରୁ ଏପରି କିଛି ଘଟିବାର ଦେଖା

ଯାଇପାରେ, ଯାହାକୁ ଏକ ଅଫାଙ୍କ ବିଷୟକ 'କଳ୍ପନାର ଅଭିପ୍ରାୟ' ବୋଲି ଭ୍ରାନ୍ତି-କାରକରୂପେ ପ୍ରାୟତଃ ବର୍ଣ୍ଣନା କରାଯାଇ ଥାଏ । କିନ୍ତୁ ଚିନ୍ତାକଲେ ସ୍ପଷ୍ଟ ହୋଇଯାଏ ଯେ ଏହା **କେବଳ** ଏକ ଅଭିପ୍ରାୟ ନୁହେଁ । ଏହିପରିଭାବେ ଏକ ଅଭିପ୍ରାୟର କଥା କହିଲାବେଳେ ଆମେ ଭାବାତ୍ମକ-ସଂକଳ୍ପାତ୍ମକ ମୂଳକ ବୈଶିଷ୍ଟ୍ୟମାନଙ୍କ ବିଷୟ କହୁଥାଉଁ । ସ୍ଥୂଳଭାବରେ କହିଲେ ଏଗୁଡ଼ିକ ହେତୁରୁ ଏକ ମାନସିକ ଅବସ୍ଥା ଅପେକ୍ଷାକୃତ ପ୍ରାଥମିକ ସ୍ତରରୁ ଏକ ଶୃଙ୍ଖଳିତ ଏବଂ ଅଭିବ୍ୟକ୍ତ ସ୍ତରକୁ ପରିବର୍ତ୍ତିତ ହୁଏ । ଉତ୍ତେଜନା ଭୂଲି ଅଭିପ୍ରାୟର ମଧ୍ୟ ନିରପେକ୍ଷ ସ୍ଥିତି ଅସମ୍ଭବ । କିଛି ଗୋଟାଏ ରହିବା ଆବଶ୍ୟକ ଯାହା ଉତ୍ତେଜିତ । ସେହିପରି କିଛି ଗୋଟାଏ ରହିବା ଆବଶ୍ୟକ ଯାହାର ତାହା ଅଭିପ୍ରାୟ । ଆମେ ପରୀକ୍ଷା କରୁଥିବା କ୍ଷେତ୍ରଗୁଡ଼ିକରେ ଏହି ଜିନିଷଟି କ'ଣ ?

ତାହା ଯାହା ହୋଇଥାଉ ନା କାହିଁକି, ତାହା ଅନ୍ୟାନ୍ୟ ବସ୍ତୁ ଅପେକ୍ଷା ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁ ଆଡ଼କୁ ନିର୍ଦ୍ଦେଶିତ ହେବାର ଅସାଧାରଣ ହୋଇଥାଏ; ତାହାକୁ ଆମେ ଏଠାରେ ନିର୍ଦ୍ଦେଶ ଆଖ୍ୟା ଦେଇଛୁ । ଏହି ନିର୍ଦ୍ଦେଶ ଅନିଶ୍ଚିତ ତଥା ଅସ୍ପଷ୍ଟ ହୋଇପାରେ; କିନ୍ତୁ ଅଧିକ ଅଭିବ୍ୟକ୍ତ ଏବଂ ସୁସ୍ପଷ୍ଟ ପରିସରଯୁକ୍ତ ଚିନ୍ତା କ୍ଷେତ୍ରରେ, ଅର୍ଥାତ୍ ଯେଉଁ କ୍ଷେତ୍ରରେ ପ୍ରତିମା ଆକାରର ବା ଶବ୍ଦାବଳୀ ଆକାରର ପ୍ରତୀକ ଯୋଗାଇ ଦିଆଯାଇଥାଏ, ସେହି କ୍ଷେତ୍ରରେ ମଧ୍ୟ ନିର୍ଦ୍ଦେଶ ସେହି ଏକପ୍ରକାର ହୋଇଥାଏ ପରି ମନେହୁଏ । ଏ ପ୍ରକାର ନିର୍ଦ୍ଦେଶର ପ୍ରାଥମିକ ସ୍ତରରେ ପ୍ରତିମା·ଗୁଡ଼ିକର କୌଣସି ମୌଳିକ ଭୂମିକା ରହିଛି ବୋଲି ଗ୍ରହଣ କରିନେବା କଷ୍ଟକର । ଯେ କୌଣସି ସଂଜାତ ପ୍ରତିମା ନିର୍ଦ୍ଦେଶ ସହିତ ସଙ୍ଗତ ହୋଇଥିଲେ ସଙ୍ଗେସଙ୍ଗେ ଗୃହୀତ ହୋଇଯାଏ ଏବଂ ଅସଙ୍ଗତ ହୋଇଥିଲେ ସଙ୍ଗେ ସଙ୍ଗେ ଅଗ୍ରାହ୍ୟ ହୋଇଯାଏ । ଏହି ସଙ୍ଗତି ପ୍ରତିମାଗୁଡ଼ିକ ମଧ୍ୟରେ ସାମଞ୍ଜସ୍ୟ ବା କୌଣସି ଅନ୍ତଃସ୍ଥ ଲକ୍ଷଣମାନଙ୍କର ସାଦୃଶ୍ୟ ନୁହେଁ । ବସ୍ତୁମାନଙ୍କ ସମ୍ବନ୍ଧରେ ଚିନ୍ତାର ଏହି ପ୍ରାରମ୍ଭିକ ଅବସ୍ଥାରେ ଯଦି କୌଣସି ପ୍ରକାର ପ୍ରତିମା ନିହିତ ଥାଏ, ତେବେ ଏହା ସୁନିଶ୍ଚିତ ଯେ ସେଗୁଡ଼ିକ ପ୍ରତିମା ହିସାବରେ ଅର୍ଥାତ୍ ନିର୍ଦ୍ଦେଶସୂଚିତ ବସ୍ତୁମାନଙ୍କ ପ୍ରତିଛବି ବା ପ୍ରତିନିଧି ରୂପେ ସବଦା ନିହିତ ନୁହେଁ, ସେଗୁଡ଼ିକ ନିହିତଥାଏ ଏକ ଶିଥିଳ ସାମର୍ଥ୍ୟ ସହ କେବଳ ସଙ୍କେତରୂପେ । ସେଗୁଡ଼ିକରେ ଅନୁକରଣ ମୂଳକ ବା ଆଭାସମୂଳକ ସଂକେତ ହେବାର ସାମର୍ଥ୍ୟ ଆରୋପ କରାଯାଇ ନପାରେ ।

ବାସ୍ତବିକ, ମାନସିକ ପ୍ରଗତିରେ ଅନୁକରଣ ମୂଳକ ପ୍ରତିମା ସୃଷ୍ଟି ପ୍ରକୃତିରେ ଏକ ପରବର୍ତ୍ତୀ ବିକ୍ଷିପ୍ତ ପରିଣାମ ନୁହେଁ କି, ବୋଲି ପ୍ରଶ୍ନ ଉତ୍ଥାପନ କରାଯାଇପାରେ । ପ୍ରତିମାଗୁଡ଼ିକ ସହିତ ମନସ୍ତତ୍ତ୍ୱର ଅଧ୍ୟୟନ ଆରମ୍ଭ କରିବାରେ ଆମେ ଏପରି ଅଭ୍ୟସ୍ତ ଯେ ମାନସିକ କ୍ରିୟା ମଧ୍ୟ ସେଗୁଡ଼ିକ ସହିତ ନିଶ୍ଚୟ ଆରମ୍ଭ ହୋଇଥିବ ବୋଲି ଆମେ ଭାବ-

ବସୁ । କିନ୍ତୁ ସେଗୁଡ଼ିକ ବିନା ମାନସିକ କିମ୍ବା ସୁନ୍ଦରରୂପେ ସମ୍ପାଦିତ ହୋଇ ନପାରେ ବୋଲି ମନେ କରିବାର କୌଣସି ଉତ୍ତମ କାରଣ ନାହିଁ । କେତେକ ସୀମିତ କ୍ଷେତ୍ରରେ, ପ୍ରୟାସକୁ ନ୍ୟୂନ କରିବା ପାଇଁ ପ୍ରତିମାଗୁଡ଼ିକର କେତେକ ଅସାଧାରଣଭାବେ ସୀମିତ ବ୍ୟବହାର ରହିଛି । ଶତରଂଜ, ଚେସ୍ ଖେଳାଳୀ, ଗାଣିତିକ ପକ୍ଷରେ ସେଗୁଡ଼ିକ ସୁବିଧା-ଜନକ ହୋଇଥାଏ । କିନ୍ତୁ ଏମାନଙ୍କ ଚିନ୍ତାଧାରା ଆଦିମ ମାନସିକ କାର୍ଯ୍ୟ ନୁହେଁ କହିଲେ ଚଳେ । କ୍ଷୁଧା କଦାଚିତ୍ ସ୍ୱାଦପ୍ରତିମା ଜାଗ୍ରତ କରେ; ବିନା ପ୍ରତିମାରେ ଲାଳ ଗଡ଼େ । ପଥହୀନ କାନ୍ତାର ବା ସହରତଳି ଅଞ୍ଚଳରେ ରାସ୍ତା ଖୋଜି ପାଇବା କେବଳ ଦିକ୍‌ସଂବିତ୍ତି ଓ ପ୍ରତ୍ୟକ୍ଷଣ ଦ୍ୱାରା ସର୍ବୋତ୍ତମଭାବେ କରାଯାଇ ପାରେ । ମୋଟ ଉପରେ, ଏକ ଅନୁକରଣାତ୍ମକ ସଙ୍କେତ ପରି ଉପକରଣ ଆଦିମ ମନ ପକ୍ଷରେ ବିଶେଷ ଉପଯୋଗୀ ସାମଗ୍ରୀ ନୁହେଁ । ଅଧିକାଂଶ ଉଦ୍ଦେଶ୍ୟ ସାଧନ ନିମନ୍ତେ ଅନ୍ୟାନ୍ୟ ସଂକେତ ମଧ୍ୟ ସମଭାବରେ କାର୍ଯ୍ୟକାରୀ ହୋଇପାରିବ । ପ୍ରତିମାଦ୍ୱାରା ଯେଉଁ ଅଳ୍ପକେତେକ ସୁବିଧା ମିଳେ, ତାହା ଅପେକ୍ଷା ସେଗୁଡ଼ିକୁ ବ୍ୟବହାର କରୁଥିବା ବ୍ୟକ୍ତିମାନେ ନିଜକୁ ଯେଉଁ 'ବିପଦ ସମ୍ଭାବନା'ର ସମ୍ମୁଖୀନ କରାନ୍ତି, ତଜ୍ଜନିତ ଅସୁବିଧା ବଳିପଡ଼େ । ଆଦୌ ପ୍ରତିମା ନଥିବା ଅପେକ୍ଷା ଏକ ଅଯଥାର୍ଥ ବା ଅବାନ୍ତର ପ୍ରତିମା ଅଧିକ ମନ୍ଦ । ପ୍ରତିମା-ଗୁଡ଼ିକ ଅତି ଆଦିମ ଓ ମୌଳିକ ପରିଣତି ହୋଇଥିବା ସପକ୍ଷରେ କେତେକ ଯୁକ୍ତି ଦିଆଯାଏ; ଯଥା—ସ୍ୱପ୍ନ ଉପରେ ପ୍ରତିଷ୍ଠିତ ଯୁକ୍ତି ଅଥବା ଶିଶୁ ଓ ଆଦିମ ଲୋକଙ୍କ ମଧ୍ୟରେ ପ୍ରତିମା ପ୍ରଚଳନର ତଥାକଥିତ ପ୍ରାଚୁର୍ଯ୍ୟ ଉପରେ ପ୍ରତିଷ୍ଠିତ ଯୁକ୍ତି । ଏଗୁଡ଼ିକର ମୂଲ୍ୟାଙ୍କନ ସ୍ପଷ୍ଟତଃ କଷ୍ଟକର । କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ପ୍ରତିମାଦ୍ୱାରା ଆବଶ୍ୟକରୂପେ ସମ୍ପନ୍ନ ନହେଉଥିଲେ ସୁଦ୍ଧା ତାହାର ପ୍ରଚଳନ ଥାଇପାରେ, ଉଦାହରଣ ସ୍ୱରୂପ, ଦିବା-ସ୍ୱପ୍ନଦ୍ୱାରା ପରିତୃପ୍ତି ମିଳେ, କିନ୍ତୁ ଏଥିରୁ ପ୍ରମାଣିତ ହେଉନାହିଁ ଯେ ଦିବାସ୍ୱପ୍ନ ବିନା ସଂପୃକ୍ତ ନିର୍ଦ୍ଦେଶଗୁଡ଼ିକର ସଂଗଠନ ସମ୍ଭବପର ନୁହେଁ । ସେହିପରି ଯେଉଁମାନେ ସେମାନଙ୍କ ପ୍ରାତଃଭୋଜନ ସାମଗ୍ରୀର ନିଃଶେଷୀ ପ୍ରତିମା ସ୍ୱଭାବତଃ ରଚନା କରନ୍ତି, ପ୍ରତିମାରେ ଅତ୍ୟଧିକ ପରିମାଣରେ ନିମଜ୍ଜନ ସେମାନଙ୍କ ସ୍ୱାଭାବିକ ସାମର୍ଥ୍ୟକୁ କ୍ଷୁଣ୍ଣ କରି ପକାଇ ନଥିଲେ, ସେମାନେ ପ୍ରତିମାର ଅସ୍ପଷ୍ଟ ଆଭାସ ବିନା ମଧ୍ୟ ପ୍ରାତଃଭୋଜନର ସମସ୍ତ ବିଷୟ ପ୍ରାୟଶଃ ଜାଣିପାରିବେ ।

ଉପର୍ଯ୍ୟୁକ୍ତ କାରଣ ଗୁଡ଼ିକ ହେତୁରୁ ଯେଉଁ ଅର୍ଥକରଣ-ସିଦ୍ଧାନ୍ତ ପ୍ରତିମାଗୁଡ଼ିକୁ ଭିତ୍ତିପ୍ରସ୍ତର ରୂପେ ଗ୍ରହଣ କରିବାରୁ ବିରତ ରହିପାରେ, ତାହା ଏତାଦୃଶ ଭାବେ ବିରତ ରହି ପାରୁ ନଥିବା ସିଦ୍ଧାନ୍ତ ଗୁଡ଼ିକ ଅପେକ୍ଷା ସୁପ୍ରତ୍ୟକ୍ଷରୂପେ ଅଧିକ ସୁବିଧାଜନକ । ମୁଖ୍ୟତଃ ଏହି ବିଷୟରେ ହିଁ ଏଠାରେ ପ୍ରଦତ୍ତ ମତ ଶ୍ରୀ ରସେଲଙ୍କ ଅର୍ଥ ବିଷୟକ

ବିବରଣୀଠାରୁ (୧) ଭିନ୍ନ । କିନ୍ତୁ ଜ୍ଞାନ-ଆହରଣ କ୍ଷେତ୍ରରେ ସ୍ମାରକ-କାରଣିକତାର ଭୂମିକା ସମ୍ବନ୍ଧରେ ଆମର ଏହି ସଂକ୍ଷିପ୍ତ ବିବରଣୀ ପ୍ରଦତ୍ତ ଆଲୋଚନା ଅପେକ୍ଷା ଏକ ସରଳତର ଆଲୋଚନା ପାଇବାକୁ ଯେଉଁମାନେ ଇଚ୍ଛା କରନ୍ତି, ସେମାନେ ଶ୍ରୀ ରସେଲଙ୍କ ପ୍ରଦତ୍ତ ବିବରଣୀ ଅଧ୍ୟୟନ କରିବା ଉଚିତ ।

ଏବେ ମନେକରାଯାଉ ଯେ ଆମେ ଆମର ଦିଆସିଲି କାଠି ମାରୁଛୁ ଓ ଅଗ୍ନିଶିଖାର ପ୍ରତୀକ୍ଷା କରୁଛୁ । ଆମ ପ୍ରତୀକ୍ଷାର ଫଳ ସତ୍ୟ ହୋଇଛି କି ମିଥ୍ୟା ହୋଇଛି, ତାହା ସ୍ଥିର କରିବା ନିମନ୍ତେ ଆମର କେତେକ ଉପାୟ ରହିବା ଆବଶ୍ୟକ । ପ୍ରକୃତରେ ଆମେ ଦେଖିବୁ ଯେ ଅଗ୍ନିଶିଖା ଉତ୍ପନ୍ନ ହୋଇଛି କି ନା । କିନ୍ତୁ ଆମର ଉତ୍ତରଦେବା ଯୋଗ୍ୟ ପ୍ରଶ୍ନଟି ହେଉଛି, ଆମେ ଯେଉଁ ସମସ୍ତ ଅନ୍ୟାନ୍ୟ ସମ୍ଭବପର ଘଟଣା ମନୋନୟନ କରି-ପାରିଥାନ୍ତୁ, ସେଗୁଡ଼ିକ ମଧ୍ୟରୁ ଏହି ନିର୍ଦ୍ଦିଷ୍ଟ ଅଗ୍ନିଶିଖା ଉପରେ ହିଁ ଆମ ପ୍ରତୀକ୍ଷାର ସତ୍ୟାସତ୍ୟ ନିର୍ଭରଶୀଳ (୨) ବୋଲି ଆମେ କିପରି ତାକୁ ବାଛୁନେଉ ? ଆମର ବାଛିବା କାର୍ଯ୍ୟ କେତେକ ବାହ୍ୟ ପ୍ରସଙ୍ଗ ସାହାଯ୍ୟରେ କରାଯାଏ, ଯାହାର ଏକ ଅଙ୍ଗ ହେଉଛି ବିଗତ ଘଟଣା । ଅର୍ଥାତ୍, ଯେଉଁ ପ୍ରସଙ୍ଗର ଏହି କ୍ଷେତ୍ରରେ ଗୋଟିଏ ଅଙ୍ଗ ହେଉଛି ଘର୍ଷଣ, ତାହାକୁ ପୂର୍ଣ୍ଣାଙ୍ଗ କରିବା ନିମନ୍ତେ ଯଦି କୌଣସି ଘଟଣା ଆବଶ୍ୟକ, ତେବେ ଏହା ହିଁ ହେଉଛି ସେହି ଘଟଣା । ସୁତରାଂ ଘର୍ଷଣଗୁଡ଼ିକର ଓ ଅଗ୍ନିଶିଖାଗୁଡ଼ିକର ଅତୀତ ଅନୁଭୂତ ଏବଂ ଏହି ପ୍ରତୀକ୍ଷାଦ୍ୱାରା ଗଠିତ ମନସ୍ତାତ୍ତ୍ୱିକ ପ୍ରସଂଗ ମାଧ୍ୟମରେ ଏହି ଅଗ୍ନିଶିଖା ଏହି ପ୍ରତୀକ୍ଷା ସହିତ ସମ୍ପୃକ୍ତ ।

ଏବେ ଯଦି ଏପରି ଏକ ଘଟଣା ଥାଏ, ଯାହା ସମ୍ପୃକ୍ତ ବାହ୍ୟ ପ୍ରସଙ୍ଗକୁ ପୂର୍ଣ୍ଣାଙ୍ଗ କରେ, ତେବେ ନିର୍ଦ୍ଦେଶଟି ସତ୍ୟ ଏବଂ ଘଟଣାଟି ହେଉଛି ତାହାର ନିର୍ଦ୍ଦେଶ୍ୟ; ଏପରି କୌଣସି ଘଟଣା ଯଦି ନଥାଏ, ତେବେ ନିର୍ଦ୍ଦେଶଟି ମିଥ୍ୟା ଏବଂ ପ୍ରତୀକ୍ଷା ନୈରାଶ୍ୟରେ ପରିଣତ ହୁଏ ।

---

(୧) *The Analysis of Mind* ବିଶେଷତଃ ପୃ ୨୦୭-୨୧୦ ଦେଖ । ଏହି ବିବରଣୀରେ ଗୋଟିଏ ବିଷୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । Mr. Russell ଙ୍କ ମତରେ "ସାମାନ୍ୟ ଓ ବିଶେଷ ହେଉଛି ଏକ ପରିମାଣଗତ ବ୍ୟାପାର" (ପୃ ୨୦୯) । ନିର୍ଦ୍ଦେଶର ଏକ କାରଣିକ ମତବାଦ ପାଇଁ ଅନ୍ୟକୌଣସି ସିଦ୍ଧାନ୍ତ ସମ୍ଭବପର ବୋଲି ମନେହୁଏ ନାହିଁ । ତେଣୁ ଅନପେକ୍ଷ ବିଶେଷ ଓ ଅନପେକ୍ଷ ସାମାନ୍ୟର କୌଣସି ସ୍ଥାନ ରହିବା ବିଧେୟ ନୁହେଁ ଏବଂ ଏଗୁଡ଼ିକ ଆଲୋଚନା ସ୍ତରକୁ ଆସି ନପାରେ ।

(୨) ଅର୍ଥକରଣ ସିଦ୍ଧାନ୍ତର ଏହି ନିର୍ଣ୍ଣାୟକ ସୋପାନ ସମ୍ବନ୍ଧରେ ଏକ ଅଧିକ ଆକାରନିଷ୍ଠ ଓ ସୁବିସ୍ତୃତ ବିବରଣୀ ପରିଶିଷ୍ଟ ଖ ରେ ରହିଛି । ଏ ବିଷୟର ଜଟିଳତାରେ ଯେଉଁମାନେ ଅନୁରକ୍ତ, ସେମାନଙ୍କର ତାହା ଅଧ୍ୟୟନୀୟ ।

ଏକ ଉପସ୍ଥିତ ସମ୍ବେଦନ ଦ୍ୱାରା ପ୍ରଭାନ୍ତ 'ଏକ ଅଗ୍ନିଶିଖା ଏହି ଘର୍ଷଣର ପରବର୍ତ୍ତୀ ହେବ' ପରି ଆକାରର ବିଶ୍ୱାସମାନ ଉପର୍ଯ୍ୟୁକ୍ତ ବିବରଣୀର ଅନ୍ତର୍ଭୁକ୍ତ ହୋଇ ରହିଛି । ଏକ ଉପସ୍ଥିତ ସମ୍ବେଦନ ପରିବର୍ତ୍ତେ କେବଳ ଏକ ବିଶ୍ୱାସ ଅନ୍ୟ ଏକ ବିଶ୍ୱାସର ସଙ୍କେତ ହୋଇପାରେ । ସେହି କ୍ଷେତ୍ରରେ ଏହି ବିଶ୍ୱାସର ହିଁ ଅର୍ଥ କରାଯାଉଛି । ଏହି ପ୍ରକାରର କ୍ଷେତ୍ର ଯାହା ଘଟେ ବୋଲି ମନେହୁଏ, ତାହା ହେଉଛି କେବଳ ଅନ୍ତର୍ନିରୀକ୍ଷଣ-ମୂଳକ ବିଶ୍ୱାସର କ୍ଷେତ୍ର । ଏହା 'ମୁଁ ବିଶ୍ୱାସ କରେ ଯେ ମୁଁ ବିଶ୍ୱାସ କରୁଛି, ଇତ୍ୟାଦି' ଆକାରର ହୋଇଥାଏ । କିନ୍ତୁ ଏଠାରେ ସ୍ୱୀକାର କରାଯିବା ଗୁରୁତ୍ୱପୂର୍ଣ୍ଣ ଯେ ଏପ୍ରକାର ବିଶ୍ୱାସଗୁଡ଼ିକ ଅନ୍ୟାନ୍ୟପ୍ରକାର ବିଶ୍ୱାସଗୁଡ଼ିକ ସହିତ ସମପରିମାଣରେ ବା ତହିଁରୁ ଅଧିକ ପରିମାଣରେ ମିଥ୍ୟା ହେବା ସମ୍ଭବପର । ଯଦି ଗୋଟିଏ ବିଶ୍ୱାସ ଏକ ସମ୍ବେଦନ ଦ୍ୱାରା ପ୍ରଭାନ୍ତ ହୋଇ ନଥାଏ, ତେବେ ନିୟମାନୁଗତଭାବେ ତାହାର ସଙ୍କେତ ସ୍ୱରୂପ ଏକାଧିକ ସହାବସ୍ଥିତ ବା ଅନୁକ୍ରମିକ ବିଶ୍ୱାସ ଆବଶ୍ୟକ ହୁଏ । 'ଏକ ଅଗ୍ନିଶିଖାର ଉଦ୍ଭବ ହେବ' ଏବଂ 'ମୁଁ ଏକ ବାରୁଦ କାରଖାନାରେ ରହିଛି'—ଏହି ବିଶ୍ୱାସ ଦୁଇଟି ହେଉଛି ଅଧିକାଂଶ ବିଶ୍ୱାସକାରୀଙ୍କ ପକ୍ଷରେ 'ମୃତ୍ୟୁ ଆସନ୍ନ' ବିଶ୍ୱାସ ରୂପେ ଅର୍ଥ କରାଯିବାର ଯୁଗ୍ମ ସଙ୍କେତ । ଏହି ଶେଷୋକ୍ତ ବିଶ୍ୱାସର (୧) ବୈଶିଷ୍ଟ୍ୟର ନିର୍ଣ୍ଣାୟକ ହୋଇଥିବା ମନସ୍ତାତ୍ତ୍ୱିକ ପ୍ରସଙ୍ଗମାନଙ୍କ ମଧ୍ୟରୁ ଗୋଟିଏ ହେଉଛି ଉପର୍ଯ୍ୟୁକ୍ତ ପ୍ରସଙ୍ଗ । ସମ୍ପୃକ୍ତ ବିଶ୍ୱାସଟି ସତ୍ୟ କି ନୁହେଁ ଯାହା ଉପରେ ନିର୍ଭର କରିବ, ତାହା ହେଉଛି ଏପରି କୌଣସି ସତ୍ତା ରହିଛି କି ନାହିଁ, ଯାହା ଉଭୟ ସଙ୍କେତ ବିଶ୍ୱାସର ବୈଶିଷ୍ଟ୍ୟ ତଥା ତାହାର ନିଜସ୍ୱ ବୈଶିଷ୍ଟ୍ୟ ଏବଂ ଏକ ବହୁପଦୀ ସମ୍ବନ୍ଧ ହେତୁରୁ ଏହି ସଙ୍କେତ ବିଶ୍ୱାସ ଦୁଇଟିର ନିର୍ଦ୍ଦେଶ୍ୟ ସହିତ ଏପରି ଏକ ପ୍ରସଙ୍ଗ ଗଠନ କରେ, ଯାହା ସଙ୍କେତ ବିଶ୍ୱାସ ଦୁଇଟିର ବୈଶିଷ୍ଟ୍ୟର ନିର୍ଣ୍ଣାୟକ ।

---

(୧) ଏଠାରେ ଆବଶ୍ୟକୀୟ ଅତିରିକ୍ତ ଅଭିଗ୍ରହଟି ହେଉଛି ଗୋଟିଏ ବିଶ୍ୱାସର ପରିଣାମଗୁଡ଼ିକ ସମର୍ଥନକାରକ ସମ୍ବେଦନର ପରିଣାମଗୁଡ଼ିକ ସହିତ ଉତ୍ପାଦିତ ବିଶ୍ୱାସ-ଗୁଡ଼ିକ ଦୃଷ୍ଟିରୁ ପ୍ରାୟଶଃ ସଦୃଶ ହୋଇଥାଏ । ଗୋଟିଏ ବୁଦାରେ ଲୁଚି ରହି ଜଣେ ଲୋକ ମୋତେ ଗୁଳି ମାରୁଛି—ଏହି ବିଶ୍ୱାସର ପରିଣାମ ଗୁଡ଼ିକ (ମୋ ପକ୍ଷରେ ଅନ୍ୟତ୍ର ରହିବା ଅଧିକ ଉତ୍ତମ ହେବ—ଏ ପ୍ରକାର ଉତ୍ପାଦିତ ବିଶ୍ୱାସମାନଙ୍କ ବିଷୟରେ) ଏହିପରି ଭାବେ ଗୁଳି ମାରୁଥିବା ବ୍ୟକ୍ତିକୁ ଦେଖିବା ହେତୁରୁ ଜାତ ହେଉଥିବା ପରିଣାମ ଗୁଡ଼ିକ ସଦୃଶ ହେବ । ଏ କଥାକୁ ପ୍ରାୟ କେହି ଅସ୍ୱୀକାର କରିବେ ନାହିଁ । ଯେଉଁ ପ୍ରସଙ୍ଗ-ଗୁଡ଼ିକରେ କ ସଘଟନର ବିଶ୍ୱାସ ଏବଂ କ ର ସଘଟନଟି ଅର୍ଥକରଣର ବିକଳ୍ପ ସଙ୍କେତ ରୂପେ ଏ ବିଷୟରେ ସମାନ ହୋଇଥାନ୍ତି, ସେହିପ୍ରକାର ପ୍ରସଙ୍ଗଗୁଡ଼ିକ ମନୋବିଜ୍ଞାନର ଯେ କୌଣସି ପ୍ରତିଷ୍ଠିତ ପ୍ରସଂଗଭୂକ୍ତ ସୁପ୍ରତିଷ୍ଠିତ ।

ଅନ୍ୟ କଥାରେ କହିଲେ, ଷ୍ଟାନଟର ଭର୍ତ୍ତିଭୂକ୍ତ ହେବା ବା ନହେବା ଉପରେ ଏହି ବିଶ୍ୱାସର ସତ୍ୟ ହେବା ବା ନହେବା ନିର୍ଭର କରେ ।

ଏହିପରିଭାବେ ନିର୍ଦ୍ଦିଷ୍ଟ ପ୍ରତୀକ୍ଷା ଗୁଡ଼ିକର ସମସ୍ତ କ୍ଷେତ୍ରକୁ ପ୍ରଦତ୍ତ ବିବରଣୀର ସଂପ୍ରସାରଣ କରାଯାଇ ପାରେ । ଅଧିକନ୍ତୁ, ପ୍ରସଙ୍ଗମାନଙ୍କର ସଂଯୋଗକାରକ ସମ୍ବନ୍ଧଗୁଡ଼ିକ ପୌର୍ବାପର୍ଯ୍ୟରେ ସୀମିତ ରହି ନଥିବାରୁ ଏହି ବିବରଣୀ ଅନୁମାନର ବା ବିଶେଷରୁ ବିଶେଷ-ଅର୍ଥକରଣର ସମସ୍ତ କ୍ଷେତ୍ରରେ ପ୍ରଯୋଜ୍ୟ । ତେଣୁ ଏହାର ପରବର୍ତ୍ତୀ ସୋପାନ ହେଉଛି ସାଧାରଣ ନିର୍ଦ୍ଦେଶ କ୍ଷେତ୍ରରେ କି ପ୍ରକାର ବିବରଣୀ ଦିଆଯାଇ ପାରେ, ତାହାର ଅନୁସନ୍ଧାନ ।

ଏଠାରେ ବିକଳ୍ପ ଭାଷା ପ୍ରୟୋଗର ଆବଶ୍ୟକତା ରହିଛି, ଏବଂ ତାହା କେତେକ ଅସୁବିଧା ଜାତ କରିଥାଏ । 'ବୈଶିଷ୍ଟ୍ୟ', 'ସମ୍ବନ୍ଧ', 'ଧର୍ମ', 'ସଂପ୍ରତ୍ୟୟ' ଇତ୍ୟାଦି ପରି ଆଭାସୀ-ପ୍ରତୀକଗୁଡ଼ିକ ଆରୋପିତ ବୈଶିଷ୍ଟ୍ୟ ପ୍ରମୂର୍ତ୍ତ ହେବାକୁ ଥିବା ଏକକ ବସ୍ତୁମାନଙ୍କ ଅତିରିକ୍ତ (ପରୋକ୍ଷଭାବେ) ଅନ୍ୟକିଛି ପରିବର୍ତ୍ତେ ବ୍ୟବହୃତ ହୁଅନ୍ତି ନାହିଁ ବୋଲି ଗ୍ରହଣ କରିବା ସପକ୍ଷରେ ଏକ ପରବର୍ତ୍ତୀ ପରିଚ୍ଛେଦରେ କେତେକ ଯୁକ୍ତି ଉପସ୍ଥାପିତ ହେବ । ଏଗୁଡ଼ିକ ମଧ୍ୟରେ ସର୍ବପ୍ରଧାନ ଯୁକ୍ତି ହେଉଛି ଏକ ଭାବ-ଜଗତର ସାମାନ୍ୟ ଅଧିବାସୀ-ମାନଙ୍କ ସ୍ଥିତିରେ ସ୍ୱଭାବସିଦ୍ଧ ଅବିଶ୍ୱାସ । ଆମେ ପରେ ଦେଖିବା ଯେ ଏହି ଆଭାସୀ-ପ୍ରତୀକ ଗୁଡ଼ିକ ଉପକରଣ ହିସାବରେ ଅପରିହାର୍ଯ୍ୟ; ସୁତରାଂ କେତେକ ଉଦ୍ଦେଶ୍ୟ ସାଧନ ନିମନ୍ତେ ଏ ପ୍ରକାର ବିଶ୍ୱାସ କ୍ଷତିକର ନୁହେଁ । କିନ୍ତୁ ଅନ୍ୟାନ୍ୟ ଉଦ୍ଦେଶ୍ୟ ନିମନ୍ତେ ଏହି ଭିତ୍ତିହୀନ (ବା ସଂପୂର୍ଣ୍ଣରୂପେ ପ୍ରତୀକ-ଭିତ୍ତିକ) ବିଶ୍ୱାସଗୁଡ଼ିକ ଭୟଙ୍କର ବାଧା ସୃଷ୍ଟି କରନ୍ତି । ଏଥିରୁ ଦେଖାଯିବ ଯେ ଏଠାରେ ଯେଉଁ ବିବରଣୀର ରୂପରେଖ ଦିଆଯାଇଛି, ସାଧାରଣ-ନିର୍ଦ୍ଦେଶ କ୍ଷେତ୍ରମାନଙ୍କୁ ତାହାର ସଂପ୍ରସାରଣ ବାଧାପ୍ରାପ୍ତ ହେବାର ଏକ ମୁଖ୍ୟ କାରଣ ହେଉଛି ଏହି ଅପର ଜଗତରେ ବିଶ୍ୱାସରୁ ଉଦ୍ଭୂତ କେତେକ କଳ୍ପିତ ଅସୁବିଧା ।

ଏ ପ୍ରକାର ନିର୍ଦ୍ଦେଶ ଗୁଡ଼ିକୁ ବିଭିନ୍ନ ପ୍ରକାରରେ ସୂତ୍ରବଦ୍ଧ କରାଯାଇ ପାରେ; ତନ୍ମଧ୍ୟରୁ ଗୋଟିଏ ପ୍ରିୟ ସୂତ୍ର ହେଉଛି—'ସମସ୍ତ କ ଖ' ଉପର୍ଯ୍ୟୁକ୍ତ ପ୍ରକାରରେ ପ୍ରତୀକାନ୍ୱିତ କରାଯାଇ ପାରୁଥିବା ଏକ ବିଶ୍ୱାସ ଆମର ରହିଥିବା ସମୟରେ କ'ଣ ଘଟେ, ତାହା ହିଁ ଆମକୁ ଉଦ୍‌ଘାଟନ କରିବାକୁ ପଡ଼ିବ । 'ସମସ୍ତ ଦିଆସିଲି କାଠିର ଘର୍ଷଣ ଅଗ୍ନିଶିଖା ଦ୍ୱାରା ଅନୁସୃତ ହୁଏ'—ଏହି ବିଶ୍ୱାସକୁ ଉଦାହରଣ ସ୍ୱରୂପ ନିଆଯାଉ । ଆମେ ଯେଉଁ ଆକାରର ବିଶ୍ୱାସଗୁଡ଼ିକୁ ଆଗରୁ ବିଚାର କରିଛୁ; ସେଗୁଡ଼ିକ ଅପେକ୍ଷା ଏ ପ୍ରକାର ବିଶ୍ୱାସଗୁଡ଼ିକ ମନସ୍ତାତ୍ତ୍ୱିକ ପ୍ରଗତିରେ ପରବର୍ତ୍ତୀ ପ୍ରଶସ୍ତ ବୋଲି ମନେକରିବା

ନିମନ୍ତେ ଉତ୍ତମ କାରଣ ରହିଛି । କେତେକ ଜୀବ ଏବଂ ଶିଶୁମାନେ ବିଶେଷ ବିଶେଷ ବିଷୟର ପ୍ରତୀକ୍ଷା କରନ୍ତି, କିନ୍ତୁ ସେମାନଙ୍କ ମନରେ ସାଧାରଣ ବିଶ୍ୱାସ ନଥାଏ—ଏହା ଏକ ତାତ୍ତ୍ୱିକ ଧାରଣା । କୁହାଯାଏ ଯେ ବିଶେଷ ବିଶେଷ ବିଶ୍ୱାସଗୁଡ଼ିକ ଉପରେ ଚିନ୍ତା କରିବାଦ୍ୱାରା ସାଧାରଣ ବିଶ୍ୱାସମାନଙ୍କ ଉଦ୍ଭବ ହୁଏ । ଏଣୁ ବିଶେଷ ବିଶେଷ ବିଶ୍ୱାସ ଗୁଡ଼ିକରୁ କୌଣସି ନା କୌଣସି ଭାବେ ସାଧାରଣ ବିଶ୍ୱାସମାନ ଉଦ୍ଭୂତ ହେବା ବିଷୟ ଆମେ ପାଇବା ବୋଲି ଆଶା ରଖିପାରୁ । କିନ୍ତୁ ସରଳ ବା ଆଦିମ ନିର୍ଦ୍ଦେଶ ଗୁଡ଼ିକର ଗୁଣ ସ୍ୱରୂପ ଯେଉଁ ସାମାନ୍ୟତା ବା ବିଶେଷତାର ବ୍ୟବହାର କରାଯାଏ, ତାହା ଯେ ତାର୍କିକ ସୂତ୍ରବଦ୍ଧକରଣ ପ୍ରବେଶ କରାଇବାକୁ ଚେଷ୍ଟା କରୁଥିବା ସାମାନ୍ୟତା ଓ ବିଶେଷତା ନୁହେଁ—ଏହା ସୁନିଶ୍ଚିତ । ଏହା ମଧ୍ୟ ମନେକରିବା ଉଚିତ ନୁହେଁ ଯେ ଉପବୃତ୍ତି ସଂକ୍ରାନ୍ତୀୟ ଇତିହାସରେ ବିଶେଷ ନିର୍ଦ୍ଦେଶର ଏକ ସ୍ତର ବା ଯୁଗ ସାଧାରଣ ଚିନ୍ତନର ପୂର୍ବବର୍ତ୍ତୀ ହୋଇଥାଏ । ଏଠାରେ ପଟଣାଟି ବରଂ ହେଉଛି ଯେ ସମସ୍ତ ଚିନ୍ତା ପ୍ରଣାଳୀରେ ଦୁଇଟି ପ୍ରବୃତ୍ତି ରହିଥାଏ; ଗୋଟିଏ ପ୍ରବୃତ୍ତି ହେଉଛି ଅଧିକ ନିର୍ଦ୍ଦିଷ୍ଟତା ବା ଯାଥାର୍ଥ୍ୟ ଅଭିମୁଖୀ ଏବଂ ଅପରଟି ହେଉଛି ଅଧିକ ବ୍ୟାପକତା ଓ ବିସ୍ତୃତି ଅଭିମୁଖୀ । ଯେଉଁ ଅବସ୍ଥାରେ ଏହି ଦ୍ୱିତୀୟ ପ୍ରବୃତ୍ତି କାର୍ଯ୍ୟକାରୀ ହୁଏ, ତାହାର ବିଚାର ଆମେ ଏଠାରେ କରୁଥାଉଁ ।

ଏହି ସୂତ୍ରର ଅନୁସରଣ କରି ଆମେ ବିଚାର କରିଥିବା ବିଶେଷ ବିଶେଷ କ୍ଷେତ୍ର ଗୁଡ଼ିକରୁ ଏକ ସାଧାରଣ ବିଶ୍ୱାସ ଯେଉଁ ସର୍ତ୍ତଗୁଡ଼ିକରେ ଅଭିବୃଦ୍ଧି ଲାଭ କରିପାରେ, ତନ୍ମଧ୍ୟରୁ କେତେକ ଲିପିବଦ୍ଧ କରିବାର ଚେଷ୍ଟା କରାଯାଉ । ଆରମ୍ଭରୁ ଆମେ ଗ୍ରହଣ କରି ନେଇପାରୁ ଯେ;

(୧) ସେହି ଏକ ଦେହ-ମନରେ ଉଆସିଲ କାଠି ଦର୍ଶନର ଏକାଧିକ ସତ୍ୟ ଓ ସମର୍ଥିତ ଅର୍ଥକରଣ ଘଟି ଯାଇଛି; ଏବଂ

(୨) ପ୍ରତୀକ୍ଷା କରାଯାଇଥିବା ଅଗ୍ନିଶିଖା-ବୈଶିଷ୍ଟ୍ୟ ସମ୍ବନ୍ଧାନ୍ୱିତ ସଂବେଦନରେ ଅନୁପସ୍ଥିତ ରହିବା ହେତୁ ଯେଉଁ ଅର୍ଥକରଣ ମିଥ୍ୟା ବୋଲି ପ୍ରଦର୍ଶିତ ହୋଇଛି, ତାହା ସାଧାରଣ ବିଶ୍ୱାସର ଉତ୍ପତ୍ତି ସହିତ ସଂପୃକ୍ତ ନୁହେଁ ।

ଏହି ସର୍ତ୍ତଦ୍ୱୟରୁ ପ୍ରଥମଟି ଅପେକ୍ଷା ଦ୍ୱିତୀୟଟି ସ୍ପଷ୍ଟତଃ ଅଧିକ ଗୁରୁତ୍ୱପୂର୍ଣ୍ଣ । ଅନେକଙ୍କ ମନେହୁଏ ଯେ ଗୋଟିଏ ଗୋଟିଏ ଅନୁଭୂତିରୁ ଆମେ ସାଧାରଣ ବିଶ୍ୱାସଗୁଡ଼ିକୁ ଗଢ଼ କରୁ ଓ ବହୁ ଅନୁଭୂତିର ଆବଶ୍ୟକ କରୁ ନା । କିନ୍ତୁ (ଅସାଧାରଣ ଶକ୍ତିସମ୍ପନ୍ନ ଭାବୁକମାନଙ୍କ କଥା ଛାଡ଼ିଦେଲେ) ଆମେ ସାକ୍ଷାତ୍‌ଭାବେ ବିରୁଦ୍ଧ ସାକ୍ଷ୍ୟପ୍ରମାଣ ଉପରେ ସାଧାରଣ ବିଶ୍ୱାସଗୁଡ଼ିକୁ ପ୍ରତିଷ୍ଠିତ କରୁ ନା । ତେଣୁ ଆମେ ଦ୍ୱିତୀୟ ସର୍ତ୍ତକୁ ଅପରିବର୍ତ୍ତିତ ରଖିପାରୁ, କିନ୍ତୁ ପ୍ରଥମ ସର୍ତ୍ତଟିର ପୁନରାଲୋଚନା ଆବଶ୍ୟକ । କେତେକ କ୍ଷେତ୍ରରେ

ପୌନଃପୁନିକ ସମର୍ଥିତ-ପ୍ରତୀକ୍ଷାଗୁଡ଼ିକ ସାଧାରଣ ପ୍ରତୀକ୍ଷାର-ଶକ୍ତି ସ୍ୱରୂପ ଯେ କାର୍ଯ୍ୟ କରନ୍ତି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେଗୁଡ଼ିକ ତାହାର ନିର୍ଦ୍ଦେଶ ଅପେକ୍ଷା ତାହାର ପରିମାଣର ହିଁ ଶକ୍ତି । ପକ୍ଷାନ୍ତରେ, ପୌନଃପୁନିକ ସଂଘଟନର ଅନୁଭୂତି ଆବଶ୍ୟକ ପରି ମଧ୍ୟ ମନେହେବ । ଆମେ ଏଠାରେ ବିଗ୍ରହ କରୁଥିବା ଅର୍ଥରେ ଏକ ଆଦିମ ମନର ପ୍ରଥମ ଚିନ୍ତା ସାଧାରଣ ଚିନ୍ତା ବୋଲି ପରିଗଣିତ ହେବାର ସମ୍ଭବପରତା କ୍ଷୀଣ । ସାଦୃଶ୍ୟମୂଳକ ସମର୍ଥିତ ଅର୍ଥକରଣମାନଙ୍କ ଗୋଟିଏ ଶ୍ରେଣୀ ଏକ ସାଧାରଣ ବିଶ୍ୱାସର ପ୍ରସଙ୍ଗରେ ଅନ୍ତର୍ଭୁକ୍ତ ହେବା ବିଧେୟ ବୋଲି ଗ୍ରହଣ କରିନେବା ଯୁକ୍ତିଯୁକ୍ତ ପରି ମନେହୁଏ; ଯଦିଓ ଯେଉଁ ବିଶେଷ ଅର୍ଥକରଣର ସାମାନ୍ୟକରଣ କରିଯାଉଛି, ତାହା ସହିତ ଏହି ଶ୍ରେଣୀ କେତେ ନିବିଡ଼ଭାବେ ସମ୍ବନ୍ଧାନ୍ୱିତ ହେବା ଆବଶ୍ୟକ, ସେ ବିଷୟକୁ ବର୍ତ୍ତମାନ ଅନିଶ୍ଚିତ ଅବସ୍ଥାରେ ଛାଡ଼ିଯିବାକୁ ପଡ଼ିବ ।

ଅନ୍ୟଏକ ଶକ୍ତିକୁ ଏଠାରେ କେବଳ ଅସ୍ପଷ୍ଟ ଭାବରେ ବ୍ୟକ୍ତ କରିଯାଇ ପାରେ; ତାହା ସାଧାରଣ ନିର୍ଦ୍ଦେଶର ଅନ୍ତର୍ଭୁକ୍ତି-କରଣସାମର୍ଥ୍ୟ ସହିତ ସଂପୃକ୍ତ । ଏ ପ୍ରକାର ନିର୍ଦ୍ଦେଶରେ ନିହିତ ଏକକୀକରଣତା ଆଗରୁ ଗୃହୀତ ଓ ବ୍ୟକ୍ତ ଗୁଣଗୁଡ଼ିକ ଅତିରିକ୍ତ ଅନ୍ୟ କୌଣସି ଧର୍ମର 'ମନ'ରେ ରହିବା ଆବଶ୍ୟକ କରେ ପରି ମନେହୁଏ ନାହିଁ । କିନ୍ତୁ ଅନ୍ତର୍ଭୁକ୍ତିକରଣସାମର୍ଥ୍ୟ ଆହୁରି ଏକ ସମସ୍ୟା ଉତ୍ଥାପନ କରେ ବୋଲି ମନେ ହୋଇ-ପାରେ । ଯାହାହେଉ, ଏଠାରେ କି ପ୍ରକାର ଅନୁଭୂତି ଆବଶ୍ୟକ, ତାହାର ଉଦ୍‌ଘାଟନ କରିବା କଷ୍ଟସାଧ୍ୟ ନୁହେଁ । ଅନେକ ପରିସ୍ଥିତିରେ ସମର୍ଥନକାରକ ଉଦ୍ଦୀପନଗୁଡ଼ିକ ଦୃଷ୍ଟିରୁ ଗୋଟିଏ ଦତ୍ତ ବସ୍ତୁବର୍ଗର ସମସ୍ତ ବସ୍ତୁ ବିଷୟ ଏକ ସଂଗରେ ଆମେ ଚିନ୍ତାକରୁ କିମ୍ବା କ୍ରମାନ୍ୱୟରେ ପ୍ରତ୍ୟେକ ବସ୍ତୁ ବିଷୟ ଆମେ ଚିନ୍ତା କରୁ, ସେଥିରେ କିଛି ଯାଏଆସେ ନାହିଁ । ଯେଉଁ ଶିଶୁ ତାହାର ସମସ୍ତ ଅଙ୍ଗୁଳି ଅଠାଳିଆ ବୋଲି ଅନୁଭବ କରେ, ତାହାର ପ୍ରତ୍ୟେକ ଅଙ୍ଗୁଳି ଅଠାଳିଆ ବୋଲି ମଧ୍ୟ ସେ ସମଭାବରେ ଅନୁଭବ କରି ପାରିଥାନ୍ତା । ଅନ୍ୟାନ୍ୟ ପରିସ୍ଥିତିରେ ତାହାର କନିଷ୍ଠ ଅଙ୍ଗୁଳି ଦୁଇଟିକୁ ଧୋଇବା ଅନାବଶ୍ୟକ ହୋଇପାରେ । ଏହିପରି ଭାବେ ନିର୍ଦ୍ଦେଶ୍ୟ ସ୍ୱରୂପ ଅନ୍ତର୍ଭୁକ୍ତିମୂଳକ ବସ୍ତୁବର୍ଗ ଏବଂ ଅଣ-ଅନ୍ତର୍ଭୁକ୍ତିମୂଳକ ବସ୍ତୁବର୍ଗର ପାର୍ଥକ୍ୟ, 'କେତେକ' ଏବଂ 'ସମସ୍ତ' ବସ୍ତୁବର୍ଗ ମଧ୍ୟରେ ପାର୍ଥକ୍ୟ ପ୍ରଥମାବସ୍ଥାରୁ ହିଁ ଯଥାଯଥ ସଙ୍କେତର ନିୟୋଜନ କରିଏ । ଏପରି ବ୍ୟକ୍ତିମାନେ ଅଛନ୍ତି, ଯେଉଁମାନେ ସେମାନଙ୍କ ଜୀବନ ସାରା ଏପ୍ରକାର ପ୍ରତିମାଗୁଡ଼ିକ ସାହାଯ୍ୟରେ ଏହି ପାର୍ଥକ୍ୟ-ଗୁଡ଼ିକ ବିଷୟ 'ଚିନ୍ତା କରିଛନ୍ତି', ଅର୍ଥାତ୍ ଏପ୍ରକାର ପ୍ରତିମାଗୁଡ଼ିକୁ ସେମାନେ ସେମାନଙ୍କ ଅର୍ଥକରଣରେ ସଯୋଗୀ ସଙ୍କେତ ସ୍ୱରୂପ ବ୍ୟବହାର କରିଛନ୍ତି । ଅନ୍ୟାନ୍ୟ କ୍ଷେତ୍ରରେ, ଏପ୍ରକାର କୌଣସି ପ୍ରତିମା ଅଥବା 'ସମସ୍ତ' ବା 'କେତେକ' ଶବ୍ଦ କିମ୍ବା ତାହାର ସମାର୍ଥକ ଶବ୍ଦର ବ୍ୟବହାର ସୁଦ୍ଧା ଆବିଷ୍କାର କରିଯାଇପାରିବ ନାହିଁ । ତଥାପି ଏହି

ଶେଷୋକ୍ତ କ୍ଷେତ୍ରଗୁଡ଼ିକରେ ମଧ୍ୟ ଏପ୍ରକାର ପରିସ୍ଥିତି ଜନିତ ଆଲେଖ୍ୟ କ୍ରିୟାର କେତେକ ଅବଶେଷ ଚିହ୍ନ ରହିଥାଏ ଏବଂ ତାହା 'ଏହିସବୁ ଧାରଣାର ପ୍ରୟୋଗ' କରୁଥିବା ଅର୍ଥକରଣଙ୍କୁ ନିୟନ୍ତ୍ରିତ କରେ ବୋଲି ଯୁକ୍ତିଯୁକ୍ତ ଭାବେ ଗ୍ରହଣ କରାଯାଇ ପାରେ । ତେଣୁ ସାଧାରଣ ନିର୍ଦ୍ଦେଶରେ ଯେଉଁ ପ୍ରକାର ମନସ୍ତାତ୍ତ୍ୱିକ ପ୍ରସଙ୍ଗ ସଂଶ୍ଳିଷ୍ଟ, ତାହା ପ୍ରଦର୍ଶନ କରିବାକୁ ପ୍ରୟାସ କରିବାବେଳେ ଏହି ଧାରଣାଗୁଡ଼ିକୁ ସୂଚିତ କରୁଥିବା ପଦମାନଙ୍କ ଭିତରେ ଅନ୍ତର୍ଭୁକ୍ତ ଆବଶ୍ୟକ ।

ସାଧାରଣ ବିଶ୍ୱାସମାନଙ୍କ ସମ୍ବନ୍ଧରେ ନିର୍ଦ୍ଦେଶର କାରଣିକ-ସିଦ୍ଧାନ୍ତମୂଳକ ଦୃଷ୍ଟିକୋଣରୁ ଏହିପରି ଏକ ବିବରଣୀ ଦିଆଯାଇ ପାରେ । ଏହାର ରୂପରେଖର ବର୍ଣ୍ଣନା କେବଳ ପରୀକ୍ଷାମୂଳକ ଭାବେ ଦିଆଯାଇଛି । ଶୀଘ୍ର ହେଉ ବା ବିଳମ୍ବରେ ହେଉ ମନୋବିଜ୍ଞାନକୁ ଏପ୍ରକାର ପ୍ରସଙ୍ଗଗୁଡ଼ିକର ସବିଶେଷ ଅନୁସନ୍ଧାନ କରିବାକୁ ପଡ଼ିବ । କିନ୍ତୁ ଏଥି ନିମନ୍ତେ ଯେଉଁପ୍ରକାର ପ୍ରଣାଳୀଗୁଡ଼ିକ ଆବଶ୍ୟକ, ତାହା ଏହି ବିଜ୍ଞାନ ଏବେ ମାତ୍ର ପରୀକ୍ଷା ନିରୀକ୍ଷା କରିବାକୁ ଆରମ୍ଭ କରିଛି । ସେବଲବଙ୍କ ପ୍ରଚେଷ୍ଟାରୁ ଜନ୍ମଲାଭ କରିଥିବା ଅନୁବନ୍ଧିତ ପ୍ରତିବର୍ତ୍ତୀ ମତବାଦର ଯେତେବେଳେ ଅଧିକ ଅଭିବୃଦ୍ଧି ଘଟିବ, (୧) ସେତେବେଳେ ଏ ବିଷୟରେ ଯଥେଷ୍ଟ ଅଗ୍ରଗତି ହେବ ବୋଲି ଆଶା କରାଯାଇପାରେ ।

ଯଦି ସମ୍ଭବପର, କେଉଁ ଦୃଷ୍ଟିକୋଣରୁ, ବିଶେଷ ହେଉ ବା ସାମାନ୍ୟ ହେଉ, ଗୋଟିଏ ମିଥ୍ୟା ବିଶ୍ୱାସର ଏକ ନିର୍ଦ୍ଦେଶ୍ୟ ଥାଏ—ଏ ବିଷୟର ଆଲୋଚନା ବାକି ରହିଛି । ପ୍ରଦତ୍ତ ସଙ୍କେତଗୁଡ଼ିକରୁ ଏକଥା ସ୍ପଷ୍ଟ ଯେ ଯେଉଁ ଅର୍ଥରେ ଗୋଟିଏ ସତ୍ୟ ବିଶ୍ୱାସର ଏକ ନିର୍ଦ୍ଦେଶ୍ୟ ଥାଏ, ତାହାଠାରୁ ନିଶ୍ଚିତଭାବେ ଏକ ସମ୍ପୂର୍ଣ୍ଣ ଭିନ୍ନ ଅର୍ଥରେ ହିଁ ଗୋଟିଏ ମିଥ୍ୟା ବିଶ୍ୱାସର ଏକ ନିର୍ଦ୍ଦେଶ୍ୟ ଥାଏ ବୋଲି କୁହାଯାଇପାରେ । ସୁତରାଂ ଏହି ପଦର ଏକ ଅଧିକ ସମ୍ପ୍ରସାରିତ ବ୍ୟବହାର ପାଇଁ ବର୍ତ୍ତମାନ ଯେଉଁ ଯୁକ୍ତିମାନ ଦିଆଯିବ, ସେଗୁଡ଼ିକ ଆଗରୁ ଯାହା କୁହାଯାଇଛି, ତାହାକୁ କୌଣସି ଭାବେ ପ୍ରଭାବିତ କରୁନାହିଁ ଏବଂ ମିଥ୍ୟା ବିଶ୍ୱାସଗୁଡ଼ିକ ସମ୍ପର୍କରେ ଏହି ପଦର ଆମେ ଯେଉଁ ବ୍ୟବହାର କରିବୁ, ତାହା କେବଳ ସୁବିଧାଜନକ ହେବା ଦୃଷ୍ଟିରୁ ହିଁ କରାଯିବ ।

ପ୍ରଥମତଃ ଏହା ସୁସ୍ପଷ୍ଟ ଯେ ଉଭୟ ସତ୍ୟ ଓ ମିଥ୍ୟା ନିର୍ଦ୍ଦେଶଗୁଡ଼ିକ ଗୋଟିଏ ବିଷୟରେ ପରସ୍ପର ସମାନ ଏବଂ ସେହି ବିଷୟରେ ସେଗୁଡ଼ିକ ସହିତ ଇନ୍ଦ୍ରିୟବୋଧ କରିବା, ନିଃଶ୍ୱାସ-ପ୍ରଶ୍ୱାସ ନେବା, ପେଶୀ ସଙ୍କୋଚନ କରିବା, ସ୍ମରଣ କରିବା, କାମନା କରିବା ଇତ୍ୟାଦି ପ୍ରକ୍ରିୟାଗୁଡ଼ିକ ସମସ୍ତରେ ନୁହନ୍ତି । ଯେଉଁ ବିଷୟରେ ସେଗୁଡ଼ିକ ପରସ୍ପର

---

(୧) ଏହି ପ୍ରଣାଳୀର ତଥା ତାହାର ପ୍ରୟୋଗମାନଙ୍କ ଏକ ବିବରଣୀ ନିମନ୍ତେ କଥିତ ଗ୍ରନ୍ଥ, *The meaning of Psychology* ୪ର୍ଥ ପରିଚ୍ଛେଦ ଦେଖ ।

ସମାନ, ତାହା ପରିବର୍ତ୍ତେ ବ୍ୟବହାର ହେବାପାଇଁ ନିର୍ଦ୍ଦେଶ ପରି ଏକ ପଦ ରଖିବା ସୁବିଧାଜନକ । ଏତଦ୍‌ନିମନ୍ତେ 'ବିଶ୍ୱାସ' ପଦଟି ସର୍ବାଧିକ ଉପଯୁକ୍ତ ବୋଲି ପ୍ରଥମରୁ ମନେ ହୋଇପାରେ; କିନ୍ତୁ ଏହା ସେତେ ସୁବିଧାଜନକ ନୁହେଁ । ଏହା ସୁବିଧାଜନକ ନହେବାର କାରଣ ହେଉଛି—ଉପରେ ଆଲୋଚିତ ମତଗୁଡ଼ିକ ପରି କେତେକ ମତ ସହିତ ଏହା ସଂପୃକ୍ତ ଏବଂ ଏହି ମତଗୁଡ଼ିକ 'ବିଷୟରେ ଚିନ୍ତାକରିବା' ସମ୍ବନ୍ଧକୁ ଏକ ଅସାଧାରଣ ସମ୍ବନ୍ଧ ବୋଲି ପ୍ରାକ୍ ସ୍ୱୀକାର କରି ନିଅନ୍ତି; ଏବେ ପୁଣି ଏହି ପ୍ରଣାଳୀର ଭାବାତ୍ମକ-ସଂକଳ୍ପାତ୍ମକ ବୈଶିଷ୍ଟ୍ୟ ପ୍ରତି ବିଶେଷଭାବେ ଲକ୍ଷ୍ୟ ରଖି ଏହି ପଦଟି ଅଧିକରୁ ଅଧିକତର ପରିମାଣରେ ବ୍ୟବହୃତ ହେଉଛି । ନିର୍ଦ୍ଦେଶର ବିଶ୍ଳେଷଣ ବୋଲି ଯାହାକୁ ଅଭିହିତ କରାଯାଇପାରେ, ତହିଁରୁ ଏକ ଦ୍ୱିତୀୟ ଓ ଆହୁରି ବଳିଷ୍ଠ କାରଣ ନିଃସୃତ । ଉଦାହରଣ ସ୍ୱରୂପ, 'ଅବିଳମ୍ବେ ଏକ ଆଲୋକର ଉଦ୍ରେକ ହେବ' ଏବଂ 'ଅବିଳମ୍ବେ ଏକ ଧ୍ୱନିର ଉଦ୍ରେକ ହେବ'—ଏହି ବାକ୍ୟ ଦୁଇଟି ଯେଉଁ ନିର୍ଦ୍ଦେଶ ଦୁଇଟିର ପ୍ରତୀକ, ସେ ଦୁଇଟିକୁ ତୁଳନା କଲେ, ଏତିକି ଅନ୍ତତଃ ସମ୍ଭବପର ବୋଲି ଗୃହୀତ ହେବ ଯେ ନିର୍ଦ୍ଦେଶ ଦୁଇଟି କେତେକ ସଦୃଶ ଅଂଶ ଓ କେତେକ ବିସଦୃଶ ଅଂଶର ସମ୍ମିଶ୍ରଣ । 'ଆଲୋକ' ଓ 'ଧ୍ୱନି' ଯେଉଁ ଅଂଶର ପ୍ରତୀକ, ସେ ଦୁଇଟିକୁ ଆମେ ବିସଦୃଶ ବୋଲି ଗ୍ରହଣ କରିପାରୁ । ଅବଶିଷ୍ଟ ଅଂଶଗୁଡ଼ିକ ଉଭୟ କ୍ଷେତ୍ରରେ ପରସ୍ପର ସଦୃଶ । ତା'ପରେ ପ୍ରଶ୍ନ ଉଠେ; "ଯେଉଁ ଅଂଶଗୁଡ଼ିକର ସମ୍ମିଶ୍ରଣରୁ ନିର୍ଦ୍ଦେଶର ଉତ୍ପତ୍ତି ହୋଇପାରେ ବୋଲି ମନେହୁଏ, ସେହି ଅଂଶଗୁଡ଼ିକ କ'ଣ କ'ଣ ?"

ଆମେ ଯେଉଁ ଉତ୍ତର ଦେବୁ, ତାହା ହେଉଛି ଏହି ଅଂଶଗୁଡ଼ିକ ମଧ୍ୟ ପ୍ରତ୍ୟେକେ ସରଳ ନିର୍ଦ୍ଦେଶଗୁଡ଼ିକ ଦ୍ୱାରା ଏକ ଏକ ନିର୍ଦ୍ଦେଶ; ପ୍ରତ୍ୟେକ ଯୌଗିକ ନିର୍ଦ୍ଦେଶଦ୍ୱାରା ସଂପୂର୍ଣ୍ଣତଃ ଗଠିତ । ଏଗୁଡ଼ିକ ଦ୍ୱାରା ଗଠିତ ଯୌଗିକ ନିର୍ଦ୍ଦେଶ ଯେଉଁ ରୂପରେଖ ପାଇବା ଆବଶ୍ୟକ, ସେହି ଅନୁସାରେ ସେଗୁଡ଼ିକ ସଂଯୋଜିତ ହୋଇଥାଏ । କିନ୍ତୁ ଏହି ବିଶ୍ଳେଷଣର ଅନ୍ତର୍ଗତ ଚେଷ୍ଟାରେ ଏକ ବିଶିଷ୍ଟ ଅସୁବିଧା ଜାତ ହେବାର ସମ୍ଭାବନା ରହିଛି ଏବଂ ଆମେ ସେଥିପ୍ରତି ସତର୍କ ରହିବା ଆବଶ୍ୟକ । ଆମେ ଏଠାରେ ଗ୍ରହଣ କରିନେବା ଉଚିତ ହେବ-ନାହିଁ ଯେ ବିଶ୍ଳେଷିତ ହେବାକୁ ଥିବା ନିର୍ଦ୍ଦେଶର ଗଠନ ଶୈଳୀରେ ତାହାକୁ ପ୍ରତୀକାୟିତ କରୁଥିବା ପ୍ରତୀକର ଗଠନଶୈଳୀ କୌଣସିଭାବେ ନିୟମିତରୂପେ ପ୍ରତିଫଳିତ । ସୁତରାଂ ଉପର୍ଯ୍ୟୁକ୍ତ ଭାବେ 'ଆଲୋକ' ଓ 'ଧ୍ୱନି' ଯାହାର ପ୍ରତୀକ, ସେହି ଅଂଶଗୁଡ଼ିକ ବିଷୟ କହିଲାବେଳେ ଏକ ବିପଦର ଆଶଙ୍କା ରହିଛି । ଏହି ବିଷୟଗୁଡ଼ିକରେ ଜାତ ହେଉଥିବା ପ୍ରାୟ ସମସ୍ତ ଅସୁବିଧାର ଉତ୍ସ ହେଉଛି ପ୍ରତୀକଗୁଡ଼ିକର ଅବୈଧ ବିଶ୍ଳେଷଣ ।

ଆଉ ଏକ ବିଷୟ ଯାହା ପ୍ରଥମରୁ ସ୍ପଷ୍ଟ କରିଦେବା ଆବଶ୍ୟକ, ତାହା ନିର୍ଦ୍ଦେଶ-ଗୁଡ଼ିକର ସମ୍ମିଶ୍ରିତ ହେବାର ଦୃଷ୍ଟିକୋଣ ସହିତ ସଂପୃକ୍ତ । ନିର୍ଦ୍ଦେଶ ସମ୍ବନ୍ଧରେ କହିବା

ହେଉଛି, ଯେଉଁ ମନସ୍ତାତ୍ତ୍ୱିକ ଓ ବାହ୍ୟ ପ୍ରସଙ୍ଗମାନଙ୍କ ଦ୍ୱାରା ଏକ ସଙ୍କେତ ତାହାର ନିର୍ଦ୍ଦେଶ୍ୟ ସହିତ ସଂଯୋଜିତ, ତାହା ସମ୍ବନ୍ଧରେ କହିବା । ସୁତରାଂ ନିର୍ଦ୍ଦେଶମାନଙ୍କ ସମ୍ପ୍ରିଶ୍ରଣର ଆଲୋଚନା ହେଉଛି ପ୍ରସଙ୍ଗମାନଙ୍କ ପରସ୍ପର ସମ୍ବନ୍ଧଗୁଡ଼ିକର ଆଲୋଚନା ।

ଯାହାକୁ ପ୍ରଥାଗତଭାବେ ପ୍ରତିଜ୍ଞପ୍ତିମାନଙ୍କ 'ତାର୍କିକ ଆକାର' କୁହାଯାଏ ଏବଂ ଯାହାକୁ ଆମେ ନିର୍ଦ୍ଦେଶମାନଙ୍କ ଆକାର ବୋଲି ଅଭିହିତ କରିପାରୁ, ତାହା ଏଠାରେ ଗୃହୀତ ହୋଇଥିବା ମତ ଦୃଷ୍ଟିରୁ ଅର୍ଥକରଣର ନିର୍ଣ୍ଣାୟକ ପ୍ରସଙ୍ଗମାନଙ୍କର ଆକାର ବା ଗଠନଗତ । ଏହାର ଆଲୋଚନା ଭିତରକୁ ଆଜିକାଲି ମୁଖ୍ୟତଃ ତାର୍କିକମାନେ ପ୍ରତୀକ-ପଦ୍ଧତିର ଅଧ୍ୟୟନ ମାଧ୍ୟମରେ ପ୍ରବେଶ କରୁଛନ୍ତି । କିନ୍ତୁ ଏକ ଅଧିକ ସାକ୍ଷାତ୍ ପ୍ରବେଶପଥ ମଧ୍ୟ ସମ୍ଭବପର ମନେହୁଏ, ଯଦିଓ ତାହା ଏ ପର୍ଯ୍ୟନ୍ତ କଷ୍ଟସାଧ୍ୟ ହୋଇ ରହିଛି । ଦେଖାଯିବ ଯେ ନିର୍ଦ୍ଦେଶର ସମ୍ପୂର୍ଣ୍ଣ ପ୍ରସଙ୍ଗ-ବାଦର ଅବଶିଷ୍ଟାଂଶ, ଅର୍ଥାତ୍ 'ତ ବା ଥ', 'ତ ଏବଂ ଥ' ଓ 'ତ ନୁହେଁ' ଆକାରବିଶିଷ୍ଟ ନିର୍ଦ୍ଦେଶମାନଙ୍କ ବିବରଣୀ ଏବଂ 'ସମସ୍ତ କ' ଓ 'କେତେକ କ' ମଧ୍ୟରେ ଥିବା ପାର୍ଥକ୍ୟ ଏପର୍ଯ୍ୟନ୍ତ ଯଦିଓ ଅନ୍ଧାନୁମୂଳକ ହୋଇ ରହିଛି, ତଥାପି ସ୍ପଷ୍ଟତଃ ତାହା ଅନୁମାନବହିର୍ଭୂତ ନୁହେଁ । ଏହା ପ୍ରସଙ୍ଗମାନଙ୍କ ପାରସ୍ପରିକ ସଂଶ୍ଳେଷଣ ସହିତ ସଂପୃକ୍ତ ବୋଲି ବିବେଚିତ ହୁଏ ।

ଏହିପରି ଭାବେ ଦୃଷ୍ଟିକ୍ଷେପ କରି ଆମେ ମିଥ୍ୟା ବିଶ୍ୱାସଗୁଡ଼ିକର ନିର୍ଦ୍ଦେଶ୍ୟ ତଥା ଯୌଗିକ ବିଶ୍ୱାସଗୁଡ଼ିକର ବିଶ୍ଳେଷଣର ପୁନର୍ବିଚାର କରିପାରୁ ।

ଆମେ ଦେଖି ସାରିଛୁ ଯେ ସତ୍ୟ ଓ ମିଥ୍ୟା ବିଶ୍ୱାସଗୁଡ଼ିକ ସମପ୍ରକାର ମନସ୍ତାତ୍ତ୍ୱିକ ପ୍ରସଙ୍ଗମାନଙ୍କ ଅଙ୍ଗ ଏବଂ ସେଗୁଡ଼ିକ କେବଳ ବାହ୍ୟ ପ୍ରସଙ୍ଗ ଦୃଷ୍ଟିରୁ ପରସ୍ପର ପୃଥକ୍ (୧) । ସରଳତା ପାଇଁ ନିର୍ଦ୍ଦିଷ୍ଟ ବିଶ୍ୱାସଗୁଡ଼ିକ ବିଷୟ ବିଚାରକୁ ନେଇ ପୁଣି ଏହି ପାର୍ଥକ୍ୟର

---

(୧) ଗୋଟିଏ ପ୍ରସଙ୍ଗରେ ଏକୀଭୂତ ବସ୍ତୁବର୍ଗର ଏକ ସଂସୃଷ୍ଟିକୁ ଏକ 'ତଥ୍ୟ' ବୋଲି ଅଭିହିତ କରାଯାଇପାରେ । ଏତଦ୍ୱାରା କୌଣସି କ୍ଷତି ନହେବା କଥା । କିନ୍ତୁ ସର୍ବୋତ୍ତମ ଦାର୍ଶନିକମାନଙ୍କ କ୍ଷେତ୍ରରେ ମଧ୍ୟ ଏହିପରି ଭାବେ ପ୍ରବର୍ତ୍ତିତ ବାଚନିକ ଅଭ୍ୟାସ ନିୟମାନୁଗତ ଭାବେ ବାସ୍ତବତାବୋଧକୁ ଅତିକ୍ରମ କରିଯାଏ । ତଥ୍ୟରୁ 'ନଞର୍ଥକ ତଥ୍ୟ'ର ଉଦ୍ଭବ ହୁଏ, 'ଅଗ୍ନିଶିଖାର ଉଦ୍ଭବ ନହେବା' ଏକ ନଞର୍ଥକ ତଥ୍ୟ ବୋଲି ପରିଗଣିତ ହୁଏ ଏବଂ ଏହା ସହିତ ଆମେ ଭ୍ରାନ୍ତ ହୋଇଥିବା କ୍ଷେତ୍ରରେ ଆମର ପ୍ରତୀକ୍ଷା **ସଂବାଦୀ** ହୁଏନାହିଁ । ତା'ପରେ ଗ୍ରହଣ କରିନେବା ସ୍ୱାଭାବିକ ଯେ ଦୁଇପ୍ରକାର ନିର୍ଦ୍ଦେଶ ରହିଛି; ସତ୍ୟ ନିର୍ଦ୍ଦେଶ କ୍ଷେତ୍ରରେ ତାହା ତଥ୍ୟ ଅଭିମୁଖୀ

ଆଲୋଚନା କରାଯାଉ । ମନେକର ଦୁଇଟି ସମ୍ଭବପର ବିଶ୍ୱାସ ରହିଛି—'ଅଳ୍ପସମୟ ମଧ୍ୟରେ ଏଠାରେ ହରିତ ବର୍ଣ୍ଣର କିଛି ଗୋଟିକର ଉଦ୍ରେକ ହେବ' ଏବଂ 'ଅଳ୍ପସମୟ ମଧ୍ୟରେ ଏଠାରେ ଲୋହିତ ବର୍ଣ୍ଣର କିଛି ଗୋଟିକର ଉଦ୍ରେକ ହେବ' । ଏଥିରୁ ପ୍ରଥମଟି ସତ୍ୟ ଏବଂ ଦ୍ୱିତୀୟଟି ମିଥ୍ୟା । ଯଦି ଗ୍ରହଣ କରାଯାଇ ପାରେ ଯେ 'ଅଳ୍ପସମୟ ମଧ୍ୟରେ ଏଠାରେ କିଛି ଗୋଟିକର ଉଦ୍ରେକ ହେବ'—ଏହି ବିଶ୍ୱାସଟି ଦ୍ୱିତୀୟ ବିଶ୍ୱାସର ଅନ୍ତର୍ଗତ ବା ଅନ୍ତର୍ନିହିତ, ତେବେ ତହିଁରେ ଏକ ସତ୍ୟ ବିଶ୍ୱାସ ରହିଛି ଏବଂ ତାହା ପ୍ରଥମ ବିଶ୍ୱାସର ଅନ୍ତର୍ଗତ ଏକ ବିଶ୍ୱାସ ସଦୃଶ । ଏବେ ପ୍ରସଙ୍ଗର ଆମେ ଦେଇଥିବା ସଙ୍କେତ ଦୃଷ୍ଟି ଫେରାଇ କେଉଁ ଅର୍ଥରେ ଏହି ବିଶ୍ୱାସଟି ଅନ୍ତର୍ଭୁକ୍ତ ଏବଂ କିପରି ତାହା ସତ୍ୟ ହୋଇପାରେ ବିଚାର କରାଯାଉ ।

ଏହିପରି ଏକ କ୍ଷେତ୍ରରେ ବାହ୍ୟ ପ୍ରସଙ୍ଗ ଦୁଇଟି ସତ୍ତ୍ୱଦ୍ୱାରା ଗଠିତ ହୋଇପାରେ, ଯଥା—ସ (ଏକ ସଙ୍କେତ) ଏବଂ ହ (ହରିତ ବର୍ଣ୍ଣର କିଛି ଗୋଟାଏ) । ଏ ଦୁଇଟିରେ **ସ** ଏବଂ **ହ** ବୈଶିଷ୍ଟ୍ୟ ରହିଛି ବୋଲି ଧରାଯାଉ । ଏହି ଦୁଇଟି ସତ୍ତ୍ୱ ଦୈଶିକ ଓ କାଳିକ ସମ୍ବନ୍ଧମାନଙ୍କରେ ଅନ୍ୱିତ ଏବଂ ଏଗୁଡ଼ିକୁ ଏକ ସଙ୍ଗରେ ନିଆଯାଇ ପାରେ । କିନ୍ତୁ ଏହା ସୁସ୍ପଷ୍ଟ ଯେ **ସ** ଓ **ହ** ବ୍ୟତୀତ ସ ଓ ହରେ ଅନ୍ୟାନ୍ୟ ବୈଶିଷ୍ଟ୍ୟ ମଧ୍ୟ ଥିବ । ଉଦାହରଣ ସ୍ୱରୂପ, ସ ରେ ଅନ୍ୟାନ୍ୟ ସତ୍ତ୍ୱଗୁଡ଼ିକର ପରବର୍ତ୍ତୀ ହେବା ବୈଶିଷ୍ଟ୍ୟ ରହିଛି ଏବଂ ଏହାର ଅର୍ଥକରଣ **ସ** ବୈଶିଷ୍ଟ୍ୟ ଦୃଷ୍ଟିରୁ ଯେପରି ଦିଆଯାଇପାରେ, ଏହି ସତ୍ତ୍ୱଗୁଡ଼ିକର ପରବର୍ତ୍ତୀ ହେବା ବୈଶିଷ୍ଟ୍ୟ ଦୃଷ୍ଟିରୁ ମଧ୍ୟ ସେହିପରି ଦିଆଯାଇପାରେ । ଏହିପରି ଭାବେ ଅର୍ଥ

---

ଏବଂ ମିଥ୍ୟା ନିର୍ଦ୍ଦେଶ କ୍ଷେତ୍ରରେ ତାହା ତଥ୍ୟର ବିପରୀତ ଦିଗାଭିମୁଖୀ ହୋଇଥାଏ । ଏହିପରି ଭାବେ ନିର୍ଦ୍ଦେଶ ସିଦ୍ଧାନ୍ତ ଅତ୍ୟନ୍ତ ଜଟିଳ ତଥା ଦୁରୂହ ହୋଇପାରେ । ଏହାର ଏକ ଦୃଷ୍ଟାନ୍ତ ହେଉଛି Mr. Russell ଙ୍କ ଦ୍ୱାରା ତାଙ୍କ *Analysis of Mind* ପୃ ୨୭୧-୭୮ ରେ ପ୍ରଦତ୍ତ ବିବରଣୀ । ନଞର୍ଥକ ତଥ୍ୟ ସମ୍ବନ୍ଧରେ ତାଙ୍କର ପୂର୍ବବର୍ତ୍ତୀ ମତ ଯାହା ଥିଲି, ତାହାକୁ ଅର୍ଥସମ୍ବନ୍ଧୀୟ ତାଙ୍କ ଆଧୁନିକ ଅଧ୍ୟୟନ ପରେ ମଧ୍ୟ ସେ ଅପରିବର୍ତ୍ତିତ ରଖିଛନ୍ତି । 'ନଞର୍ଥକ ତଥ୍ୟ' ସମ୍ବନ୍ଧୀୟ ସାଧାରଣ ପ୍ରଶ୍ନର ଆଲୋଚନା ପରିଶିଷ୍ଟ-ଙରେ କରାଯାଇଛି । ବିଭିନ୍ନ ଦୃଷ୍ଟିକୋଣରୁ ଅର୍ଥର ତାତ୍ପର୍ଯ୍ୟ ଗୁଡ଼ିକର ପାର୍ଥକ୍ୟ ସମ୍ବନ୍ଧରେ ଅଧ୍ୟୟନ କଲାବେଳେ ଆମେ ଦେଖିବା ଯେ ତଥ୍ୟ ସହିତ ବିଶ୍ୱାସର ସମ୍ବାଦିତା-ପ୍ରଶ୍ନ ଉତ୍ଥାପନ କରିବା ହେଉଛି ନିର୍ଦ୍ଦେଶର କାରଣିକ ମତବାଦ ପକ୍ଷରେ ସମସ୍ୟାର ସମାଧାନ ଚେଷ୍ଟା ଦୁଇଥର କରିବା । ନିର୍ଦ୍ଦେଶ ସମସ୍ୟାର ସମାଧାନ ହୋଇଗଲେ ସତ୍ୟ ସମ୍ବନ୍ଧୀୟ ସମସ୍ୟା ମଧ୍ୟ ସମାହିତ ହୋଇ ଯାଇଥିବା ବିଷୟ ଜଣାପଡ଼େ ।

କରାଗଲେ, (୧) 'ଅଳ୍ପସମୟ ମଧ୍ୟରେ ଏଠାରେ କିଛି ଗୋଟିକର ଉଦ୍ରେକ ହେବ'—ଏହି ବିଶ୍ୱାସ ଜାଗ୍ରତ ହୁଏ । ଏତଦ୍‌ବ୍ୟତୀତ **ସ** ବୈଶିଷ୍ଟ୍ୟ ଦୃଷ୍ଟିରୁ ମଧ୍ୟ ଯଦି ଅର୍ଥ କରାଯାଏ, ତେବେ 'ଅଳ୍ପସମୟ ମଧ୍ୟରେ ଏଠାରେ ହରିତ୍‌ବର୍ଣ୍ଣର କିଛି ଗୋଟିକର ଉଦ୍ରେକ ହେବ' ଅଥବା 'ଅଳ୍ପସମୟ ମଧ୍ୟରେ ଏଠାରେ ଲୋହିତ ବର୍ଣ୍ଣର କିଛି ଗୋଟିକର ଉଦ୍ରେକ ହେବ' ଏହି ଯୌଗିକ ବିଶ୍ୱାସର ସୃଷ୍ଟି ହୁଏ । ଏହି ଅଧିକ ବୈଶିଷ୍ଟ୍ୟ ଦୃଷ୍ଟିରୁ ଯୌଗିକ ବିଶ୍ୱାସଟି ଅବସ୍ଥାନୁଯାୟୀ ସତ୍ୟ ବା ମିଥ୍ୟା ହୁଏ । କିନ୍ତୁ ଉଭୟ କ୍ଷେତ୍ରରେ 'ଅଳ୍ପସମୟ ମଧ୍ୟରେ ଏଠାରେ କିଛି ଗୋଟିକର ଉଦ୍ରେକ ହେବ' ଏହି ଅନ୍ତର୍ନିହିତ ବିଶ୍ୱାସଟି ସତ୍ୟ ହେବ । ଯଦି କିଛି ଗୋଟାଏ ସତ୍ତା ଥାଏ (ଧରାଯାଉ ହ) ଏବଂ ତାହାର କାଳିକ ବୈଶିଷ୍ଟ୍ୟ ତଥା ସ ର ଅନୁବର୍ତ୍ତୀ ହେବାର ବୈଶିଷ୍ଟ୍ୟ (ବା ଅନ୍ୟାନ୍ୟ କାଳିକ ବୈଶିଷ୍ଟ୍ୟ) ହେତୁରୁ ହ ସ ସହିତ, ସ ର ଏହି ବୈଶିଷ୍ଟ୍ୟର ଏକ ନିର୍ଣ୍ଣାୟକ ପ୍ରସଙ୍ଗ ଗଠନ କରୁଥାଏ, ତେବେ ଉପର୍ଯ୍ୟୁକ୍ତ ଉଭୟ କ୍ଷେତ୍ରରେ ଅନ୍ତର୍ନିହିତ ବିଶ୍ୱାସଟି ସତ୍ୟ ହେବ । ଏହି ବୈଶିଷ୍ଟ୍ୟଗୁଡ଼ିକ ସାଧାରଣ ଧରଣର ହୋଇଥିବାରୁ ଏ ପ୍ରକାର ପ୍ରସଙ୍ଗଗୁଡ଼ିକର ବାରମ୍ବାର ସଂଘଟନରେ କୌଣସି ବ୍ୟାଘାତ ନଥାଏ ଏବଂ ଏହି ଘଟଣାଟିରୁ ବୁଝାପଡ଼େ ଯେ ଏ ପ୍ରକାର ଅନିର୍ଦ୍ଦିଷ୍ଟ-ଧରଣର ସତ୍ୟ ଭବିଷ୍ୟତ୍‌ବାଣୀ ସହଜରେ ଦିଆଯାଇପାରେ ।

ଏଥିରୁ ମନେହୁଏ ଯେ ଗୋଟିଏ ବିଶ୍ୱାସର ଅନ୍ତର୍ଗତ ହୋଇ ନିର୍ଦ୍ଦିଷ୍ଟତାରେ ନ୍ୟୂନ ହୋଇଥିବା ଅନ୍ୟାନ୍ୟ ବିଶ୍ୱାସ ରହିପାରେ ଏବଂ ଏକ ଯୌଗିକ ବିଶ୍ୱାସ କେତେକ ସରଳତର ନ୍ୟୂନ ନିର୍ଦ୍ଦିଷ୍ଟତାବିଶିଷ୍ଟ ବିଶ୍ୱାସଦ୍ୱାରା ଗଠିତ ହୋଇଥାଏ । ଏହି ଅନ୍ତର୍ବର୍ତ୍ତୀ ବିଶ୍ୱାସଗୁଡ଼ିକ ଏପରି କେତେକ ସମ୍ବନ୍ଧଦ୍ୱାରା ସଂଯୋଜିତ ହୋଇଥାନ୍ତି ଯେ ତଦ୍ଦ୍ୱାରା ପ୍ରୟୋଜନୀୟ ଗଠନ (୨) ସମ୍ଭବପର ହୁଏ ।

---

(୧) ଉପସ୍ଥାପିତ ମତବାଦର ଏହି ସଂକ୍ଷିପ୍ତ ସ୍ଥୂଳ ବିବରଣୀରେ ଅର୍ଥକରଣ ନିମନ୍ତେ ଏହା ପର୍ଯ୍ୟାପ୍ତପରିମାଣର ଏକ ବୈଶିଷ୍ଟ୍ୟ ଅଟେ କି ନୁହେଁ, ତାହା ବିଚାର କରିବାର ଆବଶ୍ୟକତା ନାହିଁ ।

(୨) ଏହି ସମ୍ବନ୍ଧଗୁଡ଼ିକ ଦ୍ୱାରା ଉତ୍‌ଥାପିତ ଗୁରୁତ୍ୱପୂର୍ଣ୍ଣ ଓ ଜଟିଳ ସମସ୍ୟାଗୁଡ଼ିକର ସମାଧାନ ପ୍ରୟାସ ନିର୍ଦ୍ଦେଶ ଗୁଡ଼ିକ ସାମାନ୍ୟ ହେବା ସମସ୍ୟାର ସମାଧାନ ପ୍ରୟାସର ଅନୁରୂପ ହେବା ବିଧେୟ । ବସ୍ତୁତଃ ଏହି ଶେଷୋକ୍ତ ସମସ୍ୟା ପୂର୍ବୋକ୍ତ ସମସ୍ୟାର ଏକ ଦୃଷ୍ଟାନ୍ତ ମାତ୍ର ।

'ତର୍କରୂପ କଣ ?'—ଏହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ସମାଧାନ ଏବେ ତାର୍କିକମାନଙ୍କ ହାତରେ ଛାଡ଼ି ଦିଆଯାଇଛି ଏବଂ ସେମାନଙ୍କ ଏକମାତ୍ର ପଦ୍ଧତି ହେଉଛି ଏକ ଅନ୍ଧବିଶ୍ୱାସ-ମୂଳକ ପ୍ରକ୍ରିୟା, ଅର୍ଥାତ୍ 'ସାକ୍ଷାତ୍ ପରିଦର୍ଶନ' । ଯଥା ସମୟରେ ଏହାକୁ ଅନୁସନ୍ଧାନର ପରିସରଭୁକ୍ତ କରାଯିବା ସୁନିଶ୍ଚିତ ।

ଏ ପ୍ରକାର ମତ ବିରୁଦ୍ଧରେ ଗୋଟିଏ ଆପତ୍ତି ଉଠିପାରୁ ନପାରେ । ଯେଉଁ ପ୍ରକ୍ରିୟା-ଗୁଡ଼ିକ ସ୍ୱଭାବତଃ ପ୍ରତିଜ୍ଞପ୍ତି ଦ୍ୱାରା ପ୍ରତୀକାୟିତ ହୋଇଥାଏ, ଅଧିକନ୍ତୁ ଏମାନଙ୍କ ମଧ୍ୟରୁ ଯେଉଁଗୁଡ଼ିକର ସଙ୍କେତାତ୍ମକ ବୈଶିଷ୍ଟ୍ୟ ବ୍ୟତୀତ କେତେକ ଭାବାତ୍ମକ-ସଂକଳ୍ପାତ୍ମକ ବୈଶିଷ୍ଟ୍ୟ ରହିଥାଏ, ସେହି କ୍ଷେତ୍ର ଗୁଡ଼ିକରେ ହିଁ ବିଶ୍ୱାସ ପଦର ବ୍ୟବହାର ପ୍ରଥାଗତ-ଭାବେ ସୀମିତ । ପ୍ରସ୍ତାବିତ ବିଶ୍ଳେଷଣର ପ୍ରୟୋଗ କରାଗଲେ, ଯେଉଁ ସରଳ ନିର୍ଦ୍ଦେଶ-ଗୁଡ଼ିକ ଆବଶ୍ୟକ ହେବ, ସେଗୁଡ଼ିକର ପ୍ରତିଜ୍ଞପ୍ତିମୂଳକ ସୂତ୍ରବଦ୍ଧକରଣ କଦାଚିତ୍ ସମ୍ଭବପର ଏବଂ ନିୟମାନୁଗତ ଭାବେ ସେଗୁଡ଼ିକରେ ସହଜ୍ଞା ବିଶ୍ୱାସ, ଭାବ ଓ କାର୍ଯ୍ୟାଭି-ମୁଖୀ ପ୍ରୋତ୍ସାହର ଅଭାବ ରହିବ । ସୁତରାଂ ଏ ପ୍ରକାର କ୍ରିୟାଗୁଡ଼ିକ ପାଇଁ 'ପ୍ରତ୍ୟୟ' ଏବଂ 'ସପ୍ରତ୍ୟୟ' ପଦର ବ୍ୟବହାର ପ୍ରାୟଶଃ ଅଧିକ ଉପଯୁକ୍ତ ହେବ । ଆଜିକାଲି ସୁପରିଚିତ ହୋଇ ଆସୁଥିବା ଏକ ରୂପକର ସମ୍ପ୍ରସାରଣ କରି ଏଗୁଡ଼ିକୁ 'ତଡ଼ିତ୍ ଅଣୁମୂଳକ' ନିର୍ଦ୍ଦେଶରୂପେ ବିବେଚନା କରାଯାଇପାରେ । କିନ୍ତୁ ଏଠାରେ ଆମେ ଯେଉଁ ପ୍ରତ୍ୟୟ ବା ସପ୍ରତ୍ୟୟ ଗୁଡ଼ିକ ସହିତ ସମ୍ପୃକ୍ତ, ସେଗୁଡ଼ିକୁ ଏକ ସାମାନ୍ୟ ଅଧିକ୍ରିୟ ଜଗତରେ ଆସ୍ଥା ସ୍ଥାପନ କରୁଥିବା ତତ୍ତ୍ୱବିଜ୍ଞାନୀମାନଙ୍କ 'ସପ୍ରତ୍ୟୟଗୁଡ଼ିକ' ଠାରୁ ସୁସ୍ପଷ୍ଟ-ରୂପେ ପୃଥକ୍ କରିବାକୁ ପଡ଼ିବ । ପଞ୍ଚମ ପରିଚ୍ଛେଦରେ ଆମେ ଏହି ପ୍ରଶ୍ନର ବିସ୍ତାରିତ ଆଲୋଚନା କରିବା ।

ହରିତ୍ ପ୍ରତ୍ୟୟ ବା ସପ୍ରତ୍ୟୟର ବିଚାର କରାଯାଉ । ଏହି କ୍ଷେତ୍ରରେ, 'ହରିତ୍' ଶବ୍ଦର ବ୍ୟବହାରକୁ ଦେଖିବାଦ୍ୱାରା ପାଠକଠାରେ ଏହା ଜାତ ହୁଏ । ଅନେକ କ୍ଷେତ୍ରରେ ହରିତ୍ ବସ୍ତୁର ପ୍ରଦର୍ଶନ ସହିତ ଏହି ଶବ୍ଦ ବ୍ୟବହୃତ ହୋଇଛି । ସୁତରାଂ ଏହି ଶବ୍ଦର ବ୍ୟବହାର ପାଠକଠାରେ ଏକ ପ୍ରକ୍ରିୟାର ସୃଷ୍ଟି କରେ, ଯାହାକୁ ଆମେ ହରିତ୍‌ର ପ୍ରତ୍ୟୟ ବୋଲି ଅଭିହିତ କରିପାରୁ । କିନ୍ତୁ ଏହି ପ୍ରକ୍ରିୟା କୌଣସି ଗୋଟିଏ ହରିତ୍ ବସ୍ତୁର ପ୍ରତ୍ୟୟ ନୁହେଁ । ଏ ପ୍ରକାର ଏକ ପ୍ରକ୍ରିୟା ଅଧିକ ଜଟିଳ ହେବ ଏବଂ ଏକ ସଙ୍କେତ (ବା ଏହି କ୍ଷେତ୍ରରେ ଏକ ପ୍ରତୀକ)ର ଆବଶ୍ୟକତା ପଡ଼ିବ । ପୁଣି ପ୍ରତ୍ୟୟଟିକୁ ଅଧିକ ନିର୍ଦ୍ଦିଷ୍ଟ କରିବାକୁ ହେଲେ, ତହିଁରେ ରହିଥିବା ଆହୁରି ଅଧିକ ବୈଶିଷ୍ଟ୍ୟର ଅର୍ଥ କରିବାକୁ ହେବ । ଏହା ଯେଉଁ ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅନ୍ତର୍ଭୁକ୍ତ, ତାହା ଅନ୍ୟକୌଣସି ହରିତ୍ ବସ୍ତୁ ସହିତ ସଙ୍କେତକୁ ସଂଯୁକ୍ତ କରିବା ଅପେକ୍ଷା ଏକ ନିର୍ଦ୍ଦିଷ୍ଟ ହରିତ୍ ବସ୍ତୁ ସହିତ ସଙ୍କେତକୁ ସଂଯୁକ୍ତ କରିବା ଆକାରବିଶିଷ୍ଟ ନୁହେଁ । 'ହରିତ୍' ପରିବର୍ତ୍ତେ ଧରାଯାଉ ଆମେ ଏବେ 'ଏକ ହରିତ୍ ବସ୍ତୁ' ଲେଖିଛୁ । ପାଠକ ଯଦି ସ୍ୱତନ୍ତ୍ର ମତବାଦମାନ (ଅର୍ଥାତ୍ କୌଣସି ଅସାଧାରଣ ବାଚନିକ ପ୍ରସଙ୍ଗମାନ) ଗ୍ରହଣ କରୁଥିବା ଜଣେ ତାର୍କିକ ବା ଦାର୍ଶନିକ ହୋଇ ନଥାନ୍ତି, ତେବେ ତାଙ୍କଠାରେ ସେହି ଏକ ପ୍ରକ୍ରିୟା ସଂଘଟିତ ହେବ । ଉଭୟ କ୍ଷେତ୍ରରେ ପ୍ରତ୍ୟୟଟିକୁ ଏପରି ଏକ ସମ୍ବେଦନ 'ର' ପ୍ରତ୍ୟୟ ବୋଲି କୁହାଯାଇ-

ପାରିବ, ଯାହା ଅତୀତରେ ସଙ୍କେତରୂପେ ଗୃହୀତ ସମ୍ବେଦନର ସହଗୃଣ ସମ୍ବେଦନ-ମାନଙ୍କ ସଦୃଶ । ବର୍ତ୍ତମାନ ଏହା ସହିତ 'ହରିତ୍ ବସ୍ତୁଗୁଡ଼ିକ ରହିଛି' ଦ୍ୱାରା ପ୍ରକାଶିତ ଅନିର୍ଦ୍ଦିଷ୍ଟ ବିଶ୍ୱାସର ତୁଳନା କର । ପ୍ରତ୍ୟୟଟିକୁ ଯେଉଁ ସମ୍ବେଦନ ଶ୍ରେଣୀ 'ର' ପ୍ରତ୍ୟୟ ବୋଲି କୁହାଯାଇଥିଲା, ତନ୍ମଧ୍ୟରୁ ଯେକୌଣସି ଏକ ସଂବେଦନ ଏଠାରେ ବିଶ୍ୱାସଟିର ସତ୍ୟାସତ୍ୟ ନିର୍ଦ୍ଧାରଣ କରିବ; କାରଣ ଏହାର ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅଙ୍ଗୀଭୂତ କେତେକ ସତ୍ତ୍ୱା ସଦୃଶ ଏକ ବା ତତୋଽଧିକ ସତ୍ତ୍ୱା ରହିଥିଲେ, ବିଶ୍ୱାସଟି ସତ୍ୟ; ନଚେତ୍ ତାହା ମିଥ୍ୟା ! ତେଣୁ ଯଦି ଏପ୍ରକାର କୌଣସି ସତ୍ତ୍ୱା ଥାଏ, ତେବେ ସେ ସତ୍ତ୍ୱାକୁ 'ନିର୍ଦ୍ଦେଶ୍ୟ' ପଦର ତାତ୍ପର୍ଯ୍ୟର ସଂପ୍ରସାରଣ କରି ଆମେ ତାହାର ଅନ୍ତର୍ଭୁକ୍ତ କରିପାରୁ । ଏ ପ୍ରକାର ବ୍ୟବହାରଦ୍ୱାରା କୌଣସି ଗଣ୍ଡଗୋଳର ଆଶଙ୍କା ନାହିଁ ।

ଲକ୍ଷ୍ୟ କରାଯାଇପାରେ ଯେ ସଂପୂର୍ଣ୍ଣରୂପେ ସରଳ ତଥା ଅନିର୍ଦ୍ଦିଷ୍ଟାର୍ଥକ ବିଶ୍ୱାସମାନଙ୍କ (ଯାହାର ଦୃଷ୍ଟାନ୍ତ ହେଉଛି 'ହରିତ୍ ବସ୍ତୁଗୁଡ଼ିକ ରହିଛି' । ଏହା 'ହରିତ୍ ବସ୍ତୁଗୁଡ଼ିକ ବର୍ତ୍ତମାନ ରହିଛି' ଠାରୁ ପୃଥକ୍) ସତ୍ୟତାର ସର୍ତ୍ତ ସ୍ୱରୂପ କେବଳ ସେତିକି ଆବଶ୍ୟକ, ଯାହା ସେଗୁଡ଼ିକର ମନସ୍ତାତ୍ତ୍ୱିକ ପ୍ରସଙ୍ଗମାନଙ୍କ ମଧ୍ୟରେ ହିଁ ଥାଏ । ଏହି ସୁବିଧାଜନକ ପରିସ୍ଥିତି ସହିତ ସମାନ୍ତରାଳ ଭାବେ ଆଉ ଏକ ବିଷୟ ଥାଏ । ତାହା ହେଉଛି ସଂପୂର୍ଣ୍ଣ ସରଳ ପ୍ରତ୍ୟୟ ଗୁଡ଼ିକ କୌଣସି ବସ୍ତୁ 'ର' ପ୍ରତ୍ୟୟ ଅଟେ କି ନୁହେଁ— ଏହି ସମସ୍ୟା ଏଠାରେ ଉଠେନାହିଁ । କିନ୍ତୁ କାଚପର୍ବତ, ଫେନକୂପ, ବୃତ୍ତାକାର ବର୍ଗକ୍ଷେତ୍ର ଓ ସଦ୍‌ଗୁଣାଲଙ୍କୃତ ନିର୍ଭୁକ ପରି ଜଟିଳ ପ୍ରତ୍ୟୟମାନଙ୍କରେ ଏ ପ୍ରକାର ସମସ୍ୟା ଭରପୂର ହୋଇ ରହିଛି । ଯାହାହେଉ, ପ୍ରତ୍ୟୟ ଓ ବିଶ୍ୱାସର ପାର୍ଥକ୍ୟ ହେଉଛି ପରିମାଣଗତ, ଯଦିଓ ପ୍ରତୀକାତ୍ମକ ପ୍ରଥା ହେତୁରୁ ଏ ଦୁଇଟି କେତେକ ସ୍ଥଳରେ ପରସ୍ପର ପୃଥକ ପରି ମନେହୁଏ ।

ମିଥ୍ୟା ବିଶ୍ୱାସ କ୍ଷେତ୍ରରେ 'ନିର୍ଦ୍ଦେଶ୍ୟ' ପଦ ବ୍ୟବହାର ପ୍ରଥାର ସଂଜ୍ଞା ଏବେ ଆମେ ଦେଇପାରିବା । ସମସ୍ତ ବିଶ୍ୱାସ, ତାହା ସତ୍ୟ ହୋଇଥାଉ ବା ମିଥ୍ୟା ହୋଇ-ଥାଉ, ତତ୍ତ୍ୱତଃ ତାହା ଯୌଗିକ ନିର୍ଦ୍ଦେଶରୂପେ ବିଶ୍ଳେଷଣୀୟ; ତାହାର ଉପାଦାନଗୁଡ଼ିକ ହେଉଛି କେତେକ ସରଳ ନିର୍ଦ୍ଦେଶ । ଏହି ସରଳ ନିର୍ଦ୍ଦେଶଗୁଡ଼ିକ ହୁଏତ ନିର୍ଦ୍ଦିଷ୍ଟ ଅଥବା ଅନିର୍ଦ୍ଦିଷ୍ଟ । ଏଗୁଡ଼ିକ କେତେକ ସମ୍ବନ୍ଧରେ ଅନ୍ୱିତ ହୋଇଥାନ୍ତି ଏବଂ ତଦ୍ଦ୍ୱାରା ନିର୍ଦ୍ଦେଶର 'ତର୍କରୂପ' ନିର୍ଣ୍ଣୀତ ହୁଏ ।

ନିର୍ଦ୍ଦିଷ୍ଟ ସରଳ ନିର୍ଦ୍ଦେଶଗୁଡ଼ିକ ବିରଳ । କେତେକ କ୍ଷେତ୍ରରେ ଆମେ 'ଏହା !', 'ସେଇଠି !', 'ଏବେ !' ବୋଲି କହିଲାବେଳେ ସେଗୁଡ଼ିକର ବ୍ୟବହାର କରୁ ପରି ମନେହୁଏ । କିନ୍ତୁ ସାଧାରଣତଃ ଆମର ନିର୍ଦ୍ଦେଶ କେବଳ ଗୋଟିଏ ନିର୍ଦ୍ଦେଶ୍ୟ

ଚିହ୍ନଯୋଗ୍ୟ ହୋଇଥିଲେ ହେଁ, ତାହା ବିଶ୍ଳେଷଣୀୟ ହୋଇଥାଏ । ଯେଉଁ ନିର୍ଦ୍ଦେଶ ପାଇଁ ଆମେ ସରଳ ପ୍ରତୀକ (ନାମ) ଯଥା—ବୋଷ୍ଟ୍ରେଭର୍ସି, ବ୍ୟବହାର କରୁ, ତାହା ମଧ୍ୟ ସର୍ବଦା ଯୌଗିକ, କାରଣ ଏଠାରେ ନିର୍ଦ୍ଦେଶ୍ୟର ଭିନ୍ନ ଭିନ୍ନ ବୈଶିଷ୍ଟ୍ୟ ନିର୍ଣ୍ଣାୟକ ଭିନ୍ନ ଭିନ୍ନ ପ୍ରସଙ୍ଗଗୁଡ଼ିକ ଭିନ୍ନ ଭିନ୍ନ ଭାବେ ନିହିତ (୧) । ଯାହା ଏଠାରେ ଅଧିକ ଗୁରୁତ୍ୱପୂର୍ଣ୍ଣ, ତାହା ହେଉଛି ମିଥ୍ୟା ନିର୍ଦ୍ଦେଶ କ୍ଷେତ୍ରରେ ଘଟୁଥିବା ଅସାଧାରଣ ବିକ୍ଷେପକୁ ବୁଝିବା । ବୋଧହୁଏ ଯୁକ୍ତିମାନଙ୍କ ଅପେକ୍ଷା ଦୃଷ୍ଟାନ୍ତମାନଙ୍କ ଦ୍ୱାରା ଏହି ବିଷୟଟିକୁ ଅଧିକ ସ୍ପଷ୍ଟଭାବେ ବୁଝାଯାଇ ପାରେ ।

ଉଦାହରଣ ସ୍ୱରୂପ ମନେକର, ଆମେ କହୁ, 'ଏହା ଏକ ପୁସ୍ତକ' ଏବଂ ଆମେ ଏଥିରେ ଭ୍ରାନ୍ତ । ଏହି କ୍ଷେତ୍ରରେ, ଯେ କୌଣସି ଏକ ପୁସ୍ତକ ପ୍ରତି ଏକ ସରଳ ଅନିର୍ଦ୍ଦିଷ୍ଟ ନିର୍ଦ୍ଦେଶ, ବର୍ତ୍ତମାନର ଯେ କୌଣସି ଏକ ବସ୍ତୁ ପ୍ରତି ଆଉ ଏକ ନିର୍ଦ୍ଦେଶ, ପୁଣି ଯେ କୌଣସି ଏକ ବସ୍ତୁ ଯାହା ଏଠାରେ ରହିପାରେ, ତାହାପ୍ରତି ଏକ ନିର୍ଦ୍ଦେଶ ଏବଂ ଏହିପରି ଆହୁରି ଅନେକ ନିର୍ଦ୍ଦେଶ ଦ୍ୱାରା ଆମର ନିର୍ଦ୍ଦେଶ ଗଠିତ । ଏହି ସମସ୍ତ ଉପାଦାନ ସତ୍ୟ ହେବ; କିନ୍ତୁ ସେଗୁଡ଼ିକ ସାମୂହିକଭାବେ ଗଠନ କରୁଥିବା ଏହି ପୁସ୍ତକ ପ୍ରତି ସମଗ୍ର ନିର୍ଦ୍ଦେଶଟି ମିଥ୍ୟା ହେବ; (ସତେ ଯେପରି ବର୍ତ୍ତମାନ ଏଠାରେ ରହିଥିବା ଖଣ୍ଡେ ପୁସ୍ତକ—ଏହି ଗୋଟିଏ ମାତ୍ର ନିର୍ଦ୍ଦେଶ୍ୟ ବ୍ୟତୀତ ଅନ୍ୟ ସମସ୍ତ ନିର୍ଦ୍ଦେଶ୍ୟ ଉପରେ ହିତ) । ଏହା ମିଥ୍ୟା ହେବ, ଯଦି ଆମେ ଭ୍ରାନ୍ତ ହୋଇଥାଉଁ, ଅର୍ଥାତ୍ ଯାହା ରହିଛି, ତାହା ଯଦି ପ୍ରକୃତରେ ଗୋଟିଏ ସିନ୍ଦୁକ ବା ଅନ୍ୟକିଛି ହୋଇଥାଏ ଏବଂ ପୁସ୍ତକ, ଏଠାରେ ଓ ବର୍ତ୍ତମାନ—ଏହି ତିନୋଟି ପ୍ରସଙ୍ଗକୁ ପୂରଣ କରିବା ନିମନ୍ତେ ତାହା ସମର୍ଥ ନୁହେଁ । ଏହାଠାରୁ ଟିକିଏ ଅଧିକ ଜଟିଳ ଏକ କ୍ଷେତ୍ରର ବିଚାର କରାଯାଉ । ଜଣେ ଗଲ୍ଫ ଖେଳାଳୀ ପାଟିକରି ଉଠେ, "ଚମତ୍କାର ରୂପେ ପାର ହୋଇଛି !" ଦର୍ଶକମାନଙ୍କୁ ଏକଥା ସୁପ୍ରତ୍ୟକ୍ଷ ମନେ ହୋଇପାରେ ଯେ ଗଲ୍ଫ-ବାଡ଼ି ଦ୍ୱାରା ଉଡ଼ିଯାଇଥିବା ଘାସ ଖଣ୍ଡିକ ପ୍ରତି, ତାହାର ବାଡ଼େଇବା ପ୍ରତି, ବାଧା ଦେଉଥିବା ଗାତ ପ୍ରତି ଏବଂ ପେଣ୍ଡୁ ପ୍ରତି ସେ ନିର୍ଦ୍ଦେଶ କରୁଛି । ତଥାପି ପେଣ୍ଡୁଟି ସ୍ଥାଣୁଭାବେ ରହିଛି । ଏହି ଉପାଦାନ ନିର୍ଦ୍ଦେଶଗୁଡ଼ିକ ବା ଗଠନକାରକ ନିର୍ଦ୍ଦେଶଗୁଡ଼ିକ ପ୍ରତ୍ୟେକେ ବ୍ୟଷ୍ଟିଗତ ଭାବେ

---

(୧) ବୈଶିଷ୍ଟ୍ୟ ପରି ଶବ୍ଦ ସମ୍ବଳିତ ସମସ୍ତ ବାକ୍ୟପରି ଏହି ବାକ୍ୟ ପ୍ରୟୋଜନାତିରିକ୍ତ ଏହା ବରଂ ଏହିପରି ଲିଖିତ ହେବା କଥା......"ନିର୍ଦ୍ଦେଶରେ ନିର୍ଣ୍ଣାୟକ ଭିନ୍ନ ଭିନ୍ନ ପ୍ରସଙ୍ଗଗୁଡ଼ିକ ଭିନ୍ନ ଭିନ୍ନ ଭାବେ ଓ ଅନିର୍ଦ୍ଦିଷ୍ଟ ଭାବେ ନିହିତ ।" କିନ୍ତୁ ଏହାର ପ୍ରୟୋଜନାତିରିକ୍ତ ଅଂଶକୁ ଏହିପରିଭାବେ ପରିହାର କରିବା ଦ୍ୱାରା ଏହି ବାକ୍ୟଟିର ଭାବ-ବିନିମୟ ସାମର୍ଥ୍ୟ ପ୍ରତିହତ ହେବ । ତୁଳନା କର—ପଦଟୀକା ପରିଶିଷ୍ଟ ପୃଷ୍ଠିତ ପୃଷ୍ଠା ।

ଯଥୋପଯୁକ୍ତ ହେଲେ ହେଁ ସେଗୁଡ଼ିକର ଭିନ୍ନ ଭିନ୍ନ ନିର୍ଦ୍ଦେଶ୍ୟଗୁଡ଼ିକ ପ୍ରକୃତ ଘଟଣା କ୍ଷେତ୍ରରେ ଯେପରିଭାବେ ସମନ୍ୱିତ ହୋଇଥାନ୍ତି, ଠିକ୍ ସେହିଭଳି ଭିନ୍ନ ଭାବେ ଗଲ୍‌ଫ-ଖେଳାଳିର ଜଟିଳ ନିର୍ଦ୍ଦେଶରେ ସମନ୍ୱିତ । ଗଲ୍‌ଫ-ପେଣ୍ଡୁର ଅସଂଗଠିତ ଗତି ତାହାର ବିଶ୍ୱାସର ବସ୍ତୁ ହେବାର କୌଣସି ପ୍ରଶ୍ନ ସ୍ପଷ୍ଟତଃ ଏଠାରେ ଉଠୁନାହିଁ, ଯଦିଓ ଧ୍ରୁବଗତ ତାର ବାଡ଼େଇବାର ଅନୁଭୂତିକୁ ବା ଏକ ଗତିଶୀଳ ଗଲ୍‌ଫ-ପେଣ୍ଡୁର ପ୍ରତିମାକୁ ସେ ନିର୍ଦ୍ଦେଶ କରୁଥାଇ ପାରେ । ଏହି ଶେଷୋକ୍ତ ପ୍ରକାର କ୍ଷେତ୍ରରେ ସେ ତାହାର ବ୍ୟାଖ୍ୟାମୂଳକ ଶୃଙ୍ଖଳକୁ ଛିନ୍ନ କରି ପକାଇଛି; ପୁଣି ଯାହାକୁ ଲକ୍ଷ୍ୟମୂଳକ ବ୍ୟାଖ୍ୟା କୁହାଯାଇ ପାରେ, ସେହିପରି ଏକ ବ୍ୟାଖ୍ୟା ଦେବାଦ୍ୱାରା ଏକ ଅତି ଦୀର୍ଘ ପଦକ୍ଷେପ ନେଇଛି ବୋଲି ଗ୍ରହଣ କରିବା ପରିବର୍ତ୍ତେ ସେ ନିଜର ବ୍ୟାଖ୍ୟାମୂଳକ ଶୃଙ୍ଖଳକୁ ସଂକ୍ଷିପ୍ତ କରୁଛି ବୋଲି ଆମକୁ ଗ୍ରହଣ କରିବାକୁ ହେବ । ତାହାର ଭାଷା (ତୁଳନାକର—ସୂତ୍ର ୪, ପଦଟୀକା ପରିଶିଷ୍ଟ ସୂଚିତ ପୃଷ୍ଠା) ଉପର୍ଯ୍ୟୁକ୍ତ ବିକଳ୍ପ ଦୁଇଟିରୁ କୌଣସି ଗୋଟିକୁ ଗ୍ରହଣ କରିବାକୁ ଆମକୁ ବାଧ୍ୟ କରୁନାହିଁ । ଯୌଗିକ ମିଥ୍ୟା ବିଶ୍ୱାସର ବିଶ୍ଳେଷଣ କିପରି ଭାବେ କରାଯାଇପାରେ, ତାହାର ଏକ ରୂପରେଖ ଏହିପରି ଭାବେ ଦିଆଯାଇ ପାରେ ।

ଏକ ଯୌଗିକ ମିଥ୍ୟା ବିଶ୍ୱାସର ନିର୍ଦ୍ଦେଶ୍ୟ ହେଉଛି ତଦନ୍ତର୍ଗତ ସରଳ ସତ୍ୟ ବିଶ୍ୱାସଗୁଡ଼ିକର ବିକ୍ଷିପ୍ତ ନିର୍ଦ୍ଦେଶ୍ୟମାନଙ୍କ ଏକ ସଂହତି । ପରବର୍ତ୍ତୀ ଆଲୋଚନାରେ ବିଶ୍ୱାସଗୁଡ଼ିକ ଓ ଅର୍ଥକରଣଗୁଡ଼ିକ, ତାହା ସତ୍ୟ ହୋଇଥାଉ ବା ମିଥ୍ୟା ହୋଇଥାଉ ଏବଂ ପ୍ରତ୍ୟୟଗୁଡ଼ିକ ସମ୍ବନ୍ଧରେ ଆମେ କହିଲାବେଳେ ସେଗୁଡ଼ିକୁ ନିର୍ଦ୍ଦେଶ ବୋଲି କହିବୁ । ଏତଦ୍ୱାରା ଉପର୍ଯ୍ୟୁକ୍ତ ସଙ୍କଳ୍ପ ସାରେ ହିଁ ସେଗୁଡ଼ିକର ନିର୍ଦ୍ଦେଶ୍ୟ ରହିଛି, ଏହା ଆପାଦିତ ।

ଏହିପରି ଭାବେ ଆମେ ଦେଖିପାରିବା ଯେ ନିର୍ଦ୍ଦେଶର ପ୍ରସଙ୍ଗବାଦକୁ ସମ୍ପ୍ରସାରିତ କରି କିପରି ସମସ୍ତ ବିଶ୍ୱାସ, ପ୍ରତ୍ୟୟ, ସମ୍ପ୍ରତ୍ୟୟ ଏବଂ 'ରଚନା'କୁ ତଦନ୍ତର୍ଭୁକ୍ତ କରାଯାଇ ପାରେ । ବିଶିଷ୍ଟ କ୍ଷେତ୍ରମାନଙ୍କରେ ତାହାର ପ୍ରୟୋଗର ସବିଶେଷ ବିବରଣୀ ଦେବା ଏଯାବତ୍ ବାକି ରହିଛି । ତାର୍କିକମାନେ ଏଠାରେ ଅନେକ ଗୋଳକଧନ୍ଦା (୧)

(୧) ଉଦାହରଣ ସ୍ୱରୂପ, ଆଗରୁ ଦିଆଯାଇଥିବା ଦୃଷ୍ଟାନ୍ତରେ ଯଦି ଗୋଟିଏ ବା ଉଭୟ ସଙ୍କେତ-ବିଶ୍ୱାସ ମିଥ୍ୟା ହୋଇଥାନ୍ତା ଏବଂ ତଥାପି ଆମେ ରହିଥିବା କୋଠରୀଟି ଅନ୍ୟାନ୍ୟ କାରଣ ହେତୁ ଉତ୍ତପ୍ତୀଭୂତ ହୋଇ ଯାଇଥାନ୍ତା, ତେବେ ଆମର ବିଶ୍ୱାସ ସତ୍ୟ ହୋଇଥାନ୍ତା କି ? ଆମେ ଯଦି ଲକ୍ଷ୍ୟ କରୁ ଯେ ବକ୍ତାଠାରେ ପ୍ରତୀକାନ୍ୱିତ ହୋଇଥିବା ବିଶ୍ୱାସ ମିଥ୍ୟା ହେଲେ ମଧ୍ୟ ଜଣେ ଶ୍ରୋତାଠାରେ ଉଦ୍ରିକ୍ତ ବିଶ୍ୱାସ ସତ୍ୟ ହୋଇପାରେ, ତେବେ ଏହି ସମସ୍ୟାର ସମାଧାନ ସହଜରେ ହୋଇଯିବ ।

ରଚନା କରିବାକୁ ଯେ ସମର୍ଥ ହେବେ, ଏଥିରେ ସନ୍ଦେହ ନାହିଁ ଏବଂ ସେଗୁଡ଼ିକର ସମାଧାନ ମନୋବୈଜ୍ଞାନିକଙ୍କ ଉପାଦେୟ ଅନୁଶୀଳନ ଯୋଗାଇବ । କିନ୍ତୁ ତାର୍କିକ ସମ୍ବନ୍ଧମାନଙ୍କ ଚିନ୍ତନ ବା ନିର୍ଦ୍ଦେଶ ରୂପାନ୍ତରିତ ହୋଇପାରେ—ଏହି ସାଧାରଣ ପ୍ରକଳ୍ପଟି ଅଧିକରୁ ଅଧିକ ପରିମାଣରେ କେବଳ ସେହିମାନଙ୍କର ସମର୍ଥନ ଲାଭ କରିବ, ଯେଉଁମାନେ (ଅନ୍ତତଃ ସମସ୍ତ ସମୟରେ) ଜଗତ ପ୍ରତି ଏକ ବୈଜ୍ଞାନିକ ମନୋଭାବ ପୋଷଣ କରନ୍ତି । ପ୍ରସକ୍ତିବ୍ୟତାର ଏକ ସନ୍ତୋଷଜନକ ବିବରଣୀ ଯଦି ଦିଆ ଯାଇପାରେ, ତେବେ ସେହି ସର୍ତ୍ତିରେ ହିଁ ଏହି ମତବାଦ ଅନୁସାରେ, ନିର୍ଦ୍ଦେଶରୂପେ 'ଅର୍ଥ' ଏକ ପରୀକ୍ଷଣ-ପଦ୍ଧତି ପ୍ରୟୋଗଯୋଗ୍ୟ ବିଷୟ ହୋଇଯାଏ ।

କିନ୍ତୁ, ପ୍ରସକ୍ତିବ୍ୟତାର ଏକ ସନ୍ତୋଷଜନକ ବିବରଣୀ ଦେବା ଅତ୍ୟନ୍ତ ବାଞ୍ଛନୀୟ ହୋଇଥିଲେ ହେଁ, ପ୍ରଚଳିତ ପଦ୍ଧତିମାନଙ୍କ ଦ୍ୱାରା ତାହା ଦିଆଯାଇ ପାରିବାର ସମ୍ଭବପରତା କ୍ଷୀଣତର ମନେହୁଏ । ଅନୁସନ୍ଧାନ ପନ୍ଥାରେ ସ୍ପଷ୍ଟତଃ ଏକ ପରିବର୍ତ୍ତନ ଆବଶ୍ୟକ । ଶ୍ରୀ କାର୍ନାପଙ୍କ ସ୍ତ୍ରିଟିକ ଗ୍ରନ୍ଥରେ ପ୍ରସକ୍ତିବ୍ୟତା କୁହାଯାଇଥିବା ଏକ ଅବିଶ୍ଳେଷଣୀୟ ତାର୍କିକ ସମ୍ବନ୍ଧରୁ ଆଲୋଚନା ଆରମ୍ଭ କରାଯାଇଛି ଏବଂ ଅନୁରୂପ ଭାବେ ରହସ୍ୟଜନକ ଓ ଦୁରୂହ ଦୁଇଟି ପ୍ରତିଜ୍ଞପ୍ତି କୁହାଯାଉଥିବା ସତ୍ତା ମଧ୍ୟରେ ତାହା ଅବସ୍ଥିତ ବୋଲି ଗ୍ରହଣ କରାଯାଇଛି । ସୁତରାଂ ଏହି ବିବରଣୀ ଏତେ ମଧ୍ୟଯୁଗୀୟ ଧାରଣା ସଂଶ୍ଳିଷ୍ଟ ହୋଇ ଯାଇଛି ଯେ ଏହା ଫଳପ୍ରଦ ହେବାର ସମ୍ଭାବନା ନାହିଁ । ଏହି ବିଷୟରେ ଅନ୍ୟାନ୍ୟ ଲେଖକଙ୍କ ବିବରଣୀ ମଧ୍ୟ ଉନ୍ନତତର ନୁହେଁ ।

ନିର୍ଦ୍ଦେଶର ପ୍ରସଙ୍ଗ-ମତବାଦ ଅନୁସାରେ ଏ ପ୍ରକାର ଅବୋଧ ସଂକ୍ଷିପ୍ତକରଣକୁ ସଂପ୍ରସାରିତ କରିବା ପଦ୍ଧତିର ଏକ ସୂଚନା ଦେବା ସମ୍ଭବପର ମନେହୁଏ । ଏତଦ୍ଦ୍ୱାରା ଏପର୍ଯ୍ୟନ୍ତ ଅନାବିଷ୍କୃତ ରହିଥିବା ପ୍ରସଂକ୍ତିବ୍ୟତା ସମ୍ବନ୍ଧୀୟ କେନ୍ଦ୍ରିକ ପ୍ରଶ୍ନର ଏକ ସୁସ୍ପଷ୍ଟ ଅଭିବ୍ୟକ୍ତିର ନିକଟବର୍ତ୍ତୀ ହେବା ସମ୍ଭବପର ହେବ । ତାର୍କିକମାନେ ଯାହାକୁ ପ୍ରତିଜ୍ଞପ୍ତି ଆଖ୍ୟା ଦେଇ ତତ୍ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିଥାନ୍ତି, ଏହି ମତାନୁସାରେ ତାହା ହେଉଛି ନିର୍ଦ୍ଦେଶ ବିସ୍ତାର ସମ୍ବନ୍ଧାତ୍ମକ ବୈଶିଷ୍ଟ୍ୟ; ଏହି ସମ୍ବନ୍ଧାତ୍ମକ ବୈଶିଷ୍ଟ୍ୟ ପାଇଁ ହିଁ 'ନିର୍ଦ୍ଦେଶ' ପଦର ବ୍ୟବହାର କରାଯାଇଛି । ସୁତରାଂ ଏକ ପ୍ରତିଜ୍ଞପ୍ତିର ବିଶ୍ୱାସନ ବା ଅବଧାରଣ ବା ଚିନ୍ତନ ହେଉଛି ଏହି ମତାନୁଯାୟୀ ନିର୍ଦ୍ଦେଶନ ମାତ୍ର ଏବଂ ଦ୍ୱୈତାର୍ଥକ ବ୍ୟାକରଣ (୧) ଦ୍ୱାରା ପ୍ରତିଜ୍ଞପ୍ତିକୁ ଏକ ସ୍ୱତନ୍ତ୍ର ସତ୍ତା ରୂପେ ଆମ ଉପରେ ଲଦି ଦିଆଯାଇଛି; ଏହା ଏକ ଭିତ୍ତିହୀନ କପୋଳକଳ୍ପିତ ଧାରଣା ବ୍ୟତୀତ ଆଉ କିଛି ନୁହେଁ ବୋଲି ଗ୍ରହଣ

(୧) ତୁଳନାକର—ଷଷ୍ଠ ପରିଚ୍ଛେଦ, ପାଦଟୀକା ପରିଶିଷ୍ଟ ସୂଚିତ ପୃଷ୍ଠା ।

କରିବାକୁ ହେବ । ସେହି ଏକ ପ୍ରତିଜ୍ଞପ୍ତି 'ର ଚନ୍ଦନ' ଦୁଇଟି ହେଉଛି ସେହି ଏକ ନିର୍ଦ୍ଦେଶ, ସେହି ଏକ ସମ୍ବନ୍ଧମୂଳକ ଗୁଣ, ଅର୍ଥାତ୍ 'ସେହି ଏକ ନିର୍ଦ୍ଦେଶ୍ୟ ସହିତ ସେହି ଏକ ପ୍ରକାରରେ ପ୍ରସଙ୍ଗତଃ ସମ୍ପୃକ୍ତ ହେବା' ବିଷୟକ ଦୁଇଟି ଚନ୍ଦନ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ପ୍ରତିଜ୍ଞପ୍ତିର ଏହି ବିବରଣୀ ଅନୁସାରେ, ପ୍ରତିଜ୍ଞପ୍ତିମାନଙ୍କ ପାରସ୍ପରିକ ସମ୍ବନ୍ଧର ଆଲୋଚନା ଏପର୍ଯ୍ୟନ୍ତ ଯେପରିଭାବେ କରାଯାଇଛି, ତହିଁରୁ ଯଥେଷ୍ଟ ଅଧିକ ସଂକ୍ଷିପ୍ତଭାବେ ଓ ଆକାରନିଷ୍ଠ ଭାବେ କରାଯିବା ଆବଶ୍ୟକ ।

ପ୍ରତିଜ୍ଞପ୍ତିଗୁଡ଼ିକର ଏହିପରି ଭାବେ ଅର୍ଥ କରାଗଲେ ଅନ୍ୟାନ୍ୟ ପ୍ରତିଜ୍ଞପ୍ତି ସହିତ ସମ୍ବନ୍ଧହୀନ ଗୋଟିଏ ଐକିକ ପ୍ରତିଜ୍ଞପ୍ତିର ଗୋଟିଏ ଦୃଷ୍ଟିରୁ ନିଜସ୍ୱ ପ୍ରସଙ୍ଗଭବ୍ୟତା ରହିଛି ବୋଲି କହିବା ଅର୍ଥଯୁକ୍ତ ହେବ । ତଥାପି ପ୍ରସଙ୍ଗଭବ୍ୟତାର ଏଠାରେ ଏକ ସମ୍ବନ୍ଧାତ୍ମକ ଦିଗ ରହିଛି ଏବଂ ପ୍ରତିଜ୍ଞପ୍ତିଗୁଡିକ (ନିର୍ଦ୍ଦେଶଗୁଡ଼ିକ) ସମ୍ବନ୍ଧାତ୍ମକ ହୋଇଥିବାରୁ ହିଁ ସେଗୁଡ଼ିକୁ ପ୍ରସମ୍ଭବ ବୋଲି ବୁଝାଯାଇପାରେ । ଏହା ଏକ ଅତି ମୌଳିକ ଦୃଷ୍ଟିକୋଣ ଏବଂ ଏହି ଦୃଷ୍ଟିକୋଣରୁ ନିର୍ଦ୍ଦେଶର ସତ୍ୟତା ନିର୍ଭର କରୁଥିବା ପ୍ରସଙ୍ଗର ଏକରୂପତା ହେଉଛି ପ୍ରସମ୍ଭବ ।

ଆମେ ଦେଖିପାରୁଛୁ ଯେ ଅତି ସାଧାରଣ ଧରଣର ଉପାଦାନ ବୈଶିଷ୍ଟ୍ୟମାନଙ୍କୁ ଓ ସଂଯୋଗକାରକ ସମ୍ବନ୍ଧକୁ ନେଇ ସର୍ବୋଚ୍ଚ ପ୍ରସମ୍ଭବମୂଳକ ପ୍ରସଙ୍ଗମାନ ଗଠନ କରାଯାଇପାରେ । ସେହିପରି ଅତି ନିର୍ଦ୍ଦିଷ୍ଟ ଧରଣର ବୈଶିଷ୍ଟ୍ୟମାନଙ୍କୁ ଓ ସମ୍ବନ୍ଧକୁ ନେବାଦ୍ୱାରା ପ୍ରସଙ୍ଗର ପ୍ରସମ୍ଭାବ୍ୟତା ଏତେ ନ୍ୟୂନ ହୋଇପାରେ ଯେ ପରିଶେଷରେ ତାହାକୁ ଆଉ ପ୍ରସଙ୍ଗ ବୋଲି କହିବା ଅନୁଚିତ ହୋଇଯାଏ । ଏହିପରି ଭାବେ ଦେଖା-ଯାଇପାରେ ଯେ ଗୋଟିଏ ପ୍ରସଙ୍ଗ ପ୍ରସମ୍ଭବ କି ନୁହେଁ—ଏହା ହେଉଛି ଉପାଦାନ ବୈଶିଷ୍ଟ୍ୟ ତଥା ସଂଯୋଗକାରକ ସମ୍ବନ୍ଧ ସାଧାରଣ ହେବାର ପରିମାଣ ସମ୍ବନ୍ଧୀୟ ଏକ ପ୍ରଶ୍ନ; ଏହା ହେଉଛି ପ୍ରସଙ୍ଗର ଅଙ୍ଗମାନଙ୍କ ସଂଖ୍ୟା ତଥା ସେଗୁଡ଼ିକୁ ଅଙ୍ଗୀଭୂତ କରୁଥିବା ଅନ୍ୟାନ୍ୟ ପ୍ରସଙ୍ଗ ସମ୍ବନ୍ଧୀୟ ଏବଂ ଏହିପରି ଆହୁରି ଅନେକ ବିଷୟ ସମ୍ବନ୍ଧୀୟ ଏକ ପ୍ରଶ୍ନ; ଅର୍ଥାତ୍ ପ୍ରସଙ୍ଗର ଗୋଟିଏ ଲକ୍ଷଣ ବିଷୟକ ନୁହେଁ, ଅନେକ ଲକ୍ଷଣ ବିଷୟକ ଏହା ଏକ ପ୍ରଶ୍ନ । ଦେଖାଯିବ ଯେ ପ୍ରସଙ୍ଗରେ ଯଥୋପଯୁକ୍ତ ଅଙ୍ଗମାନ ସଂଯୋଗ କରି ପ୍ରତ୍ୟେକ ଥର ଆମେ ତାହାର ପ୍ରସମ୍ଭାବ୍ୟତାର ବୃଦ୍ଧି କରିପାରୁ । କିନ୍ତୁ ଏହି ଶେଷୋକ୍ତ ମନ୍ତବ୍ୟଟି ସ୍ୱାଭାବିକ ହୋଇଥିଲେ ହେଁ ଭାଷାଗତ ପ୍ରୟୋଜନାତିରିକ୍ତ ଦୋଷଦୁଷ୍ଟ ଏବଂ ମୁଖ୍ୟତଃ ଏଥିଯୋଗୁ ହିଁ ଏହି ସମସ୍ୟାର ଅସୁବିଧାମାନ ଜାତ ହୁଏ । ଗୋଟିଏ ପ୍ରସଙ୍ଗ ପ୍ରସମ୍ଭବ ବିବେଚିତ ହେବାର ମୌଳିକ ଦୃଷ୍ଟିକୋଣରୁ ପ୍ରସମ୍ଭାବ୍ୟତା ହେଉଛି ପ୍ରସଙ୍ଗର ଯେଉଁ ସମସ୍ତ ଲକ୍ଷଣ ଉପରେ ତାହାର ଏକରୂପତାର ପରିମାଣ ନିର୍ଭରଶୀଳ, ସେଗୁଡ଼ିକୁ ସଂକ୍ଷେପରେ ବ୍ୟକ୍ତ କରୁଥିବା ଏକ ପ୍ରତୀକ ।

ଅର୍ଥକରଣର ସଚେତନତାମୂଳକ ଓ ସମୀକ୍ଷାମୂଳକ ପ୍ରଣାଳୀମାନଙ୍କ ବିଚାର କାଳରେ ଆମେ ହୃଦୟଙ୍ଗମ କରିବା ଆବଶ୍ୟକ ଯେ ଏ ପ୍ରକାର ସମସ୍ତ କ୍ରିୟାକଳାପ, ଯଥା—ଯେଉଁପ୍ରକାର କ୍ରିୟା ଆରୋହସିଦ୍ଧାନ୍ତରେ ଆଲୋଚିତ, 'ପ୍ରବୃତ୍ତିମୂଳକ' ବ୍ୟାଖ୍ୟା-କରଣ ଉପରେ ଆଧାରିତ । 'ପ୍ରବୃତ୍ତିମୂଳକ' ବ୍ୟାଖ୍ୟାକରଣର ଉପାଦେୟତା ସମ୍ବନ୍ଧ ରହିଥିବା ବିଷୟ ଯଦି ସ୍ୱୀକାର କରାଯାଏ, ତେବେ ଆମେ ଆମର ଅନୁସନ୍ଧାନ ନିର୍ବିଘ୍ନରେ ଅବ୍ୟାହତ ରଖିପାରିବା । ଏଥିରେ କଠୋର କାରଣିକ ନୀତି ଉପରେ ଗୁରୁତ୍ୱ ଆରୋପ-କାରୀଙ୍କ ସନ୍ଦେହ ବାଧା ଦେଇପାରିବନାହିଁ କି ଗଣିତଜ୍ଞଙ୍କ ଅବକଳ ସମୀକରଣ ପ୍ରୟୋଗ ପାଇଁ କାଳକ୍ଷେପଣ ବାଧା ଦେଇପାରିବ ନାହିଁ । ଅବକଳ ସମୀକରଣର ପ୍ରୟୋଗ ହେଉଛି ଅର୍ଥକରଣର ସର୍ବାପେକ୍ଷା ଅଧିକ ବିଚାରବୁଦ୍ଧିମୂଳକ ପ୍ରଣାଳୀ । କିନ୍ତୁ ଅଦ୍ୟାବଧି କୌଣସି ଗାଣିତିକ ପଦ୍ଧତିରେ ବିଶ୍ଳେଷି ହୋଇପାରି ନଥିବା କିଛି 'ପ୍ରବୃତ୍ତି-ମୂଳକ' ବ୍ୟାଖ୍ୟା ଯଦି ସଫଳତାର ସହିତ କରାଯାଇ ପାରୁ ନଥାନ୍ତା, ତେବେ ଅବକଳ ସମୀକରଣର କାର୍ଯ୍ୟକାରିତା ନଷ୍ଟ ହୋଇ ଯାଆନ୍ତା ।

ଗୋଟିଏ ଚିନ୍ତା ପ୍ରକ୍ରିୟା କେଉଁ ବିଷୟକୁ ନିର୍ଦ୍ଦେଶ କରୁଛି, ତାହାର ଆବିଷ୍କାର ପରୀକ୍ଷଣ ପଦ୍ଧତିଦ୍ୱାରା ବେଳେ ବେଳେ ଅତି ସହଜସାଧ୍ୟ ହୋଇଥାଏ । ଉଦାହରଣ ସ୍ୱରୂପ, ଗବେଷଣା ଉଦ୍ଦେଶ୍ୟରେ ଜଣକୁ ମେଜେଣ୍ଟା (ନୀଳ-ଲୋହିତ) ବର୍ଣ୍ଣ 'ର ଚିନ୍ତା' କରିବାକୁ ଆମେ କହୁ, ତାହାକୁ ଭିନ୍ନ ଭିନ୍ନ ପ୍ରକାରର ରଙ୍ଗ ଦେଖାଇ ଆମେ ଜାଣି-ପାରିବା ଯେ ଅନେକ ସମୟରେ ସେ ଏହି ବର୍ଣ୍ଣର ହିଁ ଚିନ୍ତା କରୁଛି ଓ ଅନେକ ସମୟରେ ସେ ଏହାଠାରୁ ଏକ ଭିନ୍ନ ବର୍ଣ୍ଣର ଚିନ୍ତା କରୁଛି । ଏହିପ୍ରକାର ବିଚାର ହେତୁରୁ ହିଁ 'କୁ ନିର୍ଦ୍ଦେଶ କରିବା'ର ଏକ ଅତି ସୁବିଧାଜନକ ସମାର୍ଥକ ଅଭିବ୍ୟକ୍ତି ହେଉଛି 'ର ଉପଯୋଗୀ ହେବା' । ଆମେ ଯଦି ମନେରଖୁ ଯେ କୌଣସି ଏକ ବସ୍ତୁ 'ର ଉପଯୋଗୀ ହେବା' ହେଉଛି ବାହ୍ୟ ପ୍ରସଙ୍ଗ ଓ ମନସ୍ତାତ୍ତ୍ୱିକ ପ୍ରସଙ୍ଗ ମାଧ୍ୟମରେ ସେହି ବସ୍ତୁ ସହିତ ବର୍ଣ୍ଣିତ ମତେ ସମ୍ପୃକ୍ତ ହେବା ବିଷୟକୁ ସଂକ୍ଷେପରେ ବ୍ୟକ୍ତ କରୁଥିବା ଏକ ପ୍ରତୀକ, ତେବେ ଆମେ ଏହି ଅଭିବ୍ୟକ୍ତିକୁ ତାହାର ବିଭ୍ରାନ୍ତକର ଉଦ୍ଦେଶ୍ୟମୂଳକ ଓ ଜୀବତାତ୍ତ୍ୱିକ ବ୍ୟଞ୍ଜନା-ବିରହିତ କରି ବ୍ୟବହାର କରିବାକୁ ସମର୍ଥ ହୋଇପାରୁ ।

ଭ୍ରାନ୍ତ ଅର୍ଥକରଣର ଏକ ବିବରଣୀ ଦେବା ଏବଂ ଭିତ୍ତିହୀନ ବିଶ୍ୱାସଗୁଡ଼ିକ କିପରି ଜାତ ହୋଇପାରେ, ତାହାର ଏକ ବ୍ୟାଖ୍ୟା ଦେବା ଏବେସୁଦ୍ଧା ବାକି ରହିଛି । ପ୍ରଥମୋକ୍ତ ବିଷୟଟିରୁ ଆରମ୍ଭ କରାଯାଉ । ଯେତେବେଳେ ଜଣେ କୌଣସି ସଙ୍କେତର ଭ୍ରାନ୍ତ ଭାବେ ଅର୍ଥ କରେ, ସେତେବେଳେ ସେ ଅପ୍ରାସଙ୍ଗିକ ବିଚାରମାନ ବା ଧାରଣାମାନ ପ୍ରବେଶ କରାଇଛି ଅଥବା ପ୍ରାସଙ୍ଗିକ ବିଚାର ବା ଧାରଣାମାନଙ୍କୁ ଉପେକ୍ଷା କରି ଯାଇଛି

ବୋଲି ପ୍ରାୟତଃ କୁହାଯାଇଥାଏ । ଅର୍ଥ-ସିଦ୍ଧାନ୍ତରେ ପ୍ରାସଙ୍ଗିକତାର ଧାରଣା ଅତିବ ଗୁରୁତ୍ୱପୂର୍ଣ୍ଣ । ଏକ ବସ୍ତୁର (ଧାରଣା, ପ୍ରତ୍ୟୟ) ବା ଏକ ଅଭିଜ୍ଞତାକୁ ଆମେ **ପ୍ରାସଙ୍ଗିକ** କହିବା, ଯେତେବେଳେ ଅର୍ଥକରଣ ଯେପରିଭାବେ ଅନ୍ୟାନ୍ୟ ପ୍ରସଙ୍ଗକୁ ସଂଯୁକ୍ତ କରେ, ସେହି ସ୍ୱତନ୍ତ୍ର ଗଠନରେ ସେଗୁଡ଼ିକ ସଂଯୋଗ କରୁଥିବା ମନସ୍ତାତ୍ତ୍ୱିକ ପ୍ରସଙ୍ଗର ତାହା ଅଂଶ ହୋଇଥାଏ । (୧) ଏକ ଅପ୍ରାସଙ୍ଗିକ ବସ୍ତୁର ହେଉଛି ଏକ ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅଣ-ସଂଯୋଗକାରୀ ଅଙ୍ଗ । 'ଭିତ୍ତିହୀନ' ଦୃଢ଼ ବିଶ୍ୱାସ ଜାତ ହେବା ଘଟଣାକୁ ଏଠାରେ ଉପସ୍ଥାପିତ ଚନ୍ତନ-ମତ ବିରୁଦ୍ଧରେ ଏକ ଆପତ୍ତିରୂପେ ବିଚାର କରିବାର ସମ୍ଭାବନା ରହିଛି । କିନ୍ତୁ ମାନସିକ ପ୍ରକ୍ରିୟାଗୁଡ଼ିକ କେବଳ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ନିର୍ଦ୍ଧାରିତ ହୁଏ-ନାହିଁ; ଉଦାହରଣ ସ୍ୱରୂପ, ରକ୍ତଚାପ ଦ୍ୱାରା ମଧ୍ୟ ଏଗୁଡ଼ିକ ପ୍ରଭାବିତ ହୁଏ; ଏହି ଘଟଣାରୁ ଭିତ୍ତିହୀନ ବିଶ୍ୱାସ ଜାତ ହେବାର ବ୍ୟାଖ୍ୟା ମିଳିପାରିବ । ଯଦି ଆମର ଅର୍ଥକରଣ କେବଳ ମନସ୍ତାତ୍ତ୍ୱିକ ପ୍ରସଙ୍ଗ ଉପରେ ହିଁ ନିର୍ଭରଶୀଳ ହୁଅନ୍ତା, ତେବେ ସମ୍ଭବତଃ, ଆମର ବିଶ୍ୱାସଗୁଡ଼ିକ, ସତ୍ୟ ହେଉ ବା ମିଥ୍ୟା ହେଉ, ସର୍ବଦା ସମର୍ଥିତ ହୁଅନ୍ତା । ଯେତେବେଳେ ଆମେ ସୁପ୍ତ ବା କ୍ଳାନ୍ତ, ଯେତେବେଳେ ବିଲକ୍ଷଣଯୁକ୍ତ ଭ୍ରାନ୍ତ ଅର୍ଥକରଣର ଉଦ୍ଭବ ହୁଏ । ସୁତରାଂ ମନସ୍ତାତ୍ତ୍ୱିକ ପ୍ରସଙ୍ଗମାନଙ୍କରେ ବାଧା ଅର୍ଥାତ୍ 'ଭୁଲଗୁଡ଼ିକ' ହେତୁରୁ ଭ୍ରାନ୍ତ ଅର୍ଥକରଣ ସମ୍ଭବପର ହୁଏ । ପକ୍ଷାନ୍ତରେ, ଆମେ ଯଦି କେବଳ ମନୋ-ବୈଜ୍ଞାନିକ ବିଷୟର ଆଲୋଚନା କରୁ ନଥାଉ, ଗୋଟିଏ ଅର୍ଥକରଣର ସତ୍ୟ ବା ମିଥ୍ୟା ହେବା କେବଳ ମନସ୍ତାତ୍ତ୍ୱିକ ପ୍ରସଙ୍ଗମାନଙ୍କ ଉପରେ ନିର୍ଭର କରେ ନା । ଦିଆସିଲି କାଠି ମାରି ଅଗ୍ନିଶିଖାର ପ୍ରତୀକ୍ଷା କରିବା ନିମନ୍ତେ ସବୁପ୍ରକାର ଯୁକ୍ତି ଥାଇପାରେ; କିନ୍ତୁ ହାୟ ! ଏହା ଅଗ୍ନିଶିଖାର ନିଶ୍ଚିତ ସଂଘଟନ କରାଇ ପାରେନା । ଅଗ୍ନିଶିଖାର ନିଶ୍ଚିତ ସଂଘଟନ ଭୌତିକ ପ୍ରସଙ୍ଗ ଉପରେ ନିର୍ଭର କରେ, ମନସ୍ତାତ୍ତ୍ୱିକ ପ୍ରସଙ୍ଗ ଉପରେ ନିର୍ଭର କରେ ନା ।



(୧) ଅର୍ଥକରଣଠାରୁ ବାହ୍ୟ ପ୍ରସଂଗମାନଙ୍କ ଅନ୍ୟାନ୍ୟ ମନସ୍ତାତ୍ତ୍ୱିକ ସଂଯୋଗ ମୁଖ୍ୟତଃ ଭିନ୍ନ ନୁହେଁ । କିନ୍ତୁ ଆମେ ଏଠାରେ ମାନସିକ ପ୍ରକ୍ରିୟାର କେବଳ ସଙ୍କେତାତ୍ମକ ଦିଗ ସହିତ ହିଁ ସମ୍ପୃକ୍ତ । କ୍ରିୟାବୃତ୍ତିର ଆଲୋଚନାରେ ପ୍ରାସଙ୍ଗିକତାର ଠିକ୍ ଏହି ଅର୍ଥ ଯଥୋପଯୁକ୍ତ ହେବ । ବିଶ୍ଳେଷଣର ପ୍ରସଙ୍ଗ ପଦ୍ଧତି ଅଭିଳାଷ ଓ ସଂବେଗ ସମ୍ବନ୍ଧୀୟ ସମସ୍ୟାମାନଙ୍କ ଉପରେ ପର୍ଯ୍ୟାପ୍ତ ଆଲୋକପାତ କରିବା ପାଇଁ ସମର୍ଥ ।

# ଚତୁର୍ଥ ପରିଚ୍ଛେଦ

## ପ୍ରତ୍ୟକ୍ଷଣରେ ସଙ୍କେତାବଳୀ

ପ୍ରକୃତ ହେଉଛି ଜୀବନ୍ତ ସ୍ତମ୍ଭ ସମ୍ବଳିତ ଏକ ମନ୍ଦିର ।
ଏଥିରୁ ସମସ୍ତ ସମୟରେ ଅସ୍ପଷ୍ଟ ଧ୍ୱନି ଶୁଣାଯାଏ ।
ପ୍ରତୀକ-ବଣ ମଧ୍ୟ ଦେଇ ମନୁଷ୍ୟ ଏହାକୁ ଅତିକ୍ରମ କରେ ।
ପ୍ରତୀକଗୁଡ଼ିକ ଆତ୍ମୀୟତାପୂର୍ଣ୍ଣ ଦୃଷ୍ଟିରେ ତାହାକୁ ଅନାଇ ରହନ୍ତି ।

—ବୌଦେଲେଆର

ଜ୍ଞାନର ଅଭିବୃଦ୍ଧି ସହିତ ଆମର ପୂର୍ବପୁରୁଷମାନଙ୍କ ଅପେକ୍ଷା ଆମେ ଚଉକି, ଟେବୁଲ୍‌ଗୁଡ଼ିକ ସମ୍ବନ୍ଧରେ ଅଧିକ ସନ୍ଦିହାନ ହୋଇ ପଡ଼ିଥିଲେ ହେଁ ବସ୍ତୁବିଜ୍ଞାନୀ ଓ ଦାର୍ଶନିକମାନେ ଏ ବିଷୟ ସଂପୂର୍ଣ୍ଣରୂପେ ଆଲୋଚନା-ପରିସରବହିର୍ଭୂତ ବୋଲି ପ୍ରଦର୍ଶନ କରିବାକୁ ଏପର୍ଯ୍ୟନ୍ତ ସମର୍ଥ ହୋଇନାହାନ୍ତି । ଚଉକି, ଟେବୁଲ୍‌ଗୁଡ଼ିକ ଯେ ସଂପୂର୍ଣ୍ଣରୂପେ ନିଉମ ବସ୍ତୁ ଏଥିରେ ମତଦ୍ୱୈଧ ନାହିଁ । ଏଗୁଡ଼ିକ ରହିଛି ଏବଂ ଏଗୁଡ଼ିକୁ ସ୍ପର୍ଶ କରିଯାଇ-ପାରେ । କିନ୍ତୁ ଏ ବିଷୟରେ ମତ ଦେବାକୁ ଯେଉଁମାନଙ୍କ ଯୋଗ୍ୟତା ରହିଛି, ସେମାନେ ସମସ୍ତେ ଏ ବିଷୟରେ ମଧ୍ୟ ସମଭାବରେ ଏକମତ ଯେ ଆମେ ଯାହା ଦେଖୁ, ତାହା ନିଶ୍ଚିତରୂପେ ଚଉକି, ଟେବୁଲ ନୁହେଁ । ତାହାହେଲେ ଏ ବିଷୟରେ କ'ଣ କରାଯିବ ?

ବୈଜ୍ଞାନିକମାନେ ଓ ଅନ୍ୟାନ୍ୟ ଲୋକେ ଆଜିକାଲି କାହିଁକି ଏକମତ ଯେ ଆମେ ଯାହା ଦେଖୁ, ତାହା ଚଉକି, ଟେବୁଲ୍ ନୁହେଁ, ଏ କଥାଟି ସଂଗେ ସଂଗେ ସ୍ପଷ୍ଟ ହୋଇଯିବ, ଯଦି ଏଗୁଡ଼ିକ ପ୍ରତି ଦୃଷ୍ଟି ନିକ୍ଷେପ କଲାବେଳେ ଯଥାର୍ଥରେ ଆମେ କ'ଣ ଦେଖୁ, ତାହାର ବିଚାର କରାଯାଏ । କିନ୍ତୁ ଅନ୍ୟପକ୍ଷରେ ଆମେ ଯଥାର୍ଥରେ ଯାହା ଦେଖୁ ସେ ସମ୍ବନ୍ଧରେ ଯେଉଁ ବିବରଣୀ ଦିଆଯାଇଛି, ତାହା ଏହି ବ୍ୟାପାରକୁ ବିଶେଷ ଆଗେଇ ନେଇ ପାରିନାହିଁ । ଏଥି ନିମନ୍ତେ ଆମ ଅନୁରକ୍ତିର ବସ୍ତୁଗୁଡ଼ିକୁ ଆମେ ଭ୍ରାନ୍ତ-ଭାବେ ନାମିତ କରିବାର ବଦଅଭ୍ୟାସ ଦାୟୀ । ଏହି ଅଭ୍ୟାସ ଶୈଶବାବସ୍ଥାରେ ହିଁ ଗଠିତ ହୋଇଥାଏ । ନିମ୍ନରେ ଉଦାହରଣ ସ୍ୱରୂପ ଏହି ପ୍ରକ୍ରିୟାର ଏକ ସାଧାରଣ

ପଦ୍ଧତିର ଉଲ୍ଲେଖ କରାଯାଇଛି । ଏହି ଅଭ୍ୟାସଗୁଡ଼ିକ ଯେପରିଭାବେ ଗଠିତ ହୁଏ, ତାହାର ଏହା ଏକ ଦୃଷ୍ଟାନ୍ତ—

"ମୋର ମନେପଡ଼ୁଛି ଥରେ ମୁଁ ଟେବୁଲକୁ କ'ଣ କୁହାଯାଏ, ସେହି ଶବ୍ଦଟି ଜାଣିବାକୁ ଚାହୁଁଥିଲି । ପାଞ୍ଚ ଛଅଜଣ ପିଲା ଟେବୁଲକୁ ଘେରି ଛିଡ଼ା ହୋଇଥାନ୍ତି । ମୁଁ ମୋର ଆଙ୍ଗୁଳିରେ ଟେବୁଲକୁ ଠକ୍ ଠକ୍ କରି ପଚାରିଲି—'ଏହା କ'ଣ ?' ଜଣେ କହିଲା, ଏହା **ଡୋଡେଲା** । ଅନ୍ୟ ଜଣେ କହିଲା, ଏହା **ଏଟାଣ୍ଡା** । ତୃତୀୟ ଜଣକ କହିଲା, ଏହା **ବୋକାଲି** । ଚତୁର୍ଥ ପିଲାଟି କହିଲା, ଏହା **ଏଲାମ୍ବା** ଏବଂ ପଞ୍ଚମ ପିଲାଟି କହିଲା, ଏହା **ମେଙ୍ଗା** । ଏହି ବିଭିନ୍ନ ଶବ୍ଦକୁ ଆମେ ଆମର ଟିପା ଖାତାରେ ଲେଖି ରଖିଲୁ । ଆମେ ଏପରି ଏକ ସମ୍ପ୍ରଦାୟର ଲୋକଙ୍କ ମଧ୍ୟରେ କାମ କରୁଥିବାରୁ ନିଜକୁ ଭାଗ୍ୟବାନ ମନେ କଲୁ । ଏମାନଙ୍କ ଭାଷା ଏତେ ସମୃଦ୍ଧ ଯେ ଗୋଟିଏ ବସ୍ତୁକୁ ସୂଚିତ କରିବାକୁ ତାଙ୍କର ପାଞ୍ଚୋଟି ଶବ୍ଦ ରହିଛି ।" (୧)

ଏହି ସମ୍ମାନିତ ଭଦ୍ରବ୍ୟକ୍ତି ଗ୍ରହଣ କରି ନେଇଛନ୍ତି ଯେ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚାରିବା ଦ୍ୱାରା ସେ ଗୋଟିଏ ନିର୍ଦ୍ଦିଷ୍ଟ ଉତ୍ତର ପାଇବାକୁ ହକଦାର । ଯାହା ସେ ପ୍ରକୃତରେ ଦେଖିଲେ ବା ଯାହାକୁ ଠକ୍ ଠକ୍ କଲେ, ସେ ବିଷୟରେ ଅଳ୍ପ ଟିକିଏ ଧ୍ୟାନ ଦେଇଥିଲେ, ପରବର୍ତ୍ତୀ ସ୍ତରରେ ସେ ଯାହା ଆବିଷ୍କାର କଲେ ସେହି ଅସୁବିଧାରୁ ଅବ୍ୟାହତି ପାଇଥାନ୍ତେ । ପରେ ସେ ନିମ୍ନୋକ୍ତ ବିଷୟଟି ଆବିଷ୍କାର କଲେ । "ଜଣେ ପିଲା ଭାବିଥିଲା ଯେ ଆମେ ଠକ୍ ଠକ୍ କରିବାର ପ୍ରତିଶବ୍ଦ ଚାହୁଁଛୁ । ଅନ୍ୟଜଣେ ବୁଝିଥିଲା ଯେ ଟେବୁଲଟି ଯେଉଁ ଉପାଦାନରୁ ଗଠିତ, ତାହାକୁ ବୁଝାଉଥିବାର ଶବ୍ଦଟି କ'ଣ ବୋଲି ଆମେ ପଚାରୁଛୁ । ଆଉ ଜଣକର ଧାରଣା ଥିଲା ଯେ କଠିନତା ପାଇଁ ଆମେ ଗୋଟିଏ ଶବ୍ଦ ଦରକାର କରୁଛୁ । ତା' ପର ପିଲା ଭାବୁଥିଲା ଯେ ଟେବୁଲ୍‌କୁ ଯାହା ଘୋଡ଼ାଇ ରଖିଛି, ତାହାର ନାମ ଆମେ ଜାଣିବାକୁ ଇଚ୍ଛା କରୁଛୁ । ଶେଷ ପିଲାଜଣକ ବୋଧହୁଏ ଆଉ ଅନ୍ୟକିଛି ଭାବି ପାରିଲା ନାହିଁ ଓ ଟେବୁଲକୁ ବୁଝାଉଥିବା **ମେଙ୍ଗା** ଶବ୍ଦଟି ଆମକୁ କହିଲା, ଅର୍ଥାତ୍ ଆମେ ଯେଉଁ ଶବ୍ଦଟିକୁ ଜାଣିବାକୁ ଚାହୁଁଥିଲୁ, ଠିକ୍ ସେହି ଶବ୍ଦଟି କହିଲା ।"

ଏକ ଅନୁରୂପ ଆବିଷ୍କାର ବିଶେଷଜ୍ଞମାନେ ଏବେ କରିବାକୁ ଯାଉଛନ୍ତି । ଜ୍ଞାନର ଏହି ଆସନ୍ନ ପ୍ରଗତିର ମୁଖ୍ୟ ବିଶେଷତ୍ୱ ସମ୍ବନ୍ଧରେ ସୂଚନା ଦେବା ଏଠାରେ ଅପ୍ରାସଙ୍ଗିକ ହେବନାହିଁ ।

---

(୧) J. H. Weeks କୃତ *Among Congo Cannibals* ପୃ ୫୧ ।

ପ୍ରଥମ ଦୃଷ୍ଟିପାତରେ ବଡ଼ ଆଶ୍ଚର୍ଯ୍ୟ ଲାଗେ ଯେ ଏନେସିଡେମସ୍ ଏବଂ ଓକ୍କାମ ଆରମ୍ଭ କରିଥିବା ସଙ୍କେତ ପରିସ୍ଥିତିର ବିଶ୍ଳେଷଣ ପ୍ରତି ଧ୍ୟାନ ଦେବାକୁ ଆଧୁନିକ ଗବେଷକମାନଙ୍କୁ ଏତେ ଦୀର୍ଘ ସମୟ ଲାଗିଲା । ମନେହୁଏ, ତତ୍ତ୍ୱବିଜ୍ଞାନୀମାନଙ୍କ ଅଧ୍ୟୟନର ବିଷୟ ବସ୍ତୁର ପରିସରଭୁକ୍ତ ବୋଲି ମନେ କରାଯାଉଥିବା ବିଷୟ ପ୍ରତି ସେମାନଙ୍କ ଅସ୍ୱସ୍ତିବୋଧ ଏତେ ପର୍ଯ୍ୟାପ୍ତ ପରିମାଣର ହୋଇଛି ଯେ ନିଜ କାର୍ଯ୍ୟର ପ୍ରତ୍ୟେକ ସ୍ତରରେ ନିହିତ ଅର୍ଥକରଣର ନିୟମାବଳୀ ପ୍ରତି ସେମାନଙ୍କ ଅନୁସନ୍ଧିତ୍ସା ବ୍ୟାହତ ହୋଇଛି । ପୁଣି ଅନ୍ୟାନ୍ୟ କ୍ଷେତ୍ରର ବିଶେଷଜ୍ଞମାନଙ୍କ ସହିତ ମତଦ୍ୱୈଧ ଏଡ଼ାଇ ପାରୁଥିବା ପର୍ଯ୍ୟନ୍ତ ପ୍ରତ୍ୟକ୍ଷର ବୈଶିଷ୍ଟ୍ୟକୁ ସଙ୍କେତ ପରିସ୍ଥିତିରୂପେ ବିଶ୍ଳେଷଣ ଦ୍ୱାରା ହିଁ ଯେ କେବଳ ତାହାର ବୈଜ୍ଞାନିକ ସ୍ତରରେ ଅଧ୍ୟୟନ କରାଯାଇପାରେ—ଏହା ହୃଦୟଙ୍ଗମ ନକରି ସୁଦ୍ଧା ଅନେକ କିଛି ସାଫଲ୍ୟ ଅର୍ଜନ କରିବା ସମ୍ଭବପର ହୋଇ ପାରିଛି ।

ଡେଣ୍ଟ୍ ସମସ୍ତେ ନୀରବ ରହିଥିବା ବେଳେ ଏକାକୀ ହେଲ୍‌ମହୋଲ୍‌ତ୍ସ୍ ଯେଉଁ ସ୍ୱର ଉତ୍ତୋଳନ କରିଥିଲେ, ତାହା ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ । ହେଲ୍‌ମହୋଲ୍‌ତ୍ସ୍ ଆଧୁନିକ ଯୁଗର କେବଳ ବୈଜ୍ଞାନିକ ଚିନ୍ତାରେ ଯେ ଜଣେ ଅତି ସୁନିପୁଣ ବ୍ୟକ୍ତି, ଏକଥା ନୁହେଁ, ସେ ଦାର୍ଶନିକ ବାଦାନୁବାଦରେ ମଧ୍ୟ ସକ୍ରିୟଭାବେ ଅନୁରକ୍ତ ରହି ତାଙ୍କର ସମଗ୍ର ଜୀବନ ଅତିବାହିତ କରିଥିଲେ । ଏହା ତାଙ୍କ ଚିଠିପତ୍ରରୁ ଆମେ ଜାଣୁ । ୧୮୫୭ ବେଳକୁ ମଧ୍ୟ ଆମେ ଦେଖିବାକୁ ପାଉ ଯେ ସରଳ ସଂବେଦ ଗୁଡ଼ିକରୁ ପ୍ରତ୍ୟକ୍ଷର ଅବଧାରଣରେ ଆମେ ଯେପରି ଭାବେ ଉପନୀତ ହେଉ, ତତ୍‌ସଂପୃକ୍ତ ସମସ୍ୟା ପ୍ରତି ହେଲ୍‌ମହୋଲ୍‌ତ୍ସ୍ ହିଁ ଦୃଷ୍ଟି ଆକର୍ଷଣ କରିଥିଲେ । ଏହି ସମସ୍ୟା ପ୍ରତି କୌଣସି ଆଧୁନିକ ଦାର୍ଶନିକ ତାଙ୍କପରି ସବିଶେଷ ମନୋଯୋଗ ଦେଇଥିବାର ଦୃଷ୍ଟାନ୍ତ ନାହିଁ । କାଣ୍ଟଙ୍କଦ୍ୱାରା ସେ ପ୍ରଭୂତ ପରିମାଣରେ ପ୍ରଭାବିତ ହୋଇଥିଲେ । କାଣ୍ଟଙ୍କ ପ୍ରବୋଧ ଅବଶ୍ୟ ବିଶୃଙ୍ଖଳିତ, କିନ୍ତୁ ତଥାପି ସେ ସର୍ବଦା ଅର୍ଥକରଣର କେନ୍ଦ୍ରିକ ସମସ୍ୟାମାନଙ୍କ ସମାଧାନର ଅତି ନିକଟବର୍ତ୍ତୀ ହୋଇ ପାରୁଥିଲେ ବୋଲି ମନେହୁଏ । ନାମବାଦରେ ବିଶ୍ୱାସ କରୁଥିବା ଆଧୁନିକ ଯୁଗର ବ୍ୟକ୍ତିମାନଙ୍କ ମଧ୍ୟରେ ତାଙ୍କର ବିଶ୍ୱାସ ସର୍ବାଧିକ ଦୃଢ଼ ବୋଲି ଦାବୀ କରାଯାଏ । (୧) କିନ୍ତୁ ହେଲ୍‌ମହୋଲ୍‌ତ୍ସ୍‌ଙ୍କ ଲେଖାର ବିଭିନ୍ନ ଅଂଶରେ ଯେଉଁ ସଙ୍କେତ-ସିଦ୍ଧାନ୍ତର ବର୍ଣ୍ଣନା ଦେଖିବାକୁ ମିଳେ, ତହିଁରେ କାଣ୍ଟୀୟ ବିଶେଷତ୍ୱ କିଛି ନାହିଁ । (୨)

---

(୧) H. Wolff, *Neue Kritik der reinen Vernunft* ପୃ ୧୭ ।

(୨) Kuhtmann ଏହି ବିଷୟକୁ ତୁଳନା କରି ଦେଖିଛନ୍ତି, କଥିତ ଗ୍ରନ୍ଥ ପୃ ୭୭ ।

ହେଲ୍‌ମହୋଲତ୍ସ ମୁକ୍ତ ବାକ୍ୟରେ କହିଛନ୍ତି ଯେ ଆମର ଜ୍ଞାନ ସଙ୍କେତର ଆକାର ଧାରଣ କରେ ଏବଂ ସେହି ସଙ୍କେତଗୁଡ଼ିକ ବହିର୍ଜଗତସ୍ଥ ବସ୍ତୁମାନଙ୍କ ଅଜ୍ଞାତ ସମ୍ବନ୍ଧସୂଚକ ବୋଲି ଆମେ ଅର୍ଥ କରୁ । ସମସ୍ତ ପ୍ରତ୍ୟକ୍ଷଣର ଭିତ୍ତିଭୂମି ରୂପେ ଯେଉଁ ସଂବେଦନ ଗୁଡ଼ିକ ରହିଛି, ସେଗୁଡ଼ିକ ବହିଃସ୍ଥ ବସ୍ତୁମାନଙ୍କ ବ୍ୟକ୍ତିନିଷ୍ଠ ସଙ୍କେତ । (୧) ସଂବେଦନର ଗୁଣଗୁଡ଼ିକ ବସ୍ତୁବର୍ଗର ଗୁଣ ନୁହେଁ । ସଙ୍କେତ ସତ୍ତ୍ୱର ପ୍ରତିଛବି ନୁହେଁ ।

"ସଙ୍କେତ ଯାହା ସଂକେତିତ କରେ, ତାହା ସହିତ ସଙ୍କେତର କୌଣସି ପ୍ରକାର ସାଦୃଶ୍ୟ ରହିବା ଆଦୌ ଆବଶ୍ୟକ ନୁହେଁ । ସମ୍ବନ୍ଧଟି କେବଳ ଏତିକିରେ ହିଁ ପର୍ଯ୍ୟବସିତ ଯେ ସେହି ଏକ ବସ୍ତୁ ସମପ୍ରକାର ପରିସ୍ଥିତିରେ କାର୍ଯ୍ୟ କରି ସେହି ଏକ ସଙ୍କେତର ଉଦ୍ରେକ କରେ । ସୁତରାଂ ଭିନ୍ନ ଭିନ୍ନ ସଙ୍କେତ ସର୍ବଦା ଭିନ୍ନ ଭିନ୍ନ ସବେଦନ ସହିତ ସବାଦୀ ।" (୨)

ଏକ ବହିର୍ଜଗତ ମାଧ୍ୟମରେ ଆମେ ଯେପରି ଭାବେ ସଙ୍କେତଗୁଡ଼ିକର ଅର୍ଥ କରୁ, ତାହାର ଆଲୋଚନା ପ୍ରସଙ୍ଗରେ ହେଲ୍‌ମହୋଲତ୍ସ ଦର୍ଶାଇଛନ୍ତି ଯେ ଆମେ ବ୍ୟବହାର କରୁଥିବା ଗୁଚ୍ଛଗୁଚ୍ଛ ସଙ୍କେତର ବହୁତ୍ୱ ଏପରି ଯେ ସେଗୁଡ଼ିକ ଯୋଗାଉଥିବା ସମ୍ବାଦର ବିବିଧତା ଓ ଜଟିଳତାରେ ବିସ୍ମିତ ହେବାର ଆବଶ୍ୟକତା ନଥାଏ । [ଇଂରାଜୀ] ଭାଷାର ମୌଳିକ ସଙ୍କେତଗୁଡ଼ିକ ହେଉଛି କେବଳ ୨୬ଟି ଅକ୍ଷର । ଯଦି ଏହି ୨୬ଟି ଅକ୍ଷରରୁ ଆମେ ସମସ୍ତ ସାହିତ୍ୟ ଓ ବିଜ୍ଞାନ ପାଇ ପାରୁଛୁ, ତେବେ ୨୫୦,୦୦୦ ସ୍ନାୟୁତନ୍ତୁ ଆହୁରି ବୈଚିତ୍ର୍ୟପୂର୍ଣ୍ଣ ଓ ଅତି ସୂକ୍ଷ୍ମାନୁସୂକ୍ଷ୍ମ ଭାବେ ସମ୍ମିତ ଜ୍ଞାନ ଯୋଗାଇ ପାରିବେ ବୋଲି ସେଗୁଡ଼ିକ ଉପରେ ଆସ୍ଥା ସ୍ଥାପନ କରାଯାଇ ପାରିବ ।

ଗୋଟିଏ ଟେବୁଲ ଆଡ଼କୁ ଦୃକ୍‌ପାତ କଲାବେଳେ ଆମେ କ'ଣ ଦେଖୁ ? ପ୍ରଥମ ଓ ସର୍ବପ୍ରଧାନ ଦୃଷ୍ଟ ବିଷୟ ହେଉଛି ଏକ ଆଲୋକିତ ଅଞ୍ଚଳ; ତହିଁରେ କେତେକ ପରିମାଣର ବାୟୁ ଥାଏ ଏବଂ ଆଂଶିକତଃ ଟେବୁଲ ଠାରୁ ଓ ଆଂଶିକତଃ ଅନ୍ୟାନ୍ୟ ଠାରୁ ଆସୁଥିବା କିରଣଦ୍ୱାରା ତାହା ଆଲୋକିତ ହୋଇଥାଏ । ତା'ପରେ ଏହି ଅଞ୍ଚଳର ଦୂରବର୍ତ୍ତୀ ସୀମାରେଖା, ଟେବୁଲର ଉପରଭାଗର କେତେକାଂଶ ସମେତ ବସ୍ତୁମାନଙ୍କର ଉପରଭାଗ ଦୃଷ୍ଟ ହୁଏ । ବର୍ତ୍ତମାନ ଆମେ ଯାହା ଦେଖୁଛୁ, ତାହାକୁ ନିର୍ଦ୍ଦେଶ କରି, ଯଦି ତାହାକୁ **ଏହା** ବୋଲି ନାମିତ କରାଯାଏ ଏବଂ ଆମର ଅବଧାନ ଯଦି ଟେବୁଲ୍ ଉପରେ କେନ୍ଦ୍ରୀଭୂତ ହୋଇଥାଏ, ତେବେ ଏହା ଏକ ଟେବୁଲ ଅଟେ ବୋଲି ଆମେ ଉକ୍ତି ଦେବାର ଆଶଙ୍କା ରହିଛି । ସୁତରାଂ ଆମକୁ ସାବଧାନ ହେବାକୁ ପଡ଼ିବ । ପୁଣି ଏହି

(୧) *Vortrage und Reden I*, ୩୯୩ ।

(୨) *Die Tatsachen in der Wahrnehmung*, ପୃ ୩୯ ।

ଯୋଜନାନୁଯାୟୀ କର୍ତ୍ତାର ସ୍ଥିତି କେଉଁଠି ? ତାହା ଆଖିର କୌଣସି ସ୍ଥାନରେ ରହୁଛି; ଯେ କୌଣସି ବ୍ୟକ୍ତି ଯଦି ନିଜ ଆଖିରେ ଆଘାତ ଦିଏ, ତେବେ ସେ ଏହାର ସତ୍ୟତା ଉପଲବ୍ଧି କରିପାରିବ ।

ଯାହାର ଆମେ ବର୍ଣ୍ଣନା ଦେଲୁ, ତାହା ଟେବୁଲ୍ ନୁହେଁ, ଯଦିଓ ଆମର ବର୍ଣ୍ଣିତ ବିଷୟର ଏକ ଅଂଶ ହେଉଛି ଟେବୁଲର ଏକ ଅଂଶ । ଏହି ପରିସ୍ଥିତିରେ ଟେବୁଲ ସମ୍ପର୍କରେ ଆମେ ଯାହାକିଛି କହିବା, ତହିଁରେ **ଅର୍ଥକରଣ** ମଧ୍ୟ ନିହିତ ରହିବା ସୁନିଶ୍ଚିତ । ଆମେ ଏକ ସଙ୍କେତର ଅର୍ଥ କରୁ, ଅର୍ଥାତ୍ ଦତ୍ତ ବିଷୟର (୧) ଏକ ଅଂଶ, ତଦ୍‌ଭିନ୍ନ ଅନ୍ୟ କିଛିକୁ ବୁଝାଉଛି ବୋଲି ଅର୍ଥ କରୁ । ଏହି କ୍ଷେତ୍ରରେ ତାହା ହେଉଛି ଟେବୁଲ୍ ।

କିନ୍ତୁ ଏତିକିରେ କଥାଟି ଶେଷ ହେଲା ବୋଲି କୁହାଯାଇନପାରେ ଏବଂ ଏଠାରେ କିଛି ସଂପୂର୍ଣ୍ଣ ନୂତନ ବିଷୟ କହିବା ସମ୍ଭବପର ପରି ମନେହୁଏ । ଯାହା ଚକ୍ଷୁ ସମକ୍ଷରେ ନାହିଁ, ଅଥବା ଚକ୍ଷୁ ନିକଟରେ ଉଡ୍‌ଡୀୟମାନ କ୍ଷୁଦ୍ରାତିକ୍ଷୁଦ୍ର ମକ୍ଷିକା ଅକ୍ଷିପଟ ଉପରେ ଯେପରି ପ୍ରତିମା ପକାଏ, ସେହିପରି କୌଣସି ପ୍ରତିମା ପକାଏ ନାହିଁ, ତାହାକୁ ଆମେ ଦେଖୁ ବୋଲି ପ୍ରସ୍ତାବ ଦେବା ଏକ ଅଦ୍ଭୁତ କଥା ହେବ । ସୁତରାଂ ବିଶୁଦ୍ଧ ଭାଷା

(୧) ବହୁଦିନ ହେଲା ସ୍ୱୀକୃତ ହୋଇ ଆସୁଛି ଯେ ଦତ୍ତ ପଦରେ କିଛି ଗୋଟାଏ ଗଣ୍ଡଗୋଳ ରହିଯାଉଛି । ଅନେକ କ୍ଷେତ୍ରରେ ସମସ୍ତ ବସ୍ତୁ ଅପେକ୍ଷା 'ଦତ୍ତ'କୁ ଗ୍ରହଣ କରିନେବା ସର୍ବାଧିକ କଷ୍ଟକର ।

(i) ଯେଉଁ ବସ୍ତୁ ପ୍ରକୃତରେ ତାହାର ସମସ୍ତ ବୈଶିଷ୍ଟ୍ୟ ସହ **ଉପସ୍ଥିତ,** ସେହି ଅର୍ଥରେ ତାହା 'ଦତ୍ତ' ବୋଲି ବିବେଚିତ ହୋଇପାରେ । ଏଠାରେ ସେହି ବୈଶିଷ୍ଟ୍ୟ-ଗୁଡ଼ିକ କ'ଣ କ'ଣ ଆମେ ଜାଣୁ କି ନା ଏବଂ ବସ୍ତୁଟିକୁ ଆମେ ଠିକ୍ ଭାବେ ଚିହ୍ନିଛୁ କି ନା, ତାହା ବିଚାର୍ଯ୍ୟ ନୁହେଁ ।

(ii) ସଙ୍କୀର୍ଣ୍ଣତର ଅର୍ଥରେ, ଯେଉଁ ସତ୍ତ୍ୱଗୁଡ଼ିକ ସାକ୍ଷାତ୍‌ଭାବେ ବୁଝା ପଡ଼େ ଅର୍ଥାତ୍ ଯେଉଁଗୁଡ଼ିକ ପ୍ରକୃତରେ ଆମ ଇନ୍ଦ୍ରିୟମାନଙ୍କ ପରିବର୍ତ୍ତିନ ଅଟେ, କେବଳ ସେଗୁଡ଼ିକ ହିଁ ଦତ୍ତ । ସେଗୁଡ଼ିକୁ 'ଦତ୍ତନାଂ ଦତ୍ତ' ବୋଲି କୁହାଯାଏ । ସେଗୁଡ଼ିକର ଆରୋପିତ ଅଧିଷ୍ଠାନ ବା ଦୂରବର୍ତ୍ତୀ କାରଣ ଅର୍ଥାତ୍ ଟେବୁଲ, ପରମାଣୁ ଇତ୍ୟାଦି କିମ୍ବା ଏଗୁଡ଼ିକର ଅଂଶମାନ (i) ଅର୍ଥରେ ଉପସ୍ଥିତ ଥିବା ଦୃଷ୍ଟିରୁ ହିଁ କେବଳ ଦତ୍ତ ।

ସୁତରାଂ (i) ଅର୍ଥରେ ଦତ୍ତର 'ଏକ ଆଭାସ' ଥାଏ ବୋଲି କୁହାଯାଇପାରେ ଏବଂ ତାହା ହେଉଛି (ii) ଅର୍ଥରେ ଦତ୍ତ । ଏକ 'ସଂପୂର୍ଣ୍ଣ ତ୍ରିଭୁଜ କୋନ୍' ହେଉଛି (i) ଅର୍ଥରେ ଦତ୍ତ ଏବଂ 'ବୃତ୍ତାଭାସପରି କିଛି ଗୋଟାଏ' ହେଉଛି (ii) ଅର୍ଥରେ ଦତ୍ତ ।

ପ୍ରୟୋଗକାରୀଙ୍କୁ ସ୍ୱୀକାର କରିବାକୁ ହେବ ଯେ ଆମେ କଦାପି ବର୍ଣ୍ଣ ଦେଖୁନା ! କିନ୍ତୁ ତଥାପି ବର୍ଣ୍ଣ ଏବଂ ସେହିପରି ସାକ୍ଷାତ୍ ବୋଧଗମ୍ୟ ଅନ୍ତରଗୁଡ଼ିକ ହେଉଛି ପ୍ରାଥମିକ ସଙ୍କେତ, ଯାହା ଉପରେ ସମସ୍ତ ଅର୍ଥକରଣ, ସମସ୍ତ ଅନୁମିତ, ସମସ୍ତ ଜ୍ଞାନ ଆଧାରିତ । ଅର୍ଥକରଣ ଦ୍ୱାରା ଆମେ ଯାହାର ଜ୍ଞାନ ଲାଭକରୁ, ତାହା ପୁଣି କ'ଣ ? ତାହା ହେଉଛି ଯାହା ଉପସ୍ଥିତ, ଏକ ସାକଲ୍ପ । ସମସ୍ୟାନୁକ୍ରମେ ଆମେ ଜାଣୁ ଯେ ଉପରେ ସୂଚିତ ହୋଇଥିବା ଉପାଦାନ ଗୁଡ଼ିକ, ଅର୍ଥାତ୍ ଆଲୋକିତ ଅଞ୍ଚଳ, ବାୟୁ ଇତ୍ୟାଦି ଦ୍ୱାରା ତାହା ଗଠିତ । କିନ୍ତୁ ପରୀକ୍ଷଣ ପଦ୍ଧତିମାନଙ୍କ ପ୍ରୟୋଗ ଦ୍ୱାରା ଅର୍ଥକରଣରେ ଏକ ଦୀର୍ଘ ପ୍ରକ୍ରିୟା ପରେ ହିଁ କେବଳ, ଏଥିରେ ରହିଥିବା ଏହି ନାମକରଣ ଯୋଗ୍ୟ ଉପାଦାନ ଗୁଡ଼ିକର ପୃଥକ୍କରଣ ଆମ ପକ୍ଷରେ ସମ୍ଭବପର ହୁଏ । ତା'ପରେ ଆମେ କହୁ—"ଶିଶୁ ପ୍ରଥମରେ ଶିଖେ ଯେ ଇତ୍ୟାଦି ଇତ୍ୟାଦି ।"

ଏତେ ଗୁରୁତ୍ୱ ଆରୋପ କରାଯାଉଥିବା ଏହି ସାକ୍ଷାତ୍ ବୋଧଗମ୍ୟ ବିଷୟଟି ତାହାହେଲେ କ'ଣ ? ଏହାର ଯଥାର୍ଥ ଉତ୍ତର ଆମର ପ୍ରିୟ ବାଚନିକ ଅଭ୍ୟାସମାନଙ୍କରୁ କେତେକର ଏତେ ବିରୋଧୀ ଯେ ତାହାକୁ ସାଧାରଣତଃ ବିନା ଦ୍ୱିଧାରେ ଅଗ୍ରାହ୍ୟ କରି ଦିଆଯାଏ । ସାକ୍ଷାତ୍ଭାବେ ବୋଧଗମ୍ୟ ହେବା ହେଉଛି ସ୍ନାୟୁତନ୍ତ୍ରିକା ଗୁଡ଼ିକରେ କେତେକ ସଂଘଟନ ଜାତ କରିବା । ଏଗୁଡ଼ିକ ଘଟେ ବୋଲି କହିବା ବ୍ୟତୀତ ଆହୁରି ଅଗ୍ରସର ହେବାକୁ ଏପର୍ଯ୍ୟନ୍ତ ସ୍ନାୟୁ ବିଜ୍ଞାନବିଦ୍ମାନେ ସମର୍ଥ ହୋଇନାହାନ୍ତି । ସୁତରାଂ ଯାହା ସାକ୍ଷାତ୍ଭାବେ ବୋଧଗମ୍ୟ ହୁଏ, ତାହା ହେଉଛି ଜ୍ଞାନେନ୍ଦ୍ରିୟର ଏକ ପରିବର୍ତ୍ତନ ଏବଂ ତାହାର ବୋଧଗମ୍ୟ ହେବା ହେଉଛି ସ୍ନାୟୁ ସଂସ୍ଥାର ଆହୁରି ଏକ ପରିବର୍ତ୍ତନ । ଭବିଷ୍ୟତରେ (୧) ଏ ବିଷୟରେ ଆହୁରି ଅଧିକ ଜାଣିବାକୁ ଆମେ ଆଶା ପୋଷଣ କରିପାରୁ ।

---

(୧) ଏହାର ଏକ ସିଧା ସଳଖ ଆପତ୍ତିରୂପେ ପ୍ରାୟଶଃ ଯୁକ୍ତି କରାଯାଏ ଯେ ଚକ୍ଷୁପଟଳର ପରିବର୍ତ୍ତନ ଠାରୁ ଏକ 'ଇନ୍ଦ୍ରିୟଦତ୍ତ' ଅତ୍ୟନ୍ତ ଭିନ୍ନ ଧରଣର ପରି ମନେ ହୁଏ । କିନ୍ତୁ ଏକ ଦ୍ରୁତଗାମୀ ରେଳଗାଡ଼ିରେ ଗୋଟିଏ ଷ୍ଟେସନ ଅତିକ୍ରମ କରିବା ମଧ୍ୟ ସେହିପରି ଷ୍ଟେସନମାଷ୍ଟରର ଦେଖିବା ବିଷୟଠାରୁ ଅତ୍ୟନ୍ତ ଭିନ୍ନ ପ୍ରକାର । ଏଠାରେ କେବଳ ଗୋଟିଏ ଘଟଣା ରହିଛି; ତାହା ହେଉଛି ରେଳଗାଡ଼ିର ଷ୍ଟେସନଟିକୁ ଅତିକ୍ରମ କରିବା । କିନ୍ତୁ ସଙ୍କେତଗୁଡ଼ିକ ଅତ୍ୟନ୍ତ ଭିନ୍ନ ପ୍ରକାର । ଠିକ୍ ସେହିପରି 'ଇନ୍ଦ୍ରିୟଦତ୍ତ' କ୍ଷେତ୍ରରେ ମଧ୍ୟ ହୋଇଥାଏ । ନିର୍ଦ୍ଦେଶ୍ୟ ସେହି ଏକ ଜିନିଷ; କିନ୍ତୁ ତନ୍ନିହିତ **ନିର୍ଦ୍ଦେଶଦ୍ୱୟ** ମଧ୍ୟରେ ଆମେ ସର୍ବାଧିକ ପାର୍ଥକ୍ୟ ପାଇବାକୁ ଆଶା କରିବା କଥା; କାରଣ ଏଥିରୁ ଗୋଟିଏ, ଅର୍ଥାତ୍ ସାକ୍ଷାତ୍ଭାବେ ବୋଧଗମ୍ୟ ହେବା ହେଉଛି ଯଥାସମ୍ଭବ

କିନ୍ତୁ ଏହା କିଛିକ ଜଡ଼ବାଦ ନୁହେଁ କି ? ଉପଯୁକ୍ତ ଭାବେ ବିଚାର କରାଗଲେ, ଏହା ଜଡ଼ବାଦ ହିଁ ହେବ । କିନ୍ତୁ ଯାହା କୁହାଯାଇଛି, କେବଳ ତାକୁ ଯଦି ସ୍ୱୀକାର କରାଯାଏ, ଏହା ହେଉଛି 'ଜାଣିବା'ର ଉପସ୍ଥାପନ ଯୋଗ୍ୟ ସର୍ବାଧିକ ସମ୍ଭାବନାମୂଳକ ସଙ୍ଗତ ବିବରଣୀର ଏକ ଅତ୍ୟନ୍ତ ପ୍ରସମ୍ଭବ ସୋପାନ ବ୍ୟତୀତ ଆଉକିଛି ନୁହେଁ । ଏହି ବିଷୟରେ ଏପର୍ଯ୍ୟନ୍ତ ଯେଉଁ ସମସ୍ତ ବିବରଣୀର ପ୍ରସ୍ତାବ ଦିଆ ଯାଇଛି, ତାହାର କୌଣସି ନା କୌଣସି ସ୍ତରରେ ଅନ୍ତତଃ ଗୋଟିଏ ଅପରିଜ୍ଞେୟ ପ୍ରତ୍ୟୟର ପ୍ରବେଶ କରାଇବାକୁ ପଡ଼ୁଛି; ଅନ୍ତତଃ ଗୋଟିଏ ଅତିରିକ୍ତ ସତ୍ତାକୁ ସ୍ୱୀକାର କରିନେବାକୁ ପଡ଼ୁଛି, ଯାହାର ରହସ୍ୟ ଶେଷ ପର୍ଯ୍ୟନ୍ତ ଭେଦକରିବା ବା ତହିଁରୁ ନିସ୍ତାର ପାଇବା ସମ୍ଭବପର ହୋଇ-ନାହିଁ । ତାହା ହେଉଛି 'ସାକ୍ଷାତ୍‌ଭାବେ ଜାଣିବା'ର କୌଣସି ଏକ ସମ୍ବନ୍ଧ । ଏହା ସହିତ ଆହୁରି ଅନେକ ଅବ୍ୟାଖ୍ୟେୟ ବିଷୟକୁ ମଧ୍ୟ ଗ୍ରହଣ କରି ନେବାକୁ ହୁଏ । କିନ୍ତୁ ଇତ୍ୟ-ବସରରେ ସାଧାରଣତଃ ଧରି ନିଆଯାଏ ଯେ ଆମେ ଅନେକ କିଛି ଜାଣୁ । ଅନେକଗୁଡ଼ିଏ ବିଜ୍ଞାନ ରହିଛି ଏବଂ ଏଠାରେ ଜିଦ୍ ଧରି କୁହାଯାଏ ଯେ ଜାଣିବା ବିଷୟର ହିଁ ଏକ ବିବରଣୀ ଦେବା ନିମନ୍ତେ ଉପାଦାନ ଆମର ହସ୍ତଗତ ହୋଇ ସାରିଛି; ଅବଶ୍ୟ ତତ୍‌ପୂର୍ବରୁ କେତେକ ପ୍ରତୀକାତ୍ମକ ଝଂଜଟ ତୁଟାଇବାକୁ ହେବ କିମ୍ବା ଉପେକ୍ଷା କରି ଯିବାକୁ ହେବ ବୋଲି କୁହାଯାଏ ।

ଏଗୁଡ଼ିକ ମଧ୍ୟରେ ମୁଖ୍ୟ ବିଷୟଟି ଉକ୍ତିର ସ୍ୱଭାବ ସମ୍ବନ୍ଧୀୟ ଏକ ଭ୍ରାନ୍ତ ଧାରଣା ଉପରେ ପ୍ରତିଷ୍ଠିତ । ଏକ ଉକ୍ତି ଦେବା ହେଉଛି ଏକ ନିର୍ଦ୍ଦେଶକୁ ପ୍ରତୀକାନ୍ୱିତ କରିବା । ନିର୍ଦ୍ଦେଶ କ'ଣ, ତାହା ଆମେ ପୂର୍ବବର୍ତ୍ତୀ ପରିଚ୍ଛେଦରେ ଦେଖି ସାରିଛୁ । ଯେତେ ଚେଷ୍ଟାକଲେ ସୁଦ୍ଧା ଜ୍ଞାନମାର୍ଗରେ ଆମେ ନିର୍ଦ୍ଦେଶର ଆଗକୁ ବଢ଼ିଯାଇ ପାରିବା ନାହିଁ । ସତ୍ୟ ନିର୍ଦ୍ଦେଶ ହେଉଛି ଏକ ନିର୍ଦ୍ଦେଶ୍ୟ ସହିତରେ ନିର୍ଦ୍ଦେଶ୍ୟଗୁଡ଼ିକ ଯେପରି ଭାବେ ପରସ୍ପର ଅନ୍ୱିତ, ତଦ୍‌ରୂପଭାବେ ନିର୍ଦ୍ଦେଶ କରିବା । ମିଥ୍ୟା ନିର୍ଦ୍ଦେଶ ହେଉଛି ସେଗୁଡ଼ିକ ଯେପରି ଭାବେ ଅନ୍ୱିତ, ତାହାଠାରୁ ଭିନ୍ନ ପ୍ରକାରରେ ବ୍ୟବସ୍ଥିତ ବୋଲି ନିର୍ଦ୍ଦେଶ କରିବା । ଆମେ କେବଳ ଏତିକି ହିଁ କରିପାରୁ । କୌଣସି ରକମର ଛଳନାଦ୍ୱାରା

---

ସରଳ, ଏହା ଏକ ପ୍ରଥମ ସ୍ତରର ନିର୍ଦ୍ଦେଶ; କିନ୍ତୁ ଅପରଟି ଅର୍ଥାତ୍ ଇନ୍ଦ୍ରିୟ ପରିବର୍ତ୍ତନ-ମୂଳକ ନିର୍ଦ୍ଦେଶ ହେଉଛି ଅତ୍ୟନ୍ତ ଜଟିଳ, ଏହା ଏକ ଦୀର୍ଘ ଅର୍ଥକରଣ ଶୃଙ୍ଖଳ ପରେ ହିଁ କେବଳ ମିଳିଥାଏ । ଏହା ଏକ ଭିନ୍ନ ସ୍ତରର ନିର୍ଦ୍ଦେଶ । ନିର୍ଦ୍ଦେଶ ତଥା ସଙ୍କେତ ମାନଙ୍କର ସ୍ତର ବା ପର୍ଯ୍ୟାୟ ସମ୍ବନ୍ଧୀୟ ଏହି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ସମସ୍ୟାର ଆହୁରି ଅଧିକ ଆଲୋଚନା ପରବର୍ତ୍ତୀ ପରିଚ୍ଛେଦରେ କରାଯାଇଛି । (ପଦଟୀକା-ପରିଶିଷ୍ଟ ସୂଚିତ ପୃଷ୍ଠା)

ନିର୍ଦ୍ଦେଶ୍ୟ **କ'ଣ**, ତାହା ଆମେ ଅସ୍ୱୀକାର କରିପାରୁ ନା । ତାହା **କିପରି** କାର୍ଯ୍ୟକାରୀ ହୁଏ, କେବଳ ତାହାର **ହିଁ** ଆମେ ଆବିଷ୍କାର କରିପାରୁ । ଏହା ହିଁ ହେଉଛି ପୁରାତନ ଓ ଆମର ସୁପରିଚିତ ନୀତି । କିନ୍ତୁ ତତ୍ତ୍ୱବିଜ୍ଞାନୀ ଏଥିରେ ହସ୍ତକ୍ଷେପ କଲା ମାତ୍ରକେ ଏହି ନୀତିକୁ ପୁନଃ ଘୋଷଣା କରିବାର ଆବଶ୍ୟକତା ରହୁଛି । ଏକ ଅସମ୍ଭବ ପ୍ରଶ୍ନର ଉତ୍ତର ଧରି ଏହି ତତ୍ତ୍ୱବିଜ୍ଞାନୀ **ଜଡ଼ବାଦୀ**, ଆଧ୍ୟାତ୍ମବାଦୀ, ଦ୍ୱୈତବାଦୀ, ବାସ୍ତବବାଦୀ ବା ଅନ୍ୟ ଯେ କୌଣସି ବାଦୀ ରୂପେ ଆସିଥାଉନା କାହିଁକି, ତହିଁରେ କିଛି ଯାଏ ଆସେ ନା । ଦୁର୍ଭାଗ୍ୟକୁ ଭାଷାର କ୍ରିୟାବିଧି ସମ୍ବନ୍ଧରେ ଏପର୍ଯ୍ୟନ୍ତ ରହିଥିବା ଆମର ଅଜ୍ଞାନତା ହେତୁରୁ ଆପାତ ଅଭେଦ୍ୟ ପ୍ରତିବନ୍ଧକ ସୃଷ୍ଟି କରିବାକୁ ତତ୍ତ୍ୱବିଜ୍ଞାନୀଙ୍କୁ ଉତ୍ତମ ସୁଯୋଗ ମିଳିଯାଏ । ଏହି ପ୍ରତିବନ୍ଧକକୁ ଏଡ଼ାଇ ଯିବାର ଏକମାତ୍ର ଉପାୟ ହେଉଛି ଆମେ କ୍ରମପରିଭାବେ ଜ୍ଞାନ ଆହରଣ କରି, ତତ୍‌ସମ୍ବନ୍ଧୀୟ ଜ୍ଞାତ ତଥ୍ୟଗୁଡ଼ିକରୁ ହିଁ କର୍ମାରମ୍ଭ କରିବା । ତତ୍ପରେ, ଅର୍ଥକରଣ ସମ୍ବନ୍ଧରେ ଯେପରି ଏକ ବିବରଣୀର ରୂପରେଖ ଏଠାରେ ଦିଆଯାଇଛି, ସେହିପରି ଏକ ଧାରଣା ସମସ୍ତ ଜ୍ଞାତ ବିଷୟକୁ ଶୃଙ୍ଖଳାବଦ୍ଧ କରିବାର ପଥ ଉନ୍ମୁକ୍ତ କରିଦେବ । କେବଳ ଏତିକି ନୁହେଁ, ଭବିଷ୍ୟତରେ ଯାହା ଜ୍ଞାନର ପରିସରଭୁକ୍ତ ହେବ, ତାହା ମଧ୍ୟ ଏତଦ୍ୱାରା ଶୃଙ୍ଖଳାବଦ୍ଧ ହୋଇ ପାରିବ । (୧)

ପ୍ରତ୍ୟକ୍ଷର ଏକ ସୁସଙ୍ଗତ ବିବରଣୀର ଯେଉଁ ସ୍ଥୂଳ ଧାରଣା ଆମେ ଦେଇଥିଲୁ, ତାହାର ପୁନରାରମ୍ଭ କରାଯାଉ । ଯାହା କୁହାଯାଇଛି ତହିଁରୁ ଅନୁମେୟ ଯେ ସାକ୍ଷାତ୍‌-ଭାବେ ବୋଧଗମ୍ୟ ହେଉଥିବା ଅକ୍ଷିପଟଳୀୟ ପରିବର୍ତ୍ତନ, ଯଥା—ବର୍ଣ୍ଣାବଳୀ ହେଉଛି, 'ବସ୍ତୁ' ଓ 'ଘଟଣା' (ଅଥବା ନିର୍ଦ୍ଦେଶ୍ୟଗୁଡ଼ିକୁ ଯାହା ବୋଲି ପ୍ରତୀକାନ୍ୱିତ କରିବାକୁ ଆମେ ଏକମତ ହେବା, ତାହା)ର **ପ୍ରାଥମିକ** ସଙ୍କେତ । ବସ୍ତୁଗୁଡ଼ିକର ବୈଶିଷ୍ଟ୍ୟ, ଯାହା ଅର୍ଥକରଣ ଦ୍ୱାରା ଆମେ ଆବିଷ୍କାର କରୁ, ଯଥା—କୋନ୍ ବା ଟେବୁଲ୍‌ର ଆକାର

---

(୧) ପ୍ରଥମଥର ପାଇଁ ଯେଉଁମାନେ ଏ ପ୍ରକାର ଏକ ମତ ଗ୍ରହଣ କରୁଥାନ୍ତି, ସେମାନଙ୍କ ପକ୍ଷରେ ଏକପ୍ରକାର ଜଡ଼ତା ବା ନୈରାଶ୍ୟବୋଧ ଅସାଧାରଣ ନୁହେଁ । ନିର୍ଦ୍ଦେଶରେ ଜ୍ଞାନକୁ ସୀମିତ ରଖିବାପାଇଁ ଯେଉଁ ସଂସ୍କାରତ୍ୟାଗ ନିହିତ ପରି ମନେହୁଏ, ତାହାର ପରିମାଣ ଭାଷାର ଅନ୍ୟାନ୍ୟ 'ଅଣପ୍ରତୀକାତ୍ମକ' ବ୍ୟବହାର ପ୍ରତି ଅବହିତ ରହିଲେ ନ୍ୟୂନ ହୋଇଯାଏ । ଏହି ବ୍ୟବହାର ଗୁଡ଼ିକର ଆଲୋଚନା ଦଶମ ପରିଚ୍ଛେଦରେ କରାଯାଇଛି । ଅନେକ ସମୟରେ କୁହାଯାଇଥାଏ ଯେ ତତ୍ତ୍ୱବିଜ୍ଞାନ ହେଉଛି ବିଜ୍ଞାନ ଏବଂ କବିତାର ଏକ ବର୍ଣ୍ଣସଙ୍କର ତନୁଜ । ବର୍ଣ୍ଣସଙ୍କରର ଅନେକ ବୈଶିଷ୍ଟ୍ୟ ଏଥିରେ ପରିଲକ୍ଷିତ, ଯଥା—ବନ୍ଧ୍ୟତ୍ୱ । ପ୍ରତୀକାନ୍ୱିତକରଣରେ ଗବେଷଣାର ଏକ ସର୍ବପ୍ରଧାନ ଫଳ ହେଉଛି ଏହି ଅବୈଧ ମିଳନର ଅଂଶୀଦାରଙ୍କ ଯଥାର୍ଥ ପୃଥକ୍‌କରଣ ।

ହେଉଛି ଯଥାକ୍ରମେ ଦ୍ୱିତୀୟ ବା ତୃତୀୟ ପ୍ରକାର ସଙ୍କେତ । ପକ୍ଷାନ୍ତରେ, ପ୍ରାଥମିକ ସଙ୍କେତର ଆକାର, ଯଥା—ଅକ୍ଷିପଟଳୀୟ ପରିବର୍ତ୍ତନମାନ ହେଉଛି ପ୍ରଥମ ପ୍ରକାର ସଙ୍କେତ ।

ଗୋଟିଏ ନୂଆ ନିକେଲ୍ ଫ୍ଲୋରିନ୍ ମୁଦ୍ରା ହାତ ପାପୁଲିରେ ରଖି ବାହୁକୁ ଭୂମି ସହିତ ସମାନ୍ତରଭାବେ ଆଗକୁ ବଢ଼ାଅ; ଲକ୍ଷ୍ୟକର ଯେ ଜଣେ ସତ୍ୟବାଦୀ ବ୍ୟକ୍ତି ତାହାର ଆକାର ଏକ ବୃତ୍ତାଭାସ ବୋଲି ବର୍ଣ୍ଣନା କରିବ । ଏବେ ତାହାକୁ ଠିକ୍ ଆଖି ତଳକୁ ରଖି ଅନାଅ; ମାନିବାକୁ ହେବ ଯେ ତାହା ବୃତ୍ତାକାର । ଫ୍ଲୋରିନ୍‌ଟିର ଆକାର ବୃତ୍ତ ନା ବୃତ୍ତାଭାସ ? ଏ ଏକ ସମାଧାନ ରହିତ ସମସ୍ୟା !

ଯଦି ଆମେ କହୁ ଯେ ଉଭୟ କ୍ଷେତ୍ରରେ ଆମର **ଦତ୍ତ** ହେଉଛି ଫ୍ଲୋରିନ୍‌ର **ପୃଷ୍ଠଦେଶ,** ତେବେ ମନେହୁଏ, ତାହା ଉଭୟ ବୃତ୍ତାକାର ଓ ବୃତ୍ତାଭାସାକାର । ଏହି କଥାଟି ହାସ୍ୟାସ୍ପଦ, କାରଣ ଆମେ 'ଜାଣୁ' ଏବଂ ପ୍ରତ୍ୟେକ ବସ୍ତୁବାଦୀଙ୍କ ଦୃଢ଼ ମତ ପୋଷଣ କରନ୍ତି (୧) ଯେ ତାହା ପରିମାପନ ଯୋଗ୍ୟ ରୂପେ ପରିବର୍ତ୍ତିତ ହୋଇନାହିଁ ଏବଂ ତାହା ପ୍ରକୃତରେ ଗୋଲାକାର । ତେଣୁ ଏଠାରେ ଦୁଇଟି ବିକଳ୍ପ ପନ୍ଥା ରହିଛି । ଏକ ପକ୍ଷରେ ଆମେ ତତ୍ତ୍ୱବିଜ୍ଞାନୀଙ୍କ ସହ ଏକମତ ହୋଇ କହିବା ଯେ ବିଶ୍ୱ ଅତୀବ ବିରୋଧାଭାସମୂଳକ, ଅଥବା ନମ୍ର ପ୍ରାବନ୍ଧିକଙ୍କ ସହ ଏକମତ ହୋଇ କହିବା ଯେ ତାହା ବଡ଼ ବିଷମ ଅଥବା ବିଶପଙ୍କ ସହ ଏକମତ ହୋଇ କହିବା ଯେ ତାହା ଅତ୍ୟନ୍ତ ବିମ୍ମୟଜନକ । ଅନ୍ୟ ପକ୍ଷରେ ଆମେ କହିବା ଯେ ଉଭୟ ଦୃଷ୍ଟିକୋଣରୁ ଏଠାରେ ଯାହା ଦତ୍ତ, ତାହା ଫ୍ଲୋରିନ୍‌ର ପୃଷ୍ଠଦେଶ ନୁହେଁ ।

---

(୧) Rougier କହିଛନ୍ତି (*Paralogismes* ପୃ ୪୦୮) ଯେ ମୌଳିକ ଓ ଗୌଣଗୁଣ ସମ୍ବନ୍ଧୀୟ ମତବାଦ ବର୍କଲେଙ୍କ ଯୁକ୍ତି ଦୃଷ୍ଟିରୁ ପରିତ୍ୟକ୍ତ ହୋଇଛି ପରି ମନେ ହେଉଥିଲା; କିନ୍ତୁ ପୁଣି ଥରେ ତାହା ସମ୍ୟକ୍ ଅବଧାନର ବିଷୟ ହୋଇଛି । "ଜ୍ୟାମିତିକ ଆକାର ଗୁଡ଼ିକର ସମ୍ବେଦନମାନ ବସ୍ତୁନିଷ୍ଠ ନୁହେଁ ବୋଲି ଚିନ୍ତାକରିବା ପାଇଁ ଆମର କୌଣସି ଆନ୍ତରିକ ଉଦ୍ଦେଶ୍ୟ ନଥାଏ ।" କିନ୍ତୁ ତଥାପି ବିଜ୍ଞସୃଷ୍ଟି ବିରୋଧାଭାସର "ସ୍ଥିତି କେବଳ ସେହିମାନଙ୍କ ପକ୍ଷରେ ଥାଏ, ଯେଉଁମାନେ ଆଲୋକର ଅପବର୍ତ୍ତନ ସମ୍ବନ୍ଧୀୟ ନିୟମଗୁଡ଼ିକ ବିଷୟରେ ଅନଭିଜ୍ଞ"—ଏହି ମନ୍ତବ୍ୟ ଦେଇ ଆଲୋଚ୍ୟ ବିଷୟଟିକୁ ଉପେକ୍ଷା କରିଯିବା ଏଠାରେ ଯଥେଷ୍ଟ ବୋଲି ବିବେଚିତ ହେବନାହିଁ । ଏକ ଯଥୋପଯୁକ୍ତ ସଙ୍କେତ ସିଦ୍ଧାନ୍ତ ବିନା ସତ୍ତ୍ୱମୀମାଂସକଙ୍କ ଉଦ୍ଭାବନ କ୍ଷମତାକୁ ପ୍ରତିହତ କରିବା ନିମନ୍ତେ ଅପବର୍ତ୍ତନ ନିୟମ ଗୁଡ଼ିକ ସମର୍ଥ ନୁହନ୍ତି ।

ଫ୍ଲୋରନ୍ ଦ୍ୱାରା ଆମ କାରବାରକୁ ଯେ ଲକ୍ଷ୍ୟ କରୁଥିବା, ଏଠାରେ ତାହାର ସାହାଯ୍ୟ ନେଲେ, ସେ କହିବ ଯେ ପ୍ରତ୍ୟେକ କ୍ଷେତ୍ରରେ ଯାହା ଉପସ୍ଥିତ ଥିଲା, ତାହା ହେଉଛି ଏକ ସାକଲ୍ୟ, ଯାହାର ଅଂଶ ସ୍ୱରୂପ କୋନ୍‌ମାନ (୧) ରହିଥିଲା । ଏହି କୋନ୍ ଗୁଡ଼ିକର ଶୀର୍ଷବିନ୍ଦୁ ଚକ୍ଷୁରେ ଅବସ୍ଥାପିତ ଏବଂ ସେଗୁଡିକର ଭୂମି ହେଉଛି ଆମର ଦୃଷ୍ଟିସୀମା, ଅଥବା ଯେଉଁ କ୍ଷେତ୍ରରେ ଫ୍ଲୋରନ୍‌ପର ବସ୍ତୁଗୁଡ଼ିକ ରହିଛି, ସେଗୁଡିକର ପୃଷ୍ଠଦେଶ । ଫ୍ଲୋରନର ଗୋଲକାର ପୃଷ୍ଠଦେଶକୁ ଭୂମି ସ୍ୱରୂପ ନେଇ ଏଠାରେ ଦୁଇଟି କୋନ୍ ରହିଛି । ପ୍ରଥମ କ୍ଷେତ୍ରରେ କୋନ୍‌ଟି ପ୍ରସ୍ଥଚ୍ଛେଦରେ ବୃତ୍ତାଭାସ-ଆକୃତିକ ଏବଂ ଫ୍ଲୋରନ୍‌ର ପୃଷ୍ଠଦେଶ ହେଉଛି ତାହାର ଏକ ବକ୍ରଚ୍ଛେଦ । ଦ୍ୱିତୀୟ କ୍ଷେତ୍ରରେ କୋନ୍‌ଟି ହେଉଛି ଗୋଲକାର ଏବଂ ତାହାର ପ୍ରସ୍ଥଚ୍ଛେଦ ଅର୍ଥାତ୍ ଫ୍ଲୋରନ୍‌ର ପୃଷ୍ଠଦେଶ ମଧ୍ୟ ଗୋଲକାର । ଏଠାରେ ଯାହାକୁ ଫ୍ଲୋରନ୍‌ର ପ୍ରତୀୟମାନ ଆକାର ବୋଲି ଗ୍ରହଣ କରା-ଯାଇଛି, ତାହାକୁ କୋନ୍‌ର ପ୍ରସ୍ଥଚ୍ଛେଦ ବୋଲି କୁହାଯାଇଛି ଏବଂ ଏହା ସତ୍ୟ ହେବାର ସମ୍ଭବପରତା ସର୍ବାଧିକ । ଏହା ହିଁ ହେଉଛି ସେହି ସଙ୍କେତ, ଯାହାକୁ ଆମେ ପୃଷ୍ଠଦେଶ ବୋଲି ଅର୍ଥ କରୁ ଏବଂ କୌଣସି କ୍ଷେତ୍ରରେ ସେହି ପୃଷ୍ଠଦେଶ, ଅର୍ଥାତ୍ ଏକ 'ଦତ୍ତନାଂ ଦତ୍ତ' ସାକ୍ଷାତ୍‌ଭାବେ ଦତ୍ତ ନୁହେଁ । ସଙ୍କେତ ସିଦ୍ଧାନ୍ତର ଏହି ସଫଳ ପ୍ରୟୋଗ ଆମକୁ ବିରୋଧାଭାସ, ବୈଷମ୍ୟ ଓ ବିଯୁକ୍ତିରୁ ମୁକ୍ତ କରିଦିଏ; ବସ୍ତୁବିଜ୍ଞାନର ବକ୍ତବ୍ୟରେ ଆମର ଆସ୍ଥା ପୁନଃ ପ୍ରତିଷ୍ଠିତ ହୁଏ ଏବଂ ଆମର କାର୍ଯ୍ୟ ଅବ୍ୟାହତ ରଖିବାକୁ ଅର୍ଥାତ୍ ବସ୍ତୁ ସ୍ୱଭାବର ପ୍ରତୀକ୍ଷଣ ସମ୍ବନ୍ଧରେ ଏକ ଯଥାର୍ଥ ବିବରଣୀ ଦେବାକୁ ଆମକୁ ସମର୍ଥ କରେ ।

ଯେଉଁ ପଦ୍ଧତିରେ ଏହି ପୁରାତନ ମିଥ୍ୟା ରଚନା ନିରାକୃତ ହୁଏ, ତାହାକୁ ଅନ୍ୟ ସମସ୍ତ 'ମୌଳିକ ସମସ୍ୟା' କ୍ଷେତ୍ରରେ ମଧ୍ୟ ଅନୁରୂପ ସଫଳତାର ସହିତ ପ୍ରୟୋଗ କରାଯାଇପାରେ ! ଉଦ୍ଭାବନକ୍ଷମ ମନ ଆବିଷ୍କାର କରୁଥିବା ସ୍ୱବିରୋଧିତାର ପ୍ରତ୍ୟେକ କ୍ଷେତ୍ରରେ ("ମୁଁ ଦେଖୁଥିବା ଏହି ଏକ ଫ୍ଲୋରନ୍ ହେଉଛି ଉଭୟ ବୃତ୍ତାକାର ଓ ବୃତ୍ତାଭାସାକାର" ଅଥବା "ମୁଁ ପାଣିରେ ଦେଖୁଥିବା ଏହି ଏକ ଯଷ୍ଟି ଉଭୟ ସରଳ ଓ ବକ୍ର") ମନ୍ଦ ପ୍ରତୀକାନୁବାଦକରଣ ସୂଚିତ । ସୁତରାଂ ଅସୁବିଧା ସୃଷ୍ଟି କରୁଥିବା ଦ୍ୱ୍ୟର୍ଥକ

---

(୧) ଭାଷାଗତ ଶୂନ୍ୟତାର ପୂରଣ ନିମନ୍ତେ ଏବଂ ଏକ ରୂପକ ଅଭିବ୍ୟକ୍ତିରୂପେ ଏଠାରେ 'କୋନ୍' ଶବ୍ଦର ବ୍ୟବହାର କରାଯାଇଛି । 'ପୃଷ୍ଠଦେଶ ଓ ଚକ୍ଷୁ ପଟଳର ଅନ୍ତର୍ବର୍ତ୍ତୀ ଅଞ୍ଚଳ' ନିମନ୍ତେ ଏହା ଏକ ସଂକ୍ଷିପ୍ତ ଅଭିବ୍ୟକ୍ତି । ଅଧିକାଂଶ କ୍ଷେତ୍ରରେ ଏହାର ଆକାର କୋନ୍ ବା ପିରାମିଡ଼୍ ରୂପ ।

ସଂକେତ-ପରିସ୍ଥିତି ଆବିଷ୍କୃତ ହେବା ପର୍ଯ୍ୟନ୍ତ ସଦୋଷ ପ୍ରତିକଟିର (୧) ଆମେ ସମ୍ପ୍ରସାରଣ କରିବା ଆବଶ୍ୟକ । ତା'ପରେ ଦ୍ୱ୍ୟର୍ଥକତାକୁ ଦୃଷ୍ଟି ସମକ୍ଷରେ ରଖି ଆମ ପ୍ରତୀକ ପଦ୍ଧତିର ଆମେ ଉନ୍ନତ ବିଧାନ କରିପାରିବା । ଏତଦ୍ଦ୍ୱାରା ଆମେ ପୂର୍ବରୁ ଯେଉଁ ନିରର୍ଥକତା ଆଡ଼କୁ ଗତି କରୁଥିଲୁ, ତାହାକୁ ଏଡ଼ାଇ ଦେଇହେବ । ଉଦାହରଣ ସ୍ୱରୂପ, ଫ୍ଲୋରିନ୍ କ୍ଷେତ୍ରରେ ଆମେ କହୁ, "ଏହି କୋନ୍‌ର ଭୂମି, ଅର୍ଥାତ୍ ମୋର ସଂକେତ ହେଉଛି ବକ୍ର ଓ ବୃତ୍ତାକାର ଏବଂ ତାହା ମୁଁ ଦେଖୁଥିବା ଫ୍ଲୋରିନ୍‌ର ପୃଷ୍ଠଦେଶ; କିନ୍ତୁ ଏହି କୋନ୍‌ର ଏକ ସ୍ୱାଭାବିକ ପ୍ରସ୍ଥଚ୍ଛେଦ ହେଉଛି ବୃତ୍ତାଭାସାକାର । ସମଭାବରେ କୁହାଯାଇପାରେ ଯେ ମୁଁ ଫ୍ଲୋରିନର ପୃଷ୍ଠଦେଶକୁ ଦେଖୁଛି କିମ୍ବା ମୁଁ କୋନ୍‌ର କୌଣସି ଏକ ପ୍ରସ୍ଥଚ୍ଛେଦକୁ ଦେଖୁଛି । କିନ୍ତୁ ଏଥିରୁ କୌଣସିଟି ସାକ୍ଷାତ୍‌ଭାବେ ଦତ୍ତ ନୁହେଁ । ଯେଉଁ ସମ୍ପୂର୍ଣ୍ଣ କୋନ୍‌ର ଏଗୁଡ଼ିକ ଅଂଶ, ତାହା ମଧ୍ୟ ଏକ ବ୍ୟାପକତର କୋନ୍‌ରୁ ଗୃହୀତ । ଫ୍ଲୋରିନ୍-କୋନ୍ ସମେତ ମୁଁ ଦେଖୁଥିବା ସମସ୍ତ ବସ୍ତୁର କୋନ୍ ଏହି ବ୍ୟାପକତର କୋନ୍‌ର ଅନ୍ତର୍ଗତ । ଏହା ହେଉଛି ସମଗ୍ର ଦତ୍ତ ଅର୍ଥାତ୍ ମୋର ଦୃଷ୍ଟିକ୍ଷେତ୍ର ।

ସମଗ୍ର କୋନ୍ ଅର୍ଥାତ୍ ଦୃଷ୍ଟି କ୍ଷେତ୍ରରୁ ଏହି ଆଂଶିକ କୋନ୍‌ମାନଙ୍କ ନିର୍ବାଚନ ସ୍ୱାଭାବିକ ପରିସ୍ଥିତିରେ ନିର୍ଭୁଲଭାବେ କରାଯାଇଥାଏ । 'ଦ୍ୱୈତପ୍ରତିମା' ଘଟଣା ଘଟୁ-ନଥିଲେ ଏଠାରେ ମଧ୍ୟ ଯେ ଅର୍ଥକରଣ କାର୍ଯ୍ୟକାରୀ ହେଉଛି, ଏକଥା ବସ୍ତୁତଃ କଦାପି ସନ୍ଦେହ କରାଯାଉନଥାନ୍ତା । ପ୍ରତ୍ୟେକ ଚକ୍ଷୁ ନିମନ୍ତେ ଏକ ଏକ ଭିନ୍ନ ସମଗ୍ର କୋନ୍ ରହିଥାଏ; କିନ୍ତୁ ଏ ଦୁଇଟିର ଅନ୍ତର୍ଗତ କେତେକ ଆଂଶିକ କୋନ୍ ସେହି ଏକ ଭୂମିଯୁକ୍ତ ବୋଲି ଚିହ୍ନିବାକୁ ଅମେ ସ୍ୱାଭାବିକ ଅବସ୍ଥାରେ ଶିକ୍ଷା କରୁ । ଯେଉଁ ଚକ୍ଷୁପଟଳୀସ୍ଥ ସାଦୃଶ୍ୟ ମାଧ୍ୟମରେ ଏହି କ୍ରିୟା ସମ୍ପାଦିତ ହୁଏ, ତାହା ଯଦି ବ୍ୟାହତ ହୁଏ (ଉଦାହରଣ ସ୍ୱରୂପ, ଆମେ ଯେତେବେଳେ ଚକ୍ଷୁଗୋଳକକୁ ସାମାନ୍ୟ ଠେଲିଦେଉ କିମ୍ବା ପାଖର ଗୋଟିଏ ବସ୍ତୁର ପାର୍ଶ୍ୱ ଦେଇ ଦୂରର ଏକ ବସ୍ତୁକୁ ଦେଖୁ, ଆମେ ଭୂମି ସମ୍ବନ୍ଧୀୟ ଏକତ୍ୱ ଠିକ୍ ଭାବେ ରକ୍ଷା କରିବାକୁ ଅସମର୍ଥ ହେଉ ଏବଂ କହୁ ଯେ ଆମେ ଦୁଇଟି ଫ୍ଲୋରିନ ଦେଖୁଛୁ (ଦ୍ୱୈତ ପ୍ରତିମା) । ଏଠାରେ ପୁଣି ଆମର ଭାଷା ଆମକୁ ପ୍ରତାରିତ କରେ । ଯାହା ଏଠାରେ ଉପସ୍ଥିତ, ତାହା ଦ୍ୱିନେତ୍ର ଦୃଷ୍ଟିରେ ସର୍ବଦା ଥାଏ; ତାହା ହେଉଛି

(୧) ଫ୍ଲୋରିନ୍ କ୍ଷେତ୍ରରେ ଏହା ହେଉଛି "ମୁଁ ଦେଖୁଥିବା ଏହି କୋନ୍‌ଟି ଯାହାର ଭୂମି ହେଉଛି ଫ୍ଲୋରିନ୍, ତାହା ଉଭୟ ବୃତ୍ତାକାର ଓ ବୃତ୍ତାଭାସାକାର ଅଟେ ।" ଏଠାରେ ସଂକେତ ଅର୍ଥାତ୍ କୋନ୍‌ଟିର ଅର୍ଥ କରାଯାଇପାରେ ଯେ ତାହା ଏକ ବୃତ୍ତା-ଭାସାକାର ପ୍ରସ୍ଥଚ୍ଛେଦ, ଅର୍ଥାତ୍ ସ୍ୱାଭାବିକ ପ୍ରସ୍ଥଚ୍ଛେଦ ବୁଝାଉଅଛି, ଅଥବା ତାହା ଏକ ବୃତ୍ତାକାର ବକ୍ର ପ୍ରସ୍ଥଚ୍ଛେଦ ବୁଝାଉଅଛି ।

ସମଭୂମିମୁକ୍ତ ଦୁଇଟି କୋଣ୍ । ଯାହାହେଉ, ଚକ୍ଷୁପଟଳୀୟ ପରିବର୍ତ୍ତନ ହେତୁ ଏକଥା ରକ୍ଷା କରିବାର ସ୍ୱାଭାବିକ ସ୍ୱତଃସ୍ଫୂର୍ତ୍ତି ପଦ୍ଧତି ଅକାମୀ ହୋଇଯାଏ ଏବଂ ସେଥି ଏକ ଫ୍ଳୋରିନ୍‌କୁ ଆମେ ଏପରିଭାବେ 'ଦେଖୁ' ଯେ **ସତେ ଯେପରି** ତାହା ଦୁଇଟି ସ୍ଥାନରେ ରହିଛି । ସମଭୂମିମୁକ୍ତ ଦୁଇଟି କୋଣ୍‌କୁ ଆମେ ଭିନ୍ନ ଭିନ୍ନ ଭୂମିମୁକ୍ତ ଦୁଇଟି କୋଣ୍ ରୂପେ ଅର୍ଥ କରୁ । ଅନୁଚଳନ ଓ ଅପବର୍ତ୍ତନ, ଅର୍ଥାତ୍ ଦୃଷ୍ଟିସମ୍ବନ୍ଧୀୟ ସମଗ୍ର ମତବାଦ ଏ ପ୍ରକାର 'ଗୋଳକଧନ୍ଦା'ରେ ଭରପୂର ହୋଇ ରହିଛି; ଉପର୍ଯ୍ୟୁକ୍ତ ସଂକେତସିଦ୍ଧାନ୍ତ ଦ୍ୱାରା ଏଗୁଡ଼ିକ ସମାହିତ ହୋଇପାରିବ । (୧)

ଯାହା ଜଣାପଡ଼ୁଛି, ଏହି ସଂକେତ ସିଦ୍ଧାନ୍ତ ମାଧ୍ୟମରେ କେବଳ ଯେ ପ୍ରାକ୍ ବୈଜ୍ଞାନିକ କାଳର କେତେକ ମାନକ ବିରୋଧାଭାସର ନିରାକରଣ ସମ୍ଭବପର, ଏକଥା ନୁହେଁ; ଏତଦ୍ୱାରା ଆମେ ପଦାର୍ଥବିଜ୍ଞାନ ନିମନ୍ତେ ମଧ୍ୟ ଏକ ନୂତନ ଭିତ୍ତି ଯୋଗାଇ ପାରିବା । ସାଧାରଣତଃ ଗ୍ରହଣ କରି ନିଆଯାଏ ଯେ ଆମେ ଯାହା ଦେଖୁ ତାହାଠାରୁ,

---

(୧) Reid ଙ୍କ *Inquiry* ଲିଖିତ ହେବା ସମୟରୁ ଆରମ୍ଭ ହୋଇଥିବା ସଂକେତ ମାଧ୍ୟମରେ ଦର୍ଶନ ବିସ୍ତାର କରିବାକୁ ସର୍ବାଧିକ ସଙ୍କଳନିକ ପ୍ରୟାସ ସମ୍ବନ୍ଧରେ କେତେକ କଥା କହିବାର ଆବଶ୍ୟକତା ରହିଛି । ଏହା ସଂକେତ-ପରିଚ୍ଛିତ ସହିତ ସଂପୃକ୍ତ । ଅଧ୍ୟାପକ John Laird ଙ୍କ *Studies in Realism* ପୁସ୍ତକର ବିଶେଷତଃ ପୃ ୨୪ରେ ଏହା ବର୍ଣ୍ଣିତ । ଅଧ୍ୟାପକ Laird କହିଛନ୍ତି, "ସୃଷ୍ଟ ଇନ୍ଦ୍ରିୟ-ଦତ୍ତ ହେଉଛି ଯେପରି ଏକ **ସଂକେତ,** ସେହିପରି ଏକ **ଘଟଣା** ଏବଂ ଏହା ସର୍ବଦା ଏହିପରି ଭାବେ ହିଁ ବୁଝା ଯାଇଥାଏ ।" ସେ ପୁଣି କହିଛନ୍ତି ଯେ ଆମେ ସର୍ବଦା ତାତ୍ପର୍ଯ୍ୟ (ଯୋଉଁ ସମ୍ବନ୍ଧ ହେତୁ ଏକ ସଂକେତ ଅର୍ଥଯୁକ୍ତ ହୁଏ, ତାହା)ର ପ୍ରତ୍ୟକ୍ଷ କରୁ । ତାତ୍ପର୍ଯ୍ୟ-ରହିତ ଦତ୍ତର ନୁହେଁ ସଂକେତ-ଘଟଣାର ହିଁ ଆମେ ସର୍ବଦା ପ୍ରତ୍ୟକ୍ଷ କରୁ । ତେଣୁ ଯେତେବେଳେ ସେ ଆହୁରି କହନ୍ତି ଯେ "ଠିକ୍ ବର୍ଣ୍ଣ ଅଥବା ଶବ୍ଦରୁ୍ଣ ଅର୍ଥ ସାକ୍ଷାତ୍‌ଭାବେ ପର୍ଯ୍ୟବେକ୍ଷଣୀୟ", ଏଠାରେ 'ଅର୍ଥ' ଶବ୍ଦକୁ ଆମେ ଯଦି 'ଯାହା ଉଦ୍ଦିଷ୍ଟ' ସହିତ ବ୍ୟାମିଶ୍ରିତ କରିଦେଉ, ତେବେ ତାଙ୍କ ଉକ୍ତିଟି ବିରୋଧାଭାସମୂଳକ ମନେହେବ । କିନ୍ତୁ 'ଅର୍ଥ' ଶବ୍ଦକୁ ଆମେ ଯଦି 'ତାତ୍ପର୍ଯ୍ୟ' ଅର୍ଥରେ ନେଉ, ତେବେ ତାହା ସେତେ ବିରୋଧା-ଭାସମୂଳକ ମନେହେବ ନାହିଁ । ତୁଳନା କର—Hoernle, *Mind,* ୧୯୦୭, ପୃ ୮୬—"ଅର୍ଥର ଚେତନାକୁ ମୁଖ୍ୟ ଓ ମୌଳିକ ବୋଲି ଏବଂ ସଂକେତ ଓ ଅର୍ଥର ପାର୍ଥକ୍ୟକୁ ମନନର ପରିଣତି ବୋଲି ମୁଁ ଗ୍ରହଣ କରେ ।" ଏହା କି ପ୍ରକାର 'ଅର୍ଥ' ତାହା ସମ୍ଭବତଃ ଅଷ୍ଟମ ପରିଚ୍ଛେଦରେ ଆଲୋଚିତ ବିଷୟବସ୍ତୁରୁ ସଂଗୃହୀତ ହୋଇ-ପାରିବ ।

ଆମେ ଯେଉଁ ବସ୍ତୁଗୁଡ଼ିକର କଳ୍ପନା କରୁ, ତାହା ଭିନ୍ନ । କଳ୍ପିତ ବସ୍ତୁଗୁଡ଼ିକ ଗୋଟିଏ ଦୃଷ୍ଟିରୁ ଅବାସ୍ତବ । ଦର୍ଶନ ଏବଂ କଳ୍ପନା ମଧ୍ୟରେ ଏହି ପାର୍ଥକ୍ୟରକ୍ଷା ଭ୍ରାନ୍ତିକାରକ ହୋଇଥାଏ । ଯେଉଁ ବସ୍ତୁଗୁଡ଼ିକୁ ଆମେ ଯଥାର୍ଥରେ ଦେଖୁଛୁ ବୋଲି ଦାବି କରୁ, ସେଗୁଡ଼ିକର ଯେଉଁ ଅଂଶମାନ ଆମେ ଦେଖୁନା, ତାହା ଦେଖୁଥିବା ଅଂଶମାନଙ୍କ ଭଳି ବାସ୍ତବ । ଚନ୍ଦ୍ରର ଯେଉଁ ପାର୍ଶ୍ୱ ଆମେ କଦାପି ଦେଖୁନା, ତାହା ଆମ ଦୃଷ୍ଟି ଦ୍ୱାରା ପ୍ରତ୍ୟକ୍ଷୀଭୂତ ହେଉଥିବା ପାର୍ଶ୍ୱ ଭଳି ବାସ୍ତବ । ପଦାର୍ଥବିଜ୍ଞାନର ଏହି ଅର୍ଥକରଣମୂଳକ ପ୍ରଚେଷ୍ଟାକୁ ଯଦି ଅବ୍ୟାହତ ରଖାଯାଏ, ତେବେ ସେ ଆରମ୍ଭ କରୁଥିବା ପ୍ରତ୍ୟକ୍ଷଣରେ ପ୍ରଦତ୍ତ ସଙ୍କେତମାନଙ୍କ ଭଳି, ଯେଉଁ ପରମାଣୁଗୁଡ଼ିକର ଗତିପଥର ଫଟୋ ନିଆଯାଇଛି, ଯେଉଁ ତଡ଼ିତ୍-ପରମାଣୁଗୁଡ଼ିକୁ ଆମେ 'ଦେଖୁ' ନା, ସେଗୁଡ଼ିକ ମଧ୍ୟ ବାସ୍ତବ । ଆମେ ଯେତେବେଳେ ଆମର ଚଉକି, ଟେବୁଲ ଗୁଡ଼ିକ ଆଡ଼କୁ ଦୃଷ୍ଟି ପକାଉ, ଆମେ ପ୍ରଥମେ ଗୋଟିଏ ରଙ୍ଗିନାଂଶର 'ଦେଖୁ' । ତା'ପରେ କୋଣମାନଙ୍କୁ, ତା'ପରେ ପୃଷ୍ଠଦେଶ-ଗୁଡ଼ିକୁ, ଚଉକିକୁ, ଗୋଡ଼-ବସିବାସ୍ଥାନ-ଆଉଜିହେବା ସ୍ଥାନକୁ, କାଠ, ବାଉଁଶ, ତନ୍ତୁ, କୋଷ, ଅଣୁ, ପରମାଣୁ, ତଡ଼ିତ୍ ପରମାଣୁ······ଇତ୍ୟାଦିକୁ 'ଦେଖୁ' । ସଙ୍କେତ-ପରିସ୍ଥିତି ଯେପରି ପରିବର୍ତ୍ତିତ ହେଉଥାଏ, 'ଦେଖିବା'ର ଅର୍ଥ ମଧ୍ୟ ସେହିପରି ଭିନ୍ନ ଭିନ୍ନ ହେଉଥାଏ ଏବଂ ଏହି ଅର୍ଥଗୁଡ଼ିକୁ ଏକ ବ୍ୟବସ୍ଥିତ କ୍ରମରେ ରଖାଯାଇପାରେ । ପୁଣି, ଦୃଷ୍ଟିକୋଣ, ଅନୁରକ୍ତି, ବୈଜ୍ଞାନିକ ପ୍ରବନ୍ଧ ବା ଗବେଷଣାର ଉଦ୍ଦେଶ୍ୟ ଯେପରି ପରିବର୍ତ୍ତିତ ହେଉଥାଏ, ତାହା ସହିତ ଏହି ନିର୍ଦ୍ଦେଶଗୁଡ଼ିକ ଦ୍ୱାରା ପ୍ରଦର୍ଶିତ ସ୍ତରଗୁଡ଼ିକ ମଧ୍ୟ ସେହିପରି ପରିବର୍ତ୍ତିତ ହେଉଥାଏ ।



# ପଞ୍ଚମ ପରିଚ୍ଛେଦ

## ପ୍ରତୀକ ପଦ୍ଧତିର ସୂତ୍ରାବଳୀ

ଏକ ନୂତନ ଚିନ୍ତାଧାରାକୁ ଅବଲମ୍ବେ ଓ ସାବଜନୀନଭାବେ ଗୃହୀତ କରାଇନେବା ନିମନ୍ତେ ଅନେକ ସମୟରେ ଦୃଢ଼ ଯୁକ୍ତି ଅପେକ୍ଷା ଏକ ସନ୍ତୋଷଜନକ ନାମକରଣ ପଦ୍ଧତି ଅଧିକ ପ୍ରଭାବଶାଳୀ ଉପକରଣ ସ୍ୱରୂପ ହୋଇଥାଏ ।

—ଅଧ୍ୟାପକ ଏ. ଶୁଷ୍ଟର

ଅବଶିଷ୍ଟାଂଶ ପାଇଁ, ଆଜ୍ଞା, ମନର ବିକାଳୁକ୍ରମଣର ସବିଶେଷ ବିବରଣୀ ମଧ୍ୟକୁ ଯଦି ଆପଣ ଆଜି ଟିକିଏ ଅଗ୍ରସର ହୁଅନ୍ତେ, ତେବେ ମୁଁ କ୍ଷୁବ୍ଧ ହୁଅନ୍ତି ନାହିଁ; କ୍ଷୁଦ୍ରାଂଶର ବ୍ୟବହାରରେ ମନର ଅନୁକ୍ରମଣ ଚମତ୍କାର ମନେହୁଏ ।

—ଲିଟିଲବର୍ଗ

ସମସ୍ତ ଭାବ ବିନିମୟ ମୂଳରେ କେତେକ ସ୍ୱୀକାର୍ଯ୍ୟ ବା ପ୍ରାକ୍-ଆବଶ୍ୟକ ବିଷୟ ରହିଥାଏ । ଏହି ନିୟମାତ୍ମକ ପୂର୍ବମାନ୍ୟତା ଗୁଡ଼ିକ ବିନା କୌଣସି ସଙ୍କେତପଦ୍ଧତି, କୌଣସି ବିଜ୍ଞାନ, ଏପରିକି କୌଣସି ଯୁକ୍ତିପଦ୍ଧତି ସୁଦ୍ଧା ପରିବର୍ତ୍ତିତ ହୋଇନପାରେ । ତାର୍କିକ-ମାନଙ୍କ ଦ୍ୱାରା ସେଗୁଡ଼ିକ ଅବହେଳିତ ହୋଇଥିବାରୁ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, କାରଣ ଏପର୍ଯ୍ୟନ୍ତ ସେଗୁଡ଼ିକର ଆଲୋଚନା କାହାରି କାର୍ଯ୍ୟସୂଚୀର ଅନ୍ତର୍ଭୁକ୍ତ ହୋଇ ନାହିଁ । ତର୍କଶାସ୍ତ୍ରକୁ ପ୍ରତୀକମାନଙ୍କ ସୁସମ୍ବନ୍ଧନ ବିଜ୍ଞାନ ରୂପେ ଗ୍ରହଣ କରାଯାଇ ପାରେ; କିନ୍ତୁ ଏହା ମନସ୍ତାତ୍ତ୍ୱିକ ଅବଧାରଣମାନଙ୍କ କିମ୍ବା ଚିନ୍ତାର ବିଷୟବସ୍ତୁରୂପେ ପରିଗଣିତ 'ପ୍ରତିଜ୍ଞପ୍ତି ମାନଙ୍କ' ଆଲୋଚନାରେ ନିମଜ୍ଜିତ ରହିଛି; ଅବଶ୍ୟ ପ୍ରତିଜ୍ଞପ୍ତି ପ୍ରତୀକଠାରୁ ଭିନ୍ନ ଏବଂ ମନସ୍ତାତ୍ତ୍ୱିକ ନୁହେଁ । ଆଧୁନିକ ଗାଣିତିକମାନେ ପ୍ରତୀକାତ୍ମକ ପଦ୍ଧତିର ଆକାରଗତ ପରିବର୍ଦ୍ଧନ ନିମନ୍ତେ ଅନେକ କିଛି କାର୍ଯ୍ୟ କରିଛନ୍ତି; କିନ୍ତୁ ସେମାନେ ହୁଏତ ଏହି ସୂତ୍ରଗୁଡ଼ିକୁ ପ୍ରଚ୍ଛନ୍ନଭାବେ ଗ୍ରହଣ କରିନଥିନ୍ତି ଅଥବା ସେମାନଙ୍କ ଏଥିପ୍ରତି ଅବହେଳାରୁ ଉତ୍ପନ୍ନ ଅସୁବିଧାର ସମ୍ମୁଖୀନ ହେବା କ୍ଷେତ୍ରରେ କେତେକ ଅତିରିକ୍ତ

ଅପାତତ ଜଟିଳତା (୧) ନିଜର ଗାଣିତିକ ପଦ୍ଧତି ମଧ୍ୟକୁ ପ୍ରବେଶ କରାଇ ଦିଅନ୍ତି । ଶରୀର-ତତ୍ତ୍ୱରେ ରସାୟନ ବିଜ୍ଞାନର, କ୍ଷେପଣାସ୍ତ୍ର ବିଜ୍ଞାନରେ ଗତିବିଜ୍ଞାନର ଅଥବା ସୌନ୍ଦର୍ଯ୍ୟ ବିଜ୍ଞାନରେ ମନସ୍ତତ୍ତ୍ୱର ଯେପରି ଏକ ମୁଖ୍ୟ ଭୂମିକା ରହିଛି, ସମସ୍ତ ପ୍ରକାର ଆଲୋଚନାରେ ଏହି ସୂତ୍ରଗୁଡ଼ିକର ପ୍ରକୃତରେ ସେହିପରି ଏକ ମୁଖ୍ୟ ଭୂମିକା ରହିଛି । ଯେ କୌଣସି ତର୍କପଦ୍ଧତି, ଯଦି ତାହା ସମ୍ପୂର୍ଣ୍ଣରୂପେ ଆକାରନିଷ୍ଠ ହୋଇ ନଥାଏ, ଅର୍ଥାତ୍ ଯଦି ତାହା ପ୍ରତୀକ ବ୍ୟବହାର କିମ୍ବା ସମ୍ଭାବନାମୂଳକ ପରିଣତିଗୁଡ଼ିକର କେତେକ ବ୍ୟାଖ୍ୟା ଦେବାରେ ନିୟୋଜିତ ଥାଏ, (୨) ତେବେ ତହିଁରେ ଏହି ସୂତ୍ରଗୁଡ଼ିକର ଅଧ୍ୟୟନ ହେଉଛି ଏକ ସର୍ବପ୍ରଧାନ ଆବଶ୍ୟକତା । ଏଗୁଡ଼ିକର ବିଧିବଦ୍ଧ ପାଳନ ପ୍ରାଚୀନ ତର୍କ-ପଦ୍ଧତିର ବହୁ ଅଂଶକୁ ସାମୂହିକଭାବେ ଅନାବଶ୍ୟକ କରିଦିଏ ।

ଏହି ସୂତ୍ରଗୁଡ଼ିକର କେତେକକୁ ପ୍ରତୀକ ଓ ନିର୍ଦ୍ଦେଶ୍ୟ ମାଧ୍ୟମରେ ବ୍ୟକ୍ତ କରିବା ସୁବିଧାଜନକ ହେବ । ଏଠାରେ ପୃ ୧୩ ରେ ଦିଆଯାଇଥିବା ନିର୍ଦ୍ଦେଶ-ତ୍ରିଭୁଜ ଦ୍ରଷ୍ଟବ୍ୟ । ପ୍ରତୀକ ପଦ୍ଧତିର ପ୍ରଥମ ସୂତ୍ର ହେଉଛି ଏକତ୍ୱସୂତ୍ର । ତାହା ନିମ୍ନରୂପ—

**୧—ଗୋଟିଏ ପ୍ରତୀକ ଗୋଟିଏ ଏବଂ କେବଳ ଗୋଟିଏ ନିର୍ଦ୍ଦେଶ୍ୟ ପରିବର୍ତ୍ତେ ବ୍ୟବହୃତ ହୁଏ ।**

ଏହି ନିର୍ଦ୍ଦେଶ୍ୟ ଗୋଟିକ ଜଟିଳ ହୋଇପାରେ ଏବଂ ଅଧିକାଂଶ କ୍ଷେତ୍ରରେ ତାହା ଜଟିଳ ହିଁ ହୋଇଥାଏ । ଉଦାହରଣ ସ୍ୱରୂପ, 'ସମସ୍ତ ମଙ୍ଗୋଲୀୟ ନିର୍ବୋଧ' ହେଉଛି ଗୋଟିଏମାତ୍ର ନିର୍ଦ୍ଦେଶ୍ୟ ସମ୍ବଳିତ ଏକ ପ୍ରତୀକ । ସେହିପରି (କ କିମ୍ବା ଖ)ର ଗୋଟିଏମାତ୍ର ନିର୍ଦ୍ଦେଶ୍ୟ ରହିଛି । ଗାଣିତିକ ପ୍ରତୀକଗୁଡ଼ିକର ଏକ ସ୍ୱାତନ୍ତ୍ର୍ୟ ରହିଛି; ସେଗୁଡ଼ିକ ହୁଏତ ଅନ୍ୟାନ୍ୟ ପ୍ରତୀକମାନଙ୍କ ପ୍ରତୀକ ଅଥବା ପ୍ରତୀକସମ୍ବଳିତ କ୍ରିୟାମାନଙ୍କ ପ୍ରତୀକ । ଏହି ସ୍ୱାତନ୍ତ୍ର୍ୟକୁ ପ୍ରକାଶ କରିବା ନିମିତ୍ତ ପ୍ରାୟଶଃ କୁହାଯାଇଥାଏ ଯେ ବିଶୁଦ୍ଧ ଗଣିତ ହେଉଛି ବିବିକ୍ତ ବା ଆକାରନିଷ୍ଠ, ଅର୍ଥାତ୍ ଏହା ଆଦୌ କୌଣସି ବସ୍ତୁର ଉଲ୍ଲେଖ କରେନାହିଁ । ପ୍ରତୀକମାନଙ୍କ ପ୍ରୟୋଜନୀୟ ଅଂଶ ରହିପାରେ, ଯଥା—ନଞର୍ଥକ ଅଂଶ ଏବଂ 'ଟି', 'ଯେଉଁ' ପ୍ରଭୃତିପରି କେତେକ ଶବ୍ଦ । ଏଗୁଡ଼ିକର ନିଜସ୍ୱ ନିର୍ଦ୍ଦେଶ୍ୟ ନଥାଏ । ପ୍ରତୀକର

(୧) ଉଦାହରଣ ସ୍ୱରୂପ, ପ୍ରକୃତ ସିଦ୍ଧାନ୍ତ—ଯଦି Epimenidesଙ୍କ ପଦ୍ଧତି ଏବଂ କ୍ରିଟାନମାନଙ୍କ ଆରୋପିତ ମିଥ୍ୟାଲୁରକ୍ତିର ବିଚାର କରାଯାଏ; ଅଥବା "ଫେନିକ୍ସ-ଗୁଡ଼ିକ ଅଛନ୍ତି"ର ଅର୍ଥ କରିବା କ୍ଷେତ୍ରରେ ଗୃହୀତ ବର୍ଜିତ ସିଦ୍ଧାନ୍ତ ।

(୨) କଥିତ ଗ୍ରନ୍ଥ : *Symbolism and Truth* ରେ (ପୃ ୯୨ ଏବଂ ବିଶେଷତଃ ପୃ ୨୨୪) ଅଧ୍ୟାପକ R. M. Eaton ଏକ ଅଧିକ ରକ୍ଷଣଶୀଳ ଦୃଷ୍ଟିକୋଣରୁ ଚମତ୍କାରଭାବେ ତର୍କୀୟ ବାକ୍ୟବିନ୍ୟାସ ନିୟମାବଳୀର ବିଚାର ଆଲୋଚନା କରିଛନ୍ତି ।

ଏ ପ୍ରକାର ଅଣପ୍ରତୀକାତ୍ମକ **ସଂରଚନାମୂଳକ** ଉପାଦାନର ଅଧ୍ୟୟନ ହେଉଛି ବ୍ୟାକରଣର କାର୍ଯ୍ୟ ।

ସାଧାରଣ ଭାଷାରେ ସଂରଚନାର ଏହି ଅଭିବ୍ୟକ୍ତିଗୁଡ଼ିକ ବହୁ ବିଭିନ୍ନ ଆକାରର ହୋଇଥାଏ । ପ୍ରତ୍ୟୟ, ସଂଯୋଗକାରକ ଅବ୍ୟୟ, ବିଭାଜକ ସର୍ବନାମ ବା ବିଶେଷଣ, ସାହାଯ୍ୟକାରୀ କ୍ରିୟା, କେତେକ ଅବ୍ୟୟ, ସଂଯୋଜକ (copula)ର ମୁଖ୍ୟ ବ୍ୟବହାର ପ୍ରଭୃତି ସଂରଚନାମୂଳକ କ୍ରିୟା ସମ୍ପାଦନ କରନ୍ତି । ଅଭିମୁଖ୍ୟର ସରଳତା ହେତୁ ଗଣିତରେ ଏହି ସଂରଚନାତ୍ମକ ଉପାଦାନର ସଂଖ୍ୟା ସର୍ବନିମ୍ନ; ନଚେତ୍ ଦୁଇ ଓ ତିନପରି ଗଣନକ୍ରିୟାର ପ୍ରତୀକ ଅଥବା ବୀଜଗାଣିତିକ ଅଭିବ୍ୟକ୍ତିମାନଙ୍କ ପରି ପ୍ରତୀକର ପ୍ରତୀକଗୁଡ଼ିକୁ କଦାପି ସୁସଙ୍ଗତ ରୂପେ ପ୍ରୟୋଗ କରାଯାଇପାରନ୍ତାନାହିଁ । ଏହି ଶତାବ୍ଦୀର ପ୍ରାରମ୍ଭରେ ଫ୍ରେଗେ, କୋଟୁରାଟ୍ ଓ ଅନ୍ୟାନ୍ୟଙ୍କ ଦ୍ୱାରା ତାର୍କିକ ରହସ୍ୟବାଦ ବା ଅଙ୍କତତ୍ତ୍ୱର ଯେପରି ପ୍ରଚଳନ କରାଯାଇଥିଲା, ସେଥିପ୍ରତି ଗଣିତ ସମ୍ବନ୍ଧୀୟ ଆଧୁନିକ ମତବାଦରେ ଏକ ସୁସ୍ଥ ପ୍ରତିକ୍ରିୟା ପରିଲକ୍ଷିତ ହେଉଛି । ଏବେ ସୁସ୍ପଷ୍ଟରୂପେ ଅନୁଭୂତ ହେଉଛି ଯେ ଗାଣିତିକଙ୍କ କାର୍ଯ୍ୟ କ'ଣ, ତତ୍ସମ୍ବନ୍ଧରେ ଅତୀନ୍ଦ୍ରିୟ ସତ୍ତା ବିଷୟ ଉତ୍ଥାପନ ନ କରି ଏକ ବିବରଣୀ ଦିଆଯିବା ଆବଶ୍ୟକ ।

ଭିଟ୍‌ଗେନଷ୍ଟାଇନଙ୍କ ପରି କେତେକ ଚିନ୍ତାନାୟକ ନିଜକୁ ପ୍ରବୋଚିତ କରି-ପାରିଛନ୍ତି ଯେ "ଗାଣିତିକ ପ୍ରତିଜ୍ଞପ୍ତିଗୁଡ଼ିକ ହେଉଛି ସମୀକରଣ; ସୁତରାଂ ସେଗୁଡ଼ିକ ଆଭାସୀ ପ୍ରତିଜ୍ଞପ୍ତି ।" ପୁଣି, "ଯେଉଁ ପଦ୍ଧତିଦ୍ୱାରା ଗଣିତ ତାହାର ସମୀକରଣମାନଙ୍କରେ ଉପନୀତ ହୁଏ, ତାହା ହେଉଛି ପ୍ରତିସ୍ଥାପନ ପ୍ରଣାଳୀ । ଏହାର କାରଣ ହେଉଛି ଯେ ସମୀକରଣ ଦୁଇଟି ଅଭିବ୍ୟକ୍ତିର ପାରସ୍ପରିକ ବିନିମୟସାମର୍ଥ୍ୟ ପ୍ରକାଶ କରେ, ଏବଂ ସମୀକରଣମାନଙ୍କ ସହିତ ସଙ୍ଗତି ରକ୍ଷା କରି ଗୋଟିଏ ଅଭିବ୍ୟକ୍ତି ବଦଳରେ ଅନ୍ୟାନ୍ୟ ଅଭିବ୍ୟକ୍ତିର ବ୍ୟବହାର ଦ୍ୱାରା କେତେଗୁଡ଼ିଏ ସମୀକରଣରୁ ନୂତନ ସମୀକରଣମାନଙ୍କ ଆଡ଼କୁ ଆମେ ଅଗ୍ରସର ହେଉ ।" (୧) ଏହି ଲେଖକ ପ୍ରବେଶ କରାଇଥିବା ରହସ୍ୟବାଦର ପୃଷ୍ଠଭୂମି ଓ ପ୍ରଚ୍ଛଦପଟ ପରିହାର କରି ମଧ୍ୟ ଏପ୍ରକାର ଏକମତର ଉପସ୍ଥାପନ କରାଯାଇପାରେ । ତେବେ ଏଡ଼ଦନନ୍ତର ଗଣିତର ଯେଉଁ ଅଂଶଗୁଡ଼ିକ ସମୀକରଣମାନଙ୍କ ସହିତ ହିଁ କେବଳ ସଂପୃକ୍ତ ପରି ମନେ ହୁଏନାହିଁ, ଯଥା—ବିନ୍ଦୁ ଶୃଙ୍ଖଳ ସିଦ୍ଧାନ୍ତ, ସେଗୁଡ଼ିକର ବ୍ୟାଖ୍ୟା ଦେବା ବାକି ରହିବ ।

---

(୧) *Tractatus Logico-Philosophicus*, ୬.୨ ଏବଂ ୬.୨୪ ।

ଅନ୍ୟ କେତେକେ ଗବ୍ଲୋନୋଙ୍କ (୧) ମତ ସମର୍ଥନ କରନ୍ତି । ସେମାନଙ୍କ ମତରେ ଗଣିତ ଆଦ୍ୟରୁ ପ୍ରାନ୍ତପର୍ଯ୍ୟନ୍ତ ହେଉଛି କେବଳ କଳ୍ପିତ ବସ୍ତୁନିଷ୍ଠ ପରୀକ୍ଷଣ କ୍ରିୟା । ଏହା ପ୍ରତୀକମାନଙ୍କରେ ଲିଖିତ ଓ ଉପସ୍ଥାପିତ । ଜେମସ୍ ମିଲ୍ (୨) ଏବଂ ଟେଏନ୍‌ଙ୍କ ମତର ଏହି ସମ୍ପ୍ରସାରଣ ଗଣିତର କେତେକ ଅଂଶ ସମ୍ବନ୍ଧରେ ସୁସମ୍ମତ ହୋଇଥିଲେ ସୁଦ୍ଧା ଅନ୍ୟାନ୍ୟ ଅଂଶ କ୍ଷେତ୍ରରେ ସତ୍ୟ ହେବାର ସମ୍ଭାବନା ସ୍ୱଳ୍ପ । ଗବ୍ଲୋନୋ ଯେପରିଭାବରେ ଏହି ମତର ପରିବର୍ଦ୍ଧନ କରିଛନ୍ତି, ତହିଁରେ ପ୍ରତୀକମାନଙ୍କ ପ୍ରତି ଅତ୍ୟଳ୍ପ ପ୍ରାଧାନ୍ୟ ଅର୍ପିତ ହୋଇଛି । ଗଣିତର ପ୍ରତୀକ ଶୃଙ୍ଖଳମାନ ଅତ୍ୟନ୍ତ ସୁବ୍ୟବସ୍ଥିତ, ଏବଂ ଆମର ମାନସିକ କ୍ରିୟାଗୁଡ଼ିକର କେବଳ ଉପସ୍ଥାପନସାଧନ ହେବା ବ୍ୟତୀତ ଏଗୁଡ଼ିକ ଆହୁରି ଅଧିକ କିଛି । ସତେ ଯେପରି ଏଗୁଡ଼ିକର ନିଜସ୍ୱ କ୍ରିୟା ସାମର୍ଥ୍ୟ ରହିଛି, ଏଗୁଡ଼ିକ ସେହିପରି ହୋଇଯାଏ । ଏଗୁଡ଼ିକ ଏପରି ଚିନ୍ତନଯନ୍ତ୍ର ହୋଇଯାଏ ଯେ ଯଥୋପଯୁକ୍ତ ରୂପେ ବ୍ୟବହୃତ ହେଲେ, ଏଗୁଡ଼ିକ ଯେଉଁ ଫଳ ପ୍ରଦାନ କରେ, ତାହା କଳ୍ପିତ ବସ୍ତୁନିଷ୍ଠ ପରୀକ୍ଷଣର କୌଣସି ପ୍ରକ୍ରିୟାଦ୍ୱାରା ଆଗରୁ ଜାଣିବା ସମ୍ଭବପର ନୁହେଁ ।

ଏକ ତୃତୀୟ ଗୋଷ୍ଠୀ ଗଣିତକୁ ଏକ ଚିନ୍ତନଯନ୍ତ୍ର ରୂପେ ଉପସ୍ଥାପିତ ନ କରି, ଏ ପ୍ରକାର ଏକ ଯନ୍ତ୍ରର ବ୍ୟବହାର ପାଇଁ ତାହାକୁ ଏକ ନିର୍ଦ୍ଦେଶସଂହିତରୂପେ ଉପସ୍ଥାପନ କରନ୍ତି । ଏଠାରେ ସମ୍ପୃକ୍ତ ଯନ୍ତ୍ରଟି ହେଉଛି ମନ । ଏହି ଗୋଷ୍ଠୀର ମତାନୁସାରେ ଗଣିତରେ କୌଣସି ସତ୍ୟ ରହିବ ନାହିଁ । ତହିଁରେ ରହିବ କେବଳ

---

(୧) *The Psychology of Reasoning*, ୭ମ ଓ ୮ମ ପରିଚ୍ଛେଦ ।

(୨) *The Analysis of the Human Mind*, ୨ୟ ଖଣ୍ଡ, ପୃ ୯ । "ତେଣୁ ସଂଖ୍ୟାଗୁଡ଼ିକ ବସ୍ତୁମାନଙ୍କ ନାମ ନୁହେଁ । ସେଗୁଡ଼ିକ ଏକ ପ୍ରକ୍ରିୟା ଅର୍ଥାତ୍ ସଂଯୋଗ ପ୍ରକ୍ରିୟାର ନାମ····· ସଂଯୋଗ ପ୍ରକ୍ରିୟା ଥରେ ସମ୍ପାଦିତ ହେବା ବା ସମଷ୍ଟି ଆରବ୍ଧ ହେବାର ନାମ ଏକ । ତାହା ଆଉଥରେ ସମ୍ପାଦିତ ହେବାର ନାମ ଦୁଇ ।" ଏହି ଅନୁଚ୍ଛେଦ ଉପରେ ତାଙ୍କର ସମ୍ପାଦକୀୟ ଟିପ୍‌ପଣୀ ଦେଇ Millfils ମତ ଦେଇଛନ୍ତି ଯେ "ନିଧାର୍ଯ୍ୟରୂପେ ଔଚିତ୍ୟର ବସ୍ତୁର ଦୃଷ୍ଟିରୁ ସଂଖ୍ୟାଗୁଡ଼ିକ ବସ୍ତୁମାନଙ୍କ ନାମ ହିଁ **ଅଟେ** । **ଦୁଇ** ନିଶ୍ଚିତ ଭାବେ ହେଉଛି ଦୁଇଟି **ହୋଇଥିବା** ବସ୍ତୁର, ଯଥା—ଦୁଇଟି ଆଙ୍ଗୁଠି ଇତ୍ୟାଦିର ନାମ । ଏକ ରେ ଏକ ଯୋଗ ହୋଇ ଦୁଇ ଗଠିତ ହେବା ପ୍ରକ୍ରିୟା ହେଉଛି ଦୁଇ ନାମର ଲକ୍ଷଣାର୍ଥ, ତାହାର ବାଚ୍ୟାର୍ଥ ନୁହେଁ ।" ଏହା ଏକ ଅବୋଧ ମନ୍ତବ୍ୟ, କାରଣ ଏହା I. S. Mill ଙ୍କ ମଧ୍ୟ 'ଲକ୍ଷଣାର୍ଥ' ଶବ୍ଦର ସାଧାରଣ ବ୍ୟବହାର ନୁହେଁ ।

ଆଦେଶ ବା ନିର୍ଦ୍ଦେଶ । ତେବେ ସମସ୍ୟା ହେବ ଗାଣିତିକଙ୍କୁ ଠିକ୍ କ'ଣ କରିବାକୁ କୁହାଯାଏ ।

ଗଣିତର ପ୍ରକୃତି ସମ୍ବନ୍ଧୀୟ ଏହି ବିରକ୍ତିକର ପ୍ରଶ୍ନର ଉତ୍ତର ଏହି ବିଭିନ୍ନ ମତଗୁଡ଼ିକର ସମ୍ମିଶ୍ରଣରୁ ସମ୍ଭବତଃ ମିଳିପାରିବ । ଗଣିତ ମୁଖ୍ୟତଃ ଏକ ସଜାତୀୟ ବିଜ୍ଞାନ ବୋଲି ମନେ କରିବା ନିମନ୍ତେ କୌଣସି ଉତ୍ତମ କାରଣ ନାହିଁ, ଯଦିଓ ଏହାର ଏକଧା ପ୍ରତୀକ ପଦ୍ଧତି ରହି ଥିବାରୁ ଏହା ଏତାଦୃଶ ବୋଲି ମନେ ହୋଇଥାଏ । ଆମେ ଜାଣୁ, କେବଳ ଐକିକ ପ୍ରତୀକମାନ ନୁହେଁ, ସାମଗ୍ରିକ ପ୍ରତୀକମାନ ମଧ୍ୟ ଲକ୍ଷ୍ୟାର୍ଥରେ ବ୍ୟବହାରୋପଯୋଗୀ ହୋଇପାରେ । ଏଥିରୁ ଗଣିତର ଏହି ପ୍ରସ୍ତାବିତ ସ୍ୱଭାବର ସମ୍ଭବପରତାକୁ ସ୍ୱୀକାର କରିବା ନିମନ୍ତେ ଆମେ ପ୍ରସ୍ତୁତ ରହିବା ଉଚିତ । ଗଣିତର କେତେକ ଅଂଶ ତାହାର ଅନ୍ୟାନ୍ୟ ଅଂଶର ଆଲୋଚନା ସହିତ ବିଶିଷ୍ଟଭାବେ ସମ୍ପୃକ୍ତ— ଏ କଥା ସୁସ୍ପଷ୍ଟ । "ଯେତେବେଳେ ତର୍କଶାସ୍ତ୍ର ତତ୍ତ୍ୱବିଜ୍ଞାନର ପ୍ରଭାବରୁ ସମ୍ପୂର୍ଣ୍ଣରୂପେ ମୁକ୍ତି ଲାଭ କରିବ, ସେତେବେଳେ ତାର୍କିକମାନେ ସମ୍ଭବତଃ ତର୍କୀୟ ଭାଷାର ଏକ ବ୍ୟାକରଣ ଉଦ୍ଭାବନ କରିବେ । ତାହାକୁ ସେମାନେ ହୁଏତ ତର୍କଶାସ୍ତ୍ରର ବ୍ୟାକରଣ ବୋଲି କହିବେ ଏବଂ ତର୍କୀୟ ଭାଷାକୁ ତର୍କଶାସ୍ତ୍ର କୁହାଯିବ । ତଥା କଥିତ ତର୍କଶାସ୍ତ୍ରରେ ରହିଥିବା ସମସ୍ତ ମୂଲ୍ୟବାନ୍ ବିଷୟ ଏହି ବ୍ୟାକରଣର ଆଙ୍ଗିକ ଉପାଦାନ ହୋଇ ରହିବ । ଏହି ବ୍ୟାକରଣଟି ହେବ ଭାଷା ମାଧ୍ୟମରେ ଯୁକ୍ତି ବିଜ୍ଞାନର ବ୍ୟାକରଣ ।" (୧)

ଏହି ବିଶିଷ୍ଟ ବିଷୟର ଆଲୋଚନାରୁ ଆମେ ପୁଣି ଆମ ବିଗୃହୀ ବିଷୟକୁ ଫେରିଯିବା । ଏଠାରେ ମନେରଖିବା ଗୁରୁତ୍ୱପୂର୍ଣ୍ଣ ଯେ ପୂର୍ବରୁ ବର୍ଣ୍ଣିତ ହୋଇଥିବା ନିର୍ଦ୍ଦେଶ ହେଉଛି ଏକ ମାନସିକ ପ୍ରକ୍ରିୟାକୁ ଏକ ନିର୍ଦ୍ଦେଶ୍ୟ ସହିତ ସଂଯୋଗ କରୁଥିବା ବାହ୍ୟ ଓ ମନସ୍ତାତ୍ତ୍ୱିକ ପ୍ରସଙ୍ଗମାନଙ୍କ ଏକ ସହତି । ସୁତରାଂ ଯେ କୌଣସି ଦୁଇଟି ନିର୍ଦ୍ଦେଶ କଦାଚିତ୍କାଳେ ସମ୍ପୂର୍ଣ୍ଣତଃ ପରସ୍ପର ସଦୃଶ ହେବାର ସମ୍ଭବପରତା ନିତାନ୍ତ କ୍ଷୀଣ । ତେଣୁ ସେହି ଏକ ନିର୍ଦ୍ଦେଶ ଦ୍ୱାରା ଦୁଇଟି ପ୍ରତୀକ ବ୍ୟବହାର କରାଯାଏ କି ନା—ଏହି ପ୍ରଶ୍ନ ପଚାରିବା ଦ୍ୱାରା, ବିଶେଷତଃ ତାହାର ବ୍ୟବହାରକାରୀ ଦ୍ୱୟ ଯଦି ଭିନ୍ନ ଭିନ୍ନ ଜୀବନାବିଶିଷ୍ଟ ଦୁଇଜଣ ବ୍ୟକ୍ତି ହୋଇଥାନ୍ତି, ତେବେ ଆମେ ଏକ ପରିମାଣଗତ ପ୍ରଶ୍ନ ଉତ୍ଥାପନ କରୁଥାଉ । ଉପାଦେୟ ଆଲୋଚନା ନିମନ୍ତେ ଏହି ପ୍ରଶ୍ନ ଅପେକ୍ଷା ବରଂ ଦୁଇଟି ନିର୍ଦ୍ଦେଶର ଯଥେଷ୍ଟ ସାଦୃଶ୍ୟ ଥାଏ କି ନା ବୋଲି ପଚାରିବା ଅଧିକ ଭଲ । ଯେତେବେଳେ ଏ ପ୍ରକାର ଆଲୋଚନା ସମ୍ଭବପର ହୋଇଥାଏ, ନିର୍ଦ୍ଦେଶମାନଙ୍କୁ 'ସେହି

---

(୧) J. W. Powell, *Twentieth Annual Report of the Bureau of American Ethnology* (୧୯୦୩) ପୃ ୧୭୦ ।

ଏକ ନିର୍ଦ୍ଦେଶ୍ୟ ବୋଲି କୁହାଯାଏ । ନିର୍ଦ୍ଦେଶମାନଙ୍କୁ ସାକ୍ଷାତ୍‌ଭାବେ ତୁଳନା କରିବା ନିମନ୍ତେ ବର୍ତ୍ତମାନ ଅବସ୍ଥାରେ କୌଣସି ଉପାୟ ନାହିଁ । ମୁଖ୍ୟତଃ ସମ୍ପୃକ୍ତ ଅଂଶୀଦାର-ମାନଙ୍କ ପରବର୍ତ୍ତୀ ଆଚରଣର ପର୍ଯ୍ୟବେକ୍ଷଣରୁ ଲବ୍ଧ ପରୋକ୍ଷ ସାକ୍ଷ୍ୟପ୍ରମାଣର ଏଠାରେ ବିଚାର କରିବାକୁ ଆମକୁ ପଡ଼ିଥାଏ । ଆମେ ଲକ୍ଷ୍ୟ କରୁ, ସେହି ଏକ ବିଷୟରେ ସଦୃଶତା ଓ ନାମଶବ୍ଦତାର ପ୍ରଶ୍ନ ଉଠୁଛି କି, ସେହି ଏକ ବିଷୟରେ ଉଭୟ କ୍ଷେତ୍ରରେ ବିକଳ୍ପର ସମ୍ଭାବନା ରହିଛି କି ଇତ୍ୟାଦି । ବୈୟାକରଣିକ ସିଦ୍ଧାନ୍ତର ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ କ୍ଷେତ୍ରରେ, ବିଶେଷତଃ ଭାଷାର ସଂବେଗାତ୍ମକ କ୍ରିୟା କି ପରିମାଣରେ ତାହାର ନିର୍ଦ୍ଦେଶମୂଳକ କ୍ରିୟାରେ ବ୍ୟାଘାତ ସୃଷ୍ଟି କରିପାରେ, ତାହାର ଆଲୋଚନା କାଳରେ ଅଧିକ ସହଜରେ ପ୍ରୟୋଗଯୋଗ୍ୟ କେତେକ ପରୀକ୍ଷାପ୍ରଣାଳୀର ଅଶୁ ଆବଶ୍ୟକତା ରହିଛି । ଏଠାରେ ଏକମାତ୍ର ଆଶା ହେଉଛି, ନିର୍ଦ୍ଦେଶରେ କାର୍ଯ୍ୟକାରୀ ହେଉଥିବା ପ୍ରସଙ୍ଗମାନଙ୍କର ଆହୁରି ଅଧିକ ବିଶ୍ଳେଷଣ ଦ୍ୱାରା ଏହି ପରୀକ୍ଷା ପ୍ରଣାଳୀ ମିଳିପାରିବ; ଏହି ବିଶ୍ଳେଷଣରେ ଉଦ୍ଦେଶ୍ୟ ହେବ ବହୁ ପ୍ରାସଙ୍ଗିକ ଉପାଦାନରୁ କେଉଁଗୁଡ଼ିକ ନିର୍ଣ୍ଣାୟକ, ତାହାର ନିର୍ବାଚନ । ଏଠାରେ ନିହିତ ଜଟିଳତାର ସ୍ପଷ୍ଟ ହୃଦୟଙ୍ଗମ ଇତ୍ୟବସରରେ ଅନାବଶ୍ୟକ ସିଦ୍ଧାନ୍ତିକତାର ପ୍ରତିରୋଧକ ହୋଇପାରେ ।

ଯେତେବେଳେ ଗୋଟିଏ ପ୍ରତୀକ ଦୁଇ ବା ତତୋଽଧିକ ନିର୍ଦ୍ଦେଶ୍ୟ ପରିବର୍ତ୍ତେ ବ୍ୟବହୃତ ହୋଇଛି ପରି ମନେହୁଏ, ସେତେବେଳେ ଆମେ ତାହାକୁ ଦୁଇ ବା ତତୋଽଧିକ ପ୍ରତୀକ ବୋଲି ବିବେଚନା କରି ସେଗୁଡ଼ିକର ପାର୍ଥକ୍ୟ ରକ୍ଷାକରିବା ଆବଶ୍ୟକ । ଏହି ସୂତ୍ରଦ୍ୱାରା ସର୍ବାଧିକ ସୁସ୍ପଷ୍ଟ ଦ୍ୱ୍ୟର୍ଥକତା ଘଟିବାର ସମ୍ଭାବନା ଲୋପ ପାଏ; ଯଥା—top (ପର୍ବତ) ଏବଂ top (ଘୂର୍ଣ୍ଣନଶୀଳ) । ସାଧାରଣତଃ ଯାହାକୁ ସଙ୍କ୍ଷା କୁହାଯାଏ, ତତ୍‌ସମ୍ବନ୍ଧୀୟ ଏକ ଦ୍ୱିତୀୟ ସୂତ୍ରର ସହାୟତାରେ ଆମେ ଏ ପ୍ରକାର ପ୍ରତୀକ-ମାନଙ୍କ ପାର୍ଥକ୍ୟ ରକ୍ଷା କରୁ, ଏହି ସୂତ୍ରଟି ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଯେତେବେଳେ ଆମେ ଏପରି ଏକ ପ୍ରତୀକର ସମ୍ମୁଖୀନ ହେଉ, ଯାହା ଆମର ବୋଧଗମ୍ୟ ହେଉନାହିଁ, ସେତେବେଳେ, ଆମେ ତହିଁରେ ଅନୁରକ୍ତ ହୋଇଥିଲେ, ଆଉ ଏକ ପ୍ରତୀକ ପାଇବାର ବ୍ୟବସ୍ଥା କରୁ, ଯାହାର ଅର୍ଥକରଣ ଆମପକ୍ଷରେ ସମ୍ଭବପର; ଅବଶ୍ୟ ଏହାର ନିର୍ଦ୍ଦେଶ୍ୟ ଉପର୍ଯ୍ୟୁକ୍ତ ପ୍ରତୀକର ନିର୍ଦ୍ଦେଶ୍ୟ ସହିତ ସମାନ ହେବା ଆବଶ୍ୟକ । ତା'ପରେ ଆମେ କହିପାରୁ, "ପ୍ରତୀକ କ ର ଅର୍ଥ କ'ଣ ତାହା ମୁଁ ଜାଣେ; ତାହାର ଅର୍ଥ ପ୍ରତୀକ ଖ ର ଅର୍ଥ ସହିତ ସମାନ ।" (ଯେତେବେଳେ ଛାତ୍ରମାନେ କହନ୍ତି ଯେ 'ଶ୍ୱାନ'ର ଅର୍ଥ 'କୁକୁର', ସେତେବେଳେ ସେମାନେ କହିବା ଉଚିତ ଯେ 'ଶ୍ୱାନ' ଓ 'କୁକୁର' ଉଭୟର ଅର୍ଥ ଏକ) । ତେଣୁପରି, ବ୍ୟବହାର ନିମନ୍ତେ ଯଦି ଗୋଟିଏ

ପ୍ରତୀକ ଦୀର୍ଘ ବା ଅଡ଼ୁଆ ହୋଇଥାଏ କିମ୍ବା ତାହାକୁ ଭୁଲ୍ ଭାବେ ବୁଝିବାର ସମ୍ଭାବନା ଥାଏ, ତେବେ ଆମେ ତା' ପରିବର୍ତ୍ତେ ଏକ ନୂତନ ସୁବିଧାଜନକ ପ୍ରତୀକ ନେଇ ତାହାକୁ ବ୍ୟବହାର କରୁ । ଉଭୟ କ୍ଷେତ୍ରରେ ଯେଉଁ ଏକ ପ୍ରଣାଳୀ ଅର୍ଥାତ୍ **ସଙ୍କ୍ଷା** ଦିଆଯାଉଛି । ସଙ୍କ୍ଷାପ୍ରବିଧିର ସବିଶେଷ ଜ୍ଞାନ ଆଲୋଚନାରେ ପ୍ରାୟଶଃ ଆବଶ୍ୟକ ହୁଏ । ସୁତରାଂ ତାହାର ବିଶେଷ ଅଧ୍ୟୟନ କରିଯିବା ଦରକାର; ଏହି ବିଷୟଟି ପରବର୍ତ୍ତୀ ଷଷ୍ଠ ପରିଚ୍ଛେଦରେ ଆଲୋଚିତ ହେବ । ତାହାର ଭିତ୍ତି ପ୍ରସ୍ତର ପ୍ରତୀକପଦ୍ଧତିର ଦ୍ୱିତୀୟ ସୂତ୍ରରେ ସ୍ଥାପିତ ହୋଇଛି । ଏହା ହେଉଛି ସଙ୍କ୍ଷା ସୂତ୍ର—

**୨—ଯେଉଁ ପ୍ରତୀକଦ୍ୱୟ ମଧ୍ୟରୁ ଗୋଟିଏ ଅପରଟିର ପରିବର୍ତ୍ତେ ବ୍ୟବହୃତ ହୋଇପାରେ, ସେ ଦୁଇଟି ଦ୍ୱାରା ସେହି ଏକ ନିର୍ଦ୍ଦେଶ ପ୍ରତୀକାନ୍ୱିତ ।**

ଏହି ସୂତ୍ର ସାହାଯ୍ୟରେ ଦ୍ୱ୍ୟର୍ଥକ ପ୍ରତୀକ 'top' ପରିବର୍ତ୍ତେ ଆମେ ତାହାର ସମାର୍ଥକ 'mountain top' [ପର୍ବତ ଶିଖର] ବା 'Spinning top' [ଘୂର୍ଣ୍ଣନଶୀଳ ଲଟୁ] ପ୍ରତୀକ ବ୍ୟବହାର କରୁ ଏବଂ ଏତଦ୍ଦ୍ୱାରା ଦ୍ୱ୍ୟର୍ଥକତାର ବିଲୋପ ଘଟେ । କିନ୍ତୁ ଏହା ଏହି ସୂତ୍ର ବ୍ୟବହାରର ଏକମାତ୍ର ଉପକାରିତା ନୁହେଁ । ଏହି ସୂତ୍ରଟି ଏତେ ସରଳ ଯେ ଏହାର ଗୁରୁତ୍ୱ ଉପଲବ୍ଧି କରାଯାଏନାହିଁ । ଏହା ହେଉଛି ଗଣିତର ଜାମିନଦାର ସ୍ୱରୂପ । ଏହାର ପ୍ରୟୋଗ ଦ୍ୱାରା ଆମର ପ୍ରତୀକଗୁଡ଼ିକୁ ସୁଶୃଙ୍ଖଳିତ କରିବା ସମ୍ଭବପର ହୁଏ । (ଏଠାରେ ଏତଦ୍‌ପରିବର୍ତ୍ତେ ଆମେ "ଆମର ଚିନ୍ତା ସୁବ୍ୟବସ୍ଥିତ ହୁଏ"—ଏହି ଅଭିବ୍ୟକ୍ତିକୁ ବ୍ୟବହାର କରିପାରୁ) । ଉଦାହରଣ ସ୍ୱରୂପ, ଏହା ସୁସ୍ପଷ୍ଟ ଯେ 'ଇଂଲଣ୍ଡର ରାଜା' ଏବଂ 'ବକିଂହାମ ରାଜପ୍ରାସାଦର ମାଲିକ' ଏହି ପ୍ରତୀକଦ୍ୱୟର ନିର୍ଦ୍ଦେଶ୍ୟ ସମାନ । କିନ୍ତୁ ଏହି ପ୍ରତୀକଦ୍ୱୟର ନିର୍ଦ୍ଦେଶ ସମାନ ନୁହେଁ । ଏହି ଦୁଇଟି କ୍ଷେତ୍ରରେ ସମ୍ପୂର୍ଣ୍ଣ ଭିନ୍ନ ଭିନ୍ନ ମନସ୍ତାତ୍ତ୍ୱିକ ପ୍ରସଙ୍ଗ ନିହିତ । ସୁତରାଂ ଏହି ସୂତ୍ରଦ୍ୱାରା ଆବଶ୍ୟକ ହେଉଥିବା ଅର୍ଥରେ ଏ ଦୁଇଟି ପରସ୍ପର ପରିବର୍ତ୍ତେ ବ୍ୟବହାରୋପଯୋଗୀ ପ୍ରତୀକ ନୁହେଁ । ଯେଉଁ ପ୍ରତୀକଗୁଡ଼ିକ ପରସ୍ପର ପରିବର୍ତ୍ତେ ବ୍ୟବହାରୋପଯୋଗୀ, ତହିଁରୁ ଗୋଟିକୁ ଅନ୍ୟଟିର 'ସଙ୍କ୍ଷା ଦେବା' (୧) ପାଇଁ ବ୍ୟବହାର କରାଯାଇ ପାରେ ।

(୧) ପରବର୍ତ୍ତୀ ପରିଚ୍ଛେଦରେ ଆମେ ଦେଖିବା ଯେ ଏହି କଠୋର ନିୟମାନୁବଦ୍ଧ ସଙ୍କ୍ଷା ମୁଖ୍ୟତଃ ଅବୈଜ୍ଞାନିକ ପ୍ରତୀକ ପଦ୍ଧତିମାନଙ୍କ ଗଠନରେ କାର୍ଯ୍ୟକାରୀ ହୁଏ । ମୁକ୍ତ ଧରଣର ସଙ୍କ୍ଷା କ୍ଷେତ୍ରରେ ଦୁଇଟି ପ୍ରତୀକର କେବଳ ସେହି ଏକ ନିର୍ଦ୍ଦେଶ୍ୟ ରହିବା ଯଥେଷ୍ଟ । ଏ ପ୍ରକାର ସଙ୍କ୍ଷା ସାଧାରଣ ଆଲୋଚନାରେ ଅପରିହାର୍ଯ୍ୟ ।

ସେଗୁଡ଼ିକର କେବଳ ସେହି ଏକ ନିର୍ଦ୍ଦେଶ୍ୟ ନୁହେଁ, ସେହି ଏକ ନିର୍ଦ୍ଦେଶ ମଧ୍ୟ ଥାଏ । ପ୍ରଥାଗତଭାବେ ବୁଝାଯାଏ ଯେ ଏ ପ୍ରକାର ପ୍ରତୀକମାନଙ୍କ 'ଲକ୍ଷଣାର୍ଥ' ସମାନ । 'ଲକ୍ଷଣାର୍ଥ' ହେଉଛି ଏକ ଭ୍ରାନ୍ତିକାରକ ଓ ସଙ୍କଟଜନକ ପଦ । ଏହି ପଦର ଅନ୍ତରାଳରେ ଦୁଇଟି ସମ୍ପୂର୍ଣ୍ଣ ପୃଥକ୍ ପ୍ରଶ୍ନ, ଅର୍ଥାତ୍ ନିର୍ଦ୍ଦେଶର ପ୍ରୟୋଗ ସମ୍ବନ୍ଧୀୟ ପ୍ରଶ୍ନ ଓ ପ୍ରତୀକାନ୍ୱିତ-କରଣର ଯାଥାର୍ଥ୍ୟ ସମ୍ବନ୍ଧୀୟ ପ୍ରଶ୍ନ (ତୁଳନା କର-ପରିଶିଷ୍ଟ-ପରିଶିଷ୍ଟ ସୂଚିତ ପୃଷ୍ଠା) ଅଜ୍ଞାତସାରରେ ବ୍ୟାମିଶ୍ରିତ ହୋଇଯାଏ । ନବମ ପରିଚ୍ଛେଦରେ ଲକ୍ଷଣାର୍ଥ ସମ୍ବନ୍ଧରେ ଆହୁରି ଅଧିକ ଆଲୋଚନା କରାଯିବ ।

କିନ୍ତୁ ସୁସ୍ପଷ୍ଟ ଦ୍ୱ୍ୟର୍ଥକତାଠାରୁ ଅଧିକ ସଙ୍କଟଜନକ ନିର୍ବୋଧ-ଫାନ୍ଦ ଲୁଚିରହିଛି । ବେକନ୍ କହିଛନ୍ତି, "ଏକଥା ନିଶ୍ଚିତ ଯେ ଶବ୍ଦଗୁଡ଼ିକ ବୋଧଶକ୍ତି ଉପରେ ଟାର୍ଟାରର ଧନୁ ପଛକୁ ଶର ନିକ୍ଷେପ କଲାପରି ପ୍ରଭାବ ପକାଇ ବିଜ୍ଞରକୁ ସୁଦୃଢ଼ ଫାନ୍ଦରେ ଛନ୍ଦି ଦିଏ ଓ ତାହାକୁ ବିକୃତ କରିପକାଏ ।" ପ୍ରତିଜ୍ଞପ୍ତି ବୁଝାଯାଉଥିବା ଜଟିଳ ପ୍ରତୀକଗୁଡ଼ିକ ନିର୍ଦ୍ଦେଶର 'ସ୍ଥାନ ନିରୂପଣ' କରେ (ତୁଳନାକର—ପରବର୍ତ୍ତୀ ଷଷ୍ଠ ସୂତ୍ର) । ଏଗୁଡ଼ିକ ସଙ୍କୁଚିତ ବା ସମ୍ପ୍ରସାରିତ ହୋଇ ପାରେ । "ହ୍ୟାମଲେଟ୍ ପାଗଳ ହେଲେ"— ଏହା ଏକ ସଙ୍କୁଚିତ ପ୍ରତୀକ । ଆଲୋଚନାଯୋଗ୍ୟ ହେବା ପୂର୍ବରୁ ଏହାର ସଂପ୍ରସାରଣ ଆବଶ୍ୟକ । ଏଠାରେ ଯାହା ନିର୍ଦ୍ଦେଶିତ, ତନ୍ମଧ୍ୟେ ସଂପ୍ରସାରିତ ପ୍ରତୀକ ହୋଇପାରେ ଯେ "ନାଟକର ମୁଁ କରୁଥିବା ବ୍ୟାଖ୍ୟା ମୁତାବକ ହ୍ୟାମଲେଟ୍ ପାଗଳ ହେଲେ" ବା "ନାଟ୍ୟମଣ୍ଡପ ଉପରେ ହ୍ୟାମଲେଟ୍ ପାଗଳ ହେଲେ" । ଏହି ବିଷୟଟି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ, କାରଣ ସତ୍ୟ ଓ ମିଥ୍ୟାର ପାର୍ଥକ୍ୟ ସହିତ ଏହାର ସମ୍ପର୍କ ରହିଛି । ଏହା ପ୍ରତୀକପଦ୍ଧତିର ତୃତୀୟ ସୂତ୍ର ଆଡ଼କୁ ଅଗ୍ରସର କରାଇନିଏ । ତାହା ହେଉଛି ସଂପ୍ରସାରଣ ସୂତ୍ର ।

**୩—ଗୋଟିଏ ସଙ୍କୁଚିତ ପ୍ରତୀକର ନିର୍ଦ୍ଦେଶ୍ୟ ହେଉଛି ସେହି ପ୍ରତୀକର ସଂପ୍ରସାରିତ ଅବସ୍ଥାର ମଧ୍ୟ ନିର୍ଦ୍ଦେଶ୍ୟ ।**

ଏହି ସୂତ୍ର ଲଙ୍ଘନର ପରିଣତିକୁ ବେଳେ ବେଳେ ତତ୍ତ୍ୱଦର୍ଶନ ବୁଝାଯାଇଥାଏ; ଏକଥା ପ୍ରଦର୍ଶନ କରିବାକୁ ଆମେ ଧୀରେ ଧୀରେ ଅଗ୍ରସର ହେବା ।

ଏହି ସୂତ୍ରର ଏକ ସୁସ୍ପଷ୍ଟ ଫଳ ହେଉଛି, ଏକ ବିବାଦୀୟ ପ୍ରତୀକର ସମ୍ମୁଖୀନ ହେବା ମାତ୍ରେ ପ୍ରଥମ କରଣୀୟ ବିଷୟ ରୂପେ ତାହାକୁ ସଂପ୍ରସାରିତ କରିବା । ଯଦି ସମ୍ଭବପର ହୁଏ, ତେବେ ତାହାର ସମ୍ପୂର୍ଣ୍ଣ ସଂପ୍ରସାରିତ ଆକାର ଆମେ ପାଇବା ଦରକାର, ଅର୍ଥାତ୍ ତାହାର ଆମେ ସେହି ଆକାର ପାଇବା ଦରକାର, ଯାହା ପ୍ରତୀକାନ୍ୱିତ କରୁଥିବା ନିର୍ଦ୍ଦେଶ ଅନ୍ତରାଳରେ ଥିବା ସଙ୍କେତ-ପରିସ୍ଥିତିକୁ ପ୍ରଦର୍ଶନ କରି-

ଯାଇବ । ସମସ୍ତ ବୈଜ୍ଞାନିକ ଆଲୋଚନାରେ ଏହି ସଂପ୍ରସାରଣର ଦୃଷ୍ଟାନ୍ତ ବାରମ୍ବାର ସଙ୍ଘଟିତ ହୁଏ । ଏହାର ପୂର୍ବବର୍ତ୍ତୀ ପରିଚ୍ଛେଦରେ 'ଟେବୁଲ୍' ଏବଂ 'ଦେଖିବା'ର ସଂପ୍ରସାରଣ କରିବା ସୁଯୋଗ ଆମକୁ ମିଳିଥିଲି । ପରେ, 'ଅର୍ଥ'ର ଯଥାସମ୍ଭବ ସମସ୍ତ ଢଗରେ ସଂପ୍ରସାରଣ କରିବାକୁ ଆମେ ଚେଷ୍ଟା କରିବା । ଦୁର୍ଭାଗ୍ୟବଶତଃ, ଅର୍ଥିକରଣର କୌଣସି ସୁସଙ୍ଗତ ସିଦ୍ଧାନ୍ତର ଅବର୍ତ୍ତମାନରେ, ଯେଉଁ ସ୍ତରଗୁଡ଼ିକରୁ ନିର୍ଦ୍ଦେଶ ଦିଆଯାଇ-ଥାଏ, ସେଗୁଡ଼ିକର କୌଣସି କ୍ରମ ନିରୂପଣ ଏପର୍ଯ୍ୟନ୍ତ କରାଯାଇ ପାରିନାହିଁ । ନିର୍ଦ୍ଦେଶର ସ୍ତର ସମ୍ବନ୍ଧୀୟ ଧାରଣାଟି ସୁଦ୍ଧା ଏପର୍ଯ୍ୟନ୍ତ ଅସ୍ପଷ୍ଟ ରହିଛି । ତଥାପି ଦେଖାଯିବ ଯେ ଯେତେବେଳେ ଆମେ 'ମେରୁ ପ୍ରାଣୀ' ବୋଲି ନିର୍ଦ୍ଦେଶ ଦେବା ପରେ, ପୁଣି ସମ୍ଭବତଃ ତାହାର ପଦଚିହ୍ନର ଆହୁରି ଅଧିକ ଅଧ୍ୟୟନ କରି 'ସେହି ବରିଭୁଆଁ' (୧) ବୋଲି ନିର୍ଦ୍ଦେଶ ଦେଉ, ସେତେବେଳେ ଆମର ନିର୍ଦ୍ଦେଶ ସେହି ଏକ ନିର୍ଦ୍ଦେଶ୍ୟ ପ୍ରତି ରହିଛି, କିନ୍ତୁ ଅର୍ଥକରଣର ସ୍ତର ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣରୁ ଭିନ୍ନ ଭିନ୍ନ । ଏଠାରେ ନିହିତ ଅର୍ଥିକରଣର ପ୍ରଣାଳୀ ପ୍ରୟୋଗର ସଂଖ୍ୟା ତଥା ପ୍ରଣାଳୀମାନଙ୍କ ଜଟିଳତା ଉପରେ ସ୍ତର ଗୁଡ଼ିକର ପାର୍ଥକ୍ୟ ନିର୍ଭରଶୀଳ । ଉପର୍ଯ୍ୟୁକ୍ତ ପ୍ରକାରର ଅପେକ୍ଷାକୃତ ସରଳ କ୍ଷେତ୍ରରେ ସ୍ତର ନିରୂପଣ ସହଜ । ଅଧିକ ଜଟିଳ କ୍ଷେତ୍ରରେ ଅର୍ଥାତ୍ ଆମେ ଯଦି ଶାସନ, ପ୍ରଶଂସା, ଦେଶପ୍ରେମ, ବିଶ୍ୱାସ, ସୌନ୍ଦର୍ଯ୍ୟ, ଆବେଗ ଇତ୍ୟାଦି ବିଷୟରେ କହୁଥାନ୍ତି, ତେବେ ତାହା ସେତେ ସହଜ ନୁହେଁ । ସାଧାରଣ ଅନୁରକ୍ତିର ବିଷୟମାନଙ୍କ ଆମର ସମସ୍ତ ପ୍ରଥାଗତ ଆଲୋଚନା ଏହି ଦୃଷ୍ଟିରୁ ଅନିର୍ଦ୍ଦିଷ୍ଟ ସ୍ୱଭାବବିଶିଷ୍ଟ ହୋଇଥାଏ । ଏଠାରେ ବ୍ୟାଖ୍ୟାକରଣ ତଥା ଆମେ ପ୍ରତିକାନ୍ତ କରୁଥିବା ନିର୍ଦ୍ଦେଶର ସ୍ତରନିର୍ଣ୍ଣୟନ ମଧ୍ୟ କଷ୍ଟସାଧ୍ୟ । 'ନିର୍ଦ୍ଦେଶର ସ୍ତରମାନ' ଯାହା ପକ୍ଷେ ବିଶେଷ ବ୍ୟବହୃତ, ତାହା ପ୍ରଶିକ୍ଷଣରେ ନିୟୋଜିତ ସମସ୍ତ ବ୍ୟକ୍ତି ଜାଣନ୍ତି । ଏହି ବିଷୟରେ 'ଅଧିକ ସଂପୂର୍ଣ୍ଣ ବିଶ୍ଳେଷଣର ଆଶୁ ଅତ୍ୟାବଶ୍ୟକତା ରହିଛି । ଏ ଢଗରେ କିଛି ଆଲୋଚନା ପ୍ରୟାସ ଚତୁର୍ଥ ପରିଚ୍ଛେଦରେ କରାଯାଇଛି । କିନ୍ତୁ ଦୁଃଖର କଥା, ଯେଉଁ ବ୍ୟକ୍ତିମାନେ ନିଜର ବିଶ୍ଳେଷଣାତ୍ମକ ସାମର୍ଥ୍ୟ ହେତୁ ଏଥିରେ ସଫଳ ହେବାର ସର୍ବାଧିକ ସମ୍ଭବପରତା ରହିଛି, ଠିକ୍ ସେହିମାନେ ହିଁ ଏହି ସମସ୍ୟାଗୁଡ଼ିକ ଅବିକଳ ରୂପେ ବିଧିବଦ୍ଧ ନହେବା ପର୍ଯ୍ୟନ୍ତ ତାହାର ଅନୁଧାନ କରିବାରେ ଏତେ ବିମୁଖ ରହିଛନ୍ତି ।

(୧) କେତେକ ବିଜ୍ଞାନର, ଯଥା—ଜୀବବିଜ୍ଞାନ, ଭୂ ବିଜ୍ଞାନ, ଉଦ୍ଭିଦବିଜ୍ଞାନ ଇତ୍ୟାଦିର, କେତେକ ସ୍ତରରେ ଜାତି-ଉପଜାତି ରୂପେ ସଜ୍ଜୀକରଣ ପ୍ରବିଧିଦ୍ୱାରା ଏହି ଉଦ୍ଦେଶ୍ୟ ଚମତ୍କାରଭାବେ ସାଧିତ ହୋଇଥାଏ । କିନ୍ତୁ ତତ୍ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ସ୍ତରରେ କିମ୍ବା ଏ ପ୍ରକାର ବିଜ୍ଞାନମାନଙ୍କ ବହିର୍ଭୂତ କ୍ଷେତ୍ରରେ ଏହି ପ୍ରବିଧି ବିଶେଷ କାର୍ଯ୍ୟକାରୀ ହୁଏନାହିଁ ।

ଇତ୍ୟବସରରେ, ସାଧାରଣ ଦୃଷ୍ଟିରୁ ପ୍ରତୀକମୂଳକ ଉପକରଣ ଏପରି ବିଶୃଙ୍ଖଳ ଅବସ୍ଥାରେ ରହିଛି ଯେ ସନ୍ଦେହଜନକ ପ୍ରତୀକମାନଙ୍କ ବ୍ୟାଖ୍ୟା ଉଦ୍ଦେଶ୍ୟରେ ଯାହା ଯୋଗାଇ ଦିଆଯାଏ, ଅଧିକାଂଶ କ୍ଷେତ୍ରରେ ତାହା ପ୍ରତୀକଟିର ସଂପ୍ରସାରଣ କରିବା ପରିବର୍ତ୍ତେ କେବଳ ପ୍ରତୀକମାନଙ୍କ ସଂଖ୍ୟା ବୃଦ୍ଧି ହିଁ କରିଥାଏ । ଏତଦ୍ଦ୍ୱାରା ପ୍ରତୀକଟିର ସଙ୍କୁଚିତ ଅବସ୍ଥାରେ ବିଭ୍ରାନ୍ତି ଅପେକ୍ଷା ଆହୁରି ଅଧିକ ବିଭ୍ରାନ୍ତିର ସୃଷ୍ଟି ହୁଏ । ନିମ୍ନଲିଖିତ ଅନୁଚ୍ଛେଦରେ ଏହାର ଦୃଷ୍ଟାନ୍ତ ଦିଆଯାଉଛି । ଉଭୟ ସଂକୋଚନ ଏବଂ ସଂପ୍ରସାରଣା-ତ୍ମକର ପରିଣତି ସମାନ; ଏତଦ୍ଦ୍ୱାରା ଜଗତରେ କେତେକ କପୋଳକଳ୍ପିତ ସତ୍ତା ପ୍ରବେଶ କରାଇ ଦିଆଯାଏ; ପ୍ରତୀକାତ୍ମକ ସାଜସରଂଜାମକୁ ନିର୍ଦ୍ଦେଶ୍ୟ ବୋଲି ଭୁଲ୍ କରାଯାଏ । ଏହାର ଏକମାତ୍ର ଦୀର୍ଘସ୍ଥାୟୀ ପ୍ରତିକାର ହେଉଛି, ଯେଉଁ ନିର୍ଦ୍ଦେଶ ସନ୍ଦେହାତ୍ମକଭାବେ ପ୍ରତୀକାନ୍ୱିତ (୧) ହୋଇଛି, ତତ୍‌ସଂପୃକ୍ତ ସଙ୍କେତ ପରିସ୍ଥିତିର ଗବେଷଣାଦ୍ୱାରା ଯଥୋପଯୁକ୍ତ ସଂପ୍ରସାରଣର ଆବିଷ୍କାର କରିବା ।

ବସ୍ତୁତଃ ଏତିକି ଅନାୟାସରେ ସ୍ୱୀକାର କରାଯାଇପାରେ ଯେ ଉପଯୁକ୍ତ ସଂପ୍ରସାରଣ ଆବିଷ୍କୃତ ନହେବା ପର୍ଯ୍ୟନ୍ତ ପ୍ରତୀକର ସତ୍ୟତା କିମ୍ବା ତାହାର ଅନ୍ୟାନ୍ୟ ପ୍ରତୀକ ସହିତ ସମ୍ବନ୍ଧ ପରି ବିଷୟରେ ପ୍ରଶ୍ନୋତ୍ଥାପନ କରିବା ବୃଥା । ଏହାର କାରଣ ହେଉଛି, ଏକ ସଙ୍କୁଚିତ ପ୍ରତୀକ ତାହାର ନିର୍ଦ୍ଦେଶ୍ୟର 'ସ୍ଥାନ' ସୁସ୍ପଷ୍ଟ କରେନାହିଁ ଏବଂ ସେଥି ହେତୁରୁ ତାହା ଉପରେ ଗବେଷଣା କରାଯାଇନପାରେ । ସତ୍ୟ ଏବଂ ମିଥ୍ୟା ପ୍ରତୀକ ମଧ୍ୟରେ ପାର୍ଥକ୍ୟ ହେଉଛି ଏପରି ଏକ ବିଷୟ ଯାହାର ଫଳପ୍ରଦ ଆଲୋଚନା ସାମାନ୍ୟ ପଦମାନଙ୍କ କ୍ଷେତ୍ରରେ, ଅର୍ଥାତ୍ ସଂକୋଚନ ବା ଭାଷାଗତ ସଂକ୍ଷିପ୍ତୀକରଣ ଦ୍ୱାରା କରାଯାଇନପାରେ । ପ୍ରତ୍ୟେକ କ୍ଷେତ୍ରରେ ଏହା ବିଶେଷଜ୍ଞଙ୍କର ଦାୟିତ୍ୱରେ ଛାଡ଼ି-ଦେବାକୁ ପଡ଼େ । ସନ୍ନିହିତ ବାସ୍ତବ ସଙ୍କେତ ପରିସ୍ଥିତି ସହିତ ସେ ସୁପରିଚିତ ହୋଇଥିବାରୁ ତାହାର ଅନୁରକ୍ତିର ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ପରିସର ମଧ୍ୟରେ କେଉଁ ପ୍ରତୀକ-ଗୁଡ଼ିକ ସତ୍ୟ ଓ କେଉଁଗୁଡ଼ିକ ମିଥ୍ୟା, ତାହା ନିର୍ଦ୍ଧାରଣ କରିପାରେ । ସଙ୍କୁଚିତ ପ୍ରତୀକମାନଙ୍କ କ୍ଷେତ୍ରରେ ଏ ପ୍ରକାର ଆଲୋଚନା ହେତୁରୁ ହିଁ ସତ୍ୟର ସମସ୍ୟା ବୋଲି କୁହାଯାଉଥିବା ବିଷୟ ଉତ୍ଥାପିତ ହୋଇଛି । ଯଥୋପଯୁକ୍ତତାର ପ୍ରତ୍ୟେକ କ୍ଷେତ୍ରର ବିଚାର ତାହାର ଯୋଗ୍ୟତା ଦୃଷ୍ଟିରୁ କରିବା ପରିବର୍ତ୍ତେ, ଜ୍ଞାନ ମୀମାଂସାବିତ୍‌ମାନେ ସମସ୍ତ ସତ୍ୟ ପ୍ରତୀକକୁ ବୁଝାଇବା ନିମନ୍ତେ ଗୋଟିଏ ଶବ୍ଦକୁ ସୁବିଧାଜନକ ଓ ସଂକ୍ଷେପରେ ଅଭିବ୍ୟକ୍ତ ଏକ ସଙ୍କେତ ସ୍ୱରୂପ ବ୍ୟବହାର କରିପାରୁ ଥିବାରୁ, ସେମାନେ ଧରି ନେଇଛନ୍ତି

(୧) ସରଳ କିନ୍ତୁ ଶିଥିଳ ଭାଷାରେ କହିଲେ, କ'ଣ କୁହାଯାଇଛି ଆମେ କେବଳ ସେତିକିବେଳେ ହିଁ ଜାଣୁ, ଯେତେବେଳେ ତାହା କାହିଁକି କୁହାଯାଇଛି ଆମେ ଜାଣୁ । ଅବଶ୍ୟ ଏହି 'କାହିଁକି'ରେ ଆମେ ଉଦ୍ଦେଶ୍ୟ ଅନ୍ତର୍ଭୁକ୍ତ କରିବା ଉଚିତ ନୁହେଁ ।

ଯେ ସତ୍ୟ ଓ ମିଥ୍ୟା ପ୍ରତିଜ୍ଞପ୍ତିମାନଙ୍କ ଅନ୍ତରଙ୍ଗ ଆଙ୍ଗିକ ଗଠନ ସମ୍ପର୍କରେ ପ୍ରଶ୍ନ ଉଠୁଛି ଗବେଷଣାର ବିଷୟ ରହିଥିବା ସୁନିଶ୍ଚିତ । କୌଣସି ମତ୍ୟ ପ୍ରତିଜ୍ଞପ୍ତିକୁ ସତ୍ୟ ବୋଲି ଚିହ୍ନିବାରେ କୌଣସି ସମସ୍ୟା ଉଠୁନାହିଁ । ଏଠାରେ ଏକ କପୋଳକଳ୍ପିତ ସମସ୍ୟା ଉପସ୍ଥାପନର ଆଦୌ ଆବଶ୍ୟକତା ନାହିଁ । ଲୋହିତ ବସ୍ତୁଗୁଡ଼ିକ ମଧ୍ୟରୁ ପ୍ରତ୍ୟେକେ ଲୋହିତ ହୋଇଥିବାରୁ ଏକ ସାମାନ୍ୟ ଲୋହିତତ୍ୱ ରହିଛି ବୋଲି ଗ୍ରହଣ କରିନେବା ଯେପରି, ଏହା ସେହିପରି ଏକ ଅନାବଶ୍ୟକ ଧାରଣା । ଜାତିଗୁଡ଼ିକ ପ୍ରତୀକାତ୍ମକ କଳ୍ପନା ବୋଲି ଏବେ ସ୍ୱୀକୃତ ହେଉଛି । ସାମାନ୍ୟଗୁଡ଼ିକ ମଧ୍ୟ ଅନୁରୂପ ସୁବିଧାଜନକ କଳ୍ପନା ବୋଲି ଯେତେବେଳେ ସ୍ୱୀକୃତ ହେବ, କେବଳ ସେତିକିବେଳେ ହିଁ ତର୍କତତ୍ତ୍ୱବିଦ୍‌ଙ୍କ ବିଚାର ତର୍କସମ୍ମତ ହେବ । ଯେତେବେଳେ ଶୁଦ୍ଧ ସତ୍ତ୍ୱାଜଗତ ନିର୍ଦ୍ଦିଷ୍ଟରୂପେ ତାହାର ପୂର୍ବ ସ୍ୱୀକୃତ ଅଧିବାସୀଙ୍କୁ ହରାଇବ; ଏହି ସତ୍ତ୍ୱମାନଙ୍କ ବ୍ୟାଖ୍ୟାପ୍ରସ୍ତାବ କ୍ରମରେ ହିଁ ସାମାନ୍ୟ ତତ୍ତ୍ୱର ଉଦ୍ଭବ ହୋଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହି ଶୁଷ୍କ ମୂଳ ପ୍ରରୂପମାନଙ୍କ ତିରୋଧାନ ଫଳରେ ଆମର ପ୍ରତୀକାତ୍ମକ ସାଜସରଞ୍ଜାମ (ସାଦୃଶ୍ୟ ଇତ୍ୟାଦି) ଯୁଗପତ୍ ଅଧିକ ମୂଲ୍ୟବାନ ଓ ଅଧିକ ସ୍ପଷ୍ଟାର୍ଥକ ହେବ ।

ଏହି ପ୍ରତୀକାତ୍ମକ ସୁବିଧାମାନଙ୍କ ବ୍ୟାଖ୍ୟା ସ୍ୱରୂପ କେତେକ ବିଚାର ଏଠାରେ ଯୋଗ କରାଯାଇପାରେ । ଆମର ଇନ୍ଦ୍ରିୟଗୁଡ଼ିକରେ ପରିବର୍ତ୍ତନ ଏବଂ ଏହି ସଙ୍କେତମାନଙ୍କ ବ୍ୟାଖ୍ୟା ମାଧ୍ୟମରେ ଆମେ ଯେଉଁଗୁଡ଼ିକୁ ବସ୍ତୁ ବୋଲି ଜାଣିବୁ, ସେଗୁଡ଼ିକ ସର୍ବଦା ସମଷ୍ଟି ଅଥବା ସମଷ୍ଟିର ଅଂଶ । ଯେଉଁ ଅତିକ୍ଷୁଦ୍ର ଦାଗକୁ ଆଖିର ବର୍ଣ୍ଣଗ୍ରାହକ ସରଂଜାମରେ କେତେକ ଗଣ୍ଡଗୋଳ ଘଟୁଥିବା କାରଣରୁ ଆମେ ଏକ ଅସ୍ପଷ୍ଟ ତାରକା ବୋଲି କହୁ, ତାହା ସୁଦ୍ଧା ଏକ ଅନ୍ଧକାର କ୍ଷେତ୍ର ପରିବେଷ୍ଟିତ । ଏ ପ୍ରକାର ଏକ ସଙ୍କେତରେ ଯାହା ଆଲୋଚ୍ୟ ବିଷୟ ରହିଛି, ତାହା ହେଉଛି ଏହି ସଂସୃଷ୍ଟି ଏବଂ ତତ୍ସମ୍ବନ୍ଧୀୟ ଆମର ବକ୍ତବ୍ୟ ଭିନ୍ନ ଭିନ୍ନ ହୋଇପାରେ । ଆମେ କହିପାରୁ ଯେ "ଦାଗଟି କ୍ଷେତ୍ରରେ ଅବସ୍ଥାପିତ" ବା "କ୍ଷେତ୍ରଦ୍ୱାରା ପରିବେଷ୍ଟିତ" ବା "କ୍ଷେତ୍ରର ଅଂଶ" ବା "କ୍ଷେତ୍ର ସହିତ ଆବଦ୍ଧ ହେବା ସମ୍ବନ୍ଧରେ ଅନ୍ୱିତ" । ଆମେ ଏହା ମଧ୍ୟ କହି ପାରୁ ଯେ "ଏହା, ଯାହାର ଦାଗ ହେବା ଗୁଣ ରହିଛି, ଓ ତାହା, ଯାହାର କ୍ଷେତ୍ର ହେବା ଗୁଣ ରହିଛି, ଏ ଦୁଇଟି ଅନ୍ତର୍ବର୍ତ୍ତୀ ହେବା ସମ୍ବନ୍ଧ ସଂଶ୍ଲିଷ୍ଟ ।" ଏଗୁଡ଼ିକ ବିକଳ୍ପ ଅଭିବ୍ୟକ୍ତି ଏବଂ ସମପରିମାଣରେ ସତ୍ୟ । 'କ୍ଷେତ୍ରରେ ଦାଗ' ହେଉଛି ଏକ ନାମ; ସେହିପରି 'ଦାଗ' ମଧ୍ୟ ଗୋଟିଏ ନାମ । କିନ୍ତୁ ଅନ୍ୟାନ୍ୟ ଘଟଣାରେ, ଏହି ଏକ ନାମଗୁଡ଼ିକ ଯଥାର୍ଥଭାବେ ପୁନଃ ପୁନଃ ପ୍ରୟୋଗ ହୋଇଥିବା ପରିସ୍ଥିତିମାନଙ୍କ ନିର୍ଦ୍ଦେଶଗୁଡ଼ିକୁ ଆମେ ପ୍ରତୀକାନ୍ୱିତ କରିବାକୁ ଚାହୁଁ । ଆମ ପ୍ରତୀକ ଉପାଦାନରେ ମିତବ୍ୟୟିତା ରକ୍ଷା କରାଯିବା ଆବଶ୍ୟକ । ଆମକୁ ସେଗୁଡ଼ିକୁ ବାରଂବାର ପ୍ରୟୋଗ କରିବାକୁ ପଡ଼ିବ । ପୁଣି

ଏହି କାର୍ଯ୍ୟ ସୁସଂଗତଭାବେ କରିବାକୁ ହେବ, ନଚେତ୍ ଭବବନ୍ଧନମୟ ବ୍ୟାହତ ହେବ । ଏବେ ମନେ କରାଯାଉ; 'ଏହି ଦାଗ'—ନାମଟି ପରିବର୍ତ୍ତେ ଆମେ ପରିବର୍ତ୍ତିତ ପ୍ରଶ୍ନକ ସଂକଳନ 'ଏହା, ଯାହାର ଦାଗ ହେବା ଗୁଣ ରହିଛି'—ଏହି ଅଭିବ୍ୟକ୍ତିକୁ ବ୍ୟବହାର କରୁ, ତେବେ ଆମର ମନେ କରିବାକୁ ପ୍ରଲୋଭନ ଜାତ ହେବ ଯେ ଭିନ୍ନ ଭିନ୍ନ ଘଟଣାରେ 'ଏହି ଗୁଡ଼ିକ' ଭିନ୍ନ ଭିନ୍ନ ନିର୍ଦ୍ଦେଶ୍ୟ ପରିବର୍ତ୍ତେ ବ୍ୟବହୃତ; କିନ୍ତୁ 'ଦାଗ ହେବା ଗୁଣ' ଏକ ଏବଂ ସେହି ଏକଗୁଣ ପରିବର୍ତ୍ତେ ବ୍ୟବହୃତ ।

ଏହିପରିଭାବେ ସାମାନ୍ୟ 'ଗୁଣମାନ' ସୃଷ୍ଟ ହୋଇଛି । ଭାଷାଗତ ମାଧ୍ୟମର ଅପରିବର୍ତ୍ତନ ଶକ୍ତି ହେତୁ ଏହି ଅପଚ୍ଛାୟାଗୁଡ଼ିକ ଉତ୍ପନ୍ନ ରହିଛି । ଏଗୁଡ଼ିକୁ ବିଶ୍ୱବ୍ରହ୍ମାଣ୍ଡର ବସ୍ତୁସାମଗ୍ରୀର ଅଂଶ ରୂପେ ଗ୍ରହଣ କରାଯିବା ଅନୁଚିତ । ଏଗୁଡ଼ିକ ହେଉଛି କଥନ ଉପାଦାନରେ ମିତବ୍ୟୟିତା ରକ୍ଷା କରିବାକୁ ଆମକୁ ସମର୍ଥ କରୁଥିବା ଦରକାରୀ ଉପକରଣ ମାତ୍ର । ସାମାନ୍ୟ 'ସମ୍ବନ୍ଧମାନ'ଙ୍କ ସୃଷ୍ଟି ମଧ୍ୟ ଠିକ୍ ଏହିପରିଭାବେ ହୋଇଥାଏ ଏବଂ ଏଗୁଡ଼ିକରେ ମଧ୍ୟ ଅନୁରୂପ ପ୍ରଲୋଭନ ଜାତ ହୁଏ । ଏଗୁଡ଼ିକୁ ମଧ୍ୟ ଅନୁରୂପଭାବେ ପ୍ରତୀକାତ୍ମକ ସୁବିଧା ବୋଲି ଗ୍ରହଣ କରାଯାଇପାରେ । 'ସାଦୃଶ୍ୟ' ଏବଂ 'ବୈସାଦୃଶ୍ୟ'ର ଦାବୀକୁ ବିଶୁଦ୍ଧ ପ୍ରତୀକାତ୍ମକ ମୁକ୍ତ ହେତୁରୁ (ତୁଳନାକର—ରସେଲ, **ସମ୍ ପ୍ରୋବ୍ଲେମ୍ସ ଅଫ୍ ଫିଲସଫି,** ପୃ ୯୫୦) ଅନେକ ସମସ୍ୟାରେ ସ୍ୱତନ୍ତ୍ର ଧରଣର ବୋଲି ମନେ କରାଯାଇଥାଏ; କିନ୍ତୁ ଏହା କୌଣସିଭାବେ ଭିନ୍ନ ନୁହେଁ ।

ସମସ୍ତ କ୍ଷେତ୍ରରେ, ଏପରିକି ସାଦୃଶ୍ୟ କ୍ଷେତ୍ରରେ ସୁଦ୍ଧା, ପ୍ରତୀକମାନଙ୍କ ସୁସଙ୍ଗତ ବ୍ୟବହାରର ବିବରଣୀ ଦେବା ନିମନ୍ତେ ଅଣସ୍ଥିତିଶୀଳ ସତ୍ତ୍ୱମାନଙ୍କ ଉଦ୍ଭାବନ ଏକ ଅବୈଧ ପ୍ରଣାଳୀ । କେବଳ **ପ୍ରତୀକାତ୍ମକ** ପ୍ରୟୋଜନୀୟତାରୁ (୧) ଉଦ୍ଭୂତ ସାକ୍ଷ୍ୟ

---

(୧) ବ୍ୟାକରଣଗତ ଆବଶ୍ୟକତା । ଏହା ଆମକୁ ବିଚଳିତ କରି ପକାଇବା ପରି ଏକ ଘଟଣା ହୋଇପାରେ; କିନ୍ତୁ ମନେ ରଖିବା ଆବଶ୍ୟକ ଯେ ଗୋଟିଏ ବ୍ୟାକରଣ ଅର୍ଥାତ୍ ପ୍ରତୀକ ପଦ୍ଧତିର ଏକ ସଂରଚନା ଜଗତର ସଂରଚନାର ଏକ ପ୍ରତିଫଳନ ହେବା ଦୂରେ ଥାଉ, ଜଗତର ଯେ କୌଣସି ଗୁହୀତ ସଂରଚନା ବ୍ୟବହୃତ ବ୍ୟାକରଣର ଏକ ପ୍ରତିଫଳନ ହେବା ଅଧିକ ସମ୍ଭବ । ବହୁ ପ୍ରକାର ସମ୍ଭବପର ବ୍ୟାକରଣ ରହିଛି ଏବଂ ସେଗୁଡ଼ିକର ପାର୍ଥକ୍ୟ ମୌଳିକ । ଯଦି ଏହି ବ୍ୟାକରଣଗୁଡ଼ିକ କିଛି ପ୍ରତିଫଳିତ କରୁଥାନ୍ତି, ତେବେ ସେଗୁଡ଼ିକର ଅଭିବୃଦ୍ଧିମାନଙ୍କରୁ ମନେ ହୁଏ ଯେ ଯାହା ସେଗୁଡ଼ିକରେ

ପ୍ରମାଣ ବ୍ୟତୀତ ଅନ୍ୟାନ୍ୟ ସାକ୍ଷ୍ୟ ପ୍ରମାଣ ଯଦି ଏଥି ପାଇଁ ରହିଥାନ୍ତା, ତେବେ ତାହା ଏକ ଭିନ୍ନ ବ୍ୟାପାର ହୋଇଥାନ୍ତା । କିନ୍ତୁ ଏଠାରେ ବ୍ୟାପାରଟି ଯେପରି, ଏହି ସତ୍ତ୍ୱମାନଙ୍କ ସ୍ଥାନ ମନୋବିଜ୍ଞାନର କାଳ୍ପିବା 'ଶକ୍ତି'ର ସ୍ଥାନ ତୁଲ୍ୟ । ଜ୍ଞାନର ସଂଘଟନରୁ ଯେପରି ଏକ କାଣିବା ଶକ୍ତିର ସ୍ୱତନ୍ତ୍ର ଅସ୍ତିତ୍ୱ ସ୍ୱୀକାର କରିବାକୁ ଆମେ ବାଧ୍ୟ ନୋହୁଁ, ସେହିପରି ସଦୃଶ ଘଟଣାର ସଂଘଟନରୁ ଆମେ ଏକ ସାମାନ୍ୟ 'ସାଦୃଶ୍ୟ'ର ସ୍ଥିତି ସ୍ୱୀକାର କରିବାକୁ ବାଧ୍ୟ ନୋହୁ । ଆମେ କେବଳ ଏତିକି ସ୍ୱୀକାର କରିବାକୁ ବାଧ୍ୟ ଯେ ସମପ୍ରକାର ଘଟଣା ସୁନିଶ୍ଚିତ ରୂପେ ଘଟିଥାଏ । ବସ୍ତୁଗୁଡ଼ିକ ପରସ୍ପର ସଦୃଶ—ଏହା ଏକ ସ୍ୱାଭାବିକ ଜ୍ଞାନ । ପ୍ରତୀକାତ୍ମକକରଣରେ ମିତବ୍ୟୟିତା ଆଚରଣରୁ ଫାଇଦା ଉଠାଇ ଏହି ଜ୍ଞାନକୁ ତାତ୍ତ୍ୱିକ ଜ୍ଞାନର ଭିତ୍ତିଭୂମି କରିପକାଇବା କିମ୍ବା ଏହାକୁ ବିଶୁଦ୍ଧ ସତ୍ତ୍ୱମାନଙ୍କ ଅନ୍ୟ ଏକ ଜଗତ, ଯେଉଁଠାରେ ସତ୍ତ୍ୱମାନଙ୍କ 'ବର୍ତ୍ତିତା' ଥାଏ, କିନ୍ତୁ ସ୍ଥିତି ନଥାଏ, ତାହାର ପ୍ରମାଣରୂପେ ଗ୍ରହଣ କରିବା ସପକ୍ଷରେ କୌଣସି ଯୁକ୍ତି ରହି ନ ପାରେ । ଯେଉଁ ଯୁକ୍ତି ଏକ ପ୍ରତୀକ ପଦ୍ଧତିର ଆଚରଣ ଉପରେ ହିଁ କେବଳ ପ୍ରତିଷ୍ଠିତ, ତାହାକୁ

---

ପ୍ରତିଫଳିତ ହୁଏ, ତାହା ହେଉଛି ଯେଉଁ ମାନବ ସଂପ୍ରଦାୟମାନଙ୍କରେ ସେଗୁଡ଼ିକ ରଚିତ, ତଦନ୍ତର୍ଗତ ବ୍ୟକ୍ତିବର୍ଗଙ୍କ ଆଦ୍ୟ ଅନୁଭୂତିଗୁଡ଼ିକର ବୈଶିଷ୍ଟ୍ୟ, ସେମାନଙ୍କ ପ୍ରଭାବଶାଳୀ ଅନୁରକ୍ତି, ସେମାନଙ୍କ ସର୍ଫଲ, ଅନୁଷ୍ଠାନ ଏବଂ ସମ୍ଭବତଃ ସେମାନଙ୍କ କୈନ୍ଦ୍ରିକ ତଂନ୍ତ୍ରିକାତନ୍ତ୍ରର ସଂରଚନା । ଯଦିଓ ଏହା ସତ୍ୟ ଯେ ଏକ ବ୍ୟାକରଣରେ ଗୋଟିଏ ଦତ୍ତ ସଂପ୍ରଦାୟର ଆବଶ୍ୟକତା ଓ ଚିନ୍ତାଧାରା ପ୍ରତିଫଳିତ ହୋଇପାରେ ଏବଂ ଏହି ଆବଶ୍ୟକତାଗୁଡ଼ିକରେ ସୌସାଦୃଶ୍ୟ ରହିଥିବାରୁ ସମସ୍ତ ଆଦିମ ଓ ଅସଂବୃଦ୍ଧ ଭାଷାର ଏକ ସାଧାରଣ ସଂରଚନା ମଧ୍ୟ ଥାଇପାରେ, ତଥାପି ଏଥିରୁ ନିଃସୃତ ନୁହେଁ (ଯଦିଓ ଏହା ସମ୍ଭବପର) ଯେ ବିଜ୍ଞାନର ଆବଶ୍ୟକତା ପୂରଣ କରିବା ନିମନ୍ତେ ସର୍ବାଧିକ ଉପଯୁକ୍ତ ସୂକ୍ଷ୍ମପାର୍ଥକ୍ୟସମ୍ବଳିତ ଭାଷାରେ ସେହି ସଂରଚନାର କୌଣସି ନା କୌଣସି ଅଂଶ ରହିବ । ପୁଣି ଏହା ମଧ୍ୟ ନିଃସୃତ ନୁହେଁ ଯେ ସେହିଭାଷାର ସଂରଚନା ଜଗତର ସଂରଚନା ସହିତ ସାକ୍ଷାତ୍‌ଭାବେ ସଂବାଦୀ ହେବ ! ଏହା ଏହିପରି ହିଁ **ନିଶ୍ଚୟ** ହେବ ବୋଲି ମନେ କରିବା ଦ୍ୱାରା ନିର୍ଦ୍ଦେଶର ଅନ୍ତର୍ବର୍ତ୍ତିତାରେ ଚିନ୍ତା ଓ ବସ୍ତୁର ସମ୍ବନ୍ଧ ଯେ ପରୋକ୍ଷ, ତାହା ଆମେ ବିସ୍ମୃତ ହୋଇ ଯାଉଛୁ । ପରିଶିଷ୍ଟ-କ ରେ ବ୍ୟାକରଣ ସମ୍ବନ୍ଧୀୟ ଆଲୋଚନା କରାଯାଇଛି । ସେଠାରେ ଏହି ବିଷୟମାନଙ୍କ ଆହୁରି ଅଧିକ ବିସ୍ତାର କରାଯାଇଛି ।

ଜଗତ ସମ୍ବନ୍ଧରେ ପ୍ରୟୋଗ (୧) କଲେ, ତାହା କଦାପି ବୈଧ ହୋଇନପାରେ ।

(୧) 'ସାମାନ୍ୟ ଗୁଡ଼ିକ' ବିରୁଦ୍ଧରେ ଉପସ୍ଥାପିତ ଏହି ଯୁକ୍ତି ସହିତ କିଙ୍ଗ୍‌ସ କଲେଜ, କେମ୍ବ୍ରିଜର ସ୍ୱର୍ଗତ F. P. Ramsayଙ୍କ ଗୃହୀତ ମତ ( Mind, ଅକ୍ଟୋବର ୧୯୨୫ ପୃ ୪୦୪-୫)ର ତୁଳନା ଏକ ଚିତ୍ତାକର୍ଷକ ବିଷୟ ହେବ । Ramsay କହନ୍ତି 'ସକ୍ରେଟିସ୍ ବିଜ୍ଞ'—ପ୍ରତିଜ୍ଞପ୍ତିରେ ସକ୍ରେଟିସ୍ ହେଉଛନ୍ତି ଉଦ୍ଦେଶ୍ୟ ଓ ବିଜ୍ଞତା ହେଉଛି ବିଧେୟ । କିନ୍ତୁ ମନେକର, ଆମେ ପ୍ରତିଜ୍ଞପ୍ତିଟିକୁ ବୁଲାଇ ଦେଇ କହୁଁ, 'ବିଜ୍ଞତା ସକ୍ରେଟିସଙ୍କ ଗୋଟିଏ ଗୁଣ', ତେବେ ଆଗରୁ ବିଧେୟ ଥିବା ବିଜ୍ଞତା ହେଉଛି ଏବେ ଉଦ୍ଦେଶ୍ୟ । ଦର୍ଶନରେ କୌଣସି ବିଷୟ ଯେତେ ସୁସ୍ପଷ୍ଟ ହୋଇପାରେ, ଏହା ମୋତେ ସେତେ ସୁସ୍ପଷ୍ଟ ମନେ ହେଉଛି ଯେ 'ସକ୍ରେଟିସ ବିଜ୍ଞ' ଓ 'ବିଜ୍ଞତା ସକ୍ରେଟିସ୍‌ଙ୍କ ଗୋଟିଏ ଗୁଣ'—ଏହି ବାକ୍ୟ ଦୁଇଟି ସେହି ଏକ ଘଟଣାର ହିଁ ବିବୃତି·····ଅବଶ୍ୟ, ଏ ଦୁଇଟି ସେହି ଏକ ବାକ୍ୟ ନୁହନ୍ତି, କିନ୍ତୁ ଏ ଦୁଇଟିର ଅର୍ଥ ଏକ । ଏ ଦୁଇଟି ହେଉଛି ସେହି ଏକ ଅର୍ଥଯୁକ୍ତ ଭିନ୍ନ ଭିନ୍ନ ଦୁଇଟି ଭାଷାର ଠିକ୍ ଦୁଇଟି ବାକ୍ୟ ତୁଲ୍ୟ । ଆମେ କେଉଁ ବାକ୍ୟଟି ବ୍ୟବହାର କରିବା, ତାହା ହେଉଛି ଏକ ସାହିତ୍ୟିକ ଶୈଳୀଗତ ବ୍ୟାପାର, ଅଥବା ଯେଉଁ ଦୃଷ୍ଟିକୋଣରୁ ଆମେ ଘଟଣାଟିକୁ ଦେଖୁଛୁ, ତତ୍‌ସମ୍ବନ୍ଧୀୟ ଏକ ବ୍ୟାପାର ।·····ସକ୍ରେଟିସ୍ ଏବଂ ବିଜ୍ଞତାର ତାର୍କିକ ସ୍ୱଭାବ ସହିତ ଏହାର କୌଣସି ସମ୍ବନ୍ଧ ନାହିଁ । ଏହା ସମ୍ପୂର୍ଣ୍ଣରୂପେ ବୈୟାକରଣମାନଙ୍କ ଅନୁଚିନ୍ତାର ଏକ ବିଷୟ ।

Mr. Ramsay ଦାବି କରନ୍ତି ଯେ "ଉପର୍ଯ୍ୟୁକ୍ତ ଯୁକ୍ତି ସାମାନ୍ୟ ଓ ବିଶେଷ ମଧ୍ୟରେ ପାର୍ଥକ୍ୟ ରକ୍ଷାର ସାମଗ୍ରିକ ଭିତ୍ତି ଉପରେ ସନ୍ଦେହର ସୃଷ୍ଟି କରୁଛି ।" ଆହୁରି ସେ "ଯୁକ୍ତି ବାଢ଼ିଛନ୍ତି ଯେ Mr. Russellଙ୍କ ସମେତ ପ୍ରାୟ ସମସ୍ତ ଦାର୍ଶନିକ ଯେପରି ଭାବେ ଭାଷା ଦ୍ୱାରା ପ୍ରତାରିତ ହୋଇଛନ୍ତି, ତାହାର ପରିଣାମ ସୁଦୂର ପ୍ରସାରୀ ।" ସମସ୍ତ ପ୍ରତିଜ୍ଞପ୍ତି ଉଦ୍ଦେଶ୍ୟ-ବିଧେୟ ଆକାରର ହେବା ଅନିବାର୍ଯ୍ୟ ବୋଲି ମନେ କରିବା ଭ୍ରାନ୍ତିଠାରୁ ଏହା ଆହୁରି ଗୁରୁତର । "ଯାହା ଭାଷାର ଏକ ବୈଶିଷ୍ଟ୍ୟ ମାତ୍ର, ତାହାକୁ ସତ୍ତାର ଏକ ମୌଳିକ ବୈଶିଷ୍ଟ୍ୟ ବୋଲି ଭୁଲ୍ କରିବା ହେତୁରୁ ସମଗ୍ର ବିଂଶତ-ସିଦ୍ଧାନ୍ତର ଉଦ୍ଭବ ହୋଇଛି ।" ତଥାପି ଏହି ଉକ୍ତି ଦେବାର ପ୍ରାୟ ଅଠର ମାସ ଆଗରୁ Mr. Ramsay ସାମାନ୍ୟ ଗୁଡ଼ିକରେ ବିଶ୍ୱାସ କରୁଥିବା ଜଣେ ବ୍ୟକ୍ତି ହିସାବରେ ଉପର୍ଯ୍ୟୁକ୍ତ ଗ୍ରନ୍ଥ ସମ୍ବନ୍ଧରେ ସେହି ପତ୍ରିକାଟିରେ ହିଁ ( Mind, ଜାନୁୟାରୀ ୧୯୨୪ ପୃ ୧୦୯ ) ଲେଖିଥିଲେ ଯେ ଲେଖକଦ୍ୱୟ "ତାର୍କିକ ସମସ୍ୟାର ସ୍ଥିତି ଦେଖିବାକୁ ସମର୍ଥ ହୋଇନାହାନ୍ତି ଏବଂ 'ପ୍ରତୀକ ବିଜ୍ଞାନ ତଥା ମନସ୍ତତ୍ତ୍ୱଦ୍ୱାରା ତତ୍ତ୍ୱଦର୍ଶନର ସ୍ଥାନ ପୂରଣ କରିବାକୁ ପ୍ରସ୍ତାବ ଦେଇଛନ୍ତି ।" କିନ୍ତୁ ସମସ୍ୟା ଗୁଡ଼ିକୁ ବୈୟାକରଣମାନଙ୍କ ହସ୍ତରେ ସମର୍ପଣ କରିବା ସମସ୍ୟା ଗୁଡ଼ିକର ସ୍ଥିତି ଦେଖିବାକୁ ଅସମର୍ଥ ହେବା ସହିତ ସମାନ ନୁହେଁ ।

ଏ ପ୍ରକାର ମୂକ ସଂପୃକ୍ତ ସଂକେତ ପଦ୍ଧତି ସମ୍ବନ୍ଧରେ ହିଁ କେବଳ ଜ୍ଞାନ ଦେଇପାରେ । ଏହି ଜ୍ଞାନ ବହୁ କ୍ଷେତ୍ରରେ ଅତ୍ୟନ୍ତ ମୂଲ୍ୟବାନ । ଯଥାର୍ଥ ପ୍ରତୀକମାନଙ୍କୁ ଅର୍ଥାତ୍ ନାମଗୁଡ଼ିକୁ ପ୍ରତୀକାତ୍ମକ ଉପକରଣମାନଙ୍କଠାରୁ ପୃଥକ୍ କରୁଥିବା ସମସ୍ତ ପଦ୍ଧତି ଗୁରୁତ୍ୱପୂର୍ଣ୍ଣ ।

ଉପରେ ଆମେ ଭାଷାତ୍ମକ ମାଧ୍ୟମ ହେତୁକ ପ୍ରତିଫଳନ ଓ ଅପବର୍ତ୍ତନ ସମ୍ବନ୍ଧରେ କହିଛୁଁ । ଏହି ରୂପକ ଗୁଡ଼ିକର ବିସ୍ତର ଯତ୍ନ ସହକାରେ କହିଗଲେ ସେଗୁଡ଼ିକ ଭ୍ରାନ୍ତିକାରକ ହେବ ନାହିଁ । କିନ୍ତୁ ଭାଷାକୁ ଭାବ ଆଦାନ ପ୍ରଦାନର ଏକ ମାଧ୍ୟମ ବୋଲି ପ୍ରାୟଶଃ କୁହାଯାଉଥିଲେ ହେଁ ଏହାକୁ ଏକ ସାଧନ ରୂପେ ବିବେଚନା କରିବା ସର୍ବୋତ୍ତମ; ଏବଂ ସମସ୍ତ ସାଧନ ହେଉଛି ଆମର ଇନ୍ଦ୍ରିୟ ସାମର୍ଥ୍ୟର ସଂପ୍ରସାରଣ ବା ପରିମାର୍ଜନ । ଦୂରବୀକ୍ଷଣ ଯନ୍ତ୍ର, ଦୂର କଥନ ଯନ୍ତ୍ର, ଅଣୁବୀକ୍ଷଣ ଯନ୍ତ୍ର, ଡାକବାଜି ଯନ୍ତ୍ର ଏବଂ ରାସାୟନିକ ବିଦ୍ୟୁତ୍ ଧାରା ପରିମାପକ ଯନ୍ତ୍ର ହେଉଛି ଏକ ନେତ୍ର ପରିଚକ୍ଷୁ ବା ଏକ ସ୍ୱାଭାବିକ ଚକ୍ଷୁପରି ବିକ୍ରୁତ ଜାତ କରାଇବାକୁ ସମର୍ଥ, ଅର୍ଥାତ୍ ଏଗୁଡ଼ିକ ଆମର ସଂକେତ ପ୍ରସଙ୍ଗ ପରିସର ମଧ୍ୟକୁ ନୂତନ ପ୍ରାସଙ୍ଗିକ ଉପାଦାନ ପ୍ରବେଶ କରାଇବାକୁ ସମର୍ଥ । ଗ୍ରହଣାତ୍ମକ ସାଧନ ଗୁଡ଼ିକ ଆମର ଜ୍ଞାନେନ୍ଦ୍ରିୟ ସାମର୍ଥ୍ୟକୁ ଯେପରି ସଂପ୍ରସାରିତ କରେ କର୍ମାତ୍ମକ ସାଧନ ଗୁଡ଼ିକ ସେହିପରି ଆମର ପେଶୀୟ କ୍ରିୟାର ପରିସର ବୃଦ୍ଧି କରିଥାଏ । ଘଉଡ଼େଇ ଦେଇଥିବା ଦୁର୍ଦ୍ଦାନ୍ତ ବ୍ୟକ୍ତିମାନଙ୍କୁ ଆମେ ଯେତେବେଳେ ଦେଖାଇ ଦେଇ ପାରୁଁନା, ସେତେବେଳେ ଆମେ ଆମ ବନ୍ଧୁମାନଙ୍କୁ ସେମାନଙ୍କ ସମ୍ବନ୍ଧରେ କହୁଁ କିମ୍ବା ସେମାନଙ୍କ ଚିତ୍ର ଅଙ୍କନ କରିଦେଉଁ । ଭାଷାଠାରୁ ଟିକିଏ ଉନ୍ନତ ଧରଣର ସାଧନ ସେତେବେଳେ ଯଦି ଆମ ହାତରେ ଥାଏ, ତେବେ ଆମେ ସେମାନଙ୍କ ଗୋଟିଏ ଆଲୋକ ଚିତ୍ର ଉପସ୍ଥାପନ କରୁଁ । ଭାଷାର ସଂବେଗାତ୍ମକ ବ୍ୟବହାରମାନଙ୍କ ପାଇଁ ମଧ୍ୟ ଏହି ଉପମା ପ୍ରଯୋଜ୍ୟ; ଶବ୍ଦ ଗୁଡ଼ିକୁ ଠେଙ୍ଗା ବା ଡାମ୍ପଣ ପରି ବ୍ୟବହାର କରାଯାଇ ପାରେ; କିନ୍ତୁ ଆଲୋକଚିତ୍ର କଳାରେ ଚିତ୍ରର ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ଚିତ୍ରକରକୃତ ପରିବର୍ତ୍ତନକୁ ଯାହାର ତାହା ଚିତ୍ର, ସେହି ବସ୍ତୁର ବୈଶିଷ୍ଟ୍ୟରୂପେ ଜଣେ ଅନଭିଜ୍ଞ ବ୍ୟକ୍ତି ଭୁଲ୍ କରିବା ଅସାଧାରଣ ନୁହେଁ । ଏପ୍ରକାର କେତେକ ପରିବର୍ତ୍ତନରୁ ବିଶେଷଜ୍ଞ-ମାନେ ଏପରି ଫାଇଦା ଉଠାଇଛନ୍ତି ଯେ ତାହା ସାର୍ ଆର୍ଥର କୋନନ୍‌ଡ଼ୟେଲ ଓ ତାଙ୍କ ବନ୍ଧୁମାନଙ୍କୁ ଅତ୍ୟନ୍ତ ଅଥୟ କରି ଦେଇଛି । ଅନୁରୂପଭାବେ ଭାଷାରେ ଏପରି ଉପାଦାନ ଭରି ରହିଛି, ଯାହାର କୌଣସି ଉପସ୍ଥାପନମୂଳକ ବା ପ୍ରତୀକାତ୍ମକ ଭୂମିକା ନାହିଁ । ଏଗୁଡ଼ିକର ସ୍ଥିତି ଭାଷାର ଚତୁର ପ୍ରୟୋଗ ଉପରେ ପୂର୍ଣ୍ଣତଃ ନିର୍ଭରଶୀଳ ।

(୧) ତୁଳନା କର—W. Whately Smith ଏବଂ C. V. Patrick କୃତ *The Case against Spirit Photographs* ପୃ ୩୩-୩୬ ।

ତତ୍ତ୍ୱବିଦ୍‌ଗଣ ଓ ସେମାନଙ୍କ ବନ୍ଧୁମାନେ ଭାଷାର ଏହି ଉପାଦାନ ଗୁଡ଼ିକର ଏପରିଭାବେ ଭ୍ରାନ୍ତ ଅର୍ଥ କରିଛନ୍ତି କିମ୍ବା ଏଗୁଡ଼ିକରୁ ଏପରି ଫାଇଦା ଉଠାଇଛନ୍ତି ଯେ ଜଣେ ଅନ୍ୟକୁ ଅଥବା ଯେମାନଙ୍କୁ ଶୁଣିବାକୁ ପ୍ରସ୍ତୁତ ଥିବା ସାଧାରଣ ବ୍ୟକ୍ତିଙ୍କୁ ତାହା ବିଚଳିତ କରି ଦେଇଛି ।

ଏହିପରି ଭବେ ଯେଉଁ ଅଳୀକ ସତ୍ତ୍ୱଗୁଡ଼ିକର ପ୍ରବେଶ ଭାଷାଦ୍ୱାରା କରାଯାଇଛି, ସେଗୁଡ଼ିକ ଏକ ବିଶିଷ୍ଟ ପ୍ରକାର କପୋଳ କଳ୍ପିତ ( Fiction ) ବୁଝାଯାଉଥିବା ବିଷୟ । କିନ୍ତୁ ଫାଇଙ୍ଗରଙ୍କ ନଜର ବ୍ୟବହାରରୁ ଦେଖାଯିବ ଯେ ଏହି ପଦଟି ଅତ୍ୟନ୍ତ ଅସ୍ପଷ୍ଟ ଏବଂ ତଥାକଥିତ କପୋଳକଳ୍ପିତ ବିଷୟ ଗୁଡ଼ିକ ଅନେକଗ ପ୍ରକଳ୍ପଠାରୁ ପୃଥକ୍ କୋଲି ବିବେଚନୀୟ ନୁହେଁ । କିନ୍ତୁ ପ୍ରକଳ୍ପ ଏକ ଅସମର୍ଥିତ ନିର୍ଦ୍ଦେଶ ବ୍ୟତୀତ ଅନ୍ୟ କିଛି ନୁହେଁ । 'ଅର୍ଥନୈତିକ ପୁରୁଷ, ପରି କେତେକ ଅମୂର୍ତ୍ତିକରଣ ହେଉଛି ଏପ୍ରକାର କପୋଳକଳ୍ପିତ, ଯଦିଓ ସମ୍ପୂର୍ଣ୍ଣରୂପେ ପ୍ରଣାଳୀତନ୍ତ୍ରୀୟ ହୋଇଥିବାରୁ ଏଗୁଡ଼ିକରେ ବିଶ୍ୱାସ କରାଯାଏ ନାହିଁ । ପକ୍ଷାନ୍ତରେ, ଡନ ଜୁଆନ ଓ ସୁପରମେନ୍‌ସ ପରି ଅନେକ ଆଦର୍ଶକରଣ ଓ କଳ୍ପନାପ୍ରସୂତ କୃତିର ହୁଏତ କୌଣସି ଦିନ ନିର୍ଦ୍ଦେଶ୍ୟ ମିଳିଯାଇ ପାରେ । ହ୍ୟାମଲେଟ ଏବଂ ଗୋଏଥେଙ୍କ ଉର୍ଟିଅର ପ୍ରକଳ୍ପ ହୋଇ ନଥିବା ପରି ମନେ ହୁଏ, କାରଣ ସେମାନଙ୍କ ସମୟ ଓ ସ୍ଥାନ ନିର୍ଦ୍ଦିଷ୍ଟ ହୋଇଛି; କିନ୍ତୁ ଇତିହାସରେ ସେମାନଙ୍କ ସ୍ଥାନ ନାହିଁ । ସେମାନେ ଏହି ଦୃଷ୍ଟିରୁ କାଳ୍ପନିକ ଯେ ସେକ୍‌ସପିଅର ବା ଗୋଏଥେଙ୍କ ଚିନ୍ତାର କୌଣସି ଗୋଟିଏ ନିର୍ଦ୍ଦେଶ୍ୟ ନଥିଲା । ଆମେ ଅବଶ୍ୟ ଏହି ଚିନ୍ତାଗୁଡ଼ିକୁ ନିର୍ଦ୍ଦେଶ କରିପାରୁଁ; କିନ୍ତୁ ଏହି ଚିନ୍ତାଗୁଡ଼ିକର ଆମେ ପୁନରାବୃତ୍ତି ଚେଷ୍ଟା କରିବା ଅଧିକ ସ୍ୱାଭାବିକ । ଯାହା ହେଉ, ଏପ୍ରକାର ସମସ୍ତ କାଳ୍ପନିକ ବିଷୟକୁ ଭାଷାର ହିଁ ଆବର୍ତ୍ତିନ ବିବର୍ତ୍ତିନ ହେତୁରୁ ଉଦ୍ଭୂତ କାଳ୍ପନିକ ବିଷୟଗୁଡ଼ିକଠାରୁ ସ୍ପଷ୍ଟରୂପେ ପୃଥକ୍ କରାଯିବା ଆବଶ୍ୟକ । ଫାଇଙ୍ଗର ଏହି ପାର୍ଥକ୍ୟ ଉପରେ ଯଥେଷ୍ଟ ଗୁରୁତ୍ୱ ଦେଇ ନାହାନ୍ତି । ଏହାର କାରଣ ସମ୍ଭବତଃ ହେଉଛି ଭାଷା ଓ ଚିନ୍ତା ସମ୍ବନ୍ଧର ଅସମ୍ପୂର୍ଣ୍ଣ ବିଶ୍ଳେଷଣ । ଏହା ତାଙ୍କର ଅମୂର୍ତ୍ତିକରଣ ଓ ଜ୍ଞାନର ଆଲୋଚନାରେ 'Begriff' (ଧାରଣା) ଓ begreifen (ଧାରଣା କରିବା) ପଦ ବ୍ୟବହାରରୁ ଜଣା ପଡୁଛି । (୧) ଦୁଇ ପ୍ରକାରରେ ଭାଷାଗତ ଅଳୀକତାର ଉଦ୍ଭବ ହୁଏ । ଗୋଟିଏ ପ୍ରକାର ଅଳୀକତା 'ସ୍ୱାଧୀନତା' ବା 'ଲୋହିତତ୍ୱ' ପରି ପ୍ରତୀକାତ୍ମକ ସରଞ୍ଜାମର ଭୂମିକାକୁ ଭ୍ରାନ୍ତଭାବେ ଅର୍ଥ କରିବା ଦ୍ୱାରା ଜାତ ହୋଇଥାଏ । ଏତଦ୍ଦ୍ୱାରା ସ୍ୱାଧୀନ କାର୍ଯ୍ୟଗୁଡ଼ିକୁ ବା ଲୋହିତ ବସ୍ତୁମାନଙ୍କୁ ନିର୍ଦ୍ଦେଶ କରିବାବେଳେ ବ୍ୟବହାରକାରୀ ମନେ କରେ ଯେ

(୧) *Philosophie des Als Ob* (୧୯୨୦) ପୃ ୫୧, ୩୯୩ ।

ଯେ ଦେଶକାଳ ବହିର୍ଭୂତ କୌଣସି ବସ୍ତୁକୁ ନିର୍ଦ୍ଦେଶ କରୁଛି । ଅପର ପ୍ରକାର ଭ୍ରାନ୍ତିମୂଳକ ଅଳୀକତା 'ବା', 'ଯଦି', 'ନ' ପ୍ରଭୃତି ସଂଯୋଗ କାରକ ସଂରଚନା ମୂଳକ ବସ୍ତୁକରଣ ଦ୍ୱାରା ଜାତ ହୁଏ । କେବଳ ତାର୍କିକମାନେ ହିଁ ଏ ପ୍ରକାର ଭ୍ରାନ୍ତିର ବଶବର୍ତ୍ତୀ ହୋଇଥାନ୍ତି ।

'ସଂପ୍ରତ୍ୟୟ' ପଦର ବ୍ୟବହାର ଭାଷାତ୍ମକ ବିଶ୍ଳେଷଣରେ ବିଶେଷରୂପେ ଭ୍ରାନ୍ତିକର । 'ସଂପ୍ରତ୍ୟୟ', 'ପ୍ରତ୍ୟକ୍ଷ', 'ଉଦ୍ଦୀପକ' ପରି ଶବ୍ଦଗୁଡ଼ିକର ଏକ ସ୍ୱତନ୍ତ୍ର ଗୋଷ୍ଠୀ ରହିଛି । ଶରୀରର ଅଭ୍ୟନ୍ତରସ୍ଥ ଓ ତାହାର ବହିର୍ଦ୍ଦେଶସ୍ଥ ଘଟଣାମାନଙ୍କ ମଧ୍ୟରେ ପାର୍ଥକ୍ୟ ସୁସ୍ପଷ୍ଟରୂପେ ସ୍ୱୀକୃତ ହେବା ଫଳରୁ ଏହି ଶବ୍ଦଗୁଡ଼ିକ ବାଦ ବିସମ୍ବାଦର ଏକ ନିଶ୍ଚିତ ଉତ୍ସ ହୋଇ ରହିଛି । ଏକ ବ୍ୟାଖ୍ୟାକାର ଉପରେ ବାହ୍ୟବସ୍ତୁମାନଙ୍କ କ୍ରିୟାଦ୍ୱାରା ତାଠାରେ ଜାତ ହେଉଥିବା ପ୍ରତ୍ୟକ୍ଷଣ ପ୍ରକ୍ରିୟାକୁ ସାଧାରଣତଃ 'ପ୍ରତ୍ୟକ୍ଷ' ବୋଲି କୁହାଯାଏ । ପୁଣି ଏକ ସୁସ୍ପଷ୍ଟ ବ୍ୟାମିଶ୍ରଣ ଘଟାଇ ସେହି ବାହ୍ୟ ବସ୍ତୁମାନଙ୍କୁ ମଧ୍ୟ 'ପ୍ରତ୍ୟକ୍ଷ' କୁହାଯାଏ । ପରବର୍ତ୍ତୀ ପରିଚ୍ଛେଦରେ ଏହି ବ୍ୟାମିଶ୍ରଣକୁ ଦ୍ୱୈତାର୍ଥକ ଦୋଷ ଆଖ୍ୟା ଦିଆଯାଇଛି ଏବଂ ତାହାର ଆଲୋଚନା କରାଯାଇଛି । ଅନ୍ୟାନ୍ୟ କେତେକ ପ୍ରକ୍ରିୟା ଅଧିକ ବିବିକ୍ତ କିମ୍ବା ସେଗୁଡ଼ିକୁ ନିର୍ଦ୍ଦେଶ କରୁଥିବା ବିଷୟ ଅଳ୍ପ ସୁସ୍ପଷ୍ଟ; ସେଗୁଡ଼ିକୁ ଅନୁରୂପଭାବେ 'ସଂପ୍ରତ୍ୟୟ' କୁହାଯାଇଛି । କିନ୍ତୁ 'ପ୍ରତ୍ୟକ୍ଷ' ପଦର ଦ୍ୱ୍ୟର୍ଥକତାରେ ଦୁଇଟି ସମ୍ଭାବିତ ନିର୍ଦ୍ଦେଶ୍ୟ ବା ନିର୍ଦ୍ଦେଶ୍ୟ ଗୋଷ୍ଠୀର କେବଳ ବ୍ୟାମିଶ୍ରଣ ନିହିତ ଥାଏ; ଏଥିରୁ ଗୋଟିଏ ଥାଏ ମୁଣ୍ଡ ଭିତରେ ଏବଂ ଅନ୍ୟଟି ଥାଏ ବାହାରେ । ପକ୍ଷାନ୍ତରେ, 'ସଂପ୍ରତ୍ୟୟ' ପଦର ଯେତେବେଳେ ଏହିପରି ଦ୍ୱୈତକରଣ ହୁଏ, ସେତେବେଳେ କୃତ୍ରିମ ସତ୍ତା ସୃଷ୍ଟି କରିବାକୁ ଆମର ଏକ ବିଶିଷ୍ଟ ପ୍ରକାର ପ୍ରେରଣା ଜନ୍ମେ । ପ୍ରାୟତଃ ଗୃହୀତ ହୋଇଥାଏ ଯେ ଏହି ଅଧିକ ବିବିକ୍ତ ପ୍ରକ୍ରିୟାମାନଙ୍କ ନିର୍ଦ୍ଦେଶ୍ୟଗୁଡ଼ିକ ସରଳ ମନେ ହେଉଥିବାରୁ ପ୍ରତ୍ୟକ୍ଷରେ 'ଦତ୍ତ' ନିର୍ଦ୍ଦେଶ୍ୟଗୁଡ଼ିକ କ୍ଷେତ୍ରରେ ଘଟୁଥିବା ମାନସିକ ପ୍ରକ୍ରିୟାମାନଙ୍କ ନିର୍ଦ୍ଦେଶ୍ୟଠାରୁ ସେଗୁଡ଼ିକ ଭିନ୍ନ । ତେଣୁ ଦାର୍ଶନିକମାନଙ୍କ ଦ୍ୱାରା 'ସଂପ୍ରତ୍ୟୟମାନଙ୍କ' ଏକ ଅନୁଭବାତୀତ ଜଗତ କଳ୍ପିତ ହୋଇଛି । କେତେକ ମନୋବିଜ୍ଞାନୀ ସଂପ୍ରତ୍ୟୟଗୁଡ଼ିକୁ ମାନସିକ ବୋଲି ସ୍ୱୀକାର କରୁଥିବାରୁ ନିଜକୁ 'ସଂପ୍ରତ୍ୟୟବାଦୀ' ଆଖ୍ୟା ଦେଇ ଥାନ୍ତି । ଏମାନଙ୍କ ମତ ଅନୁଭବାତୀତ ( ପ୍ଲାଟୋନିକ୍ 'ବାସ୍ତବବାଦୀ' ) ତଥା ଅ-ମନସ୍ତାତ୍ତ୍ୱିକ ( ନାମବାଦୀ ) ବିବରଣୀର ବିରୋଧୀ । କିନ୍ତୁ ଏମାନେ ମଧ୍ୟ ସ୍ୱବ୍ୟବହୃତ ଶବ୍ଦ ସମ୍ଭାର ଦ୍ୱାରା ପ୍ରତୀକ ପରିସ୍ଥିତିର ଏକ ଅଯଥାର୍ଥ ମତ ଗ୍ରହଣ କରିବାକୁ ପ୍ରାୟଶଃ ଆଗେଇ ଯାଆନ୍ତି ।

ପଦ୍ଧତିର ବା ମାନସିକ ପ୍ରକ୍ରିୟାମାନଙ୍କ ଆଲୋଚନାରେ 'ସଂପ୍ରତ୍ୟୟ' ବା ବିବିକ୍ତ ନିର୍ଦ୍ଦେଶଗୁଡ଼ିକୁ ବିଷୟବସ୍ତୁ ରୂପେ ନେଇ ସେଗୁଡ଼ିକ ସମ୍ବନ୍ଧରେ ଚର୍ଚ୍ଚା କରାଯାଏ ।

ଏହି ବିଶିଷ୍ଟ କ୍ଷେତ୍ରରେ ଶବ୍ଦଗୁଡ଼ିକ ପ୍ରତ୍ୟୟମାନଙ୍କ ପରିବର୍ତ୍ତେ ବ୍ୟବହୃତ ବୋଲି ଯଥାର୍ଥରେ କୁହାଯିବ । କିନ୍ତୁ ସାଧାରଣ କଥାବାର୍ତ୍ତାରେ ଆମେ ଏହିପରିଭାବେ ଆମ ନିଜର ମାନସିକ ସାଜସରଞ୍ଜାମକୁ ନିର୍ଦ୍ଦେଶ ଦେଉଁ ବୋଲି କହିବା ସତ୍ୟ ନୁହେଁ । ଆମେବରଂ ଏଠାରେ ସେହି ସାଜସରଞ୍ଜାମ ଦ୍ୱାରା ନିର୍ଦ୍ଦେଶ୍ୟମାନଙ୍କ ସମ୍ବନ୍ଧରେ କଥାବାର୍ତ୍ତା ହେଉଁ । ଆମେ ଦେଖିଛୁଁ ଯେ ଶବ୍ଦଗୁଡ଼ିକ ସବୁଦା ଚିନ୍ତାକୁ ପ୍ରତୀକାନ୍ୱିତ କରନ୍ତି । ବୈଜ୍ଞାନିକ ନିର୍ଦ୍ଦେଶ ବା ବର୍ଗୀକରଣର ଚେଷ୍ଟା ଉଦ୍ଦେଶ୍ୟରେ ଗଠନ ବା ସପ୍ରତ୍ୟୟର କଳ୍ପନା କରି ପୁଣି ଏହି କଳ୍ପନାକୁ ପରୀକ୍ଷା କରିବା ଅତ୍ୟନ୍ତ ଭିନ୍ନପ୍ରକାର ଏକ ବିଶିଷ୍ଟ କ୍ଷେତ୍ର । କିନ୍ତୁ ଏହାର ସାମାନ୍ୟୀକରଣ ସମ୍ଭବପର ବୋଲି ନିଜ ବକ୍ତବ୍ୟରେ ନିହିତ କରିବା ସପ୍ରତ୍ୟୟବାଦୀର ଅଭ୍ୟାସଗତ । ତାପରେ ସେ କହେ ଯେ ଶବ୍ଦ ନାମବାଦୀମାନେ କହିବା ମୁତାବକ କେବଳ ଏକ ଶବ୍ଦ ନୁହେଁ; ତାହା ଏକ ସପ୍ରତ୍ୟୟାତ୍ମକ ପ୍ରତୀକ ପରିବର୍ତ୍ତେ ବ୍ୟବହୃତ । ସାମାନ୍ୟ ନିର୍ଦ୍ଦେଶ-ଗୁଡ଼ିକୁ ପ୍ରତୀକାନ୍ୱିତ କରୁଥିବା ଶବ୍ଦମାନ ଗୋଟିଏ ଗୋଟିଏ ଆବିଷ୍କାରଯୋଗ୍ୟ ଐକ୍ୟିକ ସତ୍ତା ପରିବର୍ତ୍ତେ ବ୍ୟବହୃତ ହୁଏ—ଏହି ବିଶ୍ୱାସର ବିରୁଦ୍ଧମତ ପୋଷଣ କରୁଥିବା ଦୃଷ୍ଟିରୁ ସପ୍ରତ୍ୟୟବାଦୀ ଯଥାର୍ଥ । କିନ୍ତୁ ଅସମର୍ଥନୀୟ ସତ୍ତାଗୁଡ଼ିକୁ ନିର୍ଦ୍ଦେଶ ଦେଲି ପରି ମନେ ହେଉଥିବା କ୍ଷେତ୍ରରେ ଯେଉଁମାନେ କୌଣସି ବିଷୟ 'ସମ୍ବନ୍ଧରେ' କହୁଛାହାନ୍ତି ବୋଲି ସ୍ୱୀକାର କରନ୍ତି ନାହିଁ, ସେମାନେ ସଂପ୍ରତ୍ୟୟ ବାଦୀର ଶବ୍ଦସମ୍ଭାରକୁ ଭୁଲ୍ ବୁଝିବାର ସମ୍ଭାବନା ରହିଛି । (୧)

---

(୧) ଉଦାହରଣ ସ୍ୱରୂପ, Dr. Crookshankଙ୍କ Influenza (୧୯୨୨) ପୃ ୩ ର ଉକ୍ତି ବିଶ୍ଳେଷ । ଇନ୍‌ଫ୍ଲୁଏଞ୍ଜା ହେଉଛି "ଏକ ସାମାନ୍ୟ ଏବଂ ଅଧିକ ନୁହେଁ"—ତାଙ୍କର ଏହି ଉକ୍ତି ଜ୍ୱର-ଘଟଣାକୁ ଅସ୍ୱୀକାର କରୁଛି ବୋଲି ମନେ କରାଯାଇଛି, ଯଦିଓ ପରବର୍ତ୍ତୀ ବର୍ଣ୍ଣନାରେ ଚିକିତ୍ସାଶାସ୍ତ୍ରୀୟ 'ବସ୍ତୁବାଦୀ'ଙ୍କ ପ୍ରତି ତାଙ୍କ ଆକ୍ରମଣରେ ତାତ୍ପର୍ଯ୍ୟ ସେ ସୁସ୍ପଷ୍ଟ କରିଦେଇଛନ୍ତି । ଆହୁରି ମଧ୍ୟ ତୁଳନାକର—ଅନୁପୂରକ-୨ ।

ଅତି ସ୍ଥୂଳ ଧରଣର ଅନୁଭବାତୀତବାଦ ବିରୁଦ୍ଧରେ ଯୁକ୍ତି ଉପସ୍ଥାପନ କରିବା ବ୍ୟତୀତ ଏପ୍ରକାର ଶବ୍ଦ ସମ୍ଭାର Sapirଙ୍କ ଶବ୍ଦସମ୍ଭାର ତୁଲ୍ୟ ବିବେଚନାରହିତ । ନାମ, ଭାଷାତ୍ମକ ଉପକରଣ ଓ ନିର୍ଦ୍ଦେଶ୍ୟ ମାଧ୍ୟମରେ ଏକ ବିବରଣୀ ଦେଲେ, ଚିନ୍ତା, ଶବ୍ଦ ଓ ବସ୍ତୁ ମଧ୍ୟରେ ଥିବା ମୌଳିକ ପାର୍ଥକ୍ୟ ରକ୍ଷା କରାଯାଇ ପାରିବ । କିନ୍ତୁ Sapir (Language ପୃ ୧୦୬, ତୁଳନାକର—ପୂର୍ବବର୍ତ୍ତୀ ୧ମ ପରିଚ୍ଛେଦ ) ମୂର୍ତ୍ତି, ବ୍ୟୁତ୍ପନ୍ନ, ମୂର୍ତ୍ତି ସମ୍ବନ୍ଧାତ୍ମକ ଓ ସତ୍ୟ ସମ୍ବନ୍ଧାତ୍ମକ ସପ୍ରତ୍ୟୟ ଇତ୍ୟାଦି ଶବ୍ଦମାନଙ୍କ ପ୍ରୟୋଗ କରିବାକୁ ବାଧ୍ୟ ହୋଇଛନ୍ତି ।

ଏ ପ୍ରକାର ଭାଷାମୂଳକ ଉପକରଣଗୁଡ଼ିକ ଯଥାର୍ଥରେ ଯାହା, ସେଗୁଡ଼ିକୁ ତଦ୍ରୂପ ଭାବେ ଚହ୍ଲୋଟ କର ପାରୁଥିଲେ, ନର୍ଦ୍ଦିଷ୍ଟରେ ସେଗୁଡ଼ିକର ବ୍ୟବହାର କରାଯାଇପାରେ । ବର୍ଣ୍ଣନା ଦେବା କ୍ଷେତ୍ରରେ ସେଗୁଡ଼ିକ ସୁବିଧାଜନକ ସାମଗ୍ରୀ; କିନ୍ତୁ ସେଗୁଡ଼ିକ ବସ୍ତୁ ସରଚନାର ଆବଶ୍ୟକୀୟ ଅଂଶ ନୁହନ୍ତି । ଯେ କୌଣସି ନର୍ଦ୍ଦେଶ୍ୟର ବର୍ଣ୍ଣନା ଦେବା କ୍ଷେତ୍ରରେ ଆମ ପାଇଁ ବିଭିନ୍ନ ବିକଳ୍ପ ପନ୍ଥା ଉନ୍ମୁକ୍ତ—ଏଥିରୁ ଉପର୍ଯ୍ୟୁକ୍ତ ବିଷୟଟି ଜଣା-ପଡୁଛି । ଆରିଷ୍ଟଟଲୀୟ ଭାବଧାରାକୁ ପସନ୍ଦ କରୁଥିଲେ 'ସତ୍ତ୍ୱବାଚକ ଶବ୍ଦ' ଓ 'ଗୁଣବାଚକ ଶବ୍ଦ' (୧) (ବିଶେଷ୍ୟ ଓ ବିଶେଷଣ) ସବଳିତ ଏକ ବ୍ୟାକରଣର, ଆଧୁନିକ ପଦାର୍ଥବୈଜ୍ଞାନିକ ଭାବଧାରାକୁ ପସନ୍ଦ କରୁଥିଲେ 'ଘଟଣା' ଓ 'ବସ୍ତୁ' (୨) ସବଳିତ ଏକ ବ୍ୟାକରଣର, ଅଥବା ଏଠାରେ ଉପସ୍ଥାପିତ ମତର ଛିବଳ ଅଭିବ୍ୟକ୍ତିକୁ ପସନ୍ଦ କରୁଥିଲେ 'ସ୍ଥାନ' ଓ 'ନର୍ଦ୍ଦେଶ୍ୟ' (୩) ସବଳିତ ଏକ ବ୍ୟାକରଣ ଆମେ ବ୍ୟବହାର କରିପାରୁ । ବାକ୍ଯଗଠନ ବିନାଶକ ବିଭିନ୍ନ ଉପାୟର ଭଲମନ୍ଦ ବିଚାର କରି ଗୋଟିଏକୁ ବାଛିବାରେ ଯେଉଁ ମନୋବୃତ୍ତି ନହିତ, ତଦ୍ଭିନ୍ନ ଅନ୍ୟ ଯେ କୌଣସି ମନୋବୃତ୍ତି ନେଇ ଏହି ପ୍ରଶ୍ନର ଆଲୋଚନା କରିବା ଦ୍ୱାରା ଆମେ ନିଜର ତଥା ସମ୍ଭବତଃ ଅନ୍ୟମାନଙ୍କ କେବଳ ସମୟ ଅପଚୟ କରିବା ସାର ହେବ ।

ଅନୁରୂପ ଭାବେ, ସତ୍ୟ କ'ଣ ? —ଏହି ପ୍ରଶ୍ନରୁ ସମାଧାନ ରହିତ ପରି ମନେ ହେଉଥିବା ଏକ ସମାସ୍ୟାର ଉଦ୍ଭବ ହୋଇଛି । କିନ୍ତୁ ତୃତୀୟ ପରିଚ୍ଛେଦରେ ଅର୍ଥକରଣ

---

(୧) Johnsor, Logic, ୧ମ ଖଣ୍ଡ ପୃ ୧୦୦ ।

(୨) Whitehead, The Concept of Nature ପୃ ୭୭, ୧୬୯ ।

(୩) ପଦଟୀକା—ପରିଶିଷ୍ଟ ସୂଚିତ ପୃଷ୍ଠା—ଏ ସଂପର୍କରେ ଗୋଟିଏ ବିଷୟ ଲକ୍ଷ୍ୟକରିବା କୌତୂହଳୋଦ୍ଦୀପକ ହେବ । ବୈଶେଷିକ ଦର୍ଶନ ପରି ଭାରତୀୟ ଦର୍ଶନ ଗୁଡ଼ିକ ବିଭିନ୍ନ ସମୟରେ କେତେକ ତାର୍କିକ ସାଜସରଞ୍ଜାମର ପ୍ରବର୍ତ୍ତନ ଓ ପରିବର୍ଦ୍ଧନ କରିଛନ୍ତି । ପାଶ୍ଚାତ୍ୟ ବ୍ୟାକରଣଗୁଡ଼ିକ ଯେପରି ପରସ୍ପର ଭିନ୍ନ, ଏହି ତାର୍କିକ ସରଞ୍ଜାମ-ମାନ ମଧ୍ୟ ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ବ୍ୟାକରଣଠାରୁ ସେହିପରି ଭିନ୍ନ । ଉଦାହରଣ ସ୍ୱରୂପ, ପ୍ରଶସ୍ତପାଦ ବିଶେଷ ସମ୍ବନ୍ଧରେ ଏକ ମତବାଦ ପ୍ରଚାର କରିଥିଲେ ଯେ ତାହା ନିତ୍ୟ ବସ୍ତୁମାନଙ୍କରେ ଏକ ସ୍ୱତନ୍ତ୍ର ସତ୍ତ୍ୱରୂପେ ରହିଥାଏ ଏବଂ ଗୋଟିଏ ନିତ୍ୟ ବସ୍ତୁକୁ ଅନ୍ୟ ନିତ୍ୟବସ୍ତୁଠାରୁ ପୃଥକ୍ କରେ । ଅନ୍ୟାନ୍ୟ ଉପକରଣ ବୋଧଗମ୍ୟ ଭାବରେ ପ୍ରକାଶଯୋଗ୍ୟ ନୁହେଁ କହିଲେ ଚଳେ । ଏଗୁଡ଼ିକର ଉଦାହରଣ ଭାରତୀୟ ଦର୍ଶନ-ମାନଙ୍କରେ ସହଜରେ ମିଳିପାରିବ ।

ପରିବାକ୍ୟର ଅଂଶ ସ୍ୱରୂପ ଏହି ସମସ୍ୟା ସମାଧାନ ଯୋଗ୍ୟ ବୋଲି ଜଣା ପଡ଼ିଥିଲା । ଏକ ସତ୍ୟ ନିର୍ଦ୍ଦେଶଠାରୁ ପୃଥକ୍ କରି ଏକ ସତ୍ୟ ପ୍ରତୀକର ସଂଜ୍ଞା ଦେବା ଏଠାରେ ସୁବିଧା ଜନକ ହେବ । ସଂଜ୍ଞାଟି ହେଉଛି ନିମ୍ନରୂପ—ସତ୍ୟ ପ୍ରତୀକ—ଯାହା ଏକ ଉପଯୁକ୍ତ(୧) ନିର୍ଦ୍ଦେଶକୁ ଅଭ୍ରାନ୍ତରୂପେ ବ୍ୟକ୍ତ କରେ । ଏହା ସାଧାରଣତଃ ପ୍ରତିଜ୍ଞପ୍ତି ବା ବାକ୍ୟ ଆକାରର ଏକ ଶବ୍ଦ-ଶୃଙ୍ଖଳ । ଯେତେବେଳେ ଏହା ଏକ ଉପଯୁକ୍ତ ନିର୍ଦ୍ଦେଶାନୁରୂପ ଏକ ନିର୍ଦ୍ଦେଶ ଏକ ଯଥୋପଯୋଗୀ ବାଖ୍ୟାକାରଠାରେ ଉତ୍ପନ୍ନ କରାଇ ପାରେ, ସେତେବେଳେ ଏହା ଯଥାର୍ଥଭାବେ ବ୍ୟକ୍ତ । ଯେତେବେଳେ ଏହା ଏକ ଅନୁପଯୁକ୍ତ ନିର୍ଦ୍ଦେଶ ବ୍ୟକ୍ତ କରେ, ସେତେବେଳେ ଏହା ମିଥ୍ୟା ।

ମିଥ୍ୟା ଓ ଅଯଥାର୍ଥ ପ୍ରତିଜ୍ଞପ୍ତି ମଧ୍ୟରେ ପାର୍ଥକ୍ୟ ରକ୍ଷା କରିବା ଅନେକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏକ ଅଯଥାର୍ଥ ପ୍ରତୀକ ହେଉଛି ଯାହା ଏକ ଦତ୍ତ ଆଲୋଚ୍ୟ ମଣ୍ଡଳରେ (୨) ଏକ ଯଥୋପଯୁକ୍ତ ବାଖ୍ୟାକାରଠାରେ ଯେଉଁ ନିର୍ଦ୍ଦେଶ ଜାତ କରେ, ତାହା ବକ୍ତାର ପ୍ରତୀକାନ୍ୱିତ ନିର୍ଦ୍ଦେଶଠାରୁ ଭିନ୍ନ । ଉଦାହରଣ ସ୍ୱରୂପ, ଯଦି ଆମେ କହୁଁ, "ପ୍ରଥମ ଚାର୍ଲସ୍ ସରସ ମନ୍ତବ୍ୟ ଦେଇ ତାଙ୍କ ଶଯ୍ୟାରେ ମୃତ୍ୟୁ ବରଣ କଲେ", ତେବେ ଏଠାରେ ଆମର ନିର୍ଦ୍ଦେଶ ମିଥ୍ୟା ହେବା ଅପେକ୍ଷା ଆମର ପ୍ରତୀକ ଅଯଥାର୍ଥ ହେବାର ସମ୍ଭାବନା ବେଶୀ ; କାରଣ ଏଠାରେ ପ୍ରଥମ ଚାର୍ଲସ୍‌ଙ୍କ ନିଜ ଶଯ୍ୟାରେ ମୃତ୍ୟୁ ହେଉଛି ନିର୍ଦ୍ଦେଶ୍ୟ ବୋଲି ପ୍ରସ୍ତାବ ଦେବା ଅବିବେକିତା ହେବ ନାହିଁ । କିନ୍ତୁ ଅନେକ କ୍ଷେତ୍ରରେ ଏ ପ୍ରକାର ଦ୍ୱିଧାସ୍ଥାନ ବ୍ୟାଖ୍ୟା ଅଯୌକ୍ତିକ ହେବ ଏବଂ ତା'ପରେ ଘଟଣାଟି କ'ଣ ତାହା ସ୍ଥିର କରିବା ଏକ ଅଧିକ ଦୁରୂହ ବ୍ୟାପାର ହେବ ।

---

(୧) ଇଂରାଜୀ ଭାଷାରେ ରହିଥିବା 'adequacy' [ଉପଯୁକ୍ତ] ପଦ ଏକ ପଦର ଉପାଦେୟତା ରହିଛି । ଯେଉଁ ଅର୍ଥରେ ଏକ ନିର୍ଦ୍ଦେଶ ସତ୍ୟ ହୋଇପାରେ ତାହାଠାରୁ, ଯେଉଁ ଅର୍ଥରେ ଏକ ପ୍ରତୀକ ସତ୍ୟ ହୋଇପାରେ ତାହାକୁ 'ଉପଯୁକ୍ତ' ପଦ ସାହାଯ୍ୟରେ ପୃଥକ୍ କରାଯାଇ ପାରେ । "ସେ ଯାହା କହିଲେ, ତାହା ଅସତ୍ୟ"—ଏହି ପ୍ରକାର ବାକ୍ୟମାନଙ୍କରେ ଦ୍ୱ୍ୟର୍ଥକତା ସୁପ୍ରତ୍ୟକ୍ଷ ତାଙ୍କର ପ୍ରତୀକ ମିଥ୍ୟା କି ତାଙ୍କର ନିର୍ଦ୍ଦେଶ ମିଥ୍ୟା—ଏ ବିଷୟରେ ଏଠାରେ ଆମେ ଅନିଶ୍ଚିତ ରହିଯାଉ । ଆହୁରି ସୂକ୍ଷ୍ମ ବିଚାର ସଂକୋଚ କ୍ଷେତ୍ରମାନଙ୍କରେ 'ପ୍ରତିଜ୍ଞପ୍ତି' ଶବ୍ଦଟିକୁ ଯଦି ଲଘୁଭାବରେ ପ୍ରବେଶ କରାଇ ଦିଆଯାଇଥାଏ, ସେଠାରେ ପ୍ରାୟଶଃ ଏପରି ଗଣ୍ଡଗୋଳ ଜାତ ହୁଏ ଯେ ଉପର୍ଯ୍ୟୁକ୍ତ ପାର୍ଥକ୍ୟ ରକ୍ଷା ନକରି ତାହାର ବିଶ୍ଳେଷଣ ଦୁଃସାଧ୍ୟ । 'ଉପଯୁକ୍ତ' ପଦର ସୁବିଧା ହେଉଛି ଯେ ତାହା ଏକ ଦୁରୂହ ପ୍ରଶ୍ନ ସୂଚିତ କରେ । ପ୍ରଶ୍ନଟି ହେଉଛି; ନିର୍ଦ୍ଦେଶରେ ପରିମାଣଗତ ଭିନ୍ନତା ସମ୍ଭବପର କି, ଏବଂ ଯଦି ସମ୍ଭବପର ତାହା କି ଅର୍ଥରେ ସମ୍ଭବପର ?

ଏହାର ବିପରୀତ କ୍ଷେତ୍ରରେ, ଉଦାହରଣ ସ୍ୱରୂପ, ଆମେ ଯେତେବେଳେ କହୁ, "ସୂର୍ଯ୍ୟ ବାହାରକୁ ଆସିବାକୁ ଚେଷ୍ଟା କରୁଛି" କିମ୍ବା "ପବନ ଉଠେ", ତେବେ ପରିସ୍ଥିତିର ଏକ ବୈଜ୍ଞାନିକ ବର୍ଣ୍ଣନା ଦେବାକୁ ଥିଲେ, ଆମେ ଯେଉଁ ନିର୍ଦ୍ଦେଶ ଦେଇଥାନ୍ତୁ, ଏଠାରେ ତହିଁରୁ ଭିନ୍ନ ନିର୍ଦ୍ଦେଶ ଦେଉ ନ ଥାଇପାରୁଁ । କିନ୍ତୁ ଏହି ଉକ୍ତି ଗୁଡ଼ିକ 'ଆକ୍ଷରିକ' ଅର୍ଥରେ ଗୃହୀତ ହେଲେ, ଏହା ହିଁ ଆମର ଉଦ୍ଦେଶ୍ୟ **ହୋଇପାରେ** । ଗୋଟିଏ ଉକ୍ତିକୁ ଆକ୍ଷରିକ ଅର୍ଥରେ ନେବା ହେଉଛି ଆମର ପ୍ରତୀକ ଗୁଡ଼ିକୁ ମୌଳିକ ପ୍ରତୀକରୂପେ ଅର୍ଥ କରିବା, ଅର୍ଥାତ୍ ଏକ ଦତ୍ତ ଆଲୋଚ୍ୟ ମଣ୍ଡଳ ଦ୍ୱାରା ନିର୍ଦ୍ଧାରିତ ନିର୍ଦ୍ଦେଶ ସବଳିତ ନାମରୂପେ ସେଗୁଡ଼ିକୁ ବ୍ୟବହାର କରିବା । ଯେତେବେଳେ କୌଣସି କାରଣରୁ, ଯଥା—ଭାଷାଗତ ଦୈନ୍ୟ ହେତୁରୁ, ଆମେ କୌଣସି ପ୍ରତୀକ ପାଇ ପାରୁ ନାଁ, ସେତେବେଳେ ଆମର ନିର୍ଦ୍ଦେଶ ସହିତ ସାଦୃଶ୍ୟ ଥିବା ଏକ ନିର୍ଦ୍ଦେଶ୍ୟର ପ୍ରତୀକକୁ ଆମେ ମନୋନୀତ କରିପାରୁଁ ଏବଂ ତାହାକୁ ଏକ ପରିବର୍ତ୍ତିତ ଅର୍ଥରେ ବ୍ୟବହାର କରିପାରୁଁ । ତାପରେ, ଏ ପ୍ରକାର ପ୍ରତୀକ ଗୁଡ଼ିକ କେବଳ ଯେ ରୂପକାତ୍ମକ ବା ସମୀପବର୍ତ୍ତୀ ମୂଳକ, ଏହା ବକ୍ତା ଯଦି ହୃଦୟଙ୍ଗମ ନ କରେ, ଅର୍ଥାତ୍ ସେଗୁଡ଼ିକୁ ଯଦି ସେ ଆକ୍ଷରିକ ଅର୍ଥରେ ଗ୍ରହଣ କରେ, ତେବେ ମିଥ୍ୟାତ୍ୱର ସୃଷ୍ଟି ହୁଏ । ଏହା ହେଉଛି ଏକ ମିଥ୍ୟା ନିର୍ଦ୍ଦେଶର ଯଥାର୍ଥ ପ୍ରତୀକାନ୍ୱିତ-କରଣ । ଏତଦ୍ଦ୍ୱାରା ବ୍ୟାଖ୍ୟାକାର ଭ୍ରାନ୍ତ ବାଟରେ ପରିଚାଳିତ ହୋଇପାରେ । ପକ୍ଷାନ୍ତରେ, ବକ୍ତା ଯଦି ଏକ ସତ୍ୟ ନିର୍ଦ୍ଦେଶ ଦିଏ, କିନ୍ତୁ ଏପରି ପ୍ରତୀକର ବ୍ୟବହାର କରେ ଯେ ଜଣେ ଯଥୋପଯୁକ୍ତ ବ୍ୟାଖ୍ୟାକାର ଠିକ୍‌ଭାବେ ଅର୍ଥକରି ଏକ ମିଥ୍ୟା ନିର୍ଦ୍ଦେଶରେ ଉପନୀତ ହୁଏ, ତେବେ ପ୍ରତୀକଟି ଅଯଥାର୍ଥ ।

ଅଯଥାର୍ଥତାରେ ସ୍ପଷ୍ଟତଃ ପରିମାଣଗତ ତାରତମ୍ୟ ରହିପାରେ । ମୋର ତମାଖୁ ଚିଲମ ଲିଭି ଯାଇଥିବା ଅବସ୍ଥାରେ ଯଦି ମୁଁ କହେଁ, "ମୋ ତମାଖୁ ଚିଲମରେ ନିଆଁ ରହିଛି", ତେବେ "ମୋ ତମାଖୁ ଚିଲମରେ ନିଆଁ ରହିଛି"—ଏହି ପ୍ରତୀକଟି ତାହାର ନିର୍ଦ୍ଦେଶର ବର୍ଣ୍ଣନା ଦେବା ନିମନ୍ତେ ପର୍ଯ୍ୟାପ୍ତ ପରିମାଣରେ ଯଥାର୍ଥ, କିନ୍ତୁ ତାହାକୁ

---

(୧) ଆଲୋଚ୍ୟ ମଣ୍ଡଳ ହେଉଛି ପ୍ରତୀକମାନଙ୍କ ମାଧ୍ୟମରେ ଆମେ ଯାହା ବିନ୍ୟସ୍ତ କରୁଥିବା କ୍ଷେତ୍ରଗୁଡ଼ିକର ଏକ ସମଷ୍ଟି । ଭିନ୍ନ ଭିନ୍ନ ଆଲୋଚ୍ୟ ମଣ୍ଡଳ ନିମନ୍ତେ ଭିନ୍ନ ଭିନ୍ନ ପରିମାଣର ନିର୍ଦ୍ଧାରିତତା ଯଥେଷ୍ଟ ହୋଇଥାଏ; ଏଠାରେ ନୂତନ ସଂଜ୍ଞାମାନ ମଧ୍ୟ ଆବଶ୍ୟକ ହୋଇପାରେ ( ତୁଳନା କର—୬ଷ୍ଠ ପରିଚ୍ଛେଦ—ପାଦଟୀକା—ପରିଶିଷ୍ଟ ସୂଚିତ ପୃଷ୍ଠା )

ସ୍ଥାନ ଦେବା ନିମନ୍ତେ ତତ୍ରୂପ ନୁହେଁ । ଭିନ୍ନ ଭାବରେ କହିଲେ, ଘଟଣାବଳୀ ମଧ୍ୟରେ ତାହାର ନିର୍ଦ୍ଦେଶ୍ୟକୁ ଖୋଜି ବାହାର କରିବା ପାଇଁ ଗବେଷକଙ୍କୁ ସମର୍ଥ କରିବା ନିମନ୍ତେ ଏହା ଯଥେଷ୍ଟ ପରିମାଣରେ ଉତ୍ତମ । କିନ୍ତୁ ଏହା ଦାବି କରୁଥିବା ସ୍ଥାନ 'ମୋ ତମାଖୁ ଚାଲିମ ଲିଭି ଯାଉଛି' ର ନିର୍ଦ୍ଦେଶ୍ୟ ଦ୍ୱାରା ଅଧିକୃତ ହୋଇଥିବା ହେତୁରୁ ଏହା ସେଠାରୁ ବହିର୍ଭୂତ ହେବ । ବାସ୍ତବ ପ୍ରସଙ୍ଗାନୁକ୍ରମେ ଅନ୍ୟାନ୍ୟ ପ୍ରକାର ସମ୍ବେଦପର ନିର୍ଦ୍ଦେଶ୍ୟ, ଅର୍ଥାତ୍ ସ୍ୱାଦ ସମ୍ବନ୍ଧୀୟ, ଘ୍ରାଣ ସମ୍ବନ୍ଧୀୟ ଓ ତାପ ସମ୍ବନ୍ଧୀୟ ସମ୍ବେଦନ, ପ୍ରଧମା ଇନ୍ଦ୍ରିୟାଦି ମଧ୍ୟରେ ଗବେଷକ ଅନୁସନ୍ଧାନ କରି ଦେଖିବା ପାଇଁ ମଧ୍ୟ ଏହା ଯଥେଷ୍ଟ ପରିମାଣରେ ଉତ୍ତମ । ଯଦି ସେ ନିର୍ଦ୍ଦେଶ୍ୟର ସନ୍ଧାନ ପାଏ, ତେବେ ଅଯଥାର୍ଥ ପ୍ରତୀକର ସମ୍ପ୍ରସାରଣ କରିବାକୁ ସେ ସମର୍ଥ ହୋଇପାରେ, ଏବଂ ଏହି ପ୍ରଣାଳୀରେ ତାହାକୁ ହୁଏତ ପ୍ରତ୍ୟେକ ଶବ୍ଦର ପରିବର୍ତ୍ତନ କରିବାକୁ ପଡ଼ିପାରେ । ସେହିପରି, ଥରେ ଯଦି ମୋର ହୃଦ୍‌ବୋଧ ହୁଏ ଯେ ମୋର ତମାଖୁ ଚାଲିମ ଲିଭି ଯାଇଛି ତେବେ ମୋର ପ୍ରତୀକକୁ ମୁଁ ନିଜେ ସମ୍ପ୍ରସାରିତ କରିବାକୁ ସମର୍ଥ ହୋଇ ପାରେ ଓ କହେଁ, "ମୋର ତମାଖୁ ଚାଲିମରେ ଯେତେ ଯେପରି ନିଆଁ ରହିଛି, ତାହା ସେହିପରି ଅନୁଭୂତ ହେଉଛି ।"

ଏହି ଦୃଷ୍ଟାନ୍ତରୁ ଗୁଡ଼ିଏ ପ୍ରଶ୍ନ ଉଠୁଛି । ଏହି ପରିସ୍ଥିତିର ସ୍ପଷ୍ଟୀକରଣ ନିମନ୍ତେ ଏକ ଚତୁର୍ଥ ସୂତ୍ର ଅର୍ଥାତ୍ ବାସ୍ତବତା ସୂତ୍ର ଆବଶ୍ୟକ ।

**୪—ଗୋଟିଏ ପ୍ରତୀକ ପ୍ରକୃତରେ ଯାହାକୁ ନିର୍ଦ୍ଦେଶ ଦେବା ପାଇଁ ବ୍ୟବହୃତ, ତାହାକୁ ହିଁ ନିର୍ଦ୍ଦେଶ କରେ । ତାହା ଉତ୍ତମ ବ୍ୟବହାରରେ ଯାହାକୁ ନିର୍ଦ୍ଦେଶ ଦେବା ବିଧେୟ ବା ଏକ ବ୍ୟାଖ୍ୟାକାର ଦ୍ୱାରା ଯାହା ଅଭିପ୍ରେତ ବା ବ୍ୟବହାରକାରୀ ଦ୍ୱାରା ଯାହା ଅଭିପ୍ରେତ, ତାହାକୁ ଆବଶ୍ୟକରୂପେ ନିର୍ଦ୍ଦେଶ କରେ ନାହିଁ ।**

ଉପରେ ବିଚାର କରାଯାଇଥିବା ଉକ୍ତି ଯାହାପାଇଁ ଯଥାର୍ଥ ଭାବେ ବ୍ୟବହୃତ ହୋଇ ପାରନ୍ତା, ସେହିପରି ଏକ ନିର୍ଦ୍ଦେଶ୍ୟକୁ ନିର୍ଦ୍ଦେଶ ଦେଇଥାଇ ପାରେ କିମ୍ବା ନଥାଇ ପାରେ । ମୁଁ ସ୍ୱୀକାର କରିପାରେଁ ବା ନକରି ପାରେଁ ଯେ ମୋର ନିର୍ଦ୍ଦେଶ ହେଉଛି ଏକ ଅନୁଭବ, ତମାଖୁ ପୋଡ଼ିବା ନୁହେଁ । ସୁତରାଂ ୧ମ ସୂତ୍ର ଅନୁସାରେ ଆମର ଏଠାରେ ଏକ ପ୍ରତୀକ ଗୋଷ୍ଠୀ ରହିଛି, ଯାହା ଗୋଟିଏ ପ୍ରତୀକ ପରି ମନେ ହେଉଛି ଏବଂ କେଉଁ ଗୋଟିକ ପ୍ରକୃତରେ ବ୍ୟବହୃତ ହେଉଛି, ତାହାକୁ ଆମକୁ ବାଛିବାକୁ ପଡ଼ିବ । ଏହିପରି ଭାବେ ଆମେ ଯେତେବେଳେ ବାଛିପାରୁ ନା, ଭବିଷ୍ୟତରେ ଅନୁରୂପ

କ୍ଷେତ୍ରମାନଙ୍କରେ (୧) ବ୍ୟବହାର କରିବା ନିମନ୍ତେ ଦ୍ୱ୍ୟର୍ଥକତା ରହିତ ଏକ ପ୍ରତୀକ ସମଷ୍ଟି ଗଠନ କରିବା ବ୍ୟତୀତ ଆମେ ଆଉ ଅଧିକ କିଛି କରି ନପାରୁଁ । କିନ୍ତୁ ମରେନିକର ଅକାରବାଦୀ ତାର୍କିକମାନଙ୍କ ଭଳି ଆମେ କହିବୁଁ ଯେ ଏଠାରେ 'ସ୍ଥିତିଶୀଳ ତମାଖୁ ପୋଡ଼ିବା' ପରି ଏକ ନିର୍ଦ୍ଦେଶ୍ୟ ନାହିଁ, ତେବେ ଆମେ 'ଏକ ସମସ୍ୟାର ସମ୍ମୁଖୀନ ହେଉଛୁଁ ପରି ମନେ ହେବ । ତାହା ହେଉଛି, ନିର୍ଦ୍ଦେଶିତ ହେବାକୁ ଯାହା ନାହିଁ, ତାହାକୁ ଆମେ ନିର୍ଦ୍ଦେଶ ଦେଉଁ କିପରି ? ଏହି ସମସ୍ୟାଟିରେ ହିଁ ଅନୁରକ୍ତିର ବିଷୟ କିଛି ନାହିଁ; କିନ୍ତୁ ଏଠାରେ ଏହାର ଉଲ୍ଲେଖ କରାଯାଉଛି, କାରଣ ସଦୋଷ ପ୍ରତୀକମାନଙ୍କ ଏକ ଅସମ୍ପୂର୍ଣ୍ଣ ସଂସ୍ଥିତିକୁ ନିର୍ଦ୍ଦୋଷ ପ୍ରତୀକମାନଙ୍କ ଏକ ସମ୍ପୂର୍ଣ୍ଣ ସଂସ୍ଥିତିରୂପେ ଗ୍ରହଣ କଲେ ଯେଉଁ ଅସୁବିଧାମାନ ଜାତ ହୁଏ, ଏହା ହେଉଛି ତାହାର ଏକ ବିଲକ୍ଷଣ ଯୁକ୍ତ ଦୃଷ୍ଟାନ୍ତ । ଅତିମାତ୍ରାରେ ଜଟିଳତା ପୂର୍ଣ୍ଣକରି ଦିଆଯାଇଥିବା ପ୍ରତୀକମାନଙ୍କ ଏକ ଲଘୁ ସଂସ୍ଥିତିରେ ଏ ପ୍ରକାର ବିରୋଧିତା ଗୁଡ଼ିକୁ ଯଦି ପ୍ରତୀକମାନଙ୍କ ବିହିତ ଆବର୍ତ୍ତନ-ବିବର୍ତ୍ତନରୁ ଜାତ ହୋଇଥାଏ, ତେବେ ତହିଁରୁ ଉପାଦେୟ ସୂଚନା ମିଳେ ଯେ କେତେକ ଅସମ୍ପୂର୍ଣ୍ଣତା ତଥାପି ରହିଯାଇଛି । ଏ ବିଷୟର ଗୋଟିଏ ଦୃଷ୍ଟାନ୍ତ ହେଉଛି ଗଣିତଶାସ୍ତ୍ର । ଏ ପ୍ରକାର ବିରୋଧିତାର ସମ୍ମୁଖୀନ ହୋଇ ଗଣିତଜ୍ଞ ନିଜର ପ୍ରତୀକ ପଦ୍ଧତିର ଉନ୍ନତି ବିଧାନ କରି ବସେ । ଜଗତରେ କେତେକ ଅଦ୍ଭୁତ ବୈଚିତ୍ର ରହିଥିବା ବିଷୟ ପ୍ରମାଣିତ ହୋଇଛି ବୋଲି ମନେ କରିବା ଅପେକ୍ଷା ଆମେ ଗଣିତଜ୍ଞଙ୍କର ରୀତି ଅନୁସରଣ କରିବା ଉଚିତ ।

ଉତ୍ତର ଦେବା ଯୋଗ୍ୟ ଆଉ ଦୁଇଟି ପ୍ରଶ୍ନ ଏଠାରେ ଉଠୁଛି । ପ୍ରଥମଟି ହେଉଛି, "ବର୍ତ୍ତମାନ ତମାଖୁ ଚିଲମ ଲିଭି ଯାଇଛି' ର ସ୍ଥାନ ଯାହା, ତାହାକୁ 'ବର୍ତ୍ତମାନ ତମାଖୁ ଚିଲମରେ ନିଆଁ ରହିଛି' ଦାବୀକରେ, ଅଥଚ ବର୍ତ୍ତମାନ ତମାଖୁ ଚିଲମ ମଇଳା ହୋଇଛି' ଦାବିକରେ ନାଁ—ଏ କଥା ଆମେ ଜାଣୁ କିପରି ?" ସେହି ପୁରୁଣା କଥା "ଅନୁଭୂତ ଦ୍ୱାରା" ରେ ଏହାର ଉତ୍ତର ରହିଛି । ଆମର ପରିଚିତ ପରିସର ମାନଙ୍କରେ ଏ ପ୍ରକାର ଜ୍ଞାନ ପ୍ରଚୁର ପରିମାଣରେ ଜମାହୋଇ ରହିଛି । ଉଦାହରଣ ସ୍ୱରୂପ, ଆମେ ଜାଣୁଁ ଯେ 'କ ସବୁଜ', 'କ ଲୋହିତ' ଏବଂ 'କ ନୀଳ'—ଏସବୁ ନିଜ

---

(୧) ଏହି କାର୍ଯ୍ୟ ନିମନ୍ତେ ଆବଶ୍ୟକ ହେଉଥିବା ପ୍ରବିଧିର ପରିବର୍ତ୍ତନ ନିମନ୍ତେ ୭ମ ଓ ୮ମ ପରିଚ୍ଛେଦକୁ ବିନିଯୋଗ କରାଯାଇଛି । ଏତଦ୍‌ବିଧ ପଦ୍ଧତିମାନଙ୍କର ୯ମ ପରିଚ୍ଛେଦରେ ସର୍ବପ୍ରଧାନ ଦ୍ୱ୍ୟର୍ଥକତା ସଙ୍କଳିତ କ୍ଷେତ୍ର ଅର୍ଥାତ୍ ଅର୍ଥ କ୍ଷେତ୍ରରେ ପ୍ରୟୋଗ କରାଯାଇଛି ।

ନିଜର ନିର୍ଦ୍ଦେଶ୍ୟ ପାଇଁ ସେହି ଏକ ସ୍ଥାନ ଦାବି କରନ୍ତି । 'କ ଅହଙ୍କାର' ଓ 'କ ଆଲୋକିତ' କ୍ଷେତ୍ରରେ ମଧ୍ୟ ତାହାହିଁ ଘଟେ । ଆମେ ଏହା ମଧ୍ୟ ଜାଣୁ ଯେ 'କ ସବୁଜ', 'କ ଅହଙ୍କାର' ଓ 'କ ସୁପ୍ରତ୍ୟକ୍ଷ'ର ଦାବୀରେ ବିରୋଧିତା ନାହିଁ । ଅପରିଚିତ କ୍ଷେତ୍ରମାନଙ୍କରେ ପ୍ରଧାନ ଅସୁବିଧା ହେଉଛି ଠିକ୍ ଏହି ପ୍ରକାର ଜ୍ଞାନଲାଭ କରିବା । ଆମ ପ୍ରତୀକଗୁଡ଼ିକୁ ନିର୍ଦ୍ଦୋଷ କରିବା ନିମନ୍ତେ ଏହି ଜ୍ଞାନର ଆବଶ୍ୟକତା ଥାଏ, ଠିକ୍ ଯେପରି ଆମ ଜ୍ଞାନର ଅଗ୍ରଗତି ନିମନ୍ତେ ନିର୍ଦ୍ଦୋଷ ପ୍ରତୀକମାନଙ୍କ ଆବଶ୍ୟକତା ଥାଏ ।

ଅପର ପ୍ରଶ୍ନଟି ହେଉଛି "ମୋର ତମାଖୁ ଚିଲମ ଲିଭି ଯାଇଛି'ର ନିର୍ଦ୍ଦେଶ୍ୟ ଅନୁସନ୍ଧାନ କରିବାକୁ ଯାଇ ଆମେ ଯଥାସ୍ଥାନରେ ତାହା ନ ପାଇବା କାରଣରୁ କାହିଁକି କହିବା ନାହିଁ ଯେ ତାହାର କୌଣସି ନିର୍ଦ୍ଦେଶ୍ୟ ନାହିଁ ?" କିନ୍ତୁ ଏଠାରେ ଏକ ନିର୍ଦ୍ଦେଶ ରହିଥିଲା, ଯଦିଓ ଏହି ନିର୍ଦ୍ଦେଶ୍ୟ ଯେଉଁ ନିର୍ଦ୍ଦେଶକୁ ସୂଚିତ କରୁଛି ବୋଲି ପ୍ରଥମ ଦୃଷ୍ଟିପାତରେ ମନେ ହେବ, ସେହି ନିର୍ଦ୍ଦେଶକୁ ତାହା ସୂଚିତ କରୁନାହିଁ । ପ୍ରକୃତ ନିର୍ଦ୍ଦେଶ୍ୟକୁ ପାଇବା ସମସ୍ୟା ଏଠାରେ ଯେପରି ଅନ୍ୟ ସମସ୍ତ କ୍ଷେତ୍ରରେ ମଧ୍ୟ ତଦ୍ରୂପ । ତାହା ହେଉଛି କାରଣିକ ସମ୍ବନ୍ଧମାନଙ୍କୁ ବା ନିହିତ ପ୍ରସଙ୍ଗଗୁଡ଼ିକୁ ଦ୍ୱିତୀୟ ପରିଚ୍ଛେଦରେ ସୂଚିତ ହୋଇଥିବା ପ୍ରଣାଳୀରେ ଅନୁସନ୍ଧାନ କରି ଆବିଷ୍କାର କରିବା ।

ଜଟିଳ ପ୍ରତୀକ ସମ୍ବନ୍ଧୀୟ ଏକ ବିଶିଷ୍ଟ ଅସୁବିଧା ଆଉ ଏକ ସୂତ୍ର ଆବଶ୍ୟକ କରେ । ପ୍ରଥମ ଦୃଷ୍ଟିପାତରେ ଏହି ସୂତ୍ରର କାର୍ଯ୍ୟକାରିତା ସୁପ୍ରତ୍ୟକ୍ଷ ନ ହୋଇପାରେ, ଯଦିଓ ଆମ ଆଲୋଚନାରୁ ନିରର୍ଥକତା ଦୂରୀକରଣ ନିମନ୍ତେ ଏହା ଆବଶ୍ୟକ । ସରଳ ବା ଅପେକ୍ଷାକୃତ ଅଳ୍ପ ଜଟିଳ ପ୍ରତୀକମାନଙ୍କୁ ନେଇ ଜଟିଳ ପ୍ରତୀକ ଗଠନ ସହିତ ଏହା ସଂପୃକ୍ତ । ଏହା ସୁସ୍ପଷ୍ଟ ଯେ ସେହି ଏକ ସ୍ଥାନ ଦାବି କରୁଥିବା ସଙ୍କେତମାନଙ୍କୁ, ଯଥା—ବର୍ଣ୍ଣ (ଲୋହିତ-ପୀତ) ଅଥବା ଆକୃତି (ଗୋଲକାର-ବର୍ଗାକାର) ଇତ୍ୟାଦିକୁ ଆମେ ଯଦି ଗୋଟିଏ ପ୍ରତୀକରେ ଅବସ୍ଥାପିତ କରୁ, ତେବେ ଆମ ପ୍ରସ୍ତାବିତ ପ୍ରତୀକଟି ବ୍ୟର୍ଥ ହୋଇଯାଏ । ଏହି ପଞ୍ଚମ ସୂତ୍ରକୁ ସଙ୍ଗତି-ସୂତ୍ର କୁହାଯାଏ ।

**୫—କୌଣସି ଜଟିଳ ପ୍ରତୀକର ଅନ୍ତର୍ଗତ ହୋଇ ଯେହି ଏକ ସ୍ଥାନ ଦାବି କରୁଥିବା ଉପାଦାନକ ପ୍ରତୀକମାନ ରହି ନ ପାରେ ।**

ଯେତେବେଳେ ଗୋଟିଏ ପ୍ରତୀକ ଏକ ନିର୍ଦ୍ଦେଶ୍ୟକୁ 'ସ୍ଥାନାଧିଷ୍ଠ' କରେ, ସେତେବେଳେ କଣ କରାଯାଏ—ଏହି ବିଷୟଟିକୁ ଉପର୍ଯ୍ୟୁକ୍ତ କାରଣରୁ ଅବିଳମ୍ବେ ସୁସ୍ପଷ୍ଟ କରିଦେବା ଗୁରୁତ୍ୱପୂର୍ଣ୍ଣ । ଆରିଷ୍ଟଟଲଙ୍କ ସମୟରୁ ଉନୋଟି ସୂତ୍ର ତାର୍କିକମାନଙ୍କ ମାର୍ଜିତ, ଅମାର୍ଜିତ ଉଭୟ ପ୍ରକାର ଦୃଷ୍ଟି ବହୁଳ ମାତ୍ରାରେ ଆକର୍ଷଣ କରିଛି । ଏଗୁଡ଼ିକୁ

ପ୍ରଥାଗତଭାବେ ଚନ୍ତାର ନିୟମ କୁହାଯାଏ । ଏଗୁଡ଼ିକର ବ୍ୟାଖ୍ୟା ବିଭିନ୍ନ ପ୍ରକାରରେ ଦିଆଯାଇଛି; ଯଥା—ମନ ଏହି ନିୟମ ଗୁଡ଼ିକର ଅନୁବର୍ତ୍ତୀ କିନ୍ତୁ ବସ୍ତୁ ଅନୁବର୍ତ୍ତୀ ହେବା ଅନାବଶ୍ୟକ; ଅଥବା ବସ୍ତୁ ଏଗୁଡ଼ିକର ଅନୁବର୍ତ୍ତୀ କିନ୍ତୁ ମନ ଅନୁବର୍ତ୍ତୀ ହେବା ଅନାବଶ୍ୟକ; ଅଥବା ସମସ୍ତ ପଦାର୍ଥ (ମନ ସମେତ) ଏଗୁଡ଼ିକର ଅନୁବର୍ତ୍ତୀ; ଅଥବା କୌଣସି ପଦାର୍ଥ ଏଗୁଡ଼ିକର ଅନୁବର୍ତ୍ତୀ ହେବା ଆବଶ୍ୟକ ନୁହେଁ, କିନ୍ତୁ ତର୍କଶାସ୍ତ୍ରରେ ଏଗୁଡ଼ିକର ଅଭୁଳନ ଉପାଦେୟତା ରହିଛି । ପ୍ରତୀକ ପଦ୍ଧତିରେ ଏଗୁଡ଼ିକୁ ଗୌଣସୂତ୍ର ନିଚୟ ରୂପେ ବିବେଚନା କରାଯାଏ । ପ୍ରତୀକ ପଦ୍ଧତିର ସୁବିଶାଳ ସୌଧରେ ଯଥାଯଥ ଶୃଙ୍ଖଳା ରକ୍ଷା କରିବାରେ ଏଗୁଡ଼ିକ ସହାୟକ ହୁଅନ୍ତି । ପ୍ରଥମଟି ହେଉଛି ତାଦାତ୍ମ୍ୟ ନିୟମ । ଏହାକୁ ଏକ ଅପରୂପ ଧରଣରେ ସୂତ୍ରବଦ୍ଧ କରାଯାଏ, ଯଥା—'କ ହେଉଛି କ'; ଏକ ପ୍ରତୀକ ଯାହା ତାହା ସେଇଆ, ଅର୍ଥାତ୍ **ପ୍ରତ୍ୟେକ ପ୍ରତୀକର ଏକ ନିର୍ଦ୍ଦେଶ୍ୟ ଥାଏ ।** ଦ୍ୱିତୀୟଟି ହେଉଛି ବିରୋଧ ନିୟମ—'କ ଅ-କ ନୁହେଁ', କୌଣସି ପ୍ରତୀକ ତାହା ନିର୍ଦ୍ଦେଶ କରୁ ନଥିବା ବିଷୟକୁ ନିର୍ଦ୍ଦେଶ କରେ ନାହିଁ; ଅର୍ଥାତ୍ **ସମଗ୍ର ନିର୍ଦ୍ଦେଶ୍ୟ ମଣ୍ଡଳରେ କୌଣସି ନିର୍ଦ୍ଦେଶ୍ୟର ଏକାଧିକ ସ୍ଥାନ ନ ଥାଏ ।** ତୃତୀୟଟି ହେଉଛି ନିର୍ମଧ୍ୟମ ନିୟମ—'କ ହେଉଛି ଖ କିମ୍ବା ଅ-ଖ'; ଗୋଟିଏ ପ୍ରତୀକର ଏକ ଦତ୍ତ ନିର୍ଦ୍ଦେଶ୍ୟ ନରୁବା ଅନ୍ୟ ଏକ ନିର୍ଦ୍ଦେଶ୍ୟ ଥାଏ, ଅର୍ଥାତ୍ **ସମଗ୍ର ନିର୍ଦ୍ଦେଶ୍ୟ ମଣ୍ଡଳରେ ପ୍ରତ୍ୟେକ ନିର୍ଦ୍ଦେଶ୍ୟର ଏକ ନିର୍ଦ୍ଦିଷ୍ଟ ସ୍ଥାନ ଥାଏ ।** ଏହି ନିୟମ ନିଚୟ ପରିବର୍ତ୍ତେ ସୂତ୍ର—୨ ଦ୍ୱାରା ଆମେ ନିମ୍ନୋକ୍ତ ସୂତ୍ରର ପ୍ରବର୍ତ୍ତନ କରିପାରୁଁ । ତାହା ପ୍ରତୀକ ପଦ୍ଧତିର ଷଷ୍ଠସୂତ୍ର ହେବ । ତାହା ହେଉଛି ଐକ୍ୟକତା ସୂତ୍ର :—

**୬—ସମସ୍ତ ସମ୍ଭବପର ନିର୍ଦ୍ଦେଶ୍ୟ ଏକତ୍ର ଏପରି ଏକ ମଣ୍ଡଳ ଗଠନ କରେ, ଯହିଁରେ ପ୍ରତ୍ୟେକ ନିର୍ଦ୍ଦେଶ୍ୟର ଗୋଟିଏ ମାତ୍ର ସ୍ଥାନ ଥାଏ ।**

'ସ୍ଥାନ' ସମ୍ବନ୍ଧୀୟ ଗୋଟିଏ ଅସୁବିଧା ବିଷୟରେ ଏଠାରେ କେତେକ ମନ୍ତବ୍ୟ ଦେବା ଉପାଦେୟ ହୋଇପାରେ । 'ସ୍ଥାନ' ଏକ ବାସ୍ତବ ପ୍ରତୀକ ନୁହେଁ, ଏହା ବରଂ ହେଉଛି ଏକ ପ୍ରତୀକାତ୍ମକ ଉପକରଣ । ଆମ ବକ୍ତବ୍ୟରେ ନିହିତ ଯେ କୌଣସି ମିଥ୍ୟା ଉକ୍ତିରେ ଥିବା ଦୁଇଟି ବିଷୟକୁ ସୁସ୍ପଷ୍ଟରୂପେ ପୃଥକ୍ କରିସିବା ଆବଶ୍ୟକ :—(୧) ଯେଉଁ ନିର୍ଦ୍ଦେଶ୍ୟକୁ ଆମେ ପ୍ରକୃତରେ ନିର୍ଦ୍ଦେଶ କରୁଥାଉଁ; (୨) ଏକ ଆରୋପିତ ନିର୍ଦ୍ଦେଶ୍ୟ ଯାହାକୁ ଆମେ ନିର୍ଦ୍ଦେଶ କରୁଛୁ ବୋଲି ଆମେ ବିଶ୍ୱାସ କରୁଥାଉଁ । ସମଗ୍ର ନିର୍ଦ୍ଦେଶ୍ୟ ମଣ୍ଡଳରେ ଏଥିମଧ୍ୟରୁ କେବଳ ପ୍ରଥମଟିର ହିଁ ଏକ 'ସ୍ଥାନ' ଥାଏ ।

ବିକଳ୍ପ ଭାଷାର ବ୍ୟବହାର କରି ଆମେ କହିପାରୁଁ ଯେ ଏକ ମିଥ୍ୟା ଉକ୍ତିରେ, ହୁଏତ ଗୋଟିଏ ନିର୍ଦ୍ଦେଶ୍ୟ ଏପରି ଏକ 'ସ୍ଥାନ'ରେ ଅଛି ବୋଲି ଆମେ ବିଶ୍ୱାସ କରୁଥାଉଁ, ଯେଉଁଠାରେ ତାହା ନାହିଁ; ଅଥବା ଆମେ ପ୍ରକୃତରେ ଯେଉଁ ନିର୍ଦ୍ଦେଶ୍ୟକୁ ନିର୍ଦ୍ଦେଶ କରୁଥାଉ ତଦ୍‌ଭିନ୍ନ ଅନ୍ୟ ଏକ ନିର୍ଦ୍ଦେଶ୍ୟକୁ ନିର୍ଦ୍ଦେଶ କରୁଛୁ ବୋଲି ଆମେ ନିଜେ ବିଶ୍ୱାସ କରୁଥାଉଁ । ଉଦାହରଣ ସ୍ୱରୂପ, ଆମେ କହିପାରୁଁ ଯେ ଦୁଇଟି ବିରୋଧୀ ଉକ୍ତିରେ, ଆମେ ସେହି ଏକ ନିର୍ଦ୍ଦେଶ୍ୟକୁ ନିର୍ଦ୍ଦେଶ କରୁଥାଉଁ, କିନ୍ତୁ ତାହାକୁ ଭିନ୍ନ ଭିନ୍ନ ସ୍ଥାନ ଦେଉଥାଉଁ, ଅଥବା ଆମେ ଦୁଇଟି ଭିନ୍ନ ଭିନ୍ନ ନିର୍ଦ୍ଦେଶ୍ୟକୁ ନିର୍ଦ୍ଦେଶ କରୁଥାଉଁ, କିନ୍ତୁ ଉଭୟଙ୍କୁ ସେହି ଏକ ସ୍ଥାନ ଦେଉଥାଉଁ । ଏହି ଦୁଇଟି ବିକଳ୍ପ କଥନ ରୀତିରେ ଉଭୟ 'ନିର୍ଦ୍ଦେଶ୍ୟ' ଓ 'ସ୍ଥାନ'ର ବ୍ୟବହାର ଦ୍ୱାରା ନିର୍ଦ୍ଦେଶରେ ସୂକ୍ଷ୍ମ ପରିବର୍ତ୍ତନ ନିହିତ । କିନ୍ତୁ ଏହି ପଦଦ୍ୱୟ ସଂପୃକ୍ତ ନିର୍ଦ୍ଦେଶ ଦୁଇଟିର ପାର୍ଥକ୍ୟ ଯେ କେବଳ କୃତ୍ରିମ—ଏହି ଗୁରୁତ୍ୱପୂର୍ଣ୍ଣ ବିଷୟର ଏତଦ୍ୱାରା ସୁସ୍ପଷ୍ଟ ହୋଇଯାଉଛି । ନିର୍ଦ୍ଦେଶ୍ୟ ଏବଂ ତାହାର ସ୍ଥାନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଯଥାସ୍ଥାନ ବାହାରେ କୌଣସି ନିର୍ଦ୍ଦେଶ୍ୟ ରହିନପାରେ, ଏବଂ ନିର୍ଦ୍ଦେଶ୍ୟ ଶୂନ୍ୟ କୌଣସି ସ୍ଥାନ ଥାଇ ନପାରେ । ଯେତେବେଳେ ଏକ ନିର୍ଦ୍ଦେଶ୍ୟ ଜ୍ଞାତ, ତାହାର ସ୍ଥାନ ମଧ୍ୟ ଜ୍ଞାତ । ଗୋଟିଏ ସ୍ଥାନ ତାହାକୁ ପୂରଣ କରୁଥିବା ନିର୍ଦ୍ଦେଶ୍ୟ ଦ୍ୱାରା ହିଁ କେବଳ ଚିହ୍ନାପଡ଼େ । ନିର୍ଦ୍ଦେଶର ଯେଉଁ ଅସଂପୂର୍ଣ୍ଣତା ମାନଙ୍କରେ ମିଥ୍ୟାତ୍ୱ ପର୍ଯ୍ୟବସିତ, ସେଗୁଡ଼ିକର ବର୍ଣ୍ଣନା ନିମନ୍ତେ 'ସ୍ଥାନ'ର ବ୍ୟବହାର ସୁବିଧାଜନକ ହୋଇଥିବାରୁ ଏହାର ପ୍ରବେଶ କରାଯାଇଛି; ଏହା ଏକ ପ୍ରତୀକ ମାତ୍ର ।

ଆମେ ପ୍ରଦର୍ଶନ କରି ସାରିଛୁ ଯେ ନିର୍ଦ୍ଦେଶ୍ୟ ଓ କିମ୍ବା ଅନ୍ତର୍ଗତ ସମସ୍ତ ନିର୍ଦ୍ଦେଶ ନିମନ୍ତେ ସର୍ବଦା କେତେକ ଅନ୍ତର୍ବର୍ତ୍ତୀ ସଙ୍କେତ-ପରିସ୍ଥିତି ରହିଥାଏ । ସର୍ବାପେକ୍ଷା ସରଳ କ୍ଷେତ୍ରରେ, ଅର୍ଥାତ୍ ପ୍ରତ୍ୟକ୍ଷମୂଳକ ସତ୍ୟ ସାକ୍ଷାତ୍ ଅବଧାରଣ କ୍ଷେତ୍ରରେ, ଏ ପ୍ରକାର ଗୋଟିଏ ମାତ୍ର ସଙ୍କେତ-ପରିସ୍ଥିତି ରହିପାରେ (ଏହା ତୃତୀୟ ପରିଚ୍ଛେଦରେ ଆଲୋଚିତ ହୋଇଛି) । ଏକ ମିଥ୍ୟା ପ୍ରତିଜ୍ଞପ୍ତିରେ, ଏପ୍ରକାର ଏକ ସଙ୍କେତ ଶୃଙ୍ଖଳ ରହିବ; ପାର୍ଥକ୍ୟ ହେଉଛି ଯେ ଶେଷୋକ୍ତ କ୍ଷେତ୍ରରେ କେତେକ ଭ୍ରାନ୍ତ ବ୍ୟାଖ୍ୟାର ଉଦ୍ଭବ ହୁଏ । ଗୋଟିଏ ମିଥ୍ୟା ପ୍ରତିଜ୍ଞପ୍ତିକୁ ଏକ ସତ୍ୟ ପ୍ରତିଜ୍ଞପ୍ତି ରୂପେ **ଭାଷାନ୍ତରୀକରଣ** ନିମନ୍ତେ, ଭ୍ରାନ୍ତ ବ୍ୟାଖ୍ୟା କେଉଁଠି ଘଟିଛି, ତାହା ଆବିଷ୍କାର କରିବା ସର୍ବଦା ଆବଶ୍ୟକ ହୁଏ ନାହିଁ । କିନ୍ତୁ **ସଂପ୍ରସାରଣ** ନିମନ୍ତେ ଏପ୍ରକାର ଆବିଷ୍କାରର ଆବଶ୍ୟକତା ରହିଛି । ଏହି ଅସୁବିଧାରୁ ଜଣାପଡୁଛି ଯେ ଆମେ କାହିଁକି ସଂପ୍ରସାରଣ ଅପେକ୍ଷା ଭାଷାନ୍ତରୀକରଣକୁ ଅଧିକ ପସନ୍ଦ କରୁ । ସାଧାରଣତଃ ଶିକ୍ଷାଦାନ ଏବଂ ବାଦାନୁବାଦ କ୍ଷେତ୍ରରେ ଭ୍ରାନ୍ତ ବ୍ୟାଖ୍ୟାର ଆବିଷ୍କାରକୁ ଏକ ଅତି ଗୁରୁତ୍ୱପୂର୍ଣ୍ଣ ସୋପାନ ବୋଲି ବିବେଚନା କରାଯାଏ ।

ଏକତ୍ୱ, ସମ୍ପ୍ରସାରଣ, ସଙ୍କ, ବାସ୍ତବତା, ସଙ୍ଗତ ଓ ଐକ୍ୟକତା—ଏହି ଛଅଟି ସୂତ୍ରରେ ମୌଳିକ ସ୍ୱତଃସିଦ୍ଧମାନ ରହିଛି । ଏଗୁଡ଼ିକ ଦ୍ୱାରା ଯୁକ୍ତିରେ ଶବ୍ଦମାନଙ୍କ ଯଥାର୍ଥ ବ୍ୟବହାର ନିର୍ଦ୍ଧାରିତ ହୁଏ । ଆମେ ବର୍ତ୍ତମାନ ଏକ ଦର୍ଶନଶାସ୍ତ୍ରୀୟ ଯନ୍ତ୍ରର ଅଧିକାରୀ । ଏହା ସାହାଯ୍ୟରେ ଚକ୍ରକଗତି ଏଡ଼ାଇବାର ଆଶାନେଇ ଆମେ ନୂତନ ଦର୍ଶନବଜସ୍ୱ କରିବାର ସମ୍ଭାବନା ରହିଛି । ପ୍ରତୀକାତ୍ମକ ଦ୍ରବ୍ୟଗୁଡ଼ିକର ନିୟମ ବିଧାନ ଦ୍ୱାରା କର୍ମାରମ୍ଭ କରି ଆମେ ବ୍ୟାଖ୍ୟାକରଣ ପ୍ରଣାଳୀର ତଥା ବ୍ୟାଖ୍ୟାକାରର ମନୋଗତ 'ପ୍ରତିସ୍ଥାମାନଙ୍କ' ଅନୁସନ୍ଧାନ କରିପାରିବା । ବିଶେଷତଃ ପ୍ରତୀକ କେଉଁ ସ୍ଥଳରେ ଏକ ସଂକ୍ଷିପ୍ତୀକରଣ ମାତ୍ର ତାହା ପ୍ରଦର୍ଶନ କରିବା ଏବେ ସମ୍ଭବପର ହୋଇ ପାରିବ, ଯଦିଓ ଏହା ସର୍ବଦା ସହଜସାଧ୍ୟ ନୁହେଁ । ପୁଣି ଭିନ୍ନ ଭିନ୍ନ ପରିସ୍ଥିତିରେ ବିଭିନ୍ନ ପ୍ରକାର ସଂଜ୍ଞାମାନଙ୍କ ମଧ୍ୟରୁ କେଉଁଗୁଡ଼ିକ ଯଥୋପଯୁକ୍ତ ତାହା ମଧ୍ୟ ଏବେ ନିର୍ଦ୍ଧାରଣ କରିହେବ । ଏହି ଆବିଷ୍କାରମାନଙ୍କ ଦ୍ୱାରା ଯେଉଁ ଆଲୋଚନା ଗୁଡ଼ିକ ପ୍ରଭାବିତ ହେବାର ସମ୍ଭାବନା ରହିଛି, ସେହି ପ୍ରକାର ଆଲୋଚନା ଗୁଡ଼ିକୁ ଇତି ମଧ୍ୟରେ ସ୍ଥଗିତ ରଖିବାକୁ ଆହ୍ୱାନ ଦେବା ଅଯୌକ୍ତିକ ମନେ ହେବ ନାହିଁ ।

"କିଛି ସମୟ ପାଇଁ ବଲାତ୍କାରର ମୁଖ ବନ୍ଦ କର । ଆମେ ଏହି ଦ୍ୱ୍ୟର୍ଥକତା ଗୁଡ଼ିକୁ ସୁସ୍ପଷ୍ଟ କରିପାରିବା ପର୍ଯ୍ୟନ୍ତ ଏବଂ ସେଗୁଡ଼ିକର ଉତ୍ସ, ସେଗୁଡ଼ିକର ମୁଖ୍ୟ ଓ ସେଗୁଡ଼ିକରୁ ନିଃସୃତ ବିଷୟାବଳୀର ଜ୍ଞାନ ଅର୍ଜନ କରିବା ପର୍ଯ୍ୟନ୍ତ ତାହା ତଥୈବ ରହୁ ।"

ଗଦ୍ୟ କୁହାଯାଉଥିବା ପ୍ରତୀକ ପଦ୍ଧତିକୁ ଏହି ସୂତ୍ରଗୁଡ଼ିକ ନିୟନ୍ତ୍ରିତ କରେ । ଆମ ସହିତ ବିଶ୍ୱାସଘାତକତା କରିବାରୁ ଆମ ଉକ୍ତିକୁ ରକ୍ଷା କରିବା ନିମନ୍ତେ ଯଦି ଏଗୁଡ଼ିକର ନିଜସ୍ୱ ପର୍ଯ୍ୟାପ୍ତତା ନାହିଁ ବୋଲି ଜଣାପଡ଼େ, ତେବେ ଅନ୍ୟ ଯାହାକିଛି ସେଥିନିମନ୍ତେ ଆବଶ୍ୟକ ହୋଇପାରେ, ତାହା ମଧ୍ୟ ସେହି ପ୍ରକୃତିର ହେବ । ଏହି ସୂତ୍ରଗୁଡ଼ିକର ଅନୁବର୍ତ୍ତୀ ହେବା ଦ୍ୱାରାହିଁ କେବଳ ଏକ ପ୍ରତୀକସମଷ୍ଟି ସୁସହିତ ହୋଇ ପାରିବ । କେବଳ ଏହି ପ୍ରକାର ଏକ ପ୍ରତୀକସମଷ୍ଟିହିଁ ନିରାପଦରେ ପ୍ରତୀକମାନଙ୍କ ସେହି ରୂପାନ୍ତରୀକରଣ ଓ ପ୍ରତିସ୍ଥାପନ କରିବାକୁ ଆମକୁ ସମର୍ଥ କରିବ, ଯଦ୍ୱାରା ବୈଜ୍ଞାନିକ ଭାଷା ତାହାର ପାର୍ଥକ୍ୟ ଓ ସିଦ୍ଧାନ୍ତ ଗୁଡ଼ିକର ଅନୁମନନ ଓ ଲିପିବଦ୍ଧ-କରଣର ପ୍ରସ୍ତାବ କରେ । ଆମେ ଦେଖିସାରିଛୁଁ ଯେ ଆଦିମାନବକୁ ଏହି ପ୍ରତିସ୍ଥାଗୁଡ଼ିକ ଇନ୍ଦ୍ରଜାଲ ପ୍ରକୃତିକ ପରି ମନେ ହେଉଥିଲା । ଆହୁରି ମଧ୍ୟ, କେବଳ ଏହି ପ୍ରକାର ଏକ ପ୍ରତୀକ ସମଷ୍ଟିହିଁ ଦାର୍ଶନିକକୁ ତାହାର ନିଜର ଅଥବା ତାହାର ସହକର୍ମୀମାନଙ୍କ ଅସାଧାରଣ ଅଭିବ୍ୟକ୍ତ ବିଷୟକ ଆଲୋଚନା ବ୍ୟତୀତ ଅନ୍ୟାନ୍ୟ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟର ଆଲୋଚନା ନିମନ୍ତେ ସମର୍ଥ କରି ପାରିବ ।



# ଷଷ୍ଠ ପରିଚ୍ଛେଦ

## ସଂଜ୍ଞା ସିଦ୍ଧାନ୍ତ

ଅସଂଗତ ସିଦ୍ଧାନ୍ତଗୁଡ଼ିକର ପ୍ରଥମ କାରଣ ସ୍ୱରୂପ ମୁଁ ପଦ୍ଧତିର ଅଭାବକୁ ଦାୟୀ କରେଁ । ସେଗୁଡ଼ିକର ଯୁକ୍ତିଯୁକ୍ତ କଳନା ସଂଜ୍ଞାରୁ ଆରମ୍ଭ କରାଯାଇ ନ ଥିବାରୁ ଅସଂଗତିର ଉଦ୍ଭବ ହୁଏ ।—

ହବ୍‌ସ

"ମୋର ଦୁର୍ବଳ ବୋଧଶକ୍ତିକୁ ଟିକିଏ ସୁବିଧା ଦେବାପାଇଁ ଲର୍ଡ ଡାର୍ଲିଂଟନ୍ ! ତୁମ ବକ୍ତବ୍ୟର ପ୍ରକୃତ ତାତ୍ପର୍ଯ୍ୟ କରି ମୋତେ କେବଳ ଟିକିଏ ବୁଝାଇ ଦିଅ ।"—"ମୁଁ ଭାବୁଛି, ମୁଁ ବରଂ ନ ବୁଝାଇବା ଭଲ, ଡଚେସ୍ ! ଆଜିକାଲି ବୋଧଗମ୍ୟ ହେବା ହେଉଛି ଧରାପଡ଼ିଯିବା ।"—

ଲେଡ଼ି ଉଇଣ୍ଡରମିଅରସ୍ ଫ୍ୟାନ୍ ।

ସ୍ୱାଭାବିକ ପରିସ୍ଥିତିରେ ବ୍ୟବହାରମୂଳକ ପ୍ରୟୋଗଉପଯୋଗୀ କୌଣସି ସଂଜ୍ଞା ସିଦ୍ଧାନ୍ତ ବର୍ତ୍ତମାନ ଅବସ୍ଥାରେ ନାହିଁ । ସଂଜ୍ଞା ସମ୍ବନ୍ଧୀୟ ପ୍ରାଚୀନ ସିଦ୍ଧାନ୍ତ ଜାତି ଓ ଅବଚ୍ଛେଦକର ନିଷ୍ଫଳ ଘୂର୍ଣ୍ଣିରେ କିମ୍ବା 'ଲକ୍ଷଣାର୍ଥ' ପଦ ହେତୁକ ଗଣ୍ଡଗୋଳରେ ଦିଗ୍‌ଭ୍ରଷ୍ଟ ହୋଇ ନ ଥିବା କ୍ଷେତ୍ରରେ ବିଶେଷ କୌଣସି ପ୍ରଗତି କରି ପାରିନାହିଁ । ଏହାର ମୁଖ୍ୟ କାରଣ ହେଉଛି ଯେ ଅତି ପ୍ରାଚୀନକାଳରୁ ତର୍କଶାସ୍ତ୍ରର ପରିସୀମାରେ ଭାଷା ସମ୍ବନ୍ଧୀୟ ଏକ ବର୍ବର ଅନ୍ଧବିଶ୍ୱାସ (୧) ସହିତ ହୋଇ ରହିଛି । ସ୍ୱାଭାବିକ ଅସୁବିଧା ପଥରୋଧ କରି ରହିଛି; ଏବଂ ପ୍ରଥମରୁ ଏଗୁଡ଼ିକ ନିରାକୃତ ହେବା ଆବଶ୍ୟକ ।

---

(୧) ଯେଉଁଠାରେ ନାମ-ଇନ୍ଦ୍ରଜାଲର ପ୍ରଭାବ ଥିବ ବୋଲି ଆଶଙ୍କା କରିବାର ସମ୍ଭାବନା ସ୍ୱଳ୍ପ; ସେହିପରି କ୍ଷେତ୍ରରେ ବି ତାହା ପ୍ରାୟଶଃ ପ୍ରଭାବଶାଳୀ ହୋଇ ରହିଥାଏ । ୟୁରାନସ୍‌ର ଆବିଷ୍କାର Sachs ଙ୍କୁ ଚମତ୍କୃତ କରିପକାଇଥିଲା । ଏହା ତାଙ୍କର ପ୍ରଶ୍ନରେ ଅଭିବ୍ୟକ୍ତ—"ଆମର କି ପ୍ରମାଣ ରହିଛି ଯେ ଯେଉଁ ଗ୍ରହ ଜ୍ୟୋତିର୍ବିଜ୍ଞାନୀଙ୍କ ଦ୍ୱାରା ୟୁରାନସ୍ ବୋଲି ବିବେଚିତ, ତାହା **ବାସ୍ତବରେ** ୟୁରାନସ୍ ?"

ପ୍ରଥମତଃ, ଆମେ ବସ୍ତୁଗୁଡ଼ିକର ସଂଜ୍ଞା ଦେଉଁ କି ଶବ୍ଦମାନଙ୍କ ସଂଜ୍ଞା ଦେଉଁ ? ଏହି ବିଷୟର ନିର୍ଦ୍ଧାରଣ ନିମନ୍ତେ ଆମକୁ କେବଳ ଏତିକି ଲକ୍ଷ୍ୟ କରିବାକୁ ହେବ ଯେ ଯେତେବେଳେ ଆମେ ଶବ୍ଦଗୁଡ଼ିକର ସଂଜ୍ଞା ଦେବା କଥା କହୁଁ, ସେତେବେଳେ ଆମେ

---

Herbert Spencer ମଧ୍ୟ ଭାବୁଥିଲେ ଯେ "ଗୋଟିଏ ଶବ୍ଦର ବିଭିନ୍ନ କ୍ଷେତ୍ର ସମ୍ପର୍କୀୟ ଅର୍ଥମାନଙ୍କର ତୁଳନା କରି ଏବଂ ସେଗୁଡ଼ିକରେ ଯାହା ସାଧାରଣ ରହିଛି, ତାହା ପର୍ଯ୍ୟବେକ୍ଷଣ କରି ଶବ୍ଦର **ମୌଳିକ ଅର୍ଥ** ଆମେ ଜାଣିପାରୁଁ······ସୁତରାଂ ଏହିପରିଭାବେ 'ଉତ୍ତମ' ପ୍ରଭୃତି ଶବ୍ଦମାନଙ୍କର ଅର୍ଥ ନିର୍ଦ୍ଧାରଣ କରାଯାଉ।" Sachs ଙ୍କ ଉକ୍ତି Herbert Spencer ଙ୍କ ଉକ୍ତିଠାରୁ କେବଳ ଏକମାତ୍ରା ଅଧିକ ଆଗମ।

ଉପର୍ଯ୍ୟୁକ୍ତ ପଦଦ୍ୱୟ ଆମଦ୍ୱାରା ରେଖାରୂଢ଼ ହୋଇଛି । Nansen ଙ୍କ ବର୍ଣ୍ଣନାନୁସାରେ ଗ୍ରୀନ୍‌ଲାଣ୍ଡୀୟ ଏସ୍କିମୋମାନେ ବିଶ୍ୱାସ କରୁଥିଲେ ଯେ "ସେହି ଏକ ନାମଧାରୀ ଦୁଇଜଣ ବ୍ୟକ୍ତିଙ୍କ ମଧ୍ୟରେ ଆତ୍ମିକ ସୌସାଦୃଶ୍ୟ ଥାଏ।" ଏହି କଥାରେ ବିଶ୍ୱାସ କରୁ ନଥିବା କୌଣସି ବ୍ୟକ୍ତି ମୌଳିକ ଗୁଣ ମାଧ୍ୟମରେ ଉପର୍ଯ୍ୟୁକ୍ତଭାବେ ସଂଜ୍ଞାଦେବା ପ୍ରୟାସର ନିଷ୍ଫଳତା ହୃଦୟଙ୍ଗମ କରିବାରେ ଅସଫଳ ହେବ ନାହିଁ। ଆଗରୁ କୁହାଯାଇଥିବା ମତରୁ, ଅର୍ଥାତ୍ ଶବ୍ଦ ଗୁଡ଼ିକ କୌଣସି ନା କୌଣସି ଭାବେ ବସ୍ତୁମାନଙ୍କ ଅଂଶ (ବଡ ଆଶ୍ଚର୍ଯ୍ୟର କଥା ଯେ ନିଜେ Spencer ଅନ୍ୟତ୍ର ସମ୍ପୂର୍ଣ୍ଣ ଭାବେ ଗ୍ରୀକ୍ ଚିନ୍ତାଧାରା ଉପରେ ଏହି ଦୋଷ ଆରୋପ କରିଛନ୍ତି)—ଏହି ମତରୁ ଆଲୋଚ୍ୟ ନିୟମଟିର ଉଦ୍ଭବ ହୋଇଛି । ମନେ କରାଯାଉଥିଲା ଯେ ପ୍ରତ୍ୟେକ ବସ୍ତୁର ଏକ ସ୍ୱକୀୟ ନାମ (Proper name) ରହିଛି । ଯଦି ଏହା ସତ୍ୟ ହୁଏ, ତେବେ ଗୋଟିଏ ନାମର ସ୍ଥିତିରୁ ନାମଧାରୀ ବସ୍ତୁ ବା 'ପ୍ରତ୍ୟୟ'କୁ ଗଭୀର ଆତ୍ମବିଶ୍ୱାସ ସହକାରେ ଅନ୍ୱେଷଣ କରିବାକୁ ଆମେ ସମର୍ଥ ହେବା ଏବଂ ସାଧାରଣତଃ ସେହି ଏକ ନାମଧାରୀ ସମସ୍ତ ବସ୍ତୁର କିଛି ବିଷୟ ସାଧାରଣ ରହିବ । ଏହି ସାଧାରଣ ବିଷୟକୁ ସଂଜ୍ଞା ପ୍ରଣାଳୀ ଆବିଷ୍କାର କରିବାକୁ ଚେଷ୍ଟା କରିବା ଆବଶ୍ୟକ । ବସ୍ତୁ ଗୁଡ଼ିକ କଣ, ତାହାର, ଅର୍ଥାତ୍ Duns Scotus ଯାହାକୁ haccceitas [ମୂଳ ସତ୍ତା] କହୁଥିଲେ ତାହାର ଅନ୍ୱେଷଣ ସମ୍ଭବତଃ ଶବ୍ଦଗୁଡ଼ିକ ପ୍ରତି ଭକ୍ତି ମନୋଭାବରୁ ଉତ୍ପନ୍ନ ହୋଇଛି । ଅବଶ୍ୟ ଯେଉଁ ଭାଷାତ୍ମକ ଅସଂଗତି ଗୁଡ଼ିକ ଆରିଷ୍ଟଟଲଙ୍କ ଅନୁଗାମୀମାନଙ୍କ ଲକ୍ଷ୍ୟ କରାଯାଇଛି ସେ-ଗୁଡ଼ିକୁ ଆରିଷ୍ଟଟଲ୍‌ଙ୍କଠାରେ ଆରୋପ କରିବା ଅନୁଚିତ ହେବ । ଦର୍ଶନ ଶାସ୍ତ୍ରର ଇତିହାସରେ ଏବଂ ତର୍କଶାସ୍ତ୍ରର ସର୍ବାଧୁନିକ ଅଭିବୃଦ୍ଧି ଗୁଡ଼ିକରେ ଏହି ପ୍ରଥାମାନଙ୍କ ସର୍ବାଧିକ ଅଦ୍ଭୁତ ଧରଣର କାହିତାର୍ଥ ମଧ୍ୟରୁ କେତେକ ଦୃଷ୍ଟାନ୍ତର ବିସ୍ତୃତ ପ୍ରଶଂସନୀୟ ଭାବେ ଅଧ୍ୟାପକ L. Rougier ତାଙ୍କ Paralogismes du Rationalisme ପୁସ୍ତକରେ ମୁଖ୍ୟତଃ ପୃ ୧୪୭, ୩୭୮ ଏବଂ ୩୮୭ରେ କରିଛନ୍ତି ।

ଯାହା ନିର୍ଦ୍ଦେଶ କରୁ, ତାହା 'ବସ୍ତୁମାନଙ୍କ ସଂଜ୍ଞା' ଦ୍ୱାରା ମନେ କରାଯାଉଥିବା ନିର୍ଦ୍ଦେଶଠାରୁ ଅତ୍ୟନ୍ତ ଭିନ୍ନ । **ଶବ୍ଦର** ସଂଜ୍ଞା ଦେଲାବେଳେ ଆମେ ଆଉ ଏକ ଶବ୍ଦ-ସମଷ୍ଟି ନେଉ; ଶବ୍ଦଟିର ନିର୍ଦ୍ଦେଶ୍ୟ ଯାହା, ତନ୍ନିମନ୍ତେ ଏହି ଶବ୍ଦସମଷ୍ଟିର ମଧ୍ୟ ବ୍ୟବହାର କରାଯାଇ ପାରେ । ଅର୍ଥାତ୍ ଏକ ଦତ୍ତ ପରିସ୍ଥିତିରେ ଯେଉଁ ପ୍ରତୀକଟି ଅଧିକ ଉତ୍ତମଭାବେ ବୁଝିହେବ, ତାହାକୁ ଆମେ ଶବ୍ଦ ସ୍ଥାନରେ ବ୍ୟବହାର କରୁଁ । ପକ୍ଷାନ୍ତରେ, ବସ୍ତୁର ସଂଜ୍ଞା ଦେବା କ୍ଷେତ୍ରରେ ଏପରି ପ୍ରତିସ୍ଥାପକ ନିହିତ ନଥାଏ । 'ଘୋଡ଼ା' ଶବ୍ଦର ସଂଜ୍ଞାଠାରୁ ପୃଥକ୍‌ଭାବେ ଘୋଡ଼ାର ତଥାକଥିତ ସଂଜ୍ଞା ହେଉଛି ତତ୍‌ସମ୍ବନ୍ଧୀୟ କେତେକ ଗୁଣର ବର୍ଣ୍ଣନା ସମ୍ବଳିତ ଏପରି ଏକ ଉକ୍ତି ଯାହା ସାହାଯ୍ୟରେ ତାହାକୁ ଅନ୍ୟାନ୍ୟ ବସ୍ତୁ ସହିତ ତୁଳନା କରି ପୃଥକ୍ କରାଯାଇ ପାରିବ । ସୁତରାଂ 'ବାଚନିକ' ଓ 'ବାସ୍ତବ' ସଂଜ୍ଞା (୧) ମଧ୍ୟରେ କୌଣସି ବିରୋଧ ନାହିଁ ।

ଯେଉଁ ଶବ୍ଦଗୁଚ୍ଛକର ମାଧ୍ୟମରେ ଏହି ଗୁଣମାନଙ୍କ ବର୍ଣ୍ଣନା କରାଯାଏ, ସେଗୁଡ଼ିକ ଅବଶ୍ୟ ଏକ ପ୍ରତିସ୍ଥାପନୀୟ ପ୍ରତୀକ ଯୋଗାଇଥାଏ । ଏହା ହୁଏତ ଏକ ସମ୍ପୂର୍ଣ୍ଣ ବିଶ୍ଳେଷଣ; ଅଥବା ବର୍ଗୀକରଣ ପଦ୍ଧତି (ପ୍ରଥାଗତ 'ଜାତିସ୍ଥାବଚ୍ଛେଦକଃ' ପ୍ରରୂପ) ଦ୍ୱାରା ସଂକ୍ଷିପ୍ତୀକୃତ ହୋଇଥାଏ; ଏବଂ ମୂଳ ପ୍ରତୀକର ନିର୍ଦ୍ଦେଶ୍ୟ (ଘୋଡ଼ା) ଯାହା, ଏହି ପ୍ରତିସ୍ଥାପିତ ପ୍ରତୀକର ନିର୍ଦ୍ଦେଶ୍ୟ ମଧ୍ୟ ସେଇଆ । କିନ୍ତୁ ଏହି ପ୍ରକ୍ରିୟାର ମୁଖ୍ୟ ଉଦ୍ଦେଶ୍ୟ ବିଶ୍ଳେଷଣ ନୁହେଁ, ପ୍ରକ୍ରିୟାଟି ବରଂ ହେଉଛି ଏକ ଉପସିଦ୍ଧାନ୍ତ ନିଃସରଣ ତୁଲ୍ୟ । ଆହୁରି ମଧ୍ୟ, କୌଣସି ବିଜ୍ଞାନ ଦ୍ୱାରା ଦୀର୍ଘକାଳାଧୀତ ଜଟିଳ ବସ୍ତୁଗୁଡ଼ିକ କ୍ଷେତ୍ରରେ ହିଁ କେବଳ ଏହି ପ୍ରକ୍ରିୟାର ନିୟୋଜନ ସମ୍ଭବପର । ସରଳ ବସ୍ତୁ ବା ଗବେଷଣା ଅଭାବରୁ ବିଶ୍ଳେଷଣୀୟ ବୋଲି ଜଣା ପଡ଼ୁ ନଥିବା ବସ୍ତୁ ତଥା ଏ ଅବଧି ବର୍ଗୀକରଣ ପଦ୍ଧତି ପ୍ରୟୋଗ କରାଯାଇ ନଥିବା ସମସ୍ତ ବସ୍ତୁ କ୍ଷେତ୍ରରେ ସ୍ପଷ୍ଟତଃ ଏ ପ୍ରକାର ପଦ୍ଧତି ବ୍ୟବହାରର ଅବକାଶ ନାହିଁ । ପ୍ରତୀକ ସଂଜ୍ଞା ଯୋଗାଉଥିବା ପ୍ରତିସ୍ଥାପନ ଯୋଗ୍ୟ ଅନ୍ୟାନ୍ୟ ପ୍ରତୀକ ଆବିଷ୍କାର କରିବାର ଏଠାରେ ଆବଶ୍ୟକତା ରହିଛି । ସ୍ଥୂଳତଃ ଏହାହିଁ ହେଉଛି ବାସ୍ତବ ଓ ସଙ୍କେତାତ୍ମକ ସଂଜ୍ଞାର ସମର୍ଥକମାନଙ୍କ ମଧ୍ୟରେ ବହୁ ଦିନରୁ ରହିଥିବା ବିବାଦର ମୀମାଂସା ।

ଦ୍ୱିତୀୟ ଅସୁବିଧା ଉପର୍ଯ୍ୟୁକ୍ତ ଅସୁବିଧା ସହିତ ନିବିଡ଼ଭାବେ ସଂପୃକ୍ତ । ସଂଜ୍ଞା ପ୍ରତୀକ-ପ୍ରତିସ୍ଥାପନ ହୋଇଥିଲେହେଁ ବ୍ୟାକରଣଗତ କାରଣରୁ ସଂଜ୍ଞାଗୁଡ଼ିକୁ ସାଧାରଣତଃ

---

(୧) ଏହି ପାର୍ଥକ୍ୟଟି ଯେପରି ବୋଲି ଧାରଣା କରାଯାଏ, ତାହାର ଏକ ଦୃଷ୍ଟାନ୍ତ ପାଇବା ନିମନ୍ତେ Leibnitz ଙ୍କ *New Essays Concerning Human Understanding*, ୧୯୧୬ ପୃ ୩୧୭—୭ ଦ୍ରଷ୍ଟବ୍ୟ ।

ଏପରି ଏକ ଆକାରରେ ବ୍ୟକ୍ତ କରିବାକୁ ପଡେ ଯେ ମନେହୁଏ ସେଗୁଡ଼ିକ ଯେପରି ବସ୍ତୁମାନଙ୍କ ସମ୍ବନ୍ଧରେ ଦିଆଯାଉଛି । ଏପରି ହେବାର କାରଣ ହେଉଛି ଆମର ସଂକ୍ଷିପ୍ତୀକରଣ ଅଭ୍ୟାସ । “ ‘ଅଗ୍ନି’ ଶବ୍ଦ ଯେଉଁ ନିର୍ଦ୍ଦେଶ୍ୟକୁ ନିର୍ଦ୍ଦେଶ କରେ, ‘ଯାହା ଦହନ କରେ’ ଶବ୍ଦ ସମଷ୍ଟି ମଧ୍ୟ ଠିକ୍ ସେହି ନିର୍ଦ୍ଦେଶ୍ୟକୁ ନିର୍ଦ୍ଦେଶ କରେ—ଏହି ପ୍ରତୀକକୁ ସଂକ୍ଷିପ୍ତ କରି ଆମେ କହୁଁ “ଅଗ୍ନି ହେଉଛି ଯାହା ଦହନ କରେ ।” ‘ଶ୍ୱାନ’ ଶବ୍ଦ ଏବଂ ‘କୁକୁର’ ଶବ୍ଦ ଉଭୟ ସେହି ଏକ ପ୍ରାଣୀକୁ ବୁଝାଏ”—ଏହା କହିବା ଉଚିତ ହୋଇଥିବା ସ୍ଥଳେ ଆମେ କହୁଁ ଯେ “ଶ୍ୱାନର ଅର୍ଥ କୁକୁର ।” (୧)

ବସ୍ତୁତଃ, ସମସ୍ତ ସଂଜ୍ଞା ହେଉଛି ମୁଖ୍ୟତଃ ତତ୍କାଳ କାର୍ଯ୍ୟସାଧକ । ସେଗୁଡ଼ିକ କୌଣସି ଏକ ଉଦ୍ଦେଶ୍ୟ ବା ପରିସ୍ଥିତି ପ୍ରତି ପ୍ରାସଙ୍ଗିକ । ସୁତରାଂ କେବଳ ଏକ ସୀମିତ ପରିସରରେ ବା ‘ପ୍ରସଙ୍ଗ କ୍ଷେତ୍ର’ରେ ସେଗୁଡ଼ିକ ପ୍ରଯୋଜ୍ୟ । କେତେକ ସଂଜ୍ଞା କ୍ଷେତ୍ରରେ, ଉଦାହରଣ ସ୍ୱରୂପ, ପଦାର୍ଥ ବିଜ୍ଞାନର ସଂଜ୍ଞାମାନଙ୍କ କ୍ଷେତ୍ରରେ, ଏହି ପ୍ରସଙ୍ଗକ୍ଷେତ୍ର ଅତ୍ୟନ୍ତ ବ୍ୟାପକ । ସ୍କୁଲ୍ ଶିକ୍ଷକଙ୍କ ପକ୍ଷରେ ‘ଶକ୍ତି’ର ପ୍ରସଙ୍ଗ କ୍ଷେତ୍ର ଅପେକ୍ଷା ପଦାର୍ଥ ବିଜ୍ଞାନୀ ପକ୍ଷରେ ତାହାର ପ୍ରସଙ୍ଗକ୍ଷେତ୍ର ଅଧିକ ବ୍ୟାପକ; କାରଣ ଯେଉଁ ଛାତ୍ରର କୃତିତ୍ୱ-ବିବରଣୀ ପତ୍ରରେ ସ୍କୁଲଶିକ୍ଷକ “ଶକ୍ତିହୀନ” ବୋଲି ମନ୍ତବ୍ୟ ଦେଇଛନ୍ତି, ତାହାର ଯେ ବିଭିନ୍ନ ପ୍ରକାର ଶକ୍ତି ରହିଛି—ଏକଥା ପଦାର୍ଥ ବିଜ୍ଞାନୀ ଜାଣେ । ଯେଉଁ ପ୍ରସଙ୍ଗକ୍ଷେତ୍ର ପାଇଁ ଶବ୍ଦର ସଂଜ୍ଞା ଉଦ୍ଦିଷ୍ଟ, ତଦ୍‌ବହିର୍ଭୂତ କ୍ଷେତ୍ରରେ ଶବ୍ଦଟିକୁ ବ୍ୟବହାର କଲି ମାତ୍ରେ ତାହା ଏକ ରୂପକ ହୋଇଯାଏ ଏବଂ ତାହାର ଏକ ନୂତନ ସଂଜ୍ଞାଦେବା ଆବଶ୍ୟକ ହୋଇପାରେ । ଅବଶ୍ୟ ଉଲ୍ଲିଖିତ ବିଷୟ ବ୍ୟତୀତ ଆହୁରି ଅଧିକ ବିଷୟ ରୂପକରେ ରହିଛି; କିନ୍ତୁ ଆମେ ଏଠାରେ **ପ୍ରତୀକାତ୍ମକ** ରୂପକ ଭାଷାର ମୌଳିକ ବୈଶିଷ୍ଟ୍ୟର ଉଲ୍ଲେଖ କରିଛୁଁ । ଏହାର

---

(୧) ଉଲ୍ଲେଖ କରାଯାଇପାରେ ଯେ “ଅଗ୍ନି ଦହନ କରେ” ବୋଲି ଆମେ କହିବାବେଳେ ମନେ ହୁଏ, ଆମେ ଯେପରି ପ୍ରତୀକ ସମ୍ବନ୍ଧରେ ନୁହେଁ, ଅଗ୍ନି ସମ୍ବନ୍ଧରେ କେତେକ ଜ୍ଞାତବ୍ୟ ବିଷୟ ଜଣାଉଛୁଁ; କିନ୍ତୁ ‘ଶ୍ୱାନ’ ହେଉଛି ‘କୁକୁର’ ପରି ପ୍ରତିଶବ୍ଦ-ମାନଙ୍କ ସଂଯୋଗ କ୍ଷେତ୍ରରେ ଆମେ ସେପରି ଏଥିରୁ କୌଣସିଟିର ସମ୍ବନ୍ଧରେ ଜ୍ଞାନ ପରିବେଷଣ କରି ପାରୁନାହୁଁ । ଏପରି ଜଣାପଡ଼ିବାର କାରଣ ହେଉଛି ଯେ “ଅଗ୍ନି ଦହନ କରେ” କ୍ଷେତ୍ରରେ, ‘ଅଗ୍ନି’ ଓ ‘ଦହନ କରେ’ ଭିନ୍ନ ଭିନ୍ନ ସଂଜ୍ଞାସମ୍ବଳିତ ହୋଇ ବ୍ୟବହୃତ । ଯଦି ଆମେ ‘ଶ୍ୱାନ’ର ସଂଜ୍ଞା “ଗୃହପାଳିତ ହେଟାବାଘ ସଦୃଶ ପ୍ରାଣୀ” ବୋଲି ଦେଉଁ, ଏବଂ ‘କୁକୁର’ର ସଂଜ୍ଞା “ଭୁକୁଥିବା ଚତୁଷ୍ପଦ” ବୋଲି ଦେଉଁ, ତେବେ ଆମେ କହିପାରିବା ଯେ “ ‘ଶ୍ୱାନ’ ହେଉଛି ‘କୁକୁର’ ” (=“କୁକୁର ଭୁକେ”) ଏତଦ୍ଦ୍ୱାରା ଏହା ଜ୍ଞାତବ୍ୟ ବିଷୟ ପରିବେଷଣ କରିବ ।

ଏବଂ **ସଂବେଗାତ୍ମକ** ରୂପକ ଭାଷାର ପାର୍ଥକ୍ୟ ପରବର୍ତ୍ତୀ ପଦଟୀକା ପରିଶିଷ୍ଟ ସୂଚିତ ପୃଷ୍ଠାରେ ଆଲୋଚିତ ହେବ ।

ଚତୁର୍ଥତଃ, 'ବସ୍ତ୍ୱର୍ଥକ' ସଂଜ୍ଞାଠାରୁ ଭିନ୍ନ 'ଗୁଣାର୍ଥକ' ସଂଜ୍ଞାସଂବନ୍ଧୀୟ ଏକ ସମସ୍ୟା ରହିଛି । 'ବାଚ୍ୟାର୍ଥର ସୂଚନା ଦେବା' ଓ 'ଲକ୍ଷଣାର୍ଥର ସୂଚନା ଦେବା' ପଦ ଦୁଇଟିର ବ୍ୟବହାରରୁ ଏହି ସମସ୍ୟା ପ୍ରାଧାନ୍ୟ ଲାଭ କରିଛି । ନବମ ପରିଚ୍ଛେଦରେ ଏହି ପାର୍ଥକ୍ୟଗୁଡ଼ିକର କୃତ୍ରିମତା ପ୍ରଦର୍ଶିତ ହେବ । ଏଠାରେ କେବଳ ଏତିକି ସୂଚିତ କରିଦେବା ଆବଶ୍ୟକ ଯେ ଦୁଇଟି ପ୍ରତୀକ ଯେତେବେଳେ ସେହି ଏକ ନିର୍ଦ୍ଦେଶ୍ୟକୁ ପ୍ରତୀକାନ୍ୱିତ କରେ, ସେ ଦୁଇଟିର ଲକ୍ଷଣାର୍ଥ ସମାନ ବୋଲି କୁହାଯାଇ ପାରେ । ନିର୍ଦ୍ଦେଶ୍ୟର ଯେଉଁ ଗୁଣଗୁଡ଼ିକ ହେତୁରୁ ମୂଳ ସଙ୍କେତ ସହିତ ତାହା ଏକ ପ୍ରସଙ୍ଗ ଗଠନ କରେ, ସେହି ଗୁଣଗୁଡ଼ିକର କୌଣସି ପରିବର୍ତ୍ତନ ନ ଘଟାଇ ଯେଉଁ ସଂଜ୍ଞା ଦିଆଯାଏ, ତାହା ହେଉଛି ଗୁଣାର୍ଥକ ବା ଲକ୍ଷଣାର୍ଥକ ସଂଜ୍ଞା । ବସ୍ତ୍ୱର୍ଥକ ସଂଜ୍ଞାରେ ଏ ପ୍ରକାର ପରିବର୍ତ୍ତନ ଘଟିପାରେ । ଭିନ୍ନ ଭାବରେ କହିଲେ, ଆମେ ଗୁଣାର୍ଥକ ସଂଜ୍ଞା ଦେଲାବେଳେ ସଂଜ୍ଞେୟ ପଦ ଓ ସଂଜ୍ଞାବାକ୍ୟ ମଧ୍ୟରେ ସେହି ଏକ ସଂକେତ-ପରିସ୍ଥିତି ରଖୁଁ; କିନ୍ତୁ ଆମେ ବସ୍ତ୍ୱର୍ଥକ ସଂଜ୍ଞା ଦେଲାବେଳେ ଏହା ପରିବର୍ତ୍ତିତ ହୋଇପାରେ । ସଂଜ୍ଞା ଓ ସାଧାରଣ ଧରଣର ବିବୃତି ମଧ୍ୟରେ ଥିବା ପାର୍ଥକ୍ୟର ଯଥାଯଥ ବିଚାର ମଧ୍ୟରେ ଆମେ ଏବେ ସମର୍ଥ । "ଗରିଲାଗୁଡ଼ିକ ପ୍ରାଣୀ" ଏବଂ "ଗରିଲାଗୁଡ଼ିକ ମେଳାପୀ" ହେଉଛି ଦୁଇଟି ପରସ୍ପର ଭିନ୍ନ ଉକ୍ତି । ଏ ଦୁଇଟି ଏହି ଦୃଷ୍ଟିରୁ ଭିନ୍ନ ଯେ ପ୍ରଥମଟିକୁ ବୁଝିବା ମାତ୍ରକେ ତାହା ନିଶ୍ଚିତଭାବେ ସତ୍ୟପର ମନେ ହୁଏ, କିନ୍ତୁ ଦ୍ୱିତୀୟଟିକୁ ସନ୍ଦେହ କରା ଯାଇପାରେ । "ଏହା ଏକ ଗରିଲା"—ଏଥିରୁ ସାକ୍ଷାତ୍‌ଭାବେ 'ଏହା ଏକ ପ୍ରାଣୀ' ନିଃସୃତ ହେଉଛି; କିନ୍ତୁ ଏଥିରୁ ନିଃସୃତ ହେଉନାହିଁ ଯେ ଏହା ଏକ ମେଳାପୀ ଜୀବ । ଏକ ପକ୍ଷରେ ପ୍ରାଣିତ୍ୱ ଓ ଗରିଲାତ୍ୱ ମଧ୍ୟରେ ଥିବା ମୁଖ୍ୟ ସମ୍ବନ୍ଧ ଓ ଅନ୍ୟ ପକ୍ଷରେ ଗରିଲାତ୍ୱ ଓ ମେଳାପିତ୍ୱ ମଧ୍ୟରେ ଥିବା ମୁଖ୍ୟ ସମ୍ବନ୍ଧ—ଏ ଦୁଇଟିକୁ ନେଇ ଆମେ ଯଦି ତନ୍ମଧ୍ୟରେ ପାର୍ଥକ୍ୟ ଖୋଜି ବସିବା, ତେବେ ତାହା କେବଳ ଉଦାସୀନ ଭାବେ ଆମ ଅବସରର ବିନିଯୋଗ କରିବା ହେବ । କିନ୍ତୁ ଏହି ପାର୍ଥକ୍ୟକୁ ଯଥା ସ୍ଥାନରେ ଖୋଜିଲେ, ଅର୍ଥାତ୍ ନିର୍ଦ୍ଦେଶ ଦୁଇଟିରେ କିମ୍ବା ସେ ଦୁଇଟି ମଧ୍ୟରେ (୧) ଖୋଜିଲେ, ଜଣାଯିବ ଯେ ପ୍ରଥମ କ୍ଷେତ୍ରରେ ଯେଉଁ ସଂଜ୍ଞା ବାସ୍ତବରେ ବ୍ୟବହୃତ, ତହିଁରେ ପ୍ରାଣୀ ଅନ୍ତର୍ଭୁକ୍ତ ଏବଂ ଗରିଲା ବିଷୟରେ କହିଲାବେଳେ ଆମେ ଏକ ପ୍ରାଣୀ ବିଷୟରେ କହୁଁ । ସୁତରାଂ ଯାହା ଆମେ

---

(୧) ଏକ ବିଲକ୍ଷଣ ଯୁକ୍ତ ଅଳୀକ ପ୍ରଶ୍ନ ରୂପେ ଆମେ ଏଠାରେ ପଚାରିପାରୁ : ପାର୍ଥକ୍ୟର ସ୍ଥିତି କେଉଁଠି ଥାଏ ?

ଆଗରୁ ନିର୍ଦ୍ଦେଶ କରି ସାରିଛୁଁ ତାହାକୁ ବିନାଦ୍ୱିଧାରେ ପୁନର୍ବାର ନିର୍ଦ୍ଦେଶ କରିବାକୁ ଆମେ ସମର୍ଥ । କିନ୍ତୁ ମେଳାପିଛୁ ଏହିପରି ଭାବେ ଅନ୍ତର୍ଭୁକ୍ତ ହୋଇ ନଥିଲ । ପ୍ରାସଙ୍ଗିକ ସଂଜ୍ଞା ପ୍ରକୃତରେ ହେଉଛି ସେହି ଗୋଟିକ, ଯାହା ବାସ୍ତବରେ ବ୍ୟବହୃତ । (୧)

ଆମେ କିପରିଭାବେ ସଂଜ୍ଞା ଦେଉଁ ବା କୌଣସି ଆଲୋଚନାର ଆବଶ୍ୟକ ହେଉଥିବା ପ୍ରତିଷ୍ଠାପନୀୟ ପ୍ରତୀକମାନ ଲାଭ କରୁଁ—ଏହି ମୌଳିକ ସମସ୍ୟାର ବର୍ତ୍ତମାନ ଏକ ନୂତନ ସମାଧାନ ଚେଷ୍ଟା କରିଯାଉ । ଆମେ ଜାଣୁଁ ଯେ 'ଗୋଟିଏ ପ୍ରତୀକ, ଯାହାକୁ ନିର୍ଦ୍ଦେଶ ଦେବାପାଇଁ ପ୍ରକୃତରେ ବ୍ୟବହୃତ, ତାହାକୁ ହିଁ ନିର୍ଦ୍ଦେଶ କରେ' । ତେଣୁ ଯାହାକୁ ନିର୍ଦ୍ଦେଶ ଦେବା 'ଉଦ୍ଦେଶ୍ୟ', ତାହାକୁ ହିଁ ଲୋକେ ନିର୍ଦ୍ଦେଶ କରନ୍ତି ବୋଲି ଗ୍ରହଣ କରି ନ ନେଇ, ସେମାନେ ଯାହାକୁ ପ୍ରକୃତରେ ନିର୍ଦ୍ଦେଶ କରନ୍ତି କେବଳ ସେହି ବିଷୟରେ ହିଁ ଆମେ ବିଚାର କରିବା । ପ୍ରତ୍ୟେକ ଆଲୋଚନାରେ ଯେଉଁ ପ୍ରଶ୍ନର ଉତ୍ତର ଦେବା ଆବଶ୍ୟକ, ତାହା ହେଉଛି ବାସ୍ତବରେ ଉତ୍ଥାପିତ ପ୍ରଶ୍ନ । ତେଣୁ ତାହାକୁ ହିଁ

(୧) ସମ୍ବନ୍ଧଗୁଡ଼ିକ ମଧ୍ୟରୁ ସମସ୍ତ କି କେତେକ ଆଭ୍ୟନ୍ତରୀଣ ବା ବାହ୍ୟ ଅଟନ୍ତି କି ନୁହନ୍ତି—ଏହି ବାଦାନୁବାଦ ଉପରେ ଏହି ବିଷୟର ସମ୍ପର୍କ ରହିଛି । ମନେ ହେବ ଯେ ଆଭ୍ୟନ୍ତରୀଣ ସମ୍ବନ୍ଧ ହେଉଛି ଏକ ସଂଜ୍ଞାପକ ସମ୍ବନ୍ଧ ଏବଂ ଯେଉଁ ସମ୍ବନ୍ଧ ଏହିପରି ଭାବେ ବ୍ୟବହୃତ, ତାହା ହେଉଛି ଆଭ୍ୟନ୍ତରୀଣ ସମ୍ବନ୍ଧ । ସୁତରାଂ 'ଆଭ୍ୟନ୍ତରୀଣ' ଓ 'ସଂଜ୍ଞାପକ' ଏକାର୍ଥ ବୋଧକ ଶବ୍ଦ; ଯଥା—ସାକଲ୍ୟର ଅଂଶ ସହିତ ସମ୍ବନ୍ଧ ହେଉଛି ଏକ ଆଭ୍ୟନ୍ତରୀଣ ସମ୍ବନ୍ଧ, କାରଣରି ସାକଲ୍ୟର ସଂଜ୍ଞା ସ୍ୱଭାବତଃ ତାହାର ଅଂଶାବଳୀର ଆଧାର ବୋଲି ଧରାଯାଏ । ସେହିପରି ଗୋଟିଏ ଅଂଶକୁ ଯଦି ସାକଲ୍ୟ-ଆଧାରିତ ବୋଲି ସଂଜ୍ଞା ଧରାଯାଏ, ତେବେ ଅଂଶର ସାକଲ୍ୟ ସହିତ ସମ୍ବନ୍ଧ ଏକ ଆଭ୍ୟନ୍ତରୀଣ ସମ୍ବନ୍ଧ ହେବ । ସଂଜ୍ଞାପକ ସମ୍ବନ୍ଧ ଭିନ୍ନ ଅନ୍ୟ ଯେ କୌଣସି ସମ୍ବନ୍ଧ ହେଉଛି ଏକ ବାହ୍ୟ ସମ୍ବନ୍ଧ । ଅଧ୍ୟାପକ G. E. Mooreଙ୍କ 'ଅନୁଲଗ୍ନତା ସମ୍ବନ୍ଧ' (Philosophical Studies ପୃ ୨୯୧) ଯଦି ଏକ ପ୍ରତିଷ୍ଠାପନମୂଳକ ସମ୍ବନ୍ଧ ହୋଇଥାଏ, ତାହା ନିର୍ଦ୍ଦେଶ୍ୟର ଏକତ୍ୱ ଉପରେ ଆଧାରିତ ପ୍ରତୀକମାନଙ୍କ ମଧ୍ୟରେ ଆଂଶିକ ପ୍ରତିଷ୍ଠାପନ ବା ସମ୍ପୂର୍ଣ୍ଣ ପ୍ରତିଷ୍ଠାପନ ଯାହା ହୋଇଥିଲେ ସୁଦ୍ଧା, ଆଭ୍ୟନ୍ତରୀଣ ସମ୍ବନ୍ଧର ଏହି ବିବରଣୀ ଅଧ୍ୟାପକ Mooreଙ୍କ ପ୍ରଦତ୍ତ ବିବରଣୀଠାରୁ ବିଶେଷ ପୃଥକ୍ ହେବନାହିଁ । କିନ୍ତୁ ଏହି ବାଦାନୁବାଦରେ ଅଂଶ ଗ୍ରହଣ କରିଥିବା ବିଭିନ୍ନ ଗୋଷ୍ଠୀ କ'ଣ ଯେ ଉପସ୍ଥାପିତ କରୁଛନ୍ତି, ତାହା ଆବିଷ୍କାର କରିବା ଏକ ଅସାଧାରଣ ଭାବେ କଷ୍ଟସାଧ୍ୟ ବ୍ୟାପାର ହୋଇ ରହିଛି । ବାସ୍ତବିକ, ଏଠାରେ ପ୍ରତ୍ୟେକେ ଅନ୍ୟକୁ ବୁଝି ପାରିବାର ନିଜ ଅସାମର୍ଥ୍ୟ ହେତୁ ଦୁଃଖ ପ୍ରକାଶ କରିବାରେ ଅଭ୍ୟସ୍ତ ।

ପ୍ରଥମେ ବୁଝିବା ଆବଶ୍ୟକ, ଅର୍ଥାତ୍ ପ୍ରତ୍ୟେକ କ୍ଷେତ୍ରରେ ଆମକୁ **ନିର୍ଦ୍ଦେଶ୍ୟଟିକୁ ବାହାର କରିବାକୁ** ହେବ କିପରି ଭାବେ ଏହା ସର୍ବୋତ୍ତମରୂପେ କରାଯାଇପାରେ ?

ଏହାର ଉତ୍ତର ସରଳ ଓ ସୁପ୍ରତ୍ୟକ୍ଷ । ପ୍ରଥମେ ଏପରି ଏକ ନିର୍ଦ୍ଦେଶ୍ୟ ସମଷ୍ଟି ବାହାର କର, ଯାହା ସୁନିଶ୍ଚିତରୂପେ ସମସ୍ତ ସମ୍ପୃକ୍ତ ବ୍ୟକ୍ତିଙ୍କ ପକ୍ଷରେ ସାଧାରଣ, ଏବଂ ଯାହା ସମ୍ବନ୍ଧରେ ମତୈକ୍ୟ ମିଳିପାରିବ । ତାପରେ, ଆବଶ୍ୟକ ହେଉଥିବା ନିର୍ଦ୍ଦେଶ୍ୟ ସହିତ ଏଗୁଡ଼ିକର ସମ୍ବନ୍ଧ ମାଧ୍ୟମରେ ନିର୍ଦ୍ଦେଶ୍ୟଟିକୁ ନିର୍ଦ୍ଧାରଣ କର ।

ସୌଭାଗ୍ୟର କଥା, ଯଦିଓ ଆମ ବାକ୍ୟାଳାପର ବହୁବିଧ ଜଟିଳତା ହେତୁ ଆମେ ଅଭ୍ୟାସଗତଭାବେ ବିଶ୍ୱାସ କରୁଁ ଯେ ବସ୍ତୁଗୁଡ଼ିକ ଅସଂଖ୍ୟ ପ୍ରକାରରେ ସମ୍ବନ୍ଧାନ୍ୱିତ, ତଥାପି ଆଲୋଚନା ସଂପୃକ୍ତ ମୌଳିକ ସମ୍ବନ୍ଧମାନଙ୍କ ପ୍ରକାରଭେଦର ସଂଖ୍ୟା ଅତି ସୀମିତ ।

ଜଣେ ସରଳସ୍ୱଭାବବିଶିଷ୍ଟ ବକ୍ତା ଅଧିକସଂଖ୍ୟକ ସମ୍ବନ୍ଧର ବ୍ୟବହାର କରିବାକୁ, କେବଳ ଆଂଶିକତଃ ନୁହେଁ ସମ୍ପୂର୍ଣ୍ଣତଃ, ଅସମର୍ଥ ହୋଇଥିବା ହେତୁ ଭାଷାର ଆକଟକାରକ ପ୍ରଭାବର ପରିଣତି ସ୍ୱରୂପ ଏହି ଦୈନ୍ୟର ଉଦ୍ଭବ ହୋଇଛି କି ଜଗତର ବାସ୍ତବ ସରଳତା ହେତୁରୁ ଏହି ଦୈନ୍ୟର ଉଦ୍ଭବ ହୋଇଛି, ତାହାର ବିଚାର ଏଠାରେ ଅନାବଶ୍ୟକ । ସାକ୍ଷାତ୍‌ଭାବେ ନାମିତ ହେବାବେଳେ ଏକ ସାଧାରଣ ସୁସ୍ଥମନ ଯେତେ ସଂଖ୍ୟକ ସମ୍ବନ୍ଧର ଚିନ୍ତା କରିପାରେ, କେବଳ ସେତିକି ସଂଖ୍ୟକ ସଂଜ୍ଞାରେ ବ୍ୟବହାର୍ଯ୍ୟ ମୌଳିକ ସମ୍ବନ୍ଧ ବ୍ୟାବହାରିକ ଉଦ୍ଦେଶ୍ୟ ନିମନ୍ତେ ରହିଥାଏ । ଉଦାହରଣ ସ୍ୱରୂପ, ଦୈଶିକ ସମ୍ବନ୍ଧ ବୋଲି ନାମ ଦିଆଯାଇଥିବା ଅପକର୍ଷଣର କିପରି ବୃଦ୍ଧି ଘଟିଛି; ତାହାର ବିଚାର କରାଯାଉ । ଦୈଶିକ ବସ୍ତୁପ୍ରତି ଆମର ସମସ୍ତ ନିର୍ଦ୍ଦେଶରେ କେତେକ ସାଧାରଣ ଉପାଦାନ ବା ସମ୍ବନ୍ଧସୂତ୍ର କାର୍ଯ୍ୟକାରୀ ହୁଏ । ପ୍ରାଥମିକ ଅବସ୍ଥାରେ ଦୈଶିକ ବସ୍ତୁମାନଙ୍କଠାରୁ ପୃଥକ୍ ଭାବେ ଦେଶ ସମ୍ବନ୍ଧରେ ଚିନ୍ତା କରିବାକୁ ବିଭିନ୍ନ ପ୍ରକାର ଗୁଡ଼ିଏ ଦୈଶିକବସ୍ତୁ ସମ୍ବନ୍ଧରେ ଆମକୁ କ୍ରମାନ୍ୱୟରେ ଶୀଘ୍ର ଶୀଘ୍ର ଚିନ୍ତା କରିବାକୁ ପଡୁଥିଲା ଯେପରି କି ନିର୍ଦ୍ଦେଶ୍ୟଗୁଡ଼ିକର ସାଧାରଣ ଉପାଦାନମାନ ସୁପ୍ରତ୍ୟକ୍ଷ ହୋଇ ଉଠିବ । କାଳକ୍ରମେ, ଏହି ସାଧାରଣ ଅର୍ଥାତ୍ ସାମାନ୍ୟ ନିର୍ଦ୍ଦେଶ-ଗୁଡ଼ିକୁ ଅସମ୍ପୃକ୍ତଭାବେ ବ୍ୟବହାର କରିବାପାଇଁ ଆମେ ସମର୍ଥ ହେଉ; ପ୍ରତ୍ୟେକଥର ନୂତନଭାବେ ଏହି ସାମାନ୍ୟ ନିର୍ଦ୍ଦେଶଗୁଡ଼ିକୁ ଗଠନ କରିବାର ଆବଶ୍ୟକତା ପଡ଼ୁନାହିଁ । ଏବେ 'ଦୈଶିକ ସମ୍ବନ୍ଧ' ପ୍ରତୀକର ବିଭିନ୍ନ ଉଦ୍ଦୀପନର ଉପସ୍ଥିତି ମାତ୍ରେ ଆମେ ସାମାନ୍ୟ ଦୈଶିକ ନିର୍ଦ୍ଦେଶ ଗୁଡ଼ିକୁ ବ୍ୟବହାର କରିବାକୁ ସମର୍ଥ । କିନ୍ତୁ ସେହିଁ ଅଳ୍ପକେତେକ

(୧) ସୂତ୍ର—୪ ଦ୍ୱାରା—୫ମ ପରିଚ୍ଛେଦ

କ୍ଷେତ୍ରରେ ଏ ପ୍ରକାର ଅପକର୍ଷରେ ସାଂବେଗଜନନ ମୂଲ୍ୟ ରହିଛି, ତଦ୍‌ବ୍ୟତୀତ ଅନ୍ୟ ସମସ୍ତ କ୍ଷେତ୍ରରେ ଏକ ସ୍ୱାଭାବିକ ମନ ଏବେ ସୂକ୍ଷ୍ମ ଉଦାହରଣ, ସାଦୃଶ୍ୟମୂଳକ ଦୃଷ୍ଟାନ୍ତ ଓ ରୂପକର ସାହାଯ୍ୟ ଆବଶ୍ୟକ କରେ । ଏହି ଆକର୍ଷଣ ଗୁଡ଼ିକର ସ୍ୱଳ୍ପତା ଭାଷାମୂଳକ ପରିସ୍ଥିତିକୁ ରକ୍ଷାକରେ । ମନେକର, ଆମେ କେତେକ ସମ୍ପୂର୍ଣ୍ଣ ଭିନ୍ନ ଭିନ୍ନ ପ୍ରକାର ସମ୍ବନ୍ଧର ଉପଯୋଗ କରୁଁ (ତଥାପି ଏହା ଅଳ୍ପସଂଖ୍ୟକ), ତେବେ ଆମ ନିର୍ଦ୍ଦେଶର ବିଭିନ୍ନତାରୁ ଜାତ ଭୁଲ୍ ବୁଝାମଣାକୁ ସୀମିତ ରଖିବା କାର୍ଯ୍ୟ ଏକ ଅସମ୍ଭବ ବ୍ୟାପାର ହୋଇ ଉଠିବ ।

ଏହିପରିଭାବେ ମୌଳିକ ସମ୍ବନ୍ଧଗୁଡ଼ିକର ସଂଖ୍ୟା ଯେତେ ଅଳ୍ପ ହୋଇଥାଏ ସେ ସଂଜ୍ଞା ସିଦ୍ଧାନ୍ତର କାର୍ଯ୍ୟ ଏଗୁଡ଼ିକର ଏକ ତାଲିକା ପ୍ରସ୍ତୁତ କରିବାରେ ପର୍ଯ୍ୟବସିତ ହୋଇଯାଏ । ଏହି ମୌଳିକ ସମ୍ବନ୍ଧମାନଙ୍କ ମଧ୍ୟରୁ ଏକ, ଅପର ବା ଏକାଧିକ ସମ୍ବନ୍ଧ ଦ୍ୱାରା ଆମେ ସମସ୍ତେ ଚିହ୍ନିବାକୁ ସମର୍ଥ ହୋଇ ପାରୁଥିବା ନିର୍ଦ୍ଦେଶ୍ୟମାନଙ୍କ ସହିତ ସମସ୍ତ ସମ୍ଭବପର ନିର୍ଦ୍ଦେଶ୍ୟ ଅନ୍ୱିତ । ମତୈକ୍ୟ ରହିଥିବା ଏକ ଦୃଢ଼ ନିର୍ଦ୍ଦିଷ୍ଟ ବିଷୟରୁ ଆରମ୍ଭ କରିବାକୁ ଆମେ ସମର୍ଥ ହୋଇପାରୁଛୁ । ଏକଥା ଜଣା ପଡ଼ିପାରେ; କିନ୍ତୁ ଏହାକୁ ନିର୍ଦ୍ଦେଶ କରିବା ବିଷୟରୁ ଆମେ ଗ୍ରହଣ କରିନେବା ଉଚିତ ହେବ ନାହିଁ ଯେ ଏହାକୁ ଚିହ୍ନିବାରେ ଏକମତ ହେବା ବ୍ୟତୀତ ଆମେ ଆଉ ଅଧିକ କିଛି ଏଠାରେ କରୁଥାଉଁ । ଆମର ପ୍ରସ୍ଥାନବିନ୍ଦୁମାନଙ୍କ ପ୍ରବେଶ କରାଇବା ବିଷୟରେ ଆମକୁ ସତର୍କ ରହିବାକୁ ପଡ଼ିବ; କାରଣ ସେଗୁଡ଼ିକୁ ଏପରିଭାବେ ପ୍ରବେଶ କରାଯିବା ଆବଶ୍ୟକ, ଯେପରି ସେହିଗୁଡ଼ିକ ହେତୁରୁ ହିଁ ପୁଣି ନୂତନ ସମସ୍ୟାର ଉଦ୍ରେକ ନହୁଏ । ଏହା କହିବାର ତାତ୍ପର୍ଯ୍ୟ ହେଉଛି, ଆମ ସଙ୍କେତ୍ୟ ପଦଗୁଡ଼ିକ ଯେଉଁ ନିର୍ଦ୍ଦିଷ୍ଟ ଆଲୋଚ୍ୟମଣ୍ଡଳର ଅନ୍ତର୍ଭୁକ୍ତ, ସେଥିପ୍ରତି ଦୃଷ୍ଟି ରଖି ଆମେ ଆମର ପ୍ରସ୍ଥାନବିନ୍ଦୁମାନଙ୍କ ନିର୍ବାଚନ କରିବା ଆବଶ୍ୟକ । ଉଦାହରଣ ସ୍ୱରୂପ, 'ସୌନ୍ଦର୍ଯ୍ୟ' ଶବ୍ଦର ବ୍ୟବହାର କଲାବେଳେ ଆମେ କଣ ନିର୍ଦ୍ଦେଶ କରୁଛୁ, ଏହି ବିଷୟର ସୂଚନା ଦେବା ଯଦି ଆମର ଇଚ୍ଛା ହୋଇଥାଏ, ତେବେ ଆମେ ପ୍ରକୃତି, ଆନନ୍ଦ, ସଂବେଗ ବା ସତ୍ୟ ପରି କେତେକ ପ୍ରସ୍ଥାନବିନ୍ଦୁକୁ ବାଛିନେଇ ଅଗ୍ରସର ହେବା ଉଚିତ ହେବ । ତା'ପରେ କହିବା କଥା ଯେ ଆମେ 'ସୌନ୍ଦର୍ଯ୍ୟ' ଶବ୍ଦଦ୍ୱାରା ଯାହା ନିର୍ଦ୍ଦେଶ କରୁଛୁ, ତାହା ଏହି ବିଷୟଗୁଡ଼ିକ ସହିତ କୌଣସି ସମ୍ବନ୍ଧରେ ଅନ୍ୱିତ (ଯଥା—ପ୍ରକୃତିର ଅନୁକରଣ କରେ, ଆନନ୍ଦ ବା ସଂବେଗ ଜାତ କରେ, ସତ୍ୟ ଉଦ୍‌ଘାଟନ କରେ) ଏହା କିପରିଭାବରେ କରାଯାଇପାରେ, ତାହା ପରବର୍ତ୍ତୀ ପରିଚ୍ଛେଦରେ ପୁଙ୍ଖାନୁପୁଙ୍ଖ ଭାବେ ପ୍ରଦର୍ଶିତ ହୋଇଛି ।

ଯଦି ଜଣେ କେମ୍ବ୍ରିଜ ସର୍କସ କେଉଁଠି ଅଛି ବୋଲି ପଚାରେ, ଆମେ କହୁ, "ବ୍ରିଟିଶ୍ ମ୍ୟୁଜିଅମ୍ କେଉଁଠି ଅଛି ତାହା ତ ତୁମେ ଜାଣ । ସେପ୍‌ଟସବରି ଆଭେନ୍ୟୁରେ

ଡଲଆଡ଼କୁ ଯିବା ରାସ୍ତା ମଧ୍ୟ ତୁମେ ଜାଣ । ତୁମେ ଯଦି ସେପ୍‌ଟମ୍ବର ଅଭେନ୍ୟୁରେ ଡଲଆଡ଼କୁ ଯିବ, ତାହାହେଲେ କେମ୍ବ୍ରିଜ୍ ସର୍କସରେ ଯାଇ ପହଞ୍ଚିବ ।" ଏଠାରେ ନିମ୍ନଲିଖିତ ବିଷୟଗୁଡ଼ିକ ଉଲ୍ଲେଖଯୋଗ୍ୟ—

(୧) ପ୍ରସ୍ଥାନ ବିନ୍ଦୁଟି ଏକ ସୁପରିଚିତ ବିଷୟ ହୋଇଥିବା ଆବଶ୍ୟକ । ପ୍ରୟୋଗ କ୍ଷେତ୍ରରେ, ଆମେ ଯେତେବେଳେ ପ୍ରସ୍ଥାନବିନ୍ଦୁ ସହିତ, ପ୍ରତୀକାତ୍ମକଭାବେ ନୁହେଁ (କେବଳ ତାହାର ନାମ ଜାଣିଥିବା ନୁହେଁ), ସାକ୍ଷାତ୍‌ଭାବେ ପରିଚିତ ହୋଇଥାଉଁ, କିମ୍ବା ଯେତେବେଳେ ଅଦ୍ୱୌ ଦ୍ୱ୍ୟର୍ଥକତା ନଥିବା ଏକ ପ୍ରସଙ୍ଗରେ ତାହା ବ୍ୟବହୃତ ହୋଇଥାଏ ଏବଂ ଏକ ବ୍ୟାପକ ଓ ଅସ୍ପଷ୍ଟ ପରିସର ବିଶିଷ୍ଟ ବସ୍ତୁ ହୋଇଥାଏ, କେବଳ ସେହି କ୍ଷେତ୍ରରେ ହିଁ ଆମେ ପ୍ରସ୍ଥାନବିନ୍ଦୁ ସହିତ ସୁପରିଚିତ ବୋଲି ନିର୍ଦ୍ଦିଷ୍ଟ ଭାବେ କୁହାଯାଇପାରେ । ଉଦାହରଣ ସ୍ୱରୂପ, ମନେକର ଜଣେ ଲୋକ କେସିଂଟନ୍ ଗାର୍ଡ଼ନ୍‌ରେ ଅଛି, ତା ହାତରେ ପନ୍ଦରମିନିଟ ସମୟ ରହିଛି ଓ ସେହି ସମୟ ଭିତରେ ସେ କେମ୍ବ୍ରିଜ ସର୍କସ ଦେଖିବାକୁ ଇଚ୍ଛା କରୁଛି । ତାହାକୁ ଯଦି କୁହାଯାଏ ଯେ ଉକ୍ତ ସର୍କସ ଲଫେଷ୍ଟର ସ୍କୋୟାରର ଆଗକୁ ରହିଛି, ତେବେ ସେ ସେଠାକୁ ଯିବା ବିଷୟକୁ ବିନା ଦ୍ୱିଧାରେ ସ୍ଥଗିତ ରଖିବ । ଏକଥା ତାହାକୁ (ଅନ୍ୟ ଏକ ଉଦ୍ଦେଶ୍ୟରେ ସମ୍ଭବତେ ଅନିର୍ଦ୍ଦିଷ୍ଟ ରଖି) ସ୍ଥାନଟି ସୋହୋରେ ରହିଛି ବୋଲି କହିବା ଭୁଲ୍ ହେବ ।

(୨) ଅଧିକ ସୀମିତ ଉଦ୍ଦେଶ୍ୟମାନଙ୍କରେ, ପ୍ରାୟତଃ ସବଦା କଥନ-ପରିସ୍ଥିତିର ବହିର୍ଦ୍ଦେଶରେ ପ୍ରସ୍ଥାନବିନ୍ଦୁକୁ ନେବାର ଆବଶ୍ୟକତା ପଡ଼େ; ଅର୍ଥାତ୍ ଅମେ ଏଥି ନିମନ୍ତେ ଏପରି ଏକ ବସ୍ତୁ ନେଉ, ଯାହାକୁ ଅଙ୍ଗୁଳି ନିର୍ଦ୍ଦେଶ କରାଯାଇ ପାରିବ ବା ଅନୁଭବ କରାଯାଇ ପାରିବ । ଏହିପରି ଭାବେ ଆମର ପ୍ରତୀକମାନଙ୍କରେ ଆମେ ଆଗରୁ ବର୍ଣ୍ଣିତ ହୋଇଥିବା ଇଙ୍ଗିତ ଭିତ୍ତିର ସୁବିଧାମାନଙ୍କ ବିନିଯୋଗ କରିପାରିବା । ଉଦାହରଣ ସ୍ୱରୂପ, ଚଉକ-ଯୋଡ଼ଣୀ କ'ଣ ବୋଲି ପଚ୍ଚରିଲେ, ତାହାର ଏକ ବର୍ଣ୍ଣନା ଦେବା ଅପେକ୍ଷା ସେହିପରି ଏକ ଯୋଡ଼ଣୀ ପାଖରେ ଥିଲେ ତାହାକୁ ଦେଖାଇଦେବା ଅଧିକ ସହଜ ।

ପ୍ରସ୍ଥାନବିନ୍ଦୁମାନଙ୍କ ଗୁରୁତ୍ୱ ବିଷୟ ଆମେ ଉପରେ ସୂଚିତ କରିଛୁ, ଅର୍ଥାତ୍ ଆମେ କହିଛୁ ଯେ ଆବଶ୍ୟକୀୟ ନିର୍ଦ୍ଦେଶ୍ୟମାନଙ୍କୁ ପାଇବା ନିମନ୍ତେ ଏଗୁଡ଼ିକ ସଙ୍କେତ ସ୍ୱରୂପ କାର୍ଯ୍ୟ କରେ । ନିର୍ଦ୍ଦେଶ୍ୟ ପରିସର ମଧ୍ୟରେ ଆମ କର୍ତ୍ତବ୍ୟ ପଥ ନିର୍ଦ୍ଧାରଣର ଉପଯୋଗୀ ପ୍ରଧାନ ପ୍ରଧାନ ପନ୍ଥାମାନଙ୍କ ମଧ୍ୟରୁ କେତେକର ଆମେ ଏବେ ଉଲ୍ଲେଖ କରି-ପାରୁ । ଆମେ ଭୁଲିଯିବା ଉଚିତ ନୁହେଁ ଯେ ପୂର୍ବବର୍ତ୍ତୀ ପରିଚ୍ଛେଦ ମାନଙ୍କରେ ଯେଉଁ ପ୍ରକାର ସରଳ ଅର୍ଥକରଣଗୁଡ଼ିକର ଆଲୋଚନା କରାଯାଇଛି, ସେହିପରି ଅନ୍ୟାନ୍ୟ

ଅନେକ ଅର୍ଥକରଣ ହେଉଛି ହିଁ ଏବଂ ସେହି ଗୁଡ଼ିକର ମାଧ୍ୟମରେ ହିଁ ଏଠାରେ ନିହିତ ଥିବା ସଙ୍କେତ ପରିସ୍ଥିତି ମାନଙ୍କ ଉଦ୍ଭବ ହୁଏ । ସଙ୍କେତିବା କାଳରେ ଜାତ ହେଉଥିବା ପରିସ୍ଥିତିକୁ ପ୍ରତୀକାତ୍ମକ ଭାବେ ବର୍ଣ୍ଣାଇ ତାହାକୁ ଏକ ସରଳ ରୂପଦେବା ସହଜ । କିନ୍ତୁ ଏଠାରେ ଆବଶ୍ୟକ ହେଉଥିବା ପ୍ରକ୍ରିୟାଗୁଡ଼ିକର ଓ ଉପଯୋଗୀକରଣ ପ୍ରଣାଳୀ-ମାନଙ୍କର ସୂକ୍ଷ୍ମତା ବିଷୟ ଯଦି ଆମେ ହୃଦୟଙ୍ଗମ କରୁଁ, ତେବେ ପ୍ରତୀକମାନଙ୍କ ପ୍ରଚଳିତ ମୂଲ୍ୟନିଷ୍ଠ ତୁଳନା (ପ୍ରଥାଗତ ପଦ୍ଧତି) ଉପରେ ଅତ୍ୟଧିକ ଆସ୍ଥା ସ୍ଥାପନ କରାଯାଇ ନପାରେ । ଏତଦ୍ ପରିବର୍ତ୍ତେ ଯାହା ବାସ୍ତବରେ ଘଟେ, ତାହାର ହିଁ ବିବୃତ୍ତି କରିବାକୁ ଆମେ ଏଠାରେ ଚେଷ୍ଟା କରିବା ।

କୌଣସି ଆଲୋଚନାରେ ଆମକୁ ଯେତେବେଳେ ପଚରାଯାଏ, 'ତୁମଦ୍ୱାରା ବ୍ୟବହୃତ ପଦଗୁଡ଼ିକର ସଂଜ୍ଞା ତୁମେ ଦେଇପାରିବ କି ?' କିମ୍ବା ଯଦି ଆପତ୍ତି କରାଯାଏ, 'ତୁମେ ବ୍ୟବହାର କରୁଥିବା ଶବ୍ଦ ଗୁଡ଼ିକର ଅର୍ଥ କଣ, ତାହା ମୁଁ ବୁଝିପାରୁ ନାହିଁ, ତେବେ ଆମେ ଏପରି କେତେକ ପନ୍ଥା ବାହାର କରିବାର ପ୍ରସ୍ତାବ କରୁଁ, ଯଦ୍ୱାରା ବୁଝାମଣା ଅର୍ଥାତ୍ ନିର୍ଦ୍ଦେଶ୍ୟଗୁଡ଼ିକୁ ଚିହ୍ନିବା ସମ୍ଭବପର ହେବ ।

ଅସଂଖ୍ୟ ପଥ ସଂଶ୍ଳିଷ୍ଟ ଗୋଲକ ଧନ୍ଦାର ଊର୍ଦ୍ଧ୍ୱରେ ଅବସ୍ଥାପିତ ବ୍ୟକ୍ତି ଯେପରି ବିଭିନ୍ନ ସ୍ଥାନରୁ ଗତି କରୁଥିବା ପଥିକମାନଙ୍କୁ ଯେକୌଣସି ଅଭିଳଷିତ ସ୍ଥାନରେ ପହଞ୍ଚିବାକୁ ନିର୍ଦ୍ଦେଶ ଦେଇ ପାରେ, ସେହିପରି ନିଜର ଆଲୋଚ୍ୟ ବିଷୟ ତଥା ସଂଜ୍ଞା-ପ୍ରବନ୍ଧ ସହିତ ସମ୍ପୂର୍ଣ୍ଣତଃ ସୁପରିଚିତ ବ୍ୟକ୍ତି ତଦ୍ରୂପ ସାମର୍ଥ୍ୟର ଅଧିକାରୀ ହୋଇପାରେ । ଆହୁରି ମଧ୍ୟ କୁହାଯାଇ ପାରେ ଯେ ନିଶୁଣି ଉପରେ ଚଢ଼ି ଊର୍ଦ୍ଧ୍ୱରୁ ଗୋଲକ ଧନ୍ଦାକୁ ଦୃଷ୍ଟି ନିକ୍ଷେପ କରିବା ହେଉଛି ଯେକୌଣସି ବିଷୟରେ ପାରଦର୍ଶିତା ଅର୍ଜନ କରିବାର ସର୍ବୋତ୍ତମ ପଦ୍ଧତି ।

ଆମେ ଦେଖି ସାରିଛୁ ଯେ କୌଣସି କ୍ଷେତ୍ରରେ ସମ୍ବନ୍ଧଗୁଡ଼ିକୁ ବିଶ୍ୱପ୍ରକୃତିର ଔପାଦାନିକ ବିଷୟବସ୍ତୁର ଅର୍ଥ ବୋଲି ବିବେଚନା କରାଯାଇ ନପାରେ; ଯେତେବେଳେ ସେଗୁଡ଼ିକ ସମ୍ବନ୍ଧରେ ହିଁ ଆମେ କହୁଥିବା ପରି ମନେହୁଏ, ସେତେବେଳେ ସେଗୁଡ଼ିକୁ କେବଳ ଉପକରଣ ସ୍ୱରୂପ ବ୍ୟବହାର କରୁଥାଉଁ, ଏବଂ ସେଗୁଡ଼ିକର ସଂବାଦୀ ବାସ୍ତବ ନିର୍ଦ୍ଦେଶ୍ୟ ତହିଁରେ ନିହିତ ନଥାଏ । କିନ୍ତୁ ଯଦିଓ ଏକଥା ସତ୍ୟ, ତଥାପି ଆମେ ସେଗୁଡ଼ିକୁ ତଦ୍ରୂପଭାବେ ବ୍ୟବହାର କଲାବେଳେ, ତନ୍ମଧ୍ୟରେ ଥିବା ବିଭିନ୍ନ ପ୍ରକାର ପାର୍ଥକ୍ୟକୁ ଲକ୍ଷ୍ୟକରି ରଖିବା ବାଞ୍ଛନୀୟ । ଏତଦ୍ୱାରା ଅନେକ ସୁବିଧା ହାସଲ କରାଯାଇପାରେ । ଯେଉଁ ସଂବନ୍ଧ ପ୍ରତୀକ ଓ ନିର୍ଦ୍ଦେଶ୍ୟ ମଧ୍ୟରେ ଥାଏ ବୋଲି କୁହାଯାଇ ପାରେ, ତାହାକୁ ଏକ ଆରୋପିତ ସଂବନ୍ଧ ବୋଲି ଆମର ଅନୁସନ୍ଧାନର ପ୍ରାରମ୍ଭରେ

ଆମେ ବର୍ଣ୍ଣନା କରିଥିଲୁଁ । ସେଗୁଡ଼ିକୁ କେବଳ ପରୋକ୍ଷ ସଂବନ୍ଧ ବୋଲି ଯଦି ବର୍ଣ୍ଣନା କରାଯାଇଥାନ୍ତା, ତେବେ ଏକ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ବାଦ ପଡ଼ିଯାଇଥାନ୍ତା । ତାହା ହେଉଛି ପରୋକ୍ଷ ସଂବନ୍ଧରୂପେ ସ୍ୱୀକୃତ ଲାଭ କରିଥିବା ପରୋକ୍ଷ ସମ୍ବନ୍ଧ ଏବଂ ଭ୍ରାନ୍ତଭାବେ ସାକ୍ଷାତ୍ ସଂବନ୍ଧବୋଲି ବିବେଚିତ ହେଉଥିବା ପରୋକ୍ଷ ସଂବନ୍ଧ ମଧ୍ୟରେ ଥିବା ପାର୍ଥକ୍ୟ । ଉଦାହରଣ ସ୍ୱରୂପ, ଅଜା ଓ ନାତିର ସଂବନ୍ଧ ବାପା ଓ ପୁଅ ମଧ୍ୟରେ ଥିବା ସମ୍ବନ୍ଧଠାରୁ ଯଥେଷ୍ଟ ଅଧିକ ପରୋକ୍ଷ । ପ୍ରଥମୋକ୍ତ ସଂବନ୍ଧ ଦୁଇଟି ପୈତୃକ ସଂବନ୍ଧରେ ବିଶ୍ଳେଷଣୀୟ—ବାପା (ବା ମା) ଙ୍କର ବାପା ହେବା' । ସମସ୍ତ ପାରିବାରିକ ସଂବନ୍ଧ ଅତ୍ୟନ୍ତ ପରୋକ୍ଷ ହୋଇଥିବାରୁ ଖୁବ୍ କମ୍ ଲୋକ ଉପର୍ଯ୍ୟୁକ୍ତ କ୍ଷେତ୍ରରେ ଏକ ସାକ୍ଷାତ୍ ସମ୍ବନ୍ଧ ବିଦ୍ୟମାନ ବୋଲି ମନେ କରିବେ । କିନ୍ତୁ ପ୍ରେମ, ଘୃଣା, ବନ୍ଧୁତା, ସହାନୁଭୂତି ଇତ୍ୟାଦି ସାକ୍ଷାତ୍ ସମ୍ବନ୍ଧ ବୋଲି ସାଧାରଣତଃ କୁହାଯାଇଥାଏ ଓ ଗୃହୀତ ମଧ୍ୟ ହୋଇଥାଏ, ଯଦିଓ ପରୀକ୍ଷା କରି ଦେଖିଲେ ସଙ୍ଗେ ସଙ୍ଗେ ଜଣା ପଡ଼ିଯାଏ ଯେ ସେଗୁଡ଼ିକ ମଧ୍ୟ ପରୋକ୍ଷ ସମ୍ବନ୍ଧ । ଏ ପ୍ରକାର ଆରୋପିତ ସମ୍ବନ୍ଧମାନଙ୍କରେ ସାମାଜିକ ମନସ୍ତତ୍ତ୍ୱ ଆଦ୍ୟରୁ ପ୍ରାନ୍ତପର୍ଯ୍ୟନ୍ତ ଭରପୂର ହୋଇ ରହିଛି । ଏଗୁଡ଼ିକର ଏକ ବ୍ୟାଖ୍ୟା-ଦେବା ନିମନ୍ତେ ଗୋଷ୍ଠୀ-ଚେତନା-ପ୍ରକଳ୍ପ ପରି ପ୍ରକଳ୍ପମାନଙ୍କ ଅବତାରଣା ପ୍ରାୟଶଃ କରାଯାଇଥାଏ ।

ଅନ୍ୟ ପକ୍ଷରେ, ସରଳ ଓ ଜଟିଳ ସମ୍ବନ୍ଧମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଉପର୍ଯ୍ୟୁକ୍ତ ବିଷୟଠାରୁ କେତେକ ପରିମାଣରେ ଭିନ୍ନ । ପରୋକ୍ଷତା ହେଉଛି କେବଳ ଏକ ପ୍ରକାର ଜଟିଳତା । ପୁଣି ସାକ୍ଷାତ ସମ୍ବନ୍ଧଗୁଡ଼ିକ ସରଳ ହେବାରେ ମଧ୍ୟ ଆବଶ୍ୟକତା ନାହିଁ । ଉଦାହରଣ ସ୍ୱରୂପ, 'ର ଏକ ହିତୈଷୀ ମାମୁଁ ହେବା' ସଂବନ୍ଧ ହେଉଛି ଏକ ଜଟିଳ ସଂବନ୍ଧ । ଏହା ଦୁଇଟି ସଂବନ୍ଧର ଅର୍ଥାତ୍ 'ପ୍ରତି ହିତୈଷୀ ହେବା' ଓ 'ମାମୁଁ ହେବା'ର ସମ୍ମିଶ୍ରଣ । ଗୋଟିଏ ମଟର ମଞ୍ଜି ଓ ଆଉ ଏକ ମଟର ମଞ୍ଜିର ସାଦୃଶ୍ୟ ଜଟିଳ, କାରଣ ଏହା ସବୁଜତା, କଠିନତା, ଖାଦ୍ୟଦ୍ରବ୍ୟ ହେବା ଇତ୍ୟାଦି ବିଷୟକ ସାଦୃଶ୍ୟ ଗୁଡ଼ିକର ଏହା ଏକ ସମ୍ମିଶ୍ରଣ । ଏହି ବିଚ୍ଛର ଗୁଡ଼ିକ ପ୍ରାଥମିକ ରୂଛି ମନେ ହୋଇପାରେ, କିନ୍ତୁ ସଂବନ୍ଧମାନଙ୍କର ଯେକୌଣସି ବିଚ୍ଛର ଆଲୋଚନାରେ ଏଗୁଡ଼ିକର ଉପାଦେୟତା ରହିଛି ।

ଏକ ବାଞ୍ଛିତ ନିର୍ଦ୍ଦେଶ୍ୟରେ ଉପନୀତ ହେବାକୁ ଚେଷ୍ଟା କଲାବେଳେ ଯେଉଁ ପନ୍ଥା ଗୁଡ଼ିକର ଆମେ ଅନ୍ୱେଷଣ କରୁଁ ; ସେଗୁଡ଼ିକ ହେଉଛି ସେହି ନିର୍ଦ୍ଦେଶ୍ୟର କୌଣସି ଜ୍ଞାତ ନିର୍ଦ୍ଦେଶ୍ୟ ସହିତ ରହିଥିବା ସୁପ୍ରତ୍ୟକ୍ଷ ସଂବନ୍ଧ । ଏ ପ୍ରକାର ସମ୍ଭବପର ସଂବନ୍ଧମାନଙ୍କ ସଂଖ୍ୟା ଅନିର୍ଦ୍ଦିଷ୍ଟଭାବେ ଅନେକ; କିନ୍ତୁ ଆମେ ଆଗରୁ ସ୍ପଷ୍ଟକରି ଦେଇଛୁଁ

ଯେ ଏମାନଙ୍କ ମଧ୍ୟରୁ ଯେଉଁ ଗୁଡ଼ିକର ବ୍ୟାବହାରିକ ଉପାଦେୟତା ରହିଛି, ସେଗୁଡ଼ିକ ସୌକର୍ଯ୍ୟ ବଶତଃ ଅଳ୍ପ କେତେକ ଶ୍ରେଣୀରେ ବିଭାଜନୀୟ । ତେଣୁ ଏକ ପ୍ରାରମ୍ଭିକ ବର୍ଗୀକରଣ (୧) ସ୍ୱରୂପ ଆମେ ନିମ୍ନୋକ୍ତ ତାଲିକା ପରି ଏକ ତାଲିକା ପାଇବା ।

୧ । **ପ୍ରତୀକାତ୍ମକ ଭିଭକରଣ**

ଏହା ହେଉଛି ସଙ୍କେତ ଦେବାର ସରଳତମ ଓ ସର୍ବାଧିକ ମୌଳିକ ପ୍ରଣାଳୀ । ଆମକୁ ଯଦି ପଚରାଯାଏ, 'କମଳା' ପଦ କାହାକୁ ନିର୍ଦ୍ଦେଶ କରେ, ତେବେ ଆମେ କମଳା ରଙ୍ଗର ଏକ ବସ୍ତୁକୁ ନେଇ କହିପାରୁ ଯେ 'କମଳା' ହେଉଛି ଏକ ପ୍ରତୀକ ଯାହା **ଏହା** ପରିବର୍ତ୍ତେ ବ୍ୟବହୃତ ହୁଏ । ଏଠାରେ ସଙ୍କେତ ଦେବା ନିମନ୍ତେ ଯେଉଁ ସଂବନ୍ଧ ବ୍ୟବହୃତ, ତାହା ହେଉଛି, ସେହି ସଂବନ୍ଧ, ଯାହା ପ୍ରଥମ ପରିଚ୍ଛେଦରେ ଆଲୋଚିତ ହୋଇଥିଲା ଏବଂ ଆମ ଚିନ୍ତନର ଭୂମି ଗଠନ କରିଥିଲା । ଆମେ ଉଲ୍ଲେଖ କରିଥିଲୁଁ ଯେ ଏହା ହେଉଛି ଏକ ଆରୋପିତ ସଂବନ୍ଧ । ଏହା ପ୍ରତୀକ ଓ ନିର୍ଦ୍ଦେଶ କ୍ରିୟା ମଧ୍ୟରେ ଥିବା ସଂବନ୍ଧ ଏବଂ ନିର୍ଦ୍ଦେଶ କ୍ରିୟା ଓ ନିର୍ଦ୍ଦେଶ୍ୟ ମଧ୍ୟରେ ଥିବା ସଂବନ୍ଧ ରୂପେ ପ୍ରକାରାନ୍ତରରେ ହୋଇପାରେ । ଏଠାରେ ଆମର ପ୍ରସ୍ତାବନାଧୀନ ହେଉଛି 'କମଳା' ଶବ୍ଦ; ଆମର ଚିନ୍ତିବା ପନ୍ଥା ହେଉଛି ଏହି ସଂବନ୍ଧ ଏବଂ ଆବଶ୍ୟକୀୟ ନିର୍ଦ୍ଦେଶ୍ୟ ହେଉଛି ଏହା ।

(୧) ଆହୁରି ତୁଳନା କର, Psyche, ଦଶମ ଖଣ୍ଡ, ତିନି ନମ୍ବର ଜାନୁଆରୀ ୧୯୩୦ ପୃ ୯ ଏବଂ ୨୯ ।

ଆମେ ପ୍ରକୃତରେ ଏଠାରେ ଯାହା କରୁଛୁ, ତାହା ହେଉଛି ସାକ୍ଷାତ୍‌ଭାବେ **ନାମକରଣ ।**

କିନ୍ତୁ, ବୁଝାଯିବ ଯେ, **ଏହା** ଦ୍ୱାରା କେବଳ ଏତିକି ଜଣା ପଡୁଛି ଯେ 'କମଳା' ଶବ୍ଦ **ଗୋଟିଏ** କ୍ଷେତ୍ରରେ ପ୍ରୟୋଗଯୋଗ୍ୟ । ଆମେ ଯାହା ଜାଣିବାକୁ ଚାହୁଁ; ତାହା ହେଉଛି କିପରି 'କମଳା' ଶବ୍ଦ ସାଧାରଣଭାବେ ପ୍ରୟୋଗଯୋଗ୍ୟ ହୁଏ । ଆମେ ସଙ୍କେତକୁ ପ୍ରସାରିତ କରିବାକୁ ଚାହୁଁ, ଯେପରି କି ଯେଉଁ ନିର୍ଦ୍ଦେଶ୍ୟ ଗୁଡ଼ିକ ପାଇଁ 'କମଳା' ହେଉଛି ଯଥୋପଯୋଗୀ ପ୍ରତୀକ, ସେସବୁକୁ ତାହା ଅନ୍ତର୍ଭୁକ୍ତ କରିପାରିବ । ସାଦୃଶ୍ୟ ସଂବନ୍ଧମାନଙ୍କ ବ୍ୟବହାର ଦ୍ୱାରା ଏହି ସାମାନ୍ୟୀକରଣ ସମସ୍ତ ପ୍ରକାର ସଙ୍କେତପାଇଁ ଅନୁରୂପଭାବେ ସମ୍ପାଦିତ ହୋଇ ପାରିବ । 'କମଳା' ଶବ୍ଦ ଏହାପ୍ରତି ଏବଂ ଯେଉଁ ସମସ୍ତ ବସ୍ତୁ ବର୍ଣ୍ଣ ଦୃଷ୍ଟିରୁ ଏହାର ସଦୃଶ, ସେଗୁଡ଼ିକ ପ୍ରତି ପ୍ରଯୁଜ୍ୟ ହୁଏ ।" ବ୍ୟାବହାରିକ କ୍ଷେତ୍ରରେ ଗୋଟିଏ ସାଦୃଶ୍ୟ ସଂବନ୍ଧକୁ ଅନ୍ୟ ଗୁଡ଼ିକଠାରୁ ପୃଥକ୍ କରିବା ନିମନ୍ତେ ସାଧାରଣତଃ ସରଳତମ ପ୍ରକାରର ସମାନ୍ତରାଳ ଦୃଷ୍ଟାନ୍ତ, ବସ୍ତୁତଃ ଉପମା ବ୍ୟବହାର କରିବା ଆବଶ୍ୟକ ହୁଏ ।

## ୨ । ସାଦୃଶ୍ୟ

୧୨୭

୨ ।ସ୍ଵରୂପଶ ଭାବେ ସାଦୃଶ୍ୟକୁ ହିଁ ସଙ୍କ୍ଷାପକ ସଂବନ୍ଧରୂପେ ବ୍ୟବହାର କରାଯାଇ ପାରେ । ଆମର ଆବଶ୍ୟକୀୟ ନିର୍ଦ୍ଦେଶ୍ୟଟି ଏକ ମନୋନୀତ ନିର୍ଦ୍ଦେଶ୍ୟ ରୂଲ୍ଖ । ଆମକୁ ଯଦି ପଚରାଯାଏ, 'କମଳା' ପ୍ରତୀକଟି କାହାକୁ ନିର୍ଦ୍ଦେଶ କରେ, ତେବେ କମଳା ରଙ୍ଗର କୌଣସି ବସ୍ତୁକୁ ନେଇ ଆମେ ଏହି ପ୍ରତୀକଟିର ସଙ୍କ୍ଷା ଦେଇପାରୁ । ଏଠାରେ ଆମେ କହୁ, "ବର୍ଣ୍ଣ ଦୃଷ୍ଟିରୁ ଯେକୌଣସି ବସ୍ତୁ ଏହା ରୂଲ୍ଖ, ତାହା ପ୍ରତି 'କମଳା' ପ୍ରତୀକ ପ୍ରଯୋଜ୍ୟ ।" ଏଠାରେ 'କମଳା' ପରିବର୍ତ୍ତେ ଆମେ 'ବର୍ଣ୍ଣଦୃଷ୍ଟିରୁ ଏହା ରୂଲ୍ଖ'କୁ ପ୍ରତିସ୍ଥାପିତ କରୁଛୁଁ ଏବଂ ଏହି ।ସ୍ଵଭାବ ପ୍ରତୀକର ନିର୍ଦ୍ଦେଶ୍ୟ ଅଭିନ୍ନ । ଆମର ପ୍ରସ୍ଥାନବନ୍ଦୁ ହେଉଛି ଏହା, ଏବଂ ସଂବନ୍ଧ ହେଉଛି ରୂଲ୍ଖତା । ଯେ କୌଣସି ବ୍ୟକ୍ତି ଯେ କାହା ପରିବର୍ତ୍ତେ 'ଏହା' ବ୍ୟବହୃତ ହୋଇଛି ଜାଣେ (ଅର୍ଥାତ୍ ଯେ ଅନ୍ଧ ନୁହେଁ) ଏବଂ କାହା ପରିବର୍ତ୍ତେ 'ରୂଲ୍ଖତା' ବ୍ୟବହୃତ ହୋଇଛି ଜାଣେ, ସେ ଯଥା ସ୍ଥାନରେ ଉପନୀତ ହେବ ।

## ୩ । ଦୈଶିକ ସମ୍ବନ୍ଧ

ଦ ରେ, ଉପରେ, ଉର୍ଦ୍ଧ୍ୱରେ, ମଧ୍ୟରେ, ପାଖରେ, ଡାହାଣ ପାର୍ଶ୍ୱରେ, ନିକଟରେ, ଅପେକ୍ଷା ବୃହତ୍ତର, ର ଅଂଶ ହେଉଛି ଦୈଶିକ ସଂବନ୍ଧରେ ସୁପ୍ରତ୍ୟକ୍ଷ ଉଦାହରଣ । "ବର୍ଣ୍ଣ କ୍ରମରେ ଲୋହିତ ଓ ପୀତ ମଧ୍ୟବର୍ତ୍ତୀ ଅଞ୍ଚଳର ବର୍ଣ୍ଣ (ଏବଂ ତତ୍ତୁଲ୍ଖ ଯେ କୌଣସି ବର୍ଣ୍ଣ ) ନିମନ୍ତେ 'କମଳା' ପ୍ରତୀକ ବ୍ୟବହୃତ ।" ଲକ୍ଷ୍ୟ କରାଯାଇପାରେ ଯେ ପ୍ରତ୍ୟେକ ସଂଜ୍ଞାରୂଲ୍ଖ ଏଠାରେ ମଧ୍ୟ ନାମକରଣ ସଂବନ୍ଧ ନିହିତ; ଏବଂ ଏହି ସଂଜ୍ଞା ଏକ ସାଦୃଶ୍ୟ ସଂବନ୍ଧ ଦ୍ୱାରା ସର୍ବଦା ପ୍ରସାରଣ ଯୋଗ୍ୟ । କୌତୂହଳର ବିଷୟ ଯେ ଦୈଶିକ ସଂବନ୍ଧର ପ୍ରତୀକମାନଙ୍କ ମଧ୍ୟରୁ କେତେକ ସମମିତ ନୁହେଁ । ଉଦାହରଣ ସ୍ୱରୂପ, 'ଉପରେ' [On]= ଉର୍ଦ୍ଧ୍ୱରେ ଓ ସଂଯୋଜିତ ହୋଇ; କିନ୍ତୁ 'ନିମ୍ନରେ ଓ ସଂଯୋଜିତ ହୋଇ' ନିମନ୍ତେ ଭରାଦେବା [Supporting] ପରି ଦ୍ୱ୍ୟର୍ଥକତା ମୂଳକ ଶବ୍ଦମାନଙ୍କ ବ୍ୟତୀତ ଅନ୍ୟ କୌଣସି ସଂକ୍ଷିପ୍ତ ଅଭିବ୍ୟକ୍ତି ନାହିଁ । ଆହୁରି ମଧ୍ୟ ଆମେ ଲକ୍ଷ୍ୟ କରିପାରୁ, ଯେ 'ଉପରେ' [on] ର ଅଧିକାଂଶ ସାଧାରଣ ପ୍ରୟୋଗ ଏତେ ଅଦ୍ଭୁତରୂପେ ଉପମାମୂଳକ ଯେ ଏପର୍ଯ୍ୟନ୍ତ ଦୃଷ୍ଟିକୁ ଆସିନଥିବା କୌଣସି ମୌଳିକ ଅବଶ୍ଲେଷଣୀୟ ସମ୍ବନ୍ଧ ଏଠାରେ ରହିନାହିଁ ତ ! ବୋଲି ସନ୍ଦେହ ମଧ୍ୟ ପ୍ରକାଶ ପାଇଛି । ଉପମାମୂଳକ ସମ୍ପ୍ରସାରଣର ସମସ୍ୟାମାନଙ୍କ ଯଥାର୍ଥ ସମାଧାନ ବିଷୟ ଏହି ପରିଚ୍ଛେଦରେ ପରେ ବିଚାର କରାଯିବ ।

**୪ । କାଳିକ ସମ୍ବନ୍ଧ**

'ଗତକାଲି' ହେଉଛି ଆଜିର ପୂର୍ବବର୍ତ୍ତୀ ଦିନ । 'ରବିବାର' ହେଉଛି ସପ୍ତାହର ପ୍ରଥମ ଦିନ । 'ମୂଳର ପରିସମାପ୍ତି' ହୋଇଛି । ୯ ଘଣ୍ଟାର କ ମାସ ପରେ । 'ଆଲୁଅ ଲଗାଇବା ସମୟ' ହେଉଛି ସୂର୍ଯ୍ୟାସ୍ତର କ ମିନିଟ ପରେ ।

**୫ । କାରଣିକତା : ଭୌତିକ**

'ଘଡ଼ଘଡ଼ି' ହେଉଛି ଯାହା ( ଦୁଇଟି ମେଘ ବାଡ଼େଇ ହେବା ଦ୍ଵାରା ନୁହେଁ, କିନ୍ତୁ ) କେତେକ ବୈଦ୍ୟୁତିକ ଗଣ୍ଡଗୋଳରୁ ଜାତ ହୁଏ । 'କରତ ଗୁଣ୍ଡ' ହେଉଛି, ଯାହା········ଇତ୍ୟାଦିରୁ ଜାତ ହୁଏ ।

**୬ । କାରଣିକତା : ମନସ୍ତାତ୍ତ୍ୱିକ**

'ଅସଙ୍ଗ ମନ' ହେଉଛି, ଯାହା ସ୍ୱପ୍ନ, ଫ୍ୟୁଗ୍, ମନୋବିକ୍ଷିପ୍ତି, ମଜା ଓ ଏହିପରି ଅନ୍ୟାନ୍ୟ ବିଷୟର ସୃଷ୍ଟି କରେ । 'ଆନନ୍ଦ' ହେଉଛି 'ସଫଳ ମାନସିକ କ୍ରିୟାର ସଚେତନ ସହଗୃଣ ।'

**୭ । କାରଣିକତା : ମନୋ-ଭୌତିକ**

ସୌନ୍ଦର୍ଯ୍ୟ ସମ୍ପର୍କରେ ପରବର୍ତ୍ତୀ ପରିଚ୍ଛେଦରେ ଦିଆଯାଇଥିବା ଉଦାହରଣ ମାନଙ୍କ ବ୍ୟତୀତ 'କମଳା ବର୍ଣ୍ଣର ପ୍ରତ୍ୟକ୍ଷ'କୁ 'ଚକ୍ଷୁପଟଳ ଉପରେ ନିପତିତ ଏକ ପ୍ରକାର କମ୍ପନର ଚେତନାଗତ ପରିଣତି' ବୋଲି ଆମେ ସଜ୍ଞା ଦେଇପାରୁଁ ।

ସାଧାରଣ ଆଲୋଚନା ତଥା ବିଜ୍ଞାନରେ କାରଣିକତା ସମ୍ବନ୍ଧ ହେଉଛି ସମ୍ଭବତଃ ଚନ୍ଦ୍ରୋଟକରଣ ନିମନ୍ତେ ସର୍ବାଧିକ ପରିମାଣରେ ସାଧାରଣ ହୋଇଥିବା ବ୍ୟବହୃତ ପନ୍ଥା । ଏହିପରି ଭାବେ, ଐତିହାସିକ ଦୃଷ୍ଟିରୁ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଥିବା ଏକ ମତ ଅନୁଯାୟୀ ଈଶ୍ୱର ବିଶ୍ୱର କାରଣ ବୋଲି ସଜ୍ଞା ଦିଆଯାଇଛି । ପୁଣି ଜୀବତାତ୍ତ୍ୱିକ ବର୍ଗୀକରଣରେ ଭ୍ରୂଣତତ୍ତ୍ୱର ଗୁରୁତ୍ୱ ରହିଛି, କାରଣ ଏହା କାରଣିକ ସଜ୍ଞାପକ ସଂକେତମାନ ଯୋଗାଇ ଦିଏ ।

**୮ । ଏକ ମାନସିକ ଅବସ୍ଥାର ବିଷୟବସ୍ତୁ ହେବା**

ଏଗୁଡ଼ିକ ମଧ୍ୟରୁ ଗୋଟିଏ ହେଉଛି ଆମ ବିଭିନ୍ନ ତାହାଣପାର୍ଶ୍ୱ, ଅର୍ଥାତ୍ ନିର୍ଦ୍ଦେଶ ଦେବା । ଅଭିଳାଷ କରିବା, ଇଚ୍ଛା କରିବା, ଅନୁଭବ କରିବା ଇତ୍ୟାଦି ମଧ୍ୟ ତଦ୍ରୂପ । ଏହିପରି ଭାବେ ସଜ୍ଞା ଦିଆଯାଇପାରେ ଯେ 'କରୁଣାର ପାତ୍ର' ହେଉଛି ଯାହା ପ୍ରତି ଆମେ କରୁଣାଭାବ ଅନୁଭବ କରୁଁ । 'ଉତ୍ତମ ବସ୍ତୁ' ହେଉଛି ଯାହାର ସମର୍ଥନକୁ ଆମେ ସମର୍ଥନ କରୁଁ ।

## ୯ । ସାଧାରଣ ଜଟିଳ ସମ୍ବନ୍ଧ

କେତେକ ସଙ୍କ୍ଷାକୁ ଜଟିଳ ଆକାର ଦେଇ ଗଠନ କରିବା ସର୍ବାଧିକ ସୁବିଧାଜନକ । ସେଗୁଡ଼ିକ ଉପର୍ଯ୍ୟୁକ୍ତ ଶିରୋନାମମାନଙ୍କ ମଧ୍ୟରୁ ଏକ ବା ଅପର ବିଭାଗର ସରଳ ସଂବନ୍ଧଗୁଡ଼ିକର ଏକ ସମଷ୍ଟିରୂପେ ବିଶ୍ଳେଷଣ କରାଯାଇପାରେ । କିନ୍ତୁ, ଲୋକାୟତିକ ପ୍ରତୀକାନ୍ୱିତ କରଣ ପଦ୍ଧତି ଦ୍ୱାରା ଏଗୁଡ଼ିକୁ ଅଧିକ ଅନାୟାସରେ ବ୍ୟବହାର କରାଯାଇ ପାରେ ।

ଏହାର ଦୃଷ୍ଟାନ୍ତ ହେଉଛି 'ଉପାଦେୟତା' (ନମ୍ବର ୭ ଓ ୮ ରୂପେ ବିଶ୍ଳେଷଣୀୟ ), 'ଅନୁକରଣ' (୨ ଏବଂ ୭), 'ଆପାଦନ' (୧ ଏବଂ ୮ ) ।

## ୧୦ । ଆଇନଗତ ସମ୍ବନ୍ଧ

ଏଗୁଡ଼ିକ ଅନେକାଂଶ ପ୍ରଚ୍ଛନ୍ନ ରହୁଥିଲେ ହେଁ ଏତେ ମାତ୍ରାରେ ବାରଂବାର ପ୍ରୟୋଗ ହୁଏ ଓ ବହୁତ ରହେ ଯେ ଏଗୁଡ଼ିକୁ ଏକ ସ୍ୱତନ୍ତ୍ର ଶିରୋନାମ ଦେବା ଯଥୋଚିତ ପରି ମନେହୁଏ; ଆହୁରି ମଧ୍ୟ ଏଗୁଡ଼ିକ ବିଚାରକଙ୍କ ସନ୍ତୋଷବିଧାନ କରି ପାରୁଥିବା ସ୍ୱେଚ୍ଛାମୂଳକ ପରୀକ୍ଷା ଦ୍ୱାରା ପରୀକ୍ଷଣୀୟ ।

ଉଦାହରଣ : 'ର ଅଧିକାର' (ଯେତେବେଳେ=ର ମାଲିକ), 'ର ପ୍ରଜା', 'ଯୋଗ୍ୟ', 'ର ସାକ୍ଷ୍ୟ-ପ୍ରମାଣ' । ସମସ୍ତ ଆଇନମୂଳକ ସଂଜ୍ଞା ଅତ୍ୟନ୍ତ ଜଟିଳ, ଯଦ୍ୟପି ସେଗୁଡ଼ିକ ତଥାପି କାର୍ଯ୍ୟକାରୀ ହୁଏ ।

ଅପର୍ଯ୍ୟାପ୍ତ ପରିମାଣର ଅନୁଭୂତି ଦ୍ୱାରା ପ୍ରଦର୍ଶିତ ହୋଇଛି ଯେ ସଂଜ୍ଞାରେ ସାଧାରଣତଃ ଉପର୍ଯ୍ୟୁକ୍ତ ସଂବନ୍ଧଗୁଡ଼ିକ ହିଁ ପ୍ରୟୋଗ କରାଯାଏ । ବିଶିଷ୍ଟ ଧରଣର ଉଦ୍ଦେଶ୍ୟ ସାଧନ ନିମନ୍ତେ ଅନ୍ୟାନ୍ୟ ସଂବନ୍ଧ ଆବଶ୍ୟକ ହୋଇପାରେ; ଏବଂ ଏକ ସମ୍ପୂର୍ଣ୍ଣ ତାଲିକା ପ୍ରସ୍ତୁତ କରାଗଲେ ସେଗୁଡ଼ିକ ମଧ୍ୟ ଅନ୍ତର୍ଭୁକ୍ତ ହେବା ଯୋଗ୍ୟ ବୋଲି ବିବେଚିତ ହେବେ । ଏଗୁଡ଼ିକର ଉଦାହରଣ ହେଉଛି ଆକାର, କାର୍ଯ୍ୟ, ଉଦ୍ଦେଶ୍ୟ, ବିରୋଧ ଇତ୍ୟାଦି । ସୁତରାଂ ଏଠାରେ ଦାବି କରାଯାଉ ନାହିଁ ଯେ ସମସ୍ତ ପ୍ରାସଙ୍ଗିକ ମୌଳିକ ସଂବନ୍ଧକୁ ଉପର୍ଯ୍ୟୁକ୍ତ ପ୍ରଥମ ଆଠଗୋଟି ଶ୍ରେଣୀ ନିଃଶେଷୀଭାବେ ଅନ୍ତର୍ଭୁକ୍ତ କରେ । ପୁଣି ଏହା ମଧ୍ୟ ଦାବି କରାଯାଉ ନାହିଁ ଯେ ଆମେ ଉଲ୍ଲେଖ କରିଥିବା ଜଟିଳ ସଂବନ୍ଧମାନ ନିରବଶେଷ ଭାବେ ଉପର୍ଯ୍ୟୁକ୍ତ ପ୍ରକାର ସଂବନ୍ଧମାନଙ୍କରେ ହିଁ ବିଶ୍ଳେଷିତ ହୋଇପାରେ । ଉଲ୍ଲିଖିତ ସମଗ୍ର ବର୍ଗୀକରଣଟି ବ୍ୟାବହାରିକ ପ୍ରୟୋଜନ ଦୃଷ୍ଟିରୁ ଏବଂ କେବଳ ସର୍ବାଧିକ ପ୍ରଥାଗତ ଆଲୋଚ୍ୟ ମଣ୍ଡଳ ସ୍ତରରେ ହିଁ କରାଯାଇଛି ।

ସମସ୍ତ ସମ୍ବନ୍ଧ ଏକ ବା ଏକାଧିକ ଚରମ ସମ୍ବନ୍ଧକୁ (୧) ତର୍କସିଦ୍ଧରୂପେ ପରିବର୍ତ୍ତନୀୟ କି ନୁହେଁ, ଏବଂ ଯଦି ପରିବର୍ତ୍ତନୀୟ ତେବେ କେଉଁ ଅର୍ଥରେ ପରିବର୍ତ୍ତନୀୟ, ତାହାର ଆଲୋଚନା ମଧ୍ୟ ଅନାବଶ୍ୟକ ବୋଲି ଜଣା ପଡ଼ୁଛି, କାରଣ ଯେଉଁ ସଙ୍କ୍ଷଗୁଡ଼ିକର

ବରଂ ଯଦି ଆମେ ତାହାକୁ ଯଥାଯଥ କ୍ଷେତ୍ରରେ ବ୍ୟବହାର କରୁ, ସେଗୁଡ଼ିକର ମୂଳ ଏପରିକି ଲୁପ୍ତ କୌଣସି ପରିବର୍ତ୍ତନ ଦ୍ୱାରା ପରିବର୍ତ୍ତିତ ହେବ ନାହିଁ । ବିଭିନ୍ନ ପ୍ରକାର ମତବାଦ ବାହ୍ୟତ ଅତ୍ୟନ୍ତ ଜଟିଳ ଧରଣର ସଂଜ୍ଞାଗୁଡ଼ିକୁ ମଧ୍ୟ ବିନା ଅସୁବିଧାରେ ଆଲୋଚନାଯୋଗ୍ୟ ଅଂଶାବଳୀରେ ବିଶ୍ଳେଷିତ କରାଯାଇପାରେ, ଏବଂ ସେଗୁଡ଼ିକର ପ୍ରତିଷ୍ଠାପିତ ହେବା ବୈଧତାକୁ ଅଧିକ ଉତ୍ତମରୂପେ ପରୀକ୍ଷା କରାଯାଇ ପାରେ । ଏତଦ୍ୱାରା ଆହୁରି ଗୋଟିଏ ବିଷୟ ସ୍ପଷ୍ଟୀକୃତ ହୋଇ ଯାଉଛି । ତାହା ହେଉଛି ସଂଜ୍ଞାଗୁଡ଼ିକ ପ୍ରାୟଶଃ ବିଭିନ୍ନ ସୋପାନ ଦେଇ ଗତିକରେ । ଉଦାହରଣ ସ୍ୱରୂପ, କେମ୍ବ୍ରିଜ ସହରରେ ପହଞ୍ଚିବାକୁ ବାଟ ପଚାରୁଥିବା ବ୍ୟକ୍ତି ଯେତେବେଳେ ବ୍ରିଟିଶ ମ୍ୟୁଜିଅମ କେଉଁଠି ଜାଣି ନଥାଏ, ସେ ପ୍ରଥମେ ସେଠାକୁ କିପରି ଯିବ, ସେହି କ୍ରମସୂତ୍ରେ ନିର୍ଦ୍ଦେଶ ଆବଶ୍ୟକ କରେ । ତାହାକୁ କୁହାଯାଏ ଯେ ସେ ମାର୍ବଲ ଆର୍କରୁ ଟ୍ୟୁବ ବାଟଦେଇ ବ୍ରିଟିଶ ମ୍ୟୁଜିଅମରେ ପହଞ୍ଚିବ ।

ଏହି କ୍ଷେତ୍ରରେ ବହୁପଦୀ ସମ୍ବନ୍ଧ ସମସ୍ୟାକୁ କୌଣସି ଅସୁବିଧା ଜାତ ହୁଏନାହିଁ । ଦୁଇରୁ ଅଧିକ ସଂଖ୍ୟକ ପଦସମ୍ବଳିତ ସଂବନ୍ଧ ହେଉଛି ବହୁପଦୀ ସଂବନ୍ଧ । ଉଦାହରଣ ସ୍ୱରୂପ, ପ୍ରତୀକ୍ଷଣ ହେଉଛି ଏକ ବହୁପଦୀ ସଂବନ୍ଧ, ଏକଥା ଡକ୍ଟର ହ୍ୱାଇଟହେଡ଼ ଏବେ ଜୋରଦେଇ କହୁଛନ୍ତି । ଏହା ଦ୍ରଷ୍ଟା, ଦ୍ରଷ୍ଟବ୍ୟ ବସ୍ତୁ ଓ ପରିସ୍ଥିତିଗୁଡ଼ିକୁ ଅନ୍ୱିତ

(୧) ଏହାର ଉଦାହରଣ ସ୍ୱରୂପ Mr. Alexander ଙ୍କ ପ୍ରକଳ୍ପ ଅନୁଯାୟୀ (Space, Time and Deity I- ପୃ—) "ପରିଶେଷରେ ସମସ୍ତ ସଂବନ୍ଧ ଦେଶ-କାଳ ମାଧ୍ୟମରେ ବିଶ୍ଳେଷଣୀୟ ।

କରେ । ସେହିପରି ଦାନଦେବା ହେଉଛି ଏକ ବହୁପଦୀ ସଂବନ୍ଧ; ଏହା ଦାତା, ଦତ୍ତବସ୍ତୁ ଓ ଗ୍ରହୀତାକୁ ଅନ୍ୱିତ କରେ । ଏହି ପଦଗୁଡ଼ିକ ମଧ୍ୟରୁ ଯେ କୌଣସି ଗୋଟିଏ ପଦର ସଂଜ୍ଞା ଦେବାପାଇଁ କିଂବା ତାହାକୁ ଏକ ସଂଜ୍ଞାପକ ପଦ୍ଧାର ପ୍ରସ୍ଥାନବିନ୍ଦୁ ରୂପେ ଗ୍ରହଣ କରିବା ପାଇଁ ଆମେ ଦ୍ୱିପଦୀ ସଂବନ୍ଧରେ ଯେପରି, ଏଠାରେ ମଧ୍ୟ ଠିକ୍ ସେହିପରି ଭାବେ ଅଗ୍ରସର ହେଉଁ । ପାର୍ଥକ୍ୟ ହେଉଛି; ଯେତେବେଳେ ଆଲୋଚ୍ୟ ମଣ୍ଡଳ କୌଣସି ବିଶିଷ୍ଟ ପ୍ରକାର ଶୁଦ୍ଧତା ଆବଶ୍ୟକ କରେ, ସେତେବେଳେ ବହୁପଦୀ ସଂବନ୍ଧ କ୍ଷେତ୍ରରେ ଏକାଧିକ ଦୃଷ୍ଟିକୋଣରୁ ବିଚାର କରାଯିବା ଆବଶ୍ୟକ; ନଚେତ୍ ସଂଜ୍ଞେୟପଦର ତାତ୍ପର୍ଯ୍ୟ କ୍ଷୁଣ୍ଣ ହୁଏ । ଉଦାହରଣ ସ୍ୱରୂପ, ଗୋଟିଏ ବସ୍ତୁର ସଂଜ୍ଞା ଯଦି ଜଣକର ଦେଖିବା ଉପରେ ନିର୍ଭର କରୁଥାଏ, ତେବେ କେତେକ କ୍ଷେତ୍ରରେ, ସେ କିପରି ପରିସ୍ଥିତିରେ ଦେଖିଲା, ତାହାକୁ ବ୍ୟକ୍ତ କରିବା ଆବଶ୍ୟକ ହୋଇପାରେ । ପ୍ରେତାତ୍ମା ପ୍ରଦର୍ଶନ ବୈଠକରେ କି ମାତ୍ରାର କଠୋର ପରୀକ୍ଷା କରାଯାଇଥିଲା ଆମେ ଜାଣିବା

ଦରକାର । ସେହିପରି ଆମ ରେଳଗାଡ଼ିକୁ ଅତିକ୍ରମ କରି ଯାଉଥିବା ରେଳଗାଡ଼ିଟିକୁ ଏକ୍ସପ୍ରେସ ଗାଡ଼ି ବୋଲି ଚିହ୍ନୋଟ କରିବା ପାଇଁ ଆମେ ନିଜେ ବସିଥିବା ରେଳଗାଡ଼ିର ବେଗ ଆମକୁ ବିଚାର କରିବାକୁ ପଡ଼ିବ । କିନ୍ତୁ ଏପ୍ରକାର ଜଟିଳ ପରିସ୍ଥିତିର ଉଦ୍ଭବ ହେଉ ନଥିବା କ୍ଷେତ୍ରରେ ମଧ୍ୟ ବିଷୟ ଆଲୋଚନା ଫଳପ୍ରଦଭାବରେ କରାଯାଇ ପାରେ ।

ସଂଜ୍ଞାପଦ ପଦ୍ଧତିମାନଙ୍କ ଉପର୍ଯ୍ୟୁକ୍ତ ତାଲିକାର ପ୍ରୟୋଗାତ୍ମକ ଦିଗ ପ୍ରତି ପ୍ରାଧାନ୍ୟ ଅର୍ପଣ କରାଯିବା ଯଥାର୍ଥ । ସଂଜ୍ଞା ଆଦୌ ବ୍ୟବହାର କରିବା ହିଁ ହେଉଛି ପ୍ରୟୋଜନୀୟ । ଆଲୋଚନାକୁ ଅଧିକ ଫଳପ୍ରଦ କରିବା ନିମନ୍ତେ, ବିଭିନ୍ନ ଚିନ୍ତାନାୟକଙ୍କ ଖୋଲାଖୋଲି ଭାବେ ପରସ୍ପର ମତୈକ୍ୟ ବା ମତଦ୍ୱୈଧକୁ ସ୍ୱୀକାର କରାଇବା ନିମନ୍ତେ ଆମେ ସଂଜ୍ଞାଗୁଡ଼ିକର ବ୍ୟବହାର କରୁଁ । ଅବଶ୍ୟ ଏହା ସତ୍ୟ ଯେ ସଂଜ୍ଞାର ଏହି ସରଳ ଆଦମ ବ୍ୟବହାରକୁ ଉତ୍ପନ୍ନ ଆଉ ଏକ ପ୍ରଚ୍ଛନ୍ନ ବ୍ୟବହାର ମଧ୍ୟ ରହିଛି । ଅବରୋହାତ୍ମକ ଏବଂ ବୈଜ୍ଞାନିକ ପଦ୍ଧତିମାନଙ୍କ ଗଠନରେ ସଂଜ୍ଞାର ବିଶେଷ ଗୁରୁତ୍ୱ ରହିଛି । ଏହି ସ୍ୱୟଂକ୍ରିୟ ଗଣନ ଯନ୍ତ୍ରମାନଙ୍କ ନିମନ୍ତେ ତର୍କଶାସ୍ତ୍ର ଓ ଗଣିତ ନିୟମ ବା ଉପଦେଶର ସମଷ୍ଟି ତୁଲ୍ୟ । ଉଦାହରଣ ସ୍ୱରୂପ, ଯନ୍ତ୍ରବିଜ୍ଞାନ ପରି ଏକ ଅବରୋହାତ୍ମକ ପଦ୍ଧତିରେ ବ୍ୟବହୃତ ସଂଜ୍ଞାମାନଙ୍କ ମାଧ୍ୟମରେ ପ୍ରତୀକାତ୍ମକ ପଦ୍ଧତିର ଅଂଶଗୁଡ଼ିକ ପରସ୍ପର ଅନ୍ୱିତ ହୁଏ, ଏବଂ ଏହି ହେତୁରୁହିଁ ପ୍ରତୀକପଦ୍ଧତିର ଏକ ନିର୍ଦ୍ଦିଷ୍ଟ ପ୍ରୟୋଗରୁ ତୁଳନୀୟ ପରିଣତି ମାନଙ୍କର ଉଦ୍ଭବ ହୁଏ । ଏହି ପରିଣତିମାନଙ୍କ ଯଥାର୍ଥ ପ୍ରକୃତି ସମ୍ବନ୍ଧରେ ପ୍ରୟୋଗକର୍ତ୍ତା ଆଗରୁ ନ ଜାଣିଥିବା କ୍ଷେତ୍ରରେ ମଧ୍ୟ ଏହା ସମ୍ଭବପର । ଏହିପରିଭାବେ ଏହି ପଦ୍ଧତିମାନଙ୍କରେ, ଗୋଟିଏ ନିର୍ଦ୍ଦିଷ୍ଟ ପ୍ରତୀକର କୌଣସି ଏକ ସଂଜ୍ଞାକୁ ଏକମାତ୍ର ସଂଜ୍ଞା ରୂପେ ବିବେଚନା କରିବା ଯୁକ୍ତିଯୁକ୍ତ ହୁଏ । ପଦ୍ଧତିଟି ଦିଆ ହୋଇଥିଲେ, ଗୋଟିଏ ପ୍ରତୀକର ଗୋଟିଏ ଏବଂ କେବଳ ଗୋଟିଏ ସଂଜ୍ଞା ହେଉଛି ଠିକ୍ ବା ଯଥାର୍ଥ ସଂଜ୍ଞା । ଏହା ଏହି ଅର୍ଥରେ ଠିକ୍ ବା ଯଥାର୍ଥ ଯେ ଏହି ସଂଜ୍ଞାର ପ୍ରୟୋଗ ଉପରେହିଁ ପଦ୍ଧତିର କାର୍ଯ୍ୟକାରିତା ନିର୍ଭରଶୀଳ ।

ଯେଉଁ ବିଶେଷଜ୍ଞମାନେ ଏହିପ୍ରକାର ପଦ୍ଧତିମାନଙ୍କ ସହିତ ବିଶେଷଭାବେ ସଂପୃକ୍ତ, ସେମାନେ ସ୍ୱଭାବତଃ ସମସ୍ତ ସଂଜ୍ଞାକୁ ଏତାଦୃଶ ବୋଲି ଗ୍ରହଣ କରି ବସନ୍ତି । ତଥାପି ସର୍ବାଧିକ ଚିତ୍ତାକର୍ଷକ ଆଲୋଚ୍ୟ ବିଷୟବସ୍ତୁର ବହୁକ୍ଷେତ୍ରରେ, ଯଦି ଫଳପ୍ରଦ ଆଲୋଚନା ସମ୍ଭବପର କରାଇବାକୁ ଥାଏ, ତେବେ ସଂଜ୍ଞା ସମ୍ବନ୍ଧରେ ଏକ ସଂପୂର୍ଣ୍ଣ ଭିନ୍ନ ଧରଣର ମନୋବୃତ୍ତି ତଥା ମାନସିକ ଅଭ୍ୟାସର ପ୍ରବର୍ତ୍ତନ କରିବା କେବଳ ବାଞ୍ଛନୀୟ ନୁହେଁ, ବସ୍ତୁତଃ ଆବଶ୍ୟକ ମଧ୍ୟ । ସୌନ୍ଦର୍ଯ୍ୟ ବିଜ୍ଞାନ, ରାଜନୀତି ବିଜ୍ଞାନ, ମନସ୍ତତ୍ତ୍ୱ, ସମାଜ ବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ, ନିର୍ଦ୍ଦିଷ୍ଟ ତଥା ଅପରିବର୍ତ୍ତନୀୟ ସଂଜ୍ଞା ମାନଙ୍କ ଦ୍ୱାରା ସୁସଙ୍ଗତଭାବେ ପ୍ରତୀକାନ୍ୱିତକରଣ ଅବସ୍ଥାରେ ପହଞ୍ଚିବା ଏପର୍ଯ୍ୟନ୍ତ ଯଥେଷ୍ଟ

ସମ୍ଭବ ହୋଇ ପାରନାହିଁ, ଏବଂ କେଉଁ ପଦ୍ଧତିରେ ସୁବିଧା ସର୍ବାଧିକ ଓ ଗୁରୁତ୍ୱପୂର୍ଣ୍ଣ ବିଷୟାବଳୀ ବହିର୍ଭୂତ ହୋଇ ଯିବାର ଆଶଙ୍କା ସର୍ବନିମ୍ନ, ତାହା ନିର୍ଦ୍ଧାରଣ କରିବା କୌଣସି ବ୍ୟକ୍ତି ପକ୍ଷରେ ଏପର୍ଯ୍ୟନ୍ତ ସମ୍ଭବପର ହୋଇ ନାହିଁ। ଯେଉଁ ବିଜ୍ଞାନଗୁଡ଼ିକ ପ୍ରକୃତିର ସରଳତମ ଦିଗମାନଙ୍କ ଆଲୋଚନା କରନ୍ତି, ସେହି ଗୁଡ଼ିକହିଁ ସର୍ବାଧିକ ସୁସଙ୍ଗତ। ଯେଉଁ ବିଷୟଗୁଡ଼ିକ ଅଧିକ ଦୁରୂହ ଏବଂ ବହୁବ୍ୟକ୍ତିଙ୍କ ପକ୍ଷରେ ସ୍ୱଭାବତଃ ଅଧିକ ଚିତ୍ତାକର୍ଷକ, ସେଗୁଡ଼ିକର ଅବସ୍ଥା ଏବେ ସୁଦ୍ଧା ଏପରି ଯେ ସେଠାରେ କେଉଁ ପ୍ରତୀକାନ୍ୱିତକରଣ ପଦ୍ଧତି ସର୍ବାଧିକ ବାଞ୍ଛନୀୟ, ତାହା ଏକ ଏକ ଅସମାହିତ ପ୍ରଶ୍ନ ହୋଇ ରହିଛି। ଏହି ଅବସ୍ଥାରେ ଯାହା ମୁଖ୍ୟତଃ ପରିହର୍ତ୍ତବ୍ୟ, ତାହା ହେଉଛି ପ୍ରାଥମିକ ସ୍ତରସ୍ଥ ବୋଧପଦ୍ଧତି ଗୁଡ଼ିକର ପ୍ରଚ୍ଛନ୍ନ ଓ ଲୁକ୍କାୟିତ ଅନ୍ତର୍ଦ୍ୱନ୍ଦ୍ୱ। ମତୈକ୍ୟର ସମ୍ଭାବନା ରହିଥିବା ବ୍ୟକ୍ତିମାନଙ୍କ କ୍ଷେତ୍ରରେ ସୁଦ୍ଧା ଏହି ଅନ୍ତର୍ଦ୍ୱନ୍ଦ୍ୱ, ଅନ୍ୟାନ୍ୟ ବିଷୟ ତୁଳନାରେ ଅଧିକ ପରିମାଣରେ ପରସ୍ପର ବୁଝାମଣାକୁ ବ୍ୟାହତ କରିଥାଏ। 'ଅସ୍ତିତ୍ୱ', 'ସୁନ୍ଦର', 'ସ୍ୱାଧୀନତା', 'ଉତ୍ତମ', 'ବିଶ୍ୱାସ', 'ଶକ୍ତି', 'ନ୍ୟାଯ୍ୟତା', 'ରକ୍ତ' ଇତ୍ୟାଦି ଶବ୍ଦ ବାରଂବାର ପ୍ରୟୋଗ କରାଯାଇଥିବା ଆଲୋଚନା ମାନଙ୍କରେ ବ୍ୟବହୃତ ଅନେକ ପଦ ଯେଉଁସ୍ଥଳରେ କୌଣସି, ସୁନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ସହ ବ୍ୟବହାର କରାଯାଇ ନଥାଏ, ସେଠାରେ ବକ୍ତା କେବଳ ତାହାର ଭାଷାଗତ ଅଭ୍ୟାସ ଏବଂ ଏହି ଅଭ୍ୟାସଗୁଡ଼ିକର ବ୍ୟାପକତାରେ ଏକ ସରଳ ବିଶ୍ୱାସ ଦ୍ୱାରା ପରିଚାଳିତ ହୋଇ ଏଗୁଡ଼ିକର ବ୍ୟବହାର କରିଥାଏ। ଏହି ହେତୁରୁ "ଯେଉଁ କ୍ଷେତ୍ରରେ ବିଷୟଟି ନିଶ୍ଚିତ ରୂପେ ସୁପ୍ରତ୍ୟକ୍ଷ" ବୋଲି ବକ୍ତା ବିଶ୍ୱାସ କରୁଥାଏ, ସେଠାରେ ଶ୍ରୋତା ଯଦି ମୋଟାବୁଦ୍ଧିଆ ଓ ମୁଣ୍ଡବିଗିଡ଼ା ଆଚରଣ ଦେଖାଏ, ତେବେ ବକ୍ତା ରାଗି ଯାଏ; ଏହା ଏକ ସାଧାରଣ ଦୃଶ୍ୟ।

ବିରଳ ହେଲେହେଁ ଏପରି କେତେକ ଆଲୋଚନା ରହିଛି, ଯେଉଁ କ୍ଷେତ୍ରରେ ବକ୍ତା ଅଧିକ ସ୍ପଷ୍ଟଭାବେ ପ୍ରକାଶ କରିବାକୁ ସମର୍ଥ। କିନ୍ତୁ ଗୋଟିଏ ଶବ୍ଦର ଏକ ନିଜସ୍ୱ ସତ୍ୟ ଓ ଯଥାର୍ଥ ବ୍ୟବହାର ଥାଏ। ଏହି ବିଶ୍ୱାସ ହେଉଛି ଏକ ଅଦ୍ଭୁତ ସହଜାତ ପ୍ରବୃତ୍ତି ଏବଂ ଆମେ ଦେଖିଛୁଁ ଯେ ଏହା ଇନ୍ଦ୍ରଜାଲ-ପ୍ରତିଷ୍ଠିତ। ଏହି ବିଶ୍ୱାସ ଉପମୁକ୍ତ ସୁସ୍ପଷ୍ଟ ଧରଣର ଆଲୋଚନା କ୍ଷେତ୍ରରେ ସୁଦ୍ଧା ସଙ୍କେ ନିର୍ଦ୍ଦେଶ ସାମର୍ଥ୍ୟର କାର୍ଯ୍ୟକାରୀ ହେବାର ବାଧା ସୃଷ୍ଟି କରେ। ଅବଶ୍ୟ ଏଠାରେ ଅନ୍ୟାନ୍ୟ କେତେକ ବିଷୟ ମଧ୍ୟ ସଂଶ୍ଲିଷ୍ଟ। ଅଭ୍ୟାସର ଅଭାବ, ରଚନା ଶୈଳୀର ଯୌକ୍ତିକ ସଂକ୍ରାନ୍ତୀୟ ଭାଷାଗତ ଆସକ୍ତି, ପାଣ୍ଡିତ୍ୟାଭିମାନୀ ଦେଖାଯିବାକୁ ଅନିଚ୍ଛା, ପ୍ରତିରକ୍ଷାମୂଳକ ଅନୁକରଣପ୍ରିୟତା ଓ ଭାଷାର ଅନ୍ୟାନ୍ୟ ରକ୍ଷାକାରକ ବ୍ୟବହାର—ଏହି ସମସ୍ତ ବିଷୟର ଏଥିରେ ଅବଦାନ ରହିଛି। କିନ୍ତୁ ଏହି ସମସ୍ତ ବିଷୟ ଅପେକ୍ଷା ଯଥେଷ୍ଟ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଶବ୍ଦଗୁଡ଼ିକୁ

ଶବ୍ଦର ସ୍ୱାଭାବିକ ଆଧାର ରୂପେ ବିବେଚନା କରିବାର ସହଜ ପ୍ରବୃତ୍ତିମୂଳକ ଅଭିବୃତ୍ତି । ଆମେ ପ୍ରଦର୍ଶନ କରିଛୁଁ ଯେ ଭାଷାର ପ୍ରାରମ୍ଭ କାଳରୁ ମାନବ ସମାଜ ଶବ୍ଦଗୁଡ଼ିକୁ ଏହିପରି ଭାବରେ ହିଁ ଗ୍ରହଣ କରି ଆସିଛି ଏବଂ ଶିକ୍ଷାର ସମସ୍ତ ପ୍ରାଥମିକ ସ୍ତରରେ ଏବେ ମଧ୍ୟ ଏହି ଅଭିବୃତ୍ତି ସମର୍ଥିତ ଓ ପ୍ରୋତ୍ସାହିତ ହେଉଛି ।

ନିରବଚ୍ଛିନ୍ନଭାବେ ଗୃହୀତ ଏହି ମନୋବୃତ୍ତିକୁ ସୁଧାରିବାକୁ ହେଲେ ଅଧିକ ସାଧାରଣ ସଙ୍କେତକ ପନ୍ଥାମାନଙ୍କ ସହିତଂ ଆହୁରି ନିବିଡ଼ଭାବେ ପରିଚିତ ହେବାକୁ ପଡ଼ିବ ଏବଂ ଏକ ସକ୍ରିୟ ବୋଧଶକ୍ତିର ଉଦ୍ରେକ କରିବାକୁ ପଡ଼ିବ । ଶିକ୍ଷାର ଏକ ଅଂଶରୂପେ ସହଜରେ ଏହି ବୋଧଶକ୍ତିକୁ ଜାଗ୍ରତ କରାଯାଇପାରେ । ଏତଦ୍ଦ୍ୱାରା ଅନୁଭୂତ ହେବଯେ କୌଣସି ପରିସ୍ଥିତିରେ ଆମର ନିର୍ଦ୍ଦେଶ୍ୟ ପରିବର୍ତ୍ତେ ବ୍ୟବହୃତ କୌଣସି ନିର୍ଦ୍ଦିଷ୍ଟ ଶବ୍ଦର ବ୍ୟବହାର ସେହି ଶବ୍ଦର କୌଣସି ବୈଶିଷ୍ଟ୍ୟ ଯୋଗ୍ୟତା ହେତୁରୁ କରାଯାଏ ନାହିଁ । ଶବ୍ଦ ବ୍ୟବହାର ନିର୍ଦ୍ଧାରିତ ହୁଏ ଆମ ନିଜ ଇତିହାସର ନାନାପ୍ରକାର ବିଷମ ଆକସ୍ମିକ ଘଟଣା ଦ୍ୱାରା । ଭାବ ବିନିମୟକୁ ଏକ ଦୁଷ୍କର ବ୍ୟାପାର ରୂପେ ଏବଂ ଭିନ୍ନ ଭିନ୍ନ ଚିନ୍ତକଙ୍କ ନିର୍ଦ୍ଦେଶ୍ୟ ମଧ୍ୟରେ ପ୍ରତ୍ୟଂଶ ସଂବାଦିତାକୁ ଅପେକ୍ଷାକୃତ ଏକ ଅସାଧାରଣ ଘଟଣା ରୂପେ ଆମେ ବିବେଚନା କରିବା ଉଚିତ । ପ୍ରୟୋଗ କରି ଯାଇଥିବା ପ୍ରତୀକମାନଙ୍କ ଅନ୍ତତଃ ଅଧିକାଂଶ କ୍ଷେତ୍ରରେ ଯେଉଁ ପ୍ରସ୍ଥାନ ବିନ୍ଦୁଗୁଡ଼ିକର ଉପଯୋଗ କରାଯାଇଛି ଏବଂ ଯେଉଁ ସଂଙ୍କେତକ ପନ୍ଥା ମାନଙ୍କ ଅନୁସରଣ ଦ୍ୱାରା ନିର୍ଦ୍ଦେଶ୍ୟଗୁଡ଼ିକରେ ଉପନୀତ ହେବା ସମ୍ଭବପର ହୋଇଛି—ଏହି ଉଭୟ ବିଷୟର ଜ୍ଞାନ ନଥିଲେ ଭାବବିନିମୟ ସଫଳତାର ସହିତ କରାଯାଇଛି ବୋଲି ଗ୍ରହଣ କରିନେବା କଦାପି ନିରାପଦ ନୁହେଁ ।

ସରଳତା ନିମନ୍ତେ, ଏହି ପରିଚ୍ଛେଦରେ ଆମେ କେବଳ ନିର୍ଦ୍ଦେଶ ପରିସରରେ ଆମର ଦୃଷ୍ଟି ସୀମିତ ରଖିବା । ବାସ୍ତବ ଆଲୋଚନାରେ, ପଦଗୁଡ଼ିକର କେବଳ ପ୍ରତୀକାତ୍ମକ ମୂଲ୍ୟ ନିମନ୍ତେ ସେଗୁଡ଼ିକୁ ଯେତେ ପରିମାଣରେ ବ୍ୟବହାର କରାଯାଏ, ଅନ୍ତତଃ ସେହି ପରିମାଣରେ ସେଗୁଡ଼ିକର ପରାମର୍ଶାତ୍ମକ ଓ ଆବେଗାତ୍ମକ ପରିଣତି ଉତ୍ପାଦନ କ୍ଷମତା ନିମନ୍ତେ ସେଗୁଡ଼ିକୁ ବ୍ୟବହାର କରାଯାଏ । ଉଦାହରଣ ସ୍ୱରୂପ, 'ସୁନ୍ଦର' ପଦ ପରିବର୍ତ୍ତେ ଯେ କୌଣସି ବିକଳ୍ପ ପଦର ବ୍ୟବହାର ଅନିବାର୍ଯ୍ୟରୂପେ ଏତେ ନୀରସ ଓ ସୌକୁମାର୍ଯ୍ୟ-ରହିତ ହୋଇଯାଏ ଯେ ଅନେକ ଲୋକ ଏହି ପଦ ବ୍ୟବହାର ଜନିତ ସମସ୍ତ ଅସୁବିଧା ସତ୍ତ୍ୱେ ଏହାକୁହିଁ ବ୍ୟବହାର କରନ୍ତି । ସଂକେତାତ୍ମକ ଦୃଷ୍ଟି କୋଣରୁ, ପୃଥକ୍ ବୈଜ୍ଞାନିକ ଦୃଷ୍ଟିକୋଣରୁ ସେମାନେ ହୁଏତ ସ୍ୱୀକାର କରିବେ ଯେ ବିକଳ୍ପ ମନସ୍ତାତ୍ତ୍ୱିକ ପ୍ରତ୍ୟୟଟି ଅଧିକ ସନ୍ତୋଷଜନକ ; ତଥାପି 'ସୁନ୍ଦର' ଶବ୍ଦର ବ୍ୟବହାରକୁ ହିଁ ମନୋନୀତ କରନ୍ତି ।

ବାସ୍ତବିକ, ବହୁକ୍ଷେତ୍ରରେ ଶ୍ରତୀକମାନଙ୍କ ଏକ ନିର୍ଦ୍ଦିଷ୍ଟ ବ୍ୟବହାର ମୁଖ୍ୟତଃ ପ୍ରତୀକାତ୍ମକ କି ଅବେଗାତ୍ମକ ତାହା ସ୍ଥିର କରିବା ଅସମ୍ଭବ ହୋଇଯାଏ । ଏହା ବିଶେଷତଃ କେତେକ ପ୍ରକାର ରୂପକର ବ୍ୟବହାର କ୍ଷେତ୍ରରେ ଘଟିଥାଏ । ଧର୍ମସ୍ତୋତ୍ର ଲେଖକ ତାଙ୍କ ଶତ୍ରୁମାନଙ୍କ ବିରୁଦ୍ଧରେ ଘୋଷଣା କରିଛନ୍ତି, "ସେମାନେ ସର୍ପତୁଲ୍ୟ ସେମାନଙ୍କ ଜିହ୍ୱାଗୁଡ଼ିକୁ ତୀକ୍ଷ୍ଣ ଅସ୍ତ୍ର କରି ଗଢ଼ି ତୋଳିଛନ୍ତି; କୃଷ୍ଣସର୍ପର ବିଷ ସେମାନଙ୍କ ଓଷ୍ଠତଳେ ରହିଛି ।" ଏଠାରେ ସର୍ପ ଏବଂ ଦଣ୍ଡିତ ବ୍ୟକ୍ତିମାନଙ୍କ ମଧ୍ୟରେ ଏକ ଆଭ୍ୟନ୍ତରୀ ସାଦୃଶ୍ୟ କଳ୍ପନା କରି ସେମାନଙ୍କ ସମ୍ବନ୍ଧରେ ରୂପକ ଭାଷାରେ କିଛି ବ୍ୟକ୍ତ କରିବାକୁ ସେ ସମର୍ଥ ହେଉଛନ୍ତି, କି ତାଙ୍କ ଉକ୍ତିର ଏକମାତ୍ର ଭୂମିକା ହେଉଛି ସେମାନଙ୍କ ପ୍ରତି ଘୃଣା ପ୍ରକାଶକରିବା ଏବଂ ଶ୍ରୋତାମାନଙ୍କଠାରେ ସେମାନଙ୍କ ପ୍ରତି ଅନୁରୂପ ମନୋବୃତ୍ତିର ବିକାଶ ଘଟାଇବା, ତାହା ସ୍ଥିର କରିବା କଷ୍ଟକର । ଗାଳିଗୁଲଜ ଓ ଗୃହଁକବଚନର ଅଧିକାଂଶ ପଦ ଏହି ସମସ୍ୟାର ଉତ୍ଥାପନ କରିଥାଏ; କିନ୍ତୁ ଙ୍କାର୍ଯ୍ୟକୁ ନିୟମାନୁବନ୍ଧରୂପେ ଏହାର ସମାଧାନ ଗୁରୁତ୍ୱପୂର୍ଣ୍ଣ ହୋଇ ନଥାଏ । ଯେଉଁ ପାର୍ଥକ୍ୟଟି ଗୁରୁତ୍ୱପୂର୍ଣ୍ଣ, ତାହା ହେଉଛି, ଯେଉଁ ଉକ୍ତିଗୁଡ଼ିକରେ ସଂବେଗାତ୍ମକ କ୍ରିୟା ତୁଳନାରେ ପ୍ରତୀକାତ୍ମକ କ୍ରିୟା ଗୌଣ ଏବଂ ଯେଉଁ ଉକ୍ତିଗୁଡ଼ିକରେ ଏହାର ବିପରୀତ ସତ୍ୟ, ଏହି ଦୁଇପ୍ରକାର ଉକ୍ତି ମଧ୍ୟରେ ଥିବା ପାର୍ଥକ୍ୟ । ପ୍ରଥମ କ୍ଷେତ୍ରରେ ପ୍ରଖ୍ୟାପିତ ନିର୍ଦ୍ଦେଶଗୁଡ଼ିକ ଯେତେ ନିର୍ଦ୍ଦିଷ୍ଟ ଓ ଯେତେ ବିଶଦଭାବେ ବର୍ଣ୍ଣିତ ହୋଇଥିଲେ ମଧ୍ୟ ଦେଖାଯିବ ଯେ ସେଗୁଡ଼ିକର ମୁଖ୍ୟତ ଉପକରଣ ମୂଳକ ସାମର୍ଥ୍ୟ ଥିବା ହେତୁରୁହିଁ, ଅର୍ଥାତ୍ ସଂବେଗାତ୍ମକ ପରିଣତି ଉତ୍ପାଦନର ଉପାୟ ସ୍ୱରୂପ ହିଁ, ସେଗୁଡ଼ିକ ବ୍ୟବହୃତ । ଦ୍ୱିତୀୟ କ୍ଷେତ୍ରରେ ସଂବେଗାତ୍ମକ ପ୍ରଭାବ ଯେତେ ବଳିଷ୍ଠ ହୋଇଥିଲେ ମଧ୍ୟ ଦେଖାଯିବ ଯେ ତାହା ହେଉଛି ଏକ ଆନୁଷଙ୍ଗିକ ପରିଣତି ମାତ୍ର ଏବଂ ତାହା ବକ୍ତବ୍ୟ ବିଷୟସମ୍ପୃକ୍ତ ବ୍ୟାପାରରେ ମୁଖ୍ୟତଃ ନିହିତ ନୁହେଁ । ଭାଷାଗତ କ୍ରିୟାରେ ଏବେ ନୂତନଭାବେ ବିକାଶ ଲାଭ କରିଥିବା ବୈଜ୍ଞାନିକ ଉକ୍ତିର ବିଶେଷତ୍ୱ ହେଉଛି ଯେ ଏହା ତାହାର ପ୍ରତୀକାତ୍ମକ ଭୂମିକାରେ ହିଁ ସୀମିତ ରହେ ।

ଯଦି ଏହି ସଂଯମ ରକ୍ଷା କରାଯିବା ଦରକାର, ଏବଂ ପ୍ରଥାଗତଭାବେ ଦାର୍ଶନିକଙ୍କ ବିମୃଶ୍ୟ ବିଷୟ ବୋଲି ପରିଗଣିତ ହେଉଥିବା କ୍ଷେତ୍ର ଗୁଡ଼ିକୁ ଯଦି ଉକ୍ତିର ବୈଜ୍ଞାନିକ ପଦ୍ଧତିର ସଂପ୍ରସାରଣ କରାଯିବା ଦରକାର, ତେବେ କେତେକ ଅତ୍ୟନ୍ତ ସୂକ୍ଷ୍ମ ଧରଣର ସଙ୍କଟରୁ ଅବ୍ୟାହତି ପାଇବାକୁ ବ୍ୟବସ୍ଥା କରାଯିବା ଆବଶ୍ୟକ । ଏହି ସଂକଟମାନଙ୍କ ମଧ୍ୟରୁ ଗୋଟିଏ ହେଉଛି ଏପରି କେତେକ ଶବ୍ଦର ସ୍ଥିତି, ଯେଉଁ ଗୁଡ଼ିକର ଭୂମିକାକୁ ଦ୍ୱିଧାହୀନଭାବେ ପ୍ରତୀକାତ୍ମକ ବୋଲି ଗ୍ରହଣ କରି ଆସାଯାଉଛି, ଯଦିଓ ଏହା ଭ୍ରାନ୍ତ । ଏଗୁଡ଼ିକୁ ଏପର୍ଯ୍ୟନ୍ତ ଆଦୌ ସନ୍ଦେହ ନ

କରି ବହୁଳଭାବେ ବ୍ୟବହାର କରାଯାଇଛି । ଏହାର ଏକ ଉଦାହରଣ ସ୍ୱରୂପ 'ଭଲ' [ good ] ଶବ୍ଦକୁ ନିଆଯାଇପାରେ । ଏହି ଶବ୍ଦଟି ମୁଖ୍ୟତଃ ସମୋଚ୍ଚାରିତ ଭିନ୍ନାର୍ଥକ ଶବ୍ଦମାନଙ୍କ ଏକ ସମଷ୍ଟି ହୋଇଥିବା ସମ୍ଭବପର ବୋଲି ମନେହୁଏ । ଶୈଶବାବସ୍ଥାରେ ସ୍ଥୂଳତଃ ଯେଉଁ ଶବ୍ଦ ଗୁଡ଼ିକ ସମ୍ପର୍କରେ ଆମେ ଏହି ଶବ୍ଦଟି ଉଚ୍ଚାରିତ ହେବାର ଶୁଣୁ ( ଗୋଟିଏ ଭଲ ବଇଁଶୀ, ଗୋଟିଏ ଭଲ ଘୋଡ଼ା, ଗୋଟିଏ ଭଲ ଛୁରୀ, ଗୋଟିଏ ଭଲ ଦର୍ଶ ) ସେଗୁଡ଼ିକର କୌଣସି ସାଧାରଣ ବୈଶିଷ୍ଟ୍ୟ ନ ଥାଏ । କିନ୍ତୁ ଏହି ଶବ୍ଦର ଅନ୍ୟ ଏକ ବ୍ୟବହାର ରହିଛି ବୋଲି ସାଧାରଣତଃ ସ୍ୱୀକାର କରାଯାଏ ଏବଂ ଆମେ ଉଲ୍ଲେଖ କରିଥିବା ଦୃଷ୍ଟାନ୍ତ ଗୁଡ଼ିକରୁ ଅନ୍ତତଃ କେତେକ ହେଉଛି ତାହାର ଅପ ଷ୍ଟାର୍ଥ । ଏଠାରେ ଏକ ଅସାଧାରଣ ଅବିଶ୍ଳେଷଣୀୟ ସଂପ୍ରତ୍ୟୟ ପରିବର୍ତ୍ତେ 'ଭଲ' ଶବ୍ଦ ବ୍ୟବହୃତ ବୋଲି ଦାବି କରାଯାଇଛି । କୁହାଯାଇଛି ଯେ ଏହି ସଂପ୍ରତ୍ୟୟ ହେଉଛି ନୀତିଶାସ୍ତ୍ରର ବିଷୟବସ୍ତୁ । (୧)ଆମ ପ୍ରସ୍ତାବ ଅନୁସାରେ 'ଭଲ' ର ଏହି ସ୍ୱତନ୍ତ୍ର ନୀତିଶାସ୍ତ୍ରୀୟ ବ୍ୟବହାରଟି ହେଉଛି ଏକ ପୁରାପୁରି ସଂବେଗମୂଳକ ବ୍ୟବହାର । ଏହିପରିଭାବେ ବ୍ୟବହୃତ ହୋଇ-ଥିବାବେଳେ ଏହି ଶବ୍ଦଟି କୌଣସି ପ୍ରକାର ବିଷୟବସ୍ତୁ ପରିବର୍ତ୍ତେ ବ୍ୟବହୃତ ହୋଇନାହିଁ; ଏବଂ ତାହାର କୌଣସି ପ୍ରତୀକାତ୍ମକ ଭୂମିକା ନାହିଁ । ସୁତରାଂ 'ଏହା ଭଲ ଅଟେ' ଏହି ବାକ୍ୟରେ ଆମେ ତାହାକୁ ବ୍ୟବହାର କଲାବେଳେ ଆମେ କେବଳ ଏହାକୁହିଁ ନିର୍ଦ୍ଦେଶ କରୁଛୁ; 'ଭଲ ଅଟେ' ର ସଂଯୋଜନା ନିର୍ଦ୍ଦେଶରେ ଆଦୌ କୌଣସି ପାର୍ଥକ୍ୟ ଘଟାଉ ନାହିଁ । ପକ୍ଷାନ୍ତରେ, ଆମେ ଯେତେବେଳେ 'ଏହା ଲୋହିତ ଅଟେ' ବୋଲି କହୁଁ, 'ଏହା' ସହିତ 'ଲୋହିତ ଅଟେ ' ର ସଂଯୋଜନ ନିଶ୍ଚିତ ରୂପେ ଆମ ନିର୍ଦ୍ଦେଶର ଏକ ସଂପ୍ରସା-ରଣକୁ ଅର୍ଥାତ ଅନ୍ୟ ଏକ ଲୋହିତବସ୍ତୁକୁ ପ୍ରତୀକାନ୍ୱିତ କରୁଛି । କିନ୍ତୁ 'ଭଲ ଅଟେ' କ୍ଷେତ୍ରରେ କୌଣସି ତୁଳନୀୟ ପ୍ରତୀକାତ୍ମକ କ୍ରିୟା ନାହିଁ । ଏହା କେବଳ ଏକ ସଂବେଗାତ୍ମକ ସଂକେତର କାର୍ଯ୍ୟକରେ; ଏତଦ୍ଦ୍ୱାରା ଏହାପ୍ରତି ଆମର ମନୋବୃତ୍ତି ଅଭିବ୍ୟକ୍ତ, ଏବଂ ସମ୍ଭବତଃ ଏତଦ୍ଦ୍ୱାରା ଅନ୍ୟମାନଙ୍କଠାରେ ଏକ ଅନୁରୂପ

---

(୧) ତୁଳନାକର—G.E Moore ଙ୍କ Principia Ethica, ୧ମ ପରିଚ୍ଛେଦ । ଅବଶ୍ୟ, "ଏହା ଭଲ" ବୋଲି କହିଲାବେଳେ 'ଭଲ' ର ସଂଜ୍ଞା ସ୍ୱରୂପ ଆମେ ଯଦି 'ଯାହାର ସମର୍ଥନକୁ ଆମେ ସମର୍ଥନ କରୁଁ' ବୋଲି କହୁଁ କିମ୍ବା ଏହି ପ୍ରକାର ଅନ୍ୟ କୌଣସି ସଂଜ୍ଞା ଦେଉଁ 'ତେବେ ଆମେ ଏକ ବିବୃତି ଦେଉଛୁ । କେବଳ ଅସଂଜ୍ଞେୟ 'ଭଲ' କୁହିଁ ଆମେ ଏକ ପୁରାପୁରି ସଂବେଗାତ୍ମକ ସଂକେତ ବୋଲି ପ୍ରସ୍ତାବ ଦେଉଛୁ ଯେଉଁ 'ଅଧିକ କିଛି'ବା 'ଅନ୍ୟ କିଛି' 'ଭଲ' ର କୌଣସି ସଂଜ୍ଞାରେ ଅନ୍ତର୍ଭୁକ୍ତ ନୁହେଁ ବୋଲି ଦାବି କରାଯାଇଛି, ତାହା ହେଉଛି ଶବ୍ଦଟିର ସଂବେଗାତ୍ମକ ଆବେଗ ।

ମନୋବୃତ୍ତିର ଉଦ୍ରେକ କରାଯାଇଛି କିମ୍ବା ସେମାନଙ୍କୁ ଏକ ବା ଅପର ପ୍ରକାର କାର୍ଯ୍ୟ ସଂପାଦନ ନିମନ୍ତେ ପ୍ରୋତ୍ସାହିତ କରାଯାଉଛି ।

ବୈଜ୍ଞାନିକ ପଦ୍ଧତିର ଉପଯୁକ୍ତ କ୍ଷେତ୍ରମାନଙ୍କୁ ସମ୍ପ୍ରସାରଣର ଏକ ଅବଶ୍ୟମ୍ଭାବୀ ପ୍ରାଥମିକ ସୋପାନ ସ୍ୱରୂପ ସ୍ୱୀକାର କରିବାକୁ ହେବ ଯେ ଆଲୋଚନାର ସର୍ବାଧିକ ଜନପ୍ରିୟ ବିଷୟ ଏହି ପ୍ରକାର ଶବ୍ଦମାନଙ୍କରେ ଭରପୂର ହୋଇରହିଛି । ଏହି ଶବ୍ଦଗୁଡିକ ପ୍ରତୀକାତ୍ମକ ଦୃଷ୍ଟିରୁ ଶୂନ୍ୟ, କିନ୍ତୁ ସଂବେଗାତ୍ମକ ଦୃଷ୍ଟିରୁ କ୍ରିୟାଶୀଳ । ଆଜି ଏକ ଆବଶ୍ୟକତା ହେଉଛି କୌଣସି ଏକ ପ୍ରବିଧି, ଯଦ୍ଦ୍ୱାରା କେଉଁ କେଉଁ ଶବ୍ଦ ଗୁଡ଼ିକ ଏହି ପ୍ରକୃତିର ଏବଂ କେଉଁ କେଉଁ ପରିସ୍ଥିତିରେ ସେଗୁଡ଼ିକ ତଦ୍ରୂପ, ତାହା ନିର୍ଦ୍ଧାରଣ କରିହେବ । ପରୀକ୍ଷାମୂଳକ ଓ ଶାସ୍ତ୍ରଚର୍ଚ୍ଚାଭିତ୍ତିକ ପଦ୍ଧତିଗୁଡ଼ିକ ଦ୍ୱାରା ବର୍ତ୍ତମାନ ଅବସ୍ଥାରେ କୌଣସି ସୁଫଳ ମିଳିବ କି ନା, ସନ୍ଦେହ କରାଯାଇପାରେ । କିନ୍ତୁ ବକ୍ତାର ମତାମତ ଉପରେ ନିର୍ଭରଶୀଳ ହୋଇନଥିବା ପରୀକ୍ଷା ପ୍ରଣାଳୀ କୌଣସି ପ୍ରକାରେ ଉଦ୍ଭାବିତ ନ ହେବା ପର୍ଯ୍ୟନ୍ତ ଏହି ବିଷୟର ଅନ୍ତିମ ସମାଧାନ ଯେ ଆଶା କରାଯାଇ ନ ପାରେ, ଏକଥା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସମସ୍ତ ଆଲୋଚନାରେ ଆମେ ଦେଖିବାକୁ ପାଇବା ଯେ ଯାହା କୁହାଯାଏ, ତାହା କେବଳ ଆଂଶିକତଃ ବକ୍ତା ନିର୍ଦ୍ଦେଶ କରୁଥିବା ବସ୍ତୁବର୍ଗ ଦ୍ୱାରା ନିର୍ଦ୍ଧାରିତ ହୁଏ । ଅନେକ ସମୟରେ ଘଟଣା ସମ୍ବନ୍ଧରେ ଏକ ସ୍ପଷ୍ଟ ଚେତନଶୀଳତାର ଅଭାବ ରହିଥିଲେହେଁ ଲୋକେ ପୂର୍ବାନୁଯୁକ୍ତ କର୍ମରେ ଲିପ୍ତ ରହନ୍ତି ଏବଂ ତାହା ସେମାନଙ୍କ ଶବ୍ଦ ବ୍ୟବହାରକୁ ନିୟନ୍ତ୍ରିତ କରେ । ସେମାନଙ୍କ ତାତ୍କାଳିକ ଉଦ୍ଦେଶ୍ୟ ଓ ଅନୁରକ୍ତ ବିଷୟରେ ଜ୍ଞାନ ନ ଥିଲେ, ସେମାନେ କି ବିଷୟସମ୍ବନ୍ଧରେ କହୁଛନ୍ତି, ଏବଂ ସେମାନଙ୍କ ନିର୍ଦ୍ଦେଶ୍ୟଗୁଡ଼ିକ ଆମର ନିର୍ଦ୍ଦେଶ୍ୟଗୁଡ଼ିକ ସହିତ ସମାନ କି ନୁହେଁ, ତାହା ଆମେ ଜାଣିପାରିବା ନାହିଁ ।

ବ୍ୟବହୃତ ଶବ୍ଦ ସମ୍ଭାରକୁ ଉଦ୍ଦେଶ୍ୟ ଦୁଇ ପ୍ରକାରରେ ପ୍ରଭାବିତ କରିଥାଏ । ବେଳେ ବେଳେ ନିର୍ଦ୍ଦେଶରେ ପରିବର୍ତ୍ତିତ ଆନୟନ କରି ଉଦ୍ଦେଶ୍ୟ କୌଣସି ପରିସ୍ଥିତିରେ ବିଶେଷଭାବେ ଉପଯୋଗୀ ହୋଇଥିବା ପ୍ରତୀକମାନଙ୍କ ନିର୍ବାଚନକୁ ନିୟନ୍ତ୍ରିତ କରେ । ଉଦାହରଣ ସ୍ୱରୂପ, ଜଣେ ଶିକ୍ଷକ ତାଙ୍କର ବର୍ଣ୍ଣକ୍ରମଦର୍ଶୀର ବର୍ଣ୍ଣନା ଗୋଟିଏ ଶିଶୁକୁ ଯେଉଁ ଭାଷାରେ ଦିଅନ୍ତି, ସେହି ଭାଷା ତାଙ୍କର ସହକର୍ମୀଙ୍କୁ କିମ୍ବା

(୧) ସମ୍ପୂର୍ଣ୍ଣ ସମାର୍ଥକ ଶବ୍ଦ, ଅର୍ଥାତ୍ ସମସ୍ତ କାର୍ଯ୍ୟକାରିତାରେ ସମାନ ହୋଇଥିବା ଶବ୍ଦମାନ ବୋଧହୁଏ ବ୍ୟବହୃତ ନୁହେଁ । କିନ୍ତୁ ସେହି ଏକ ନିର୍ଦ୍ଦେଶ ନିମନ୍ତେ ଆଂଶିକତଃ ସମାର୍ଥକ ଶବ୍ଦର ବ୍ୟବହାର ଅସାଧାରଣ ନୁହେଁ ।

ତାଙ୍କର ପ୍ରେମିକାଙ୍କୁ ଯେହି ବର୍ଣ୍ଣନା ଦେବା ସମସ୍ତର ଭାଷାଠାରୁ ଭିନ୍ନ ହୋଇପାରେ; ଯଦିଓ ଏହି ସମସ୍ତ କ୍ଷେତ୍ରରେ ତାଙ୍କ ନିର୍ଦ୍ଦେଶରେ କୌଣସି ପାର୍ଥକ୍ୟ ନ ଥାଏ । ଏହାର ଅନ୍ୟ ଏକ ଉଦାହରଣ ହେଉଛି, ଜଣେ ସୁସାହିତ୍ୟ-ଲେଖକ ତାଙ୍କ ନିର୍ଦ୍ଦେଶର ପରିବର୍ତ୍ତନ ନ କରି ଗୁଡ଼ିଏ ସମାର୍ଥକ ଶବ୍ଦ ମଧ୍ୟରୁ ଭିନ୍ନ ଭିନ୍ନ ଶବ୍ଦ ନେଇ ସୁଖପାଠ୍ୟ ସାହିତ୍ୟ ରଚନା କରନ୍ତି । ପକ୍ଷାନ୍ତରେ, ଜଣେ ପଦାର୍ଥବିଜ୍ଞାନୀ ତାଙ୍କ ପଥପ୍ରଦର୍ଶକ ବ୍ୟବହାର କରୁଥିବା ଭାଷାଠାରୁ ଭିନ୍ନ ଭାଷାର ପ୍ରୟୋଗ କରି ପ୍ଲେଙ୍କର ଅଫ୍ ଦ ବ୍ରୋକେନ୍‌ର ଆଲୋଚନା କରନ୍ତି । ଏହି କ୍ଷେତ୍ରରେ ସେମାନଙ୍କ ଉଦ୍ଦେଶ୍ୟରଭିନ୍ନତା ସେମାନଙ୍କ ନିର୍ଦ୍ଦେଶର ପରିବର୍ତ୍ତନ ବିଧାନ କରି ଭାଷାକୁ ପ୍ରଭାବିତ କରିଥାଏ ।

ଦ୍ୱିତୀୟ ପ୍ରକାର କ୍ଷେତ୍ରଗୁଡ଼ିକ ଅପେକ୍ଷା ପ୍ରଥମପ୍ରକାର କ୍ଷେତ୍ରଗୁଡ଼ିକ ଯେ ଅଧିକ ସରଳ, ଏକଥା ସୁସ୍ପଷ୍ଟ । କେବଳ ଦ୍ୱିତୀୟ ପ୍ରକାର କ୍ଷେତ୍ରଗୁଡ଼ିକରୁ ହିଁ ଜଟିଳ ବାକ୍‌ବିତଣ୍ଡା ଉଦ୍ଭବ ହେବାର ସମ୍ଭାବନା ଥାଏ । ଉଦାହରଣ ସ୍ୱରୂପ, ଜଣେ ଆଲୋଚନାର ଅଂଶୀଦାର ଜନସାଧାରଣଙ୍କ ମତ ସମ୍ବନ୍ଧରେ କହିବାକୁ ଯାଇ ଯାହା ନିର୍ଦ୍ଦେଶ କରୁଥାଇ ପାରେ ତାହାକୁ ଅନ୍ୟମାନେ ହୁଏତ କୌଣସି ଖବରକାଗଜ ମାଲିକଙ୍କ ମତ ବୋଲି କହିବେ । ସଙ୍ଗୀ-ପ୍ରବନ୍ଧ ସହିତ ସୁପରିଚିତ ଏକ ତୃତୀୟ ଅଂଶୀଦାରର ଅବର୍ତ୍ତମାନରେ, ଖବରକାଗଜ ଜନସାଧାରଣଙ୍କ ମତାମତ ଉପରେ କୌଣସି ପ୍ରଭାବ ପକାଏ କି ନା- ଏହି ପ୍ରଶ୍ନ ସମ୍ବନ୍ଧୀୟ ଯୁକ୍ତି ଏଠାରେ ଅସୈଦ୍ଧାନ୍ତିକ ହୋଇ ରହିଯିବାର ସମ୍ଭାବନା ରହିଛି । ଅତ୍ୟନ୍ତ ବୁଦ୍ଧିମାନ ବ୍ୟକ୍ତିଙ୍କ ମହଲରେ ମଧ୍ୟ ଏପ୍ରକାର ଯୁକ୍ତି ବାରମ୍ବାର କରାଯାଇଥାଏ, ଯଦିଓ ସମୀକ୍ଷାର ସ୍ୱଚ୍ଛ ଆଲୋକରେ ପରୀକ୍ଷିତ ହେଲେ ସାଧାରଣତଃ ଏଗୁଡ଼ିକର ଅବତାରଣା ନିତାନ୍ତ ନିର୍ବୋଧତାମୂଳକ ବୋଲି ଜଣା ପଡ଼ିଯାଏ ।

କିନ୍ତୁ କୌଣସି ଆଲୋଚନାର ଅଂଶୀଦାରମାନେ ଠିକ୍ ଯେଉଁ ସେହି ବସ୍ତୁମାନଙ୍କୁ ନିର୍ଦ୍ଦେଶ କରୁଛନ୍ତି କି ନା— ଏତଦ୍‌ବିଷୟକ ଅନିଶ୍ଚିତତାର ନିରାକରଣ ଉଦ୍ଦେଶ୍ୟରେ କିପରିଭାବେ ଆଲୋଚନା କରାଯାଇପାରିବ ?

ଏହାର ସର୍ବପ୍ରଥମ ଆବଶ୍ୟକତା ହେଉଛି, କେତେକ ଅତି ମାମୁଲି ଧରଣର ସାମଞ୍ଜସ୍ୟ ବ୍ୟତୀତ ଅନ୍ୟାନ୍ୟ ବିଷୟରେ ଲୋକଙ୍କର ଅତୀତ ଇତିହାସ ଭିନ୍ନ ଭିନ୍ନ ହୋଇ ଥିବାରୁ ସେମାନଙ୍କ କୌଣସି ସାଧାରଣ ଶବ୍ଦ ପ୍ରୟୋଗରେ ଏବଂ ତତ୍‌ପ୍ରତି ସେମାନଙ୍କ ପ୍ରତିକ୍ରିୟାରେ ପାର୍ଥକ୍ୟ ରହିବା ସମ୍ଭବପର—ଏହା ଆମେ ମନେ ରଖିବା ଦରକାର । କେତେକ ଲୋକ ଛନ୍ତି, ଯାହାଙ୍କ ପକ୍ଷରେ ନିର୍ଦ୍ଦେଶର ବିନା ସଂଯଟନରେ ଗୋଟିଏ ଶବ୍ଦ ହେଉଛି ଅନ୍ୟ କେତେକ ଶବ୍ଦୋଚ୍ଚାରଣର ଉଦ୍ଦୀପକ ମାତ୍ର । ଏମାନେ

ହୋଇଥାନ୍ତି ଶୁଣାଯାଏ; ଅର୍ଥାତ୍ ଗୋଟିଏ ସ୍ୱରଲହରୀର ପ୍ରଥମ କେତୋଟି ସ୍ୱର କାନରେ ପଡ଼ିଲେ, ତାହାର ପରବର୍ତ୍ତୀ ସ୍ୱରପୂରଣ କରିବାକୁ ସେମାନେ ଯେପରି ଯନ୍ତ୍ରଚାଳିତବତ୍ ଅଗ୍ରସର ହୋଇଥାନ୍ତି, ଶବ୍ଦମାନଙ୍କ କ୍ଷେତ୍ରରେ ମଧ୍ୟ ସେମାନଙ୍କ ପ୍ରତିକ୍ରିୟା ତଦ୍ରୂପ । ଅନ୍ୟପକ୍ଷର ଚରମ ପ୍ରାନ୍ତରେ ଏପରି କେତେକ ଲୋକ ରହିଛନ୍ତି, ଯାହାଙ୍କ ପକ୍ଷରେ ପ୍ରତ୍ୟେକ ବ୍ୟବହୃତ ଶବ୍ଦ ନିର୍ଦ୍ଦିଷ୍ଟ ଓ ସମ୍ପୂର୍ଣ୍ଣରୂପେ ଅଭିବ୍ୟକ୍ତ ଏକ ନିର୍ଦ୍ଦେଶକୁ ପ୍ରତୀକାୟିତ କରେ । ପ୍ରଥମ ପ୍ରକାର ଲୋକଙ୍କ ସହିତ ଆମେ ଏଠାରେ ସମ୍ପୃକ୍ତ ନୋହୁଁ । କିନ୍ତୁ ଅନ୍ୟମାନଙ୍କ ସମ୍ବନ୍ଧରେ ସ୍ମରଣ ରଖିବା ଉଚିତ ଯେ ସେମାନଙ୍କ ଧାରଣାଗୁଡ଼ିକ ସୁସ୍ପଷ୍ଟ ହୋଇଥିଲେ ହେଁ ସମ୍ଭବତଃ ସେଗୁଡ଼ିକ ସେହି ବସ୍ତୁମାନଙ୍କ ଧାରଣା ନୁହେଁ । ଏହା ବିରୁଦ୍ଧରେ ଉତ୍ତମ ସାକ୍ଷ୍ୟ ପ୍ରମାଣ ନଥିଲେ ଏହାହିଁ ଗୃହୀତବ୍ୟ । ଏକଥା ସୁସ୍ପଷ୍ଟ ଯେ ନିର୍ଦ୍ଦେଶ୍ୟମାନଙ୍କ ପ୍ରତି କରାଯାଇଥିବା ନିର୍ଦ୍ଦେଶ ମାଧ୍ୟମରେ ହିଁ କେବଳ ଆମେ ସେଗୁଡ଼ିକୁ ଚିହ୍ନୋଟ କରିପାରୁଁ । ଭିନ୍ନ ଭିନ୍ନ ନିର୍ଦ୍ଦେଶର ନିର୍ଦ୍ଦେଶ୍ୟ ଅଭିନ୍ନ ହୋଇପାରେ । ଯଥେଷ୍ଟ ସାଦୃଶ୍ୟ ଥିବା ନିର୍ଦ୍ଦେଶ ଗୁଡ଼ିକର ନିର୍ଦ୍ଦେଶ୍ୟ ଅଭିନ୍ନ ହୋଇଥିବା ନିଶ୍ଚିତ । ସୁତରାଂ ନିର୍ଦ୍ଦେଶଗୁଡ଼ିକର ସାଦୃଶ୍ୟ ସମ୍ବନ୍ଧରେ ନିଶ୍ଚିତ ହେବା ଦ୍ୱାରାହିଁ ଆମେ ନିର୍ଦ୍ଦେଶ୍ୟ-ମାନଙ୍କର ତାଦାତ୍ମ୍ୟ ସମ୍ବନ୍ଧରେ ନିଶ୍ଚିତ ହୋଇପାରୁଁ । ଏହି ହେତୁରୁ ଉପରେ ଆଲୋଚିତ ହୋଇଥିବା ସରଳ ସଙ୍କେତ ପନ୍ଥା ମାଧ୍ୟମରେ ନିର୍ଦ୍ଦେଶଗୁଡ଼ିକର ପ୍ରତୀକାୟିତକରଣ ବାଞ୍ଛନୀୟ । ଯେଉଁ ବସ୍ତୁଗୁଡ଼ିକୁ ଅଙ୍ଗୁଳି ନିର୍ଦ୍ଦେଶ କରାଯାଇପାରିବ ଅଥବା ଯେଉଁ ଘଟଣାଗୁଡ଼ିକ ଆମ ସାଧାରଣ ଅନୁଭୂତିରେ ଅବାଧରେ ଘଟେ, ସେହିଗୁଡ଼ିକୁ ଆମେ ଆମର ପ୍ରସ୍ଥାନ ବିନ୍ଦୁରୂପେ ମନୋନୀତ କରିବା ଆବଶ୍ୟକ । ଯେଉଁ ପନ୍ଥାଗୁଡ଼ିକ ମାଧ୍ୟମରେ ଏହି ପ୍ରସ୍ଥାନ ବିନ୍ଦୁଗୁଡ଼ିକୁ ଆମେ ଆମର ଉଦ୍ଦିଷ୍ଟ ନିର୍ଦ୍ଦେଶ୍ୟମାନଙ୍କ ସହିତ ସଂଯୋଗ କରୁଁ, ସେଗୁଡ଼ିକ ସମ୍ପୂର୍ଣ୍ଣରୂପେ ସୁପରିଚିତ ହେବା ଆବଶ୍ୟକ । ଏତଦ୍ଦ୍ୱାରା ପ୍ରୟୋଗ କ୍ଷେତ୍ରରେ ଆମ କାର୍ଯ୍ୟକଳାପ କେତୋଟି ମୁଖ୍ୟ ପନ୍ଥା ତଥା ସେମାନଙ୍କ ସମନ୍ୱୟମାନଙ୍କରେ ସୀମିତ ରହେ । ଏହି ପନ୍ଥାଗୁଡ଼ିକ ହେଉଛି ସାଦୃଶ୍ୟ, କାରଣିକତା, ଦେଶ ଏବଂ କାଳ । ଆମକୁ ବର୍ତ୍ତି ରହିବାକୁ ହେଲେ ଏଗୁଡିକୁ ଆମେ ଜାଣି ରଖିବା ଏବଂ ଅଭ୍ରାନ୍ତରୂପେ ଚିହ୍ନିପାରିବା ଆବଶ୍ୟକ । କିନ୍ତୁ ବ୍ୟାବହାରିକ କ୍ଷେତ୍ରରେ, ଆମେ ଅପେକ୍ଷାକୃତ ଅଳ୍ପ ମାତ୍ରାରେ ଆଦିମ ହୋଇଥିବା ଆଦ୍ୟ ବିନ୍ଦୁରୁ ଆରମ୍ଭ କରି ଅଧିକ ଜଟିଳ ଓ ଦୁର୍ଗମ ପନ୍ଥାମାନଙ୍କ ଅନୁ-ସରଣ କରିବା ଅନେକତଃ ଯଥେଷ୍ଟ । ଉଦାହରଣ ସ୍ୱରୂପ, 'କ୍ଷୁର' = 'କ୍ଷୌର କର୍ମ ନିମନ୍ତେ ବ୍ୟବହୃତ ଯନ୍ତ୍ର' ବୋଲି କହିବାରେ କୌଣସି ଦ୍ୱ୍ୟର୍ଥକତା ରହୁନାହିଁ । ଏଠାରେ 'ନିମନ୍ତେ ବ୍ୟବହୃତ'କୁ ଆହୁରି ଅଧିକ ବିଶ୍ଳେଷଣ କରିବା ଅନାବଶ୍ୟକ ।

କେଉଁ ସ୍ତରରେ ଆମ ସଙ୍କେତଗୁଡ଼ିକ ଯଥେଷ୍ଟ ପରିମାଣରେ ସୁସ୍ପଷ୍ଟ ତାହା ପରିସ୍ଥିତି ଦ୍ୱାରା ନିର୍ଣ୍ଣୀତ ହେବାକୁ ଛାଡ଼ିଦେବା ଠିକ୍ ହେବ । ବାଚନିକ ଆଲୋଚନା ଅଥବା ଦୀର୍ଘ ଓ ଦୃଢ଼ନିଷ୍ଠା ଚିନ୍ତାରୁ ବିଶେଷ କିଛି ମିଳିବ ବୋଲି ଆଶାକରାଯାଇ ନ ପାରେ । ଅଧିକ

ଗୁରୁତ୍ୱପୂର୍ଣ୍ଣ ପ୍ରଚେଷ୍ଟାରେ ବ୍ୟବହାରୋପଯୋଗୀ କେବଳ ଉଦ୍ଦୀପକ ଓ ସୂଚନାମାନ ଏହା ଯୋଗାଇଥାଏ । କିନ୍ତୁ ଯେଉଁ କ୍ଷେତ୍ରରେ ଏକ ଅନିଶ୍ଚିତାର୍ଥକ ଶବ୍ଦ ପ୍ରୟୋଗ କରାଯାଇଛି ବୋଲି ମନେ କରିବା ନିମନ୍ତେ କାରଣ ରହିଥାଏ, ସେଠାରେ ଯଥା ସମ୍ଭବ ଏକ ବ୍ୟାପକ ପରିସରରୁ ତାହାର ବ୍ୟବହାରଗୁଡ଼ିକର ସଂଗ୍ରହଣ ଏକ ବାଞ୍ଛ ସାଧ । ଏହି ସ୍ତରରେ, ସେଗୁଡ଼ିକ ମଧ୍ୟରେ କୌଣସି ସାଧାରଣ ଉପାଦାନ ଖୋଜି ବସିବା ଉଚିତ ନୁହେଁ । ଏକ ଉତ୍ତମ ଅଭିଧାନ କେତେକ ଶବ୍ଦ ନିମିତ୍ତ ଏହି କାର୍ଯ୍ୟ ସମ୍ପାଦନର ପ୍ରୟାସ କରିଥାଏ; କିନ୍ତୁ ସାଧାରଣତଃ ଏହା ଐତିହାସିକ ଦୃଷ୍ଟିକୋଣରୁ କରାଯାଇଥାଏ ଏବଂ ଏହା କୌଣସି ତାତ୍ତ୍ୱିକ ସୂତ୍ର ପ୍ରତିଷ୍ଠିତ ହୋଇ ନ ଥାଏ । ଏହାର ପରବର୍ତ୍ତୀ ପଦକ୍ଷେପ ହେଉଛି ସମ୍ପୃକ୍ତ ନିର୍ଦ୍ଦେଶ୍ୟମାନଙ୍କୁ ଚିହ୍ନଟ କରିବା ପାଇଁ କେଉଁ କେଉଁ ମୁଖ୍ୟ ପନ୍ଥାର ପ୍ରୟୋଗ କରାଯାଇଛି, ତାହା ଆବିଷ୍କାର କରିବା ଉଦ୍ଦେଶ୍ୟରେ ଏହି ବ୍ୟବହାରଗୁଡ଼ିକୁ ସମବଦ୍ଧ କରିବା ଏହିପରିଭାବେ ରଚିତ ଭିନ୍ନ ଭିନ୍ନ ସଂଜ୍ଞାଗୁଡ଼ିକ ପରସ୍ପର ବହିର୍ଭୂତ ହେବା ଅନାବଶ୍ୟକ । ବହୁକ୍ଷେତ୍ରରେ ସେଗୁଡ଼ିକ ସେହି ସେହି ନିର୍ଦ୍ଦେଶ୍ୟ ମାନଙ୍କୁ ଅନ୍ତର୍ଭୁକ୍ତ କରିବେ, କିନ୍ତୁ ସେଗୁଡ଼ିକର ନିର୍ଦ୍ଦେଶ ଭିନ୍ନ ଭିନ୍ନ ହେବ । ଏହି ପ୍ରକାର କ୍ଷେତ୍ରମାନଙ୍କରେ, ଉପରେ କୁହାଯାଇଥିବା ନିର୍ଦ୍ଦେଶ-ସ୍ତର ସମ୍ପର୍କୀୟ ସମସ୍ୟାର ଆମେ ସମ୍ମୁଖୀନ ହେବାର ସମ୍ଭାବନା ରହିଛି । ସାଧାରଣ କଥାବାର୍ତ୍ତାର 'ପ୍ରାଣୀ'ପଦ ଏବଂ ଜୀବବିଜ୍ଞାନର 'ସ୍ତନ୍ୟପାୟୀ' ପଦ ପ୍ରାୟ ସମାନ ନିର୍ଦ୍ଦେଶ୍ୟ ପରିବର୍ତ୍ତେ ବ୍ୟବହୃତ, କିନ୍ତୁ ତନ୍ନିହିତ ସଙ୍କେତ ଶୃଙ୍ଖଳର ନିର୍ଦ୍ଦିଷ୍ଟତା ଓ ଜଟିଳତାରେ ନିର୍ଦ୍ଦେଶଦ୍ୱୟ ପ୍ରଭୂତ ପରିମାଣରେ ପରସ୍ପର ପୃଥକ୍ । ଯଦି ସମ୍ଭବପର ହୁଏ, ଏହି ପାର୍ଥକ୍ୟଗୁଡ଼ିକୁ ସଂଜ୍ଞା ପ୍ରବର୍ତ୍ତନ ଦ୍ୱାରା ସୂଚିତ କରିଦେବା ଉଚିତ । ପ୍ରତ୍ୟେକ ସଂଜ୍ଞା କୌଣସି ନିର୍ଦ୍ଦେଶ୍ୟବର୍ଗର ପରିସରକୁ ନିର୍ଭୁଲଭାବେ ଚିହ୍ନିତ କରିଦେବା ଉଚିତ, ଏହାହିଁ ଏଠାରେ ଆବଶ୍ୟକ । ଯଦି ଦୁଇଟି ସଂଜ୍ଞା ସେହି ଏକ ନିର୍ଦ୍ଦେଶ୍ୟ ପରିସରକୁ ଚିହ୍ନିତ କରେ, ତେବେ ତହିଁରେ କୌଣସି କ୍ଷତି ନାହିଁ; କାରଣ ଏଠାରେ ମୁଖ୍ୟ ବିଷୟ ହେଉଛି, ପ୍ରତ୍ୟେକ ପରିସରକୁ ଅନ୍ୟାନ୍ୟ ପରିସରଠାରୁ ସୁସ୍ପଷ୍ଟରୂପେ ପୃଥକ୍ କରିଦେବା ଯେପରି କି ତାହାକୁ ତାହାର ନିଜସ୍ୱ ଯୋଗ୍ୟତା ଦୃଷ୍ଟିରୁ ବିଚାର କରାଯାଇ ପାରିବ ।

ଯେଉଁମାନେ ପ୍ରାଚୀନ ପଦ୍ଧତିରେ ଅଭ୍ୟସ୍ତ ସେମାନେ ସ୍ୱଭାବତଃ ଏହାହିଁ ଆଶା କରନ୍ତି ଯେ ଯେତେବେଳେ ଗୋଟିଏ ମାତ୍ର ଶବ୍ଦ ପରି ଦେଖା ଯାଉଥିବା ଏକ ଶବ୍ଦର ସଂଜ୍ଞା ଦିଆଯାଉଛି, ତାହାର ବିକଳ୍ପରେ ପ୍ରତିସ୍ଥାପିତ ପ୍ରତୀକଗୁଡ଼ିକ ଅଳ୍ପାଧିକ ପରିମାଣରେ ପ୍ରଚ୍ଛନ୍ନ ଏକ ସାଧାରଣ ବୈଶିଷ୍ଟ୍ୟ ସମ୍ବଳିତ ନିର୍ଦ୍ଦେଶ୍ୟମାନଙ୍କ ପରିବର୍ତ୍ତେ ବ୍ୟବହୃତ ହୋଇଥିବ । ଏହା ବେଳେ ବେଳେ ଏବଂବିଧ ହୋଇପାରେ, କିନ୍ତୁ ଏହି ପ୍ରକାର କୌଣସି ସାଧାରଣ ବୈଶିଷ୍ଟ୍ୟ ରହିଛି କି ନା ତାହାର ଅନ୍ୱେଷଣ କାର୍ଯ୍ୟକୁ ଏକ ବହୁ-

ପରବର୍ତ୍ତୀ ସୋପାନରେ ପହଞ୍ଚିବା ପର୍ଯ୍ୟନ୍ତ ସ୍ଥଗିତ ରଖିଦେବା ଉଚିତ । ସାଧାରଣ କଥୋପକଥନ ଗତ ଶବ୍ଦଗୁଡ଼ିକ, ବିଭିନ୍ନ ପରିମାଣର ସୂକ୍ଷ୍ମତା ବିଶିଷ୍ଟ ରୂପକମୂଳକ ପରିବର୍ତ୍ତନ ମାଧ୍ୟମରେ ଏବଂ ଯାହାକୁ ଭିତ୍ତାତ୍ମକ ଆକର୍ଷିକତା କୁହାଯାଇ ପାରେ ତାହାର ମାଧ୍ୟମରେ, କେତେକ ସଂକୀର୍ଣ୍ଣ ଏବଂ ଅତିରିକ୍ତ ବ୍ୟବହାରର ଅଧିକାରୀ ହୋଇଥାନ୍ତି । ଏହି ପ୍ରକ୍ରିୟାର ଯତ୍ର ସାମାନ୍ୟ ଅଧ୍ୟୟନ ମଧ୍ୟ ପ୍ରଦର୍ଶନ କରିଦେବ। ନିମନ୍ତେ ଯଥେଷ୍ଟ ଯେ ଗୋଟିଏ ଶବ୍ଦର ସମସ୍ତ ପରିଗଣନ ଯୋଗ୍ୟ ବ୍ୟବହାରରେ କୌଣସି ଅନୁରକ୍ତ ବିଷୟ ସମ୍ବଳିତ ବା ଗୁରୁତ୍ୱପୂର୍ଣ୍ଣ ଏକ ସାଧାରଣ ଉପାଦାନ ରହିଥିବାର ସମ୍ଭାବନା କ୍ଷୀଣ । ଅବଶ୍ୟ, ପ୍ରତ୍ୟେକ ରୂପକାତ୍ମକ ପରିବର୍ତ୍ତନ କୌଣସି ସାଧାରଣ ଉପାଦାନ ଉପରେ ହିଁ ନିର୍ଭର କରେ । ଏହି ସାଧାରଣ ଉପାଦାନରେ ମୌଳିକ ନିର୍ଦ୍ଦେଶ ତଥା ପ୍ରତୀକଟିକୁ ପରିବର୍ତ୍ତିତ ଅର୍ଥରେ ବ୍ୟବହାର କରିଥିବା ନିର୍ଦ୍ଦେଶ ଉଭୟର ଭୂମିକା ଥାଏ । ନିର୍ଦ୍ଦେଶ-ଦ୍ୱୟର ପ୍ରସଙ୍ଗ ଦୁଇଟିର ଗୋଟିଏ ଅଂଶ ଉଭୟର ସମାନ ହୋଇଥିବା ସୁନିଶ୍ଚିତ କିନ୍ତୁ ଦୁଇଟି ପ୍ରସଙ୍ଗର ସମ୍ପୂର୍ଣ୍ଣ ଅନ୍ୟୋନ୍ୟ ସମାନତା ଅତିବ୍ୟାପକ; ଏବଂ ଗୋଟିଏ ଶବ୍ଦ ଯଦି ପ୍ରସଙ୍ଗତଃ ସମ୍ପୃକ୍ତ ହୋଇଥାଏ, ତାହା ସର୍ବଦା ଯେ ଗୋଟିଏ ମାତ୍ର ସାଦୃଶ୍ୟ ବା ଆଂଶିକ ଅନ୍ୟୋନ୍ୟ ସମାନତା ବଳରେ ପରିବର୍ତ୍ତିତ ଅର୍ଥରେ ବ୍ୟବହୃତ ହେବ, ଏହା ପ୍ରତ୍ୟାଶା କରିବାର କୌଣସି କାରଣ ନାହିଁ । ଉଦାହରଣ ସ୍ୱରୂପ, ସୁନ୍ଦର (କ) ଏବଂ ସୁନ୍ଦର (ଖ) କେତେକ ବିଷୟରେ ସାଧାରଣ ହୋଇଥିବା ଦୁଇଟି ନିର୍ଦ୍ଦେଶକୁ ପ୍ରତୀକାନ୍ୱିତ କରିପାରେ । ସୁନ୍ଦର (ଖ) ଏବଂ ସୁନ୍ଦର (ଗ) ମଧ୍ୟ ତଦ୍ରୂପ ହୋଇଥାଇ ପାରେ । କିନ୍ତୁ ଏଥିରୁ କୌଣସିମତେ ଅନୁମିତ ନୁହେଁ ଯେ ଏହି ସାଧାରଣ ଉପାଦାନ-ଗୁଡ଼ିକ ସର୍ବଦା ସମାନ ହେବ, ଅଥବା ଏହି ତିନୋଟି ପ୍ରତୀକ ଯେଉଁ ନିର୍ଦ୍ଦେଶ୍ୟମାନଙ୍କ ପରିବର୍ତ୍ତେ ବ୍ୟବହୃତ, ସେଗୁଡ଼ିକରେ କୌଣସି ଅନୁରକ୍ତିର ବିଷୟ ସାଧାରଣ ହୋଇ ରହିବ । କିନ୍ତୁ ତଥାପି, ଯେଉଁ ଲେଖକମାନେ ଏ ପ୍ରକାର ସଞ୍ଚରଣଶୀଳ ଶବ୍ଦଗୁଡ଼ିକ ସହିତ ନିଜକୁ ସମ୍ପୃକ୍ତ ରଖନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ବ୍ୟକ୍ତି ମୌଳିକ ବା ଅବିଚ୍ଛେଦଣୀୟ ଅର୍ଥମାନଙ୍କର ଅନ୍ୱେଷଣ ଦ୍ୱାରା ନିଜର ଅନୁସନ୍ଧାନ ଆରମ୍ଭ କରିବାର ପ୍ରଲୋଭନକୁ ପ୍ରତିହତ କରି ପାରି ନାହାନ୍ତି ।

ଏହି ପ୍ରଲୋଭନ ଅଭିଧାନ ସଙ୍କଳକଙ୍କ ଏକ ପ୍ରବୃତ୍ତି ହେତୁରୁ ଅତ୍ୟଧିକ ପରି-ମାଣରେ ବୃଦ୍ଧି ଲାଭ କରିଛି । ସେମାନଙ୍କ ଏହି ପ୍ରବୃତ୍ତିଟି ହେଉଛି ସଂକ୍ଷିପ୍ତୀକରଣ ଉଦ୍ଦେଶ୍ୟରେ ସ୍ୱେଚ୍ଛାକ୍ରମେ ନିର୍ବାଚିତ ଏକ କେନ୍ଦ୍ରିକ ବ୍ୟବହାରକୁ ପୃଥକରୂପେ ପ୍ରାଧାନ୍ୟ

(୧) Greenough and Kittredge, Words and their Ways in English Speech, ପୃ ୨୮ ।

ଦେଇ ଉଲ୍ଲେଖ କରିବା, ଏବଂ ଠିକ୍ ଯେଉଁ ଅର୍ଥଗୁଡ଼ିକ ସର୍ବାଧିକ ଅସୁବିଧାଜନକ ହେବାର ସମ୍ଭାବନା ରହିଛି ସେଗୁଡ଼ିକୁ 'ଅପ୍ରଚଳିତ' ବା 'ଆକସ୍ମିକ' ବ୍ୟବହାର ବୋଲି ପରିଗଣିତ କରିବା । କେତେକ କ୍ଷେତ୍ରରେ, ପ୍ରଶାଖାଟିରେ ହିଁ ଐତିହାସିକ ପରିବର୍ତ୍ତନ ତଥା ଧ୍ୱନ୍ୟାତ୍ମକ ବିବର୍ତ୍ତନ ଉଭୟରେ ଚିହ୍ନିତ ହେବା ଯୋଗ୍ୟ ଅବସ୍ଥାରେ ଥାଏ । ଉଦାହରଣ ସ୍ୱରୂପ, ନିମ୍ନଲିଖିତ ତାଲିକା ଉପରେ ଥରେ ମାତ୍ର ଦୃଷ୍ଟି ନିକ୍ଷେପ କଲେ [ଇଂରାଜୀରେ] Persona — Person — Parson ରେ ଘଟିଥିବା ପରିବର୍ତ୍ତନ ଗୁଡ଼ିକୁ ଲକ୍ଷ୍ୟ କରାଯାଇ ପାରିବ (୧)—

୧ । କ............................ ମୁଖା ।
୨ । କ+ଖ........................ ମୁଖା ସୂଚିତ ବୈଶିଷ୍ଟ୍ୟ ।
୩ । ଖ........................ ବୈଶିଷ୍ଟ୍ୟ ବା ନାଟକୀୟ ଚରିତ୍ର ।
୪ । ଖ+ଗ .............. ଯେ ଗୋଟିଏ ବୈଶିଷ୍ଟ୍ୟର ପ୍ରତିନିଧିତ୍ୱ କରେ ।
୫ । ଗ .............. ଯେ କୌଣସି ପ୍ରତିନିଧି ।
୬ । ଗ+ଘ ............ ମଣ୍ଡଳୀରେ ଖ୍ରୀଷ୍ଟଧର୍ମର ପ୍ରତିନିଧି ।
୭ । ଘ ............ ପାଳକ ।

ଏହି ଅଭିବୃଦ୍ଧି ସର୍ବାଂଶରେ ଲାଟିନ୍ ଭାଷାରେ ଘଟିଛି । ଯେତେବେଳେ ଇଂରାଜୀ ଭାଷାକୁ Persoun ଆକାର ବିଶିଷ୍ଟ ଶବ୍ଦଟି ଲାଟିନ୍‌ରୁ ଆନୀତ ହୋଇ ଚସରଙ୍କ ଦ୍ୱାରା ବ୍ୟବହୃତ ହୋଇଥିଲା, ସେତେବେଳେ ଏକ ସଙ୍କ୍ରମଣ ତଥା ଖ ରେ ଥିବା ରୂପକର ନ୍ୟୂନତା ଘଟି ଖ୧ର ଉଦ୍ଭବ ହୋଇଥିଲା । ଏତଦ୍ୱାରା ତାହା 'Personage' ଶବ୍ଦକୁ ପରିବର୍ତ୍ତିତ ହୋଇଥିଲା । ପୁରାତନ ଆକାର ବିଶିଷ୍ଟ ଶବ୍ଦର ଧ୍ୱନ୍ୟାତ୍ମକ ବନାନ ହେଉଛି Parson । ଏହିପରି ଭାବେ ଅନେକତ୍ର ଗୋଟିଏ ଶବ୍ଦର ପ୍ରାୟ ଏକ ଡଜନ ବ୍ୟବହାର ଦେଖିବାକୁ ମିଳିପାରେ । ଶବ୍ଦ ନିର୍ଦ୍ଦେଶିତ ବସ୍ତୁଗୁଡ଼ିକ ଯଦି ଅନାୟାସରେ ପୃଥକ୍‌କରଣ ଯୋଗ୍ୟ ହୋଇଥାଏ, ତେବେ ତାହାକୁ ନେଇ ଶ୍ଳେଷବାକ୍ୟ ରଚନା କରାଯାଇ ପାରେ; ଏହା ହୋଇ ନ ଥିବା କ୍ଷେତ୍ରରେ, ଐତିହାସିକ ବା ଧ୍ୱନ୍ୟାତ୍ମକ ବିଭେଦକୁ ଯଦି ସଙ୍ଖ୍ୟାଦ୍ୱାରା ସୁସ୍ପଷ୍ଟ କରି ଦିଆ ନ ଯାଏ, ତେବେ ଗଣ୍ଡଗୋଳର ସୂତ୍ରପାତ ହେବା ଅନିବାର୍ଯ୍ୟ ।

ବିରୋଧୀ ମତବାଦ ରହିଥିବା କ୍ଷେତ୍ରରେ ଆମେ ଯଦି ମଧ୍ୟସ୍ଥତା କରିବାକୁ ଚାହୁଁ, ତେବେ ବିବାଦକାରୀମାନେ ନିଶ୍ଚୟ ସେମାନଙ୍କ ଶବ୍ଦଗୁଡ଼ିକୁ ସମସ୍ତ ଦୃଷ୍ଟିରୁ ସମଅର୍ଥରେ ବ୍ୟବହାର କରୁଥିବେ ବୋଲି ଗ୍ରହଣ କରିନେବା ଅପେକ୍ଷା ସେମାନେ ପଦ ବ୍ୟବହାର ଦୃଷ୍ଟିରୁ ସ୍ୱାଧୀନ ବୋଲି ଗ୍ରହଣ କରିବା ଯଥେଷ୍ଟ ପରିମାଣରେ ଭଲ । ଯଦି ବାସ୍ତବରେ

---

(୧) Greenough and Kittedge, Words and their Ways in English, ପୃ ୨୭୮ ।

ସେମାନଙ୍କ ମତରେ କୌଣସି ସାଧାରଣ ଉପାଦାନ ନିହିତ ଥାଏ, ତାହାକୁ ଆବିଷ୍କାର କରିବା ପାଇଁ ଦ୍ୱିତୀୟ ପଦ୍ଧତିରେ ଆମେ ଏକ ଉପଯୁକ୍ତ ଅବସ୍ଥାରେ ରହିବା । ପ୍ରଥମ ପଦ୍ଧତିରେ, ଆମେ ଅନିବାର୍ଯ୍ୟରୂପେ ସମସ୍ତ ସମ୍ପୃକ୍ତ ମତବାଦକୁ ଭ୍ରାନ୍ତଭାବେ ଉପସ୍ଥାପିତ କରି ବସିବା ଏବଂ ତନ୍ନିହିତ ଯଥାର୍ଥତଃ ମୂଲ୍ୟବାନ ତଥା ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଗୁଡ଼ିକରୁ ଅଧିକାଂଶ ଆମ ଆଖିରେ ପଡ଼ିବ ନାହିଁ । ବିଭିନ୍ନ ମତର ସମନ୍ୱୟ ବିଧାନ ଚେଷ୍ଟାକରିବା ଯଦି ଆଦୌ ଆବଶ୍ୟକ ହୁଏ, ତେବେ ପ୍ରତ୍ୟେକ ମତକୁ ଅଲଗା କରି ଯଥାସମ୍ଭବ ସମ୍ପୂର୍ଣ୍ଣରୂପେ ପରୀକ୍ଷା କରା ନ ଯିବା ପର୍ଯ୍ୟନ୍ତ ସମନ୍ୱୟ ବିଧାନ ଚେଷ୍ଟା ସ୍ଥଗିତ ରଖାଯିବା ଉଚିତ । ପ୍ରତୀକମାନଙ୍କ ପ୍ରତି ଆମର ସମସ୍ତ ସ୍ୱାଭାବିକ ମନୋବୃତ୍ତି ଅସମୟରେ ଏହି ଚେଷ୍ଟା କରିବାକୁ ଆମକୁ ପ୍ରଲୁବ୍ଧ କରିଥାଏ, କିନ୍ତୁ ନିଶ୍ଚିତଭାବେ ଗଣ୍ଡଗୋଳ ସୃଷ୍ଟି ହେବାର ଏହା ଏକ ଉତ୍ସ ସ୍ୱରୂପ ।

ପ୍ରତୀକମାନଙ୍କ ପ୍ରତି ଯେଉଁମାନଙ୍କ ଆଚରଣ ସୁଚିନ୍ତିତ ନୁହେଁ, ସେମାନଙ୍କ ପକ୍ଷେ ପ୍ରାୟଶଃ ବିଶ୍ଳେଷଣ କରିବା କଷ୍ଟସାଧ୍ୟ ଯେ 'ସୌନ୍ଦର୍ଯ୍ୟ', 'ଅର୍ଥ' ବା 'ସତ୍ୟ' ପରି ସୁବିଧା ଜନକ ଶବ୍ଦମାନ ପ୍ରକୃତରେ ଆଦୌ ଏକକ ଶବ୍ଦ ନୁହେଁ । ସେଗୁଡ଼ିକରୁ ପ୍ରତ୍ୟେକଟି ବାହ୍ୟିକ ଦୃଷ୍ଟିରୁ ଅବିଭେଦନୀୟ ପରି ଜଣା ପଡ଼ୁଥିଲେ ସୁଦ୍ଧା ପ୍ରତ୍ୟେକଟି ସମ୍ପୂର୍ଣ୍ଣରୂପେ ପରସ୍ପର ଅସଙ୍ଗତ କେତେକ ପ୍ରତୀକର ଏକ ସମଷ୍ଟି । ଏଗୁଡ଼ିକ କାହିଁକି ଏବଂବିଧ, ତାହାର କାରଣ ନିର୍ଦ୍ଦେଶ କରିବା କଷ୍ଟକର ନୁହେଁ । ମୁଖ୍ୟତଃ ଦୈନନ୍ଦିନ ଜୀବନର ବ୍ୟାବହାରିକ କଥୋପକଥନର ଆବଶ୍ୟକତା ପୂରଣ ନିମନ୍ତେ ଭାଷାର ଅଭିବୃଦ୍ଧି ଘଟେ । ଆମେ ଯେତେବେଳେ ଆମର ତାତ୍ତ୍ୱିକ ଆବଶ୍ୟକତା ଦୃଷ୍ଟିରୁ ଭାଷାର ବିଚାର କରୁ, ଦେଖାଯାଏ ଯେ ତାହାର ଏକକ ଗୁଡ଼ିକର ବ୍ୟାପ୍ତିର ସାନ୍ଦ୍ରତାରେ ଉଲ୍ଲେଖନୀୟ ଅସମତା ରହିଛି । ଉଦାହରଣ ସ୍ୱରୂପ, ଯେଉଁ କାର୍ଯ୍ୟମାନଙ୍କ ପାଇଁ ଶହେଟି ଶବ୍ଦ ମଧ୍ୟ ଅତ୍ୟଧିକ ହୋଇଯିବ ନାହିଁ, ସେଗୁଡ଼ିକର ସମ୍ପାଦନ ଗୋଟିଏ ମାତ୍ର ଶବ୍ଦକୁ କରିବାକୁ ପଡ଼ୁଥିବା ଘଟଣା ବିରଳ ନୁହେଁ । କାହିଁକି ଯେ ଭାଷା ଏପରି ସ୍ଥଳରେହିଁ ପ୍ରାୟଶଃ ଏତେ ଅସମ୍ବୃଦ୍ଧ, ତାହା ଏକ ବିଭ୍ରାନ୍ତିକର ସମସ୍ୟା । ପ୍ରତିଷ୍ଠିତ ବିଜ୍ଞାନମାନଙ୍କରେ ପଦର ଅଭାବ ଉପଲବ୍ଧ ହେଲେ, ନୂତନ ପଦମାନଙ୍କର ପ୍ରବେଶ କରାଇ ନିର୍ବିଘ୍ନରେ ସମସ୍ୟାର ସମାଧାନ କରାଯାଏ । କିନ୍ତୁ ବିଜ୍ଞାନମାନଙ୍କ ପ୍ରାଥମିକ ଅବସ୍ଥାରେ, ଅର୍ଥାତ୍ ସେଗୁଡ଼ିକର ଅଭିବୃଦ୍ଧି ଘଟି ବିଶେଷଜ୍ଞମାନଙ୍କ ତତ୍ତ୍ୱାବଧାନକୁ ଆସିବା ପୂର୍ବରୁ ସେଗୁଡ଼ିକ ଜନସାଧାରଣଙ୍କ ସମ୍ପୃକ୍ତ ବିଷୟ ହୋଇ ରହିଥାଏ; ଏବଂ ତଦବଧି ନୂତନ ପଦମାନଙ୍କ ପ୍ରବେଶ କରାଇବା ନିମନ୍ତେ ଅତ୍ୟନ୍ତ ଗୁରୁତର ଧରଣର ବାଧା ରହିଥାଏ । ସଂବେଗାତ୍ମକ ଶକ୍ତିରହିତ ହେବା ହେଉଛି ସମସ୍ତ ପାରିଭାଷିକ ଶବ୍ଦ ପ୍ରୟୋଗ ବିଧିର ଏକ ବୈଶିଷ୍ଟ୍ୟ । ଏହି ଶକ୍ତିରହିତ ହେବାରେହିଁ ସମ୍ଭବତଃ ଏହି ବିଷୟର ବ୍ୟାଖ୍ୟା ନିହିତ ।

ପଦମାନଙ୍କ ଏହି ସ୍ୱଳ୍ପତାର ପରିଣତି ସ୍ୱରୂପ ପ୍ରତୀକ ଦୃଷ୍ଟିରୁ ଅଣ୍ଟାବସ୍ଥ ବିଷୟ-ମାନଙ୍କରେ ଯେ କୌଣସି ନିର୍ଦ୍ଦେଶ କରିବା ନିମନ୍ତେ ସେହି ଅଳ୍ପ ସଂଖ୍ୟକ ପ୍ରଚଳିତ ଶବ୍ଦର ବ୍ୟବହାର ବାଧ୍ୟତାମୂଳକ ହୋଇଯାଏ । ସେହି ଶବ୍ଦଗୁଡ଼ିକର ଉପଯୋଗ କରୁଥିବା ନିର୍ଦ୍ଦେଶର ନିର୍ଦ୍ଦେଶ୍ୟମାନଙ୍କଠାରୁ ଉପସ୍ଥିତ କ୍ଷେତ୍ରର ନିର୍ଦ୍ଦେଶ୍ୟ ଯେତେ ଭିନ୍ନ ହେଲେ ସୁଦ୍ଧା ଏଠାରେ ଉପାୟାନ୍ତର ନଥାଏ । ଉଦାହରଣ ସ୍ୱରୂପ, ଯେଉଁମାନଙ୍କର କାର୍ଯ୍ୟକଳାପ ତାତ୍ତ୍ୱିକ ନୁହେଁ କି ବ୍ୟାବହାରିକ ନୁହେଁ, ତତ୍ସମ୍ବନ୍ଧୀୟ ଯେ କୌଣସି ନିର୍ଦ୍ଦେଶକୁ ଆମେ ସୌନ୍ଦର୍ଯ୍ୟମୂଳକ ( aesthetic ) ଶବ୍ଦଦ୍ୱାରା ପ୍ରତୀକାନ୍ୱିତ କରିବସୁଁ । ପୁଣି ଏଥିରୁ ବ୍ୟୁତ୍ପତ୍ତିଗତ ବିସ୍ତରରେ, କେବଳ ଜାଣିବା ବା କେବଳ ପରିବର୍ତ୍ତନ କରିବା ସୂତ୍ରରେ ଆମେ ଯଦି କୌଣସି ବିଷୟ ସହିତ ସମ୍ପୃକ୍ତ ନୋହୁଁ, ତେବେ ତାହାକୁ ସୁନ୍ଦର ବୋଲି ବର୍ଣ୍ଣନା କରି ବସୁଁ । ବସ୍ତୁମାନଙ୍କ ପ୍ରତି ମୌଳିକତା ଦୃଷ୍ଟିରୁ ବିଭିନ୍ନ ହୋଇଥିବା ଯେତେ ସଂଖ୍ୟକ ମନୋବୃତ୍ତି-ପାର୍ଥକ୍ୟ ଆମେ ଲକ୍ଷ୍ୟ କରି ପାରୁଥିଲେ ହେଁ, ଏହାହିଁ ଆମର ପ୍ରଚଳିତ ପଦ୍ଧତି । ସାଧାରଣ ଆଲୋଚନାରେ ବ୍ୟବହୃତ ଅଧିକ ଗୁରୁତ୍ୱପୂର୍ଣ୍ଣ ସମସ୍ତ ଶବ୍ଦରେ କାହିଁକି ଏତେ ଦ୍ୱ୍ୟର୍ଥକତା-ପ୍ରାଚୁର୍ଯ୍ୟ ରହିଛି, ତାହାର ଏକ କାରଣ ଆମେ ଏଠାରେ ଜାଣି ପାରୁଥାଉଁ । ଉପରେ ବିସ୍ତୃତ କରାଯାଇଥିବା ରୂପକାତ୍ମକ ପରିବର୍ତ୍ତନ ପଦ୍ଧତିକୁ ମଧ୍ୟ ଏହା ସାହାଯ୍ୟ ଯୋଗାଏ ଓ ବଳବତ୍ତର କରେ ।

ଉପର୍ଯ୍ୟୁକ୍ତ କାରଣରୁ ଏହି ବିଷୟାବଳୀର ଯେ କୌଣସି ଗୁରୁତ୍ୱପୂର୍ଣ୍ଣ ପରୀକ୍ଷାର ପ୍ରାରମ୍ଭରେ ଆମେ ମୁଖ୍ୟ ଶବ୍ଦମାନଙ୍କ ବିଭିନ୍ନ ବ୍ୟବହାରର ଯଥାସମ୍ଭବ ଏକ ସମ୍ପୂର୍ଣ୍ଣ ତାଲିକା ପ୍ରସ୍ତୁତ କରି ରଖିବା ଉଚିତ । ଏହି ତାଲିକାର ପ୍ରସ୍ତୁତିରେ ଅବଶ୍ୟ ସାମାନ୍ୟ ବୁଦ୍ଧି ଓ ସାଧାରଣ ବିବେକର ପ୍ରୟୋଗ ଆବଶ୍ୟକ । କିନ୍ତୁ ଏହି ତାଲିକାକୁ ଯଥାସମ୍ଭବ ପୂର୍ଣ୍ଣାଙ୍ଗ କରିବାର ଏକ ଗୁରୁତ୍ୱପୂର୍ଣ୍ଣ କାରଣ ରହିଛି । ଏପ୍ରକାର କ୍ଷେତ୍ରରେ, ଯାହାକୁ 'ସ୍ଥିତି-ବୋଧ' ବୋଲି କୁହାଯାଇପାରେ, ତାହାକୁ ସୁସଙ୍ଗତ ଭାବେ ରକ୍ଷା କରିବା ଅସାଧାରଣରୂପେ କଷ୍ଟସାଧ୍ୟ ହୋଇଥାଏ । ଅନୁସନ୍ଧାନକାରୀର ମନେ ହୁଏ ଯେ ଅନୁସନ୍ଧାନ ପ୍ରଣାଳୀ ଅଧିକାଂଶତଃ ଯହିଁରେ ପର୍ଯ୍ୟବସିତ, ତାହା ହେଉଛି କେତେକ ଅନ୍ତର୍ଦୃଷ୍ଟିର ଝଲକ, ବସ୍ତୁଗୁଡ଼ିକର ପାରସ୍ପରିକ ସମ୍ବନ୍ଧମାନଙ୍କ ପ୍ରତି କେତେକ ଅକସ୍ମାତ୍ ଲବ୍ଧ କ୍ଷଣସ୍ଥାୟୀ ଦୃଷ୍ଟି ଏବଂ ସେଗୁଡ଼ିକର ସ୍ୱାତନ୍ତ୍ର୍ୟ ଓ ପାର୍ଥକ୍ୟର କେତେକ ଅନପେକ୍ଷିତ ଅଭିଜ୍ଞାନ । ଏଗୁଡ଼ିକୁ ମନେ ରଖିବା ନିମନ୍ତେ ପ୍ରତୀକାନ୍ୱିତ କରିବାକୁ ପଡ଼େ । ଅଧିକାଂଶ କ୍ଷେତ୍ରରେ, ଏଗୁଡ଼ିକ ପ୍ରଥମଥର ସଙ୍ଘଟିତ ହେବା କାଳରେ ପ୍ରତୀକାନ୍ୱିତ ହୋଇ ନଥାଏ । ଯଦି ବାସ୍ତବତଃ ଏହାହିଁ ହୋଇଥାଏ, ତେବେ ସେଗୁଡ଼ିକର ପ୍ରତୀକାନ୍ୱିତକରଣ ଅପରିହାର୍ଯ୍ୟ ।

ଅନୁସନ୍ଧାନ କରାଯାଇଥିବା ବିଭେଦକାମସ୍ଥ କ୍ଷେତ୍ରଗୁଡ଼ିକର ଏପ୍ରକାର ଏକ ନକ୍ସା ବିନା ଯେ କୌଣସି ପ୍ରତୀକମୂଳକ ସଂରଚନେ ଅନ୍ୟ ଏକ ସେହିପ୍ରକାର ସଂରଚନ ସହ ବ୍ୟାମିଶ୍ରିତ ହୋଇଯିବାର ସମ୍ଭାବନା ଥାଏ । ଏତଦ୍ଦ୍ୱାରା ଉଭୟ ସଂରଚନର କ୍ଷତି ସାଧିତ ହୁଏ, ଅଥବା ସମ୍ପୂର୍ଣ୍ଣତଃ ବାଚନିକ ବିଷୟାବଳୀରୁ ଉଦ୍ଭୂତ ଏକ ବିରୋଧାଭାସର ସୃଷ୍ଟିପାତ ହୁଏ । କିନ୍ତୁ ଆମେ ଯଦି ପ୍ରତ୍ୟେକଟିକୁ ତାହାର ଯଥାଯଥ ପରିସରରେ ସଙ୍ଗେ ସଙ୍ଗେ ସ୍ଥାନ ଦେବାପାଇଁ ସମର୍ଥ ହେଉଁ, ତେବେ ସେହି ଏକ ଶବ୍ଦକୁ ସଂପୂର୍ଣ୍ଣ ଭିନ୍ନ ଭିନ୍ନ ପ୍ରତୀକ ସ୍ୱରୂପ ବ୍ୟବହାର କରିବାକୁ ବାଧ୍ୟ ହେଉଥିବାର ପରିସ୍ଥିତି ଆମ ସଯୋଜନରେ ତାହାର ବ୍ୟାଘାତ ସୃଷ୍ଟିକାରକ ଶକ୍ତି ହରାଏ । ବାଦାନୁବାଦର ନିର୍ଦ୍ଦିଷ୍ଟ ଆବଶ୍ୟକତାର ପୂରଣ ନିମନ୍ତେ ଗୋଟିଏ ଶବ୍ଦର ଦୁଇଟି ଅଥବା ହୁଏତ ତିନୋଟି ଅର୍ଥ ମଧ୍ୟରେ କେବଳ ତତ୍କାଳିକାର୍ଯ୍ୟସାଧକ ପାର୍ଥକ୍ୟ ନିରୂପଣ କରିବା ଯଥେଷ୍ଟ ନୁହେଁ । ସମଗ୍ର ଆଲୋଚ୍ୟ କ୍ଷେତ୍ରର କେଉଁ ଅଂଶରେ ପରବର୍ତ୍ତୀ ଅବଧାନ ନିକ୍ଷିପ୍ତ ହେବ, ତାହା ଆଗରୁ କହିବା ଆମପକ୍ଷରେ କଦାପି ସମ୍ଭବପର ନୁହେଁ । ତେଣୁ ଏତଦ୍ ବିଷୟକ ସମ୍ଭାବନା ଗୁଡ଼ିକ ସମ୍ବନ୍ଧରେ ଏକ ସ୍ଥୂଳଧାରଣା ନଥିଲେ ଆମେ ଯେଉଁ ବିଷୟରେ ଅନ୍ତର୍ଦୃଷ୍ଟି ଲାଭ କରିଛୁ, ତାହା କ'ଣ, ତତ୍ସମ୍ବନ୍ଧରେ ଆମେ କିଛି କହିପାରିବା ସମ୍ଭବପର ।

ସମସ୍ତ ଶବ୍ଦ ଏହି ପରିମାଣର କଷ୍ଟ ସ୍ୱୀକାର ଯୋଗ୍ୟ ନୁହେଁ । ଧାରଣା ଜନ୍ମିପାରେ ଯେ କେତେକ କ୍ଷେତ୍ରରେ ଶବ୍ଦ ଉପରେ ଏହିପରିଭାବେ ମନୋଯୋଗର ଆବଶ୍ୟକତା ନାହିଁ । କିନ୍ତୁ ଅଧିକ ଅଭିନିବେଶ ସହକାରେ ପରୀକ୍ଷା କରି ଦେଖିଲେ ଜଣାଯିବ ଯେ ଏହି କ୍ଷେତ୍ରଗୁଡ଼ିକ ମଧ୍ୟ ଗୋଟିଏ ଗୋଟିଏ ଶବ୍ଦତନ୍ତ୍ର ମାତ୍ର । ମନେ ହୁଏ, ଈଶ୍ୱରତତ୍ତ୍ୱ ଏହାର ଏକ ଉତ୍ତମ ଉଦାହରଣ । ସର୍ବାଧିକ ଜଟିଳ କ୍ଷେତ୍ରଗୁଡ଼ିକର ମଧ୍ୟ ନିଜସ୍ୱ ମନସ୍ତାତ୍ତ୍ୱିକ ଅନୁରକ୍ତ ରହିଛନ୍ତି; ଯେଉଁମାନେ ପ୍ରତୀକାତ୍ମକ ପ୍ରକ୍ରିୟାର ଜ୍ଞାନସହ କୌଣସି ଆଲୋଚନାର ସମ୍ମୁଖୀନ ହୁଅନ୍ତି ଏବଂ ପୂର୍ବବର୍ତ୍ତୀ ପରିଚ୍ଛେଦ ବର୍ଣ୍ଣିତ ସୂତ୍ରମାନଙ୍କ ଭଳି ନୀତିଗୁଡ଼ିକୁ ପ୍ରୟୋଗ କରିବାକୁ ସମର୍ଥ, ସେମାନେ ଦିନକୁ ଦିନ ସବୁଦିଗରୁ ଅଧିକରୁ ଅଧିକ ଉତ୍ତମ ଅବସ୍ଥାରେ ଉପନୀତ ହେବାକୁ ଆଶା ରଖି ପାରନ୍ତି ।

କିନ୍ତୁ ଉପର୍ଯ୍ୟୁକ୍ତ ଛଅଟି ସୂତ୍ରର କଠୋରତା ହେତୁ ସେଗୁଡ଼ିକର ପାଳନରେ ଯେଉଁମାନେ ପଶ୍ଚାତ୍ପଦ, ସେମାନେ ମଧ୍ୟ କେତେକ କୃତିତ୍ୱ ହାସଲ କରି ପାରନ୍ତି । ଶୋପେନ୍ ହାଉଆର ତାଙ୍କ **ଆର୍ଟ ଅଫ୍ କଣ୍ଟ୍ରୋଭର୍ସି** ସମ୍ବନ୍ଧରେ ମନ୍ତବ୍ୟ ଦେବାକୁ ଯାଇ କହିଛନ୍ତି "ଯଦିଓ ମୁଁ ଦୀର୍ଘ ଓ ବ୍ୟାପକ ଅନୁସନ୍ଧାନ କରିଛି, ଏଦିଗରେ କିଛି କାର୍ଯ୍ୟ ହୋଇଥିବା ବିଷୟ ମୋ ଆଖିରେ ପଡ଼ିନାହିଁ । ପ୍ରତ୍ୟେକ ଛଳର ଏକ କ୍ଷୁଦ୍ର ଅଥଚ ସୁପ୍ରତ୍ୟକ୍ଷରୂପେ ଯଥୋପଯୁକ୍ତ ନାମ ଯଦି ଦିଆଯାଇ ପାରନ୍ତା,

ତାହା ଏକ ଅତି ଉତ୍ତମ ବିଷୟ ହୁଅନ୍ତା । ଏତଦ୍ଦ୍ୱାରା, ଯେତେବେଳେ ଜଣେ ଏକ ବା ଅପର ନିର୍ଦ୍ଦିଷ୍ଟ ଚିହ୍ନ ପ୍ରୟୋଗ କରନ୍ତା, ତାହାକୁ ସଙ୍ଗେ ସଙ୍ଗେ ସେଥିପାଇଁ ଅଭିଯୁକ୍ତ କରିଯାଇ ପାରନ୍ତା ।'' ଏହି ପ୍ରସ୍ତାବଟି ଅଧ୍ୟାପକ ଡିଉଇଙ୍କ ବାଚନିକ ସଙ୍କେତର ବର୍ଣ୍ଣନାଦ୍ୱାରା ସମର୍ଥିତ ହୋଇଛି । ବାଚନିକ ସଂକେତକୁ ସେ ଏକ ସୀମା, ଏକ ଗ୍ରୁପ ଓ ଏକ ବାହକ ବୋଲି ବର୍ଣ୍ଣନା କରିଛନ୍ତି; ଅର୍ଥାତ୍ ଏକ ଶୂନ୍ୟତାରୁ ଏହା ଅର୍ଥଗୁଡ଼ିକୁ ନିର୍ବାଚନ ତଥା ପୃଥକ୍ କରେ; ଏବଂ ଯାହା ଅସ୍ପଷ୍ଟ ଓ ଅନିର୍ଦ୍ଦିଷ୍ଟ ରହିଥିଲା, ତାହାକୁ ଏକ ସୁସ୍ପଷ୍ଟ ସତ୍ତା ରୂପେ ଏହା ପ୍ରତିଷ୍ଠିତ କରିଏ । ଦ୍ୱିତୀୟତଃ, ଏହିପରିଭାବେ ନିର୍ଦ୍ଦିଷ୍ଟତା ଲାଭ କରିଥିବା ଅର୍ଥକୁ ଭବିଷ୍ୟତରେ ପ୍ରୟୋଗ କରିବା ନିମନ୍ତେ ଏହା ସଂରକ୍ଷଣ କରେ; ଏବଂ ତୃତୀୟତଃ, ଏହି ଅର୍ଥ ସ୍ଥାନାନ୍ତରିତ ହୋଇ ନୂତନ ପ୍ରସଙ୍ଗରେ ଓ ନୂତନ ପରିସ୍ଥିତିରେ ବ୍ୟବହାର ଯୋଗ୍ୟ ହେବା ନିମନ୍ତେ ଏହା ତାହାକୁ ସମର୍ଥ କରେ । ଏହି କଥାକୁ ନ୍ୟୂନତର ତତ୍ତ୍ୱଶାସ୍ତ୍ରୀୟ ଭାଷାରେ କହିଲେ, ଗୋଟିଏ ନିର୍ଦ୍ଦେଶକୁ ଅନ୍ୟ ନିର୍ଦ୍ଦେଶଠାରୁ ପୃଥକ୍-କରଣରେ, ଆମର ପୂର୍ବକୃତ ନିର୍ଦ୍ଦେଶର ପୁନରାବୃତ୍ତିରେ ଏବଂ ଅନ୍ୟାନ୍ୟ ପ୍ରସଙ୍ଗରେ ଆଂଶିକତଃ ସାଦୃଶ୍ୟଯୁକ୍ତ ନିର୍ଦ୍ଦେଶ କରିବାରେ ପ୍ରତୀକ ଆମକୁ ସାହାଯ୍ୟ କରେ । ସୁତରାଂ ଏହିସବୁ ଦିଗରେ ସାହାଯ୍ୟ ପାଇବାକୁ ତର୍କପ୍ରିୟ ବ୍ୟକ୍ତିର ଚିହ୍ନମାନଙ୍କ ନିମନ୍ତେ ସାଙ୍କେତିକ ଚିହ୍ନ ପ୍ରୟୋଗ ବ୍ୟବସ୍ଥା ଏକ ଅତୀବ ବାଞ୍ଛନୀୟ କାର୍ଯ୍ୟ ହେବ ।

ଉପର୍ଯ୍ୟୁକ୍ତ ପନ୍ଥାରେ ଏ ପ୍ରକାର ତିନୋଟି ଚିହ୍ନକୁ ଅନାୟାସରେ ସଦୋଷ ସାବ୍ୟସ୍ତ କରିଯାଇ ପାରେ । ପ୍ରଥମଟି ହେଉଛି ଧ୍ୱନ୍ୟାତ୍ମକ ଚାତୁରୀ । ଏହାର ପରିଣତି ବିରୁଦ୍ଧରେ ଇତିହାସ ଯଦି ସାକ୍ଷ୍ୟ ପ୍ରମାଣ ଯୋଗାଇ ନ ଥାନ୍ତା, ତେବେ ଏହା ଏତେ ସରଳ ଯେ ଏହା ଆଦୌ ବିପଜ୍ଜନକ ନୁହେଁ ବୋଲି ମନେ ହୁଅନ୍ତା । ଯେଉଁ ଶବ୍ଦଗୁଡ଼ିକ ପରସ୍ପର ସଦୃଶ ପରି କାନକୁ ଶୁଣାଯାଏ, ସେଗୁଡ଼ିକର ସଂପ୍ରସାରଣ ସମ ପ୍ରକାରରେ କରାଯିବା ଆବଶ୍ୟକ ବୋଲି ଗ୍ରହଣ କରି ନେବାରେ ଏହି ଚାତୁରୀ ପର୍ଯ୍ୟବସିତ । ସର୍ବାଧିକ ପ୍ରସିଦ୍ଧି ଲାଭ କରିଥିବା ଏହାର ଦୃଷ୍ଟାନ୍ତ ହେଉଛି ମିଲ୍‌ଙ୍କ 'desirable' [ କାମ୍ୟ ] ର ବ୍ୟବହାର । Visible [ ଦୃଶ୍ୟ ] ବା Knowable [ ଜ୍ଞେୟ ] ଯେପରି ଭାବେ ସଂପ୍ରସାରିତ ହୁଏ, କାମ୍ୟ ଶବ୍ଦ ମଧ୍ୟ ସେହିପରିଭାବେ ସଂପ୍ରସାରଣ ଯୋଗ୍ୟ ବୋଲି ଧରିନେଇ ମିଲ୍ ତାହାର ବ୍ୟବହାର କରିଥିଲେ । ଏହି ଚାତୁରୀ ନିମନ୍ତେ ମିଲ୍‌ଙ୍କୁ ଦୋଷଦେବା ଅପେକ୍ଷା ଭାଷାକୁହିଁ ଦୋଷଦେବା କଥା; ସ୍ପଷ୍ଟତଃ ଏହା ଏକ ବାଚନିକ ଦୋଷ । 'କାମନା କରିଯିବା ଉଚିତ' ଇହିତ ସମାନ ଅର୍ଥରେ 'କାମ୍ୟ'ର ଅର୍ଥକୁ 'ଏକ ପ୍ରକାର ବୈଶିଷ୍ଟ୍ୟଯୁକ୍ତ ମନ ଦ୍ୱାରା କାମନା କରିଯାଇ ପାରିବା' ରୂପେ

ପରିବର୍ତ୍ତନ କରାଯାଇ ପାରେ (୧) । କିନ୍ତୁ 'ଜଣକଦ୍ୱାରା ଦେଖାଯାଇ ପାରିବା' ଅର୍ଥରେ 'ଦୃଶ୍ୟ' ସହିତ 'ଭାମ୍ୟ' ସର୍ବତୋଭାବେ ସମପ୍ରକାର ହୋଇଥିବା ଏକ ପ୍ରତୀକ ନୁହେଁ ।

ଦ୍ୱିତୀୟ ଚଞ୍ଚଳତା ବସ୍ତୁକରଣ ସହିତ ସଂପୃକ୍ତ । ଏହି ପ୍ରଥାକୁ ସ୍ଥଗିତ ରଖିବା ଅଧିକ କଷ୍ଟ ସାଧ୍ୟ, କାରଣ ଏହା ଏକ ଅପରିହାର୍ଯ୍ୟ ଭାଷାଗତ ସୁବିଧାର ଅପବ୍ୟବହାର । କୌଣସି ସାଧାରଣ ମନ୍ତବ୍ୟର ପରିସମାପ୍ତି ଘଟାଇବାକୁ ହେଲେ ଆମ ଭାଷାକୁ ସଂକ୍ଷେପ ଓ ସଙ୍କୁଚିତ କରିବାକୁ ହୁଏ । କିନ୍ତୁ ଆମ ସଂକୋଚନଗୁଡ଼ିକର ବସ୍ତୁକରଣ ଅନାବଶ୍ୟକ । ସାମାନ୍ୟମାନଙ୍କ ସମ୍ପର୍କିତ ଆଲୋଚନାରେ ଏହି ବିଷୟର ଅବତାରଣା କରାଯାଇ ଥିଲା, କିନ୍ତୁ ଏହି ପ୍ରଥା ଯେ କେତେ ଲୋକପ୍ରିୟ ଓ କେତେ ପ୍ରଭାବଶାଳୀ, ତାହା ନିମ୍ନଲିଖିତ ପଦମାନଙ୍କ ପରି ପଦଗୁଡ଼ିକର ଏକ ତାଲିକା ଦ୍ୱାରା ପ୍ରଦର୍ଶନ କରିଦିଆଯାଇପାରେ—ସଦ୍‌ଗୁଣ, ମୁକ୍ତି, ଗଣତନ୍ତ୍ର, ଶାନ୍ତି, କର୍ମନିଷ୍ଠ, ଧର୍ମ, ଗୌରବ । ଏହି ସମସ୍ତ ଶବ୍ଦ ଅତି ମୂଲ୍ୟବାନ୍ ଓ ଅପରିହାର୍ଯ୍ୟ ମଧ୍ୟ । କିନ୍ତୁ ତୃତୀୟ ସୂତ୍ରଦ୍ୱାରା ନିୟନ୍ତ୍ରିତ ନ ହେଲେ ସର୍ବାପେକ୍ଷା ସୁସ୍ପଷ୍ଟ ପ୍ରଶ୍ନମାନଙ୍କୁ ପୁଣି ଗଣ୍ଡଗୋଳ କରିପକାଇବାର ସାମର୍ଥ୍ୟ ଏଗୁଡ଼ିକରେ ରହିଛି ।

ତୃତୀୟଟି ହେଉଛି ଦ୍ୱୈତାର୍ଥକ ଚଞ୍ଚଳତା । ସରଳବିଶ୍ୱାସୀ ମନୁଷ୍ୟ ସମାଜ ଉପରେ ପ୍ରୟୋଗ କରାଯାଇ ପାରୁଥିବା ଯେକୌଣସି ଅନ୍ୟ ବିତର୍କମୂଳକ କୌଶଳ ତୁଳନାରେ ଏହା ଅଧିକ ସଂଖ୍ୟକ ମନ୍ଦମୁକ୍ତିକୁ ସମ୍ଭାବନାମୂଳକ ବୋଲି ପ୍ରତିଭାତ କରାଇଛି । ବହୁ ଦିନରୁ ସ୍ୱୀକୃତ ହୋଇ ଆସୁଛି ଯେ 'ପ୍ରତ୍ୟକ୍ଷ' ପଦଟିର ହୁଏତ ଏକ ଭୌତିକ ଅଥବା ଏକ ମାନସିକ ନିର୍ଦ୍ଦେଶ୍ୟ ଥାଇପାରେ । ଯାହାକୁ ପ୍ରତ୍ୟକ୍ଷଣ କରାଯାଏ ଏହି ପଦଟି ତାହାକୁ ନିର୍ଦ୍ଦେଶ କରେ କି ପ୍ରତ୍ୟକ୍ଷଣ ପ୍ରକ୍ରିୟାକୁ ନିର୍ଦ୍ଦେଶ କରେ ? ସେହିପରି 'ଜ୍ଞାନ' ପଦଟି ଯାହା ଜ୍ଞାତ ହୁଏ ତାହାକୁ ଅଥବା ତାହାର ଜ୍ଞାନ ଲାଭ ପ୍ରକ୍ରିୟାକୁ ନିର୍ଦ୍ଦେଶ କରିପାରେ । ଦ୍ୱୈତାର୍ଥକ ଚଞ୍ଚଳତା ହେଉଛି ଏପରି ପଦର ବ୍ୟବହାର କରିବା ଯାହା ସଂପୃକ୍ତ ଭିନ୍ନ ଭିନ୍ନ ନିର୍ଦ୍ଦେଶ ଦ୍ୱୟରୁ ଉଭୟକୁ ଏକ ସଙ୍ଗରେ ବୁଝାଉଥାଏ । ଏହାର ବିଲକ୍ଷଣଯୁକ୍ତ ଦୃଷ୍ଟାନ୍ତ 'ସୌନ୍ଦର୍ଯ୍ୟ' ଶବ୍ଦ ପ୍ରୟୋଗରେ ରହିଛି । ଏହା ସୁନ୍ଦର ବସ୍ତୁର ଗୁଣାବଳୀ ତଥା ଦର୍ଶକ ଉପରେ ଏହି ଗୁଣାବଳୀର ସଂବେଗାତ୍ମକ ପରିଣତି ଉଭୟକୁ ବ୍ୟାମିଶ୍ରିତ ଭାବେ ନିର୍ଦ୍ଦେଶ କରେ ।

---

(୧) କଥିତ ଗ୍ରନ୍ଥ, Principles of Literary Criticism ରେ ମୂଲ୍ୟ ସମ୍ବନ୍ଧୀୟ ଏହି ମତବାଦର ପରିବର୍ଦ୍ଧନ କରାଯାଇଛି । ସେଠାରେ ଏକ 'ପ୍ରକୃତିବାଦୀ ଦୋଷ' ରୂପେ ଏହା ବିରୁଦ୍ଧରେ କରାଯାଇଥିବା ଯୁକ୍ତିଗୁଡ଼ିକର ଖଣ୍ଡନ କରାଯାଇଛି ।

ଉପର୍ଯ୍ୟୁକ୍ତ ଚଞ୍ଚଳତାମାନଙ୍କ ମଧ୍ୟରୁ ଦୁଇ ବା ତତୋଽଧିକ କୌଶଳ ସେହି ଏକ ଶବ୍ଦରେ ସମସ୍ତ ସମୟରେ ସ୍ଥାନ ପାଇପାରେ । ଉଦାହରଣ ସ୍ୱରୂପ, ଅଧିକାଂଶ କ୍ଷେତ୍ରରେ ଦୁଇଟି ଦୋଷ 'ସୌନ୍ଦର୍ଯ୍ୟ' ଶବ୍ଦରେ ରହିଥାଏ । ସେ ଦୁଇଟି ହେଉଛି ବସ୍ତୁକରଣର ଚଞ୍ଚଳତା ଓ ଦ୍ୱୈତାର୍ଥକ ଚଞ୍ଚଳତା ।

ବିତର୍କମୂଳକ ଛଳମାନଙ୍କ ଏହି ଚାଲ୍ଲୋଟ କରଣ ବ୍ୟତୀତ ଉପର୍ଯ୍ୟୁକ୍ତ ତ୍ରୁଟି ପୂର୍ଣ୍ଣ ପଦ୍ଧତି ସଂଗତ ଗବେଷଣା ଆହୁରି କେତେକ ଅନୁଭୂତସିଦ୍ଧ ନିୟମ ବ୍ୟାବହାରିକ ତର୍କଦର୍ଶନ ନାମରେ ଲିପିବଦ୍ଧ କରାଯାଇ ପାରେ । ମାନସିକ କ୍ରିୟା-କଳାପ ଉପରେ ଅରିଷ୍ଟଟଲୀୟ ସଂଘର ଏକ ଗୋଷ୍ଠୀ ଆଲୋଚନା ଏବେ କରାଯାଇଥିଲା । ଏଥିରେ ଅଧିକାଂଶତଃ ଉକ୍ତିମାନଙ୍କ ବ୍ୟବହାର କରାଯାଇଥିଲା । ସେଠାରେ ଅଧ୍ୟାପକ କାଟେଥ ଫ୍ଲେଉ ନିମ୍ନଲିଖିତ ମନ୍ତବ୍ୟର ପୁନରାବୃତ୍ତି କରିଥିଲେ । "ବହୁ ଦିନରୁ ସ୍ୱୀକୃତ ହୋଇ ଆସୁଛି ଯେ ଭୁଲ୍ ବୁଝାମଣାର ସର୍ବାଧିକ ସାଧାରଣ କାରଣ ପଦମାନଙ୍କ ଦ୍ୱ୍ୟର୍ଥକତାରେ ହିଁ ରହିଛି । କିନ୍ତୁ ତଥାପି ସଂଜ୍ଞାଗୁଡ଼ିକରେ ଏକମତ ହେବା ବିଷୟରେ ଆମେ ବିଶେଷ କିଛି ଅଗ୍ରଗତି କରିନାହୁଁ । ଯଦିବା ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଶବ୍ଦ ବ୍ୟବହାରରେ ଆମେ ଏକମତ ହେଲାପରି ବେଳେ ବେଳେ ଜଣାପଡ଼େ, ହଠାତ୍ ସେତେବେଳେ ଏକ ନୂତନ ଅନୁରକ୍ତି ଜାଗ୍ରତ ହୁଏ ଅଥବା ଏକ ପୁରାତନ ଅନୁରକ୍ତି ନବଜୀବନ ଲାଭକରେ । ତଦନନ୍ତର, ସେହି ଅନୁରକ୍ତିର ସମର୍ଥକମାନେ ଯଦି ମନେ କରନ୍ତି ଯେ ସେହି ଶବ୍ଦଟିକୁ ଭିନ୍ନ ଅର୍ଥରେ ବ୍ୟବହାର କରିବା ଦ୍ୱାରା ତାହା ବଳଶାଳୀ ହେବ, ତେବେ ତାହାର ଅର୍ଥାନ୍ତର ଘଟାଇବାକୁ ସେମାନେ ଆଦୌ ଦ୍ୱିଧାଗ୍ରସ୍ତ ହୁଅନ୍ତି ନାହିଁ ।" ଏହି ମନ୍ତବ୍ୟକୁ ଆଜି ଏବେ ପୁନରାବୃତ୍ତି କରିବା ଦେଖି ବିସ୍ମିତ ହେବାର କିଛି ନାହିଁ ।

ଦୁଇବର୍ଷରୁ ଅଧିକ କାଳ ପରେ ଆମେରିକୀୟ ଦର୍ଶନ ସମିତିର ଦଶମ ବାର୍ଷିକ ସଭାରେ ଅଧ୍ୟାପକ ଲଭଜୟ ଏହି ପ୍ରକାର ଗୁଡ଼ିଏ ଭୁଲ୍ ବୁଝାମଣା ବିଷୟର ଅବତାରଣା କରି ମନ୍ତବ୍ୟ ପ୍ରକାଶ କରିବାର ଦେଖାଗଲା । "ଆମେ ଯଦି ଏକ ବୁଝାମଣାରେ ପହଞ୍ଚିବାକୁ ଚାହୁଁ; ତେବେ ସଂଜ୍ଞାଗୁଡ଼ିକ ପ୍ରତି ଆମର ଅଧିକ ଆନୁଗତ୍ୟ ରହିବା ଆବଶ୍ୟକ । ଯେଉଁ ମୌଳିକ ପଦଗୁଡ଼ିକୁ ଆଲୋଚନାରେ ବ୍ୟବହାର କରାଯିବ, ସେଗୁଡ଼ିକର ସଂଜ୍ଞା ନିର୍ଦ୍ଧାରଣ କରିବାକୁ ଏକ କାର୍ଯ୍ୟ ନିର୍ବାହକ ସମିତି ନିଯୁକ୍ତ କର ।'

ଏ ପ୍ରକାର ଆଲୋଚନାରେ ଆଜିକାଲି ଆମେ ଯେତେ ସମସ୍ତ ଅତିବାହିତ କରୁଛୁ ଓ ଦିନକ ମଧ୍ୟରେ ଯେତେଗୁଡ଼ିଏ ଶବ୍ଦ ଉଚ୍ଚାରଣ କରୁଛୁ, ତାହାର ଯଦି ହିସାବ କରାଯାଏ, ( ହିସାବ କରାଯାଇଛି ଯେ ନିରବଚ୍ଛିନ୍ନଭାବେ କହିଲେ ଆମ ମୁହଁରୁ ଗୋଟାଏ

ମିନଟରେ ୧୬୦ ରୁ ୨୫୦ ପର୍ଯ୍ୟନ୍ତ ଶବ୍ଦ ବାହାରେ ), ତେବେ ଜଣାଯିବ ଯେ ଏହି ଶବ୍ଦମାନଙ୍କ ମଧ୍ୟରୁ ଯେଉଁ ଶ୍ରେଣୀର ଶବ୍ଦଗୁଡ଼ିକ ବାଦାନୁବାଦକୁ ଭ୍ରାନ୍ତ ଢଙ୍ଗରେ ପରିଚାଳିତ କରିବାର ସମ୍ଭାବନା ରହିଛି, ସେଗୁଡ଼ିକୁ ଚହ୍ନି ରଖିବାରେ କିଛି ଗୁରୁତ୍ୱ ରହିଛି ।

ଆନନ୍ଦର ସହିତ କୁହା ଯାଇଛି ଯେ "ମନସ୍ତତ୍ତ୍ୱରେ ଯାହା ମନେ ହୁଏ, ତାହା 'ଥାଏ' ।" ଯାହା 'ମନେହୁଏ' ତାହା ସତ୍ତ୍ୱା କି ? ବୋସାଙ୍କେ ଏହାର ଉତ୍ତରରେ କହିଛନ୍ତି, "ଯେ କୌଣସି ବିଷୟ, ତାହା ଯାହା ନୁହେଁ, ତାହାକୁ ସେଇଆ ବୋଲି ଗ୍ରହଣ ନ କରାଯିବା ପର୍ଯ୍ୟନ୍ତ ତାହା ସତ୍ତ୍ୱା ।" ଅଧ୍ୟାପକ ଆଲେକ୍‌ଜାଣ୍ଡାର ସ୍ୱୀକାର କରିଛନ୍ତି, "ଠିକ୍ ଏ ଅସନ୍ତର୍ପଣରେ ମୁଁ ମନକୁ ଏକ ବସ୍ତୁ ବୋଲି କହୁଛି ।" ସେ ଆହୁରି ଅଧିକ ଦୁଃଖ ପ୍ରକାଶ କରି କହୁଛନ୍ତି, "ମୋର Phenomenon [ ଘଟଣା ] ଶବ୍ଦର ବ୍ୟବହାର ଦୁର୍ଭାଗ୍ୟଜନକ । ମୁଁ ସଙ୍କଳ୍ପବଦ୍ଧ ହୋଇଛି ଯେ ଏହି ଶବ୍ଦର ଅର୍ଥକୁ ଯଥୁ ସହକାରେ ସଂଜ୍ଞା ନ ଦେବା ପର୍ଯ୍ୟନ୍ତ ପୁଣି ଏହି ଶବ୍ଦକୁ ମୁଁ କଦାପି ବ୍ୟବହାର କରିବିନାହିଁ । ମୁଁ ମନର ଏପରି ବର୍ଣ୍ଣନା ଦେଇଛି ଯେ ତାହା ଯେପରି ଏକ Phenomenon ନୁହେଁ; ଏକଥା ଶ୍ରୀ ଷ୍ଟାଉଟ କିପରି କହି ପାରିଲେ, ତାହା ମୁଁ ବୁଝିପାରୁ ନାହିଁ । ମୁଁ ଏହି ଶବ୍ଦ ଦ୍ୱାରା ଯାହା ମନେ କରିଛି, ତାହା ପ୍ରାସ୍ପତଃ ଆଦୌ କିଛି ନୁହେଁ ।" ପରମତତ୍ତ୍ୱ ସମ୍ବନ୍ଧରେ ଜୋଚେଙ୍କ ମୂକକୁ ଏହା ମନେ ପକାଇ ଦେଉଛି । "ଯେଉଁମାନେ ପରମତତ୍ତ୍ୱ ନାମର ପ୍ରୟୋଗ କରିଛନ୍ତି ବା କରିବେ, ସେମାନଙ୍କ ଦ୍ୱାରା ଯାହା ପରମ ତତ୍ତ୍ୱ ବୋଲି କୁହାଯାଇଛି ବା କୁହାଯିବ, ସେ ସମସ୍ତ ହେଉଛି ପରମ ତତ୍ତ୍ୱ ।" ସାଧାରଣ ଆଲୋଚନାରେ ଏ ପ୍ରକାର ଶବ୍ଦମାନଙ୍କ ମୁଖ୍ୟ ଭୂମିକା ହେଉଛି ଉତ୍ତେଜକ ରୂପେ କାର୍ଯ୍ୟ କରିବା । ଏ ଗୁଡ଼ିକ ନିର୍ଦ୍ଦେଶ୍ୟର ନିର୍ଦ୍ଧାରଣ ନିମନ୍ତେ ଅବାନ୍ତର ସଂବେଗମାନଙ୍କ ଉଦ୍ରେକ କରିଥାଏ । ଭାଷାର କାବ୍ୟିକ ଭୂମିକାରେ ଏହା ଏକ ଅପବ୍ୟବହାର । ଭାଷାର କାବ୍ୟିକ ଭୂମିକା ସମ୍ବନ୍ଧରେ ଆମେ ପରେ ଆଲୋଚନା କରିବା ।

ଭାଷାର ସୁଜନନ ବିଦ୍ୟା ବୋଲି ଯାହାକୁ କୁହାଯାଇ ପାରେ, ତାହାର ଯଥେଷ୍ଟ କାର୍ଯ୍ୟକାରିତା ରହିଛି ଏବଂ ଶବ୍ଦସମ୍ଭାରଗତ ନୈତିକତାର ଭୂମିକା ମଧ୍ୟ ନ୍ୟୂନ ନୁହେଁ ।

ଭାଷାଗତ ନିର୍ବାକରଣ ସମ୍ପୃକ୍ତ ସଚେତନ ପ୍ରଣାଳୀର ପୂର୍ବାଭାସ ଦେଇ "ନଷ୍ଟ ଶବ୍ଦାବଳୀ" ଶିରୋନାମରେ ଶ୍ରୀ ଆଲ୍‌ଫ୍ରେଡ଼ ସିଜୱିକ୍ ଯେଉଁ ଶବ୍ଦଗୁଡ଼ିକ ସଂଶୋଧନୀସ୍ୱରୂପେ ଅନେକାର୍ଥକ, ସେଗୁଡ଼ିକ ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି । କିନ୍ତୁ ସମସ୍ୟାଟିର ଏହିପରିଭାବେ ଉଲ୍ଲେଖ କରି ତାହାକୁ ସେ ପରିତ୍ୟାଗ କରିଛନ୍ତି ।

ଆମେ ଜାଣୁ ଯେ ଲୋକେ ଚିନ୍ତା କରିବାକୁ ଶିକ୍ଷା କରିବା ପୂର୍ବରୁ ଭାଷା ଗଠିତ ହୋଇଥିଲା; ଏବଂ ମିଲ୍‌ଙ୍କ କଥନ ଭଙ୍ଗୀରେ କହିଲେ, ତାହା 'ବର୍ବର ମାନଙ୍କ ଦ୍ୱାରା ଗଠିତ ହୋଇଥିଲା । ଆମ କଥା ବାର୍ତ୍ତାରେ ଆମେ ତାହାକୁ ଯେପରି ଭାବେ ବ୍ୟବହାର କରୁଛୁ, ତାହା ଏବେ ମଧ୍ୟ ତଦ୍ରୂପଭାବେ ହିଁ ଗଠିତ ହେଉଛି । ଏଥିପାଇଁ ଆମେ ଯେତେ ଦୁଃଖ ପ୍ରକାଶ କଲେ ମଧ୍ୟ ଏହାର ପରିବର୍ତ୍ତନ ହୋଇ ପାରିନାହିଁ ! ଏହି ହତଭାଗ୍ୟ ଶବ୍ଦମାନଙ୍କ ଅର୍ଥକୁ ସୀମିତ ରଖିବାକୁ ଆମେ ଚେଷ୍ଟା କରିବା ଦ୍ୱାରା ଆଗରୁ ରହିଥିବା ଗଣ୍ଡଗୋଳକୁ ବୃଦ୍ଧି କରିବା ବ୍ୟତୀତ ଅଧିକ କିଛି କରୁଛୁ କି ନା ତାହା ଅତ୍ୟନ୍ତ ସନ୍ଦେହଜନକ । କେବଳ ଶବ୍ଦଗୁଡ଼ିକ ଯେ ସଂବେଗାତ୍ମକ ଏବଂ ଅନ୍ୟାନ୍ୟ ସହଚର ତାତ୍ପର୍ଯ୍ୟର ଅଧିକାରୀ ହୋଇ ବସନ୍ତି, ଏ କଥା ନୁହେଁ, ପ୍ରତ୍ୟେକ ଅକ୍ଷରରେ ପୁଣି ମାନବୀୟ ଜ୍ଞାନର କୌଣସି ନା କୌଣସି ମୌଳିକ ଦିଗର ପ୍ରତୀକାତ୍ମକ ଅନ୍ତର୍ବ୍ୟକ୍ତ ରହିଛି । ଏହା ଉପଲବ୍ଧି କରିଥିବା ବ୍ୟକ୍ତିଙ୍କର ଏକ ଉଦାହରଣ ହେଉଛନ୍ତି ଭିକ୍ଟର ହ୍ୟୁଗୋ (ଶବ୍ଦଟି ଏହା ସୂଚିତ କରିଛନ୍ତି) । ଏକଥା ଆମ ଯଦି ସ୍ମରଣରେ ରଖୁଁ, ତେବେ ଅର୍ଥଗତ ସୀମିତ କରଣର କାର୍ଯ୍ୟକାରିତାରେ ଆସ୍ଥା ସ୍ଥାପନ ଏକ ଆଶାବାଦୀ କଳ୍ପନା ବୋଲି ମନେ ହେବ । ମ୍ୟାକ୍ସ ମ୍ୟୁଲର କହିଥିଲେ, "ମୋର ବିଶ୍ୱାସ ଧାରଣା, ସମ୍ବେଦନ—ଆତ୍ମା, ପ୍ରେତ ପ୍ରଭୃତି ଶବ୍ଦ ଗୁଡ଼ିକର ବ୍ୟବହାର ଯଦି କିଛି ଦିନ ପାଇଁ ସ୍ଥଗିତ ରଖା ଯାଆନ୍ତା ଏବଂ ସମ୍ପୂର୍ଣ୍ଣରୂପେ ବିଶୁଦ୍ଧୀକୃତ ନ ହେବା ପର୍ଯ୍ୟନ୍ତ ସେଗୁଡ଼ିକର ପୁନର୍ବ୍ୟବହାର କରା ଯାଆନ୍ତା ନାହିଁ, ତେବେ ବାସ୍ତବରେ ଏତଦ୍ୱାରା ମନ ସଂପୃକ୍ତ ବିଜ୍ଞାନର ସର୍ବାଧିକ ଉପକାର ସାଧିତ ହୁଅନ୍ତା । ଡକ୍ଟର ସାର୍ଗାଣ୍ଟ ଫ୍ଲୋରେନ୍ସ **ଇକନମିକସ ଅଫ୍ ଫେଟିଗ୍ ଏଣ୍ଡ ଅନରେଷ୍ଟ** (୧୯୨୪)ର ତାଙ୍କ ଉଲ୍ଲେଖନୀୟ ବିଶ୍ଳେଷଣରେ ମ୍ୟାକ୍ସ ମ୍ୟୁଲର ବର୍ଣ୍ଣିତ ପଦ୍ଧତିର ସଫଳ ପ୍ରୟୋଗ କରିଛନ୍ତି । ସେ ତାଙ୍କ ସୂତ୍ରର ପ୍ରାରମ୍ଭିକ ସ୍ତରମାନଙ୍କରେ (ପରିଚ୍ଛେଦ ୫—୧୨) Fatigue (ଥକ୍କା) ଓ Unrest (ଅବିଶ୍ରାମ) ପଦଦ୍ୱୟର ବ୍ୟବହାରକୁ ସମ୍ପୂର୍ଣ୍ଣରୂପେ ପରିହାର କରିଛନ୍ତି ।

"ପ୍ରାଦେଶିକ ଭାଷାଗତ ନାମ ଗୁଡ଼ିକର ପରିବର୍ତ୍ତନ କଦାପି କର ନାହିଁ, କାରଣ ପ୍ରତ୍ୟେକ ଦେଶରେ ଏପରି ଈଶ୍ୱରଦତ୍ତ ନାମମାନ ରହିଛି, ଯାହାର ରହସ୍ୟରେ

---

(୧) ଚୀନ ଭାଷାର ଲିଖନ ପ୍ରଣାଳୀରେ ହସ୍ତାକ୍ଷର କଳାର ଗୁରୁତ୍ୱ ହେଉଛି ଗଦ୍ୟମୂଳକ ସଙ୍କେତ ପଦ୍ଧତିରେ ସୌନ୍ଦର୍ଯ୍ୟ ବିଜ୍ଞାନର ଅନଧିକାର ପ୍ରବେଶର ଏକ ଦୃଷ୍ଟାନ୍ତ । ଏଠାରେ ମଧ୍ୟ ସଙ୍କେତମାନଙ୍କ ଚକ୍ଷୁ ସୁଲଭ ଆକର୍ଷଣ କାଳକ୍ରମେ ଅନ୍ତର୍ହିତ ହୋଇ ଗଲାଣି ।

ଅବ୍ୟାଖ୍ୟେୟ ଶକ୍ତି ନହୁଇ ।" ଏହା ଯଥାର୍ଥ ଅନ୍ତର୍ଦୃଷ୍ଟି ସହ ବ୍ୟକ୍ତ ଏକ ବୈଜ୍ଞାନିକ ଦୈବବାଣୀ । କିନ୍ତୁ ଗଦ୍ୟ-ଆଲୋଚନାର ଲକ୍ଷ୍ୟ ହେଉଛି ରହସ୍ୟର ନିରାକରଣ । ଏଥିରେ ଉତ୍ପ୍ରେରକ ଉତ୍ତେଜକ ତଥା ଅପଭ୍ରଂଶ ଗୁଡ଼ିକୁ ନିର୍ମମଭାବେ ପରିହାର କରିବା ଆବଶ୍ୟକ । ଏହାର କାରଣ ହେଉଛି, ଉତ୍ତେଜକ ଗୁଡ଼ିକର ବ୍ୟାଘାତକାରକ ସଂକେତ ଉଦ୍ରେକ କରିବାର ଶକ୍ତିଥାଏ ଏବଂ ଅପଭ୍ରଂଶ ଗୁଡ଼ିକର ଅନେକାନେକ ସଂପୃକ୍ତମୂଳକ ନିର୍ଦ୍ଦେଶ ଥାଏ । ଏଠାରେ 'ଅଭିଧ' ଠାରୁ 'ଦକ୍ଷ' ପର୍ଯ୍ୟନ୍ତ ଅଥବା ବର୍ଣ୍ଣମାଳାର ଆଦ୍ୟାକ୍ଷରରୁ ଯଥାସମ୍ଭବ ଶେଷାକ୍ଷର ପର୍ଯ୍ୟନ୍ତ ପରିବର୍ଜନୀୟ ଶବ୍ଦାବଳୀର ଏକ ସୂଚୀପତ୍ର ସଂକଳନର ଆବଶ୍ୟକତା ନାହିଁ ।

ଆଉ ଏକ ଶ୍ରେଣୀର ଶବ୍ଦାବଳୀ ରହିଛି । ସେଗୁଡ଼ିକୁ ଫଳପ୍ରଦ ଭାବେ ବୈଧ ବିବାଦର ପରିସର ବହିର୍ଭୂତ କରି ରଖାଯାଇ ପାରେ । "ବକ୍ତାର ଚେତନା ସମ୍ପୂର୍ଣ୍ଣରୂପେ ଧରିପାରୁ ନଥିବା ବସ୍ତୁଆଦିକୁ ଯେଉଁ ଶବ୍ଦଗୁଡ଼ିକ ପ୍ରକ୍ଷିପ୍ତ ହେଲ୍‌ପରି ବ୍ୟବହୃତ ହୋଇଥାଏ, ସେଗୁଡ଼ିକ" ସମ୍ବନ୍ଧରେ ମେଥ୍ୟୁ ଆର୍ନଲ୍ଡ଼ କହିଛନ୍ତି । ଏ ପ୍ରକାର ଶବ୍ଦଗୁଡ଼ିକୁ ଉଦାସୀନ ଶବ୍ଦ ଆଖ୍ୟା ଦିଆଯାଇ ପାରେ । ଯେ ପର୍ଯ୍ୟନ୍ତ ଏହି ଶବ୍ଦଗୁଡ଼ିକର ଯଥାର୍ଥ ଭୂମିକା ସମ୍ବନ୍ଧରେ ଆମେ ଅବହିତ ଥାଉଁ, ସେ ପର୍ଯ୍ୟନ୍ତ ସେଗୁଡ଼ିକରୁ ବିଶେଷ ଅସୁବିଧା ଜାତ ହୁଏ ନାହିଁ । ସେଗୁଡ଼ିକ ପ୍ରତି କର୍କଶ ବ୍ୟବହାରର ଆଦୌ ଆବଶ୍ୟକତା ନାହିଁ । ଏଠାରେ ପ୍ରତିକାର ହେଉଛି ଦର୍ପଣ ।

ଉଦାସୀନ ଶବ୍ଦମାନଙ୍କ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ ପ୍ରବୃତ୍ତି ଥାଏ ବୋଲି ଗ୍ରହଣ କରାଯାଇ ପାରେ । ଏଗୁଡ଼ିକଠାରୁ ଭ୍ରମଣଶୀଳ ଶବ୍ଦଗୁଡ଼ିକୁ ପୃଥକ୍ କରିବା ଆବଶ୍ୟକ । ଭ୍ରମଣଶୀଳ ଶବ୍ଦମାନଙ୍କ ଜୀବନ ପ୍ରଣାଳୀ ସମ୍ବନ୍ଧରେ ଲକ୍ ହିଁ ପ୍ରଥମେ ବର୍ଣ୍ଣନା ଦେଇଥିଲେ ।

"ମନୁଷ୍ୟମାନେ ଶୈଶବାବସ୍ଥାରୁ ସହଜରେ ମିଳୁଥିବା ଓ ମନେ ରଖି ହେଉଥିବା ଶବ୍ଦଗୁଡ଼ିକୁ ଶିଖିବାରେ ଅଭ୍ୟସ୍ତ । ସେମାନେ ବ୍ୟକ୍ତ କରୁଥିବା ସଂପୂର୍ଣ୍ଣ ପ୍ରତ୍ୟୟଗୁଡ଼ିକୁ ଜାଣିବା ବା ଗଠନ କରିବା ପୂର୍ବରୁ ଏହି ଶିକ୍ଷା ଆରବ୍ଧ ହୁଏ ଏବଂ ସାଧାରଣତଃ ଜୀବନବ୍ୟାପୀ ତତ୍‌ପରଭାବେ ଲାଗିରହେ । ନିର୍ଦ୍ଦିଷ୍ଟ ପ୍ରତ୍ୟୟମାନ ସେମାନଙ୍କ ମନରେ ଦୃଢ଼ୀଭୂତ ହେବା ନିମନ୍ତେ ଆବଶ୍ୟକୀୟ ଆୟାସର ଉପଯୋଗ ନକରି, ସେମାନେ ସେମାନଙ୍କ ମନୋଗତ ଯେ କୌଣସି ପ୍ରକାର ଅସ୍ଥିର ଓ ବିଶୃଙ୍ଖଳ ଧାରଣାର ଅଭିବ୍ୟକ୍ତି ପାଇଁ ନିଜେ ଶିକ୍ଷା କରିଥିବା ଶବ୍ଦଗୁଡ଼ିକୁ ପ୍ରୟୋଗ କରନ୍ତି । ଅନ୍ୟମାନେ ଯେଉଁ ଶବ୍ଦଗୁଡ଼ିକୁ ବ୍ୟବହାର କରନ୍ତି, ସେହି ଶବ୍ଦଗୁଡ଼ିକୁ ହିଁ ନିଜେ ବ୍ୟବହାର କରୁଥିବାରୁ ସେମାନେ ଆତ୍ମତୃପ୍ତି ଲାଭ କରନ୍ତି—ଯେପରି ସେହି

ଧ୍ୱନିଗୁଡ଼ିକ ହିଁ ଅବଶ୍ୟକରୂପେ ସେହି ଏକ ଅର୍ଥର ବାହକ । (ଜୀବନର ସାଧାରଣ ଘଟଣା ଗୁଡ଼ିକରେ ମନୁଷ୍ୟମାନେ ଯଦିଓ ଏହାର ପରିବର୍ତ୍ତନ କରିଥାନ୍ତି, ତଥାପି ସେମାନେ ନିଜ ମତ ସଂପର୍କୀୟ ବିଷୟରେ ମୁକ୍ତକରି କହନ୍ତି), ସେତେବେଳେ ସେମାନଙ୍କ ଅଭ୍ୟାସ ସୁସ୍ପଷ୍ଟରୂପେ ସେମାନଙ୍କ ଆଲୋଚନାକୁ ବହୁ ସଂଖ୍ୟକ ଶୂନ୍ୟଗର୍ଭ ଧ୍ୱନି ତଥା ଅର୍ଥଶୂନ୍ୟ ଶବ୍ଦାବଳୀରେ ଭରପୁର କରିଦିଏ । ଏକଥା ବିଶେଷତଃ ନୈତିକ ବିଷୟାବଳୀରେ ଘଟିଥାଏ, କାରଣ ଏହି କ୍ଷେତ୍ରରେ ପ୍ରାୟଶଃ କେବଳ ଶବ୍ଦଗୁଡ଼ିକର ଧ୍ୱନିକୁ ହିଁ ଚିନ୍ତା କରାଯାଏ, ଅଥବା ଅନ୍ତତଃ, ସେଗୁଡ଼ିକ ସହିତ ଅତି ଅନିର୍ଦ୍ଦିଷ୍ଟ ଓ ଅସ୍ପଷ୍ଟ ହୋଇଥିବା ସଂପ୍ରତ୍ୟୟର ସଂଯୋଗ ବିଧାନ କରାଯାଏ ।

ମନୁଷ୍ୟମାନେ ନିଜର ପ୍ରତିବେଶୀ ମାନଙ୍କ ମଧ୍ୟରେ ଯେଉଁ ଶବ୍ଦଗୁଡ଼ିକ ବ୍ୟବହାର ହେଉଥିବା ଦେଖନ୍ତି, ସେହି ଶବ୍ଦଗୁଡ଼ିକୁ ନିଜେ ବ୍ୟବହାର କରିବା ନିମନ୍ତେ ସେମାନେ ଗ୍ରହଣ କରି ନିଅନ୍ତି । ସେଗୁଡ଼ିକ କାହା ପରିବର୍ତ୍ତେ ବ୍ୟବହୃତ ତତ୍ସମ୍ବନ୍ଧରେ ସେମାନେ ଅଜ୍ଞ ପରି ଜଣା ନ ପଡ଼ିପାରନ୍ତି ଏବଂ କୌଣସି ନିର୍ଦ୍ଦିଷ୍ଟ ଅର୍ଥ ସମ୍ବନ୍ଧରେ ବିଶେଷ ମୁଣ୍ଡ ନ ପୂରାଇ ଦୃଢ଼ ବିଶ୍ୱାସ ସହ ସେଗୁଡ଼ିକର ବ୍ୟବହାର କରି ପାରନ୍ତି । ଏତଦ୍ୱାରା ଶବ୍ଦ ବ୍ୟବହାର ସହଜ ହେବା ବ୍ୟତୀତ ସେମାନେ ଆହୁରି ଏକ ସୁବିଧା ପାଇଥାନ୍ତି । ଏହି ପ୍ରକାର ଆଲୋଚନାରେ ସେମାନେ ଯେପରି କଦାଚିତ୍ ଠିକ୍ ହୋଇଥାନ୍ତି, ସେହିପରି ସେମାନେ କଦାଚିତ୍ ନିଜକୁ ଭୁଲ୍ ବୋଲି ହୃଦୟଙ୍ଗମ କରି ପାରନ୍ତି । ଯେଉଁମାନଙ୍କ କୌଣସି ଯଥାର୍ଥ ଧାରଣା ନାହିଁ, ସେମାନଙ୍କ ଭ୍ରାନ୍ତ ପ୍ରଦର୍ଶିତ ହେବା, ନ ହେବା ସମାନ । ଏହା ହେଉଛି ଯେଉଁ ଭ୍ରମଣ ଫକୀରର କୌଣସି ନିର୍ଦ୍ଦିଷ୍ଟ ବାସସ୍ଥାନ ନାହିଁ, ତାହାକୁ ତାହାର ଉପସ୍ଥିତ ଆସ୍ଥାନରୁ ବାହାର କରିଦେବା ପରି । ମୋ ଅନ୍ଦାଜରେ ଏ ବିଷୟଟି ଏହିପରି; ଏବଂ ପ୍ରତ୍ୟେକ ବ୍ୟକ୍ତି ତାଙ୍କ ନିଜ କ୍ଷେତ୍ରରେ ଏବଂ ଅନ୍ୟମାନଙ୍କ କ୍ଷେତ୍ରରେ ଏ ବିଷୟଟି ଏହିପରି କି ନୁହେଁ, ତାହା ଦେଖି ପାରନ୍ତି ।"

ଏ ବିଷୟଟି ଏହିପରି କି ନୁହେଁ, ତହିଁରେ ସନ୍ଦେହ ନାହିଁ କହିଲେ ଚଳେ; ଏଥିରେ ଏବେ ମଧ୍ୟ ଆମେ ଏକମତ ହୋଇ ପାରିବା ଏବଂ ଏହି ଭ୍ରମଣଶୀଳ ଶବ୍ଦଗୁଡ଼ିକୁ ଆମେ ଯଦି ଅଧିକ ସହଜରେ ଚହ୍ନି ପାରିବା, ତେବେ ଶବ୍ଦାର୍ଥ ଅନ୍ୱେଷଣ ନିମନ୍ତେ ଶବ୍ଦାର୍ଥ ନ ଥିବା ସ୍ଥାନରେ ଉନ୍ମତ୍ତଭାବେ କବର ଖୋଳିବା କାର୍ଯ୍ୟରେ ଅପେକ୍ଷାକୃତ ଅଳ୍ପ ସମୟ ଆମେ ଅତିବାହିତ କରିବା । ଆଜିକାଲି ଅଯଥା ଏହି କବର ଖୋଳିବା କାର୍ଯ୍ୟ ପ୍ରଭୂତ ପରିମାଣରେ ସମର୍ଥିତ ହେଉଛି ।

ଶବ୍ଦମାନଙ୍କ ପ୍ରେତାତ୍ମା ଅଧ୍ୟୁଷିତ ଅରଣ୍ୟ ମଧ୍ୟରେ ଆମେ ଯେତେବେଳେ ପ୍ରବେଶ କରୁଁ, ଆମ ଅନୁଭୂତିସିଦ୍ଧ ନିୟମଗୁଡ଼ିକ କେବଳ ଯେ ଧ୍ୱନ୍ୟାତ୍ମକ, ବସ୍ତୁକରଣ ମୂଳକ

ଏବଂ ଦ୍ୱୈତାର୍ଥକ ଚଞ୍ଚଳତା ପରି ଦୁର୍ବୃତ୍ତ ପ୍ରେତମାନଙ୍କ ସହ ଯଥୋପଯୁକ୍ତ ବ୍ୟବହାର କରିବାକୁ ଆମକୁ ସମର୍ଥ କରେ, ତାହା ନୁହେଁ । ଏହି ନିୟମଗୁଡ଼ିକ ଅନ୍ୟାନ୍ୟ ବ୍ୟାଘାତକାରୀ ଛାୟା ମୂର୍ତ୍ତିମାନଙ୍କ ସହିତ ଆମ ବ୍ୟବହାରକୁ ମଧ୍ୟ ଯଥୋପଯୁକ୍ତ କରେ । ଉତ୍ତେଜକ, ଉଦାସୀନ ଓ ଭ୍ରମଣଶୀଳ ଶବ୍ଦମାନ ହେଉଛି ଏହି ଛାୟାମୂର୍ତ୍ତିମାନଙ୍କ ଦୃଷ୍ଟାନ୍ତ । କିନ୍ତୁ ଏହି ଅନୁଭୂତିସିଦ୍ଧ ନିୟମମାନଙ୍କ କାର୍ଯ୍ୟକାରିତା ଅଧିକ ପରିମାର୍ଜିତ ସୂତ୍ରମାନଙ୍କରୁ ହିଁ ନିଃସୃତ । ଏହି ସୂତ୍ରାବଳୀର ସାମର୍ଥ୍ୟ ଆଗରୁ ସୂଚିତ ହୋଇଛି ।

କିନ୍ତୁ ପ୍ରଶ୍ନ କରିଯାଇ ପାରେ—ସଙ୍କେତ ତ୍ରିକୋଣ ସମ୍ବନ୍ଧୀୟ ଜ୍ଞାନର ଉପାଦେୟତା କଣ ? ଯେଉଁ ସଙ୍କେତ ଉପାଦେୟ ହେବ, ଠିକ୍ ସେହି ସଙ୍କେତ ହଠାତ୍ ମନରେ ଉଦିତ ନ ହେବାରେ ଏହି କ୍ଷେତ୍ରର ଅସୁବିଧା ପର୍ଯ୍ୟବସିତ ନୁହେଁ କି ? ଏହାର ଦୁଇଟି ଉତ୍ତର ରହିଛି । ପ୍ରଥମତଃ, ଅଧିକାଂଶ ଲୋକଙ୍କ କ୍ଷେତ୍ରରେ ସଙ୍କେତରଚନା ସାମର୍ଥ୍ୟ କେବଳ ଅଭ୍ୟାସ ବଳରେ ହିଁ ଜାତ ହୁଏ । ଏହି ଦୃଷ୍ଟିରୁ ଏହା ଶଲ୍ୟଚିକିତ୍ସା, ରୋଗ ନିର୍ଣ୍ଣୟନ ବା ରନ୍ଧନ କିମ୍ବା ତୁଲ୍ୟ । ଏହି କଳାମାନଙ୍କରେ, ତନ୍ନିହିତ ନୀତିମାନଙ୍କ ଜ୍ଞାନରୁ ପ୍ରଭୂତ ସାହାଯ୍ୟ ମିଳିଥାଏ । ଦ୍ୱିତୀୟତଃ, ସାଧାରଣ ନୀତିମାନଙ୍କ ସମ୍ବନ୍ଧରେ ଏ ପ୍ରକାର ଜ୍ଞାନ ରହିଥିଲେ, ଗୋଟିଏ କ୍ଷେତ୍ରର ବିଶିଷ୍ଟ ଅଧ୍ୟୟନ କାଳରେ ଲବ୍ଧ କୌଣସି କୌଶଳକୁ ତତ୍ସଦୃଶ ଅନ୍ୟାନ୍ୟ କ୍ଷେତ୍ରର ବିଚାର କାଳରେ ଅବିଳମ୍ବେ ଉପଯୋଗ କରିବାକୁ ଆମେ ସମର୍ଥ ହେଉଁ । ଆଲୋଚନାର ସମସ୍ତ ମୁଖ୍ୟ ବିଷୟ ଅର୍ଥାତ୍ ସୌନ୍ଦର୍ଯ୍ୟ ବିଜ୍ଞାନ, ଜଡବିଜ୍ଞାନ, ଧର୍ମ, ରାଜନୀତି, ଅର୍ଥନୀତି, ମନସ୍ତତ୍ତ୍ୱ, ସମାଜତତ୍ତ୍ୱ ଇତିହାସ ଇତ୍ୟାଦିରେ ସମପ୍ରକାର ସଂଜ୍ଞାପକ ସମ୍ବନ୍ଧମାନ ରହିଛି । ତେଣୁ ଏଗୁଡ଼ିକ ମଧ୍ୟରୁ ଯେକୌଣସି ଗୋଟିକରେ ତାତ୍ତ୍ୱିକ ପ୍ରଜ୍ଞା ଅର୍ଜନ ଅନ୍ୟାନ୍ୟ କ୍ଷେତ୍ରର ସମୀକ୍ଷଣରେ ଗଭୀର ଆତ୍ମବିଶ୍ୱାସ ଜାତ କରେ ।



# ସପ୍ତମ ପରିଚ୍ଛେଦ

## ସୌନ୍ଦର୍ଯ୍ୟର ଅର୍ଥ

ପ୍ରସଙ୍ଗ କ୍ରମେ ଏହା ମୁଁ ଏଠାରେ ଉଲ୍ଲେଖ କରୁଛି । ଅବସ୍ଥା ପଡ଼ିଲେ, ମନୁଷ୍ୟମାନେ ସ୍ୱଚ୍ଛନ୍ଦ ଶବ୍ଦଗୁଡ଼ିକର ଯେଉଁ ସଂଜ୍ଞା ଦିଅନ୍ତି, ତାହାର ପରିଣତି କ'ଣ, ତାହା ପ୍ରଦର୍ଶନ କରିବା ଏହାର ଉଦ୍ଦେଶ୍ୟ । ସଂଜ୍ଞା ଦେବାକୁ ବାରଣ କରିଦେବା (ଆଉ ଅଧିକ କିଛି ନ କହିଲେ) ନିଶ୍ଚିତରୂପେ ହେଉଛି ପ୍ରଗତିର ଏକ ବିରାଟ ଅନ୍ତରାୟ; କାରଣ ସଂଜ୍ଞା ହେଉଛି ଏକମାତ୍ର ଉପାୟ ଯଦ୍ଦ୍ୱାରା ନୈତିକ ଶବ୍ଦ ଗୁଡ଼ିକର ଠିକ୍ ଅର୍ଥ ଜଣା ପଡ଼ିପାରେ ।—ଲକ୍

"ବିବାଦଗୁଡ଼ିକୁ ବହୁଗୁଣିତ କରାହୁଏ, ଯତେ ଯେପରି ପ୍ରତ୍ୟେକ ବିଷୟ ଅନିର୍ଦ୍ଦିଷ୍ଟ । ପୁଣି ଏହି ବିବାଦଗୁଡ଼ିକୁ ସର୍ବାଧିକ ଆନ୍ତରିକତା ସହକାରେ ସମାଧାନ କରି ଦିଆଯାଏ, ଯତେ ଯେପରି ପ୍ରତ୍ୟେକ ବିଷୟ ସୁନିର୍ଦ୍ଦିଷ୍ଟ । ଏହି ସମସ୍ତ ଅସ୍ତବ୍ୟସ୍ତତା ମଧ୍ୟରେ ତାହା ପୁରସ୍କୃତ ହୁଏ, ତାହା ବିଚାର ବୁଦ୍ଧି ନୁହେଁ, ତାହା ହେଉଛି ବାଗ୍ମିତା । କୌଣସି ଅନୁକୂଳ ରୂପ ଦେଇ ଉପସ୍ଥାପିତ କରିବା ପାଇଁ ଯେଉଁ ଲୋକର ଯଥେଷ୍ଟ କଳାକୁଶଳତା ଥାଏ, ସର୍ବାଧିକ ବିବେଚନାବର୍ଜିତ ପ୍ରକଳ୍ପକୁ ସୁଦ୍ଧା ଗ୍ରହଣ କରାଇ ନେବାପାଇଁ ସେ ନିରାଶ ହେବାର କଦାପି ଆବଶ୍ୟକତା ପଡ଼େ ନା । ଯେଉଁ ଯୋଦ୍ଧୃବର୍ଗ ଖଣ୍ଡା, ବର୍ଚ୍ଛା ପରିଚାଳନା କରନ୍ତି, ସେମାନଙ୍କ ଦ୍ୱାରା ଜୟଲାଭ ହୁଏନାହିଁ; ଜୟଲାଭ ହୁଏ ସେନାଦଳର ଭେରୀ ଦୁନ୍ଦୁଭିବାଦକ ଓ ସଙ୍ଗୀତଜ୍ଞମାନଙ୍କ ଦ୍ୱାରା ।"—ହ୍ୟୁମ୍ ।

ଯେଉଁ ବିଷୟ ସଂଜ୍ଞା ପ୍ରଣାଳୀ ପ୍ରୟୋଗର ଅନୁପଯୋଗୀ ବୋଲି ପ୍ରସିଦ୍ଧି ଲାଭ କରିଛି, ତାହାକୁ ହିଁ ପୂର୍ବବର୍ତ୍ତୀ ପରିଚ୍ଛେଦରେ ପ୍ରଦତ୍ତ ସଂଜ୍ଞା ବିବରଣୀର ମୂଖ୍ୟ ପରୀକ୍ଷା ନିମନ୍ତେ ସର୍ବୋତ୍ତମ ବୋଲି ଆମେ ମନୋନୀତ କରି ନେଇପାରୁ । ବାସ୍ତବିକ୍ ବହୁ ବୁଦ୍ଧିମାନ୍ ବ୍ୟକ୍ତି ସୌନ୍ଦର୍ଯ୍ୟ ସମ୍ପର୍କୀୟ କଳ୍ପନା ଜଳ୍ପନାକୁ ପରିହାର କରି ସାରିଛନ୍ତି ଏବଂ ସେମାନେ କଳାର ପ୍ରକୃତି ବା ଉଦ୍ଦେଶ୍ୟ ସମ୍ବନ୍ଧୀୟ ଆଲୋଚନାରେ କୌଣସି

ଅନୁରକ୍ତ ପ୍ରକାଶ କରନ୍ତି ନାହିଁ । ଏହାର କାରଣ ହେଉଛି, ସେମାନେ ଅନୁଭବ କରନ୍ତି ଯେ ଏହି କ୍ଷେତ୍ରରେ କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହେବାର ସମ୍ଭାବନା ନିତାନ୍ତ କ୍ଷୀଣ । କେଉଁ ବସ୍ତୁଗୁଡ଼ିକ ସୁନ୍ଦର—ଏ ବିଷୟରେ ବିଶେଷଜ୍ଞମାନଙ୍କ ମତାମତରେ ବିରାଟ ପାର୍ଥକ୍ୟ ଥିଲାପରି ମନେହୁଏ । ପୁଣି, ଯଦି ସେମାନେ କେବେ ଏକମତ ହୁଅନ୍ତି, ତେବେ ସେମାନେ **କେଉଁ ବିଷୟରେ** ଏକମତ ହେଉଛନ୍ତି, ତାହା ଜାଣିବାର କୌଣସି ଉପାୟ ନଥାଏ ।

ସୌନ୍ଦର୍ଯ୍ୟ ଦ୍ୱାରା ବସ୍ତୁତଃ ସେମାନେ କ'ଣ ମନେ କରନ୍ତି ? ଅଧ୍ୟାପକ ବୋସାଙ୍କେ ଓ ଡ଼କ୍ଟର ସାନ୍ତାୟନା, ସିଗନର୍ କ୍ରୋଚେ ଓ କ୍ଲାଇବ ବେଲ୍—ପ୍ରତ୍ୟେକେ ନିଜ ନିଜର ସ୍ୱଭାବ ସୁଲଭ ରୀତିରେ ଏବିଷୟରେ ହଠମତି, ଉଦ୍ଭ୍ରାନ୍ତ ଓ ବହୁଭାଷୀ । ରସ୍କିନ୍ ଓ ଟଲ୍‌ଷ୍ଟୟଙ୍କ କଥା ତ ଉତ୍ଥାପନ ନ କରିବା ହିଁ ଭଲ । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକେ ସମଭାବରେ ପୂର୍ବ ସୂରୀମାନଙ୍କ ସିଦ୍ଧାନ୍ତ ସହିତ ସମ୍ବନ୍ଧ ରକ୍ଷା ନକରି ନିଜ ନିଜର ସିଦ୍ଧାନ୍ତଗୁଡ଼ିକୁ ଉପସ୍ଥାପିତ କରିଛନ୍ତି । ବିଶେଷଜ୍ଞମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଅନ୍ୟମାନଙ୍କ ସମ୍ବନ୍ଧରେ ଯେଉଁ ମତାମତ ଦିଅନ୍ତି, ତହିଁରେ ମଧ୍ୟ ଯଥେଷ୍ଟ ପାର୍ଥକ୍ୟ ପରିଲକ୍ଷିତ ହୁଏ । କିନ୍ତୁ ସେହି ଏକ ଜିନିଷ ସମ୍ବନ୍ଧରେ ଲୋକେ କଥାବାର୍ତ୍ତା କରୁଛନ୍ତି ବୋଲି ମନେ କରିବା ସପକ୍ଷରେ ଯଦି କୌଣସି ଯୁକ୍ତି ନାହିଁ, ତେବେ ସେମାନଙ୍କ ମନ୍ତବ୍ୟରେ ସହସମ୍ବନ୍ଧର ଅଭାବ ଲକ୍ଷ୍ୟକରି ବିସ୍ମିତ ହେବାର ଆବଶ୍ୟକତା ମଧ୍ୟ ନାହିଁ । ଆମେ ଅଯଥା ଅତି ତତ୍ପରତାର ସହିତ ଗ୍ରହଣ କରିନେଉଁ ଯେ ସଦ୍‌ଗୁଣ ଭାଷାରେ ସଦ୍‌ଗୁଣ ଚିନ୍ତା ନିହିତ, ଏବଂ ଏହି ଚିନ୍ତାଗୁଡ଼ିକ ସଦ୍‌ଗୁଣ ବସ୍ତୁ ବିଷୟକ । ତଥାପି ସୌନ୍ଦର୍ଯ୍ୟ ବିଜ୍ଞାନ ଆଖ୍ୟା ଦିଆଯାଇଥିବା ବିଷୟ କେବଳ ଗୋଟିଏ ଅସୂର୍ଯ୍ୟଦ୍ଦେଶ୍ୟ ବିମୟ ହୋଇ ରହିଛି କାହିଁକି ? ପୃଥକ୍ ପୃଥକ୍ ଭାବେ ଅନୁସନ୍ଧାନ କରିବା ନିମନ୍ତେ ପରସ୍ପର ସମ୍ବନ୍ଧାନ୍ୱିତ ହୋଇଥାଉ ବା ନଥାଉ, ଏକାଧିକ କ୍ଷେତ୍ର ରହି ନାହିଁ କାହିଁକି ? ଆମେ କବିଙ୍କ ସହିତ ସ୍ୱର ମିଳାଇ କହିପାରୁଁ —

"ସୌନ୍ଦର୍ଯ୍ୟ ହିଁ ସତ୍ୟ, ସତ୍ୟ ହିଁ ସୌନ୍ଦର୍ଯ୍ୟ"
ଜଗତରେ କେବଳ ଏତିକ ହିଁ ତୁମେ ଜାଣ,

ଏବଂ କେବଳ ଏତିକ ହିଁ ତୁମର ଜାଣିବା ଆବଶ୍ୟକ ।" ଚିନ୍ତାକରି ଦେଖିଲେ, ଜଣେ ଜ୍ଞାନାନ୍ୱେଷୀ ବୁଦ୍ଧି ଅନୁଭବ କରିବ ଯେ ନିମ୍ନଲିଖିତ ଉକ୍ତି ଦେଇଥିବା ଲେଖକ ଯେଉଁ ବିଷୟ ସମ୍ବନ୍ଧରେ କହୁଛନ୍ତି, ଆମେ ଠିକ୍ ସେହି ବିଷୟ ସମ୍ବନ୍ଧରେ କହୁଥିବାର ଆବଶ୍ୟକତା ନାହିଁ ।

"ଗଣ୍ଡ'ରର ଚମଡ଼ାକୁ ତାହାର ଯୋଗ୍ୟତା ପାଇଁ ପ୍ରଶଂସା କରାଯାଇ ପାରେ; କିନ୍ତୁ ଜୀବନ ଶକ୍ତିର ସୂଚନା ଅଭାବରୁ ଏହା ପେଶୀସ୍ଥ ସ୍ଥିତିସ୍ଥାପକତାର ସରବଦର୍ଶିତାସ୍ୱ

ପରିଣତ ପ୍ରଦର୍ଶନଶୀଳ ଚର୍ମଠାରୁ ନ୍ୟୂନମାତ୍ରାରେ ସୁନ୍ଦର ବୋଲି ବିବେଚନା କରାଯାଏ ।''

· ମୂଲ୍ୟବାନ୍ ଧରଣରେ ସାହିତ୍ୟ ଭୁହାଯାଉଥିବା ସମସ୍ତ ବିଷୟକୁ ଅନ୍ତର୍ଭୁକ୍ତ କରି ଗୋଟିଏ ସୌନ୍ଦର୍ଯ୍ୟମୂଳକ ନୀତି ପ୍ରଣୟନ କରାଯାଇ ପାରେ ବୋଲି ଗ୍ରହଣ କରିନେବା ସପକ୍ଷରେ କି ଯୁକ୍ତି ରହିଛି ?

ତଥାପି, ଯଦି ଓ ଏହା ବିସ୍ମୟକର ମନେ ହୋଇପାରେ, କେବଳ ଜଣେ ଲେଖକ ହିଁ ଏହି ଅସୁବିଧାକୁ ସ୍ପଷ୍ଟତଃ ସ୍ୱୀକାର କରିଥିବା ଏବଂ ଏହାର ଗୁରୁତ୍ୱ ଉପଲବ୍ଧି କରିଥିବା ପରି ମନେହୁଏ । ସେ ହେଉଛନ୍ତି ରୁପର୍ଟ ବ୍ରୁକ୍ । ସେ କହିଛନ୍ତି—

'କଳା କଣ ?'—ଏହି ପ୍ରଶ୍ନ ଯେଉଁମାନେ ଉତ୍ଥାପନ କରନ୍ତି; ସେମାନଙ୍କ କ୍ଷେତ୍ରରେ ଯେଉଁ ସଙ୍କଟ ଗୁଡ଼ିକ ଦେଖାଯାଏ, ତନ୍ମଧ୍ୟରୁ ଗୋଟିଏ ହେଉଛି ସେମାନେ ଯାହା ଖୋଜୁଛନ୍ତି, ଅର୍ଥାତ୍ କଳାର ଏକ ସାଧାରଣ ଗୁଣ ତାହା ମିଳିବ ବୋଲି ଆଶା ପୋଷଣ । ସମସ୍ତ ବ୍ୟକ୍ତି ଏହା ହିଁ କରିଥାନ୍ତି ।·········ଯେଉଁମାନେ ଏହିପରିଭାବେ କର୍ମାରମ୍ଭ କରନ୍ତି, ସେମାନେ କଳାକାର ତଥା ସମୀକ୍ଷକ ଉଭୟଙ୍କ ପକ୍ଷରେ ସର୍ବାଧିକ ଅସହନୀୟ କ୍ଳେଶ ଦାୟକ ବ୍ୟକ୍ତି ସ୍ୱରୂପ ହୋଇ ବସନ୍ତି । କଳା······ସାଧାରଣ 'କଳା' ବିଷୟର, ଏପରି କି ଯେ କୌଣସି ଗୋଟିଏ କଳାର ସୁଦ୍ଧା ଅଧ୍ୟୟନ କରିବାର ଭ୍ରାନ୍ତ ପ୍ରଣାଳୀମାନଙ୍କ ମଧ୍ୟରୁ ଏହା ସର୍ବାଧିକ ନିକୃଷ୍ଟ, କାରଣ ଏହା ସର୍ବାଧିକ କ୍ଷତିକାରକ ।''
'ସୌନ୍ଦର୍ଯ୍ୟମୂଳକ' ଶବ୍ଦଟି କଳା ସମ୍ପୃକ୍ତ ପ୍ରଶ୍ନ ତଥା ପ୍ରତ୍ୟକ୍ଷଣ ଉଭୟ ନିମନ୍ତେ ବ୍ୟବହୃତ ହୋଇଥିବା ବିଷୟକୁ ଲକ୍ଷ୍ୟକରି କୋଚେ ଏକ ଅନଭିଜ୍ଞ ବ୍ୟକ୍ତିରୂପେ କର୍ମାରମ୍ଭ କରିଛନ୍ତି । ତେଣୁ ଏହି ଉଭୟ କ୍ଷେତ୍ରରେ ପ୍ରଯୁଜ୍ୟ ହେବାପାଇଁ ପ୍ରକୃତରେ ତାହାର କି ଅର୍ଥ ଥାଇପାରେ, ତାହା ଆବିଷ୍କାର କରିବାକୁ ସେ ଚେଷ୍ଟା କରିଛନ୍ତି । କୋଚେ ଗ୍ରହଣ କରିନେଇଛନ୍ତି ଯେ 'ସୌନ୍ଦର୍ଯ୍ୟ ବିଜ୍ଞାନ' ସମ୍ବନ୍ଧୀୟ ସତ୍ୟତା ଗୋଟିଏ ଅପରିହାର୍ଯ୍ୟ ସର୍ତ୍ତକୁ ପୂରଣ କରିବା ଆବଶ୍ୟକ । ଏହି ସର୍ତ୍ତଟି ହେଉଛି କଳା ଓ ପ୍ରତ୍ୟକ୍ଷଣ ଉଭୟ କିପରିଭାବେ ସୌନ୍ଦର୍ଯ୍ୟରେ ଅନ୍ତର୍ଭୁକ୍ତ, ତାହାର ଏକ ବ୍ୟାଖ୍ୟା ଦେବା । ଏହିପରି ଏକ ବ୍ୟାଖ୍ୟା ପାଇପାରିବା ପରେ କୋଚେ ସନ୍ତୁଷ୍ଟ ରହିଛନ୍ତି ।''
ବିଷୟଗତ ଗୁପ୍ତ ଗହ୍ୱରଗୁଡ଼ିକ ପ୍ରତି ଯେଉଁ ଜାଗ୍ରତ ସଚେତନତା ହେତୁ ରୁପର୍ଟ ବ୍ରୁକ୍ ବିଜ୍ଞତାର ସହିତ କୋଚେଙ୍କୁ ପ୍ରାଧାନ୍ୟ ନ ଦେବାରେ ସମର୍ଥ ହୋଇଛନ୍ତି, ତାହା ଅଧ୍ୟାପକ ଜି. ଇ. ମୁଅରଙ୍କ କବଚରେ ଛିଦ୍ର ଆବିଷ୍କାର କରିବାକୁ ମଧ୍ୟ ତାଙ୍କୁ ସମର୍ଥ କରିଛି । କେମ୍ବ୍ରିଜ ବାସ୍ତବବାଦୀମାନେ ସେତେବେଳେ ସେମାନଙ୍କ ପ୍ରଭାବର ଶୀର୍ଷ ସ୍ଥାନରେ ଥିଲେ ସୁଦ୍ଧା ବ୍ରୁକ୍ ସେମାନଙ୍କ ଦ୍ୱାରା ସୂତ୍ରର କବଳିତ ହୋଇ ନାହାନ୍ତି । ସେ କହିଛନ୍ତି ''ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ସେମାନେ ଆବିଷ୍କାରଙ୍କ ନୁହନ୍ତି ପରି ମୋର

ମନେ ହୁଏ । ପ୍ରଥମତଃ, 'ଜଣେ ଯେତେବେଳେ କହେ ଯେ "ଏହା ସୁନ୍ଦର", ସେ ମନେକରି ନଥାଏ ଯେ "ଏହା ପସନ୍ଦଯୋଗ୍ୟ" ; ସୁତରାଂ ସୌନ୍ଦର୍ଯ୍ୟ ବୋଲି ଏକ ବସ୍ତୁ ରହିଛି'—ଯେଉଁ ଲୋକ ଏହିପରି କହେ, ତାହାର ଦାବୀକୁ ମୁଁ ସ୍ୱୀକାର କରେ ନାହିଁ । ·········ଲୋକେ ଯାହା ମନେ କରିଥାଇ ପାରନ୍ତି ତତ୍ସହିତ ମୁଁ ସଂପୃକ୍ତ ନୁହେଁ । ସେମାନେ ଅନେକଙ୍କ ସର୍ବାଧିକ ବିଭ୍ରମକର ବିଷୟ ମନେ କରନ୍ତି ଓ ମନେ କରିଛନ୍ତି ମଧ୍ୟ । ସମ୍ଭବତଃ ଏହା ସତ୍ୟ ଯେ ଲୋକେ 'ଏହା ସୁନ୍ଦର' ବୋଲି କହିଲା-ବେଳେ, 'ଏହା ପସନ୍ଦଯୋଗ୍ୟ' ବୋଲି ସେମାନେ ମନେ କରି ନଥାନ୍ତି । ସେମାନେ ମନେ କରି ଥାଇ ପାରନ୍ତି ଯେ ସୌନ୍ଦର୍ଯ୍ୟମୂଳକ ସଂବେଗର ସ୍ଥିତି ରହିଛି । ମୋର କେବଳ ମନ୍ତବ୍ୟ ହେଉଛି, ସୌନ୍ଦର୍ଯ୍ୟମୂଳକ ସଂବେଗର ସ୍ଥିତି ରହିଛି—ଏ କଥା ଏଥିରୁ ନିଃସୃତ ହେଉ ନାହିଁ । ପୁଣି ବାସ୍ତବତା ଦୃଷ୍ଟିରୁ ମଧ୍ୟ ସେମାନେ ଭ୍ରାନ୍ତ" । (୧)

ଯେଉଁ ପୁସ୍ତକର ଉଦ୍ଧୃତାଂଶ ଆମେ ଦେଇଛୁଁ, ତହିଁରୁ ଅନ୍ତତଃ ଧାରଣା ଜନ୍ମେ ଯେ ନିମ୍ନରେ ଦିଆଯାଇଥିବା ତାଲିକାର ୧୧ ନମ୍ବରରେ ଯେଉଁ ପ୍ରକାର ମତ ଉପସ୍ଥାପିତ ହୋଇଛି, ସେଥିପ୍ରତି ଗ୍ରନ୍ଥକାରଙ୍କ ସହାନୁଭୂତି ଥିଲା । କିନ୍ତୁ ବିଷୟଟିକୁ ସେ ଅତ୍ୟନ୍ତ ଗମ୍ଭୀରଭାବେ ବିଚାର କରିଥିଲେ ବୋଲି ମନେ ହୁଏ ନାହିଁ । ପୁଣି ତାଙ୍କର ପ୍ରଶଂସନୀୟ ଅଧ୍ୟୟନ ପ୍ରଣାଳୀରୁ ଯେଉଁ ସୁଫଳ ମିଳିବାର ସୂଚନା ରହିଥିଲା, ତାହାର ଅଧ୍ୟୟନ କରିବାର ସୁଯୋଗ ମଧ୍ୟ ସେ ପାଇ ନ ଥିଲେ ।

ଯେ କୌଣସି ସମୟରେ ଯଦି ଆମର ଏପରି କୌଣସି ଏକ ଅନୁଭୂତି ଜାତ ହୁଏ ଯେ ଯାହାକୁ 'ସୌନ୍ଦର୍ଯ୍ୟ ମୂଳକ' ବୋଲି ଅଭିହିତ କରାଯାଇ ପାରେ, ଅର୍ଥାତ୍ ଯେତେ-ବେଳେ ଆମେ ଗୋଟିଏ ବସ୍ତୁକୁ ଉପଭୋଗ, ଧ୍ୟାନ, ପ୍ରଶଂସା ବା ପସନ୍ଦ କରୁଥାଉଁ, ସେହି ପରିସ୍ଥିତିରେ ସ୍ପଷ୍ଟତଃ ପ୍ରାଧାନ୍ୟ ଅର୍ପଣ ଯୋଗ୍ୟ ଭିନ୍ନ ଭିନ୍ନ ଅଂଶ ରହିଥାଏ । ଏଗୁଡ଼ିକ ମଧ୍ୟରୁ ଆମେ ଏକ ବା ଅପରଟିକୁ ମନୋନୀତ କରିବା ଦ୍ୱାରା ମୁଖ୍ୟ ସୌନ୍ଦର୍ଯ୍ୟ ମୂଳକ ନୀତିଗୁଡ଼ିକ ମଧ୍ୟରୁ ଆମେ ଏକ ବା ଅପର ନୀତିର ଅଭିବୃଦ୍ଧି କରିବା । ଏହି ମନୋନୀତ କରଣରେ ଆମେ ବସ୍ତୁତଃ ମୁଖ୍ୟ ପ୍ରକାରର ସଙ୍କାଗୁଡ଼ିକ ମଧ୍ୟରୁ କେଉଁଟିକୁ

(୧) John Webster and the Elisabethan Drama ପୃ ୧-୭ । Rupert Brooke ସ୍ପଷ୍ଟ ଭାବରେ ବୁଝି ନ ଥିଲେ ଯେ ଏଠାରେ ଯେଉଁ ମୁକ୍ତିକୁ ଖଣ୍ଡନ କରାଯାଉଛି, ତାହାର ଉଦ୍ଦେଶ୍ୟ ହେଲି ବର୍ତ୍ତିତାର ଏକ ପ୍ରମାଣ ଯୋଗାଇବା, ସ୍ଥିତିର ପ୍ରମାଣ ଯୋଗାଇବା ନୁହେଁ । ଦେଖାଯିବ ଯେ ଯେଉଁଠାରେ ତାର୍କିକ ବିଚକ୍ଷଣତା ନିଜକୁ ପ୍ରତାରିତ କରେ, ସେଠାରେ ସ୍ଥୂଳଜ୍ଞାନ ସମସ୍ତ ସମୟରେ ସଫଳ ହୋଇଥାଏ ।

ପ୍ରୟୋଗ କରିବା, ତାହାହିଁ ନିର୍ଦ୍ଧାରଣ କରୁଛୁ । ଉଦାହରଣ ସ୍ୱରୂପ, ଆମେ ବସ୍ତୁଟିକୁ ହିଁ ନେଇ କର୍ମାରମ୍ଭ କରିପାରୁଁ, ଅଥବା ତତ୍‌ସଂପୃକ୍ତ ଅନ୍ୟ କୌଣସି ବିଷୟ, ଯଥା—ପ୍ରକୃତି, ପ୍ରତିଭା, ପୂର୍ଣ୍ଣତା, ଆଦର୍ଶ ବା ସତ୍ୟକୁ ନେଇ କର୍ମାରମ୍ଭ କରିପାରୁଁ । ଏତଦ୍ ବ୍ୟତୀତ ଆମ ଉପରେ ବସ୍ତୁଟିର ପ୍ରଭାବକୁ ନେଇ ମଧ୍ୟ କର୍ମାରମ୍ଭ କରି ଯାଇପାରେ । ଆମେ ନିଜ ଇଚ୍ଛା ଅନୁସାରେ ଯେ କୌଣସି ସ୍ଥାନରୁ ଆରମ୍ଭ କରିପାରୁଁ, ଏଠାରେ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଯେଉଁ ଅଧ୍ୟୟନ ପ୍ରଣାଳୀକୁ ଆମେ ଗ୍ରହଣ କରୁଛୁ, ତାହାକୁ ଜାଣିବା ଓ ତାହାକୁ ସୁସ୍ପଷ୍ଟ କରିଦେବା, କାରଣ ଆମେ ଯଦି ଗୋଟିଏ କ୍ଷେତ୍ରରେ ପ୍ରବେଶ କରୁଁ, ତହିଁରେ ଯେଉଁ ବସ୍ତୁମାନଙ୍କ ସହିତ କାରବାର କରିବାକୁ ହୁଏ, ଅର୍ଥାତ୍ ଯେଉଁ ନିର୍ଦ୍ଦେଶ୍ୟଗୁଡ଼ିକୁ ନିର୍ଦ୍ଦେଶ ଦେବାକୁ ହୁଏ, ସେଗୁଡ଼ିକ ନିୟମାନୁଗତ ଭାବେ ଅନ୍ୟ ଏକ କ୍ଷେତ୍ରର ବସ୍ତୁବର୍ଗଠାରୁ ଭିନ୍ନ । ଅତି ନଗଣ୍ୟ ସଂଖ୍ୟକ ବ୍ୟକ୍ତି ହୁଏତ ସମସ୍ତ ବିଷୟରେ ସମଭାବରେ ଅନୁରକ୍ତ ହେବେ; କିନ୍ତୁ ସମସ୍ତ ବିଷୟରେ— ଯଦି ସାମାନ୍ୟ ସ୍ଖଳନ ରହିଥିଲେ ଅନ୍ତତଃ ଏତିକ ସୁବିଧା ହେବ ଯେ ଅନ୍ୟାନ୍ୟ ଲୋକଙ୍କ ଅନୁରକ୍ତିର ବିଷୟ ଅଧିକ ପରିମାଣରେ ବୋଧଗମ୍ୟ ହେବ ଏବଂ ଆଲୋଚନାଗୁଡ଼ିକ ଅଧିକ ଲାଭଦାୟକ ହେବ । ଏହି ବିଷୟ ଗୁଡ଼ିକରେ ମତ-ପାର୍ଥକ୍ୟ ଓ ଅନୁରକ୍ତି-ପାର୍ଥକ୍ୟ ନିବିଡ଼ଭାବେ ପରସ୍ପର ସମ୍ବନ୍ଧାନ୍ୱିତ । ବର୍ତ୍ତମାନ ଅବସ୍ଥାରେ ସମନ୍ୱୟବିଧାନ ହୁଏତ ଅପରିପକ୍ୱ ହେବ, କିନ୍ତୁ ସାଧାରଣ ସମନ୍ୱୟ ବିଧାନର ଯେ କୌଣସି ପ୍ରୟାସ ନିମନ୍ତେ ଆମକୁ ମତ-ପାର୍ଥକ୍ୟ ଓ ଅନୁରକ୍ତି-ପାର୍ଥକ୍ୟର ପୃଥକ କରଣ ଦ୍ୱାରା କର୍ମାରମ୍ଭ କରିବାକୁ ହେବ ।

ଯାହାହେଉ, ଆମେ ପ୍ରୟୋଗ କରୁଥିବା ସଂଜ୍ଞା ପଦ୍ଧତିକୁ ସ୍ପଷ୍ଟକରି ଦେବାକୁ ହେବ । ନିମ୍ନଲିଖିତ ସଂଜ୍ଞା-ସାରଣୀରେ ଉପାଦେୟ ପଦ୍ଧତିଗୁଡ଼ିକର ପରିସର ପ୍ରଦର୍ଶିତ ହୋଇଛି ! ଏଗୁଡ଼ିକ ମଧ୍ୟରୁ ଅଧିକାଂଶ ପଦ୍ଧତି ପ୍ରାଚୀନ ମତମାନଙ୍କୁ ଉପସ୍ଥାପିତ କରିଛି । ଆଗରୁ, ଏଠାରେ ଉପସ୍ଥାପିତ ଅନ୍ୟାନ୍ୟ ପଦ୍ଧତିଗୁଡ଼ିକ ଉପରେ ପ୍ରାଧାନ୍ୟ ଅର୍ପଣ କରାଯାଉ ନ ଥିଲା; କିନ୍ତୁ ସେଗୁଡ଼ିକର ଉପସ୍ଥାପନ ଦ୍ୱାରା ତାଲିକାଟି ପ୍ରାୟ ସମ୍ପୂର୍ଣ୍ଣ ହୋଇଛି । ଏଠାରେ ମନ୍ତବ୍ୟ ଦେବା ଆବଶ୍ୟକ ଯେ ନିମ୍ନୋକ୍ତ ସାରଣୀ ପ୍ରଦର୍ଶିତ 'ସୁନ୍ଦର'ର ବ୍ୟବହାର ଗୁଡ଼ିକ କୌଣସିମତେ ସମ୍ପୂର୍ଣ୍ଣତଃ ବ୍ୟକ୍ତ ନୁହେଁ । ଯଦି ଗୋଟିଏ ସଂଜ୍ଞାଦ୍ୱାରା ଜଣେ ବୁଦ୍ଧିମାନ୍ ପାଠକ ସଂପୃକ୍ତ ନିର୍ଦ୍ଦେଶକୁ ଚିହ୍ନି ପାରିବାରେ ସମର୍ଥ ହୁଏ, ତେବେ ସଂଜ୍ଞାଟି ଯଥେଷ୍ଟ ପରିମାଣରେ ସ୍ପଷ୍ଟ ବୋଲି ଧରି ନେବାକୁ ହେବ । ଏଗୁଡ଼ିକର ପ୍ରତ୍ୟେକ କ୍ଷେତ୍ରରେ ବିଷୟଟିର ସମ୍ପୂର୍ଣ୍ଣ ପରିପ୍ରକାଶ ନିମନ୍ତେ ପର୍ଯ୍ୟାପ୍ତ ସ୍ଥାନ ଆବଶ୍ୟକ । ତଦ୍ଦ୍ୱାରା ଜଣାପଡ଼ିବ ଯେ କେତେକ କ୍ଷେତ୍ରରେ, ସୁନ୍ଦରର ପରିସର କଳାତ୍ମକ କ୍ରିୟାର ପରିସର ଅପେକ୍ଷା ଅଧିକ ବ୍ୟାପକ । ପକ୍ଷାନ୍ତରେ, କେତେକ ସଂଜ୍ଞାର୍ଥିତା ମଧ୍ୟ ପାଠକ ଅନାୟାସରେ ଧରି ପାରିବେ; ଯଥା—ନମ୍ବର ୮ର ଯେଉଁ କ୍ଷେତ୍ରଗୁଡ଼ିକ ସୌନ୍ଦର୍ଯ୍ୟ କାର୍ଯ୍ୟର ବହିର୍ଭୂତ ।

୧ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ଏକ ମୌଳିକ ଗୁଣ ଅର୍ଥାତ୍
କ ସୌନ୍ଦର୍ଯ୍ୟର ଅଧିକାରୀ ।

୨ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହାର ଏକ ବିଶିଷ୍ଟ ଆକାର ଥାଏ ।

୩ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ପ୍ରକୃତିର ଏକ ଅନୁକରଣ ।

୪ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ଏକ ମାଧ୍ୟମର ସଫଳ ବିନିଯୋଗର ପରିଣତି ।

୫ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ପ୍ରତିଭାର କାର୍ଯ୍ୟ ।

ଖ ୬ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା (୧) ସତ୍ୟ (୨) ପ୍ରକୃତିର ଆତ୍ମା (୩) ଆଦର୍ଶ (୪) ସାମାନ୍ୟ (୫) ସ୍ୱରୂପର ପ୍ରକାଶକ ।

୭ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ଭ୍ରମ ଜାତ କରେ ।

୮ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ବାଞ୍ଛନୀୟ ସାମାଜିକ ପରିଣତି ଆଡ଼କୁ ଅଗ୍ରସର କରାଇ ନିଏ ।

୯ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ଏକ ଅଭିବ୍ୟକ୍ତି ।

୧୦ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ସୁଖ ଉତ୍ପନ୍ନ କରେ ।

୧୧ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ସଂବେଗର ଉଦ୍ରେକ କରେ ।

୧୨ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ଏକ ବିଶିଷ୍ଟ ସଂବେଗର ଉନ୍ନତ ବିଧାନ କରେ ।

ଗ ୧୩ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ତଦନୁଭୂତ ପ୍ରତିସ୍ୱା ସଶ୍ଲିଷ୍ଟ ।

୧୪ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ଜୀବନ ଶକ୍ତିର ସମୃଦ୍ଧି କରେ ।

୧୫ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ଆମକୁ ଅସାଧାରଣ ବ୍ୟକ୍ତିତ୍ୱର ସମ୍ପର୍କରେ ଆଣେ ।

୧୭ । ଯେ କୌଣସି ବସ୍ତୁ ହେଉଛି ସୁନ୍ଦର — ଯାହା ସତ୍‌-ସମ୍ବେଦନ ପ୍ରବର୍ତ୍ତିତ କରେ । (୧)

ଲକ୍ଷ୍ୟ କରାଯାଇ ପାରେ ଯେ ଏହି ସଂଜ୍ଞାମାନଙ୍କ ମଧ୍ୟରୁ ପ୍ରତ୍ୟେକଟି ପୂର୍ବବର୍ତ୍ତୀ ପରିଚ୍ଛେଦରେ ଆଲୋଚିତ ମୌଳିକ ସଂଜ୍ଞାପକ ସମ୍ବନ୍ଧମାନଙ୍କ ମଧ୍ୟରୁ ଏକ ବା ଏକାଧିକ ସମ୍ବନ୍ଧର ଦୃଷ୍ଟାନ୍ତ ଯୋଗାଉଅଛି । ଉଦାହରଣ ସ୍ୱରୂପ, ଗ ଶ୍ରେଣୀର ସମସ୍ତ ସଂଜ୍ଞା, ଅର୍ଥାତ୍ ସଂଜ୍ଞା ୧୦ରୁ ସଂଜ୍ଞା ୧୬ ପର୍ଯ୍ୟନ୍ତ, ଆମ ବୋଧଶକ୍ତି ଉପରେ ବସ୍ତୁମାନଙ୍କ ପ୍ରଭାବ ମାଧ୍ୟମରେ ଦିଆଯାଇଛି । ସୁତରାଂ ସେଗୁଡ଼ିକ ହେଉଛି ୭ମ ପ୍ରରୂପର ବିଷୟ । କ ଶ୍ରେଣୀର ଦୁଇଟି ସଂଜ୍ଞା ମଧ୍ୟରୁ ପ୍ରଥମଟି ହେଉଛି ଏକ ସରଳ ନାମ କରଣ, ଅର୍ଥାତ୍ ଏହା ୧ମ ପ୍ରରୂପର ବିଷୟ । ଆମେ ଏକଗୁଣ ଅର୍ଥାତ୍ ସୌନ୍ଦର୍ଯ୍ୟର ସ୍ଥିତିକୁ ବିନା ପ୍ରମାଣରେ ଗ୍ରହଣ କରିନେଇ ତାହାର ଏକ ନାମ ଦେଉଁ ଏବଂ ଏହି କାଳ୍ପନିକ ନିର୍ଦ୍ଦେଶ୍ୟ ସହିତ ଆମ ନାମର ଐନ୍ଦ୍ରଜାଲିକ ପ୍ରଭାବର ତାଦାତ୍ମ୍ୟରେ ଆସ୍ଥା ସ୍ଥାପନ କରୁଁ । ଏକ ଅନ୍ତଃସ୍ଥଗୁଣ. ଅର୍ଥାତ୍ ସୌନ୍ଦର୍ଯ୍ୟ ମାଧ୍ୟମରେ ସୁନ୍ଦରର ଆଲୋଚନା ହେଉଛି ବାସ୍ତବରେ ଆଦିମ ଶବ୍ଦ—କୁସଂସ୍କାର—ଅବଶେଷରେ ଏକ ପ୍ରକୃଷ୍ଟ ଉଦାହରଣ । ଏତଦ୍ୱାରା ପ୍ରତୀକାତ୍ମକ ଦୃଷ୍ଟିରୁ ସମୀକ୍ଷାରହିତଭାବେ କରାଯାଉଥିବା ଆଲୋଚନା ନିହିତ ସଂକଟ ମଧ୍ୟ ପ୍ରକଟିତ । ଦ୍ୱିତୀୟ ସଂଜ୍ଞାଟି (୨ୟ) ଅବାର ମାଧ୍ୟମରେ ଦିଆଯାଇଛି । ଏହା ଯେଉଁ କଳାରେ ପ୍ରୟୋଗ କରାଯାଏ, ତାହାର ସ୍ୱଭାବ ଅନୁଯାୟୀ ଦୈଶିକ ଅଥବା କାଳିକ ହୋଇପାରେ । ଏହି ଦୁଇ ପ୍ରକାର ସମ୍ବନ୍ଧବ୍ୟତୀତ ଅନ୍ୟ କୌଣସି ସମ୍ବନ୍ଧ ଯଦି କୌଣସି କ୍ଷେତ୍ରରେ ନିହିତ ଥିବା ମନେହୁଏ, ତେବେ ପରୀକ୍ଷା ଦ୍ୱାରା ଜଣାପଡ଼ିବ ଯେ ସଂଜ୍ଞାର ପ୍ରସ୍ଥାନବିନ୍ଦୁ ପ୍ରଚ୍ଛନ୍ନଭାବେ ପରିବର୍ତ୍ତିତ ହୋଇଯାଇଛି ଏବଂ ତାହା ଯଥାର୍ଥରେ ମନସ୍ତାତ୍ତ୍ୱିକ ହୋଇଯାଇଛି । ଏହି କ୍ଷେତ୍ରରେ ଏପ୍ରକାର ପରିବର୍ତ୍ତନ ସହଜରେ ଘଟିଥାଏ ଏବଂ ଏତଦ୍ୱାରା ପ୍ରଚଳିତ ପଦ୍ଧତିରେ କୌଣସି ସାକ୍ଷାତ୍ ପରିବର୍ତ୍ତନ ପରିଲକ୍ଷିତ ହୁଏ ନାହିଁ । ସାହିତ୍ୟ ଓ କଳାତ୍ମକ ସମାଲୋଚନାରେ 'ବିରାଟ' ଶବ୍ଦର ବ୍ୟବହାର ଏହି ପ୍ରଣାଳୀ ପ୍ରଦର୍ଶକ ନିମନ୍ତେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଏହି ଶବ୍ଦ କ୍ଷେତ୍ରରେ

---

(୧) ଗ୍ରନ୍ଥକାର ଦ୍ୱୟ ଓ Mr. james wood ଙ୍କ ଦ୍ୱାରା ଲିଖିତ The foundations of Aesthetics (୧୯୨୧, ଦ୍ୱିତୀୟ ସଂସ୍କରଣ ୧୯୨୨)ରେ ଉପର୍ଯ୍ୟୁକ୍ତଭାବେ ସଂଜ୍ଞା ଦିଆଯାଇଥିବା ମତମାନଙ୍କ ଏକ ସବିଶେଷ ଆଲୋଚନା କରାଯାଇଛି । ଏହି ବର୍ଗୀକରଣ ଦୃଷ୍ଟିରୁ ଅନୁଷ୍ଠିତ ସର୍ବାଧୁନିକ କ୍ରିୟାକଳାପର ଏକ ସର୍ବେକ୍ଷଣ Fncyclopaedia Britanica ନୂତନ ଗ୍ରନ୍ଥାବଳୀ (୧୯୨୨)— ବିଷୟ—'ସୌନ୍ଦର୍ଯ୍ୟ ବିଜ୍ଞାନ'ରେ ରହିଛି ।

'ବସ୍ତୁନିଷ୍ଠ' ବୁଝାଯାଉଥିବା ବ୍ୟବହାରରୁ 'ବ୍ୟକ୍ତିନିଷ୍ଠ' ବୁଝାଯାଉଥିବା ବ୍ୟବହାରକୁ ପରିବର୍ତ୍ତନ ଘଟିଛି, କିନ୍ତୁ ଏଠାରେ ପ୍ରତୀକଗତ ସୂଚନାର ଅଭାବ ରହିଛି ।

ଖ ଶ୍ରେଣୀର ସମସ୍ତ ସଂଜ୍ଞା ଅଳ୍ପାଧିକ ପରିମାଣରେ ଜଟିଳ ।

ଉଭୟ ଅନୁକରଣ (୩ୟ) ଏବଂ ବିନିଯୋଗ (୪ର୍ଥ) ହେଉଛି ମାଧ୍ୟମର ସାମର୍ଥ୍ୟ ନିର୍ଦ୍ଦେଶମୂଳକ ସଂଜ୍ଞା । କାରଣିକତା ସାଦୃଶ୍ୟ, ଅବଗତ ଓ ଅଭିଳପିତ ସମ୍ବନ୍ଧମାନଙ୍କ ସଂଯୋଜନ ଏ ଦୁଇଟିରେ ସୁସ୍ପଷ୍ଟ । ବିନିଯୋଗ ହେଉଛି ବାସ୍ତବରେ ଜଟିଳ ସଂଜ୍ଞାର ଯଥାସମ୍ଭବ ଏକ ଚମତ୍କାର ଦୃଷ୍ଟାନ୍ତ ! ସଙ୍କୁଚିତ, ସଂକ୍ଷିପ୍ତୀକୃତ ଆକାରରେ ଏହାକୁ ବୁଝିବା ସହଜ, ଅଥଚ ଏହାକୁ ବିଶ୍ଳେଷଣ କରିବା କଷ୍ଟସାଧ୍ୟ ଅଥବା ଅସମ୍ଭବ । ତଥାପି ବିନିଯୋଗ ହେବା ଗୁଣ ବୋଲି ଏକ ବିଶିଷ୍ଟ ଗୁଣ ରହିଛି—ଏକଥା ଗ୍ରହଣ କରିନେବାକୁ କାହାର ପ୍ରଲୋଭନ ହେବ ନାହିଁ କହିଲେ ଚଳେ । କିନ୍ତୁ ଅନ୍ୟତ୍ର ଆମର ପ୍ରତୀକ ପଦ୍ଧତିରେ ସଙ୍କୁଚନର ସୁବିଧା ଲାଭ କରିବା ବିଷୟରେ ସାଧାରଣତଃ ଏ ପ୍ରକାର ପ୍ରଲୋଭନର ବଶବର୍ତ୍ତୀ ହେବାକୁ ମୂଲ୍ୟ ସ୍ୱରୂପ ଦେବାକୁ ହୁଏ ।

ଖ ଶ୍ରେଣୀର ଅନ୍ୟାନ୍ୟ ସଂଜ୍ଞା ମଧ୍ୟ ବିଶ୍ଳେଷଣରେ ଏପ୍ରକାର ସମସ୍ୟା ସୃଷ୍ଟି କରିଥାଏ । ୮ମ ଧରଣର ପନ୍ଥାଗୁଡ଼ିକ ଅର୍ଥାତ୍ ବିଶ୍ୱାସ (୬ଷ୍ଠ ଓ ୭ମ) ଅଥବା ସମର୍ଥକ (୮ମ)ର ମାନସିକ ପ୍ରବୃତ୍ତି ଗୁଡ଼ିକ ଯେଉଁ ପରିମାଣରେ ପରିସ୍ଫୁଟ ହୁଏ, ତାହା ହେଉଛି ଏକ ଚିତ୍ତାକର୍ଷକ ବୈଶିଷ୍ଟ୍ୟ । ତାହା ପୁଣି ଏହି ମତଗୁଡ଼ିକ ଯେଉଁ କାରଣରୁ ମନସ୍ତାତ୍ତ୍ୱିକ (ଗ ଶ୍ରେଣୀର) ହୋଇ ପଡ଼େ, ତାହାକୁ ପ୍ରଦର୍ଶନ କରିବାରେ ସାହାଯ୍ୟ କରେ । ଏହିପରିଭାବେ ୧୭ଶ ସଂଜ୍ଞାଟି ୬ଷ୍ଠ ସଂଜ୍ଞାକୁ ଅନ୍ତର୍ଭୁକ୍ତ କରି ତତ୍ପରବର୍ତ୍ତୀ ବ୍ୟବହୃତ ହୋଇ ପଡ଼େ । ପୁଣି ୧୫ଶ ସଂଜ୍ଞାଟି ଅନେକାଂଶ ଉନ୍ନତ ଓ ସୁ ଅଭିବ୍ୟକ୍ତ ଆକାରରେ ୫ମ ସଂଜ୍ଞାଠାରୁ ଅଗ୍ରାଧିକାର ଲାଭ କରେ । ଏପ୍ରକାର ଅସ୍ଥିରତାର ନିୟନ୍ତ୍ରଣ ନିମନ୍ତେ ବିଶେଷଭାବେ ପ୍ରଣୀତ ପ୍ରତୀକମାନଙ୍କ ସଂଜ୍ଞା କ୍ଷେତ୍ରରେ ସୂକ୍ଷ୍ମ ନିର୍ଦ୍ଦେଶର ଏହି ପରିବର୍ତ୍ତନ ଗୁଡ଼ିକ ଲକ୍ଷ୍ୟ କରଯାଇପାରେ । ଏତଦ୍ଦ୍ୱାରା ସମସ୍ତ ଆଲୋଚନାରେ ଯେ ୪ର୍ଥ ସୂତ୍ରର ସର୍ବାଧିକ ଗୁରୁତ୍ୱ ରହିଛି ଏ ବିଷୟରେ ଆମେ ସଚେତନ ହୋଇଯାଉଁ । ସଂଜ୍ଞାରେ ଏକ ପ୍ରତୀକବାଦ ନିୟୋଜନର ସାର୍ଥକତା ଦ୍ୱ୍ୟର୍ଥକତା ନିରାକରଣରେ ଏକ ନିଶ୍ଚିତ ଅବଲମ୍ବନ ଯୋଗାଇବାରେ ନାହିଁ; ଏହା ରହିଛି ଏକ ଅନ୍ତର୍ଦୃଷ୍ଟି ଯୋଗାଇବାରେ । ଆମେ ପ୍ରତୀକଗୁଡ଼ିକର ବ୍ୟବହାର କରୁଥିବାରୁ କଣ ଘଟୁଛି, ସେ ବିଷୟରେ ଏହା ଏକ ଅନ୍ତର୍ଦୃଷ୍ଟି ଯୋଗାଏ । ଆହୁରି ମଧ୍ୟ ପ୍ରତ୍ୟେକ ଆଲୋଚନାରେ ଯେଉଁ ଅନୈଚ୍ଛିକ ପରିବର୍ତ୍ତନ ଗୁଡ଼ିକ ନିର୍ଦ୍ଦେଶରେ ଘଟିବା ଅବଶ୍ୟମ୍ଭାବୀ, ସେଗୁଡ଼ିକର ଆବିଷ୍କାର ଓ ସଂଶୋଧନ ନିମନ୍ତେ ଏହା ଉପାୟ ଯୋଗାଇଥାଏ ।

ଉପର୍ଯ୍ୟୁକ୍ତ ସଂଜ୍ଞାମାନଙ୍କ କ୍ଷେତ୍ରରେ, ଆମର 'ପ୍ରସ୍ଥାନ ବିନ୍ଦୁ' ଗୁଡ଼ିକ ଅର୍ଥାତ୍ ସହ ସମ୍ବେଦନ, ବିଶିଷ୍ଟ ସଂବେଗ, ବାଞ୍ଛନୀୟ ସାମାଜିକ ପରିଣତି ଇତ୍ୟାଦି ମଧ୍ୟ ସ୍ପଷ୍ଟତଃ ଜଟିଳ ସଂଜ୍ଞା ପ୍ରଣାଳୀମାନଙ୍କ ଦ୍ୱାରା ଲବ୍ଧ । ଯେଉଁ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟମାନଙ୍କୁ ନେଇ 'ସୁନ୍ଦର'ର ସଂଜ୍ଞାଗୁଡ଼ିକ ଦେବାର ସମ୍ଭାବନା ଥାଏ, ସେହି ଉଦ୍ଦେଶ୍ୟମାନଙ୍କ ନିମନ୍ତେ ଏହି ପ୍ରସ୍ଥାନ ବିନ୍ଦୁଗୁଡ଼ିକ ଗୃହୀତ ହେବା ବିଷୟରେ ମତୈକ୍ୟ ରହିଛି ବୋଲି ସ୍ୱୀକାର କରି ନିଆଯାଇ ପାରେ; ଏବଂ ଯେଉଁ ପଦ୍ଧତିଗୁଡ଼ିକ ଦ୍ୱାରା ଏପ୍ରକାର ମତୈକ୍ୟ ବିଧାନ କରାଯାଏ, ସେଗୁଡ଼ିକ 'ସୁନ୍ଦର' କ୍ଷେତ୍ରରେ ଯେପରି, 'ସଂବେଗ' ବା 'ସୁଖ' କ୍ଷେତ୍ରରେ ମଧ୍ୟ ତଦ୍ରୂପ ରହେ ।

ସମଭାବରେ, ଏହି ସଂଜ୍ଞାଗୁଡ଼ିକରୁ କିମ୍ବା ସେଗୁଡ଼ିକ ମଧ୍ୟରୁ ଯେକୌଣସି ଗୋଟିକରୁ ଆରମ୍ଭ କରି ଆମେ ସମକାଙ୍କ୍ଷ ପଦରୁ ଅସୁନ୍ଦରତା ମନୋହରତା, ମହନୀୟତା) ଅଥବା ଅନ୍ୟାନ୍ୟ ପ୍ରକାରରେ ସମ୍ବନ୍ଧାନ୍ୱିତ ପଦ (କଳାକାର କାର୍ଯ୍ୟ)ରେ ଉପନୀତ ହୋଇପାରୁଁ । ପୁଣି ଏଗୁଡ଼ିକର ସଂଜ୍ଞା ଦେବାକୁ ହେଲେ, ଆମେ ସୁନ୍ଦରର ଏବେ ଚିହ୍ନିତ କରାଯାଇଥିବା କ୍ଷେତ୍ରଗୁଡ଼ିକ ମଧ୍ୟରୁ କୌଣସି ଗୋଟିଏକୁ ପ୍ରସ୍ଥାନ ବିନ୍ଦୁରୂପେ ଗ୍ରହଣ କରିପାରୁ, ଯଥା—କାନ୍ତକାର୍ଯ୍ୟ ବିଜ୍ଞାନ ହେଉଛି ସୁନ୍ଦର ବସ୍ତୁର ଅଧ୍ୟୟନ; ଅଥବା କଳା ହେଉଛି ସୌନ୍ଦର୍ଯ୍ୟ ଉତ୍ପାଦନର ପ୍ରକାଶ୍ୟ ପ୍ରୟାସ । ପକ୍ଷାନ୍ତରରେ, ଆମେ ଯେଉଁ ପ୍ରସ୍ଥାନବିନ୍ଦୁରୁ ସୌନ୍ଦର୍ଯ୍ୟର ସଂଜ୍ଞା ଦେଇଥିଲୁଁ, ସେହିଠାକୁ ଫେରିଆସି ତାହାକୁ କେନ୍ଦ୍ରକରି ଏହି ପଦମାନଙ୍କର ସଂଜ୍ଞା ଦେଇପାରୁଁ ।

ଉପର୍ଯ୍ୟୁକ୍ତ ସଂଜ୍ଞାମାନଙ୍କ ଦ୍ୱାରା ନିର୍ଦ୍ଦେଶିତ ପରିସର କେତେକ କ୍ଷେତ୍ରରେ ସମବ୍ୟାପକ ହୋଇପାରେ, ଯଥା—୫ମ ଓ ୧୪ଶ; ଅଥବା ତାହା ଆଂଶିକତଃ ଅନ୍ୟୋନ୍ୟ ସମ୍ପାତୀ ହୋଇପାରେ, ଯଥା—୧୦ମ ଓ ୧୩ଶ; ଅଥବା ତାହା ପରସ୍ପର ବହିର୍ଭୂତ ମଧ୍ୟ ହୋଇପାରେ । ଏହି ଶେଷୋକ୍ତ ଅବସ୍ଥା ଏଠାରେ ଉଦ୍ଭବ ହୋଇନାହିଁ । ବସ୍ତୁତଃ ଏହା କୌଣସି ପ୍ରପନ୍ନବ ଆଲୋଚନାରେ ଉଦ୍ଭୂତ ହୁଏ ନାହିଁ । ଏ ପ୍ରକାର ଦୁଇଟି ପରିସର ପ୍ରକୃତରେ ସମବ୍ୟାପକ କି ଆଂଶିକତଃ ଅନ୍ୟୋନ୍ୟ ସମ୍ପାତୀ କି ପରସ୍ପର ବହିର୍ଭୂତ—ଏହି ପ୍ରଶ୍ନର ଉତ୍ତର ପରିସର ଦ୍ୱୟ ଅନ୍ତର୍ଗତ ନିର୍ଦ୍ଦେଶମାନଙ୍କ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ଦ୍ୱାରା ନିର୍ଦ୍ଧାରିତ ହେବା ଅବଶ୍ୟକ । ଅନ୍ୟୋନ୍ୟ ସମ୍ପାତୀ ହେବା କ୍ଷେତ୍ରର ପରିସର ବାସ୍ତବରେ ବିଜ୍ଞାନମାନଙ୍କ ବିଶିଷ୍ଟ ଅନୁଭୂତିମୂଳକ ସମସ୍ୟାମାନଙ୍କର ଉଦ୍ଭବ କରିଥାଏ । ଉଦାହରଣ ସ୍ୱରୂପ, ଲକ୍ଷ୍ୟ କରାଯାଇପାରେ ଯେ କେତେକ ସର୍ତ୍ତର ଯଥାଯଥ ପୂରଣ ଦ୍ୱାରାହିଁ କେବଳ ପ୍ରକୃତିର ଅନୁକରଣରୂପେ ସଂଜ୍ଞା ଦିଆଯାଇଥିବା ସୁନ୍ଦର ବସ୍ତୁଗୁଡ଼ିକ (୩ୟ) ଭ୍ରମ ସଞ୍ଜାତକରୂପେ ସଂଜ୍ଞା ଦିଆଯାଇଥିବା ସୁନ୍ଦର

ବସ୍ତୁଗୁଡ଼ିକ (୭ମ) ସହିତ ସଂପୂର୍ଣ୍ଣରୂପେ ସମ୍ପାଦିତ ହୋଇପାରେ । ଏହି ସଂଜ୍ଞାମାନଙ୍କ ମଧ୍ୟରୁ ଗୋଟିଏ ହେଉଛି ଯେ ସେଗୁଡ଼ିକ ମଧ୍ୟରୁ କୌଣସିଟି ୪ର୍ଥ ସଂଜ୍ଞାର ପରିସର ଅନ୍ତର୍ଭୁକ୍ତ ନ ହେବା ଉଚିତ । ଏ ପ୍ରକାର ସହ ସମ୍ବନ୍ଧ ଏବଂ ଯେଉଁ ସନ୍ଧାନୁଯାୟୀ ସେଗୁଡ଼ିକ ତଦ୍ରୂପ ହୁଅନ୍ତି, ତାହାର ଅନୁସନ୍ଧାନ ସୌଂଦର୍ଯ୍ୟ ବିଜ୍ଞାନ, ଏକ ବିଜ୍ଞାନ ହିସାବରେ, କରିଥାଏ ।

ସଂଜ୍ଞା ନିମନ୍ତେ ବ୍ୟାକରଣ ଦୃଷ୍ଟିରୁ ଏକ ବସ୍ତୁତମୂଳକ ଆକାର ବିଧାନ କରିବାର ସୁବିଧା ରହିଛି । ଏହିପରି ଭାବେ ବ୍ୟକ୍ତ ହେଲେ, ଆମର ବ୍ୟବହୃତ ପ୍ରତୀକମାନ ଉତ୍ଥାପିତ ସମସ୍ୟାଗୁଡ଼ିକୁ ଅସ୍ପଷ୍ଟ କରି ପକାଇବାର ସମ୍ଭାବନା ସର୍ବାପେକ୍ଷା ନ୍ୟୂନ । ଏତଦ୍ଦ୍ୱାରା ବାସ୍ତବ ଘଟଣା ସମ୍ବନ୍ଧୀୟ ପ୍ରଶ୍ନଗୁଡ଼ିକ ଅଭିବ୍ୟକ୍ତି ସଂଯୋଜକ ସଂକ୍ରାନ୍ତୀୟ ବିଭ୍ରାନ୍ତିକର ପ୍ରହେଳିକାରେ ପର୍ଯ୍ୟବସିତ ହୋଇଯାଏ ନାହିଁ ।

ଏହି ବିଭିନ୍ନ ପ୍ରଣାଳୀ ଲବ୍ଧ ପ୍ରତ୍ୟେକ କ୍ଷେତ୍ରର ଅନୁଶୀଳନ ତଥା ପରୀକ୍ଷଣ କରାଯାଇପାରେ । ଏଗୁଡ଼ିକ ମଧ୍ୟରୁ ଅଧିକାଂଶ କଳା-ଦର୍ଶନରେ ସୁପ୍ରସିଦ୍ଧ ନାମମାନଙ୍କ ସହ ସଂପୃକ୍ତ ।

ମନେକର, ଆମେ ଏହି କ୍ଷେତ୍ରଗୁଡ଼ିକ ମଧ୍ୟରୁ ଗୋଟିକୁ ବାଛିନେଇ ସେହି କ୍ଷେତ୍ରରେ ଆମର ଯଥାସାଧ୍ୟ ଅନୁଶୀଳନ କରିସାରିଛୁଁ । ଅନ୍ୟ କୌଣସିଟିକୁ ନ ବାଛି ସେହି କ୍ଷେତ୍ରଟିକୁ ବାଛିବାର କାରଣ କଣ ? ତତ୍ତ୍ୱଆଖ୍ୟାନ-ଦର୍ଶକର ମନୋବୃତ୍ତି ନେଇ ଆମେ ଯଦି ଏହି ବିଷୟଟିର ଅନୁଧ୍ୟାନ କରୁଁ, ତେବେ ଆମେ ଭ୍ରାନ୍ତିର ବଶବର୍ତ୍ତୀ ହେବା ସମ୍ଭବପର । ଗୋଟିଏ ଆବଦ୍ଧ କ୍ଷେତ୍ରର ସମସ୍ତ ଜୀବଙ୍କୁ ସରୀସୃପ ବୋଲି ଜାଣି ଜଣେ ତତ୍ତ୍ୱଆଖ୍ୟାନ-ଦର୍ଶକ ମତ୍ସ୍ୟାଗାରର ମତ୍ସ୍ୟମାନଙ୍କଠାରୁ ସେଗୁଡ଼ିକର ଜାତିଗତ ପାର୍ଥକ୍ୟ ସୂଚକ ସାଧାରଣ ଗୁଣ ଖୋଜିବସେ । ସେହିପରି ମନେକର ଆମେ ବର୍ଲିଂଟନ ହାଉସରେ ପ୍ରବେଶ କରୁ ଏବଂ ସେଠାରେ ସଂଗୃହୀତ ହୋଇ ରହିଥିବା ସମସ୍ତ ବସ୍ତୁ ସୁଂଦର ବୋଲି ଗ୍ରହଣ କରିନେଇ ସେଗୁଡ଼ିକର ଏକ ସାଧାରଣ ଗୁଣ ନିର୍ଦ୍ଧାରଣର ଚେଷ୍ଟାକରୁ । ସେଗୁଡ଼ିକ କିପରିଭାବେ ସେଠାକୁ ଅଣାଯାଇଛି, ସେ ସମ୍ବନ୍ଧରେ ସମାନ୍ୟ ବିଚାରକଲେ ମଧ୍ୟ ଆମ ମନରେ ଗଭୀର ସଂଦେହ ଜାତ ହୋଇଥାନ୍ତା; କିନ୍ତୁ ଅନେକ ସୌଂଦର୍ଯ୍ୟବିଜ୍ଞାନୀ ଯେପରି କରିଛନ୍ତି, ଆମେ ଯଦି ସେହିପରିଭାବେ ଦୃଢ଼ ପ୍ରଯତ୍ନ କରୁଁ, ତେବେ ଆମର ଆବିଷ୍କୃତ ଯେକୌଣସି ପ୍ରାସଙ୍ଗିକ ସାଧାରଣ ଗୁଣକୁ ସେଗୁଡ଼ିକର ଯଥାର୍ଥ ସାଧାରଣ ଗୁଣବୋଲି ଧରିନେବା ଅସମ୍ଭବ ନୁହେଁ ।

ଆମେ ଦେଖିଛୁଁ ଯେ 'ଉତ୍ତମ' ପରି ଏକ ସୁପ୍ରସିଦ୍ଧ ଶବ୍ଦ ମଧ୍ୟ କେତେଦୂର ଭ୍ରମଣଶୀଳ ହୋଇପାରେ । ସେହିପରି 'ସୌଂଦର୍ଯ୍ୟ' ଶବ୍ଦ ମଧ୍ୟ

ଏକ ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ କେନ୍ଦ୍ରରେ ଅଧିକ ଅବିଚଳିତ ଭାବେ ଆବଦ୍ଧ ରହିବ ନାହିଁ ବୋଲି ମନେକରିବା ପାଇଁ ଉତ୍ତମ କାରଣ ରହିଛି । ଆଲୋଚନାରେ ଆମେ ବସ୍ତୁତଃ ସର୍ବଦା ମନେରଖିବା ଆବଶ୍ୟକ ଯେ ଗୋଟିଏ ପ୍ରତୀକ ଅନିର୍ଦ୍ଦିଷ୍ଟଭାବେ ଅସଂଖ୍ୟ ପ୍ରକାରରେ ଗୌଣ ବ୍ୟବହାରମାନଙ୍କ ଅଧିକାରୀ ହୋଇପାରେ । 'ଅର୍ଥ'ର ସଂପ୍ରସାରଣ ବା ଶବ୍ଦାର୍ଥର ପରିବର୍ତ୍ତନ ନିମନ୍ତେ ଯେ କୌଣସି ସାଦୃଶ୍ୟ, ଯେ କୌଣସି ଉପମା ପର୍ଯ୍ୟାପ୍ତ କାରଣ ଯୋଗାଇପାରେ । ତାପରେ ପ୍ରତୀକଟି ଦୁଇ ବା ତତୋଽଧିକ ପ୍ରତୀକ ସ୍ୱରୂପ ହୋଇଯାଏ । ଯେଉଁ ନିର୍ଦ୍ଦେଶ୍ୟ ଗୁଡ଼ିକ ପରିବର୍ତ୍ତେ ଏହି ପ୍ରତୀକଟି ବ୍ୟବହୃତ, ସେଗୁଡ଼ିକର ଯେ ଏକ ସାଧାରଣ ପ୍ରାସଙ୍ଗିକ ଗୁଣ ରହିବ, ଏକଥା କୁହାଯାଇ ନପାରେ । ଜଣେ ଲୋକର ବିମାତା ଓ ତାହାର ପୁତ୍ରବଧୂର ନାମ ସମାନ ହୋଇଥିବାରୁ ସେହି ଲୋକର ବାତପୀଡ଼ା ଓ ଘୋଡ଼ାଦୌଡ଼ରେ ଆସକ୍ତିର ସେମାନେ ସହଭାଗିନୀ ହେବେ ବୋଲି ଅନୁମାନ କରିବା ପରି ଉପର୍ଯ୍ୟୁକ୍ତ ସାଧାରଣ ପ୍ରାସଙ୍ଗିକ ଗୁଣଥିବା ବିଷୟକ କଥାଟି ଅମୂଳକ ।

ସୌନ୍ଦର୍ଯ୍ୟ ପରି ଶବ୍ଦମାନଙ୍କର ସଂବେଗାତ୍ମକ ମୂଲ୍ୟ ହେତୁରୁ ଆଲୋଚନାରେ ସେଗୁଡ଼ିକୁ ସାଧାରଣତଃ ବ୍ୟବହାର କରି ଯାଇଥାଏ । ତେଣୁ ଯଦି ସର୍ବଦା ହୃଦୟଙ୍ଗମ କରି ନ ଯାଏ ଯେ ଏହିପରି ଭାବେ ବ୍ୟବହୃତ ଶବ୍ଦଗୁଡ଼ିକ ଅସଙ୍କେତସ୍ଥ, ଅର୍ଥାତ୍ ସଂମିଶ୍ରଣରେ କାର୍ଯ୍ୟକାରୀ ଅନ୍ୟ କୌଣସି ଉଦ୍ଦୀପକ ଶବ୍ଦ ନ ଥିବାରୁ ବିକଳ୍ପ ଶବ୍ଦଦ୍ୱାରା ସେଗୁଡ଼ିକ ପ୍ରତିସ୍ଥାପନୀୟ ନୁହନ୍ତି, ତେବେ ଗଣ୍ଡଗୋଳ ଉପୁଜିବା ଅନିବାର୍ଯ୍ୟ । ନିଃସନ୍ଦେହ ରୂପେ, ଏ ପ୍ରକାର ଅସଙ୍କେତସ୍ଥ ବ୍ୟବହାର ଗୁଡିକ ବାଚନିକ ଅସୁବିଧାର ବ୍ୟାଖ୍ୟା ଦେବାପାଇଁ ସୌଂଦର୍ଯ୍ୟ ସ୍ୱରୂପ ଏକ ମୌଳିକ ଗୁଣ ରହିଛି ( ୧ମ ସଂଜ୍ଞା ବୋଲି ଗ୍ରହଣ କରିନେବା ଦିଗରେ ଆମକୁ ଅଗ୍ରସର କରାଇ ନିଏ । ଉତ୍ତମ କ୍ଷେତ୍ରରେ ମଧ୍ୟ ଏହି ପ୍ରସ୍ତାବ ଦିଆଯାଇଛି ପଶ୍ଚାତ୍ତରେ, ଆମ ଦ୍ୱାରା ନିଃସୃତ ସଂଜ୍ଞାଗୁଡ଼ିକ ମଧ୍ୟରୁ କୌଣସି ଗୋଟିକରେ ଏକ ସଂକ୍ଷିପ୍ତ ପ୍ରତିସ୍ଥାପନୀୟ ଶବ୍ଦରୂପେ ସୌଂଦର୍ଯ୍ୟର ବ୍ୟବହାରକୁ ଯଦି ଅବ୍ୟାହତ ରଖା-ଯାଏ, ତେବେ ଏହି ପ୍ରଥା କେବଳ ଗୋଟିଏ ଦୃଷ୍ଟିରୁ ସମର୍ଥିତ ହୋଇପାରେ । ତାହା ହେଉଛି ଏକ ଶକ୍ତିସମ୍ପନ୍ନ ଶବ୍ଦ ମାଧ୍ୟମରେ ନିର୍ବାଚିତ ଅନୁଭୂତିକୁ ଅତୀବ ଗୁରୁତ୍ୱପୂର୍ଣ୍ଣ ବୋଲି ବିବେଚନା କରିବାର ସୂଚନା ଦେବା ନିମନ୍ତେ ଏକ ଉପାୟ ସ୍ୱରୂପ ଅଥବା ଏକ ଉପାଦେୟ ନିମ୍ନସ୍ତରୀୟ ସଂକ୍ଷିପ୍ତ ଅଭିବ୍ୟକ୍ତି ସ୍ୱରୂପ ଶବ୍ଦଟିକୁ ବ୍ୟବହାର କରିବା ।

ସଂଜ୍ଞାର କୌଣସି ସାଧାରଣ ପ୍ରବନ୍ଧ ନିମନ୍ତେ ଏକ ପରୀକ୍ଷା ମୂଳକ କ୍ଷେତ୍ର ଯୋଗାଇବା ବ୍ୟତୀତ ସୌଂଦର୍ଯ୍ୟ ସମସ୍ୟାର ବିଚାର ହେଉଛି ଭାଷାର ବିଭିନ୍ନ ଭୂମିକା ସମ୍ପର୍କୀୟ ପ୍ରଶ୍ନର ସମ୍ଭବତଃ ସର୍ବୋତ୍ତମ ଅବତରଣିକା । ଏହା ସୁପରିଜ୍ଞାତ ଯେ କଳାଗୁଡ଼ିକ ସହିତ ଯେଉଁମାନଙ୍କ ସମ୍ପର୍କ ସର୍ବାଧିକ ସାକ୍ଷାତ୍, ସେମାନେ କଳାର ଏକ ବୈଜ୍ଞାନିକ

ଅଧ୍ୟୟନ ଦ୍ୱାରା ତାହାର ହୃଦୟଗ୍ରାହିତା ବ୍ୟାହତ ହେବାର ଆଶଙ୍କା କରି ତଦ୍ରୂପ ଅଧ୍ୟୟନକୁ ପ୍ରାୟତଃ ନାପସଂଦ କରିଥାନ୍ତି । ଏହି ମତକୁ ଯଦିଓ ଟିକିଏ ପରୀକ୍ଷା କଲେ ଦେଖାଯିବ ଯେ ଭାଷା ବ୍ୟବହାର ସମ୍ପୃକ୍ତ ଏକ ଗଣ୍ଡଗୋଳର ଏହା ଏକ ବିଲକ୍ଷଣଯୁକ୍ତ ସୂଚନା । ସମସ୍ତ ଆଲୋଚନାରେ ଏହି ଗଣ୍ଡଗୋଳ ଏପରି ବ୍ୟତିକ୍ରମହିନ ଭାବେ ରହିଥାଏ ଯେ ଏହାର ସାର୍ବଜନୀନ ସ୍ୱୀକାର ପ୍ରତୀକବିଜ୍ଞାନ ପ୍ରଦତ୍ତ ସର୍ବାଧିକ ଗୁରୁତ୍ୱ ପୂର୍ଣ୍ଣ ଫଳମାନଙ୍କ ମଧ୍ୟରେ ଅନ୍ୟତମ ବୋଲି ମାନିବାକୁ ହିଁ ହେବ ।

କଳାମାନଙ୍କ ମଧ୍ୟରୁ କୌଣସି ଗୋଟିକ ସମ୍ବନ୍ଧରେ ଏକ ସମାଲୋଚନା-ସଂହିତାକୁ ଯଦି ଆମେ କୌଣସି ଗୋଟିଏ ବିଜ୍ଞାନ, ଯଥା-ପଦାର୍ଥ ବିଜ୍ଞାନ ବା ଶରୀର ବିଜ୍ଞାନ, ସମ୍ବନ୍ଧୀୟ ସମଭାବରେ ସ୍ୱୀକୃତ ଏକ ମନ୍ତବ୍ୟ-ସଂହିତା ସହିତ ତୁଳନା କରୁଁ, ତେବେ ସର୍ବୋତ୍ତମ ସମାଲୋଚକ ସୁଦ୍ଧା ଏପରି କେତେକ ବାକ୍ୟକୁ ପୁନଃ ପୁନଃ ପ୍ରୟୋଗ କରି ଥିବାର ଦେଖାଯିବ, ଯେଉଁଗୁଡ଼ିକୁ ଶରୀର ବିଜ୍ଞାନର ବାକ୍ୟ ଗୁଡ଼ିକୁ ବୁଝିବା ପ୍ରଣାଳୀରେ ବୁଝିବାକୁ ଚେଷ୍ଟା କଲେ ବୁଝା ପଡ଼ିବା ଅସମ୍ଭବ ହେବ । ଏହି ଅଭିଜ୍ଞତା ଆମକୁ ଅଭିଭୂତ କରି ପକାଇବା ସ୍ୱାଭାବିକ । ଲଂଗିନସ୍ କହିଥିଲେ, "ସୁଂଦର ଶବ୍ଦଗୁଡ଼ିକ ହେଉଛି ମନର ଯଥାର୍ଥ ଓ ସ୍ୱତନ୍ତ୍ର ଆଲୋକ ।" କଲରିଜଙ୍କ ମତରେ "ଯାହା ବସ୍ତୁର ଅଭ୍ୟନ୍ତରରେ ବର୍ତ୍ତମାନ, ଯାହା ଆକାର ଓ ରୂପ ମାଧ୍ୟମରେ ସକ୍ରିୟ ଓ ଯାହା ପ୍ରତୀକ-ମାନଙ୍କ ଦ୍ୱାରା ଆଲୋଚନାରତ, ତାହାକୁ, ଅର୍ଥାତ୍ ନାତୁରଜାଇସ୍ତ ବା ପ୍ରକୃତିର ପ୍ରାଣକୁ କଳାକାର ଅନୁକରଣ କରିବା ଆବଶ୍ୟକ ।" ଡକ୍ଟର ବ୍ରାଡଲେ ଲେଖିଛନ୍ତି, "କବିତା ହେଉଛି ଏକ ଆତ୍ମା । ଏହା କେଉଁଠୁ ଆସେ ଆମେ ଜାଣୁ ନାହିଁ । ଆମ ଆଦେଶରେ ଏହା କଥା କୁହେ ନା; ଆମ ଭାଷାରେ ଏହା ଉତ୍ତର ଦିଏ ନା । ଏହା ଆମର ଭୃତ୍ୟ ନୁହେଁ, ପ୍ରଭୁ ।" (୧) ଡକ୍ଟର ମେକେଲ ତ ଆହୁରି ଉଚ୍ଚକୋଟିର ସଂବେଗାତ୍ମକ ଭାଷା ପ୍ରୟୋଗ କରିଛନ୍ତି, "କବିତା ହେଉଛି ମୁଖ୍ୟତଃ ଏକ ପ୍ରବହମାନ ସତ୍ତା ବା ଶକ୍ତି । ଐତିହାସିକ ଦୃଷ୍ଟିରୁ ଏହା ହେଉଛି ଏକ ସମନ୍ୱିତ ଗତି, କ୍ରମିକ ଅଖଣ୍ଡ ଅଭିବ୍ୟକ୍ତିମାନଙ୍କ ଏକ ଶୃଙ୍ଖଳ । ହୋମରଙ୍କଠାରୁ ଆରମ୍ଭ କରି ଅଦ୍ୟାବଧି ପ୍ରତ୍ୟେକ କବି କୌଣସି ନା କୌଣସି ସ୍ତରରେ ଅଳ୍ପାଧିକ ପରିମାଣରେ କବିତାର ଗତି ଓ ଶକ୍ତିର ବାହକ ହୋଇଛନ୍ତି । ସେହି ମୁହୂର୍ତ୍ତରେ ତାଙ୍କ ଠାରେ କବିତା ହୋଇଛି, ଏକ ଦୃଶ୍ୟ ବସ୍ତୁ, ଏକ ଶ୍ରାବ୍ୟ ବସ୍ତୁ ଏକ ସଶରୀର ମୂର୍ତ୍ତି । ତାଙ୍କର ବର୍ତ୍ତମାନ କବିତାଗୁଡ଼ିକ ହେଉଛି ସେହି ଆଂଶିକ କ୍ଷଣସ୍ଥାୟୀ ଅବତାର ବିବରଣୀର ଅବଶେଷ ।········ କବିତାର ପ୍ରଗତି········ ଅମର ।" (୨)

(୧) Oxford Lectures on Poetry ପୃ ୨୭ ।
(୨) Lectures on Poetry ପୃ XI, XIII

ସମସ୍ତ ଅପଚଯ୍ୟ କରିବାକୁ ଗୃହୁଁ ନଥିବା ଯେ କୌଣସି ବାକ୍ୟ ରକ୍ତ ସଞ୍ଚାଳନର ବିବରଣୀ ପରି ଏକ ବିବରଣୀକୁ ଅର୍ଥକରନ। ତୃଳ୍ପି ଏହି ମନ୍ତବ୍ୟଗୁଡ଼ିକୁ ଅର୍ଥ କରିବାକୁ ଦୀର୍ଘସମୟ ଧରି ଚେଷ୍ଟା କରିବ ନାହିଁ । କିନ୍ତୁ ତଥାପି ଏଗୁଡ଼ିକ ଅବଧାନଯୋଗ୍ୟ ନୁହେଁ ବୋଲି ବିବେଚନା କରିବା ମଧ୍ୟ ଏକ ଭ୍ରାନ୍ତ ହେବ । ଏଗୁଡ଼ିକ ଯେ ଏକ ଭିନ୍ନ ପ୍ରକାର ଅଧ୍ୟୟନ ପ୍ରଣାଳୀ ଆବଶ୍ୟକ କରେ, ଏକଥା ସୁସ୍ପଷ୍ଟ । ଏ ବିଷୟରେ ଏଗୁଡ଼ିକର ଲେଖକମାନେ ସଚେତନ ଥାଆନ୍ତୁ କି ନ ଥାଆନ୍ତୁ, ଏଗୁଡ଼ିକ ଯେଉଁ ଶବ୍ଦ-ବ୍ୟବହାରର ଦୃଷ୍ଟାନ୍ତ ତାହା ବୈଜ୍ଞାନିକ ଶବ୍ଦ ବ୍ୟବହାରଠାରୁ ସଂପୂର୍ଣ୍ଣ ଭିନ୍ନ । କବିତାରୁ ସଂଗୃହୀତ ବାକ୍ୟମାନଙ୍କୁ ଯଦି ପରୀକ୍ଷଣରେ ବ୍ୟବହାର କରାଯାଏ, ତେବେ ଏବିଷୟଟି ଆହୁରି ଅଧିକ ସୁସ୍ପଷ୍ଟ ହେବ । ଯାହାହେତୁ ଏଠାରେ ନିଧାର୍ଯ୍ୟ ଯେ ଶବ୍ଦମାନଙ୍କ ବୈଜ୍ଞାନିକ ବ୍ୟବହାର ବା ଆମେ ଯାହାକୁ କହିବୁ, କଡ଼ାକଡ଼ିଭାବେ ପ୍ରତୀକାତ୍ମକ ବ୍ୟବହାର, ତାହାଠାରୁ ଭିନ୍ନ ଏକ ସାଧାରଣ ଓ ଗୁରୁତ୍ୱପୂର୍ଣ୍ଣ ବ୍ୟବହାର ମଧ୍ୟ ରହିଛି ।

ସାଧାରଣ ଦୈନନ୍ଦିନ ଜୀବନର କଥୋପକଥନରେ ପ୍ରତ୍ୟେକ ବାକ୍ୟାଂଶର ଗୋଟିଏ ନୁହେଁ, ଅନେକ ଭୂମିକା ଥାଏ । ଆମର ଶେଷ ପରିଚ୍ଛେଦରେ ଯେଗୁଡ଼ିକୁ ଆମେ ପାଞ୍ଚୋଟି ଶିରୋନାମରେ ଭାଗ କରିବା । କିନ୍ତୁ ଏଠାରେ ଏକ ଦ୍ୱୈତ ବିଭାଜନ ଅଧିକ ସୁବିଧାଜନକ । ତାହା ହେଉଛି **ପ୍ରତୀକାତ୍ମକ** ଓ ସଂବେଗାତ୍ମକ ବ୍ୟବହାର ଦୃଷ୍ଟିରୁ ଶବ୍ଦମାନଙ୍କ ବିଭାଜନ । ଶବ୍ଦମାନଙ୍କ ପ୍ରତୀକାତ୍ମକ ବ୍ୟବହାର କଲେ ବିବୃତି ହୁଏ । ଏହା ହେଉଛି ନିର୍ଦ୍ଦେଶମାନଙ୍କ ସଂରକ୍ଷଣ, ସମର୍ଥନ, ସଂସ୍ଥାପନ ଓ ଆଦାନପ୍ରଦାନ । ଶବ୍ଦମାନଙ୍କ ସଂବେଗାତ୍ମକ ବ୍ୟବହାର ହେଉଛି ଏକ ସରଳତର ବ୍ୟାପାର । ଏହା ହେଉଛି ସଂବେଦନ ଓ ଅଭିବୃତ୍ତିର ପ୍ରକାଶ ଓ ଉଦ୍ରେକ ନିମନ୍ତେ ଶବ୍ଦର ବ୍ୟବହାର । ଶବ୍ଦର ଏହି ବ୍ୟବହାର ସମ୍ଭବତଃ ଅଧିକ ଆଦିମ । ଆମେ ଯଦି କହୁଁ, "ଆଇଫେଲ୍ ଟାୱାରର ଉଚ୍ଚତା ୯୦୦ ଫୁଟ", ତେବେ ଆମେ ଏକ ବିବୃତି ଦେଉଛୁ; ଗୋଟିଏ ନିର୍ଦ୍ଦେଶକୁ ଲିପିବଦ୍ଧ କରିବା ବା ଅନ୍ୟକୁ ଜଣାଇ ଦେବା ପାଇଁ ଆମେ ପ୍ରତୀକର ବ୍ୟବହାର କରୁଛୁ । ଏଠାରେ ଏକ ଯଥାଯଥ ଅର୍ଥରେ ଆମର ପ୍ରତୀକ ସତ୍ୟ ବା ମିଥ୍ୟା ଏବଂ ତାହା ନୀତିଗତ ଭାବେ ଯାବ୍ୟସ୍ତ ଯୋଗ୍ୟ । କିନ୍ତୁ ଆମେ ଯଦି କହୁଁ "ବାଃ, ବାଃ !" ବା "କବିତା ହେଉଛି ଏକ ଆତ୍ମା" ବା "ମନୁଷ୍ୟ ହେଉଛି ଏକ କୀଟ", ତେବେ ସମ୍ଭବତଃ ଆମେ ବିବୃତି ଦେଉନାହୁଁ, ମିଥ୍ୟା ବିବୃତି ସୁଦ୍ଧା ଦେଉ ନାହୁଁ । ଏଠାରେ କେତେକ ଅଭିବୃତ୍ତିର କେବଳ ଉଦ୍ରେକ କରିବାକୁ ହିଁ ଆମେ ଶବ୍ଦଗୁଡ଼ିକୁ ବ୍ୟବହାର କରୁଥିବା ସର୍ବାଧିକ ସମ୍ଭବପର ।

ଦେଖାଯିବ ଯେ ଏହି ଦୁଇଟି ପୃଥକ୍ କ୍ରିୟା ମଧ୍ୟରୁ ପ୍ରତ୍ୟେକଟିର ଦୁଇଟି ଦିଗ ରହିଛି; ଗୋଟିଏ ବକ୍ତା ସମ୍ପୃକ୍ତ ଏବଂ ଅନ୍ୟଟି ଶ୍ରୋତା ସମ୍ପୃକ୍ତ । ପ୍ରତୀକାତ୍ମକ କ୍ରିୟାର ଅନ୍ତର୍ଭୁକ୍ତ ହୋଇ ନିର୍ଦ୍ଦେଶର ପ୍ରତୀକାନ୍ୱିତ କରଣ ଓ ଶ୍ରୋତାକୁ ପ୍ରଜ୍ଞାପନ ଉଭୟ କ୍ରିୟା ରହିଛି । ପ୍ରଜ୍ଞାପନ ଦ୍ୱାରା ଶ୍ରୋତାଠାରେ ଏକ ଅନୁରୂପ ନିର୍ଦ୍ଦେଶ ଜାତ କରାଯାଏ । ସମ୍ବେଗାତ୍ମକ କ୍ରିୟାର ଅନ୍ତର୍ଭୁକ୍ତ ହୋଇ ବକ୍ତାଠାରେ ସମ୍ବେଗ, ଅଭିବୃତ୍ତି, ଭାବଦଶା, ଅଭିପ୍ରାୟ ଇତ୍ୟାଦିର ପ୍ରକାଶ ଏବଂ ସେଗୁଡ଼ିକର ପ୍ରଜ୍ଞାପନ ଅର୍ଥାତ୍ ଶ୍ରୋତାଠାରେ ସେଗୁଡ଼ିକର ଉଦ୍ରେକ କରାଇବା ଏହି ଉଭୟ କ୍ରିୟା ରହିଛି । ପ୍ରକାଶ ଓ ଉଦ୍ରେକ ଉଭୟକୁ ବୁଝାଇବା ନିମନ୍ତେ କୌଣସି ସୁବିଧାଜନକ କ୍ରିୟାପଦ ନ ଥିବାରୁ ପରବର୍ତ୍ତୀ ଆଲୋଚନାରେ ସଂବେଗାତ୍ମକ କ୍ରିୟାର ଉଭୟ ଦିଗକୁ ବୁଝାଇବା ପାଇଁ ଆମେ 'ଉଦ୍ରେକ' ପଦର ବ୍ୟବହାର ପ୍ରାୟଶଃ କରିବୁଁ, କାରଣ ଏଠାରେ ଭୁଲ୍ ବୁଝାମଣାର ଆଶଙ୍କା ନାହିଁ । ଅନେକ କ୍ଷେତ୍ରରେ, ସଂବେଗାତ୍ମକ ଭାଷା ସାମାନ୍ୟ ଭିନ୍ନଭାବରେ ମଧ୍ୟ ବ୍ୟବହାର କରାଯାଇଥାଏ । ବକ୍ତାଠାରେ ଆଗରୁ ଗୋଟିଏ ସମ୍ବେଗ ରହିଛି ଏବଂ ତାହାକୁ ସେ ପ୍ରକାଶ କରିବାକୁ ଇଚ୍ଛା କରୁଛି; କେବଳ ଏହି କାରଣରୁ ସେ ଯେ ସମ୍ବେଗାତ୍ମକ ଭାଷାର ବ୍ୟବହାର କରେ, ଏକଥା ନୁହେଁ । ସେ ସଂବେଗାତ୍ମକ ଭାଷାର ବ୍ୟବହାର କରେ, ଯେତେବେଳେ ସେ ଏକ ସମ୍ବେଗ ଲାଭ କରିବାକୁ ଅଭିଳାଷ ରଖିଥାଏ ଏବଂ ତାହାର ଉଦ୍ରେକ ନିମନ୍ତେ ଏକ ଶବ୍ଦ ଅନ୍ୱେଷଣ କରୁଥାଏ । ପୁଣି ବକ୍ତା ଯେଉଁ ସଂବେଗର ଉଦ୍ରେକ କରିବାକୁ ଚେଷ୍ଟା କରୁଥାଏ, ତାହା ନିଜଠାରେ ଅନୁଭୂତ ହେବାର ଆବଶ୍ୟକତା ମଧ୍ୟ ଏଠାରେ ନାହିଁ ।

ଅନ୍ତତଃ ସମସ୍ତ ସଭ୍ୟ ବୟସ୍କ ବ୍ୟକ୍ତିଙ୍କ (୧) କ୍ଷେତ୍ରରେ ଏକଥା ସତ୍ୟ ଯେ ପ୍ରାୟ

(୧) କେବଳ ଶିକ୍ଷାମୂଳକ ଉଦ୍ଦେଶ୍ୟରେ ହେଲେ ସୁଦ୍ଧା, ଏହି ସୀମିତକରଣ ବାଞ୍ଛନୀୟ, କାରଣ କେତେକ ବିଶେଷଜ୍ଞଙ୍କ ମତରେ "ଗୋଟିଏ ଶ୍ରେଷ୍ଠ ଶିଶୁକୁ କଥା କହିଲାବେଳେ ବ୍ୟବହାର କରାଯାଉଥିବା ଶବ୍ଦମାନଙ୍କ ମଧ୍ୟରୁ ଶତକଡ଼ା ଅଣଶତଟି ଶବ୍ଦ ତାପାଇଁ ନିରର୍ଥକ, ତାହାକୁ କଥା କହିବା ଦ୍ୱାରା ତାହାପ୍ରତି ଦୃଷ୍ଟି ଦିଆଯାଉଥିବା କେବଳ ପ୍ରକାଶିତ ହେଉଛି ଏବଂ ଏଥିରୁ ସେ ଆନନ୍ଦ ପାଏ ।" ଆହୁରି ମଧ୍ୟ ନଅ କିମ୍ବା ସାତବର୍ଷ ବୟସ ହେବା ପୂର୍ବରୁ ଶିଶୁମାନେ "ଶବ୍ଦ ହେଉ ବା ଅନ୍ୟ କିଛି ହେଉ, ଅର୍ଥର ପ୍ରତ୍ୟକ୍ଷମୂଳକ ପ୍ରତୀକର ଅନୁଭୂତି ବିନା ଅର୍ଥକୁ ମନଃ ସମକ୍ଷରେ ଧରି ରଖିପାରନ୍ତି ନାହିଁ । ········ଏହି ହେତୁରୁ ଗୋଟିଏ ଶିଶୁକୁ ଅଳ୍ପସମୟ ପାଇଁ ସୁଦ୍ଧା ଶାନ୍ତଭାବରେ ବସିବାକୁ କହିଲେ, ତାହାର ସ୍ୱାଭାବିକ ଅଭିଳାଷ ଜାତ ହୁଏ ଯେ ସେ କିଛି କହନ୍ତା କିମ୍ବା ତାହାକୁ କିଛି କୁହାଯାଆନ୍ତା ।"—( W. E. Urwick, the Child's Mind, ପୃ ୯୫, ୧୦୨ ) ।

ସମସ୍ତ ଶବ୍ଦ ବ୍ୟବହାରରେ ସମ୍ଭବତଃ ନିର୍ଦ୍ଦେଶର କୌଣସି ଉପାଦାନ ସନ୍ନିବିଷ୍ଟ; ଏବଂ ଗୋଟିଏ ନିର୍ଦ୍ଦେଶ ଯଦି କେବଳ ସାଧାରଣଭାବେ ବସ୍ତୁବର୍ଗକୁ ନିର୍ଦ୍ଦେଶ କରୁଥାଏ, ତେବେ ତାହାକୁ ପ୍ରବେଶ କରାଇବା ସର୍ବଦା ସମ୍ଭବପର। ଆଲୋଚିତ କ୍ରିୟା ଦୁଇଟି ସାଧାରଣତଃ ଏକତ୍ର ସଂଘଟିତ ହୁଏ । କିନ୍ତୁ ତଥାପି ଯେ ଦୁଇଟି ନୀତିଗତଭାବେ ପୃଥକ୍ । ଯେପର୍ଯ୍ୟନ୍ତ ଶବ୍ଦଗୁଡ଼ିକ ସଂବେଗାତ୍ମକଭାବେ ବ୍ୟବହୃତ, ଯଥାଯଥ ଅର୍ଥରେ ସେଗୁଡ଼ିକର ସତ୍ୟତା ପ୍ରଶ୍ନ ସାକ୍ଷାତଭାବେ ଉଠି ନପାରେ । ପରୋକ୍ଷଭାବେ ଅବଶ୍ୟ, ଏହି ଯଥାଯଥ ଅର୍ଥରେ ସତ୍ୟ ତହିଁରେ ପ୍ରାୟଶଃ ସଂଶ୍ଳିଷ୍ଟ ଥାଏ । ବିବୃତି ଅର୍ଥାତ୍ ସତ୍ୟ ବା ମିଥ୍ୟା ହୋଇପାରୁଥିବା ପ୍ରତୀକାତ୍ମକ ବିନ୍ୟାସ ବହୁ କବିତାରେ ରହିଥାଏ । କିନ୍ତୁ ସେଗୁଡ଼ିକୁ ତନ୍ନିହିତ ସତ୍ୟ-ମିଥ୍ୟା-ମୂଲ୍ୟ ନିମନ୍ତେ ବ୍ୟବହାର କରାଯାଇ ନଥାଏ । ତାହା କରାଯାଇଥାଏ, ସେଗୁଡ଼ିକର ଗ୍ରହଣ ଦ୍ୱାରା ଉଦ୍ରିକ୍ତ ଅଭିବୃତ୍ତିମାନଙ୍କ ନିମନ୍ତେ । ଏହି ଉଦ୍ଦେଶ୍ୟରେ ଯାହା ସୌଭାଗ୍ୟକୁ ଘଟିଥାଏ, ବା ଯାହା ନିଜ କାର୍ଯ୍ୟର ଅଂଶ ସ୍ୱରୂପ କବି ବରଂ ଘଟାଇଥାନ୍ତି, ତାହା ହେଉଛି କବିତାଟିକୁ ଗ୍ରହଣ କରିନେବା ନିମନ୍ତେ ସେଗୁଡ଼ିକର ସତ୍ୟ ବା ମିଥ୍ୟା ହେବା ଉପରେ ଆଦୌ ନିର୍ଭର କରିବାକୁ ପଡ଼େନା । ଯଦି ଉଦ୍ଦିଷ୍ଟ ଅଭିବୃତ୍ତି ବା ସଂବେଦନର ଉଦ୍ରେକ ହେଉଥାଏ, ତେବେ ଏ ପ୍ରକାର ଭାଷାର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ କ୍ରିୟା ସମାହିତ; ଏବଂ ଶବ୍ଦମାନଙ୍କ ପ୍ରତୀକାତ୍ମକ କ୍ରିୟା ଯାହା ବା ଥାଉ, ତାହା ହେଉଛି ଉଦ୍ରେକମୂଳକ କ୍ରିୟାର ନିମିତ୍ତ ମାତ୍ର ଓ ସହାୟକ ।

କ୍ରିୟାଦ୍ୱୟର ଏହି ସୂକ୍ଷ୍ମ ପାରସ୍ପରିକ ବିଜଡ଼ନ ହେଉଛି ଯେ ଦୁଇଟିର ପାର୍ଥକ୍ୟ ସାର୍ବଜନୀନଭାବେ ସ୍ୱୀକୃତି ଲାଭ ନ କରିଥିବାର ମୁଖ୍ୟ କାରଣ । ଆମର ଶବ୍ଦ ବ୍ୟବହାର ମୁଖ୍ୟତଃ ପ୍ରତୀକାତ୍ମକ କି ସଂବେଗାତ୍ମକ ତାହାର ସର୍ବୋତ୍ତମ ପରୀକ୍ଷା ନିମନ୍ତେ ଯେଉଁ ପ୍ରଶ୍ନ ଉତ୍ଥାପନ କରାଯିବା ଆବଶ୍ୟକ, ତାହା ହେଉଛି; "ସାଧାରଣତଃ ଯଥାଯଥ ବୈବେଚିତ ବୈଜ୍ଞାନିକ ଅର୍ଥରେ ତାହା ସତ୍ୟ କିମ୍ବା ମିଥ୍ୟା କି ?" ଯେଉଁଠାରେ ଏହି ପ୍ରଶ୍ନ ପ୍ରାସଙ୍ଗିକ, ସେଠାରେ ଶବ୍ଦ-ବ୍ୟବହାର ପ୍ରତୀକାତ୍ମକ । ଯେଉଁଠାରେ ଏହି ପ୍ରଶ୍ନ ସ୍ପଷ୍ଟତଃ ଅପ୍ରାସଙ୍ଗିକ, ସେଠାରେ ଆମର ଉକ୍ତି ସଂବେଗାତ୍ମକ ।

କିନ୍ତୁ ଏହି ପରୀକ୍ଷା ପ୍ରଣାଳୀର ପ୍ରୟୋଗ କାଳରେ ଆମକୁ ଦୁଇଟି ସଂକଟ ପ୍ରତି ସାବଧାନ ରହିବାକୁ ହେବ । ଏକ ପ୍ରକାର ମନ ରହିଛି, ଯାହା ଯଦିଓ ସଂବେଗାତ୍ମକ ଭାଷା ବ୍ୟବହାର କରୁଥାଏ, ତଥାପି ଚିନ୍ତାକରି ଦେଖି ସେହି ଭାଷା ସଂବେଗାତ୍ମକ ବୋଲି ତାହା ନିଜେ ସ୍ୱୀକାର କରିପାରେ ନାହିଁ । ଉପର୍ଯ୍ୟୁକ୍ତ ପ୍ରଶ୍ନକୁ ଏ ପ୍ରକାର ମନ ସମସ୍ତ କ୍ଷେତ୍ରରେ ପ୍ରାସଙ୍ଗିକ ବୋଲି ବିବେଚନା କରିବ । ସାଧାରଣତଃ ଯେତେ ବୋଲି ମନେ କରାଯାଏ, ତହିଁରୁ ଯଥେଷ୍ଟ ଅଧିକ ସଂଖ୍ୟକ ପାଠକଙ୍କ ନିମନ୍ତେ

କବିତା ଏହି କାରଣରୁ ଅପାଠ୍ୟ । ଅପର ପକ୍ଷଟି ଅଧିକ ଗୁରୁତ୍ୱପୂର୍ଣ୍ଣ । ପ୍ରତୀକାତ୍ମକ ବିବୃତି କ୍ଷେତ୍ରର ଯଥାଯଥ ଅର୍ଥରେ ସତ୍ୟ ଓ ମିଥ୍ୟା (ସତ୍ୟ ପ୍ର) ସହିତ କେତେକ ପରିମାଣରେ ସାମଞ୍ଜସ୍ୟ ଥାଇ ଅନ୍ୟ କେତେକ ଅର୍ଥରେ ମଧ୍ୟ ସତ୍ୟ ଓ ମିଥ୍ୟା (ସତ୍ୟ ସ) ରହିଛି । ଏହା ସଂବେଗାତ୍ମକ ଉକ୍ତି କ୍ଷେତ୍ରରେ ପ୍ରଯୁଜ୍ୟ ହୁଏ । କଳାତ୍ମକ କିମ୍ବା କ୍ଷେତ୍ରରେ ସମାଲୋଚକମାନେ ପ୍ରାୟଶଃ ସତ୍ୟ ସଂ ପ୍ରୟୋଗ କରିଥାନ୍ତି । କେତେକ କ୍ଷେତ୍ରରେ ଏହାର ବିକଳ୍ପ ପ୍ରତୀକ ହେବ 'ହୃଦୟଗ୍ରାହୀ', ଅନ୍ୟ କେତେକ କ୍ଷେତ୍ରରେ ତାହା ହେବ 'ଅକୃତ୍ରିମ', ପୁଣି ଆହୁରି କେତେକ କ୍ଷେତ୍ରରେ ତାହା ହେବ 'ସୁନ୍ଦର' ଏବଂ ଏହିପରି ଆହୁରି ଅନେକ । ସତ୍ୟ ପ୍ର ଓ ସତ୍ୟ ସଂ ଯେ ଭିନ୍ନ ଭିନ୍ନ ପ୍ରତୀକ—ଏ ବିଷୟରେ ସଚେତନ ନଥାଇ ସାଧାରଣତଃ ଏହା କରାଯାଇଥାଏ । ଏତଦ୍‌ବ୍ୟତୀତ ସତ୍ୟର ଏକ ସଂପୂର୍ଣ୍ଣ ଉଦ୍ରେକମୂଳକ ବ୍ୟବହାର ମଧ୍ୟ ରହିଛି; ତାହା ହେଉଛି ଗ୍ରହଣ କରିବା ବା ପ୍ରଶଂସା କରିବା ମନୋବୃତ୍ତିର ଉଦ୍ଦୀପନ ପାଇଁ ଏହାର ବ୍ୟବହାର । ସେହିପରି ମିଥ୍ୟାର ଏକ ସଂପୂର୍ଣ୍ଣ ଉଦ୍ରେକମୂଳକ ବ୍ୟବହାର ରହିଛି; ତାହା ହେଉଛି ଅବିଶ୍ୱାସ କରିବା ବା ନିନ୍ଦା କରିବା ମନୋବୃତ୍ତିର ଉଦ୍ଦୀପନ ପାଇଁ ଏହାର ବ୍ୟବହାର । ଏହିପରିଭାବେ ବ୍ୟବହୃତ ହୋଇଥିବା କ୍ଷେତ୍ରରେ ଏହି ଶବ୍ଦଦ୍ୱୟ ଉଦ୍ରେକମୂଳକ ହୋଇଥିବାରୁ, କୌଣସି ବିକଳ୍ପ ଶବ୍ଦଦ୍ୱାରା ପ୍ରତିସ୍ଥାପନୀୟ ନୁହେଁ । ଯଦି ସେହିପରି ହୋଇଥାଏ, ତେବେ ତାହା ଆକସ୍ମିକ । ଯଦିଓ ଏକଥା ବିନା ଦ୍ୱିଧାରେ ସ୍ୱୀକାର କରାଯାଏ ଯେ ସତ୍ୟ ପ୍ର ଓ ସତ୍ୟ ସଂ ବାହ୍ୟତଃ ଏତେ ପରସ୍ପର ସଦୃଶ ଯେ ସେ ଦୁଇଟିର ଏକତ୍ର ବ୍ୟବହାର ସୁବିଧାଜନକ, ତଥାପି କାହିଁକି ଶବ୍ଦ ଦ୍ୱୟର ପ୍ରୟୋଗ ସ୍ଥଗିତ ରଖିବାକୁ ଅନିଚ୍ଛା ପ୍ରକାଶ ସାଧାରଣତଃ ହୋଇଥାଏ, ତାହା ଉପର୍ଯ୍ୟୁକ୍ତ ବିଷୟରୁ ବୁଝାପଡ଼ୁଛି । ଗୋଟିଏ ଶବ୍ଦ ଅନେକାର୍ଥକ ବୋଲି ସ୍ୱୀକାର କରାଯାଉଥିଲେ ସୁଦ୍ଧା, ତାହା ପ୍ରତି ଆମର ମମତା ରହିଥାଏ । ଏହା ଆଲୋଚନାର ଏକ ଅତ୍ୟନ୍ତ ସାଧାରଣ ବୈଶିଷ୍ଟ୍ୟ । ସାଧାରଣତଃ, ସେହି ଏକ ନିର୍ଦ୍ଦେଶର ଆଶ୍ରୟ ସ୍ୱରୂପ ବିକଳ୍ପ ପ୍ରତୀକ ଖୋଜି ପାଇବାରେ କୌଣସି ବାସ୍ତବ ଅସୁବିଧା ଅପେକ୍ଷା, ବରଂ ଶବ୍ଦଟିର ସଂବେଗାତ୍ମକ ଦକ୍ଷତା ହେତୁ ଅନେକାର୍ଥକ ଶବ୍ଦ ପ୍ରତି ଆମର ମମତା ଥାଏ । କିନ୍ତୁ ସର୍ବଦା ଏହା ହିଁ ଯେ ଏକମାତ୍ର କାରଣ, ତାହା ନୁହେଁ; ଆମର ଶେଷ ପରିଚ୍ଛେଦରେ ଶାବ୍ଦିକ ନିର୍ଭରଶୀଳତାର ଶକ୍ତି ବିଚାର କଲାବେଳେ ଏ ବିଷୟଟି ଆମେ ଉପଲବ୍ଧ କରିପାରିବା ।

ନିର୍ଦ୍ଦେଶର ଆଶ୍ରୟ ବା ବାହକ ସ୍ୱରୂପ ଶବ୍ଦ ଏବଂ ଅନୁଭୂତିର ପ୍ରକାଶକ ବା ଉଦ୍ଦୀପକ ସ୍ୱରୂପ ଶବ୍ଦ ଏହି ଦୁଇଟିର ଭୂମିକାଗତ ବୈଷମ୍ୟ ପ୍ରତି ଏବେ କିଛି ପରିମାଣରେ ଦୃଷ୍ଟି ଦେବା ଆରମ୍ଭ ହୋଇଛି; କିନ୍ତୁ ଏହା ଅଧିକାଂଶତଃ ଏକ ସମ୍ପୂର୍ଣ୍ଣ ବୈୟାକରଣିକ

ଦୃଷ୍ଟିକୋଣରୁ ହିଁ କରିଯାଉଛି । ଭାଷାବିଦ୍‌ମାନଙ୍କ ଏକ ବିଶିଷ୍ଟ ଲକ୍ଷଣ ହେଉଛି ଯେ ସେମାନେ ଭାଷା ପ୍ରଣାଳୀର ଆମର ଅନ୍ୟାନ୍ୟ ସମସ୍ତ କାର୍ଯ୍ୟକଳାପ ଉପରେ ପ୍ରଭାବକୁ ଅବହେଳା କରି ଯାଆନ୍ତି । ତେଣୁ ଯାହା କିଛି ଏ ପ୍ରକାର ଅଧ୍ୟୟନ କରିଯାଇଛି, ତାହାର ମୂଲ୍ୟ ବହୁ ପରିମାଣରେ ହ୍ରାସ ପାଇଛି । ଉଦାହରଣ ସ୍ୱରୂପ; ଜି, ଫନ୍, ଡେର ଗାବେ-ଲେନ୍‌ଜ୍ କହିଥିଲେ, "ଭାଷା ମନୁଷ୍ୟକୁ କେବଳ କୌଣସି ଏକ ବିଷୟ ପ୍ରକାଶ କରିବାକୁ ସାହାଯ୍ୟ କରେ ନା, ନିଜକୁ ମଧ୍ୟ ପ୍ରକାଶ କରିବାକୁ ସାହାଯ୍ୟ କରେ ।" କିନ୍ତୁ ତଥାପି ଭାଷାର କ୍ରିୟାମାନଙ୍କ ଏହି ପାରସ୍ପରିକ ବିଜଡ଼ନ ଭାଷାର ଯେଉଁ ତାର୍କିକ ତଥା ଆକାରଗତ ଚରମ ପରିଣତିର ଉଦ୍ଭବ କରେ, ତାହାକୁ ସେ କୌଣସି ଭାବେ ବିଚାର କରିଥିବା ପରି ମନେ ହୁଏ ନାହିଁ । ଏହି ବିଷୟ ଉପରେ ଲିଖିତ ସର୍ବାଧୁନିକ ଗ୍ରନ୍ଥ ଅଧ୍ୟୟନ କଲେ ଦେଖାଯିବ ଯେ ଭେନ୍‌ଡ୍ରିଜ ମଧ୍ୟ ତାଙ୍କର ଭାବମୂଳକ ଭାଷା ସମ୍ବନ୍ଧୀୟ ପରି-ଚ୍ଛେଦରେ ନୈୟାୟିକରଣର ଦୃଷ୍ଟିଭଙ୍ଗୀକୁ ସେହିପରି ସମ୍ପୂର୍ଣ୍ଣରୂପେ ବଜାୟ ରଖିଛନ୍ତି । ସେ କହନ୍ତି, "ତାର୍କିକ ଉପାଦାନ ଓ ଭାବମୂଳକ ଉପାଦାନ ଭାଷାରେ ସର୍ବଦା ସମ୍ମିଶ୍ରିତ ହୋଇ ରହିଥାଏ । ପାରିଭାଷିକ ଭାଷାଗୁଡ଼ିକ, ବିଶେଷତଃ ବୈଜ୍ଞାନିକ ଭାଷାଗୁଡ଼ିକ ସଂଜ୍ଞାଦ୍ୱାରା ନିବନର ବହିର୍ଭୂତ । ଏଗୁଡ଼ିକ ବ୍ୟତୀତ ଯେ କୌଣସି ଭାଷାର ଏକ ପ୍ରତ୍ୟୟର ଅଭିବ୍ୟକ୍ତି କଦାପି ଆବେଗବୃତ୍ତି-ରଞ୍ଜନ-ମୁକ୍ତ ନୁହେଁ ।" "ଏହି ରସବୃତ୍ତିଗୁଡ଼ିକ ଭାଷା ମାଧ୍ୟମରେ ବ୍ୟକ୍ତ ହୋଇ ନଥିଲେ, ସେଗୁଡ଼ିକ ଭାଷାତତ୍ତ୍ୱବିତ୍‌ର ଅନୁସନ୍ଧାନର ବିଷୟ ହୋଇ ରହେ ନାହିଁ । କିନ୍ତୁ ସାଧାରଣତଃ ସେଗୁଡ଼ିକ ଭାଷାର ବହିର୍ଭୂତ । ସେଗୁଡ଼ିକ ହାଲୁକା ବାଷ୍ପତୁଲ୍ୟ ଚିନ୍ତାର ଅଭିବ୍ୟକ୍ତିର ବ୍ୟାକରଣଗତ ଆକାର ପରିବର୍ତ୍ତନ ନ କରି ତଦୁପରି ଭାସମାନ ଅବସ୍ଥାରେ ଥାଏ" ଇତ୍ୟାଦି । ତାଙ୍କର ସିଦ୍ଧାନ୍ତ ଅନୁଯାୟୀ ଯେଉଁ ଦୁଇଟି ମୁଖ୍ୟ ପ୍ରକାରରେ ଭାଷାର ଭାବମୂଳକ ଦିଗ ଭାଷାତତ୍ତ୍ୱବିତ୍-ସଂପୃକ୍ତ ବିଷୟ ହୋଇ-ଯାଏ, ସେ ଦୁଇଟି ହେଉଛି ପ୍ରଥମତଃ ଶବ୍ଦ ବ୍ୟବହାର କ୍ରମରେ ତାହାର ପ୍ରଭାବ ଏବଂ ଦ୍ୱିତୀୟତଃ ଶବ୍ଦସମ୍ଭାର ମନୋନୟନ । ଭାବଗତ କାରଣରୁ ଅନେକ ଶବ୍ଦର ବ୍ୟବହାରକୁ ବାଦ ଦିଆଯାଏ ଅଥବା ଅବ୍ୟାହତ ରଖାଯାଏ । "ବ୍ୟାକରଣର ପରିବର୍ତ୍ତନଶୀଳତା ବିଷୟକୁ ବହୁପରିମାଣରେ ଭାବପ୍ରବଣତାର କ୍ରିୟା ମାଧ୍ୟମରେ ବ୍ୟାଖ୍ୟା କରିବାକୁ ହେବ । ଏକ ବ୍ୟାକରଣ ଶାସ୍ତ୍ର ପାଇଁ ତର୍କସମ୍ମତ ଆଦର୍ଶ ହେଉଛି, ପ୍ରତ୍ୟେକ କ୍ରିୟା ପାଇଁ ଗୋଟିଏ ଅଭିବ୍ୟକ୍ତି ରହିବା ଆବଶ୍ୟକ, ଏବଂ ପ୍ରତ୍ୟେକ ଅଭିବ୍ୟକ୍ତି ପାଇଁ ଗୋଟିଏ ମାତ୍ର କ୍ରିୟା ରହିବା ଆବଶ୍ୟକ । ଏହି ଆଦର୍ଶର ରୂପାୟନ ନିମନ୍ତେ ଗ୍ରହଣ କରି ନେବାକୁ ହେବ ଯେ ଭାଷା ହେଉଛି ବୀଜଗଣିତ ତୁଲ୍ୟ ସୁନିର୍ଦ୍ଦିଷ୍ଟ । ବୀଜଗଣିତରେ ଗୋଟିଏ ସୂତ୍ର ପ୍ରମାଣିତ ହୋଇ ଗଲେ, ତାହାକୁ ଯେ କୌଣସି କ୍ଷେତ୍ରରେ ପ୍ରୟୋଗ କଲେ ସୁଦ୍ଧା ତାହାର କାର୍ଯ୍ୟକାରିତାରେ କୌଣସି ପରିବର୍ତ୍ତନ ଘଟେ ନାହିଁ । କିନ୍ତୁ ବାକ୍ୟାଂଶଗୁଡ଼ିକ ବୀଜ-

ଗାଣିତକ ମୂଳ ନୁହେଁ । ଶବ୍ଦର ତାର୍କିକ ଅଭିବ୍ୟକ୍ତି ହବ୍ଦା ଭାବପ୍ରବଣତା ଦ୍ୱାରା ଆଚ୍ଛାଦିତ ଓ ଅନୁରଂଜିତ । ସେହି ଏକ ଶବ୍ଦସମଷ୍ଟିକୁ ଆମେ କଦାପି ସମଭାବରେ ଦୁଇଥର କହି ନ ପାରୁଁ । ସେହି ଏକ ଶବ୍ଦକୁ ମୂଳଗତ ପରିବର୍ତ୍ତନ ନ ଘଟାଇ ଆମେ କଦାପି ଦୁଇଥର ବ୍ୟବହାର କରି ନ ପାରୁଁ । ସର୍ବତୋଭାବେ ସମାନ ଦୁଇଟି ଭାଷାମୂଳକ ଘଟଣା କଦାପି ଘଟେ ନାହିଁ । ପରିସ୍ଥିତିଗୁଡ଼ିକ ନିରବଚ୍ଛିନ୍ନ ଭାବେ ଆମ ଭାବପ୍ରବଣତାର ଅବସ୍ଥାମାନଙ୍କୁ ପରିବର୍ତ୍ତନ କରିବା ହେଉଛି ଏହାର କାରଣ ।" (୧)

ଭାଷାର ବ୍ୟାପକତର ଦିଗର କେତେକ ବିଚାର ବୈୟାକରଣମାନଙ୍କଠାରୁ ଆଶା କରିବା ସମ୍ଭବତଃ ଅନୁଚିତ ହେବ । ନିଜର କଷ୍ଟସାଧ୍ୟ ଓ ପରିଶ୍ରମସାପେକ୍ଷ ବିଷୟ ବସ୍ତୁରେ ସେମାନଙ୍କ ଧ୍ୟାନ ପୂର୍ଣ୍ଣତଃ ନିୟୋଜିତ । ତଥାପି ଏହି ବିଷୟକ ଖଣ୍ଡିଏ ପୁସ୍ତକର ଆବଶ୍ୟକତା ରହିଛି । ଏପରି ଖଣ୍ଡିଏ ପୁସ୍ତକ ରଚିତ ହେବାର ସମ୍ଭାବନା ଥିବାରୁ କୌତୁରତ ତାଙ୍କର ପରିକଳ୍ପିତ "ଭାଷାଗତ ତର୍କର ସାର ସଂଗ୍ରହ" ପୁସ୍ତକ ପ୍ରଣୟନ ଯୋଜନାକୁ ପରିତ୍ୟାଗ କରିଥିଲେ । ଏ ପ୍ରକାର ଏକ ପୁସ୍ତକରୁ ଅଧିକ ଗବେଷଣାମୂଳକ ଅନୁସନ୍ଧାନ ଆଶା କରିଯାଇପାରେ । ଯାହା ହେଉ, ଏବେ ସୁଦ୍ଧା ଗୋଟିଏ କଥା ସତ୍ୟ ହୋଇ ରହିଛି—ଏମ୍ ଭେଣ୍ଡ୍ରିଜଙ୍କ ପରି ସୁପ୍ରସିଦ୍ଧ ଭାଷାବିତ୍‌ଙ୍କ ସମେତ ବହୁ ଭାଷାବିଦ୍ ରହିଛନ୍ତି, କିନ୍ତୁ ଆଶ୍ଚର୍ଯ୍ୟ ଜନକ ଭାବେ ଭାଷାତତ୍ତ୍ୱ-ଗବେଷକଙ୍କ ଅଭାବ ରହିଛି । (୨)

ଦାର୍ଶନିକ ଦିଗରୁ ମଧ୍ୟ ପ୍ରତୀକାତ୍ମକ ଓ ଉଦ୍ରେକମୂଳକ କ୍ରିୟାର ଏହି ଦ୍ୱୈତତାର ପରିକଳ୍ପନାତ୍ମକ ଅଧ୍ୟୟନ ବିଭିନ୍ନ ଛଦ୍ମବୃତ୍ତାର ଆଶ୍ରୟ ନେଇ ନିକଟ ଅତୀତରେ କରିଯାଇଛି । ସ୍ୱଜ୍ଞା, ପ୍ରଜ୍ଞା, ସଂବେଗ, ମୁକ୍ତି, ତର୍କ, ଅପେକ୍ଷିତା ପରି ସମସ୍ତ ଶବ୍ଦ ଆଲୋଚନାରେ ବିଭ୍ରମ ଓ ବୈଫଲ୍ୟ ସୃଷ୍ଟିର ସାମର୍ଥ୍ୟ ହେତୁ ପ୍ରସିଦ୍ଧି ଲାଭ କରି ସାରିଛି । କେତେକ

(୧) Le Langage ( ୧୯୨୨ ) ପୃ ୧୭୩, ୧୭୫, ୧୮୨ । ଇଂରାଜି ଅନୁବାଦ, Language ( ୧୯୨୪ ) ୨ୟ ଖଣ୍ଡ ୪ର୍ଥ ପରିଚ୍ଛେଦ ।

(୨) ଅଧ୍ୟାପକ Delacroix ଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଘଟିଛି ବୋଲି କୁହାଯାଇପାରେ । ସେ ତାଙ୍କର ( କଥିତ ଗ୍ରନ୍ଥ ) Le Langage et la Pensee ( ୧୯୨୪ ) ରେ ଏହି ବିଷୟର ଆଲୋଚନାକୁ ପର୍ଯ୍ୟାପ୍ତ ସ୍ଥାନ ଦେଇଛନ୍ତି । କିନ୍ତୁ ସେ ସମ୍ପୂର୍ଣ୍ଣତଃ ଶିକ୍ଷାଗତ ମନୋବୃତ୍ତି ନେଇ ସଂକେତାତ୍ମକ କ୍ରିୟାର ଆଲୋଚନା କରିଛନ୍ତି ଏବଂ ଆଲୋଚନାରେ ଏହାର ସୁଦୂରପ୍ରସାରୀ ପରିଣତି ବିଷୟ ଆଦୌ ବିଚାରକୁ ନେଇ ନାହାନ୍ତି ।

ପଦ ବା ଶବ୍ଦ ସମଷ୍ଟିର, ଯଥା—'ଜୀବନଶକ୍ତି' ବା 'ବିଶୁଦ୍ଧ ତାର୍କିକ ବିଶ୍ଳେଷଣ'... ପତାକା (୩) ବା ପ୍ରହାର ଦଣ୍ଡ ବା ଉଭୟ ରୂପେ ବ୍ୟବହୃତ ହେବାର ସାମର୍ଥ୍ୟ ରହିଛି । ସଂକଟରୁ ମୁକ୍ତ ରହି ଏ ପ୍ରକାର ଅଭିବ୍ୟକ୍ତିକୁ ବ୍ୟବହାର କରିବାକୁ ହେଲେ ଭାଷାର ଏହି ଦୁଇଟି କିମ୍ବା ପ୍ରତି ସତତ ଓ ଜାଗ୍ରତ ଧ୍ୟାନଦେବା ଆବଶ୍ୟକ । ଜବାଣ୍ଟର ସ୍ୱଭାବ ସମ୍ବନ୍ଧରେ ଅଜ୍ଞ ରହି ଆମ ଯନ୍ତ୍ରପାତିକୁ ଜବାଣ୍ଟମୁକ୍ତ କରିବାକୁ ଚେଷ୍ଟିତ ହେବା ବୃଥା । ସମ୍ଭବତଃ ଗଣିତଶାସ୍ତ୍ର ପୁଣି ସଂବେଗାତ୍ମକ ଜଟିଳତାରୁ ମୁକ୍ତ ନୁହେଁ । ଗଣିତର କେତେକ ଅଂଶ ଏଥିରୁ ମୁକ୍ତ ପରି ଜଣା ପଡେ । କିନ୍ତୁ ଗଣିତର ଭିତ୍ତିଭୂମିର ବିଚାର କଲାବେଳେ ଗଣିତଜ୍ଞମାନେ ଯେପରିଭାବେ ଅତି ସହଜରେ ରହସ୍ୟବାଦୀ ପାଲଟି ଯାଆନ୍ତି ("ଆଦୌ କୌଣସି ବସ୍ତୁ ନ ଥିଲେ ପୁଣି, ତଥାପି ୧୦୭ ଦ୍ୱାରା ବିଭାଜନୀୟ ହେବାର ଗୁଣ ରହିବ" ), ସେଥିରୁ ଯଥାର୍ଥ ପରିସ୍ଥିତି କଣ ବୁଝା ପଡୁଛି ।

ଭାଷାର ସଂବେଗାତ୍ମକ କିମ୍ବାର ଏହି ପ୍ରଚ୍ଛନ୍ନ ଆଲୋଚନାମାନଙ୍କ ମଧ୍ୟରୁ ଏକ ସୁବିଦିତ ଆଲୋଚନା ଜ୍ଞାନର ପ୍ରକୃତି ସମ୍ବନ୍ଧୀୟ ବେର୍ଗସଁଙ୍କ ମତକୁ କେନ୍ଦ୍ର କରି ଗଢି ଉଠିଛି । ଏକ ଆଧୁନିକ ବିବରଣୀର ଉଦ୍ଧାର କରି ଯାଉ, "ବେର୍ଗସଁଙ୍କ ମତାନୁଯାୟୀ ଦର୍ଶନର କାର୍ଯ୍ୟ ସତ୍ୟର ବ୍ୟାଖ୍ୟା ନୁହେଁ, ତାହାର ଜ୍ଞାନ । ଏଥି ନିମନ୍ତେ ଏକ ଭିନ୍ନ ପ୍ରକାର ମାନସିକ ପ୍ରୟାସର ଆବଶ୍ୟକତା ରହିଛି । ବିଶ୍ଳେଷଣ ଓ ବର୍ଗୀକରଣ ଆମର ସାକ୍ଷାତ୍ ଜ୍ଞାନକୁ ପରିବର୍ଦ୍ଧିତ କରିବା ପରିବର୍ତ୍ତେ ବରଂ ତାହାକୁ ନ୍ୟୂନ କରେ ।" (୧) ବେର୍ଗସଁ ନିଜେ କହିଛନ୍ତି, "ଆମର ଜ୍ଞାନ କାର୍ଯ୍ୟ ତୁଳାଉଥିବା ବିଷୟର ଅସୀମ ସୁବିସ୍ତୃତ ପରିସରରୁ ଯେଉଁଗୁଡ଼ିକ ବସ୍ତୁମାନଙ୍କ ଉପରେ ଆମ କାର୍ଯ୍ୟ ସହିତ ସଂପୃକ୍ତ, ସେଗୁଡ଼ିକୁ ବାସ୍ତବ ଜ୍ଞାନ ରୂପେ ପରିବର୍ତ୍ତିତ କରିବାକୁ ଆମେ ମନୋନୀତ କରି ନେଇଛୁ ଏବଂ ଅବଶିଷ୍ଟକୁ ଆମେ ଅବହେଳା କରି ଯାଉଛୁ ।" (୨) ତାଙ୍କ ଟୀକାକାର ପୁଣି କହିଛନ୍ତି, "ଘଟଣାଗୁଡ଼ିକର ବ୍ୟାଖ୍ୟା ନିମିତ୍ତ ଯେଉଁ ମନୋବୃତ୍ତି ଆବଶ୍ୟକ, ତାହା ସେଗୁଡ଼ିକୁ ଜାଣିବା ନିମିତ୍ତ ଆବଶ୍ୟକ ହେଉଥିବା ମନୋବୃତ୍ତି ବିରୋଧୀ । କେବଳ ଜାଣିବାର ଦୃଷ୍ଟି କୋଣରୁ ସମସ୍ତ ଘଟଣା ସମଭାବରେ ଗୁରୁତ୍ୱପୂର୍ଣ୍ଣ, ଏବଂ ସେଗୁଡିକ ମଧ୍ୟରେ ଆମେ ପାର୍ଥକ୍ୟ ବିଧାନ କରି ନ ପାରୁ । କିନ୍ତୁ ବ୍ୟାଖ୍ୟା ନିମନ୍ତେ କେତେକ ଘଟଣା ଅନ୍ୟ-ଗୁଡ଼ିକଠାରୁ ଅତ୍ୟନ୍ତ ଅଧିକ ପରିମାଣରେ ଗୁରୁତ୍ୱପୂର୍ଣ୍ଣ । ସୁତରାଂ ଆମେ ଯେତେବେଳେ

---

(୩) ତୁଳନା କର ନିତ୍ସେଙ୍କ ଯୁକ୍ତି, "ମୂଲ୍ୟ ସମ୍ପର୍କୀୟ ଶବ୍ଦମାନ ହେଉଛି ପତାକା ତୁଲ୍ୟ । ଏଗୁଡ଼ିକ ସେହି ସ୍ଥାନରେ ପ୍ରୋଥିତ, ଯେଉଁଠାରେ ଏକ ନୂତନ ସ୍ୱର୍ଗୀୟ ସୁଖ— ଏକ ନୂତନ ସମ୍ବେଦନର ସନ୍ଧାନ ମିଳିଛି ।"

(୧) K. Stephen, The Misuse of Mind, ପୃ ୧୯ ।

(୨) Bergson, La Perception du Changement, ପୃ ୧୨ ।

କେବଳ ଜାଣିବା ପରିବର୍ତ୍ତେ ବ୍ୟାଖ୍ୟା ଦେବାକୁ ଇଚ୍ଛାକରୁଁ, ସେତେବେଳେ ବ୍ୟାବହାରିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଘଟଣାମାନଙ୍କ ଉପରେହିଁ ଆମେ ଆମର ଅବଧାନ ନିବଦ୍ଧ କରିବୁ, ଏବଂ ଅବଶିଷ୍ଟକୁ ଉପେକ୍ଷା କରି ଯାଉ ।" (୨)

ଆମେ ଯାହାକୁ ନିର୍ଦ୍ଦେଶ ବୋଲି କହୁଛୁ, ତାହା ଯେତେବେଳେ ପ୍ରତୀକ ପ୍ରଣାଳୀ ଦ୍ୱାରା ସମର୍ଥିତ ହୋଇଥାଏ, ତାହା ହୁଏତ ବେର୍ଗସଁ ବର୍ଣ୍ଣିତ ବ୍ୟାଖ୍ୟା ପ୍ରଣାଳୀର ନିବିଡ ଯୌଗାତ୍ମ୍ୟ ରହୁଛି । କିନ୍ତୁ ବେର୍ଗସଁଙ୍କ ସ୍ମୃତି ସମ୍ବନ୍ଧୀୟ ଅସାଧାରଣ ମତ ହେତୁରୁ ସେ ସ୍ମାରକ ଘଟଣାର ଉପଯୋଗ କରିବାକୁ ଅସମର୍ଥ ହୋଇଛନ୍ତି । କିନ୍ତୁ ଆମେ ଦେଖିଛୁ ଯେ ଏହି ପ୍ରକାର 'ଜ୍ଞାନ' କ୍ଷେତ୍ରରେ ସୁଦ୍ଧା ରହସ୍ୟବାଦରୁ ମୁକ୍ତ ରହିବାକୁ ହେଲେ ସ୍ମାରକ ଘଟଣାର ଉପଯୋଗ ଅପରିହାର୍ଯ୍ୟ ।

ଅପର ପ୍ରକାର ଜ୍ଞାନ ଅର୍ଥାତ୍ 'ଜ୍ଞାନର କାର୍ଯ୍ୟ ତୁଲାଉଥିବା ବିଷୟ' ହେଉଛି 'ସର୍ଜନାତ୍ମକ ଅନ୍ତର୍ବର୍ତ୍ତୀକାଳ ରୂପକ ଜ୍ଞାନ । କେବଳ ଏହି ପ୍ରକାର ଜ୍ଞାନକୁ ହିଁ 'ପ୍ରକୃତରେ ବାସ୍ତବ ସତ୍ତା'ର ଜ୍ଞାନରୂପେ ବେର୍ଗସଁବାଦୀମାନେ ସ୍ୱୀକାର କରନ୍ତି । କିନ୍ତୁ ବେର୍ଗସଁ ଯେପରିଭାବେ ଏହାକୁ ଉପସ୍ଥାପିତ କରିଛନ୍ତି, ଏହା ଅପରିହାର୍ଯ୍ୟଭାବେ ରହସ୍ୟାତ୍ମକ । ଏହାର ଯେ କୌଣସି ବର୍ଣ୍ଣନା ବର୍ଣ୍ଣନାକାରୀକୁ ଆତ୍ମବିରୋଧରେ ପକାଇବା ସୁନିଶ୍ଚିତ । ଆମେ ଦେଖି ପାରିଛୁ ଯେ ଶାସ୍ତ୍ରାନୁବର୍ତ୍ତୀ ପ୍ରତୀକାତ୍ମକ ବିଧିବିଧାନକୁ ଅସ୍ୱୀକାର କଲେ ଏହି ପରିସ୍ଥିତିର ଉଦ୍ଭବ ହୋଇଥାଏ । (୧) କିନ୍ତୁ ଏ ପ୍ରକାର ଜ୍ଞାନ ରହସ୍ୟାତ୍ମକ ହେବାର ଏହା ଏକମାତ୍ର କାରଣ ନୁହେଁ । ଅନ୍ୟ ଏକ କାରଣ ହେଉଛି ବାସ୍ତବରେ ଅଜ୍ଞାତ ହୋଇଥିବା 'ଜ୍ଞାନର କାର୍ଯ୍ୟ ତୁଲାଇବା ବିଷୟ'ର ଏକ ବିରାଟ ଜଗତର ସ୍ଥିତିରେ ଏକ ପ୍ରାରମ୍ଭିକ ଆସ୍ଥା ସ୍ଥାପନର ଏଠାରେ ଆବଶ୍ୟକତା ରହୁଛି । ତଥାପି ଯେଉଁମାନଙ୍କ ଏପରି ଆସ୍ଥା ନାହିଁ; ଅଥଚ ବେର୍ଗସଁବାଦୀଙ୍କ କେବଳ ଉପଦେଶମାନ ଯେଉଁମାନେ ଦତ୍ତ ବର୍ଣ୍ଣନାରେ ବାସ୍ତବରେ ବ୍ୟବହୃତ ପଦଗୁଡ଼ିକୁ ଉପେକ୍ଷା କରିଯାଆନ୍ତି ଏବଂ ତଦ୍‌ପରିବର୍ତ୍ତେ ଏକ 'ସମନ୍ୱୟ କ୍ରିୟା' ସମ୍ପାଦନ କରନ୍ତି । ସେମାନେ ମଧ୍ୟ ସହଜରେ ପ୍ରରୋଚିତ ହୋଇଯାଆନ୍ତି, ଯେ 'ଜ୍ଞାନର କାର୍ଯ୍ୟ ତୁଲାଉଥିବା ବିଷୟ କ'ଣ ସେମାନେ ବୁଝିପାରୁଛନ୍ତି, ଏବଂ ଏପରିକି ସେମାନେ ତାହାର ଅଧିକାରୀ ହେବା ମଧ୍ୟ ସମ୍ଭବପର ।

---

(୧) K. Stephen, କଥିତ ଗ୍ରନ୍ଥ, ପୃ ୨୨ ।

(୨) Mrs Stephen ଏହି ପ୍ରଶ୍ନ ସମ୍ବନ୍ଧରେ ଅତି ସୁସ୍ପଷ୍ଟଭାବେ ତାଙ୍କ ପୁସ୍ତକରେ ଲେଖିଛନ୍ତି । ତୁଳନା କର ବିଶେଷତଃ ପୃ ୫୭—୬୧ ।

ଅଗରୁ ଆମେ ଜୋରଦେଇ କହିଛୁ ଯେ, ନିର୍ଦ୍ଦେଶ ଅର୍ଥରେ ଜ୍ଞାନ ହେଉଛି ଏକ ଅତ୍ୟନ୍ତ ପରୋକ୍ଷ ବ୍ୟାପାର । ଆମେ ଏହା ମଧ୍ୟ ସୂଚିତ କରିଦେଇଛୁଁ ଯେ ଜଗତ ସହିତ ଆମର ମାନସିକ ସଂଯୋଗ ନିବିଡ଼ ନୁହେଁ କି ସଂପୂର୍ଣ୍ଣ ନୁହେଁ । ବିପରୀତ ପକ୍ଷେ, ଏହା ବରଂ ହେଉଛି ପରୋକ୍ଷ ତଥା ଆକସ୍ମିକଲ-ମୂଳକ । ଏକଥା ସ୍ୱୀକାର କରିବାକୁ ଆମ **ମନରେ** ପ୍ରାୟଶଃ ଏକ ଅପତ୍ତି **ଜାଗ୍ରତ** ହୋଇଥାଏ । କିନ୍ତୁ ଆମେ ଯଦି ଆମର ଅସଂଜ୍ଞାନମୂଳକ ସଂଯୋଗଗୁଡ଼ିକର ବିଚାର କରୁଁ, ତେବେ ଆମର ଏତଦ୍ ବିଷୟକ ଅନିଚ୍ଛା ଅପନୋଦିତ ହେବା ସମ୍ଭବପର । ଏହି ଅସଂଜ୍ଞାନମୂଳକ ସଂଯୋଗଗୁଡ଼ିକ ମଧ୍ୟ ଅଧିକାଂଶତଃ ପରୋକ୍ଷ, କିନ୍ତୁ ଏଗୁଡ଼ିକର ଯଥେଷ୍ଟ ଅଧିକ ପରିମାଣରେ ସଂପୂର୍ଣ୍ଣ ହେବାର ସାମର୍ଥ୍ୟଥାଏ । ଅନୁରୂପ ସ୍ଥୂଳ ନିର୍ଦ୍ଦେଶ ତୁଳନାରେ ଆମ ନିର୍ଦ୍ଦେଶ ଯେତେ ଅଧିକ ପରିମାଣରେ ସୁସ୍ପଷ୍ଟ ଓ ସୁବିବେଚିତ, ତନ୍ନିହିତ ପ୍ରସଙ୍ଗ ସେତେ ଅଧିକ ବୈଶିଷ୍ଟ୍ୟଯୁକ୍ତ ଓ ସୂକ୍ଷ୍ମ ପାର୍ଥକ୍ୟ ସମ୍ବଳିତ ଏବଂ ନିର୍ଦ୍ଦେଶିତ ବସ୍ତୁ ସହିତ ଆମର ସମ୍ବନ୍ଧ ସେତେ କ୍ଷୀଣ । ଯଥାଯଥ, ବିବେଚନାମୂଳକ ଓ ବିଶ୍ଳେଷଣାତ୍ମକ ଅବଧାନର ସ୍ୱଭାବ ହେଉଛି ଅବହିତ ବସ୍ତୁ ସହିତ ଆମ ସମ୍ବନ୍ଧକୁ କ୍ଷୀଣରୁ କ୍ଷୀଣତର କରିବା—ଏହି ବିଷୟରେ ବେର୍ଗସଁଙ୍କ ଯେତେ ଯାହା କହିବାକୁ ଅଛି, ସେ ସବୁକୁ ଆମେ ସ୍ୱୀକୃତ ଦେଇପାରିବା । ବେର୍ଗସଁ ଅବଧାନର ଏହି ସ୍ୱଭାବକୁ ସବଳୀକୃତ ତଥା ଅତିରଂଜିତ କରିବାରେ ଭାଷାର ଭୂମିକା ଉପରେ ମଧ୍ୟ ଯଥାର୍ଥ ଗୁରୁତ୍ୱ ଆରୋପ କରିଛନ୍ତି । କୌଣସି ଗୁରୁତ୍ୱ ନଦେଇ ଶରୀରକମାନଙ୍କ ସମ୍ବନ୍ଧରେ ଯଦି ଚିନ୍ତା କରାଯାଏ, ତେବେ ନିହିତ ପ୍ରସଙ୍ଗ ଅତ୍ୟନ୍ତ ଜଟିଳ ହୋଇପାରେ, କାରଣ ଏହି ଜୀବଗୁଡ଼ିକ ସହିତ ଆମର ପୂର୍ବ ଅଭିଜ୍ଞତାର ଏକ ବୃହତ୍ ଅଂଶ ଏଠାରେ କାର୍ଯ୍ୟକାରୀ ହେଉଛି । କିନ୍ତୁ ଠିକ୍ ଏହି ଜୀବଗୁଡ଼ିକୁ 'କ୍ଷୁଦ୍ର ହରିଣୀ' ରୂପେ ବିବେଚନା କରି ଯଦି ପାର୍ଥକ୍ୟମୂଳକ ଚିନ୍ତା କରାଯାଏ, ତେବେ ଆମର ପ୍ରସଙ୍ଗ ବୈଶିଷ୍ଟ୍ୟ-ଯୁକ୍ତ ହୋଇଯିବ । ଏବେ ଆମ ପ୍ରସଙ୍ଗରେ ଶରୀରକମାନଙ୍କ କେବଳ ସେହି ଗୁଣଗୁଡ଼ିକ ନିହିତ ରହିବା ଆବଶ୍ୟକ ହେବ, ଯାହା ସମ୍ପୃକ୍ତ ଶ୍ରେଣୀର ଅନ୍ୟ ଜୀବମାନଙ୍କ ସହିତ ସମାନ । ଅନ୍ୟ ଗୁଣଗୁଡ଼ିକ ବିଚାର ବହିର୍ଭୂତ ହେବା **ଆବଶ୍ୟକ** ନୁହେଁ । କିନ୍ତୁ ସ୍ୱୀକାର କରାଯାଇପାରେ ଯେ ଏହି ଗୁଣଗୁଡ଼ିକ ଉପେକ୍ଷିତ ହୋଇଯିବାର ସମ୍ଭାବନା ଅତି ପ୍ରବଳ ହୋଇଥାଏ; ଏବଂ ଯଥାର୍ଥରେ ଦୁରୂହ ହୋଇଥିବା ଏକ ପାର୍ଥକ୍ୟମୂଳକ କ୍ରିୟାର ସମ୍ପାଦନ କାଳରେ ସେଗୁଡ଼ିକୁ ବାଦଦେବା ନିଶ୍ଚିତରୂପେ ସୁବିଧାଜନକ ହୁଏ ।

ବିଶ୍ଳେଷଣାତ୍ମକ ଅମୂର୍ତ୍ତ ଅବଧାନଠାରୁ ସର୍ବାଧିକ ଦୂରବର୍ତ୍ତୀ ଚେତନାର ଚରମ ସ୍ତରରେ ଆମର ଗୋଟିଏ ମାତ୍ର ମାନସିକ ଅବସ୍ଥା ନଥାଏ । ସମଗ୍ର ଅନୁଭବ

ସ୍ତରଙ୍କ ଓ ପରସ୍ପର ଅନୁଯାୟୀ ବିଭିନ୍ନ ମାନସିକ ଅବସ୍ଥା ସେହି ସ୍ତରରେ ସଶ୍ଳିଷ୍ଟ । ଏହି ଅବସ୍ଥା ତୁଳନାତ୍ମକଭାବେ ସରଳ ହୋଇପାରେ, ଯଥା—ଯେତେବେଳେ ଆମେ ପଶାକାଠି ପକାଇବା ପରି କୌଣସି ଏକ ସାଧାରଣ ପ୍ରତ୍ୟକ୍ଷମୂଳକ କାର୍ଯ୍ୟରେ ବ୍ୟାପୃତ; ଅଥବା ଏହା ମୁଖ୍ୟତଃ ସବେଗାତ୍ମକ ହୋଇପାରେ; ଅଥବା ମଟର-ସାଇକଲଚାଳକମାନଙ୍କ ଅସଙ୍ଗତ ଚାଳନା ହେତୁ ଆମେ ଜୀବନରକ୍ଷା କରିବାକୁ ଲମ୍ଫ ପ୍ରଦାନ କରିବା ବେଳେ ଏହା ଆମର ଶୁଦ୍ଧ, ସ୍ୱାଭାବିକ ଅନୁଭୂତିର ତରଳ ସ୍ପନ୍ଦନ ଅନୁଭବମୂଳକ ହୋଇପାରେ । କିନ୍ତୁ ଏହି ମୂର୍ତ୍ତି, ସାକ୍ଷାତ୍, ବୌଦ୍ଧିକ ପ୍ରଭାବ ବିରହିତ ଜୀବନ-ଦଶାମାନଙ୍କ ମଧ୍ୟରୁ କେତେକର ଏକ ନିଜସ୍ୱ ଜଟିଳତା ଓ ପ୍ରାଚୁର୍ଯ୍ୟ ରହିଛି, ଯାହା ସହିତ କୌଣସି ବୌଦ୍ଧିକ କ୍ରିୟା ସମକକ୍ଷ ହୋଇ ନପାରେ । ଏଗୁଡ଼ିକ ମଧ୍ୟରେ ସୌନ୍ଦର୍ଯ୍ୟାତ୍ମକ ଅନୁଭୂତିର ପ୍ରାଧାନ୍ୟ ରହିଛି । ବେର୍ଗସଁଙ୍କ ଅପରୋକ୍ଷତାର ପ୍ରସାରଣ, ଏବଂ ଅପରୋକ୍ଷତାର ପୁନର୍ଲାଭ କରିଥିବା ବ୍ୟକ୍ତିଙ୍କ ପାଇଁ ଅପେକ୍ଷମାଣ ବିଭବ ଉପରେ ତାଙ୍କର ଗୁରୁତ୍ୱ ଅର୍ପଣ ଯେଉଁମାନଙ୍କୁ ପ୍ରଭାବିତ କରିଛି, ସେମାନଙ୍କ ମଧ୍ୟରୁ ଅନେକେ ଗୋଟିଏ କଥା ସ୍ୱୀକାର କରିବେ । ତାହା ହେଉଛି, ସେମାନେ ସୌନ୍ଦର୍ଯ୍ୟମୂଳକ ଧ୍ୟାନରେ ଚରମ ସଫଳତା ଲାଭ କଲାବେଳେ ଯାହା ଘଟେ, ବେର୍ଗସଁ ତାହାର ହିଁ ବର୍ଣ୍ଣନା ଦେଉଥିଲେ ବୋଲି ସେମାନଙ୍କୁ ମନେ ହେବା ହେତୁ ସେମାନେ ବେର୍ଗସଁଙ୍କ ବକ୍ତବ୍ୟଦ୍ୱାରା ପ୍ରଭାବିତ ହୁଅନ୍ତି । ଅଳ୍ପାଧିକ ପରିମାଣରେ ପ୍ରଥାଗତ ହୋଇଥିବା ମନସ୍ତତ୍ତ୍ୱ ଦୃଷ୍ଟିକୋଣରୁ ଏହି ସହାସବେଦନମୂଳକ (୧) ଅବସ୍ଥା ମାନଙ୍କରେ କ'ଣ ଘଟୁଥିବାର ମନେ କରାଯାଇ ପାରେ, ତାହାର ପୁଙ୍ଖାନୁପୁଙ୍ଖ ଆଲୋଚନା ମଧ୍ୟକୁ ଆମେ ଏଠାରେ ପ୍ରବେଶ କରିପାରିବା ନାହିଁ । କିନ୍ତୁ ଏହି ଦୃଷ୍ଟିକୋଣରୁ ଯାହା ଏଠାରେ ନିର୍ବିବାଦୀୟ, ତାହା ହେଉଛି ଯେ ଧ୍ୟାନକାରୀର ଅତୀତ ଅଭିଜ୍ଞତାକୁ ଉପସ୍ଥାପିତ କରୁଥିବା ଏବଂ ତାହାଦ୍ୱାରା ଗଠିତ ହୋଇଥିବା ଆବେଗମାନ ଯେଉଁ ଅସାଧାରଣ ଭାବରେ ସକ୍ରିୟ ହୁଏ, ତଦୁପରି ଅଧିକ ଗୁରୁତ୍ୱପୂର୍ଣ୍ଣ ସହ ସବେଦନମୂଳକ ଅବସ୍ଥାମାନଙ୍କ ମୂଲ୍ୟ ନିର୍ଭରଶୀଳ ।

ଏହିପରିଭାବେ ଏକ ସମ୍ପୂର୍ଣ୍ଣ ନିର୍ଦ୍ଦିଷ୍ଟ ଅର୍ଥରେ ସୌନ୍ଦର୍ଯ୍ୟମୂଳକ ଧ୍ୟାନାବସ୍ଥାର ପୂର୍ଣ୍ଣତା ଓ ପ୍ରାଚୁର୍ଯ୍ୟ ପାଇଁ ପୃଷ୍ଠଭୂମିକା ହିଁ ଦାୟୀ । ଯଦିଓ ଏହି ନିର୍ଦ୍ଦିଷ୍ଟ ଅର୍ଥର ସବିଶେଷ ବିଶଦୀକରଣ ସମ୍ଭବପର ନୁହେଁ । ନିର୍ଦ୍ଦେଶ କ୍ଷେତ୍ରରେ ଆବଶ୍ୟକ ହେଉଥିବା

(୧) ଯେଉଁମାନେ ଏହି ବିଷୟରେ ଅଧିକ ଜାଣିବାକୁ ଇଚ୍ଛା କରନ୍ତି, ସେମାନଙ୍କ ପାଇଁ ଉପରେ କଥିତ ହୋଇଥିବା ଗ୍ରନ୍ଥ The foundations of Aesthetics ର ଅଧ୍ୟୟନ ସୁପାରିଶ କରାଯାଇ ପାରେ ।

ମୃତ ତୁଲ୍ୟ ଏବଂ ମୃତ ସଙ୍କୀର୍ଣ୍ଣୀକୃତ ଓ ବିଶେଷିତ ନୁହେଁ । ପରନ୍ତୁ ଏହା ସମ୍ବେଦନଶୀଳତାକୁ ପ୍ରସାରିତ ଓ ପରିବର୍ଦ୍ଧିତ କରିବା ପାଇଁ ମୁକ୍ତଭାବେ କାର୍ଯ୍ୟକରେ । ଏହିପ୍ରକାର ଅବସ୍ଥାମାନଙ୍କରେ ଆମେ ଅଧିକ ପ୍ରସାରିତ ଓ ଅଧିକ ପ୍ରକାରତାବିଶିଷ୍ଟ ଉଦ୍ଦୀପନ ପ୍ରତି ଅନୁକ୍ରିୟାଶୀଳ ହେଉଁ, କାରଣ ଯେଉଁ ଅବରୋଧଗୁଡ଼ିକ ସାଧାରଣତଃ ଆମର ଅନୁକ୍ରିୟା ଗୁଡ଼ିକୁ ନିୟନ୍ତ୍ରିତ କରେ, ସେଗୁଡ଼ିକ ଏହି ଅବସ୍ଥାରେ ତିରୋହିତ ।

ଆମେ ଯେଉଁ ଅବସ୍ଥାର ବର୍ଣ୍ଣନା ଦେଉଛୁ, ସେହି ଅବସ୍ଥାରେ ଶାନ୍ତି ଓ ସନ୍ତୋଷ ବୋଧ ଅନୁଭୂତ ହୁଏ । ଏକ ସଫଳ ବୌଦ୍ଧିକ ପ୍ରୟାସର ଅନୁବର୍ତ୍ତୀ ଶାନ୍ତିଠାରୁ ଏହା ଭିନ୍ନ ନୁହେଁ, ଯଦିଓ ଏହାର କାରଣ ସମ୍ପୂର୍ଣ୍ଣ ଭିନ୍ନ । ଆଂଶିକତଃ ଏହି ଅବସ୍ଥାର ଏହି ପ୍ରକାର କେତେକ ଅନୁଭୂତ ଗୁଣ ହେତୁ ଏବଂ ଆଂଶିକତଃ ଅନ୍ୟ କେତେକ କାରଣରୁ ଏଗୁଡ଼ିକୁ ପ୍ରାୟଶଃ ଜ୍ଞାନାବସ୍ଥା ବୋଲି ବର୍ଣ୍ଣନା କରାଯାଇଛି, ଏବଂ ଏଥିରେ ବିସ୍ମିତ ହେବାର କିଛି ନାହିଁ । ଯେଉଁ ବିଷୟରେ ଜଣେ ଦାର୍ଶନିକର ଏକ ଆବେଗମୟ ଅନୁରକ୍ତି ରହିଛି, ତହିଁରେ ସେ ନିୟୋଜିତ ଥିଲାବେଳେ ଯେଉଁ ଶବ୍ଦାବଳୀର ପ୍ରୟୋଗ ଦ୍ୱାରା ସେହି ବିଷୟର ଗୁରୁତ୍ୱ ପ୍ରତି ଦୃଷ୍ଟି ଆକର୍ଷଣ କରାଇବା ତଥା ବିଶ୍ୱାସ ଜାତ କରାଇବା ସର୍ବାଧିକ ସମ୍ଭବପର, ସେହି ସମସ୍ତ ଶବ୍ଦ ବ୍ୟବହାର କରିବାର ପ୍ରଲୋଭନକୁ ପ୍ରତିହତ କରିବା ତାଙ୍କ ପକ୍ଷରେ ପ୍ରାୟ ଅସମ୍ଭବ ହୋଇପଡ଼େ । ଏହିପରିଭାବେ ଯେ କୌଣସି ମାନସିକ ଅବସ୍ଥାରେ ଯେ କୌଣସି ବ୍ୟକ୍ତି ଅତ୍ୟଧିକ ପରିମାଣରେ ଅନୁରକ୍ତ ହେଲେ, ତାହାକୁ ସେ 'ଜ୍ଞାନ' ବୋଲି ଅଭିହିତ କରିବାର ସମ୍ଭାବନା ସର୍ବାଧିକ, କାରଣ ମନସ୍ତତ୍ତ୍ୱରେ ଅନ୍ୟ କୌଣସି ଶବ୍ଦର ଏ ପ୍ରକାର ଉତ୍ତେଜକ ଗୁଣ ନାହିଁ । ପ୍ରଥାଗତ ଭାବେ ଯାହାକୁ ଜ୍ଞାନ କୁହାଯାଏ, ତାହାଠାରୁ ଯଦି ଏହି ମାନସିକ ଅବସ୍ଥା ଅତ୍ୟନ୍ତ ଭିନ୍ନପ୍ରକାର ହୋଇଥାଏ, ତେବେ ଏହି ନୂତନ "ଜ୍ଞାନ"କୁ ପୁରାତନ ଜ୍ଞାନ ବିରୋଧରେ ଉପସ୍ଥାପିତ କରି ଏହାକୁ ଏକ ଉନ୍ନତ ଅଧିକ ସାତ୍ତ୍ୱିକ ଓ ଅଧିକ ମୌଳିକ ସ୍ୱଭାବ ବିଶିଷ୍ଟ ବୋଲି ପ୍ରଶଂସା କରାଯାଏ । ସୌନ୍ଦର୍ଯ୍ୟ ବୋଧ ଉପରେ ଏହି ସାମୟିକ ଆକ୍ରମଣମାନ ଦର୍ଶନର ଇତିହାସରେ ସାଧାରଣ ଘଟଣା ହୋଇଯାଇଛି । କାଣ୍ଟଙ୍କ ଚୂଡ଼ାନ୍ତ ଦୃଷ୍ଟାନ୍ତରେ ଏବଂ ଆଦର୍ଶବାଦ ଦ୍ୱାରା କରାଯାଇଥିବା ସୌନ୍ଦର୍ଯ୍ୟବୋଧର ଅନ୍ତର୍ଭୁକ୍ତୀକରଣ ପ୍ରୟାସରେ ଏହି ବିଷୟର ଆଧୁନିକ ଉଦାହରଣମାନ ରହିଛି ।

ଯେତେବେଳେ ବିପରୀତ ଅର୍ଥ ଜ୍ଞାପକ ଶବ୍ଦ ସମୂହର ବ୍ୟବହାର ଜନିତ ସମସ୍ୟା-ଗୁଡ଼ିକ ଦୂରୀଭୂତ ହେବ, ଏବଂ ବେର୍ଗସଁବାଦୀମାନେ ଯେଉଁ ନୂତନ ସ୍ୱର୍ଗ ଓ ନୂତନ ପୃଥିବୀର ପ୍ରଲୋଭନକୁ ଦୁର୍ବଳଭାବେ ପ୍ରଦର୍ଶନ କରନ୍ତି, ତାହାର ପ୍ରାପ୍ତିର ମିଥ୍ୟା ଆଶା

ନିଶ୍ଚିତ୍ୟଙ୍କ ହେବ, ସେତେବେଳେ କଷ୍ଟୋପଲ୍ଳବ ଯେ 'ଜ୍ଞାନ' ଶବ୍ଦର ପ୍ରତୀକାତ୍ମକ— ସଂବେଗାତ୍ମକ ଦ୍ୱୈତଭୂମିକାକୁ ବୁଝିବା ଦ୍ୱାରାହିଁ ସ୍ୱଜ୍ଞାବାଦୀ—ବୁଦ୍ଧିବାଦୀ ସଂଘର୍ଷର ବିବାଦୀୟ ବିଷୟର ସମାଧାନ କରି ଯାଇପାରିବ । ଏହିପରି ଏକ ପ୍ରସ୍ତାବ ଦେବା ଉପର୍ଯ୍ୟୁକ୍ତ କାରଣମାନଙ୍କ ଦୃଷ୍ଟିରୁ ଯୁକ୍ତିଯୁକ୍ତ । 'ଜ୍ଞାନର କାର୍ଯ୍ୟରୁ ଜାତ ଥିବା ବିଷୟ' ପ୍ରତୀକାତ୍ମକ ଅର୍ଥରେ ଜ୍ଞାନ ନୁହେଁ ବୋଲି କହିବା ଦ୍ୱାରା ଏହି ନାମଯୁକ୍ତ ଅବସ୍ଥାର କୌଣସିଭାବେ ମୂଲ୍ୟ ହ୍ରାସ କରିଯାଉ ନାହିଁ । (ଏଠାରେ ଗୃହୀତ ମତାନୁସାରେ ଏହା ଏକ ଅବସ୍ଥା ବା ଅବସ୍ଥାସମଷ୍ଟି, ଯହିଁରେ ବିଶେଷତଃ ଉଦ୍ଦୀପନ ପ୍ରତି ମୁକ୍ତ ଅନୁକ୍ରିୟା ସମ୍ଭବପର ହୁଏ ) । ଏହା ଏକ ନୀତିର ପ୍ରସ୍ତାବ ମାତ୍ର ଏବଂ ଯେଉଁମାନେ ଭାଷାର କାର୍ଯ୍ୟ ସମ୍ବନ୍ଧରେ ସଚେତନ, ସେମାନେ ସମସ୍ତେ ଏହାକୁ ସମର୍ଥନ କରିବେ । ଯାହାଠି ହେଉଛି ଯେଉଁ ଆଲୋଚନାରେ ପ୍ରତୀକାତ୍ମକ ବିବୃତିର ଅନ୍ୟ ସମସ୍ତ ବିବୃତିର ପୂର୍ବବର୍ତ୍ତୀ ବୋଲି ଗୃହୀତ, ସେଠାରେ ପ୍ରତୀକାତ୍ମକ ଦୃଷ୍ଟିରୁ କୌଣସି ଅସୁବିଧା ଜାତ ନହେବା ସୁନିଶ୍ଚିତ ହୋଇଥିବା କ୍ଷେତ୍ରରେ ହିଁ କେବଳ ପଦମାନଙ୍କ ଉଦ୍ଦୀପକ ସୁବିଧାର ଉପଯୋଗ କରାଯିବା ବିଧେୟ ।

କିନ୍ତୁ ଭାଷାର କାର୍ଯ୍ୟ ଦୁଇଟିର ଅନ୍ୟୋନ୍ୟ କ୍ଷେତ୍ରରେ ବ୍ୟାଘାତ ସୃଷ୍ଟିକୁ ସ୍ଥଗିତ ରଖିବାକୁ ହେଲେ, ସେ ଦୁଇଟିର ସ୍ୱଭାବ ସମ୍ବନ୍ଧରେ ଅଧିକ ସାଧାରଣ ସଚେତନତା ଆବଶ୍ୟକ । ବିଶେଷତଃ ସମସ୍ତ ବାଚନିକ ଛଦ୍ମରୂପ, ଯଦ୍ଦ୍ୱାରା ପ୍ରତ୍ୟେକଟି ଅପରରୂପେ ସମୟ ସମୟରେ ପରିଗଣିତ ହେବାର ଚେଷ୍ଟା ପରିଲକ୍ଷିତ ହୁଏ, ତାହା ଉଦ୍‌ଘାଟିତ ହେବା ଆବଶ୍ୟକ । ଯେ କୌଣସି ଗୋଟିଏ ବୈଜ୍ଞାନିକ ବିବୃତି ଅନ୍ୟ ଏକ ବୈଜ୍ଞାନିକ ବିବୃତି ଅନ୍ୟ ଏକ ବିବୃତି ଅପେକ୍ଷା ଅଧିକ ଅନୁପ୍ରେରଣାମୂଳକ ବା ଅଧିକ ଗାମ୍ଭୀର୍ଯ୍ୟପୂର୍ଣ୍ଣ 'ସତ୍ୟପ୍ରଦର୍ଶନ' କରାଇ ପାରିବ ବୋଲି ଛଳନା କରିବା ଅସମ୍ଭବ ହେବା ଉଚିତ । ତାହା ଅଧିକ ବ୍ୟାପକ ବା ଅଧିକ ଉପାଦେୟ ହୋଇପାରେ, ଏତିକି ମାତ୍ର ସମ୍ଭବପର । ଅନ୍ୟ ପକ୍ଷରେ, କବିତା ବା ଧର୍ମ ଯେତେ ଯେପରି 'ଜ୍ଞାନ' ପ୍ରଦାନ କରିବାକୁ ସମର୍ଥ, ସେହିପରିଭାବେ କହିବା ଅସମ୍ଭବ ହେବା ଉଚିତ, ବିଶେଷତଃ ଯେତେବେଳେ 'ଜ୍ଞାନ'କୁ ଏକ ପଦ ହିସାବରେ ଉକ୍ତସ୍ଥଳଗୁଡ଼ିକରୁ ଏପରି ଟାଣି ଓଟାରି ବ୍ୟବହାର କରାଯାଇଛି ଯେ ତାହାର ଆଉ ବିଶେଷ କାର୍ଯ୍ୟକାରିତା ନାହିଁ । ଆମେ ବର୍ତ୍ତମାନ ବିଚାର କରୁଥିବା ଭାଷାକ୍ରିୟା ଗଣ୍ଡଗୋଳର ସୁବିଧା ଧର୍ମଗୁଡ଼ିକ ଏତେ ନିର୍ଦ୍ଦିଷ୍ଟଭାବେ ନେଇଛନ୍ତି ଏବଂ ତାହା ଉପରେ ଏପରିଭାବେ ନିର୍ଭରଶୀଳ ହୋଇଛନ୍ତି ଯେ ସେଗୁଡ଼ିକର ବିକୃତ ଅଭିବୃଦ୍ଧି ସୁସ୍ପଷ୍ଟ ହୋଇଯାଉଛି । ସୀମିତ ତଥା ନିର୍ଦ୍ଦେଶିତ ନିର୍ଦ୍ଦେଶ ସହିତ ଗୋଟିଏ କବିତା ବା ଗୋଟିଏ ଧର୍ମର କୌଣସି ସମ୍ପର୍କ ନାହିଁ । ଏହା ଆମକୁ କୌଣସି ବିଷୟରେ କହେ ନାହିଁ, କହିବା ଉଚିତ ମଧ୍ୟ ନୁହେଁ । ଏହାର ଏକ ଭିନ୍ନ ଭୂମିକା ରହିଛି ଏବଂ ତାହା ସମଭାବରେ ଗୁରୁତ୍ୱପୂର୍ଣ୍ଣ ତଥା

ଅତ୍ୟନ୍ତ ପ୍ରୟୋଜନୀୟ । ତାହା ହେଉଛି ଏକ ଉଦ୍ଦୀପକ ବ୍ୟାପାର ସମ୍ପର୍କରେ ଏକ ଉଦ୍ଦୀପକ ପଦର ବ୍ୟବହାର । କବିତା ବା ଧର୍ମ ଯାହା କରେ ବା କରିବା ଉଚିତ, ତାହା ହେଉଛି ଅନୁଭୂତି ପ୍ରତି ଏକ ଯଥାଯଥ (୧) ମନୋଭାବର ଉଦ୍ରେକ । କିନ୍ତୁ 'ଯଥାଯଥ', 'ଉପଯୁକ୍ତ', 'ଯଥୋପଯୁକ୍ତ' ଦ୍ୱିତ ଶବ୍ଦଗୁଡ଼ିକ ଉତ୍ତେଜନା ରହିତ; ଏଗୁଡ଼ିକର ଉଦ୍ଦୀପକ ସାମର୍ଥ୍ୟ ସ୍ୱଳ୍ପ କିମ୍ବା ଶୂନ୍ । ତେଣୁ ଯେଉଁମାନେ କବିତା ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରନ୍ତି ଏବଂ ଯେଉଁମାନେ ତାହାର କୈନ୍ଦ୍ରିକ ଓ ନିର୍ଣ୍ଣାୟକ ମୂଲ୍ୟ ସର୍ବାଧିକ ପରିମାଣରେ ହୃଦୟଙ୍ଗମ କରିଛନ୍ତି, ସେମାନେ ଏପ୍ରକାର ଭାଷାକୁ କବିତା ବିଷୟ ନିମନ୍ତେ ଅନୁପଯୋଗୀ ବିବେଚନା କରି ତାହାର ବ୍ୟବହାରକୁ ନାପସନ୍ଦ କରନ୍ତି । ଉଦ୍ଦୀପନା ଦୃଷ୍ଟିରୁ ସେମାନେ ଯଥାର୍ଥ । କିନ୍ତୁ ଥରେ ଯଦି ଏହି କାର୍ଯ୍ୟ ଦ୍ୱୟର ପାର୍ଥକ୍ୟ ଯଥାର୍ଥରୂପେ ନିରୂପିତ ହୋଇଯାଏ, ତେବେ ଏକଥା ସୁସ୍ପଷ୍ଟ ହୋଇଯିବ ଯେ ଯେଉଁ ଉଦ୍ଦେଶ୍ୟରେ ଏପ୍ରକାର ଶବ୍ଦର ବ୍ୟବହାର କରାଯାଏ ଅର୍ଥାତ୍ କବିତାର କାର୍ଯ୍ୟର ଏକ ଯଥାଯଥ ପ୍ରତୀକାତ୍ମକ ବର୍ଣ୍ଣନା ଦେବା, ତାହା କବିତାର କାବ୍ୟିକ ବା ଉଦ୍ଦୀପକ ମୂଲ୍ୟାଙ୍କନର ବିରୋଧୀ ହୋଇ ନପାରେ । ବହୁ କାରଣରୁ (୨) କବିତା ହେଉଛି, ସମ୍ବେଗାତ୍ମକ ଭାଷାର ଚରମ ଆକୃତି ଏବଂ କବିମାନେ

---

(୧) 'ଯଥାଯଥ' ପରିବର୍ତ୍ତେ ଆମେ 'ମୂଲ୍ୟବାନ' ବୋଲି କହି ପାରିଥାନ୍ତୁ । କିନ୍ତୁ ଗୋଟିଏ ମନୋଭାବର ମୂଲ୍ୟ ଆଂଶିକତଃ ଅନ୍ୟାନ୍ୟ ସମ୍ଭବପର ମନୋଭାବ ଉପରେ ନିର୍ଭର କରେ; ଆଂଶିକତଃ ଏହା ନିର୍ଭର କରେ ଅନ୍ୟାନ୍ୟ ମନୋଭାବର ଅନ୍ୟାନ୍ୟ ପରିସ୍ଥିତିରେ ସମ୍ଭବପରତାକୁ ଉନ୍ମୁକ୍ତ ରଖିବାର ପରିମାଣ ଉପରେ । ତେଣୁ ଆମେ ଯଥାଯଥ ପଦର ବ୍ୟବହାର କରିଛୁ । କିନ୍ତୁ ସମସ୍ତ ପରିସ୍ଥିତିରେ ପ୍ରଯୋଜ୍ୟ ଯଥାର୍ଥ ମନୋଭାବର କୌଣସି ସଙ୍କୀର୍ଣ୍ଣ ସହିତା ଏହାର ତାତ୍ପର୍ଯ୍ୟରେ ନିହିତ କରାଯାଇ ନାହିଁ । ଏହି ଆଲୋଚନାର ସବୁଠି 'ମନୋଭାବ' ପଦକୁ ଏକ ବ୍ୟାପକ ଅର୍ଥରେ ବୁଝିବା ଉଚିତ । ଆବେଗଗୁଡ଼ିକୁ ଯେତେ ଗୁଡ଼ିଏ ପ୍ରଣାଳୀରେ କ୍ରିୟା ନିମନ୍ତେ ପ୍ରସ୍ତୁତ ରଖାଯାଇପାରେ, ସେହି ସମସ୍ତ ପ୍ରଣାଳୀ ଏହାର ଅର୍ଥର ଅନ୍ତର୍ଗତ । ଯେଉଁ ଅସାଧାରଣ ଅବସ୍ଥାଗୁଡ଼ିକରେ କୌଣସି କ୍ରିୟା ପ୍ରକଟିତ ହୁଏ ନାହିଁ, ଏଥିରେ ସେଗୁଡ଼ିକ ମଧ୍ୟ ଅନ୍ତର୍ଭୁକ୍ତ । ଏହି ଶେଷୋକ୍ତ ଅବସ୍ଥାଗୁଡ଼ିକୁ ପ୍ରାୟଶଃ 'ସୌନ୍ଦର୍ଯ୍ୟାତ୍ମକ ଭାବଦର୍ଶୀ' ବା 'ସୌନ୍ଦର୍ଯ୍ୟାତ୍ମକ ସମ୍ବେଗ' କୁହାଯାଇଥାଏ ।

(୨) ତୁଳନା କର, ଦଶମ ପରିଚ୍ଛେଦ, ପଦଟୀକା-ପରିଶିଷ୍ଟ ସୂଚିତ ପୃଷ୍ଠା Principles of Literary Criticisim, ପରିଚ୍ଛେଦ ୨୩-୨୫ ମଧ୍ୟ ଏଠାରେ ତୁଳନୀୟ ।

କବି ହିସାବରେ କେବଳ କାବ୍ୟିକ ବା ଉଦ୍ଦୀପକ ମୂଲ୍ୟର ନିର୍ଣ୍ଣୟନ ସହିତ ହିଁ ସମ୍ପୃକ୍ତ ।

ଆହୁରି ମଧ୍ୟ, **ଯଦି ଏହି କାର୍ଯ୍ୟ ଦୁଇଟି ମଧ୍ୟରେ ଗଣ୍ଡଗୋଳ କରିଦିଆ ନଯାଏ;** ତେବେ ଗୋଟିଏ କାର୍ଯ୍ୟର ବିନିଯୋଗ ଅପର କାର୍ଯ୍ୟର ବିନିଯୋଗରେ କୌଣସି ରକମର ବାଧା ଜାତ କରିବା ଅନିବାର୍ଯ୍ୟ ହେବ ନାହିଁ । କେତେକ ବ୍ୟକ୍ତି କବିତାକୁ ମର୍ଯ୍ୟାଦା ଦେଉଥିବାରୁ ବିଜ୍ଞାନ ସେମାନଙ୍କ ଚକ୍ଷୁଶୂଳ ହେବା (ଡି. ଏଇଚ୍. ଲରେନ୍ସ ଚିତ୍କାର କରି ଉଠିଥିଲେ—"ସୂର୍ଯ୍ୟ ଯାହା ହୋଇଥାଉ ନା କାହିଁକି, ଏହା ଏକ ଜ୍ୱଳନ୍ତ ବାଷ୍ପ ପିଣ୍ଡୁଳା ନିଧାର୍ଯ୍ୟରୂପେ ନୁହେଁ ), କିମ୍ବା ବୈଜ୍ଞାନିକମାନେ ପ୍ରଚଳିତ ସଭ୍ୟତାର ପ୍ରଭାବରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ରହିବା ଏକ ଅତ୍ୟନ୍ତ କ୍ଷୋଭକର ବ୍ୟାପାର ହେବ, କାରଣ ଏହା ଯେ କେତେଦୂର ଅନାବଶ୍ୟକ, ତାହା ଏବେ ଆମେ ବୁଝିପାରିଛୁ । ସଂବେଗାତ୍ମକ ଧାରଣାରୁ ବିଜ୍ଞାନ ନିଜକୁ ମୁକ୍ତ ରଖୁଛି ଓ ଆଧୁନିକ ପଦାର୍ଥ ବିଜ୍ଞାନ ଏପରି ଏକ ବିଷୟ ହୋଇ ବସୁଛି ଯେ ତହିଁରେ ମନୋବୃତ୍ତିର କୌଣସି ସ୍ଥାନ ନାହିଁ ପରି ମନେ ହେଉଛି । ସେହିପରି କବିତା ମଧ୍ୟ ଜ୍ଞାନ ଓ ପ୍ରତୀକାତ୍ମକ ସତ୍ୟତା ଭିତର ବ୍ୟାଧିଗ୍ରସ୍ତ ଧାରଣା ପରିହାର କରିବାଦ୍ୱାରା ପୁନଶ୍ଚ ତାହାର ସ୍ୱକୀୟ ମହତ୍ତ୍ୱପୂର୍ଣ୍ଣ ଅବସ୍ଥାକୁ ପ୍ରତ୍ୟାବର୍ତ୍ତନ କରୁଛି ପରି ମନେହେଉଛି । ବସ୍ତୁଗୁଡ଼ିକ ପ୍ରତି ଉପଯୁକ୍ତ ମନୋଭାବ ପୋଷଣ ନିମନ୍ତେ ସେଗୁଡ଼ିକ କଣ ଜାଣିବା ଆବଶ୍ୟକ ନୁହେଁ, ଏବଂ କଳା ଉଦ୍ରେକ କରିପାରୁଥିବା ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ମନୋବୃତ୍ତିଗୁଡ଼ିକର ବିଶେଷତ୍ୱ ହେଉଛି ସେଗୁଡ଼ିକର ଅନନ୍ୟ ସାଧାରଣ ବ୍ୟାପକତା । ଏପ୍ରକାର ମନୋବୃତ୍ତି ଗୁଡ଼ିକର ବର୍ଣ୍ଣନା ଓ ସମବିଧାନ ହେଉଛି ସୌନ୍ଦର୍ଯ୍ୟ ବିଜ୍ଞାନର କାର୍ଯ୍ୟ । ଯେଉଁ ବ୍ୟକ୍ତିମାନେ ନିଜ ଅଭିଜ୍ଞତାର ବ୍ୟାପକତା ତଥା ମୌକୁମାର୍ଯ୍ୟ ନିମନ୍ତେ ଏବଂ ଅପ୍ରାସଙ୍ଗିକ କ୍ରିୟାକଳାପରେ ବିନିଯୁକ୍ତ ହେବାରୁ ନିଜକୁ ମୁକ୍ତ ରଖି ପାରିଥିବା ହେତୁ ବିଚାରକ ହେବାପାଇଁ ସର୍ବାଧିକ ଯୋଗ୍ୟ, ସେହିମାନଙ୍କ ମତାମତ ଉପରେ ହିଁ ଏହି ମନୋବୃତ୍ତି ଗୁଡ଼ିକର ମୂଲ୍ୟାଙ୍କନ ଯେ ପରିଶେଷରେ ନିର୍ଭର କରିବା ସୁନିଶ୍ଚିତ, ଏ କଥାର ଉଲ୍ଲେଖ ଅନାବଶ୍ୟକ ।

●

# ଅଷ୍ଟମ ପରିଚ୍ଛେଦ

## ଦାର୍ଶନିକମାନଙ୍କ ଅର୍ଥ

ଆପଣ କଣ ପଢ଼ନ୍ତି, ହଜୁର ?— ପୋଲୋନିଅସ୍ ।
ଶବ୍ଦ, ଶବ୍ଦ, ଶବ୍ଦ,—ହ୍ୟାମଲେଟ୍ ।
"ହେ ଦୋଦିକାର ବ୍ୟୁସ୍ପକର ଶକ୍ତି,
ଆମେ ଯେଉଁ ଅର୍ଥକୁ ସୁଖ ପାଉଁ, ସେହି ଅର୍ଥ ଗ୍ରହଣ କରିବାକୁ ତୁମେ ସରଳ-ବିଶ୍ୱାସ ଦ୍ୱାରା ଅଧିକାର ପ୍ରାପ୍ତ ।"

ଏହାହିଁ ଗାଇଛନ୍ତି କବି । ଏବଂ ଏହି ଅନ୍ତର୍ଦୃଷ୍ଟିମୂଳକ ମନ୍ତବ୍ୟ ପର୍ଯ୍ୟବେକ୍ଷଣ ଦ୍ୱାରା ମିଥ୍ୟା ପ୍ରମାଣିତ ହୋଇ ନାହିଁ । ଧାରଣା ଜନ୍ମିପାରେ ଯେ ତର୍କବିଦ୍ ଓ ମନସ୍ତତ୍ତ୍ୱବିଦ୍-ମାନେ ଅର୍ଥ ପ୍ରତି ବିଶେଷ ଦୃଷ୍ଟି ଦେଇଥିବେ, କାରଣ ସେମାନେ ସଂପୃକ୍ତ ଥିବା ସମସ୍ତ ବିଚାର୍ଯ୍ୟ ବିଷୟ ନିମନ୍ତେ ଏହା ନିତାନ୍ତ ପ୍ରୟୋଜନ । କିନ୍ତୁ ଏହା କରାଯାଇ ନାହିଁ । ଯେ କୌଣସି ବ୍ୟକ୍ତି, ଯେ "ଅର୍ଥର ଅର୍ଥ" ସମ୍ବନ୍ଧୀୟ ତର୍କାଲୋଚନାର ବିବରଣୀ ମାଇଣ୍ଡ ପତ୍ରିକାରେ ( ଅକ୍ଟୋବର ୧୯୨୦ ଏବଂ ତତ୍ପରବର୍ତ୍ତୀ ସଂଖ୍ୟାଗୁଡ଼ିକ ) ଅଧ୍ୟୟନ କରିବ, ସେ ଏକଥା ସୁସ୍ପଷ୍ଟ ରୂପେ ହୃଦୟଙ୍ଗମ କରି ପାରିବ । (୧)

---

(୧) ଜଣେ Edward Johnson ଙ୍କ ଦ୍ୱାରା ଲିଖିତ ଏବଂ ୧୮୪୨ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ Nuces Philosophicae ର ନିମ୍ନ ଲିଖିତ ଅନୁଚ୍ଛେଦଟି ଏଠାରେ ସ୍ମରଣ ଯୋଗ୍ୟ :

"ଢ, ଏତେ ସମୟଧରି ଆଲୋଚନା ହେବା ପରେ ତୁମେ ଏ ପର୍ଯ୍ୟନ୍ତ ମୋତେ ଥରେ ସୁଦ୍ଧା ପଚାରି ନାହଁ ଯେ **ଅର୍ଥ** ଶବ୍ଦ ଦ୍ୱାରା ମୁଁ କଣ **ମନେ କରୁଛି** । ସତରେ, ମୁଁ ଏଥିରେ ବିସ୍ମିତ ।

ଏହି ପରିଚ୍ଛେଦର ସୀମିତ ପରିସରରେ ସେଥିଲାଗି ସମ୍ପ୍ରତି, ଆଉ ଦାର୍ଶନିକ ନିବନ୍ଧଗୁଡ଼ିକର କ୍ଷୁଦ୍ର ସାରାଂଶମାନ ଦିଆଯିବ । ସମ୍ପୃକ୍ତ ଲେଖକ ଅର୍ଥ ଶବ୍ଦକୁ ଯେଉଁ ଅର୍ଥପାଇଁ ବ୍ୟବହାର କରିଛନ୍ତି, ଯଦି ତାହା କିଛି ହୋଇଥାଏ, ତାହା ଯାହା ହୋଇଥାଉ ନା କାହିଁକି, ତତ୍ସମ୍ବନ୍ଧୀୟ ତାଙ୍କ ମତାମତ ଯଥାର୍ଥରୂପେ ଏତଦ୍ଦ୍ୱାରା ଯେ ଉପସ୍ଥାପିତ ହୋଇପାରିବ ନାହିଁ, ଏକଥାର ଉଲ୍ଲେଖ ବୋଧହୁଏ ଅନାବଶ୍ୟକ । କେତେଗୁଡ଼ିଏ ଉଦ୍ଧୃତର ବକ୍ତବ୍ୟ ଅବଶ୍ୟ ସ୍ପଷ୍ଟ । କିନ୍ତୁ ଯେଉଁ କ୍ଷେତ୍ରରେ କୌଣସି ବାସ୍ତବ ଅସଙ୍ଗତି ନାହିଁ, ସେଠାରେ ମଧ୍ୟ ଏହିପରି ଏକ ଶବ୍ଦର ସତେ ଯେପରି ଏକ ଗୃହୀତ ବ୍ୟବହାର ରହିଛି ଅଥବା ସତେ ଯେପରି ଲେଖକଙ୍କ ବ୍ୟବହାର ସଙ୍ଗେ ସଙ୍ଗେ ସୁସ୍ପଷ୍ଟ ହୋଇଯାଇଛି, ଏପରି ମନେକରି କୌଣସି ଗୁରୁତ୍ୱପୂର୍ଣ୍ଣ ଯୁକ୍ତିରେ 'ଅର୍ଥ' ଶବ୍ଦକୁ ତଦ୍ରୂପଭାବେ ବ୍ୟବହାର କରିବା ପ୍ରଥାକୁ ସମର୍ଥନ କରିହେବ କି ନାହିଁ ।

ଡକ୍ଟର ଶିଲର୍ ପ୍ରାରମ୍ଭରୁ ହିଁ କହି ରଖିଥିଲେ, ଗ୍ରୀକ୍‌ଭାଷା "ଏତେ ତ୍ରୁଟିପୂର୍ଣ୍ଣ ଯେ [ଅର୍ଥ] ସମ୍ପ୍ରତ୍ୟୟ ନିମନ୍ତେ [ଆଦୌ] କୌଣସି ଶବ୍ଦ ତହିଁରେ ରହିଛି ବୋଲି କହିବା ପ୍ରାୟ ଅସମ୍ଭବ ।" ତାପରେ ସେ ତାଙ୍କର ନିଜମତ ଦେବାକୁ ଯାଇ କହିଛନ୍ତି, "ଅର୍ଥ ହେଉଛି ମୁଖ୍ୟତଃ ବ୍ୟକ୍ତିଗତ····· କୌଣସି ବାକ୍ୟର ଅର୍ଥ କରି,

---

"ଖ, ଅର୍ଥ ଶବ୍ଦ ଦ୍ୱାରା ତେବେ ତୁମେ କଣ ମନେ କରୁଛ ?

"ଗ, ଧୈର୍ଯ୍ୟ ଧର; **ପ୍ରତ୍ୟୟ ଗୁଡ଼ିକର ସ୍ୱଭାବ** ଏବଂ ବସ୍ତୁମାନଙ୍କ ସହିତ ସେଗୁଡ଼ିକର ସମ୍ବନ୍ଧ ବିଚାର କରିବା ଦ୍ୱାରାହିଁ ତୁମେ **ଅର୍ଥ** ଶବ୍ଦର ଅର୍ଥ ଜାଣି ପାରିବ ।"

ଅର୍ଦ୍ଧ ଶତାବ୍ଦୀ ପରେ, Mind (୧୮୯୬) ରେ Lady Welby ଏହି ଲେଖକଙ୍କ ଉକ୍ତି ଉଦ୍ଧାର କରିଥିଲେ, ଏବଂ ଆପତ୍ତି ଉତ୍ଥାପନ କରିଥିଲେ ଯେ "ହବଷ୍ଟିକୁ **ଅର୍ଥ ଅର୍ଥରେ ନେଇ,** ତାହାକୁ କାର୍ଯ୍ୟ କେନ୍ଦ୍ରରୂପେ ଏ ପର୍ଯ୍ୟନ୍ତ କଦାପି ଗ୍ରହଣ କରାଯାଇ ନାହିଁ । ଅବଧାନ, ପ୍ରତ୍ୟକ୍ଷଣ, ସ୍ମରଣ, ଅବଧାରଣ ଇତ୍ୟାଦିର 'ଅର୍ଥ' ସହିତ ସାଧାରଣ ସମ୍ବନ୍ଧ ଦୃଷ୍ଟିରୁ ବିଚାର କରି କଦାପି ସେଗୁଡ଼ିକର ପୁଙ୍ଖାନୁପୁଙ୍ଖ ପରୀକ୍ଷା କରାଯାଇ ନାହିଁ ।" ପୁଣି ଅଧିକ ପଚିଶ ବର୍ଷ ବିତିଗଲା ପରେ Mr. Russell ଙ୍କ ସ୍ୱୀକାରୋକ୍ତି ଆଖିରେ ପଡ଼େ ( "ପ୍ରତିଜ୍ଞପ୍ତିମାନଙ୍କ ସମ୍ବନ୍ଧରେ — ଏଗୁଡ଼ିକ କଣ, ଓ କିପରି ଏଗୁଡ଼ିକର ଅର୍ଥ କରାଯାଏ"—Proceedings of Aristotlian Society ୧୯୧୯ ) । ତର୍କାଲୋଚନାରେ ଏକଥାକୁ Dr. Schiller ସମର୍ଥନ ଜଣାଇ କହିଥିଲେ, " 'ଅର୍ଥ' କୁହାଯାଉ ଥିବା ସମ୍ବନ୍ଧକୁ ବୁଝାଇବା ଦିଗରେ ତର୍କ-ବିଦ୍‌ଗଣ ଯାହା କରିଛନ୍ତି, ତାହା ଅତି ନଗଣ୍ୟ ।"

ତାହା ନିର୍ଭର କରେ, **ଯେ** ତାହାକୁ ଅର୍ଥ କରୁଛ, ତାହାରି ଉପରେ।" ଏହି ମତ ନିମନ୍ତେ ତାହାଙ୍କୁ ଶ୍ରୀ ରସେଲ୍‌ଙ୍କ ମୂଳର ବିରୋଧ କରିବାକୁ ପଡ଼ିଥିଲା। ଶ୍ରୀ ରସେଲ୍‌ଙ୍କ ମତ ହେଉଛି, "ଶବ୍ଦମାନଙ୍କ ଅର୍ଥ ସମ୍ବନ୍ଧୀୟ ସମସ୍ୟାକୁ ମାନସିକ ପ୍ରତିମାମାନଙ୍କ ଅର୍ଥ ସମ୍ବନ୍ଧୀୟ ସମସ୍ୟାରୂପେ ପରିବର୍ତ୍ତିତ କରାଯାଇପାରେ।" "ସ୍ମାରକ କାରଣିକତା ଧାରଣାର ପ୍ରବେଶ କରାଇବା ଦ୍ୱାରା ଅର୍ଥର ସଂଜ୍ଞାକୁ ଅଧିକ ନିର୍ଦ୍ଦିଷ୍ଟ କରି ଶ୍ରୀ ରସେଲ୍ ଡକ୍ଟର ଶିଲର୍‌ଙ୍କୁ ଉତ୍ତର ଦେବାକୁ ଚେଷ୍ଟା କରିଥିଲେ ଏବଂ ତଦ୍ୱାରା ତତ୍ତ୍ୱବିଜ୍ଞାନର ଏକ ଉପାଦେୟ ବର୍ଣ୍ଣନା ଦେବାରେ ସେ ସଫଳ ହୋଇଥିଲେ। ରସେଲ୍ ବ୍ୟାଖ୍ୟା ସ୍ୱରୂପ କହିଥିଲେ ଯେ "ଯେଉଁ ଶବ୍ଦର ଉଦ୍ଦେଶ୍ୟ ହେଉଛି ସମ୍ପୂର୍ଣ୍ଣ ବ୍ୟାପକତା, ଯଥା—'ସତ୍ତ୍ୱ', ତାହାକୁ ସ୍ମାରକ ପ୍ରଭାବରୁ ମୁକ୍ତ ରଖିବାକୁ ହେବ, ସୁତରାଂ ତାହା ଅର୍ଥରହିତ। ବ୍ୟାବହାରିକ କ୍ଷେତ୍ରରେ ଏକଥା ସତ୍ୟ ନୁହେଁ। ଏ ପ୍ରକାର ଶବ୍ଦର **ବାଚନିକ** ସମ୍ପୃକ୍ତ ଥାଏ। ଏହି ସଂପୃକ୍ତଗୁଡ଼ିକର ଶିକ୍ଷାରେ ତତ୍ତ୍ୱବିଜ୍ଞାନର ଅଧିସ୍ଥାନ ପର୍ଯ୍ୟବସିତ।" ଶ୍ରୀ ଜୋଆକିମ ଏହି ଆଲୋଚନାର ଅଂଶୀଦାର ହେବାକୁ ପସନ୍ଦ କରି ନ ଥିଲେ। ତାଙ୍କ ମତରେ, ଶ୍ରୀ ରସେଲ୍‌ଙ୍କ "ବିବୃତ୍ତି ହେଉଛି କୌଣସି ବ୍ୟକ୍ତି **ଚିନ୍ତା** କରି ପାରିବାର ସମ୍ଭାବନା ନାହିଁ।" ଏବଂ ମାନସିକ ପ୍ରତିମାମାନଙ୍କ କାର୍ଯ୍ୟର ବିଶ୍ଳେଷଣରେ ରସେଲ୍ ନିଜକୁ ସୀମିତ ରଖିଛନ୍ତି। ଜୋଆକିମ୍ ଗୋଟିଏ ପଦଟୀକାରେ ଯେଉଁ ବିଷୟ ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲେ, ତାହା ହେଉଛି ଶ୍ରୀ ରସେଲ୍‌ଙ୍କୁ ଅର୍ଥ (ଅନ୍ୟାନ୍ୟ ବିଷୟ ସମେତ) ଏକ ସମ୍ବନ୍ଧ ପରି ମନେ ହୋଇଛି। 'ଏକ ସମ୍ବନ୍ଧ ଅର୍ଥ 'ଗଠନ କରେ' ଏବଂ ଗୋଟିଏ ଶବ୍ଦ ଅର୍ଥର କେବଳ 'ଅଧିକାରୀ' ନୁହେଁ, ତାହା 'ତାହାର ଅର୍ଥ ସହିତ' ସମ୍ବନ୍ଧାନ୍ୱିତ।"

ଛଅ ମାସ ପରେ (ଏପ୍ରିଲ୍ ୧୯୨୧, ପୃ ୧୮୫), ଡକ୍ଟର ଶିଲର୍ ଏହି ସମଗ୍ର ବ୍ୟାପାରକୁ "ଏକ ଦାର୍ଶନିକ ଆଲୋଚନାର ପ୍ରଥାଗତ ବୈଶିଷ୍ଟ୍ୟ"ର ଉପସ୍ଥାପନ ସ୍ୱରୂପ ବୋଲି ବର୍ଣ୍ଣନା କରିଥିଲେ। ଅର୍ଥାତ୍ ଏହା ଏକ ତ୍ରିଭୁଜାକାର ଦ୍ୱନ୍ଦ୍ୱଯୁଦ୍ଧ ପରି ମନେ ହେଉଛି। ଏଥିରେ ପ୍ରତ୍ୟେକ ଅଂଶୀଦାର ଏକ ଭିନ୍ନ ବିଷୟକୁ ଲକ୍ଷ୍ୟ କରୁଛି ଏବଂ ଅନ୍ୟ ଅଂଶୀଦାରର ଦୃଷ୍ଟିକୋଣରୁ, ସେ ଲକ୍ଷ୍ୟ ଭ୍ରଷ୍ଟ ହୋଇ ଏକ ଛାୟା ମୂର୍ତ୍ତିକୁ ଆଘାତ କରୁଛି।" ସଂକ୍ଷେପ ବର୍ଣ୍ଣନା ଦେବାକୁ ଯାଇ ସେ ଶ୍ରୀ ରସେଲ୍‌ଙ୍କ ମନ୍ତବ୍ୟ ଉଦ୍ଧାର କରିଛନ୍ତି, "ଡକ୍ଟର ଶିଲର୍ ତାଙ୍କ ଅପର୍ଯ୍ୟବେକ୍ଷଣୀୟ ସତ୍ତ୍ୱଗୁଡ଼ିକର ବର୍ଣ୍ଣନା ପ୍ରୟାସରେ ଯେଉଁ ସମସ୍ତ ଶବ୍ଦର ବ୍ୟବହାର କରିଅଛନ୍ତି, ତହିଁରେ ନିହିତ ରହିଛି ଯେ ଯାହାହେଉ, ସେ ସେଗୁଡ଼ିକୁ ପର୍ଯ୍ୟବେକ୍ଷଣ କରି ପାରୁଛନ୍ତି।" ଡକ୍ଟର ଶିଲର୍ ଏହାକୁ "ବାଚନିକ ଅର୍ଥ ଦ୍ୱାରା ବାସ୍ତବ ଅର୍ଥ ପଦ ଦଳିତ ହେବାର" ଏକ ବିଲକ୍ଷଣଯୁକ୍ତ ଦୃଷ୍ଟାନ୍ତ ବୋଲି ମନ୍ତବ୍ୟ ଦେଇ କହିଛନ୍ତି ଯେ "ଏହା ଶ୍ରୀ ବ୍ରାଡ଼ଲେଙ୍କ ଲେଖାରୁ ଅବଗତ କରି ନାହିଁ କହିଲେ ଚଳେ।"

ଜୁଲାଇ ମାସରେ, ଶ୍ରୀ ଆଲ୍‌ଫ୍ରେଡ୍ ସିଜ୍‌ୱିକ ବୁଝାଇ ଦେଇଥିଲେ (ପୃ ୨୮୫) ଯେ, "ପରିଣତି ଉପରେ ଅର୍ଥ ନିର୍ଭର କରେ ଏବଂ ଅର୍ଥ ଉପରେ ସତ୍ୟତା ନିର୍ଭର କରେ।" ପୁଣି ସମୀକ୍ଷାତ୍ମକ-ବାସ୍ତବବାଦର ସମର୍ଥକ ହିସାବରେ ଅଧ୍ୟାପକ ଷ୍ଟ୍ରଙ୍ଗ୍‌ ଶ୍ରୀ ରସେଲଙ୍କ ମତ ବିରୁଦ୍ଧରେ ଡକ୍ଟର ଶିଲର୍‌ଙ୍କ ଆପତ୍ତିର ଉତ୍ତର ଦେବାକୁ ଏବଂ ଶ୍ରୀ ରସେଲ୍‌ଙ୍କ ମତବାଦକୁ ଶ୍ରୀ ଜୋଆକିମଙ୍କ ପକ୍ଷରେ ବୋଧଗମ୍ୟ କରାଇବାକୁ ମଧ୍ୟସ୍ଥତା କରିଥିଲେ ( ପୃ ୩୯୩ ) । ତାଙ୍କ ଦୃଷ୍ଟିକୋଣରୁ ବିଷୟଟିକୁ ବୁଝାଇବାକୁ ସେ ଏକ ବିସ୍ଫୋରଣର କଳ୍ପନାକୁ ଉଦାହରଣ ସ୍ୱରୂପ ଗ୍ରହଣ କରିଥିଲେ । ଯାହାକୁ ବିସ୍ଫୋରଣ କୁହାଯାଏ, ତାହା ଆମେ ଶୁଣିବା ସମୟରେ, "ଧ୍ୱନିଟି ଏକ ଅର୍ଥ ଆହରଣ କରିଛି ବୋଲି କହିବା ଅପେକ୍ଷା ଏକ ଅର୍ଥକୁ ରୂପାନ୍ତରିତ ହୋଇଛି ବୋଲି କହିବା ଠିକ୍‌ ହେବ । ········ଯାହା ଅମୂର୍ତ୍ତ ଓ ଅନାଦ୍ଧ୍ୟସ୍ଥଲଭ୍ୟ, ତାହା ସର୍ବଦା ଏକ ଅର୍ଥ ; ତାହା ହେଉଛି ସେହି ଅପରିମିତ ସୁଦୂର, ଯାହାର ଆମେ ଧ୍ୟାନ କରି ପାରୁନା, କିନ୍ତୁ କେବଳ କାମନା କରୁଁ । କୌଣସି ବିଷୟର ଅର୍ଥ କରିବା ହେଉଛି ତାହାର ଧାରଣା କରିବା, ଅଥବା ବରଂ ସେହି ମୁହୂର୍ତ୍ତରେ ତାହା ମନ ସମକ୍ଷରେ ସମ୍ପୂର୍ଣ୍ଣ ରୂପେ ଅଭିବ୍ୟକ୍ତ ନୁହେଁ ବୋଲି ଗ୍ରହଣ କରିବା ।"

ଏହାର ପ୍ରତ୍ୟୁତ୍ତରରେ ଡକ୍‌ଟର ଶିଲର କହିଛନ୍ତି, "ଯେଉଁ କ୍ଷେତ୍ରରେ ଗୋଟିଏ 'ବସ୍ତୁ'ର "ଅର୍ଥ ଏଇଆ ବୋଲି କୁହାଯାଏ", କେବଳ ସେହି କ୍ଷେତ୍ରରେ ହିଁ ଡକ୍‌ଟର ଷ୍ଟ୍ରଙ୍ଗଙ୍କ ଦୃଷ୍ଟି ସର୍ବଦା ସୀମିତ । ଏଥିପାଇଁ ସେ ମନେ କରନ୍ତି ଯେ "ବ୍ୟକ୍ତିଗତ ଅର୍ଥ ନିଃସୃତ କରିବା ଏବଂ ଭିନ୍ନ ଭିନ୍ନ ସଙ୍କଳ୍ପନାତ୍ମକ ଉଦ୍ଦେଶ୍ୟମାନଙ୍କ ଓ ବ୍ୟକ୍ତିଗତ ଅର୍ଥମାନଙ୍କ ପ୍ରତି 'ଏକମାତ୍ର' ଅର୍ଥର ଆପେକ୍ଷିକତା ବୁଝାଇବାର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ" (ପୃ ୪୪୫) । ଉପସଂହାର (ପୃ ୪୪୭)ରେ ଡକ୍‌ଟର ଶିଲର୍ କହିଛନ୍ତି, "ସମସ୍ତ ବୁଦ୍ଧିବାଦର ପ୍ରଗତି ପଥରେ ବ୍ୟକ୍ତିଗତ ଅର୍ଥର ସ୍ଥିତି ଗୁପ୍ତ ଗହ୍ୱର ତୁଲ୍ୟ ହୋଇ ରହିଛି ।" ସମ୍ଭବତଃ, ଏହି ବାଦାନୁବାଦ ଏବେ ମଧ୍ୟ ଅଗ୍ରଗତିଶୀଳ ହୋଇ ରହିଛି ।

ଅର୍ଥ ଉପରେ ଏହି ତର୍କାଲୋଚନା **ମାଇଣ୍ଡ** ପତ୍ରିକାରେ ସ୍ଥାନ ପାଇଥିଲା । ସମସାମୟିକ ଭାବେ **ବ୍ରେନ** (୧) ପତ୍ରିକାରେ ବାକ୍ୟାଘାତର ସ୍ୱଭାବ ସମ୍ବନ୍ଧରେ ଏକ ଅନୁସନ୍ଧାନ ବିବରଣୀ ପ୍ରକାଶିତ ହେଉଥିଲା ଏବଂ ଏଥିରେ ଡକ୍‌ଟର ହେଡ଼ଙ୍କ ମତର ଆଲୋଚନା କାଳରେ ଅର୍ଥ-ପ୍ରଶ୍ନ ପ୍ରାଧାନ୍ୟ ଲାଭ କରିଥିଲା । 'ଶବ୍ଦାର୍ଥ-ବାକ୍ୟାଘାତ'ର

(୧) ୧୯୨୦, ଖଣ୍ଡ—୪୩; ଭାଗ ୨ ଏବଂ ୪ ।

ଶିକାଗ୍ରୀ ଦ୍ୱାରା ସୂଚିତ ଏକ ବିଶେଷ ସ୍ମାରକଲିପି ଏହି ସମୟରେ ଡକ୍ଟର ଜେ. ହ୍ୱାର୍ଟ ପାର୍ଜନ ପ୍ରସ୍ତୁତ କରିଥିଲେ । ଏହି କ୍ଷେତ୍ରରେ ଦାର୍ଶନିକମାନଙ୍କ କାର୍ଯ୍ୟରୁ ସ୍ନାୟୁବିଜ୍ଞାନବିଦ୍‌ମାନେ କି ପରିମାଣରେ ସାହାଯ୍ୟ ପାଇବେ ବୋଲି ଆଶା କରିଯାଇ-ପାରେ, ତାହା ଉପରେ ଏହି ସ୍ମାରକ ଲିପି ତତ୍ତ୍ୱକର୍ତ୍ତିକ ଆଲୋକପାତ କରିଛି । ଡକ୍ଟର ପାର୍ଜନ୍‌ଙ୍କ ମତରେ ସଂକୀର୍ଣ୍ଣ ଜୀବବୃତ୍ତିସ୍ତରରେ "ଏକ ସଂଯୋଜକ ବା ବିଯୋଜକ ଭାବାବସ୍ଥାର ଉପସ୍ଥିତିକୁ ଅସ୍ୱୀକାର କରିବା ବିଜ୍ଞତା ହେବ ନାହିଁ—ଏବଂ ଏହାହିଁ ହେଉଛି ଅର୍ଥର ଆଦିମ ବୀଜାଣୁ ।" କିନ୍ତୁ ପ୍ରତ୍ୟକ୍ଷସ୍ତରରେ ଏହି ଅପେକ୍ଷାକୃତ ଅବିଭେଦିତ ଚେତନକୋଷ ବିଶେଷରୂପେ ଅବଧାରିତ ସଂବେଦନାତ୍ମକ ଓ ସଙ୍କେତନାତ୍ମକ ଉପାଦାନମାନଙ୍କରେ ବିଭେଦିତ ହୁଏ; ଏବଂ ସେଗୁଡ଼ିକ ପୁନଃସଂଗଠିତ ହୋଇ ଏକ ସଂଶ୍ଳେଷଣରେ ପରିଣତ ହୁଏ । ଏହାହିଁ ହେଉଛି ଦୃଶ୍ୟ ଅନୁଭୂତିର ଅର୍ଥ । ପ୍ରତ୍ୟକ୍ଷପରକ 'ଅର୍ଥ' ସଂବେଦନାତ୍ମକ ରଙ୍ଗରଂଜିତ ହୋଇ ପ୍ରବୃତ୍ତିମୂଳକ କ୍ରିୟାତ୍ମକ କାର୍ଯ୍ୟକଳାପର ସୃଷ୍ଟି କରେ ।" ଏହିପରିଭାବେ, ସମ୍ପୂର୍ଣ୍ଣ ପ୍ରତିକ୍ରିୟା ଶେଷରେ "'ଅର୍ଥ' ସମୃଦ୍ଧ ଓ ଜଟିଳ ହୋଇଯାଏ । ......ଏହି ପରିବର୍ତ୍ତିତ 'ଅର୍ଥ' ସଂରକ୍ଷିତ ହୋଇ ରହେ, ଯଦିଓ ଏହା ଚୈତନ୍ୟର ସୀମାତଳକୁ ଚାଲି ଯାଇଥାଏ, ଏହାର ପୁନରୁଜ୍ଜୀବିତ ହେବାର କ୍ଷମତା ନଷ୍ଟ ହୁଏନାହିଁ । .........ଆଗରୁ ଅଧିକ ନମନୀୟ ହୋଇ ରହିଥିବା ଚେତନକୋଷର ସଂଘଟନ ଓ ସଂଶ୍ଳେଷଣ ଏକ ଅଧିକ ଉନ୍ନତ, ଅଧିକ ଜଟିଳ ଧରଣର 'ଅର୍ଥ'ରେ ପରିଣତ ହୁଏ ।" ପରବର୍ତ୍ତୀ ସ୍ତରରେ ସାମାଜିକ ପରିବେଶର ପ୍ରଭାବ ଏଥିରେ ଅନୁଭୂତ ହୁଏ ଏବଂ ସାମାଜିକ ଭାବବିନିମୟର ଜଟିଳ ପଦ୍ଧତି ଦ୍ୱାରା "ଯେଉଁ ଚରମ ପରିଣତିର ଉଦ୍ଭବ ହୁଏ, ତାହା ହେଉଛି ପ୍ରାଚୀନ ଓ ନୂତନ ଅର୍ଥମାନଙ୍କ ପାରସ୍ପରିକ କ୍ରିୟା-ପ୍ରତିକ୍ରିୟା ଲବ୍ଧ ଆହୁରି ନୂତନ, ଆହୁରି ସମୃଦ୍ଧ ଓ ଅଧିକ ବିଶୁଦ୍ଧ ଅସଂଖ୍ୟ, ଅର୍ଥମାନଙ୍କ ସମାବେଶ ।" ଏହି ଅବସ୍ଥାରେ, "ସର୍ଜନାତ୍ମକ କାର୍ଯ୍ୟମାନ ଏକ ଉଚ୍ଚସ୍ତରରେ ସହଯୋଗ ସ୍ଥାପନ କରେ" ଏବଂ "ଏ ଅବଧି ଅନୁପସ୍ଥିତ ଏକ ନିକ୍ଷେପଣାତ୍ମକ ବୃତ୍ତି ପ୍ରଦର୍ଶନ କରେ ।" ଶିଶୁର ଅଙ୍ଗଭଙ୍ଗୀଗୁଡ଼ିକ ତାହାର ମନୋଗତ କାର୍ଯ୍ୟକଳାପର ନିଷ୍କ୍ରିୟ ସଂକେତ ହୋଇ ଆଉ ରହେ ନାହିଁ । ସେଗୁଡ଼ିକ ହୋଇଯାଏ ତାହାର ସଂବେଦନ ଓ ଅଭିଳାଷଗୁଡ଼ିକର ସକ୍ରିୟ ସୂଚନା ; ଏହା ଭାଷାର ପ୍ରାରମ୍ଭ ସ୍ଥଳ ।"

**ମାଇଣ୍ଡ** ପତ୍ରିକାରେ କରାଯାଇଥିବା ବାଦାନୁବାଦର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଏକ ସଙ୍ଗା ସମଷ୍ଟିର ରଚନା ନିମନ୍ତେ ଉପାଦେୟ ପ୍ରାରମ୍ଭିକ ପ୍ରସ୍ତୁତିରୂପୀ ହୋଇ-

ଥାଇପାରେ; କିନ୍ତୁ ତାହାର ପ୍ରବନ୍ଧ ଅସାଧାରଣଭାବେ ନୈରାଶ୍ୟଜନକ ହୋଇଥିଲା । (୧) ପୁଣି ଯେ କୌଣସି କ୍ଷେତ୍ରରେ, ପ୍ରାଚୀନ ଜଗତର ତତ୍ତ୍ୱ ବିଜ୍ଞାନମୂଳକ ରଙ୍ଗଭୂମି ଅନେକଙ୍କୁ ଅନିବାର୍ଯ୍ୟ ରୂପେ ଏକ ଜଟିଳ ତର୍କବିତର୍କ ପରିବେଶର ସୂଚନା ଦେଉଥିବାରୁ ଏଠାରେ ନୂତନ ଜଗତର ସବାଧୁନିକ ସହଯୋଗିତାଲବ୍ଧ ପରିଣତିର ପ୍ରଣାଳୀ ବର୍ଣ୍ଣନା କରିବା ଏବଂ ଅବସ୍ଥାଚକ୍ରରେ ଯେଉଁ ଗଣ୍ଡଗୋଳଗୁଡ଼ିକର ଉଦ୍ଭବ ହେବ, ତାହାର ସମାଧାନ କରିବା ଅଧିକ ଲାଭଜନକ ହେବ । 'ଏସେଜ୍ ଇନ୍ କ୍ରିଟିକେଲ ରିଏଲିଜମ୍' [ସମୀକ୍ଷାତ୍ମକ ବାସ୍ତବବାଦଗତ ପ୍ରବନ୍ଧମାନ] ୧୯୨୦ ରେ ଲୋକ ଲୋଚନକୁ ଆସିଲା । ଏହା ସାତଜଣ ଆମେରିକାସ୍ଥ ଅଧ୍ୟାପକଙ୍କ କୃତି । ଏହାର ପ୍ରତ୍ୟେକ ପ୍ରବନ୍ଧଲେଖକ ଅନ୍ୟ ସମସ୍ତ ସହଯୋଗୀଙ୍କ ସମର୍ଥନ ଲାଭ କରିବା ପର୍ଯ୍ୟନ୍ତ ନିଜ ନିଜର ଭାଷାକୁ ବାରମ୍ବାର ପରିବର୍ତ୍ତନ କରି ପ୍ରବନ୍ଧଗୁଡ଼ିକୁ ବାରମ୍ବାର ଲେଖିଥିଲେ । ଏହି ପ୍ରବନ୍ଧଗୁଡ଼ିକ ହେଉଛି, ଏକ ସୀମିତ ବିବଦମାନ କ୍ଷେତ୍ରରେ ଦଶବର୍ଷ ଧରି କରାଯାଇଥିବା ତର୍କାଲୋଚନାର ଫଳ । ଲେଖକମାନେ କହୁଛନ୍ତି, "ପ୍ରାଥମିକ ଅବସ୍ଥାରେ ପ୍ରକାଶପ୍ରଣାଳୀଗୁଡ଼ିକୁ ନେଇ ଆମେ ଭିନ୍ନ ଭିନ୍ନ ମତ ପୋଷଣ କରୁଥିଲୁଁ; କିନ୍ତୁ ପ୍ରତ୍ୟେକେ ଅନ୍ୟର ଅର୍ଥ ସହିତ ସୁପରିଚିତ ହେବା ଦ୍ୱାରା ସେଗୁଡ଼ିକୁ ବୁଝିବା ପାଇଁ ଆମେ ସମର୍ଥ ହୋଇଛୁଁ ।" ବିତର୍କର ମୁଖ୍ୟ ସମସ୍ୟାଗୁଡ଼ିକ ଆଗରୁ ବିଶଦଭାବେ ବର୍ଣ୍ଣିତ ହୋଇଥିଲା; କାରଣ ୧୯୦୮—୯ ବେଳକୁ ସମ୍ମିଳିତ ଆଲୋଚନାର ଫଳପ୍ରାପ୍ତି ଆରମ୍ଭ ହୋଇ ଯାଇଥିଲା । ସେତେବେଳେ ଛଅ ଜଣ ନବ୍ୟ-ବାସ୍ତବବାଦୀ ସମ୍ମିଳିତଭାବେ ଏକ ଅନୁରୂପ ଗ୍ରନ୍ଥ ପ୍ରଣୟନ କରିଥିଲେ । ଏହାର ସର୍ବଶେଷ ସିଦ୍ଧାନ୍ତକୁ ଦଶ ବାର ଜଣ ବିଶେଷଜ୍ଞଙ୍କ ଜୀବନବ୍ୟାପୀ କାର୍ଯ୍ୟର ସ୍ପଷ୍ଟୀକରଣ ବୋଲି ବିବେଚନା କରାଯାଇପାରେ । ଦଶବର୍ଷରୁ ଅଧିକ କାଳ ଜନସାଧାରଣଙ୍କ ସଂପୂର୍ଣ୍ଣ ଅଜ୍ଞାତସାରରେ ଏହି ବିଶେଷଜ୍ଞ ଦଳର ପ୍ରତ୍ୟେକେ ପରସ୍ପର ବ୍ୟବହୃତ ଶବ୍ଦସମ୍ଭାରକୁ ନିରବଚ୍ଛିନ୍ନଭାବେ ଉନ୍ନତ କରି ଆସୁଛନ୍ତି ।

ପ୍ରଥମ ଗ୍ରନ୍ଥ ସହିତ ଆମେ ଏଠାରେ ନିଜକୁ ସମ୍ପୃକ୍ତ ରଖିବାର ଆବଶ୍ୟକତା ନାହିଁ । ତେବେ ତାହାର ଅବତରଣିକାର ଗୋଟିଏ ବିଷୟ ଉଲ୍ଲେଖ ଯୋଗ୍ୟ । ଏହି ଅବତରଣିକାରେ ଶବ୍ଦମାନଙ୍କ ସତର୍କ ବ୍ୟବହାର ତଥା ସୁସ୍ପଷ୍ଟ ସଙ୍ଗାର ଗୁରୁତ୍ୱ ଉପରେ ପ୍ରାଧାନ୍ୟ ଅର୍ପଣ କରାଯାଇଛି ଏବଂ ତହିଁରେ ନିମ୍ନୋକ୍ତ ମନ୍ତବ୍ୟମାନ ରହିଛି—

---

(୧) ଏଥି ନିମିତ୍ତ ବିଶେଷତଃ ଅଂଶୀଦାରମାନଙ୍କ ଚରିତ୍ରପ୍ରକୃତିର ଅସାମଞ୍ଜସ୍ୟ ଦାୟୀ । ଅଧିକନ୍ତୁ, Mr. Russell ଏବେ ତାଙ୍କ ତଦାନୀନ୍ତନ ମତବାଦକୁ ଅତିକ୍ରମ କରି ଯାଇଛନ୍ତି । ତାଙ୍କର Analysis of Mind ର ପ୍ରାସଙ୍ଗିକ ପରିଚ୍ଛେଦଗୁଡ଼ିକରୁ ଏହା ସୁସ୍ପଷ୍ଟ । ଆଗରୁ ଏଗୁଡ଼ିକର ଉଲ୍ଲେଖ କରାଯାଇଛି ।

"ନିର୍ଦ୍ଦିଷ୍ଟ-ସମ୍ଭବ ଆଲୋଚନାରେ ପ୍ରତ୍ୟେକ ପଦର ଅର୍ଥ ସମୀକ୍ଷା କରିବା ଆବଶ୍ୟକ ।"

"ଆମର ଅର୍ଥକୁ ଆମେ ଯଦି ନିର୍ଦ୍ଦିଷ୍ଟାର୍ଥକ ପଦମାନଙ୍କ ଦ୍ୱାରା ବ୍ୟକ୍ତକରି-ନପାରୁ, ତେବେ ଅନ୍ତତଃ ସାହଚର୍ଯ୍ୟାନୁଶୀଳନ କରାଯାଉ ।"

"ପ୍ରକୃତ ମନସ୍ତତ୍ତ୍ୱବିଦ୍ ପାଇଁ ଆଦର୍ଶବାଦର କୌଣସି ଅର୍ଥ ନାହିଁ ।"

ଏହାପରେ ଶେଷ ପ୍ରବନ୍ଧଟିରେ ଆମେ ଦେଖିବାକୁ ପାଉଁ ଯେ ଅଧ୍ୟାପକ ପିଟକିନ୍ ଏକ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ଆପତ୍ତି କରିଛନ୍ତି : ଆଲେକଜାଣ୍ଡର ଓ ନନ୍ "ବସ୍ତୁମାତ୍ରକ ବସ୍ତୁମାନଙ୍କ କେବଳ **ଉପାଦାନକୁ** ସତ୍ତ୍ୱରୂପେ ଗ୍ରହଣ କରିଛନ୍ତି ଏବଂ ଭ୍ରାନ୍ତ ଅର୍ଥଗୁଡ଼ିକୁ ଅଳ୍ପାଧିକ ପରିମାଣରେ କଳ୍ପନାପ୍ରବଣ—ମନଃପ୍ରସୂତ ବିଷୟାବଳୀ ବୋଲି ପରିତ୍ୟାଗ କରିଛନ୍ତି ।"

୧୯୧୬ ଠାରୁ 'ଅର୍ଥ' ଶବ୍ଦଟି ପ୍ରତ୍ୟେକ ବାଦବିବାଦରେ ଏକ ନିର୍ଣ୍ଣାୟକ ଅଂଶ ଗ୍ରହଣ କରିବାରୁ ବିରତ ହୋଇ ନାହିଁ । ଏ କ୍ଷେତ୍ରରେ ନବ୍ୟ-ବାସ୍ତବବାଦୀମାନେ ହୁଏ ତ କେତେକ ସଙ୍କୀର୍ଣ୍ଣତାର ବଶବର୍ତ୍ତୀ ହୋଇଥାଇ ପାରନ୍ତି, କିନ୍ତୁ ସମୀକ୍ଷାତ୍ମକ ବାସ୍ତବବାଦୀମାନେ ସମସ୍ତ ପ୍ରକାର ସଙ୍କୀର୍ଣ୍ଣତାରୁ ଦୂରରେ ରହିବାକୁ ଯଥେଷ୍ଟ ସୁଯୋଗ ପାଇ ପାରିଥିଲେ । ସୁତରାଂ ଯେ ପର୍ଯ୍ୟନ୍ତ ଆମେ ବାସ୍ତବବାଦରେ ସମ୍ପୃକ୍ତ, ଆମେ ସେମାନଙ୍କ ପ୍ରସ୍ତାବଲବ୍ଧ ଫଳର ଆଲୋଚନାରେ ନିଜକୁ ସୀମିତ ରଖିପାରୁଁ ।

ପ୍ରଥମତଃ ଷ୍ଟ୍ରସର୍‌ର ଅଧ୍ୟାପକ ଡ୍ରେକଙ୍କ ମତ ବିଚାର୍ଯ୍ୟ—"ଅସ୍ତିତ୍ୱ'ର ଅର୍ଥଟିରେହିଁ ଏକ ନିର୍ଦ୍ଦିଷ୍ଟ ସ୍ଥାନର ସୂଚନା ନିହିତ" (ପୃ ୧୭)

'ସମ୍ବନ୍ଧ' **ପଦର ଅର୍ଥଟିରେ ହିଁ** କୌଣସି ସମ୍ବନ୍ଧାନ୍ୱିତ ବସ୍ତୁର ନିର୍ଦ୍ଦେଶ ଅନ୍ତର୍ଭୁକ୍ତ ।" (ପୃ ୧୯)

ଏହି ଦୁଇଟି ଉକ୍ତିର ବ୍ୟବହାର ଦ୍ୱାରା ଯେଉଁ ମତଗୁଡ଼ିକୁ ଅଗ୍ରସର ହେବା ସମ୍ଭବପର, ତାହା ହେଉଛି ଯେ ପ୍ରତ୍ୟକ୍ଷପରକ ଦତ୍ତଗୁଡ଼ିକ "ସେଗୁଡ଼ିକର କାରଣ-ମାନଙ୍କ ସତ୍ତ୍ୱା ସହିତ ସମାନ ନୁହେଁ ।" ଆମେ କୌଣସି ଏକ ସ୍ତରରେ ଗୁଣାବଳୀକୁ ପ୍ରତ୍ୟାବର୍ତ୍ତିତ ହେବା" ଆବଶ୍ୟକ ।

ଅଧ୍ୟାପକ ଲଭଜସ୍ କହିଛନ୍ତି ଯେ ବ୍ୟାବହାରିକତାବାଦ ଦ୍ୱାରା ସୂତ୍ରବଦ୍ଧ କରିବାର "ଅର୍ଥ ବିଶ୍ଳେଷଣ" ଏକ ବିରାଟ କର୍ମଭାର ବହନ ସ୍ୱରୂପ ହେବ ।

ବ୍ୟାବହାରିକତାବାଦ "ଯେଉଁ ପରିମାନଙ୍କରେ ସଂପ୍ରତ୍ୟୟ ଓ ପ୍ରତିଜ୍ଞପ୍ତି ଗୁଡ଼ିକର ଅର୍ଥ ରହିଛି ବୋଲି କୁହାଯାଇପାରିବ ତତ୍‌ସଂପର୍କୀୟ ଏବଂ ଯହିଁରେ ସମସ୍ତ ଅର୍ଥ ପର୍ଯ୍ୟବସିତ ହେବା ସୁନିଶ୍ଚିତ, ତାହାର ପ୍ରକୃତି ସମ୍ପର୍କୀୟ ଏକ ମତବାଦରୂପେ ଆରବ୍ଧ ହୋଇଥିଲି ।" ତାଙ୍କ ମତରେ, ବ୍ୟାବହାରିକତାବାଦୀ ଏକ ସୁପ୍ରତ୍ୟକ୍ଷ ଘଟଣାକୁ ଉପେକ୍ଷା କରିଯାଏ; ତାହା ହେଉଛି "ଆମର ଅର୍ଥଗୁଡ଼ିକ ମଧ୍ୟରୁ ଅନେକେ ଗତାନୁଦର୍ଶୀ । ······କୌଣସି ତର୍କୀୟ **ଭୋଜବାଜୀ** ଦ୍ୱାରା 'ଗତ କାଲି'ର ଅର୍ଥକୁ 'ଆଗାମୀ କାଲି'ର ଅର୍ଥରୂପେ ସ୍ୱଭାବାନ୍ତରିତ କରାଯାଇ ନପାରେ । ·········ଏହା ଏପରି ଏକ ଅର୍ଥ ଯାହା ସ୍ୱଭାବତଃ ସାକ୍ଷାତ ଅନୁଭୂତି ଦ୍ୱାରା ପ୍ରତିପାଦିତ ହେବା ନିମନ୍ତେ ଅସମର୍ଥ—ଏ କଥାଟି ଖାଣ୍ଟି ସତ୍ୟ । ······ଏହି ଅର୍ଥଗୁଡ଼ିକର ପ୍ରତିପାଦନ କଦାପି ଆମ ବାସ୍ତବ ଅନୁଭୂତି ଲବ୍‌ଧ ନୁହେଁ; ତଥାପି ସେଗୁଡ଼ିକ ମଧ୍ୟରୁ କେତେକ ବସ୍ତୁତଃ ପ୍ରାମାଣିକ ଅର୍ଥ ବୋଲି ବିଶ୍ୱାସ କରିବାକୁ ଆମର ଏକ ଅଦମ୍ୟ ପ୍ରବୃତ୍ତି ରହିଥାଏ । ······ଗୋଟିଏ ଅବଧାରଣର ଅର୍ଥ କଣ ତାହା ନିର୍ଦ୍ଧାରଣ କରିବାରେ ଅବଧାରଣଟି ହିଁ ସର୍ବମୟ କର୍ତ୍ତା, ଯଦିଓ ତାହାର ଅର୍ଥ ପ୍ରତିପାଦନ ବିଷୟର ନିର୍ଦ୍ଧାରଣ କରିବାରେ ଏହା ତଦ୍ରୂପ ନୁହେଁ ।"

ଅଧ୍ୟାପକ ପ୍ରେଟ୍‌ଙ୍କ ମତରେ, ନବ୍ୟ-ବାସ୍ତବବାଦୀମାନେ "ଚିନ୍ତା ସମକ୍ଷରେ ଉପସ୍ଥାପିତ ଦତ୍ତଗୁଡ଼ିକ ଅର୍ଥମାନଙ୍କ ବା ପ୍ରକୃତିମାନଙ୍କ ଦ୍ୱାରା ରଚିତ ବୋଲି ଗ୍ରହଣ କରି ତହିଁରେ ପ୍ରାଧାନ୍ୟ ଅର୍ପଣ କରିବାଦ୍ୱାରା ଏକ ସର୍ବାଧିକ ଫଳପ୍ରଦ ବିଶ୍ଳେଷଣ କରିଥିଲେ ।" କିନ୍ତୁ "ଏକ ପକ୍ଷରେ ଅର୍ଥ ଓ ମାନସିକ ଅବସ୍ଥାର ସମ୍ବେଦନ ଉଦ୍ରେକ-କାରକ ଅଂଶ ଏବଂ ଅନ୍ୟ ପକ୍ଷରେ ଅର୍ଥଗୁଡ଼ିକ ଗୁଣାନ୍ୱିତ କରୁଥିବା ସ୍ଥିତିଶୀଳ ଭୌତିକ ବସ୍ତୁ—ଏହି ଦୁଇଟି ମଧ୍ୟରେ" ସେମାନେ ପାର୍ଥକ୍ୟ ରକ୍ଷାକରି ନଥିଲେ । ଗୁଡ଼ିଏ ଲୋକ କୌଣସି ବିଷୟରେ ସେମାନଙ୍କ ଧାରଣାକୁ ଭିନ୍ନ ଭିନ୍ନ ଭାବେ ବର୍ଣ୍ଣନା କରି ପାରନ୍ତି, ଯଦିଓ ସେମାନେ ସମସ୍ତେ ସେହି ଏକ ବସ୍ତୁକୁ ମନେ କରିଥାନ୍ତି ବା ଚିନ୍ତା କରୁଥାନ୍ତି ।" ଯେଉଁ ଅର୍ଥ ଜଣେ ସଂପ୍ରତ୍ୟୟରେ ଗ୍ରହଣ କରିଥାଏ "ଏବଂ ଯେଉଁ ମାନସିକ ପ୍ରତିମାଗୁଡ଼ିକ ଆମ ଅର୍ଥର 'ବାହକ'—ଏହି ଦୁଇଟି ମଧ୍ୟରେ ଅଧ୍ୟାପକ ପ୍ରେଟ୍ ପାର୍ଥକ୍ୟ ପ୍ରଦର୍ଶନ କରିଛନ୍ତି (ପୃ ୯୦), "ଏହି ଅର୍ଥଟି ହେଉଛି ଯାହା ଆମ ଚିନ୍ତାରେ ସାକ୍ଷାତ୍‌ଭାବେ ଦତ୍ତ ହୋଇଥିବା ଆମେ ଦେଖୁ ।" ତାଙ୍କ ମତରେ, "ଏହି ଅର୍ଥ ବା ଦତ୍ତ ପ୍ରାୟଶଃ ସଠିକଭାବେ ସଂଜ୍ଞା ଦିଆଯାଇ ପାରିବା ଯୋଗ୍ୟ ହୋଇଥାଏ, ଅର୍ଥାତ୍ ଏହାର ଏକ ସଂଜ୍ଞେୟ ସ୍ୱଭାବ ଥାଏ ବା ବରଂ ଏହାହିଁ ଏକ ସଂଜ୍ଞେୟ ସ୍ୱଭାବ ଅଟେ ।" ସଂପ୍ରତ୍ୟୟ ସହିତ ସମଭାବେ ପ୍ରତ୍ୟକ୍ଷର ମଧ୍ୟ "କେବଳ ଯେ ଇନ୍ଦ୍ରିୟନିଷ୍ଠ ଓ ପୁନରୁଜ୍ଜୀବିତ ପ୍ରତିମାମାନ ଥାଏ, ତାହା ନୁହେଁ, ପ୍ରତ୍ୟକ୍ଷରେ ଏକ ବୃହତ୍ ପରିମାଣର

ଅର୍ଥଗତ ଉପାଦାନ ମଧ୍ୟ ନିହିତ ଥାଏ ।" ସାଧାରଣତଃ, "ସମସ୍ତ **ଇନ୍ଦ୍ରିୟୋ-ଲବ୍ଧ** ଗୁଣ ମନେ କରିଯାଇଥିବା ଗୁଣଗୁଡ଼ିକର ଅନ୍ତର୍ଭୁକ୍ତ ।" ବାହ୍ୟ ନିର୍ଦ୍ଦେଶ ଦୃଷ୍ଟିରୁ (ପୃ ୯୨) "ଏହାକୁ ପ୍ରତ୍ୟକ୍ଷର ଦତ୍ତ ବା ଅର୍ଥର ଅଂଶ ବୋଲି ବିବେଚନା କରିଯାଇପାରେ, କିନ୍ତୁ ଏହା ସହଜରେ ବିଭେଦନୀୟ ଏକ ଅଂଶ ।" ଅତୀତ ପ୍ରତିକ୍ରିୟାମାନଙ୍କ ପ୍ରଭାବରୁ ଯେଉଁ ଗୁଣସମଷ୍ଟି "ସମ୍ବନ୍ଧରେ ଜଣେ ସଚେତନ ତାହା ଯେତିକି, ତହିଁରୁ ଅଧିକ **ଅର୍ଥ** ସାକ୍ଷାତ୍‌ଭାବେ ତହିଁରେ ନିହିତ ଥାଏ ।. ଜଣକର ସମସ୍ତ ଅତୀତ ଅନୁଭୂତିର ପରିଣତି ସ୍ୱରୂପ ଗୁଣସମଷ୍ଟିଟି ଏକ ସନ୍ନିସ୍ଥ ସତ୍ତା **ପରିବର୍ତ୍ତେ ବ୍ୟବହୃତ** ହୋଇ ଥାଏ । ଏହି ଗୁଣ ସମଷ୍ଟିର "ଅର୍ଥ ବା ବ୍ୟକ୍ତିପାଇଁ ତାହାର **ଅବ୍ୟବହିତ ତାତ୍ପର୍ଯ୍ୟ**ରେ କୌଣସି ସନ୍ନିସ୍ଥ ସତ୍ତାର ଉପସ୍ଥିତି ତଥା ଏକ ଉଲ୍ଲେଖନୀୟ ପରିମାଣରେ ସେହି ସତ୍ତାର ସ୍ୱଭାବ ବିଷୟ ରହିଥାଏ, ଏବଂ ଏହି ସତ୍ତା ସମ୍ବନ୍ଧରେ ସେ ସଚେତନ ରହିବା ତା ପାଇଁ ଉପାଦେୟ । ସଂକ୍ଷେପରେ, ଏହି ଗୁଣ ସମଷ୍ଟି ହେଉଛି ବ୍ୟକ୍ତିର ବସ୍ତୁ ପ୍ରତ୍ୟକ୍ଷଣର ମାଧ୍ୟମ ।" ଉପସଂହାରରେ ପ୍ରେଞ୍ଜ୍ ମତ ଦେଇଛନ୍ତି ଯେ ସବୁଓ ସମୀକ୍ଷାତ୍ମକ ବାସ୍ତବବାଦୀମାନେ "ଭୌତିକ ସତ୍ତାମାନଙ୍କ ଆଭ୍ୟନ୍ତରୀଣ ପ୍ରକୃତିର ନିଃଶେଷୀ ଜ୍ଞାନଲାଭ କରିଛନ୍ତି ବୋଲି ଛଳନା କରନ୍ତି ନାହିଁ, ଆମେ ସେଗୁଡ଼ିକ ଦ୍ୱାରା କଣ ମନେ କରିଥାଉଁ, ତାହା ଜାଣିବା ପାଇଁ ଏବଂ ବିକାରଗ୍ରସ୍ତ ଅନ୍ଧଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କ ପକ୍ଷରେ ଆମର ଅର୍ଥକୁ ସୁସ୍ପଷ୍ଟ କରିଦେବା-ପାଇଁ ସେଗୁଡ଼ିକର ସଂଜ୍ଞା ଆମେ ଯଥେଷ୍ଟ ପରିମାଣରେ ଦେଇ ପାରୁ ।"

ୟେଲ୍‌ର ଅଧ୍ୟାପକ ଫ୍ରେଜର୍ ଭ୍ରମ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ସେ ଅଭିଯୋଗ କରିଛନ୍ତି ଯେ ବୋସାଙ୍କେ "ସତ୍ୟର ମାନ" ବିଷୟକ ପ୍ରଶ୍ନକୁ ବୁଝିବାରେ ଅକୃତକାର୍ଯ୍ୟ ହୋଇଛନ୍ତି । ତାହାର କାରଣ ହେଉଛି ସେ ପଦମାନଙ୍କ ପରିବର୍ତ୍ତନଶୀଳ ଅର୍ଥଗୁଡ଼ିକୁ ତୀକ୍ଷ୍ଣଭାବେ ପୃଥକ୍ କରି ରଖିବାକୁ ବିରକ୍ତିକରଭାବେ ଅଗ୍ରାହ୍ୟ କରି-ଦେଇଛନ୍ତି । ସେହି ଏକ ଆକାର ବିଶିଷ୍ଟ ଶବ୍ଦଗୁଡ଼ିକର ଅର୍ଥ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ପକ୍ଷରେ ସେହି ଏକ ବସ୍ତୁ ଅଟେ କି ନୁହେଁ ଏହି ପ୍ରଶ୍ନ ସହିତ ଉପର୍ଯ୍ୟୁକ୍ତ ପ୍ରଶ୍ନଟି ସମାନ ନୁହେଁ । ତାହା ହେଉଛି କୌଣସି ଦତ୍ତ ଅର୍ଥ, **ତାହା ଯାହା ହୋଇଥାଉନା** କାହିଁକି ଏକାକୀ ଘଟଣା ସହିତ ସମ୍ବାଦିତା ରକ୍ଷା କରିବାରେ ସମର୍ଥ କି ନୁହେଁ— ଏତଦ୍ ବିଷୟକ ଏକ ପ୍ରଶ୍ନ (ପୃ ୧୬୩) । ଶ୍ରୀ ଜୋକିମଙ୍କର ସଙ୍ଗତି ମାଧ୍ୟମରେ ବସ୍ତୁମାନଙ୍କ ବିବରଣୀ ସମ୍ବନ୍ଧରେ ସେ ମନ୍ତବ୍ୟ ଦେଇଛନ୍ତି ଯେ "କୌଣସି ସଙ୍ଗତିରେ ଗୋଟିଏ ଘଟଣାର ସ୍ଥାନ ମାଧ୍ୟମରେ ଘଟଣାଟିରେ ଅର୍ଥର ସଂଜ୍ଞାଦେବା ଉପରେ ଯଦି

ଆମେ ଜୋର ଦେଉଁ, ତେବେ ସ୍ୱଭାବତଃ ସଂଶ୍ଳିଷ୍ଟ ବାହାରେ ତାହାର ସେହି ଅର୍ଥ ରହିବ ନାହିଁ" (ପୃ ୧୨୫) ।

ତାଦାତ୍ମ୍ୟ ବିଷୟକ ବିଗ୍ରହରେ, "ବସ୍ତୁମାନଙ୍କୁ ଆମେ ଦେଉଥିବା ଅର୍ଥରେ ସନ୍ନିବିଷ୍ଟ ବସ୍ତୁ ଲକ୍ଷଣମାନ ଏବଂ ବସ୍ତୁଗୁଡ଼ିକରେ ଏହି ଲକ୍ଷଣମାନଙ୍କ ବାସ୍ତବ ସ୍ଥିତି— ଏହି ଦୁଇଟି ମଧ୍ୟରେ ସ୍ୱଭାବତଃ ଆମେ ଏକ ସୁସ୍ପଷ୍ଟ ପାର୍ଥକ୍ୟ ରକ୍ଷାକରୁ ।......... ଅବିଭେଦନୀୟମାନଙ୍କ ତାଦାତ୍ମ୍ୟ ଅମୂର୍ତ୍ତ ତର୍କାଂଶ ଅର୍ଥମାନଙ୍କ କ୍ଷେତ୍ରରେ ପ୍ରଯୋଜ୍ୟ, ସ୍ଥିତିବାନ୍ ବସ୍ତୁମାନଙ୍କ କ୍ଷେତ୍ରରେ ପ୍ରଯୋଜ୍ୟ ନୁହେଁ । ଅର୍ଥମାନଙ୍କରେ କୌଣସି ପାର୍ଥକ୍ୟ ଆମେ ଯଦି ଆବିଷ୍କାର କରିପାରୁ ନାଁ, ତେବେ ସେଗୁଡ଼ିକ ସମାନ ବୋଲି ଆମେ କହିପାରୁଁ । ଏହାର ଏକମାତ୍ର କାରଣ ହେଉଛି ଯେ ଏଠାରେ କେବଳ ଲକ୍ଷଣମାନହିଁ ରହିଛି । କିନ୍ତୁ ବସ୍ତୁଗୁଡ଼ିକ ସମପ୍ରକାର ହୋଇଥିଲେ ହେଁ, ସେଗୁଡ଼ିକ ଆବଶ୍ୟକ ରୂପେ ସମାନ ନୁହନ୍ତି" (ପୃ ୧୩୧) । ଅଧ୍ୟାପକ ଗ୍ରେଜର୍ଙ୍କ ମତରେ ଅଧ୍ୟାପକ ହୋଲ୍ଟ୍ସଙ୍କ ବିଶ୍ଳେଷଣ ହେଉଛି ସମୀକ୍ଷାତ୍ମକ ବାସ୍ତବବାଦୀମାନେ ସାର ବା ମାନସିକ ଅର୍ଥ ଶିରୋନାମରେ ନିର୍ଦ୍ଦେଶ କରିବାକୁ ଇଚ୍ଛାକରୁଥିବା ବିଷୟର ପ୍ରାୟତଃ ଏକ ସଠିକ୍ ବିବରଣୀ । କିନ୍ତୁ ସେ ମତ ଦେଇଛନ୍ତି ଯେ କେବଳ ଏହି ଅର୍ଥଗୁଡ଼ିକର ବା ଧର୍ମଗୁଡ଼ିକର ଉପସ୍ଥିତିରେ ଜ୍ଞାନ ସମସ୍ୟା ପର୍ଯ୍ୟବସିତ ନୁହେଁ । ବାସ୍ତବ ଦ୍ରବ୍ୟଗୁଡ଼ିକ ପ୍ରତି ଏଗୁଡ଼ିକର ନିର୍ଦ୍ଦେଶ ଏଥିରେ ଅନ୍ତର୍ଭୁକ୍ତ" (ପୃ ୧୩୩) । "ସ୍ଥିତିଶୀଳ ରୂପେ କୌଣସି ବସ୍ତୁ, ଯାହା **ସମ୍ବନ୍ଧରେ** ମୋର ଏକ ବିଶ୍ୱାସ ରହିଛି ଏବଂ ସେହି ବସ୍ତୁ ସମ୍ବନ୍ଧରେ **ଯାହା** (ଏକ ବୌଦ୍ଧିକ ଅନ୍ତଃସତ୍ତା ବା ଅର୍ଥ ବା ସାର) ମୁଁ ବିଶ୍ୱାସ କରୁଛି"—ଏ ଦୁଇଟିର ପାର୍ଥକ୍ୟକୁ ଆମେ ଯଦି ସ୍ୱୀକାର କରିବା, ତେବେ ଭ୍ରମ— ସମ୍ବନ୍ଧୀୟ ଅଧ୍ୟାପକ ପେରିଙ୍କ ଅସୁବିଧା ଦୂରୀଭୂତ ହୋଇଯିବ । ଆମେ ଭ୍ରମରେ ପଡ଼ିଥିବାବେଳେ ଆମର ମନଃସମକ୍ଷରେ ଏକ ଅର୍ଥ ଥାଏ ଏବଂ ଆମେ ଭ୍ରାନ୍ତଭାବେ ମନେ କରୁଥାଉଁ ଯେ ତାହା ଏକ ବାସ୍ତବ ଦ୍ରବ୍ୟକୁ ଗୁଣାନ୍ୱିତ କରୁଛି ।

ତାଙ୍କର ସାନ୍ତ୍ୱନା ଯୁକ୍ତି ବାଢ଼ିଛନ୍ତି ଯେ ଯଦିଓ ଆମର ଜୈବିକ ଶରୀରର ଅବର୍ତ୍ତମାନରେ "ଆତ୍ମସ ତାହାର ଆଧାର ଓ କେନ୍ଦ୍ର ହରାଇବ ଏବଂ ଏକ ବାହ୍ୟ ବସ୍ତୁର ଅବର୍ତ୍ତମାନରେ ତାହା ତାହାର ତାତ୍ପର୍ଯ୍ୟ ହରାଇବ ।" ତଥାପି ଆମେ ଆତ୍ମସକୁ ନିରପେକ୍ଷଭାବେ ଗ୍ରହଣ କରିପାରୁଁ ଏବଂ "ସମସ୍ତ ପ୍ରତିବନ୍ଦିତା ଓ ବ୍ୟାଖ୍ୟାକୁ ଅବରୋଧ କରିପାରୁଁ ।" କିନ୍ତୁ ଆତ୍ମସର ନିର୍ଦ୍ଦିଷ୍ଟ ଓ ଅବ୍ୟବହିତ ଧର୍ମ ସୁଦ୍ଧା ଅର୍ଥାତ୍ "ତାହାର କେବଳ ସଙ୍କେତଗୁଡ଼ିକୁ ଓ ଭାଷାକୁ ନିର୍ବୋଧ ସରି ଅନାଇ ରହିଲେ" ମଧ୍ୟ ସେଗୁଡ଼ିକର ଏକ ସୌନ୍ଦର୍ଯ୍ୟାତ୍ମକ ସତ୍ତା ଥାଏ; ତେଣୁ "ଆତ୍ମସଠାରୁ

ଭିନ୍ନ ବିଶିଷ୍ଟ ଓ କୁଟିଳ ଧରଣର ସତ୍ତାର ଅର୍ଥରେ ନିର୍ଦ୍ଦିଷ୍ଟରୂପେ ଏକ ଅନ୍ତର୍ନିହିତ ସତ୍ତା, ଏକ ଦ୍ରବ୍ୟ ରହିଛି ଏବଂ ତାହାକୁ ସେହି ନାମରେ ହିଁ ଅଭିହିତ କରିବା ଭଲ ।'' ସୁତରାଂ ଉକ୍ତର ସାନ୍ତ୍ୱନା ଅବତାରଣା କରିଛନ୍ତି ଯେ ସାର=ସାମାନ୍ୟ= ସ୍ୱକାଳବଦ୍ଧ ସୌନ୍ଦର୍ଯ୍ୟାତ୍ମକ ଦତ୍ତ—''ବୋଧ ବା ଚିନ୍ତାର ପ୍ରତୀକମାନ'' (ପୃ ୧୬୫); ଏଗୁଡ଼ିକ ଦ୍ରବ୍ୟରେ ରୂପାର୍ପିତ ସାର ସହିତ ସଂବେଦୋଭାବେ ସମାନ ହୋଇପାରେ, ଯଦିଓ ଅଭିପ୍ରାୟ ଏବଂ ରୂପାୟନ ''ସ୍ଥିତି, ଉତ୍ସ, ଦେଶ, କାଳ, ଦ୍ରବ୍ୟ, କ୍ରିୟା ଓ ସ୍ଥାୟିତ୍ୱ ଦୃଷ୍ଟିରୁ ଭିନ୍ନ ଭିନ୍ନ ।''

ବ୍ୟକ୍ତିର ଅନୁଭୂତ ପରିସରର ''ଏକ ଗଠନ ରହିଛି, ଏବଂ ତାହା ଅର୍ଥଗୁଡ଼ିକରେ ଓ ସ୍ୱୀକୃତିମାନଙ୍କରେ ପରିପ୍ଳୁତ''—ଏକଥା ମିଚିଗାନ୍‌ର ଅଧ୍ୟାପକ ପେଲର୍ଜଙ୍କୁ ''ଏକ ଅକାଟ୍ୟ ଘଟଣାମୂଳକ ବ୍ୟାପାର'' ପରି ମନେ ହୋଇଛି । ବହୁ ସମସାମୟିକ ଚିନ୍ତାର ମୁଖ୍ୟ ଭ୍ରାନ୍ତି ହେଉଛି, ''ବସ୍ତୁତ୍ୱ ଓ ପ୍ରତ୍ୟକ୍ଷଣକୁ ସହଯୁକ୍ତ'' ବୋଲି ସ୍ୱୀକାର କରିବା ପାଇଁ ଅନିଚ୍ଛା ପ୍ରକାଶ; ଭିନ୍ନ ଭାବରେ କହିଲେ, ପ୍ରତ୍ୟକ୍ଷକାରୀଠାରେ ''ପ୍ରତ୍ୟକ୍ଷର ଅନ୍ତଃ ସତ୍ତା ଥାଏ ଏବଂ ତଦ୍‌ବ୍ୟତୀତ ତାହାର ବିଶେଷକ ସ୍ୱରୂପ ବାସ୍ତବ ଅର୍ଥମାନଙ୍କ ସହିତ ସମ୍ମିଶ୍ରିତ ହୋଇ ସାମଞ୍ଜସ୍ୟର ଏକ କ୍ରିୟାତ୍ମକ ସଂସୃଷ୍ଟି ମଧ୍ୟ ଥାଏ; ଏଗୁଡ଼ିକ ହେଉଛି ପ୍ରତ୍ୟକ୍ଷର ବୈଶିଷ୍ଟ୍ୟ ।'' ତାଙ୍କ ମତରେ ଯାହା ଏଠାରେ ଆବଶ୍ୟକ, ତାହା ହେଉଛି ''ଧୈର୍ଯ୍ୟ ତଥା ଅଧ୍ୟବସାୟ ସହକାରେ ବିଶ୍ଳେଷଣ । ବ୍ୟକ୍ତିଗତ ଅନୁଭୂତିର ଗଠନ ତଥା ଅର୍ଥମାନଙ୍କ ପ୍ରତି ଯଥୋପଯୁକ୍ତ ବିଚାର କରି ପ୍ରତି ପଦକ୍ଷେପରେ ଅଗ୍ରଗତି କରିବା ନିମନ୍ତେ ଏହି ବିଶ୍ଳେଷଣ ସମର୍ଥ ହେବା ଆବଶ୍ୟକ'' (ପୃ ୧୯୭) । ଅତୀତ ଜ୍ଞାନ ସମ୍ବନ୍ଧରେ ସେ କହିଛନ୍ତି, ''ଅଭିପ୍ରାୟ ରହିଥିବା ସମସ୍ତର ସ୍ଥିତିଶୀଳ ସତ୍ତା ସହିତ ସମଭାବରେ, ସ୍ଥିତିଶୀଳ ହୋଇ ଏବେ ରହିନଥିବା ସତ୍ତାକୁ ମଧ୍ୟ ମନୋଗତ କରିବା ପାଇଁ ଆମେ ସମର୍ଥ'' (ପୃ ୨୧୫) ।

ଅଧ୍ୟାପକ ପେଲର୍ଜ ନିମ୍ନଲିଖିତ ପାର୍ଥକ୍ୟର ଉଲ୍ଲେଖ କରିଛନ୍ତି :

''ଭୌତିକ ଜଗତର ଜ୍ଞାନଠାରୁ ଅନ୍ୟାନ୍ୟ ଘଟଣାର ଜ୍ଞାନ ଭିନ୍ନ । ଭୌତିକ ଜଗତର ଜ୍ଞାନ ଦତ୍ତ ସମ୍ବନ୍ଧୀୟ ଧାରଣା ଗଠନ ହୋଇଥିବା ସ୍ଥଳେ ଅନ୍ୟାନ୍ୟ ଘଟଣାର ଜ୍ଞାନ ହେଉଛି ଅନ୍ତର୍ବସ୍ତୁର ତାଦାତ୍ମ୍ୟ ସ୍ୱୀକାର ମାଧ୍ୟମରେ ଜ୍ଞାନ । ଉଦାହରଣ ସ୍ୱରୂପ, ମୋ' ବନ୍ଧୁଙ୍କ ମୁହଁର ଭାବଭଙ୍ଗୀକୁ ମୁଁ ଯେତେବେଳେ ଆମୋଦ ବୋଲି ଅର୍ଥ କରେ, ସେତେବେଳେ ଏହି ଭାବଭଙ୍ଗୀକୁ ମୁଁ ଏକ ଅନୁଭୂତିର ପ୍ରତୀକରୂପେ ବ୍ୟବହାର କରୁଛି; ଏବଂ ଏହି ଅନୁଭୂତି ମୁଖ୍ୟତଃ ମୋ ପାଇଁ ଯେମିତି, ତାଙ୍କ ପାଇଁ ମଧ୍ୟ ସେମିତି ବୋଲି ମୁଁ ବିବେଚନା କରୁଛି'' (ପୃ ୨୧୭) ।

ପରିଶେଷରେ, ଅଧ୍ୟାପକ ଷ୍ଟ୍ରଙ୍ଗ୍ 'ଦତ୍ତ'ର ସ୍ୱଭାବ ପରୀକ୍ଷା କରିଛନ୍ତି । 'ଦତ୍ତ' ସ୍ଥାନରେ ସେ ସାନ୍ତାୟନାଙ୍କ "ସାର'କୁ ପ୍ରତିଷ୍ଠାପନ କରିଛନ୍ତି । (ଆମେ ଦେଖିଛୁ ଯେ ସମୀକ୍ଷାତ୍ମକ ବାସ୍ତବବାଦ ଦ୍ୱାରା ଏହା 'ଅର୍ଥ' ସହିତ ସମାନ ବୋଲି ମଧ୍ୟ ଗୃହୀତ ହୁଏ । ) ଅଧ୍ୟାପକ ଷ୍ଟ୍ରଙ୍ଗଙ୍କ ସିଦ୍ଧାନ୍ତ ହେଉଛି ଯେ ଦତ୍ତଗୁଡ଼ିକ ସ୍ୱଭାବ ଦୃଷ୍ଟିରୁ "ସ୍ଥିତବସ୍ତୁ ନୁହେଁ, ସେଗୁଡ଼ିକ ହେଉଛି ସାମାନ୍ୟ, ବସ୍ତୁମାନଙ୍କ ନିତ୍ୟ ପ୍ରକୃତି । ପୁଣି ଏଗୁଡ଼ିକ ଏବଂବିଧ ଯେ ରୂପାୟିତ ସାର ଓ ଦତ୍ତସାର ସମାନ ହେବା ସମ୍ଭବପର ।"

ଆମେ ଶିଖାଇଛୁ ଯେ (ପୃ ୨୩୫) "ଇନ୍ଦ୍ରିୟ-ପ୍ରତ୍ୟକ୍ଷରେ ଆମକୁ ଯାହା ଦତ୍ତ ହୋଇଥାଏ, ତାହା ହେଉଛି ଏକ ଅର୍ଥରୂପେ ସଂବେଦନ; ଅଥବା ଆହୁରି ଯଥାର୍ଥଭାବେ କହିଲେ, ଯାହା ଦତ୍ତ ତାହା ହେଉଛି ଅର୍ଥ, ସମ୍ବେଦନ ନୁହେଁ ।·········ଏହି ତାତ୍ପର୍ଯ୍ୟ ବା ଅର୍ଥ ବା ସାର ଏକ ସ୍ଥିତବସ୍ତୁ ନୁହେଁ; ଏହା ଦେଶକାଳରେ ନଥାଏ । କିନ୍ତୁ ଆମେ ଏକ ସାମାନ୍ୟ ବା ବସ୍ତୁଭିତ୍ତିକ ସତ୍ତା ସମ୍ବନ୍ଧରେ ଚିନ୍ତା କରୁଥିବା ସମୟର ଅର୍ଥ ଭଳି ଏହା ସମ୍ପୂର୍ଣ୍ଣରୂପେ ବିଶ୍ୱାସ୍ୟ; ଅଧିକନ୍ତୁ, ଦତ୍ତ "ଯଥାର୍ଥରେ ଏକ ଇନ୍ଦ୍ରିୟଗ୍ରାହ୍ୟ ଘଟଣା ନୁହେଁ । ଆମେ ଏହାକୁ ଏକ ଅନୁଭବ ରୂପେ ପ୍ରକୃତରେ ପାଇପାରିବା ନାହିଁ । ଆମେ କେବଳ ଏହାଆଡ଼କୁ ଉନ୍ମୁଖ ହୋଇପାରିବା ବା ତାହାକୁ ମନେକରି ପାରିବା । ·········ଏଠାରେ ଅର୍ଥକୁ ଏକ ସ୍ୱତନ୍ତ୍ର ଧରଣର ଅନୁଭବ ବୋଲି ବୁଝିବା ଠିକ୍ ନୁହେଁ । ଏହାକୁ ବରଂ ଅନୁଭବ ଦ୍ୱାରା ସମ୍ପାଦିତ ଏକ କ୍ରିୟାରୂପେ ବୁଝିବା ହିଁ ଠିକ୍ ହେବ" (ପୃ ୨୩୭) ।

ସମନ୍ୱିତ ପ୍ରତୀକ ପଦ୍ଧତିର ସର୍ବଶେଷ କୃତିତ୍ୱ ବୋଲି ଯାହାକୁ ଦାବୀ କରାଯାଏ, ତନ୍ମିଶ୍ର ଅର୍ଥପଦର ଏହି ବିଭିନ୍ନ ବ୍ୟବହାରମାନଙ୍କ ସହ ସମ୍ବନ୍ଧ ସଂସ୍ଥାପନର ଆମେ ଏଠାରେ ପ୍ରୟାସ କରିବା ଅନାବଶ୍ୟକ । (୧) ଯେପରି ଆଶଙ୍କା କରାଯାଉଥିଲା, ନବ୍ୟ-ବାସ୍ତବବାଦୀ, ବ୍ୟବହାରବାଦୀ ଓ ଆଦର୍ଶବାଦୀଙ୍କ ମତ-ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିବା ଏହି ଉକ୍ତ ବହୁବାଦ ବିସମ୍ବାଦର ଉଦ୍ରେକ

(୧) Professor Sellars ଙ୍କ ସ୍ୱତନ୍ତ୍ର ଗ୍ରନ୍ଥମାନଙ୍କରେ ଅର୍ଥାତ୍ Critical Realism (୧୯୧୬) ଓ Evolutionary Naturalism (୧୯୨୧) ରେ ତାଙ୍କଦ୍ୱାରା ଅର୍ଥ ପଦଟି ଯେପରି ବ୍ୟବହୃତ ହୋଇଛି, ତାହା Critical Realism ଗ୍ରନ୍ଥର ନିମ୍ନଲିଖିତ ସୂତ୍ରଦ୍ୱାରା ପରିସ୍ଫୁଟ ହୋଇଛି (ପୃ ୨୮୨) । "ଅର୍ଥ ସ୍ୱଭାବରେ ଜ୍ଞାନ ସତ୍ୟର ପୂର୍ବବର୍ତ୍ତୀ । ସତ୍ୟ ହେଉଛି ଉଦ୍ଦିଷ୍ଟ ସନ୍ଦେହ ଦୃଷ୍ଟିରୁ ମନନାତ୍ମକ ଗମ୍ଭୀରତା ସମ୍ବଳିତ ଜ୍ଞାନ ଅବବୋଧ ।"

କରିଛି । କିନ୍ତୁ ଭୁଲ୍ ବୁଝାମଣା ଓ ମତାନୈକ୍ୟର ଏକମାତ୍ର ଅନିବାର୍ଯ୍ୟ ଉତ୍ସ, ଅର୍ଥାତ୍ ଅର୍ଥ ପଦଟିର ସଙ୍ଗତ ବ୍ୟବହାର, ନିର୍ବିବାଦରେ ଅନୁମୋଦିତ ହୋଇଯାଇଛି । ମନେ ହୁଏ ସମସ୍ତ ଅନିଶ୍ଚିତ ଅବସ୍ଥାରେ ବ୍ୟବହାର ନିମନ୍ତେ ଆମେରିକୀୟ ଦାର୍ଶନିକ ଶବ୍ଦସମ୍ଭାର ମଧ୍ୟକୁ ଏହାର ପ୍ରବେଶ ବିନା ଓଜର ଆପତ୍ତିରେ ସ୍ୱୀକାର କରିନିଆଯାଇଛି । କିନ୍ତୁ ସୁଖର କଥା ଇଂରାଜୀ ପାଠକକୁ ଏହା ତାହାର ଅଧିକାଂଶ ବିଲକ୍ଷଣ ପ୍ରସଙ୍ଗରେ ଏବେସୁଦ୍ଧା ଅଡୁଆ ଶୁଣାଯାଉଛି ।

ଅନଭିଜ୍ଞ ବ୍ୟକ୍ତିମାନେ ହୁଏତ ମନେ କରିବେ ଯେ ତତ୍ତ୍ୱବିଜ୍ଞାନୀ ଓ ସମୀକ୍ଷାତ୍ମକ ବାସ୍ତବବାଦୀମାନଙ୍କ ପଦ୍ଧତି ଅସାଧାରଣ । ତେଣୁ ଜଣେ ମନୋବିଜ୍ଞାନୀଙ୍କ ଦ୍ୱାରା କରାଯାଇଥିବା ଏହି ଶବ୍ଦର ବ୍ୟବହାର ପ୍ରତି ଆମେ ଧ୍ୟାନ ଦେଇପାରୁ । କୋଡ଼ିଏ ବର୍ଷରୁ ଅଧିକ କାଳ ଅଧ୍ୟାପକ ହ୍ୟୁଗୋ ମୁନ୍‌ଷ୍ଟେରବର୍ଗଙ୍କ ଲେଖାର ପ୍ରବଳ ପ୍ରଭାବ ଇଂଲଣ୍ଡ ଓ ଜର୍ମାନୀର ଚିନ୍ତାଧାରା ଉପରେ ପଡ଼ିଥିଲା । ଆମେରିକାର ଚିନ୍ତାଧାରାରେ ମଧ୍ୟ ତାଙ୍କ ଲେଖାର ପ୍ରଭାବ ନ୍ୟୂନ ନୁହେଁ । ତାଙ୍କ ପୁସ୍ତକ **ଇଟରନେଲ୍ ଭେଲ୍ୟୁଜ** [ଶାଶ୍ୱତ ମୂଲ୍ୟ] (୧୯୦୯) ପ୍ରଥମରେ ଜର୍ମାନ ଭାଷାରେ ପ୍ରକାଶିତ ହୋଇଥିଲା ଏବଂ ପରେ ପରିବର୍ଦ୍ଧିତ ଓ ପରିମାର୍ଜିତ ଆକାରରେ ଇଂରାଜୀ ଭାଷାରେ ପ୍ରକାଶିତ ହୋଇଥିଲା । ପ୍ରଥମ ବୋଧ ଉପରେ ଗୁରୁତ୍ୱ ଅର୍ପଣ କରୁଥିବା ଆମେରିକୀୟ ଶୈଳୀର ଦାର୍ଶନିକ ଚିନ୍ତନ, ଯାହାର ବହୁ ଅଂଶ "ଦର୍ଶନର ପ୍ରକୃତ ବୈଶିଷ୍ଟ୍ୟର ବିରୋଧୀ ହୋଇ ଯାଇଛି ।" ତଦ୍ ବିରୁଦ୍ଧରେ ଏହି ପୁସ୍ତକ ପ୍ରତିବାଦ ଜ୍ଞାପନର ଏକ ସଯତ୍ନ ଓ ସୁବ୍ୟବସ୍ଥିତ ଆଲେଖ୍ୟ ବୋଲି ଦାବୀ କରାଯାଏ । ଆରମ୍ଭରୁ ତାଙ୍କ ମୁଖବନ୍ଧରେ ସେ ଆମକୁ ଜଣାଇ ଦେଇଛନ୍ତି ଯେ ତାଙ୍କର ପୁସ୍ତକଟିର ଅଭିମୁଖ୍ୟ ଓ ଅର୍ଥ ତାଙ୍କର ଆନ୍ତରିକ ଦୃଢ ବିଶ୍ୱାସଲବ୍ଧ । ପ୍ରଥମ ପୃଷ୍ଠାରେ ସେ ଯେପରିଭାବେ ରୁଚିରେ ପାର୍ଥକ୍ୟ ରହିପାରେ ବୋଲି ସ୍ୱୀକାର କରିଛନ୍ତି, ତାହା "ଚୋଟିଏ ସମ୍ପ୍ରଦାୟର ସୌନ୍ଦର୍ଯ୍ୟ ଅନ୍ୟ ଏକ ସମ୍ପ୍ରଦାୟ ଦ୍ୱାରା କୁତ୍ସିତତା ରୂପେ ଅର୍ଥ କରାଯାଇ ପାରେ ବୋଲି କହିବା ସହିତ ସମାନ । ଦ୍ୱିତୀୟ ପୃଷ୍ଠାରେ ରହିଛି, "ଆଦର୍ଶବାଦକୁ ସ୍ୱୀକାର କରିବାର ଅର୍ଥ ନୁହେଁ ଯେ ତାହା ଠିକ୍ ବୋଲି ପ୍ରତିପାଦିତ କରିବା" ଏଥିରୁ ସୂଚିତ ହେଉଛି ଯେ ଦୃଢ଼ୋକ୍ତି ଓ ପ୍ରମାଣ ସମାନ ନୁହେଁ । ତୃତୀୟ ପୃଷ୍ଠାରେ ସେ ଆମକୁ ଜଣାଇ ଦେଇଛନ୍ତି ଯେ "ଜୀବନ ଓ ସତ୍ତାର ଅର୍ଥର ଏକ ନୂତନ ଅଭିବ୍ୟକ୍ତି ପାଇଁ ଜଗତ ଲାଳାୟିତ ।" ଚତୁର୍ଥ ପୃଷ୍ଠାରେ ଲିପିବଦ୍ଧ ରହିଛି ଯେ ବିଜ୍ଞାନଗୁଡ଼ିକ ସ୍ୱକୀୟ ଭିତ୍ତିର ସମୀକ୍ଷା ଦାବି କରେ ବୋଲି କହିବାର "ଅର୍ଥ ହେଉଛି ଯେଉଁଗୁଡ଼ିକ ସତ୍ୟର ଯଥାର୍ଥ ମୂଲ୍ୟ ସମ୍ବନ୍ଧରେ ପ୍ରଶ୍ନୋତ୍ଥାପନ କରେ ।" ବ୍ୟାବହାରିକ ବ୍ୟାପାରରେ "ଜୀବନର ଅର୍ଥ ବିପଦଗ୍ରସ୍ତ", "ଏକ ନୂତନ ଦର୍ଶନ ଯାହା

ଜୀବନ୍ ଓ ସତ୍ତାକୁ ଅର୍ଥ ଦେଇପାରିବ'' ତାହାର ଆବଶ୍ୟକତା ରହୁଛି । ପଞ୍ଚମ ପୃଷ୍ଠାରେ କୁହା ଯାଇଛି—

''ଯାହା ମୂଲ୍ୟବାନ୍ ତାହାର ଅର୍ଥ ଜଗତ ସମ୍ବନ୍ଧରେ ଆମ ମତ ନିର୍ଦ୍ଧାରଣ କରିବା ସୁନିଶ୍ଚିତ ।''

''ଯେ କୌଣସି ମୂଲ୍ୟାୟନର ମୌଳିକ ଅର୍ଥ କଣ, ତାହା ଦର୍ଶନ ବୁଝିବା ଆବଶ୍ୟକ ।''

''ସ୍ୱର୍ଗୀୟ ଅନୁହଲେସ୍ ବିନ୍ଦୁସ୍ୱରୂପେ ଦାର୍ଶନିକ ଯାହା ରଖେ, ତାହା ହେଉଛି ବିଶିଷ୍ଟ ଘଟଣାମାନଙ୍କ ପ୍ରକୃତ ଅର୍ଥ କଣ ହେବା ସମ୍ଭବପର ଏବଂ ଜଗତର ଆବୌ ଜ୍ଞାନ ଲାଭ କରିବାର ଅର୍ଥ କଣ ।''

ଏହି ପୁସ୍ତକର ପ୍ରଥମ ଭାଗର ନାମ ରଖାଯାଇଛି 'ମୂଲ୍ୟର ଅର୍ଥ' ଏବଂ ତାହାର ୭୪ ପୃଷ୍ଠାରୁ ୭୯ ପୃଷ୍ଠା ପର୍ଯ୍ୟନ୍ତ ଛଅ ପୃଷ୍ଠାରେ ''ନିର୍ଣ୍ଣୟାତ୍ମକ ତଥ୍ୟ'' ଉଦ୍‌ଘାଟିତ ହୋଇଛି । ଏହି ଛଅ ପୃଷ୍ଠାରେ 'ଅର୍ଥ' ପଦଟି ଷୋହଳ ଥରରୁ କମ୍ ବ୍ୟବହାର କରାଯାଇ ନାହିଁ । ନିର୍ଣ୍ଣୟାତ୍ମକ ତଥ୍ୟଟି ହେଉଛି ଯେ ଘଟଣାମାନ ବାରମ୍ବାର ସଂଘଟିତ ହୁଏ ବୋଲି ଆମେ ଦାବି କରୁ । ''ଆମର ଦାବି ହେଉଛି, ଏକ ଜଗତ ରହିବା ଆବଶ୍ୟକ । ଏହାର ଅର୍ଥ ହେଉଛି ଆମ ଅନୁଭୂତଗୁଡିକ କେବଳ ସାମୟିକ ହେବାଠାରୁ ଅଧିକ । ଆମର ସତ୍ତାଗୁଡ଼ିକୁ ଶାଶ୍ୱତ ଅର୍ଥ ଦେବା ପାଇଁ ଏହା ମୂଳ ଦଲିଲ୍'' (ପୃ ୭୫) । ''ଦେହି ଏକ ଘଟଣାର ବାରମ୍ବାର ସଂଘଟନ ଦ୍ୱାରା ଜଗତ ଜଗତ ହୁଏ ଏବଂ ଏହି ତାଦାତ୍ମ୍ୟର ଅର୍ଥ ପରିପୂରଣ, ତାହାର ଅର୍ଥ ସନ୍ତୋଷ, ତାହାର ଅର୍ଥ ମୂଲ୍ୟ'' (ପୃ ୭୯) ।

ଇତ୍ୟବସରରେ ଲକ୍ଷ୍ୟ କରାଯାଇ ପାରେ ଯେ ତାଦାତ୍ମ୍ୟ ଦ୍ୱାରା ପରିବର୍ତ୍ତନ ବହିର୍ଭୂତ ହୁଏ ନାହିଁ; କାରଣ ଏକଥା ପ୍ରାକ୍ ସ୍ୱୀକୃତ ଯେ ଯାହା ପରିବର୍ତ୍ତିତ ହୁଏ, ''ତାହାର ପରିବର୍ତ୍ତନଗୁଡ଼ିକରେ ତଥାପି ଏକ ତାଦାତ୍ମ୍ୟ ରହିବା ସୁନିଶ୍ଚିତ । ଏତଦ୍ଦ୍ୱାରା ପ୍ରଦର୍ଶିତ ଯେ, ତାହାର ନିଜସ୍ୱ ଅର୍ଥର ହିଁ ପରିବର୍ତ୍ତନ ଘଟୁଛି ।'' ବାସ୍ତବିକ, ''ଏହି ସତ୍ୟ ଜଗତ ସହିତ ବସ୍ତୁଙ୍କ ମୂଲ୍ୟମାନଙ୍କ ଯାଥାର୍ଥ୍ୟ ବିଷୟକ ଆମ ପ୍ରଶ୍ନର ପ୍ରାସଙ୍ଗିକ ଅର୍ଥ ବ୍ୟତୀତ ଅନ୍ୟ କୌଣସି ଅର୍ଥ ରହି ନପାରେ ।'' ଏହି ଜଗତ ହେଉଛି ''ନିଜକୁ ପାବ୍ୟସ୍ତ କରୁଥିବା ଆମ ଅନୁଭୂତମାନଙ୍କ ଜଗତ'' ଏବଂ ''ଏତଦ୍ ସମ୍ପର୍କୀୟ ପ୍ରଶ୍ନକୁ ଅସ୍ୱୀକାର କରିବା ଅର୍ଥଶୂନ୍ୟ ହେବ ।''

ଏହି ନମନୀୟ ଭିଷାତ୍ମକ ଉପକରଣ ସାହାଯ୍ୟରେ ଯୁକ୍ତିଟିକୁ ସମ୍ପୂର୍ଣ୍ଣ କରାଯାଇ ପାରେ । ଯେ କୌଣସି ବିଷୟର ତାଦାତ୍ମ୍ୟ ମୂଳକ ବାରମ୍ବାର ସଂଘଟନ ତାହାର

ଅର୍ଥ ଅଟେ ବୋଲି ଗ୍ରହଣ କରିନେଇ ହେବ । ପୁଣି ଯେ କୌଣସି ବିଷୟର ଅର୍ଥକୁ ତାହାର ମୂଲ୍ୟ ବୋଲି ଗ୍ରହଣ କରିନେଇ ହେବ । ତେଣୁ ମନେ ହେବ ଯେ "ତାଦାତ୍ମ୍ୟ-ମୂଳକ ବାରମ୍ବାର ସଙ୍ଘଟନର ଅର୍ଥ ମୂଲ୍ୟ"—ଉପର୍ଯ୍ୟୁକ୍ତ ଏହି ଉକ୍ତିକୁ ଅର୍ଥର ଅର୍ଥ ହେଉଛି ଅର୍ଥ—ଏହି ଆକାରରେ ଅକ୍ଳେଶରେ ଉପସ୍ଥାପିତ କରାଯାଇ-ପାରିଥାନ୍ତା ।

ଏହିପରିଭାବେ ବ୍ୟକ୍ତ ହେବା ଦ୍ୱାରା ଭାଷାରେ ସୁସ୍ପଷ୍ଟତା ଦିଗରୁ ଯେତିକି ଲାଭ ହୁଏ, ଓଜସ୍ୱିତା ଦିଗରୁ ସେତିକି କ୍ଷତି ହୁଏ । କିନ୍ତୁ ଏହିପରିଭାବେ ବ୍ୟକ୍ତ ହେବାଦ୍ୱାରା ଏହା ସୂଚିତ କରେ ଯେ ଆମେ ଅବଲମ୍ବେ ଶେଷ ପରିଚ୍ଛେଦ ପର୍ଯ୍ୟନ୍ତ ଅଗ୍ରଗତି କରିସିବା ସମ୍ଭବପର । ଶେଷ ପରିଚ୍ଛେଦରେ ଏହି ସୁପ୍ରସିଦ୍ଧ ମନୋବିଜ୍ଞାନୀ ମୂଲ୍ୟ ସମ୍ବନ୍ଧୀୟ ତାଙ୍କ ସର୍ବଶେଷ ମତବାଦରେ ଉପନୀତ ହୋଇଛନ୍ତି । ଏଥିନିମନ୍ତେ ଗ୍ରନ୍ଥର ଅନ୍ତର୍ବର୍ତ୍ତୀ ପୃଷ୍ଠାମାନଙ୍କରେ ନିମ୍ନଲିଖିତ ସୂତ୍ରମାନଙ୍କ ଭୂଲ୍ୟ କେତେକ ସୂତ୍ରର ଉଲ୍ଲେଖ କରାଯାଇଛି—

"ଆମେ ନେପୋଲିଅନଙ୍କ ସଂକଳ୍ପକୁ ଯଦି ତାହାର ଐତିହାସିକ ଅର୍ଥରେ ବୁଝିବାକୁ ଚାହୁଁ, ତାହା ଏକ ଜ୍ଞାତବସ୍ତୁରୂପେ ଆମ ସମକ୍ଷରେ ଉପସ୍ଥିତ ହୋଇ ନପାରେ । କାର୍ଯ୍ୟଟିକୁ ଯଦି ତତ୍‌ସମ୍ପୃକ୍ତ ଅଭିବୃତ୍ତିର ଅର୍ଥ ମାଧ୍ୟମରେ ବୁଝାଯାଏ, ତେବେ ତାହା ସମ୍ପୂର୍ଣ୍ଣରୂପେ ବୁଝାପଡ଼େ । ଯଦି ନେପୋଲିଅନଙ୍କ ସଂକଳ୍ପକୁ ତାହାର ଅର୍ଥ ମାଧ୍ୟମରେ ସମ୍ପୂର୍ଣ୍ଣରୂପେ ବୁଝାଯାଏ, ତେବେ ଅନ୍ୟାନ୍ୟ ଅନୁସନ୍ଧାନଦ୍ୱାରା ବୁଝିବାକୁ ଆଉ କିଛି ଅବଶେଷ ରହେ ନାହିଁ ।" (ପୃ ୯୪)

ଏହି ଉକ୍ତି ଇତିହାସର ଅର୍ଥ ବୁଝାଉଅଛି ।

"ଆନନ୍ଦାଲୋକ ମାନବୀୟ ଅତ୍ମାକୁ ଉଦ୍ଭାସିତ କରେ । ଏହି ଘଟଣାରୁ ଜଣା-ପଡୁଛି ଯେ ଜଗତ ତାହାର ଅତିବୈକ୍ତିକ ଅର୍ଥରେ ପରମ ମୂଲ୍ୟବାନ୍" (ପୃ ୨୦୨) । ଏହି ଉକ୍ତି ଆନନ୍ଦର ଅର୍ଥ ବୁଝାଉଅଛି ।

"ସତ୍ତ୍ୱର ମୂଲ୍ୟ ତଦ୍ଦ୍ୱାରା ଉଦ୍ଦିଷ୍ଟ ପ୍ରତୀକ୍ଷାରେ ରହିଛି ।" ଏହି ଉକ୍ତି ସତ୍ତ୍ୱର ଅର୍ଥ ବୁଝାଉଅଛି ।

"ଆମର ଅଭିଳାଷମାନଙ୍କ ଅନ୍ତର୍ଗତ ସାମଞ୍ଜସ୍ୟ ପରିଶେଷରେ ଆମ ଜୀବନକୁ ତାହାର ପରିପୂର୍ଣ୍ଣ ଅର୍ଥ ଦିଏ । ·········ଯେଉଁ ସ୍ୱରଗୁଡ଼ିକୁ ଆମ ଜୀବନ ଅର୍ଥ ଦିଏ, ସେଗୁଡ଼ିକ ଏକ ସ୍ୱପ୍ରତିଷ୍ଠ୍ୟମାନ ସଂକଳ୍ପ ବ୍ୟକ୍ତ କରେ ।" (ପୃ ୨୫୩) ।

ଏହି ଉକ୍ତି ଜୀବନ ଓ ସଙ୍ଗୀତ ଉଭୟର ଅର୍ଥ ବୁଝାଉଅଛି ।

ଏତଦନନ୍ତର ପରିଶେଷରେ ଆମେ ଶେଷ ପରିଚ୍ଛେଦର ଦ୍ୱାରରେ ଆସି ପହଞ୍ଚୁ । ଏହାକୁ ପରମତତ୍ତ୍ୱର ମୂଲ୍ୟ ବିଷୟକ ଆଲୋଚନାରେ ବିନିଯୋଗ କରାଯାଇଛି । ଛୟାଳିଶ ପୃଷ୍ଠାବ୍ୟାପୀ ଏହି ପରିଚ୍ଛେଦରେ ଅର୍ଥ ଶବ୍ଦ ଅଠାବନ ଥରରୁ କମ୍ ବ୍ୟବହୃତ ହୋଇନାହିଁ । ଶୀର୍ଷସୀମା ନିକଟବର୍ତ୍ତୀ ହୋଇ ଆସିବା ଅବସ୍ଥାରେ (ଏକ ନୂତନ ଚରମ ମୂଲ୍ୟ, ଦର୍ଶନର ପରମତତ୍ତ୍ୱ, ସମସ୍ତ ସତ୍ତ୍ୱାକୁ ଅନ୍ତସ୍ଥ କରି ରହିଥିବା ମୌଳିକ ପରମତତ୍ତ୍ୱ ସମକ୍ଷରେ ଆମେ ବର୍ତ୍ତମାନ ଦଣ୍ଡାୟମାନ" (ପୃ ୩୯୯) ଏହି ରହସ୍ୟୋଦ୍‌ଘାଟକ ଶବ୍ଦର ବ୍ୟବହାର ପ୍ରାୟ ପ୍ରତ୍ୟେକ ବାକ୍ୟରେ ଦୃଷ୍ଟିରେ ପଡ଼ିବ । ୪୦୦ ତମ ପୃଷ୍ଠାରେ "ଆମେ ଏକ ବ୍ୟାପକ ଦୃଷ୍ଟିଭଙ୍ଗୀ ଗ୍ରହଣ କରିନେବା ସମ୍ଭବପର ।" ତାଦାତ୍ମ୍ୟ ସ୍ତରରେ ଆମର କାମନା ଯଦି ପରିପୂର୍ତ୍ତି ଲାଭ କରିଥାଏ, ତେବେ "ଜଗତର ମୂଲ୍ୟ ସମ୍ବନ୍ଧରେ ଅଧିକ ପ୍ରଶ୍ନୋତ୍‌ଥାପନର କୌଣସି ସମ୍ଭବପର ଅର୍ଥ ରହିବ ନାହିଁ ।"

"ଆମର ସମଗ୍ର ଇନ୍ଦ୍ରିୟାନୁଭୂତ ବର୍ତ୍ତମାନ ତାହାର ଐକ୍ୟ, ତାହାର ବିଶ୍ରାନ୍ତି, ତାହାର ଚରମ ଅର୍ଥ ଲାଭ କରିଛି ।... ଅତି-ଆତ୍ମାର ଅତି-ଇନ୍ଦ୍ରିୟାନୁଭୂତ ସହିତ ମୂଲ୍ୟର ଅର୍ଥ ସମ୍ବନ୍ଧାନ୍ୱିତ ହୋଇଛି ।...ଏଠାରେ ଶେଷଥର ପାଇଁ ଆମେ ବାହ୍ୟ-ଜଗତ୍ ସହ-ଜଗତ୍ ଓ ଅନ୍ତର୍ଜଗତ ମଧ୍ୟରେ ପାର୍ଥକ୍ୟ ରକ୍ଷା କରି ପାରୁଁ ଏବଂ ପ୍ରତ୍ୟେକ ଜଗତ୍ ଅତି-ସତ୍ତ୍ୱାର ସମ୍ପର୍କରେ ଆସି କିପରି ତାହାର ଅର୍ଥର ସମ୍ପ୍ରସାରଣ କରେ ତାହାର ଆମେ ପରୀକ୍ଷା କରି ପାରୁଁ ।... ଜଗତର 'ଉପାଦାନ' ସମ୍ବନ୍ଧରେ ଅନୁସନ୍ଧାନର ଏକ ଅର୍ଥ ରହିପାରେ, କେବଳ ଯଦି ପରସ୍ପର ପୃଥକ୍‌କରଣଯୋଗ୍ୟ ଯଥେଷ୍ଟ ସଂଖ୍ୟକ ଉପାଦାନ ଥାଏ । ଯେତେବେଳେ ସମସ୍ତ ବିଷୟ ସମଗ୍ରକରେ ସଙ୍କଳ୍ପ ହୋଇଥାଏ, ସେତେବେଳେ ଏହି ସଙ୍କଳ୍ପ ପ୍ରକୃତରେ କଣ, ତାହା ଆବିଷ୍କାର କରିବାର କୌଣସି ଅର୍ଥ ରହି ନ ପାରେ ।... ଗୋଟିଏ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାର ଅର୍ଥ ହେଉଛି ଯେ ସଙ୍କଳ୍ପଟି ତାହାର ଉଦ୍ଦିଷ୍ଟ ବସ୍ତୁକୁ ଏକ ନୂତନ ଆକାରରେ ସଂରକ୍ଷଣ କରିଛି ।... ଜଗତର ଅର୍ଥ ହେଉଛି ଲକ୍ଷ୍ୟ କରିବାର ଅଧିକ ପ୍ରାଚୁର୍ଯ୍ୟ ପ୍ରତି ଲକ୍ଷ୍ୟ କରିବା, ଯାହା ତଥାପି ନିଜ ସହିତ ତାଦାତ୍ମ୍ୟ ରକ୍ଷା କରେ । ଏହି କ୍ରିୟାରେ ହିଁ ଯାହା ଘଟି-ନାହିଁ ଏବଂ ଯାହା ଘଟି ଯାଇଛି ଉଭୟ ଏକୀଭୂତ । ଏ ଦୁଇଟିର କାଳିକ ଓ ପାରସ୍ପରିକ ସମ୍ବନ୍ଧ କ୍ରିୟାଟିକୁ ଐକ୍ୟ ଓ ଅର୍ଥ ଦିଏ ।"

ଦଶ ପୃଷ୍ଠା ପରେ ମଧ୍ୟ (ପୃ ୪୧୦) ଏହି ବିଷୟର ଗତି ଅବ୍ୟାହତ ରହିଥାଏ ।

"ଯେତେବେଳେ କେବଳ ଏହି ତାତ୍ତ୍ୱିକ ସମ୍ବନ୍ଧରେହିଁ ଆମେ ମନୁଷ୍ୟ ସମାଜକୁ ଦେଖୁ, ସେତେବେଳେ ତାହାର ଅପରନ୍ତ ବିସ୍ତାର ଚରମ ଅର୍ଥକୁ ଆମେ ସ୍ୱୀକାର କରୁଁ ।... ମୂଲ୍ୟମାନଙ୍କ ପ୍ରତି ସାମାଜିକ କାର୍ଯ୍ୟର ଅର୍ଥ ଯେତେବେଳେ ତାତ୍ତ୍ୱିକ ଗମ୍ଭୀରତା ଲାଭ କରେ, ଠିକ୍ ସେହି ସମୟରେ ମୂଲ୍ୟମାନଙ୍କୁ ନବୋଧଭାବେ ନଷ୍ଟ କରୁଥିବା ବିପରୀତ-ସଙ୍କଳ୍ପକୁ ବିପରୀତ ପକ୍ଷେ ତୀକ୍ଷ୍ଣତର କରିବା ଆବଶ୍ୟକ ହୁଏ । ସତ୍ତ୍ୱକୁ ଅର୍ଥଯୁକ୍ତ କରୁଥିବା ଜାଗତିକ ସଙ୍କଳ୍ପ ହେଉଛି ଏକ ଗତି, ଯାହା ମୂଲ୍ୟମାନଙ୍କ ସଚେତନ ଅସ୍ୱୀକାର ଦ୍ୱାରା ରଦ୍ଦ ହୋଇଯାଏ । ସହସା ସମସ୍ତ ବିଷୟ ଅର୍ଥଶୂନ୍ୟ ହୋଇ ଯାଇଛି ।... ଆମ ମଧ୍ୟରୁ ପ୍ରତ୍ୟେକ ମନୁଷ୍ୟ ଜାତିର ଜଣେ ଜଣେ ସଭ୍ୟ; ସୁତରାଂ ମୂଲ୍ୟମାନଙ୍କୁ ଗଢ଼ି ତୋଳିବାରେ ଆମେ ଯେଉଁ ଅଂଶ ଗ୍ରହଣ କରୁଁ, ତହିଁରେ ଆମ ଐକିକ ବ୍ୟକ୍ତିତ୍ୱର ଅର୍ଥ ନିର୍ଭର କରେ ।... ଆମର ଜାଗତିକ ଦୃଷ୍ଟିକୋଣର ବିଶୁଦ୍ଧତମ ଅର୍ଥକୁ ଆମେ ପୁଣି ଥରେ ନିର୍ଦ୍ଦେଶ କରିବୁଁ । ଅନନ୍ତକାଳବ୍ୟାପୀ ଅତି-ଆତ୍ମାର ବିସ୍ତାରେ ଜଗତ୍, ମନୁଷ୍ୟ ଜାତି ଓ ବ୍ୟକ୍ତି ପରିଶେଷରେ ବିନ୍ୟସ୍ତ, ତାହା ଆମେ ବୁଝି-ପାରୁଁ । ଅନନ୍ତକାଳ ବ୍ୟାପୀ ! ଆମେ ସର୍ବୋଚ୍ଚ ବିନ୍ଦୁରେ ଉପନୀତ ହୋଇଛୁଁ । ସେଠାରୁ ପର୍ଯ୍ୟବେକ୍ଷଣ କଲେ ଦେଖାଯିବ ଯେ ଅନନ୍ତକାଳର ଅର୍ଥ ନିଜକୁ ଉନ୍ମୁକ୍ତ କରି-ରଖିଛି । ........ତେଣୁ ଏହି ବିସ୍ତାରେ ଅତୀତ ଓ ଭବିଷ୍ୟତ ଏକୀଭୂତ ଏବଂ କେବଳ ଏହା ହିଁ ହେଉଛି, ଅନନ୍ତକାଳର ଅର୍ଥ.........ପ୍ରତ୍ୟେକ ନୂତନ ସ୍ତରରେ ପୂର୍ବବର୍ତ୍ତୀ ସ୍ତରମାନଙ୍କ ଚରମ ଅର୍ଥ ବିକଶିତ । ଆମପାଇଁ ଠିକ୍ ଏହାର ହିଁ ଅର୍ଥ ଅଛି । ବିସ୍ତାର ଅର୍ଥ ପରିପୂରଣ ଓ ସମାପନ ।.........ଏହିଠାରୁ ଆମେ ଆମର ଐକିକ ବ୍ୟକ୍ତିତ୍ୱର କର୍ତ୍ତବ୍ୟ ଓ ଅର୍ଥ ବୁଝୁ ।.........ଆମ ଜୀବନର ଅର୍ଥ ଓ ଉଦ୍ଦେଶ୍ୟ ରହିଛି । ଅତି-ଆତ୍ମା ଯେ ନିରର୍ଥକ ହୋଇପାରେ—ଏହି ଦୁଶ୍ଚିନ୍ତା ଦୂରୀଭୂତ ହୋଇଛି । ଅତି-ଆତ୍ମାର ଏପ୍ରକାର ପରିପୂର୍ତ୍ତିଠାରୁ ଅଧିକ କିଛି ଜୀବନରୁ ମିଳିବ ବୋଲି ଆଶା କରିବା ଅର୍ଥହୀନ ହେବ ।......କେବଳ ସୁଖାଭିଳାଷ ଆମ ଜୀବନର ଲକ୍ଷ୍ୟ ହୋଇପାରିବାର ସମ୍ଭାବନା ନାହିଁ, ଯଦି ତାହାର ଅର୍ଥ ଓ ମୂଲ୍ୟ ଆଦୌ ରକ୍ଷା କରିବାକୁ ପଡ଼େ । ........କେବଳ ଲମ୍ଫନର ଏବଂ ଗୋଟିଏ ଅବସ୍ଥାରୁ ଅନ୍ୟ ଏକ ଅବସ୍ଥାକୁ ସହସା ପରିବର୍ତ୍ତନର କଦାପି ଅର୍ଥ ରହିବ ନାହିଁ ।......ପ୍ରତ୍ୟେକ ବ୍ୟକ୍ତିପରି ନିଜ ସଂକଳ୍ପର ଉନ୍ମୁକ୍ତକରଣ ହେଉଛି ସେହି ଏକ ସାଧାରଣ ଜଗତକୁ ଗଢ଼ି ତୋଳିବାର ସହାୟକ ହେବା ।

ଏହି ସବୁ ବିଷୟର ଉଲ୍ଲେଖ ପରେ, ପରବର୍ତ୍ତୀ ପୃଷ୍ଠା (୪୩୦) ରେ, ଅର୍ଥାତ୍ ଗ୍ରନ୍ଥର ଶେଷ ପୃଷ୍ଠାରେ ନିମ୍ନୋକ୍ତ ଆତ୍ମ-ବିଶ୍ୱାସ ସହ ଆମେ ଉପସଂହାରରେ ଉପନୀତ

ହେଉ; "ସଂକଳ୍ପ-ଅଭିବୃଦ୍ଧିରେ ସଂକଳ୍ପର ଆତ୍ମ ପ୍ରତିଷ୍ଠା ଅର୍ଥରେ ଉନ୍ନତ କରିବା ହେଉଛି ମନୁଷ୍ୟ ସମାଜ ପାଇଁ ମଧ୍ୟ କର୍ତ୍ତବ୍ୟର ଚରମ ଅର୍ଥ ।"

ମ୍ୟୁନଷ୍ଟେରବର୍ଗଙ୍କ ଜର୍ମାନ ଭାଷାରେ ଲିଖିତ ଗ୍ରନ୍ଥରୁ ଉପର୍ଯ୍ୟୁକ୍ତ ଉଦ୍ଧୃତିଗୁଡ଼ିକର ଅଧ୍ୟୟନ ତୁଳନାତ୍ମକ ଭାଷା-ଶାସ୍ତ୍ରର ଏକ ଚିତ୍ତାକର୍ଷକ ଅନୁଶୀଳନ ହେବ । ତହିଁରୁ ଜଣାପଡ଼ିବ ଯେ ଯୁକ୍ତିର ଅନିବାର୍ଯ୍ୟତା ପ୍ରତି 'ଅର୍ଥ' ପଦର ଅବଦାନ ଉଲ୍ଲେଖନୀୟ । ଏପରି କେତେକ ଲୋକ ଥାଇପାରନ୍ତି, ଯେଉଁମାନେ ସହଜରେ ବିଶ୍ୱାସ କରିବେନାହିଁ ଯେ ଯେଉଁ ଲେଖକ ଏପ୍ରକାର ବାଚନିକ ସୁବିଧା ହାସଲ ନିମନ୍ତେ ଦାୟୀ, ସେ ଜଣେ ପ୍ରଥମ ଶ୍ରେଣୀୟ ଚିନ୍ତାନାୟକରୂପେ ପ୍ରସିଦ୍ଧି ଲାଭର ସମ୍ମାନ ମଧ୍ୟ ପାଇପାରିଥିବେ । କିନ୍ତୁ ଜଣେ ଆମେରିକୀୟ ତତ୍ତ୍ୱବାଦୀଙ୍କ ଦ୍ୱାରା ମନସ୍ତତ୍ତ୍ୱର ମୌଳିକ ବିଷୟଗୁଡ଼ିକୁ ବିଶେଷରୂପେ ବିସ୍ତାର କରିବାର ଅନ୍ୟ ଏକ ଉଚ୍ଚାଭିଳାଷୀ ଆଧୁନିକ ଉଦ୍ୟମ କରାଯାଇଛି; ଏବଂ ତାଙ୍କ ପୁସ୍ତକର (୧) ପ୍ରାକ୍‌କଥନରେ ମୁନ୍‌ଷ୍ଟେରବର୍ଗଙ୍କ ଗ୍ରନ୍ଥକୁ "ଦର୍ଶନ ତଥା ପ୍ରାକୃତିକ ଓ ମାନସିକ ବିଜ୍ଞାନ ସମ୍ବନ୍ଧୀୟ ବିରାଟ ସମସ୍ୟାମାନଙ୍କ ବିଷୟରେ ଏକ ଉଦ୍ଦୀପକ ଗ୍ରନ୍ଥ" ବୋଲି ବର୍ଣ୍ଣନା କରାଯାଇଛି । ତହିଁରେ ପୁଣି ଉଲ୍ଲେଖ ରହିଛି, "ତାହାଙ୍କ ମୃତ୍ୟୁରେ ଆମେରିକା ତାହାର ଏକମାତ୍ର ମହାନ୍ ତତ୍ତ୍ୱବାଦୀ ମନୋବିଜ୍ଞାନୀଙ୍କୁ ହରାଇଛି ବୋଲି ଯଥାର୍ଥତଃ କୁହାଯାଇ ପାରେ ।" ଅଧ୍ୟାପକ ମୁଅର୍ ତାଙ୍କ ପୁସ୍ତକରେ ମ୍ୟୁନ୍‌ଷ୍ଟେରବର୍ଗଙ୍କ ଆତ୍ମ ମନୋନୀତ ଉପର୍ଯ୍ୟୁକ୍ତ ନିର୍ଦ୍ଦିଷ୍ଟ ଗ୍ରନ୍ଥରୁ ବହୁ ସଂଖ୍ୟକ ଉଦ୍ଧୃତି ଦେବାର ସୁଯୋଗ ପାଇନାହାନ୍ତି । କିନ୍ତୁ ମ୍ୟୁନଷ୍ଟେରବର୍ଗଙ୍କ ସାଇକୋଲୋଜି ଜେନେରେଲ ଏଣ୍ଡ ଏପ୍ଲାୟଡ୍ (ସାଧାରଣ ଓ ପ୍ରୟୋଗାତ୍ମକ ମନୋବିଜ୍ଞାନ) ଏବଂ ସାଇକୋଥେରାପି (ମନଶ୍ଚିକିତ୍ସା) ଗ୍ରନ୍ଥରୁ କେତେକ ଉଦ୍ଧୃତିର ଉପଯୋଗ କରିଛନ୍ତି (ପୃ ୧୦୭-୧୧୦) । ଏହି ଉଦ୍ଧୃତିଗୁଡ଼ିକ ସମଭାବରେ 'ଅର୍ଥ' ପଦ ଦ୍ୱାରା ଭରପୁର ହୋଇ ରହିଛି । ପୁଣି ନିଜ ଆଲୋଚନାର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଏହି ଆପାତସୁନ୍ଦର ଭ୍ରମଣଶୀଳ ପଦର ବ୍ୟବହାର ପ୍ରତି ଅଧ୍ୟାପକ ମୁଅରଙ୍କ ଅଯଥା ଆଗ୍ରହାତିଶଯ୍ୟ ହେତୁରୁ ଆଲୋଚନାଗୁଡ଼ିକ ଦୋଷଯୁକ୍ତ ହୋଇ ଯାଇଛି । ତାଙ୍କ କ୍ଷେତ୍ରରେ ଏହା ହିଁ ଘଟିବ ବୋଲି ଆଗରୁ ଆଶଙ୍କା କରାଯିବା ସ୍ୱାଭାବିକ ।

ଏକ ବିଜ୍ଞାନ ହିସାବରେ ମନସ୍ତତ୍ତ୍ୱର ସ୍ୱଭାବ ବୁଝିବା ନିମନ୍ତେ ତାଙ୍କ ମତରେ ଆମକୁ ତତ୍ତ୍ୱବିଜ୍ଞାନଠାରୁ ବିଜ୍ଞାନକୁ ଯତ୍ନ ସହକାରେ ପୃଥକ୍ କରିବାକୁ ହେବ । ସେ ପୁଣି କହିଛନ୍ତି, "ତତ୍ତ୍ୱବିଜ୍ଞାନ ସମ୍ବନ୍ଧୀୟ ସମସ୍ୟା ସମାଧାନର ଗୁହକାଠି ତୁଲ୍ୟ ଶବ୍ଦ ହେଉଛି

(୧) Jared Sparks Moore କୃତ The foundations of Psychology ୧୯୨୧ ।

**ବ୍ୟାଖ୍ୟା ।** କୌଣସି ବିଷୟର ବ୍ୟାଖ୍ୟା ଦେବା ହେଉଛି ତାହାର ଅର୍ଥ ନିର୍ଦ୍ଧାରଣ କରିବା । ପ୍ରତ୍ୟେକ ଘଟଣାର ଗୋଟିଏ କାରଣ ଥାଏ—ଏହା ଯେପରି ସମସ୍ତ ବିଜ୍ଞାନର ମୌଳିକ ପ୍ରାକ୍‌ଗ୍ରାହ୍ୟ ହୁଏ, ସେହିପରି ତତ୍ତ୍ୱବିଜ୍ଞାନର ମୌଳିକ ପ୍ରାକ୍‌ଗ୍ରାହ୍ୟ ହେଉଛି— ପ୍ରତ୍ୟେକ ଘଟଣାର ଏକ ଅର୍ଥ ଥାଏ" । ପ୍ରକାରାନ୍ତରେ କହିଲେ, ବିଜ୍ଞାନଠାରୁ ଭିନ୍ନ ଭାବେ, ଦର୍ଶନରେ "ପ୍ରତ୍ୟେକ ଘଟଣାକୁ କୌଣସି ପୂର୍ବବର୍ତ୍ତୀ କାରଣର କାର୍ଯ୍ୟ ରୂପେ ବିଚାର ନକରି, ତାହାକୁ ଗୋଟିଏ ଅର୍ଥର ଅଭିବ୍ୟକ୍ତି ରୂପେ ବିଚାର କରାଯାଏ ।" ବିଜ୍ଞାନ ତତ୍ତ୍ୱବିଜ୍ଞାନର ପୂର୍ବଗାମୀ ହେବା ଆବଶ୍ୟକ—"ଘଟଣାଗୁଡ଼ିକ କଣ ନ ଜାଣିବା ପର୍ଯ୍ୟନ୍ତ ଆମେ ସେଗୁଡ଼ିକର ଅର୍ଥ କଣ ଜାଣି ପାରିବା ନାହିଁ । ଘଟଣାଗୁଡ଼ିକର ବର୍ଣ୍ଣନା ନ ଦେବା ପର୍ଯ୍ୟନ୍ତ ଆମେ ସେଗୁଡ଼ିକର ବ୍ୟାଖ୍ୟା ଦେଇ ନ ପାରୁଁ ।"

କିନ୍ତୁ ସମାଲୋଚକ ଆପତ୍ତି ଉଠାଇପାରେ "ଏକ ମାନସ-ପ୍ରକ୍ରିୟାର ସାରତତ୍ତ୍ୱ ହେଉଛି ତାହାର ଅର୍ଥ—ଏକଥା ସତ୍ୟ ନୁହେଁ କି ?" ନାଁ । ମାନସିକ ପ୍ରକ୍ରିୟାଗୁଡ଼ିକ କାହିଁକି "ସ୍ୱତଃ ଅର୍ଥଯୁକ୍ତ ନୁହନ୍ତି" ତାହାର ନିଅଂରୋଟି ଉତ୍ତମ କାରଣ ଟିଚ୍‌ନର ଉଲ୍ଲେଖ କରିଛନ୍ତି । କିନ୍ତୁ ତଥାପି ସମାଲୋଚକ କହିପାରେ, ଆମର ସମସ୍ତ ଅନୁଭୂତି "ସ୍ୱୀୟ ଅନ୍ତର୍ନିହିତ ସ୍ୱଭାବରେ କିଛି ନା କିଛି ଅର୍ଥର ଅଧିକାରୀ" ନୁହନ୍ତି କି ? "ଆମେ କଣ୍ଟିତ୍ କାଳେ ଏକ 'ଅର୍ଥଶୂନ୍ୟ' ସଂବେଦନ ଅନୁଭବ କରୁଁ କି ?" ଏହାର ଉତ୍ତର ସ୍ୱରୂପ କୁହାଯାଇଛି ଯେ ମନ "ଅର୍ଥଶୂନ୍ୟ ସଂବେଦନମାନଙ୍କରୁ ଆରମ୍ଭ କରି ଅର୍ଥଯୁକ୍ତ ପ୍ରତ୍ୟକ୍ଷାନୁଭୂତି ଆଡ଼କୁ ପ୍ରଗତି କରେ" ବୋଲି ବିଶ୍ୱାସ କରିବାର କୌଣସି କାରଣ ନାହିଁ । "ବିପରୀତ ପକ୍ଷେ, ଆମକୁ ଧରି ନେବାକୁ ହେବ ଯେ ମନ ମୂଳରୁହିଁ ଅର୍ଥଯୁକ୍ତ ହୋଇ ରହିଥିଲା ।"

"ତେବେ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହି ଅର୍ଥ ଅଟେ କଣ ?"—ଏହି ଅତି ପ୍ରାସଙ୍ଗିକ ପ୍ରଶ୍ନରେ ଆମେ ଏଠାରେ ଅଟକି ଯାଉଁ । କିନ୍ତୁ ବିନା ଦ୍ୱିଧାରେ ଓ ପ୍ରାଧାନ୍ୟ ଅର୍ପଣ ସହକାରେ ଏହାର ଉତ୍ତର ଦିଆ ଯାଇଛି—"ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଅର୍ଥ **ହେଉଛି ପ୍ରସଙ୍ଗ ।"** ଏହାର ବ୍ୟାଖ୍ୟା ସ୍ୱରୂପ କୁହାଯାଇଛି ଯେ ପ୍ରତ୍ୟେକ ପ୍ରତ୍ୟକ୍ଷାନୁ-ଭୂତି ବା ସଂବେଦନ ଓ ପ୍ରତିମାମାନଙ୍କ ସମଷ୍ଟିରେ "ସହଚରି ପ୍ରତିମାଗୁଡ଼ିକ ଏକ ପ୍ରସଙ୍ଗ ବା 'ପରିଧି' ଗଠନ କରୁଥିବା ପରି ମନେ ହୁଏ ଏବଂ ତାହା ସାକଲ୍ୟକୁ ଐକ୍ୟବଦ୍ଧ କରି ତାହାକୁ ଏକ ନିର୍ଦ୍ଦିଷ୍ଟ ଅର୍ଥ ଦିଏ ।" ପୁଣି ଏହି ଅର୍ଥ-ପରିଧି ହିଁ ସଂବେଦନମାନଙ୍କୁ ସଂବେଦନ 'ମାତ୍ର' ରୂପେ ଛାଡ଼ି ନ ଦେଇ ଭୌତିକ ବସ୍ତୁର ପ୍ରତୀକ ରୂପେ ଗଢ଼ି ତୋଳେ ।" ତେଣୁ ଆମେ ଯେତେବେଳେ ଏକ କମଳାଲେମ୍ବୁ ଦେଖୁଁ, ସେତେବେଳେ ଗନ୍ଧ ଓ ସ୍ୱାଦର ପ୍ରାସଙ୍ଗିକ ପ୍ରତିମାଗୁଡ଼ିକ ହିଁ "ବସ୍ତୁଟିକୁ 'ଚିହ୍ନିବାକୁ' ଆମକୁ ସମର୍ଥ କରେ; ଅର୍ଥାତ୍ ଏଗୁଡ଼ିକ ସଂବେଦନମାନଙ୍କୁ ଏକ ଅର୍ଥ ଦିଏ ।" ଏଠାରେ

ସଂପୃକ୍ତ ସଂବେଦନମାନ ହେଉଛି କମଳାଲେମ୍ବୁର ବର୍ଣ୍ଣ ଓ ଔଜ୍ଜ୍ୱଲ୍ୟ । ସେହିପରି "ପ୍ରତ୍ୟେକ ପ୍ରତ୍ୟୟରେ ପ୍ରତିମାମାନଙ୍କ ଏକ ମଜ୍ଜା ବା କେନ୍ଦ୍ର ରହିଛି ଏବଂ ସହଚର ପ୍ରତିମାମାନଙ୍କ ଏକ ପରିଧି ରହିଛି । ········ଏହି ପରିଧି ହିଁ କୈନ୍ଦ୍ରିକ ପ୍ରତିମା ମାନଙ୍କୁ ଅର୍ଥ ଦିଏ ।"

ସଂକ୍ଷେପରେ ବକ୍ତବ୍ୟଟିକୁ ନିମ୍ନୋକ୍ତଭାବେ ବ୍ୟକ୍ତ କରାଯାଇ ପାରେ :

"ଏହି ସମସ୍ତ କ୍ଷେତ୍ରରେ ପ୍ରତ୍ୟକ୍ଷାନୁଭୂତ ବା ପ୍ରତ୍ୟୟର ଅର୍ଥ ପ୍ରାସଙ୍ଗିକ ପ୍ରତିମା ବା ସଂବେଦନ ଗୁଡ଼ିକ 'ବହନ' କରେ, ଏବଂ ଏହି ପ୍ରସଙ୍ଗ ହିଁ ପ୍ରତ୍ୟେକ ଅନୁଭୂତିକୁ ଅର୍ଥ ଦିଏ । କିନ୍ତୁ ତଥାପି ଗୋଟିଏ ସଂବେଦନ ବା ପ୍ରତୀକାତ୍ମକ ପ୍ରତିମାର ଅର୍ଥ ସମ୍ପୂର୍ଣ୍ଣତଃ ତାହାର ସହଚର ପ୍ରତିମାବର୍ଗ ଏବଂ ତଦ୍‌ବ୍ୟତୀତ ଅଧିକ କିଛି ନୁହେଁ ବୋଲି କହିବା ଯଥାର୍ଥ ହେବ ନାହିଁ; କାରଣ ଏତଦ୍ଦ୍ୱାରା ମନସ୍ତତ୍ତ୍ୱ ଅର୍ଥମାନଙ୍କ ସହିତ ସଂପୃକ୍ତ ନୁହେଁ—ଏହି ମତଟି ଲଙ୍ଘିତ ହେବ । ଏଥିରେ ଯାହା ନିହିତ, ତାହା ହେଉଛି ଆମ ଅନୁଭୂତିମାନଙ୍କ ଅର୍ଥଗୁଡ଼ିକ ମାନସିକ ପ୍ରକ୍ରିୟା ସ୍ତରରେ କୈନ୍ଦ୍ରିକ ସଂବେଦନ ବା ପ୍ରତିମା ଗୋଷ୍ଠୀର ଚତୁଃପାର୍ଶ୍ୱରେ ପୁଞ୍ଜୀଭୂତ ସମ୍ବନ୍ଧାନ୍ୱିତ ପ୍ରକ୍ରିୟାମାନଙ୍କ 'ପରିଧି' ଦ୍ୱାରା ଉପସ୍ଥାପିତ ହୋଇଥାଏ । ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଅର୍ଥ ହେଉଛି ପ୍ରସଙ୍ଗ, କିନ୍ତୁ ତାର୍କିକ ତଥା ତତ୍ତ୍ୱବୈଜ୍ଞାନିକ ଦୃଷ୍ଟିରୁ ଅର୍ଥ ମନସ୍ତାତ୍ତ୍ୱିକ ପ୍ରସଙ୍ଗଠାରୁ ଯଥେଷ୍ଟ ଅଧିକ । ଏହି କଥାକୁ ଭିନ୍ନ ଭାବରେ କୁହାଯାଇ ପାରେ; ଅର୍ଥ ଯାହା ହୋଇଥାଉ ନା କାହିଁକି, ତାହା ପ୍ରାସଙ୍ଗିକ ପ୍ରତିମାବଳୀ ମାଧ୍ୟମରେ ଯେପରିଭାବେ ଉପସ୍ଥାପିତ ହେବା ସମ୍ଭବପର, କେବଳ ସେତିକ ସହିତ ହିଁ ମନସ୍ତତ୍ତ୍ୱ ସଂପୃକ୍ତ ।"

ସଂକେତ-ବ୍ୟାଖ୍ୟା ସମସ୍ୟାର ଏହା ଏକ ବିଚିତ୍ର ସମାଧାନ-ପ୍ରସ୍ତାବ । ଅର୍ଥର ଏହି ବିବରଣୀ **ହେଉଛି** (ମନସ୍ତାତ୍ତ୍ୱିକ ଦୃଷ୍ଟିରୁ) ପ୍ରସଙ୍ଗ; ପ୍ରସଙ୍ଗ ଏହାକୁ **ବହନ କରେ**; ଏହା **ପ୍ରସଙ୍ଗଠାରୁ ଯଥେଷ୍ଟ ଅଧିକ**; ଏହା ଏପରି **ଘଟଣା ଦ୍ୱାରା ବ୍ୟକ୍ତହୁଏ**, ଯାହା ସହିତ **ମନସ୍ତତ୍ତ୍ୱ ସଂପୃକ୍ତ ନୁହେଁ**, କିନ୍ତୁ ତଥାପି ତାହା ଯେପରିଭାବେ ପ୍ରାସଙ୍ଗିକ ପ୍ରତିମାବଳୀ ମାଧ୍ୟମରେ ଉପସ୍ଥାପିତ ହେବା ସମ୍ଭବପର, ସେଥି ସହିତ ମନସ୍ତତ୍ତ୍ୱ ସଂପୃକ୍ତ । (୧)

---

(୧) Professor Moore ଙ୍କ ଖଣ୍ଡେ ଚିଠି Mind ପତ୍ରିକାରେ (ଅପ୍ରେଲ ୧୯୨୪) ମୁଦ୍ରିତ ହୋଇଥିଲା । କିନ୍ତୁ ଦୁର୍ଭାଗ୍ୟ ବଶତଃ ଚାରିଗୋଟି ସାଂଘାତିକ ତ୍ରୁଟି ହେତୁ (**ଆଣବିକ ପ୍ରତିମାମାନ** ସ୍ଥାନରେ 'ଆଣବିକ ପ୍ରତିମା', ୧୦୩ ସ୍ଥାନରେ '୧୦୨', ୨୯୩ ସ୍ଥାନରେ '୧୯୩' ଏବଂ ୫୪୪ ସ୍ଥାନରେ '୫୪୧') ତାହାର ତାତ୍ପର୍ଯ୍ୟ କ୍ଷୁଣ୍ଣ ହୋଇଯାଇଛି । ଉପର୍ଯ୍ୟୁକ୍ତ ଉଦ୍ଧୃତିର (ଏବେ ସଂଶୋଧିତ) ତିନୋଟି କ୍ଷେତ୍ରରେ ରହିଥିବା ଛପା ଭୁଲ ପ୍ରତି ଦୃଷ୍ଟି ଆକର୍ଷଣ କରିପାରି Professor

କିନ୍ତୁ ଏହାଠାରୁ ଅଧିକ ଅସାଧାରଣ ଧରଣର ବର୍ଣ୍ଣନା ଏହାପରେ ରହିଛି, କାରଣ ଏଠାରେ ସେ ଯଥାର୍ଥ ଅର୍ଥର ଅବତାରଣା କରିଛନ୍ତି; ତାହା ଘଣ୍ଟା ସମ୍ପୃକ୍ତ। "ଘଣ୍ଟା-ପ୍ରତ୍ୟକ୍ଷର ଯଥାର୍ଥ ଅର୍ଥ ହେଉଛି ପ୍ରକୃତ ବସ୍ତୁନିଷ୍ଠ ଘଣ୍ଟାପ୍ରତି ତାହାର ନିର୍ଦ୍ଦେଶ।" ଏହି ନିର୍ଦ୍ଦେଶ ପ୍ରାସଙ୍ଗିକ ପ୍ରତିମାମାନଙ୍କ ଦ୍ୱାରା ମନରେ ଉପସ୍ଥାପିତ ହୁଏ। ଏହି ପ୍ରତିମାମାନ "ମନସ୍ତତ୍ତ୍ୱର ଭାଷାରେ ରୂପାନ୍ତରିତ ହୋଇ ତାହାର ଅର୍ଥ ଗଠନ କରେ। ତେଣୁ ଗୋଟିଏ ପ୍ରତ୍ୟୟର ଯଥାର୍ଥ ଅର୍ଥ ଏକ ବସ୍ତୁନିଷ୍ଠ ପ୍ରତ୍ୟୟ ସମ୍ପର୍କିତ ପ୍ରତି ତାହାର ତାର୍କିକ ନିର୍ଦ୍ଦେଶରେ ନିହିତ। ଏହାର ଠିକ୍ ପରେ ଆମେ ଦେଖିବାକୁ ପାଉଁ; "ସମସ୍ତ ଅନୁଭୂତ ହେଉଛି ଆତ୍ମାର ଅନ୍ତସ୍ଥ ଅର୍ଥମାନଙ୍କ ପରିପ୍ରକାଶ।"

ଅଧ୍ୟାପକ ମୂଅର ଯଦି ସଙ୍କେତ ତଥା ପ୍ରତୀକ ସମ୍ପୃକ୍ତ ମନସ୍ତତ୍ତ୍ୱର ଗବେଷଣା କରିବାକୁ ଚେଷ୍ଟା କରିଥାନ୍ତେ, ତେବେ ସେ ଏହି ପ୍ରକାର ଏକ ଶବ୍ଦସମ୍ଭାରରେ ସନ୍ତୁଷ୍ଟ ରହିଥାନ୍ତେ ବୋଲି ବିଶ୍ୱାସ କରିବା କଷ୍ଟକର। ପୁଣି ଏହି ଗବେଷଣା ତାହାଙ୍କୁ ସୁନିଶ୍ଚିତରୂପେ ପ୍ରଦର୍ଶନ କରି ଦେଇଥାନ୍ତା ଯେ ଦୁର୍ଭାଗ୍ୟଜନକ ପ୍ରତୀକମାନଙ୍କ ନିର୍ବାଚନ ତଥା ସେଗୁଡ଼ିକ ପ୍ରତି ସ୍ନେହପରି ଏକ ଅନ୍ଧବୃତ୍ତିରୁ ତାଙ୍କ ଉପସ୍ଥିତ ରଚନର ବହୁ ଅଂଶ ଲବ୍ଧ ହୋଇଛି। ବର୍ତ୍ତମାନ ଅବସ୍ଥାରେ, ତାହାଙ୍କୁ ଅର୍ଥର ଏକ ଗୁହ୍ୟ ନୀତିର

---

Moore ଆପତ୍ତି କରିଛନ୍ତି ଯେ ଏହି ଅନୁଚ୍ଛେଦ ଦ୍ୱାରା ଅର୍ଥ ସମ୍ବନ୍ଧୀୟ "ମୋର ବିବରଣୀଟି ବିଦ୍ରୂପର କାରଣ ହୋଇଛି, ଏବଂ ମୋର ସମଗ୍ର ମତଟିରେ ବିଭ୍ରାଟ ସୃଷ୍ଟି ହୋଇଛି। ସେ କହିଛନ୍ତି; 'ମୋର ସମଗ୍ର ବକ୍ତବ୍ୟ ବିଷୟ ହେଉଛି ଅର୍ଥ 'ପ୍ରସଙ୍ଗଠାରୁ ଯଥେଷ୍ଟ ଅଧିକ'। ଯଦିଓ ମନରେ ପ୍ରସଙ୍ଗ ହିଁ ତାହାକୁ 'ବହନ' ବା 'ଉପସ୍ଥାପନ' କରେ; **ଏହି ହେତୁରୁ** 'ମନସ୍ତତ୍ତ୍ୱ ଅର୍ଥ ସହିତ ସମ୍ପୃକ୍ତ ନୁହେଁ, ଏହା କେବଳ ତାହାର ମନୋଗତ ପ୍ରାତିନିଧିକ ବିଷୟାବଳୀ ସହିତ ହିଁ ସମ୍ପୃକ୍ତ।' ଏତଦ୍‌ବ୍ୟତୀତ ସେ ଆହୁରି କହିଛନ୍ତି, "ମୁଁ କୌଣସି ସ୍ଥାନରେ କହି ନାହିଁ ଯେ ଅର୍ଥ 'ହେଉଛି ପ୍ରସଙ୍ଗ' ବା ମନସ୍ତତ୍ତ୍ୱ ଅର୍ଥ ସହିତ ହିଁ ସମ୍ପୃକ୍ତ।" ଏଠାରେ **ଆମର** ସମଗ୍ର ବକ୍ତବ୍ୟ ବିଷୟ ହେଉଛି ଯେ Professor Moore ଅର୍ଥ ଶବ୍ଦ ବ୍ୟବହାରର ତାତ୍ପର୍ଯ୍ୟ ଘନ ଘନ ପରିବର୍ତ୍ତନ କରନ୍ତି ଏବଂ କୌଣସି କ୍ଷେତ୍ରରେ ତାହାର ତାତ୍ପର୍ଯ୍ୟ ସୁସ୍ପଷ୍ଟ କରିଦେଇ ନାହାନ୍ତି। ଆମେ ତାଙ୍କ ମତର ଆଲୋଚନା ସହିତ ସମ୍ପୃକ୍ତ ନୋହୁଁ। ତାଙ୍କର ଭାଷାତ୍ମକ ପ୍ରବୃତ୍ତିର ଉଦ୍‌ଘାଟନ ଆମର ଲକ୍ଷ୍ୟ। ସୁଖର କଥା, ତାଙ୍କ ଠାରୁ ଯେଉଁ ବାକ୍ୟ ଗୁଡ଼ିକର ଉଦ୍ଧାର କରାଯାଇଛି ସେଗୁଡ଼ିକ ଆମର ଲକ୍ଷ୍ୟ ପୂରଣରେ ସହାୟକ ହୋଇଛି।

ପ୍ରୟୋଗ ବାରମ୍ବାର କରିବାକୁ ପଡ଼ୁଛି ଏବଂ ଏହା ମଧ୍ୟଯୁଗୀୟ ଈଶ୍ୱରତତ୍ତ୍ୱବାଦୀମାନଙ୍କ ଦ୍ୱନ୍ଦ୍ୱାତ୍ମକ କୌଶଳର ସ୍ମୃତି-ଉଦ୍‌ବୋଧକ । ଏହି ମତର ଦୁର୍ବଳତା ବିଶେଷତଃ ଧର୍ମସମ୍ବନ୍ଧୀୟ ଆଲୋଚନାରେ ଦିଆଯାଇଛି । ଏ କଥାକୁ ଲକ୍ଷ୍ୟ କରି ଆମେ ଉପସଂହାର କରିପାରୁଁ ।

“ଭୌତିକ ସ୍ତରର ଆମ ଅନୁଭୂତି ସମ୍ବନ୍ଧୀୟ ମାନସିକ ପ୍ରକ୍ରିୟାର ଆଲୋଚନା ମନସ୍ତତ୍ତ୍ୱ ଯେପରି ନିର୍ଦ୍ଦ୍ୱନ୍ଦ୍ୱରେ କରିପାରେ, ଧର୍ମମୂଳକ ଅନୁଭୂତି ନିହିତ ମାନସିକ ପ୍ରକ୍ରିୟାର ଆଲୋଚନା ମଧ୍ୟ ତାହା ତଦ୍ରୂପଭାବେ କରିପାରେ । କିନ୍ତୁ କୌଣସି କ୍ଷେତ୍ରରେ ତାହାର ସିଦ୍ଧାନ୍ତ ଏହି ଅନୁଭୂତିମାନଙ୍କ........ଅର୍ଥଗତ ପ୍ରଶ୍ନକୁ ପ୍ରଭାବିତ କରି ନ ପାରେ । ଯେ କୌଣସି କର୍ମ-ପରିସରରେ ମାନବୀୟ ମନ ଯେଉଁ ପ୍ରକ୍ରିୟାମାନଙ୍କ ଅନୁଗତ ହୁଏ, ତାହାର ସ୍ୱଭାବ ସମ୍ବନ୍ଧୀୟ ପ୍ରଶ୍ନ ହେଉଛି ଘଟଣା ସମ୍ବନ୍ଧୀୟ ପ୍ରଶ୍ନ । ଏହାର ବିଶ୍ଳେଷଣାତ୍ମକ ବର୍ଣ୍ଣନା ତଥା କାରଣିକତା ମାଧ୍ୟମରେ ବ୍ୟାଖ୍ୟା ଦରକାର । ପ୍ରାମାଣିକତା-ସମସ୍ୟା ବା ଏହି ପ୍ରକ୍ରିୟାମାନଙ୍କ ସତ୍ୟ-ମିଥ୍ୟା-ମୂଲ୍ୟ ହେଉଛି ଏକ ଅର୍ଥଗତ ପ୍ରଶ୍ନ, ଏହାର ଅର୍ଥକରଣ ଦରକାର ।”

ଯେଉଁମାନେ ଅର୍ଥକରଣକୁ ଏକ ବିଶୁଦ୍ଧ କାରଣିକ ସମ୍ବନ୍ଧ ବୋଲି ମନେ କରନ୍ତି ଏବଂ କୌଣସି ବିଷୟର ଅର୍ଥ ସୁସ୍ପଷ୍ଟୀକରଣକୁ କେବଳ କାରଣିକତା ମାଧ୍ୟମରେ ବ୍ୟାଖ୍ୟା ବୋଲି ବିବେଚନା କରନ୍ତି, (ଅଥଚ ‘ଅର୍ଥ’କୁ ପୁଣି ଏକ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ତାତ୍ପର୍ଯ୍ୟ ଦେଇ ଗୋଟିଏ ପଦ୍ୟର ବା ଗୋଟିଏ ଧର୍ମର ‘ଅର୍ଥ’ ହେଉଛି ତଦ୍ଦ୍ୱାରା ଉଦ୍ରିକ୍ତ ସମ୍ବେଗ ବା ଅଭିବୃତ୍ତି ବୋଲି ସ୍ୱୀକାର କରନ୍ତି), ସେମାନଙ୍କ ପକ୍ଷରେ ଏହି ପ୍ରତୀକ ଯେ କି ପରିମାଣରେ ଅର୍ଥଗତ ପରିବର୍ତ୍ତନ ସାପେକ୍ଷ, ତାହା ଚିନ୍ତାର ବିଷୟ ହେବା ଉଚିତ ।

ଯାହାହେଉ, ଆମର ଉଦ୍ଦେଶ୍ୟ ଏଠାରେ ବରଂ ହେଉଛି ପ୍ରଚଳିତ ଗଠନମୂଳକ ଓ ବାଦାନୁବାଦମୂଳକ ସାହିତ୍ୟରୁ ଶବ୍ଦ ବ୍ୟବହାରର ଦୃଷ୍ଟାନ୍ତ ଆହରଣ । ଏଥିନିମନ୍ତେ ଆହୁରି କେତେକ ବିଲକ୍ଷଣମୂଳକ ଦୃଷ୍ଟାନ୍ତର କେବଳ ଶ୍ରେଣୀବଦ୍ଧକରଣ ବାକି ରହିଛି ।

ଡକ୍ଟର ସି. ଡି. ବ୍ରଡ୍ କହିଛନ୍ତି,—“ଯେତେବେଳେ ଗୋଟିଏ ବସ୍ତୁ ସହିତ ପରିଚିତି ବା ତତ୍‌ସମ୍ବନ୍ଧୀୟ ଜ୍ଞାନ ଜଣକୁ ଅନୁମାନ କରିବା ନିମନ୍ତେ ସମର୍ଥ କରେ, ଅଥବା ବସ୍ତୁଟିର ଅନ୍ୟାନ୍ୟ ବସ୍ତୁ ସହିତ ସମ୍ବନ୍ଧ ହେତୁରୁ ତାହା ଜଣକୁ ଅନ୍ୟ

ଏକ ବିଷୟ ଚିନ୍ତା କରିବା ପାଇଁ ପ୍ରବୃତ୍ତ କରେ, ସେତେବେଳେ ଯଥାଯଥରୂପେ ସେହି ବସ୍ତୁର ଅର୍ଥ ଥାଏ ।" (୧) କିନ୍ତୁ ଏତେ ଯଥାଯଥ ଏକ ବିବରଣୀ ଦାର୍ଶନିକ ଲେଖକ-ମାନଙ୍କ ଅନୁମୋଦନ ସର୍ବଦା ଲାଭ କରିପାରି ନାହିଁ । ଅଧ୍ୟାପକ ନେଟେଲ୍‌ସିପ୍ (୧) କଥାଟିକୁ ବୁଝାଇବାକୁ ଯାଇ କହୁଛନ୍ତି, "ସୁବିଧା ନିମନ୍ତେ ଆମେ ଘଟଣାର କୌଣସି ଅଂଶକୁ ମାନସିକ ସ୍ତରରେ ପୃଥକ୍ କରିପାରୁ, ଯଥା—ସେଇଁ ସମ୍ବନ୍ଧୀୟ ଅର୍ଥ ଆମର ନିର୍ଭୁଳତ୍ୱ ଶବ୍ଦର ବ୍ୟବହାରକୁ ଯଥାର୍ଥ ବୋଲି ପ୍ରଦର୍ଶନ କରେ ।" ଏଠାରେ ଲର୍ଡ ହାଲ୍‌ଡେନ (୨) ଉଲ୍ଲେଖ କରିପାରନ୍ତି ଯେ, "ପ୍ରତ୍ୟକ୍ଷକାରୀର ଜଗତରେ ଯେ ନିଜେ ଏକ ବସ୍ତୁ; କିନ୍ତୁ ତଥାପି ତାହାପାଇଁ ନିଜ ସମେତ ଏହି ଜଗତ ହିଁ ସ୍ଥିତିଶୀଳ, ଏବଂ ଏହାର ଅର୍ଥର ତାତ୍ପର୍ଯ୍ୟରେ ମନର ଉପସ୍ଥିତି ରହିଛି ।" ଜମ୍ମନରେ ଏକ ପ୍ରଭାବଶାଳୀ ଲେଖକ, ଅର୍ଥାତ୍ ଅଧ୍ୟାପକ ରୟେସଙ୍କ (୩) ଦ୍ୱାରା ପ୍ରସ୍ତାବିତ କେତେକ ପ୍ରତିଜ୍ଞପ୍ତିର ଉଲ୍ଲେଖ କରାଯାଇଛି ।

---

(୧) Perception, physics and Reality, ୧୯୧୪, ପୃ ୧୨ । Hibbert journal (୧୯୨୧ ପୃ ୧୨୩) ରେ Dr. Mc Taggartଙ୍କ "ସ୍ଥିତିର ପ୍ରକୃତି" ନିବନ୍ଧର ସମୀକ୍ଷା କାଳରେ Dr. Broad ଉଲ୍ଲେଖ କରିଛନ୍ତି ଯେ "ଯେତେବେଳେ ଏବଂ କେବଳ ଯେତେବେଳେ ଏକ ଅନବସ୍ଥା ଦୋଷ କୌଣସି ସମ୍ପ୍ରତ୍ୟୟର ଅର୍ଥ ସହିତ ସମ୍ପୃକ୍ତ, ସେତିକିବେଳେ ହିଁ ତାହା ଦୋଷ ଦୁଷ୍ଟ— Russell ଙ୍କ principles of Mathematics ରୁ ଏହି ମତକୁ Mr. Taggart କୌଣସି ପ୍ରକାର ପ୍ରଶ୍ନୋତ୍ଥାପନ ନକରି ଗ୍ରହଣ କରିନେଇଛନ୍ତି ପରି ମନେହୁଏ ।" Russell ଙ୍କ ମତାନୁଯାୟୀ (Mind, ୧୯୨୦ ପୃ ୪୦୧), "ପର୍ଯ୍ୟବେକ୍ଷଣ ଯୋଗ୍ୟ ସତ୍ତ୍ୱମାନଙ୍କ ଏକ ପର୍ଯ୍ୟବେକ୍ଷଣ ଯୋଗ୍ୟ ଗୁଣ ।" professor John laird ଏଥିରୁ ଅଧିକ ଆଗକୁ ଯାଇଛନ୍ତି । ତାଙ୍କ ମତରେ, "ଠିକ୍ ଧ୍ୱନି ଓ ବର୍ଣ୍ଣ ପରି ଅର୍ଥ ସାକ୍ଷାତ୍‌ଭାବେ ପ୍ରତ୍ୟକ୍ଷ ଯୋଗ୍ୟ । ...........ଯାହା ଆମେ ସମସ୍ତ ସମୟରେ ପ୍ରତ୍ୟକ୍ଷୀଭୂତ କରୁଁ, ତାହାର ଅନ୍ତସ୍ଥ ଅର୍ଥ ମାଧ୍ୟମରେ ଆମେ ନିରବଚ୍ଛିନ୍ନ ବସ୍ତୁମାନଙ୍କ ଧାରଣା ଗଠନ କରୁଁ । ...........ଦେଶ ଓ କାଳ ଅଧିକୃତ ବସ୍ତୁର ସାକ୍ଷାତ୍-ଉପଲବ୍ଧ ଅର୍ଥରେ କାରଣିକତାର ବୀଜ ରହିଛି ।" (A Study of Realism ପୃ ୨୨, ୨୯, ୯୮)

(୧) R. L. Nettleship, philosophical Remains, ୧ମ, ପୃ୨୨୦

(୨) The Reigns of Relativity, ୧୯୨୧, ପୃ ୫ ୧ ।

(୩) The world and the Individual ପୃ ୩୨, ୧୨୨ ।

"ଗାନ କରାଯାଇଥିବା ସଙ୍ଗୀତ, କଳାକାରର ପ୍ରତ୍ୟୟ, ଭ୍ରମର ଅନୁପସ୍ଥିତ ବନ୍ଧୁବର୍ଗଙ୍କ ଚିନ୍ତା—ଏଗୁଡ଼ିକର କେବଳ ଉପସ୍ଥିତି ଦ୍ୱାରା ହିଁ ଏକ ଚେତନ ଉଦ୍ଦେଶ୍ୟ ସାଧିତ ହୁଏ । କିନ୍ତୁ ଏଗୁଡ଼ିକର କେବଳ ଯେ ଏତଦ୍‌ବିଷୟକ ଏକ ସୁପ୍ରତ୍ୟକ୍ଷ ଅନ୍ତଃସ୍ଥ ଅର୍ଥ ଥାଏ, ତାହା ନୁହେଁ, ଏଗୁଡ଼ିକର ଆହୁରି ମଧ୍ୟ ଏକ ଭିନ୍ନ ପ୍ରକାର ଅର୍ଥ ଥିଲାପରି ଅନ୍ତତଃ ଜଣାପଡ଼େ । ସେହି ଅର୍ଥଟି ହେଉଛି ବହିଃସ୍ଥ ବସ୍ତୁମାନଙ୍କ ପ୍ରତି ସେଗୁଡ଼ିକର ନିର୍ଦ୍ଦେଶ........ମୋର ବକ୍ତବ୍ୟ ହେଉଛି ଯେ ଏହି ବହିଃସ୍ଥ ଅର୍ଥ ଅନ୍ତଃସ୍ଥ ଅର୍ଥଠାରୁ ସମ୍ପୂର୍ଣ୍ଣ ଭିନ୍ନ ଏବଂ ଏହା ଅନ୍ତଃସ୍ଥ ଅର୍ଥକୁ ସମ୍ପୂର୍ଣ୍ଣରୂପେ ଅତିକ୍ରମ କରିଗଲାପରି ଜଣାପଡ଼େ ।

"ବୋଟିଏ ପ୍ରତ୍ୟୟର ଅନ୍ତଃସ୍ଥ ଅର୍ଥ ଠିକ୍ ଯାହା, ତାହା ଅସଂପୂର୍ଣ୍ଣ ରୂପେ କିନ୍ତୁ ସଚେତନ ଭାବେ ଆଗରୁ ରହିଥାଏ, ତାହା ହେଉଛି ଉଦ୍ଦେଶ୍ୟର ଆପେକ୍ଷିକ ଭାବେ ପରିପୂରଣ । ଅଭିପ୍ସିତ ବହିଃସ୍ଥ ଅର୍ଥକୁ ଯେତେବେଳେ ଯଥାଯଥରୂପେ ବୁଝିଯାଏ, ସେତେବେଳେ ତାହା ମଧ୍ୟ ଠିକ୍ ସେଇଆ ଏବଂ ଅନ୍ୟ କିଛି ନୁହେଁ ବୋଲି ଜଣାପଡ଼େ; ଅର୍ଥାତ୍ ତାହା ହେଉଛି ସଂକଳ୍ପର ହିଁ ସାମଗ୍ରିକ ଅଭିବ୍ୟକ୍ତି । ଏହା କ୍ଷଣସ୍ଥାୟୀ ଚେତନ ପ୍ରତ୍ୟୟର ସ୍ଥିତି କାଳରେ ଆଂଶିକଭାବେ ରୂପାୟିତ ହୋଇଥାଏ ।......... ସ୍ଥିତିବାନ୍ ହେବାରୁ ଅର୍ଥ କୌଣସି ନିରପେକ୍ଷ ପ୍ରତ୍ୟୟ-ସଂସ୍ଥିତିର ସଂପୂର୍ଣ୍ଣ ଅନ୍ତଃସ୍ଥ ଅର୍ଥକୁ ରୂପାୟିତ କରିବାକୁ କେବଳ ବ୍ୟକ୍ତ କରିନା । ଆହୁରି ମଧ୍ୟ ଏହି ସଂସ୍ଥିତିଟି ପ୍ରତ୍ୟେକ ସୀମିତ ପ୍ରତ୍ୟୟର ଯଥାଯଥ ଅନ୍ତଃସ୍ଥ ଅର୍ଥଠାରେ ପ୍ରକୃତରେ ନିହିତ ଥାଏ । ଏହି ସୀମିତ ପ୍ରତ୍ୟୟ ଗୁଡ଼ିକ ଯେତେ ଅଂଶାନୁଅଂଶ ହୋଇଥାଉ ନା କାହିଁକି ସେଥିରେ କିଛି ଯାଏ ଆସେ ନାହିଁ ।

"ଠିକ୍ ଯେପରି ବାସ୍ତବବାଦୀ କେବଳ ବହିଃସ୍ଥ ଅର୍ଥଗୁଡ଼ିକୁ ବିଚାର କରେ, ସେହିପରି ରହସ୍ୟବାଦୀ କେବଳ ଅନ୍ତଃସ୍ଥ ଅର୍ଥଗୁଡ଼ିକୁ ଜାଣେ ।"

ଶ୍ରୀ ଜେ. ଏମ୍. କିନଜ ଲେଖିଛନ୍ତି, "ପ୍ରତ୍ୟୟ ବା ଅର୍ଥଗୁଡ଼ିକ ସହିତ ଆମର ସାକ୍ଷାତ୍ ପରିଚିତି ଥାଏ । ଏଗୁଡ଼ିକ ସମ୍ବନ୍ଧରେ ଆମର ଚିନ୍ତାମାନ ଥାଏ ଏବଂ ଏଗୁଡ଼ିକୁ ଆମେ ବୁଝୁଁ ବୋଲି କୁହାଯାଇ ପାରେ ।" ପୁଣି ସେ କହିଛନ୍ତି, ବସ୍ତୁଗୁଡ଼ିକ ସହିତ ଆମର ସାକ୍ଷାତ୍ ପରିଚିତିରୁ, ଯେଉଁ ଗୁଡ଼ିକର ସଂବେଦନ ଆମର ଥାଏ ବା ଯେଉଁ ଗୁଡ଼ିକର ଅର୍ଥ ଆମେ ବୁଝୁଁ, ସେଗୁଡ଼ିକ ସମ୍ବନ୍ଧରେ ପ୍ରତିଜ୍ଞପ୍ତିର ଜ୍ଞାନକୁ ଆମେ

ଗଢ଼ କରିବା ପାଇଁ ସମର୍ଥ ।'' (୧) ଅର୍ଥ ପଦଟି ଏତେ ଉପାଦେୟ ଯେ ଧର୍ମ ସଂକ୍ରାନ୍ତୀୟ ବାଦାନୁବାଦ କ୍ଷେତ୍ରରେ ଏକ ଅତ୍ୟୁକ୍ତ ବିନାଶକାରକ ଶବ୍ଦ ରୂପେ, (୨) ସଙ୍ଗୀତ ସମାଲୋଚନାରେ ଏକ ଅପରିହାର୍ଯ୍ୟ ଜ୍ଞାନମୂଳକ ଶବ୍ଦ ରୂପେ, (୩) ଚିକିତ୍ସକମାନଙ୍କ ଠିକ୍ ବିଦମାନ ବିନ୍ଦୁ ସୂଚକ ଶବ୍ଦରୂପେ, (୪) ଏବଂ ଚରମ ସାପେକ୍ଷବାଦୀଙ୍କ ଉଦ୍ଭାବନ କୌଶଳର ଯୌକର୍ଯ୍ୟ ବିଧାୟକ ଶବ୍ଦ ରୂପେ (୫) ଏହାର ଆବଶ୍ୟକତା ସମସ୍ତବରେ ଅନୁଭୂତ ହୋଇଛି । "ଯଦି ଶିକ୍ଷାକୁ କେବଳ ଜ୍ଞାପନ ସହିତ ସମାନ କରି ଦିଆଯାଇ ନ ପାରେ, ତେବେ ତାହା କଣ ? ଶିକ୍ଷା ପଦଟିର ଅର୍ଥ କଣ ?"—ଏକ ଶିକ୍ଷାବିତ୍ ଏହି ପ୍ରଶ୍ନ ପଚାରିଛନ୍ତି । ସେ କହନ୍ତି, "ମୋର ଉତ୍ତର ହେଉଛି, ଏହି ପଦର

(୧) J. M, Keynes, A Treatise on probability, ୧ମ ଖଣ୍ଡ, ମୌଳିକ ପ୍ରତ୍ୟୟ, ପୃ ୧୨, ୧୩ ।

(୧) "ଧର୍ମ ବିଶ୍ୱାସର ଅର୍ଥ ଓ ଅଭିବ୍ୟକ୍ତି ବିଷୟରେ ଅନୁସନ୍ଧାନ ଲବ୍ଧ ଉପକାରକୁ ଏହି ସଭା ସ୍ୱୀକାର କରେ"—ସମାବର୍ତ୍ତନର ଉଚ୍ଚତର ସଭା, ମେ ମାସ ୨ ତାରିଖ ୧୯୨୨ ।

(୩) କୁମାରୀ A ଙ୍କର ଗତ ରାତିର କାର୍ଯ୍ୟକ୍ରମରେ ତାଙ୍କର ବର୍ଦ୍ଧିଷ୍ଣୁ ସୂକ୍ଷ୍ମ-ସଚେତନ ଦୃଷ୍ଟିଭଙ୍ଗୀ ଏକ ପ୍ରଶଂସନୀୟ ପ୍ରବନ୍ଧ ମାଧ୍ୟମରେ ପରିସ୍ଫୁଟ ହୋଇଥିଲା; ସୁତରାଂ ତାଙ୍କର ସଙ୍ଗୀତ ପରିବେଷଣ ଉଦ୍ଦୀପନାମୂଳକ ହୋଇଥିଲା । ତାଙ୍କର ପୂର୍ଣ୍ଣ ପରିଣତ ଅବସ୍ଥାରେ ବିଥୋଭେନଙ୍କ A ସ୍ୱର ସଂଯୋଜନ—୧୦୧ର ଯୋନାଟା ତାହାଙ୍କୁ ସମ୍ଭବତଃ ଏକ ନିଗୂଢ଼ ଅର୍ଥର ସୂଚନା ଦେବା । କିନ୍ତୁ ତାଙ୍କର ଏବକାର ଅଧ୍ୟୟନ ମଧ୍ୟ ସୁସ୍ପଷ୍ଟ ରୂପେ ଏକ ଯଥାର୍ଥ ଅଭିବ୍ୟକ୍ତି ।" —The morning post,—୨୪ ଜୁନ ୧୯୨୨ ।

(୧) ରୋଗର ଲକ୍ଷଣମାନଙ୍କ ଗୁରୁତ୍ୱ ଏତେ ଅସଂପୂର୍ଣ୍ଣ ରୂପେ ହୃଦୟଙ୍ଗମ କରାଯାଏ ଯେ ସେଗୁଡ଼ିକର ଅର୍ଥ, କିମ୍ବା ବିଧି ଓ ତାତ୍ପର୍ଯ୍ୟର ଏକ ବିବରଣୀ କୌଣସି-ଠାରେ ଲିପିବଦ୍ଧ ହୋଇ ରହିଥିବାର ଦେଖାଯାଏ ନାହିଁ । ଚିକିତ୍ସା-ଜ୍ଞାନରେ ଏହା ଏକ ବିରାଟ ତ୍ରୁଟି ।"—Sir James Maekenzie, କଥିତ ଗ୍ରନ୍ଥ, ପୃ ୨ ।

(୨) "ମୂର୍ତ୍ତି ସାମାନ୍ୟର ଅର୍ଥ ହେଉଛି ଯେ ସତ୍ତା ଶବ୍ଦଟିର ସଂପୂର୍ଣ୍ଣ ଅର୍ଥରେ ସତ୍ତା ତଦୀୟ ସଂପ୍ରତ୍ୟୟ ପ୍ରକୃତି ବିଶିଷ୍ଟ । ·········ସାମାନ୍ୟତାର ଅର୍ଥ ହେଉଛି ଯେ ସାକଲ୍ୟ ପ୍ରତ୍ୟେକ ଅଂଶରେ ବିଦ୍ୟମାନ । ·········ଆମର ବାସ୍ତବ ଜଗତରେ ଯଦି କୌଣସି ନିରୁପାଧିକ ବସ୍ତୁ ନାହିଁ, ତେବେ ତହିଁରୁ ନିଃସୃତ ହେଉଛି ଯେ ନିରୁପାଧିକ

ଅନିର୍ବାର୍ଯ୍ୟ ଅର୍ଥ ତାହାର ଆଧ୍ୟାତ୍ମିକ ଐଶ୍ୱର୍ଯ୍ୟ ସହିତ କ୍ରମାଗତ ସମାଯୋଜନ ।" (୩) ଏଥିରୁ ମନେ ହୁଏ ଅର୍ଥ ପଦଟି ହିଁ ହେଉଛି ଠିକ୍ ସେହି ପ୍ରକାର ଶବ୍ଦ ଯାହା ସାହାଯ୍ୟରେ ଆମେ ମନୁଷ୍ୟମାନଙ୍କ ଆତ୍ମାର ଚମତ୍କାରିତାକୁ ଗଭୀରତା ମଧ୍ୟକୁ ପୁଞ୍ଜା ପ୍ରବେଶ କରିବାର ପ୍ରସ୍ତାବ କରିପାରୁଁ । "ସ୍ୱର୍ଣ୍ଣାଭ ମନୁଷ୍ୟର ମାନସିକ ଅବସ୍ଥା ପ୍ରତି ଦୃଷ୍ଟି ନିବଦ୍ଧ କରାଯାଉ ।.........ସହସା ଏକ ନୂତନ ଉପାଦାନ ତାହାର ଚେତନା ମଧ୍ୟକୁ ପ୍ରବେଶ କରେ—ତାହା ହେଉଛି ଜଳମଧ୍ୟକୁ ପଡ଼ୁଥିବା ବୋଟି ଦ୍ୱାରା ସୃଷ୍ଟ ଗୁଞ୍ଜନ ଉଦ୍ଦୀପନର ଚେତନ ପ୍ରତିରୂପ । ମନୁଷ୍ୟ ନିମନ୍ତେ ଖାଦ୍ୟ ହେଉଛି ଦେଶ-କାଳସ୍ଥିତ ଏକ ବସ୍ତୁ ଏବଂ ତାହାର ଅର୍ଥ ରହିଛି । କିନ୍ତୁ ଖାଦ୍ୟ ଖାଇବା କାଳରେ ପ୍ରତ୍ୟକ୍ଷ ଓ ଅର୍ଥ ଉଭୟ ଉପଭୋଗ୍ୟ ।.........ପ୍ରତ୍ୟକ୍ଷ ଓ ଅର୍ଥ ସଂଯୁକ୍ତ ହେବାର ଏହା ଏକ ଦୃଷ୍ଟାନ୍ତ ।"(୪)

ଏଥର, ପାଠ୍ୟକ୍ରମଭୁକ୍ତ ମନସ୍ତତ୍ତ୍ୱ ଆଡ଼କୁ ଦୃଷ୍ଟି ନିକ୍ଷେପ କରାଯାଉ । ଅଧ୍ୟାପକମାନଙ୍କ ଦୁଇଗୋଟି ପ୍ରଚଳିତ ଉକ୍ତି ରହିଛି । ସେଗୁଡ଼ିକର ତୁଳନା କରିବାକୁ ଆମର ଆଗ୍ରହ ଜନ୍ମିବ —

"ସରଳ ଅବବୋଧର ବିଷୟବସ୍ତୁ ହେଉଛି ଯାହା ବୋଲି ମନ ଅର୍ଥ କରିଥାଏ ବା ଯାହାକୁ ନିର୍ଦ୍ଦେଶ କରିବା ମନର ଅଭିପ୍ରାୟ ।

"ଚିନି ଶବ୍ଦଟିକୁ ଦେଖିବା ମାତ୍ରେ ତାହାର ଅର୍ଥ ମଧୁରତା ବୋଲି ଜଣାପଡ଼େ ?"

---

ରହିଛି ଆମ ଅନ୍ତରରେ । କିନ୍ତୁ କୌଣସି ବିବିକ୍ତ ଅର୍ଥରେ, ଅର୍ଥାତ୍ ଯେଉଁ ଅର୍ଥରେ ଅନୁଭୂତିର ଜ୍ଞାତାକୁ ଜ୍ଞେୟଠାରୁ ପୃଥକ୍ କରାଯାଏ, ସେହି ଅର୍ଥରେ ନିରୂପାଧିକ ଆମ ଅନ୍ତରରେ ନାହିଁ ।.........ଅଧିକନ୍ତୁ, ଏହି ନୂତନ ପଦକୁ ପୁରାତନ ଅର୍ଥ ଦେଲେ, ଚିଦଣୁମାନଙ୍କ ପୂର୍ବ ସ୍ଥାପିତ ସାମଞ୍ଜସ୍ୟ ରହିଛି ।"—Professor H. Wildon Carr, A Theory of Monads (୧୯୨୨) ପୃ ୨୯୯-୩୦୦, ୩୧୮ ।

(୩) Nicholas Murray Butler, What is Education ? (୧୯୦୬) ପୃ ୧୬ ।

(୪) W. E. Urwick, the Child's Mind (୧୯୦୭), ପୃ ୭୮ ।

"ଏ ପ୍ରକାର ଚେତନାର ଅଭିବ୍ୟକ୍ତି ନିମନ୍ତେ ଯେଉଁ ଏକମାତ୍ର ସାଧାରଣ ଶବ୍ଦ କୌଣସି ଭାବେ ଯଥୋପଯୁକ୍ତ, ତାହା ହେଉଛି ଅର୍ଥ ।" (୨)

"ଯେଉଁ ସମସ୍ତ ବିଷୟ ଅଭିପ୍ରେତ, ତାହା କଦାପି ମାନସିକ ଅବସ୍ଥାରେ ଦତ୍ତ ହୋଇ ନଥାଏ । ମାନସିକ ଅନ୍ତର୍ବସ୍ତୁର ଅର୍ଥ କେବଳ ହେଉଛି ଯାହା ସମ୍ବନ୍ଧରେ ଆମେ ଚିନ୍ତା କରୁଥାଉଁ । ଏହା ଅଭିପ୍ରେତ ବିଷୟର ସୃଷ୍ଟି ବା ଗଠନ କରେନାହିଁ ।" (୩)

"ପ୍ରତ୍ୟକ୍ଷର ଅର୍ଥ ରହିଛି । କୌଣସି ସଂବେଦନର ଅର୍ଥ ନାହିଁ; ଗୋଟିଏ ସଂବେଦନ ବିଭିନ୍ନ ଗୁଣାନ୍ୱିତ ହୋଇ ଅର୍ଥାତ୍ ତୀବ୍ରତ୍ୱଭାବେ, ସ୍ପଷ୍ଟତ୍ୱଭାବେ, ଦୈର୍ଘିକତ୍ୱଭାବେ ଓ ଏହିପରି ଅନେକ ପ୍ରକାରରେ କେବଳ ଗତିଶୀଳ ହୁଏ । ସମସ୍ତ ପ୍ରତ୍ୟକ୍ଷର ଅର୍ଥ ରହିଛି । ଏଗୁଡ଼ିକର ମଧ୍ୟ ବିଭିନ୍ନ ଗୁଣାନ୍ୱିତ ଗତି ରହିଛି, କିନ୍ତୁ ଏହି ଗତିଶୀଳତା ଅର୍ଥଯୁକ୍ତ ।" "ଗୋଟିଏ ପ୍ରତ୍ୟୟର ଅର୍ଥ ଆଉ ଏକ ପ୍ରତ୍ୟୟ । ଯଦି ଗୋଟିଏ ପ୍ରତ୍ୟୟର ଅନ୍ୟ ଏକ ପ୍ରତ୍ୟୟ ପ୍ରସଙ୍ଗ ହୋଇଥାଏ, ତେବେ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ, ଏହି ପ୍ରସଙ୍ଗ ପ୍ରତ୍ୟୟଟି ଅପର ପ୍ରତ୍ୟୟର ଅର୍ଥ ।" (୪)

"ଗୋଟିଏ ବସ୍ତୁର ଭାବାତ୍ମକ-ସଂକଳ୍ପମୂଳକ ଅର୍ଥ ବା ମୂଲ୍ୟ କେବଳ ସଂଜ୍ଞାନାତ୍ମକ ସ୍ତରରେ ସୁସ୍ପଷ୍ଟ ହୁଏ । ଏହା ହେଉଛି ସଂଜ୍ଞାନାତ୍ମକ କ୍ରିୟା ମାଧ୍ୟମରେ ସ୍ୱଭାବମୂଳକ ପ୍ରବୃତ୍ତିର ଭାବ ଅଥବା ଇଚ୍ଛାରେ ବାସ୍ତବରୂପ ଧାରଣ । ଏହି ସଂଜ୍ଞାନାତ୍ମକ କ୍ରିୟାଗୁଡ଼ିକ ଭାବ ଅଥବା ଇଚ୍ଛାକୁ ସେହି ଅର୍ଥ ଦିଏ, ଯାହା ମୂଲ୍ୟ ବୋଲି କଥିତ ହୋଇଛି । ·········ଏହା ହେଉଛି ଚିନ୍ତାତ୍ମକ ମୂଲ୍ୟାୟନରେ ନିୟୋଜିତ ସତ୍ତ୍ୱର ସମ୍ଭବପର ଅର୍ଥାବଳୀ, ଅଥବା ଏହି ସମସ୍ତ ଅର୍ଥର ସାଧାରଣ ତର୍କସୂତ୍ର ସୂଚନା ।" (୨)

---

(୨) Stout, Manual of psychology ପୃ ୧୦୪, ୧୮୦, ୨୮୩ ।

(୩) Pillsbury, Fundamentals of psychology ପୃ ୨୬୪ ।

(୪) Titchner, A Text Book of psychology, ପୃ ୩୬୭ ଏବଂ Experimental Psychology of the thought—Processes, ପୃ ୧୭୫ ।

(୨) Urban, Valuation ପୃ ୯୫, ୩-୬ ।

"ଅର୍ଥ ହୋଇପାରେ କିଛି ମନେ କରିବା, ଅଥବା ଏହା ହୋଇପାରେ—ଧରନ୍ତୁ, କେବଳ ଅର୍ଥ । .........ଆଚ୍ଛା, ମୋର ବ୍ୟାଖ୍ୟା ମୁତାବକ, ଅର୍ଥ ଯଦି ହେଉଛି ଗୋଟିଏ ପ୍ରଣାଳୀର ଅଂଶ ମାତ୍ର, ତେବେ ମାନସିକ ପ୍ରଣାଳୀର ସହାବସ୍ଥିତ ବା ସମନ୍ୱିତ ଫଳଗୁଡ଼ିକ ମଧ୍ୟରେ ସର୍ବାଧିକ ଧୈର୍ଯ୍ୟ ସମ୍ବଳିତ ଆମ ଅର୍ଥାନ୍ୱେଷଣ କାହିଁକି ଏପରି ବାରଂବାର ଅସଫଳ ହୋଇଯାଏ ?" (୩)

"ଅର୍ଥ ହେଉଛି ଗୋଟିଏ ବସ୍ତୁ ସମ୍ବନ୍ଧୀୟ ଚିନ୍ତାର ବା ଚେତନାର ଏକ ମୌଳିକ ଅଂଶ । .........ଅର୍ଥର ପ୍ରତିଷ୍ଠାପନୀୟ ହେବା ଏବଂ ତାହାର କାର୍ଯ୍ୟ ତୁଲାଇବା ଯୋଗ୍ୟ କୌଣସି ସାକ୍ଷାତ୍ ସହସମ୍ବନ୍ଧୀୟ ଶରୀରତାତ୍ତ୍ୱିକ ଉପାଦାନ ମସ୍ତିଷ୍କରେ ନାହିଁ ।" (୪)

ଅନ୍ୟ ପକ୍ଷରେ, ମନୋବିଶ୍ଳେଷକମାନଙ୍କ ଭାଷାର ନମୁନା ସ୍ୱରୂପ ହାର୍ବାର୍ଡ଼ର ସ୍ୱର୍ଗତ ଅଧ୍ୟାପକ ଜେ. ଜେ. ପୁଟ୍‌ନମ୍‌ଙ୍କ (୨) ନିମ୍ନଲିଖିତ ଉଦ୍ଧୃତ ବିଚାର କରାଯାଇ ପାରେ —

"ବିନା କୋଟରେ ଜଣେ ଗାଁ ଗହଳରେ ବୁଲିବା ଗୋଟିଏ ତ୍ରୈଟକଥା ପରି ମନେହୁଏ ଏବଂ ତାହା ଅଟେ ମଧ୍ୟ । କିନ୍ତୁ ବୟସ୍କର ଏ ପ୍ରକାର ଅଭାବ ସ୍ୱପ୍ନରେ ଦେଖିଲେ, ତାହା ଏକ ଅତି ବ୍ୟାପକ ଅର୍ଥଯୁକ୍ତ ଘଟଣା ହୋଇପାରେ । .........
...ଉପର୍ଯ୍ୟୁକ୍ତ ବିଷୟାବଳୀରୁ ସୁପ୍ରତ୍ୟକ୍ଷ ହେବ ଯେ ମନୋବିଶ୍ଳେଷଣାତ୍ମକ ଭାଷାରେ 'ଯୌନ' ପଦଟିର ଯେପରିଭାବେ ସଂଜ୍ଞା ଦିଆଯାଇଛି, ତାହା ସାଧାରଣତଃ ମନେକରାଯାଉଥିବା ଅର୍ଥଠାରୁ ଅତ୍ୟନ୍ତ ବ୍ୟାପକତର । ...........ପରବର୍ତ୍ତୀ ବିଷୟଟିର ଧର୍ମଙ୍କ 'ଉଦାତ୍ତୀକରଣ' ସହିତ ରହିଛି । ବୈଜ୍ଞିକ କମବିକାଶର ଏହି ଧରଣତର ସଂଜ୍ଞା ଫ୍ରୟେଡ଼ଙ୍କ ଦ୍ୱାରା ଯେପରିଭାବେ ଦିଆଯାଇଛି, ତାହାର ଏକ ନିର୍ଦ୍ଧାରିତ ସାମାଜିକ-ଅର୍ଥ ରହିଛି ।.........

"ମନୋବିଶ୍ଳେଷକ ଚିକିତ୍ସାର ତାର୍କିକ ଲକ୍ଷ୍ୟ ହେଉଛି ପୁନର୍ବାର ରୋଗୀକୁ ଜୀବନର ପ୍ରଭାବ ଓ ଅର୍ଥ ସମ୍ବନ୍ଧରେ ସଂପୂର୍ଣ୍ଣରୂପେ ଅବହିତ କରାଇବା ।"

---

(୩) Lcoyd Morgan, Instinct and Experience, ପୃ ୨୭୭, ୨୭୮

(୪) W. Mc. Dougall, Body and mind ପୃ ୩୦୪, ୩୧୧ ।

(୨) Addresses on psycho-analysis, ୧୯୨୧ ପୃ ୧୪୭, ୧୫୧, ୨୦୭

"ନିଜ ପରିବାରକୁ ନେଇ ଗର୍ବବୋଧ କରିବା ସ୍ୱରଚିମୂଳକ ଆତ୍ମ ତୋଷା-ମୋଦର ଏକ ଲକ୍ଷଣ ହୋଇପାରେ । କିନ୍ତୁ ଅନ୍ୟ ସମସ୍ତ ସଙ୍କେତ ଓ ପ୍ରତୀକ ଭଳି ଏହା ଦୁଇଟି ବିରୋଧୀ ଅର୍ଥ ସମ୍ମିଳିତ ହୋଇଥିବାର ଏକ କ୍ଷେତ୍ର । .........

ଅର୍ଥ କିସ୍ୱାବାଦୀମାନେ ସମସ୍ୟାଟିର ସରଳୀକରଣ ନିମନ୍ତେ ଏକ ସାହସିକ ପ୍ରଚେଷ୍ଟା କରିଥିଲେ । ଅଧ୍ୟାପକ ମିଲର୍ (୧) ଉଲ୍ଲେଖ କରିଛନ୍ତି, "ଯାହା ପ୍ରସ୍ତାବିତ ତାହା ହିଁ ଅର୍ଥ ।" ଅଧ୍ୟାପକ ବଅଡ଼େନ (୨) ମଧ୍ୟ ସମଭାବରେ ସରଳତାର ଆଶ୍ରୟ ନେଇଛନ୍ତି—"ଅନୁଭବ ଗୋଟିଏ ପରିସ୍ଥିତିର ମୂଲ୍ୟର ଏକ ଅସ୍ପଷ୍ଟ ଆଶଂସନ ହୋଇଥିବା ସ୍ଥଳେ ସଂଜ୍ଞାନ ହେଉଛି ତାହାର ଅର୍ଥର ସୁସ୍ପଷ୍ଟ ଓ ସୁନିର୍ଦ୍ଦିଷ୍ଟ ପ୍ରତ୍ୟକ୍ଷଣ ।" କିନ୍ତୁ ସଂପ୍ରସାରଣର ପ୍ରଥମ ପ୍ରସ୍ତାବରେ ହିଁ ଏଠାରେ ଅସୁବିଧାର ସୂତ୍ରପାତ ହୁଏ । ଅଧ୍ୟାପକ ଡିଉଇ (୩) କହିଛନ୍ତି, "ଯେଉଁ ଅନୁଭୂତ ସମସାମୟିକ ଭାବେ ଏକ ସ୍ୱାତନ୍ତ୍ର୍ୟ ଅର୍ଥ ସମ୍ବନ୍ଧରେ ଅବହିତ, ତାହା ହିଁ **ସଂଜ୍ଞାନାତ୍ମକ ଅର୍ଥ** ଓ ଅର୍ଥସଂପୃକ୍ତ ବସ୍ତୁ ଉଭୟ ସେହି ଏକ ପରିସ୍ଥିତିର ଉପାଦାନ । ...........ଗୋଟିଏ ଉପସ୍ଥିତ, କିନ୍ତୁ ଏହି ଉପସ୍ଥିତ ହେଉଛି ଅପରଟି—ଯେପରିଭାବେ—ଉପସ୍ଥିତ—ଠିକ୍ ସେହିପରି ଭାବେ ଅନୁପସ୍ଥିତ ରହିବା ଭଳି । ...........ଆମେ କହିପାରୁ ଯେ ଚେତନ ଅର୍ଥ କିମ୍ବା ଅଭିପ୍ରାୟ ସଂଶ୍ଳିଷ୍ଟ ହୋଇଥିବା ଅବସ୍ଥାରେ ଗୋଲାପର ସୁଗନ୍ଧ ହେଉଛି ମାନସିକ ।"

ଦର୍ଶନର (୧) ଏବଂ ଶୈଶବାସ୍ଥାର (୨) ଐତିହାସିକମାନେ, ସମାଜ(୩)ର ଏବଂ ବ୍ୟାକରଣର (୪) ସଂସ୍କାରକମାନେ—ସମସ୍ତେ ନିଜ ନିଜ ଦୃଷ୍ଟିକୋଣରୁ 'ଅର୍ଥ'

---

(୧) J Miller, The psycholrgy of thinking, ୧୯୦୯, ପୃ ୧୫୪ ।
(୨) H. Heath Bawden, The principles of pragmatism, ପୃ ୧୫୧
(୩) J. Dewey, The Influence of Darwin upon philosophy, ୧୯୧୦, ପୃ ୮୮, ୧୦୪ ।

(୧) "ଆମେ ସାଧାରଣ ଭାବେ କହିପାରୁ ଯେ ପ୍ରତ୍ୟୟଗୁଡ଼ିକ ହେଉଛି ପ୍ରତୀକ । ଏହି ପ୍ରତୀକ ଗୁଡ଼ିକ ଅନୁଭୂତର କେତେକ ବାସ୍ତବ ମୂର୍ତ୍ତି ବା ଅବସ୍ଥା ବ୍ୟକ୍ତ କରିବା କାର୍ଯ୍ୟ ତୁଲାଏ, ଏବଂ ତାହାର ସ୍ଥିତି ବା ଅର୍ଥରେ ଯାହା ନିହିତ ଥାଏ ଅଥବା ନିହିତ ଥିଲପରି ମନେ ହୁଏ, ତାହାର ଅଧିକ ବାସ୍ତବୀକରଣ ଆଡ଼କୁ ଅଗ୍ରସର କରାଇ ନିଏ । ...........କୌଣସି ପ୍ରତ୍ୟୟ କଦାପି ପୂର୍ଣ୍ଣତଃ ଯଥୋପଯୁକ୍ତ ନୁହେଁ—ଏହାର ଅର୍ଥ ହେଉଛି ଅନୁଭୂତର ସୂଚନା-ସାମର୍ଥ୍ୟ ଅପରିସୀମ ।"
Forsyth, English philosophy, ୧୯୧୦, ପୃ ୮୦, ୮୩ ।

ଶବ୍ଦକୁ ବ୍ୟବହାର କରିଛନ୍ତି । ଏହାର ବ୍ୟବହାର ସୁପ୍ରତ୍ୟକ୍ଷ, ତଥାପି ଏହାର ସଂଜ୍ଞା ଦିଆଯାଇ ନାହିଁ । ସର୍ବାଧିକ ସୁସ୍ପଷ୍ଟଭାବେ ଚିନ୍ତା କରୁଥିବା ବ୍ୟକ୍ତିମାନେ ସୁଦ୍ଧା ଏହାର ଅଧିକତର ବିଶ୍ଳେଷଣ କରିବାକୁ ପଶ୍ଚାତ୍‌ପଦ ହୋଇଛନ୍ତି । ଅଧ୍ୟାପକ ଜି. ଇ. ମୁଅରଙ୍କ ରଚନାର ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ 'ଅର୍ଥ' ଶବ୍ଦ ଏକ ଦୃଷ୍ଟିଆକର୍ଷକ ଭୂମିକା ଗ୍ରହଣ

---

(୨) "ଶିଶୁମାନେ ଆଂଶିକତଃ ସ୍ୱ ଉଚ୍ଚାରିତ ଧ୍ୱନି ଗୁଡ଼ିକର ଉପଯୋଗ ତଥା ସେଗୁଡ଼ିକୁ ଅର୍ଥ ପ୍ରଦାନ କରି ଏବଂ ଆଂଶିକତଃ କେବଳ ଅନୁକରଣ କରି କଥାକହିବା ଶିଖନ୍ତି । ............ଶିଶୁ ଧ୍ୱନିଗୁଡ଼ିକ ଓ ଅର୍ଥ ଉଭୟର ଉଦ୍ଭାବନ ନିଜେ କରେ କି ନା, ତାହା ସନ୍ଦେହାତ୍ମକ । ............ ନିଧାର୍ଯ୍ୟଭାବେ ସେମାନେ ଶବ୍ଦ-ଗୁଡ଼ିକର ଅର୍ଥ ପରିବର୍ତ୍ତିତ କରିଥାଆନ୍ତି ।" .........E. L. Cabot, Seven Ages of childhood, ୧୯୨୧, ପୃ ୨୦, ୨୩, ୨୪ ।

(୩) "ବିବାହର ଅର୍ଥ ! ଏହାର ଠିକ୍ ଅର୍ଥ ନିର୍ଦ୍ଧାରଣ କରିବା ତ୍ରମ ଆମ ପକ୍ଷରେ ପ୍ରକୃତରେ କେତେ ସରଳ; କିନ୍ତୁ ତଥାପି ତାହାର ଅର୍ଥ ଆବିଷ୍କାର କରିବାପାଇଁ କି ପ୍ରକାର ଦୁଃସାହସିକ ଓ ନୈରାଶ୍ୟଜନକ ପ୍ରୟାସ କରା ନ ଯାଇଛି । .........ଯଦି ଆମ ଶିଶୁମାନେ ଏହି ସବୁ ପ୍ରୟାସ ସମ୍ବନ୍ଧରେ ସମସ୍ତ ବିଷୟ ଜାଣିପାରନ୍ତେ, ତଥାପି ସେମାନେ ମାନବୀୟ ବିବାହର ମୌଳିକ ଅର୍ଥ ବୁଝିପାରନ୍ତେ ନାହିଁ । ନାରୀ ଓ ପୁରୁଷ ମାନଙ୍କ ପାଇଁ ବିବାହର ଅର୍ଥ କଅଣ, ତତ୍ସମ୍ବନ୍ଧରେ ମାନବ ସମାଜ ବହିର୍ଭୂତ ଜୀବନର କୌଣସି ଆଲୋକପାତ କରି ପାରିବ ନାହିଁ । ବିବାହର ଅର୍ଥ ଜାଣିବାକୁ ଆମେ ଯଦି ଇଚ୍ଛାକରୁ, ତେବେ ସ୍ପଷ୍ଟତଃ ଆମକୁ ଏପରି ପରିବାର ଖୋଜି ବାହାର କରିବାକୁ ପଡ଼ିବ, ଯେଉଁଠାରେ ଅନୁକୂଳ ଅବସ୍ଥା ବିଦ୍ୟମାନ । ............ମାର୍କୋରିଜନନୀକୁ ଆମେ ତାହାର ଯଥାପ୍ରାପ୍ୟ ପ୍ରଶଂସା ବିନାଦ୍ୱିଧାରେ ଦେଇପାରୁ । ମାତୃତ୍ୱର 'ଅର୍ଥ ଅନେକ କିଛି ହୋଇ ଜୀବ ଜଗତରେ ଅଗରୁ ରହିଛି ।"

G. Spiller, The Meaning of Marriage, ୧୯୧୪, ପୃ ୧—୩ ।

(୪) ଯଥାଯଥ ଭାବେ କହିଲେ, ପ୍ରାୟଶଃ ପ୍ରତିମା ହେଉଛି ଅର୍ଥର ଏକ ଅଂଶ ଏବଂ ଅର୍ଥର ଅବଶିଷ୍ଟାଂଶର ଏକ ପ୍ରତୀକ, ଏହି ଉଭୟ ବିଷୟ । ଅଂଶରୂପେ ଏହା ଅର୍ଥର ଗୋଟିଏ ଢଗର ସବିଶେଷ ବିବରଣୀ ଦିଏ । ଗୋଟିଏ ପ୍ରତ୍ୟୟର ଅର୍ଥର ଏକ ଅଂଶ ହେଉଛି କୌଣସି ବସ୍ତୁନିଷ୍ଠ ତାଦାତ୍ମ୍ୟ ପ୍ରତି ତାହାର ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ।...... ......କେବଳ ଅର୍ଥ ହିଁ ମନରୁ ମନକୁ ଗତି କରିଥାଏ ।

A. D. Sheffield, Grammar and thinking, ପୃ ୩—୪ ।

କରିଛି; **ପ୍ରିନ୍ସିପିଆ ଏଥିକା** (ନୈତିକ ସୂତ୍ର) ପୁସ୍ତକରୁ ନିମ୍ନୋକ୍ତ ଉକ୍ତିଗୁଡ଼ିକ ସଂଗୃହୀତ —

"ଆମର ପ୍ରଶ୍ନ, 'ଉତ୍ତମ କଣ ?'ର ଆହୁରି ଏକ ଅର୍ଥ ରହିପାରେ । ଦ୍ୱିତୀୟତଃ, ଆମ ପ୍ରଶ୍ନର ଅର୍ଥ କେଉଁ ବସ୍ତୁ ବା ବସ୍ତୁଗୁଡ଼ିକ ଉତ୍ତମ ତାହା ପଚାରିବା ନ ହୋଇ, 'ଉତ୍ତମ'ର ସଂଜ୍ଞା କିପରିଭାବେ ଦିଆଯିବା ଆବଶ୍ୟକ, ତାହା ପଚାରିବା ମଧ୍ୟ ହୋଇପାରେ । ............'ଉତ୍ତମ' ଶବ୍ଦ ଦ୍ୱାରା ମନେ କରାଯାଇଛି ଯେ ତାହାର ବିପରୀତ 'ମନ୍ଦ' ବ୍ୟତୀତ ତାହା ହେଉଛି ବସ୍ତୁତଃ, ନୀତିଶାସ୍ତ୍ରର ସ୍ୱକୀୟ ବିଷୟବସ୍ତୁ ରୂପେ **ଏକମାତ୍ର** ସରଳ ଚିନ୍ତନୀୟ ବିଷୟ ।

"ପୀତର ଅର୍ଥ ପରିଶେଷରେ କେବଳ 'ପୀତ' ହୋଇ ନଥିଲେ, କମଳାଲେମ୍ବୁଗୁଡ଼ିକ ପୀତ ବୋଲି କହିବା ସଂପୂର୍ଣ୍ଣରୂପେ ନିରର୍ଥକ ହୁଅନ୍ତା । ............ପୀତ କହିଲେ ଯାହା ବୁଝାଏ, ପୀତ ବର୍ଣ୍ଣର ପ୍ରତ୍ୟେକ ବସ୍ତୁର ଅର୍ଥ ଠିକ୍ ତାହା ହିଁ ବୋଲି ଗ୍ରହଣ କରିବାକୁ ଆମେ ଯଦି ବାଧ୍ୟ ହେଉଥାନ୍ତୁ, ତେବେ ଆମ ବିଜ୍ଞାନରେ ଆମେ ବିଶେଷ ଅଗ୍ରଗତି କରି ପାରନ୍ତୁ ନାହିଁ ।

"କିନ୍ତୁ ସାଧାରଣତଃ ନୀତି-ଦାର୍ଶନିକମାନେ ଉତ୍ତମର ସଂଜ୍ଞା ଦେବାକୁ ଚେଷ୍ଟା କରିଛନ୍ତି, କିନ୍ତୁ ଏପରି ଏକ ଚେଷ୍ଟାର ଅର୍ଥ ନିର୍ଧାରଣ ଭାବେ ଯେ କଣ ହେବା ଆବଶ୍ୟକ, ତାହା ସେମାନେ ହୃଦବୋଧ କରିନାହାନ୍ତି ।" (୧)

ଏହି ମନୋମୁଖୀ ଭିତ୍ତି ଉପରେ ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ମତବାଦ ଆଧାରିତ ହେବା ଯେ କେବଳ ନୀତିଶାସ୍ତ୍ରରେ ଘଟିଛି, ଏ କଥା ନୁହେଁ; ଜଣେ ଆଧୁନିକ ତତ୍ତ୍ୱଶାସ୍ତ୍ରଜ୍ଞ (୧) କହିଛନ୍ତି; "ବସ୍ତୁଗୁଡ଼ିକୁ ଆମେ ଯେପରିଭାବେ ଜାଣୁ, ସେଗୁଡ଼ିକ ଅଧିକାଂଶତଃ ରଚନାତ୍ମକ; ସେଗୁଡ଼ିକ ଇନ୍ଦ୍ରିୟ ଲବ୍ଧ ଉପାଦାନ ଓ ଅର୍ଥର ସମ୍ମିଶ୍ରଣ । ............ସଂପ୍ରତ୍ୟୟ କେବଳ ଏକ ଶବ୍ଦ ନୁହେଁ, କାରଣ ଏହାର ଏକ ଅର୍ଥ ଥାଏ । ............ଅର୍ଥର ବିଷୟ ବସ୍ତୁରୂପେ ସାମାନ୍ୟ ଏକ ମାନସିକ କ୍ରିୟା ନୁହେଁ ।" ଅନ୍ୟ ଜଣେ ତତ୍ତ୍ୱବିଜ୍ଞାନୀ (୨) ମଧ୍ୟ "ସଂପ୍ରତ୍ୟୟମୂଳକ ଦୃଷ୍ଟିଭଙ୍ଗୀରୁ ଏକ ପରିବର୍ତ୍ତିନ ପ୍ରକ୍ରିୟାର ଅର୍ଥ ବିଶ୍ଳେଷଣ କଥା କହିଛନ୍ତି । ସେ ଜୋରଦେଇ

---

(୧) ପୃ ୬, ୧୪, ୧୫

ଏହା Professor Perry ଙ୍କ ସମାଧାନ ପଦ୍ଧତି ସହିତ ତୁଳନୀୟ —

"ଯାହା ସ୍ୱାଭାବିକ ଓ ଅବଶ୍ୟକ, ବାସ୍ତବ ଓ ସତ୍ତ୍ୱାତ୍ମକ, ତାହା ମଧ୍ୟ

କହୁଛନ୍ତି, "ଆମେ ନିଜେ ଯେ ଇନ୍ଦ୍ରିୟ ଦତ୍ତମାନଙ୍କୁ ବିଶ୍ଳେଷିତ ହୋଇପାରୁ" ଏକଥା କଳ୍ପନା ସୁଦ୍ଧା କରିବା ଅସମ୍ଭବ, "କାରଣ ଇନ୍ଦ୍ରିୟ ଦତ୍ତଗୁଡ଼ିକ ସେମାନଙ୍କର ଅର୍ଥଦ୍ୱାରା ହିଁ 'ଦତ୍ତ' ବା 'ଉପସ୍ଥାପିତ'।" ସେ ପୁଣି କହୁଛନ୍ତି, "ଏହା ନିଃସନ୍ଦେହ ରୂପେ ସତ୍ୟ ଯେ 'ଶରୀର' ଓ 'ମନ' ଏକାଧିକ ଅର୍ଥ ସହ ବ୍ୟବହୃତ ହୋଇଛୁ ଏବଂ ଏଗୁଡ଼ିକୁ ଯୌକ୍ତିକ ତାତ୍ପର୍ଯ୍ୟସଂକେତ କରାଯାଇ ପାରେ।" (୩) ତାତ୍ପର୍ଯ୍ୟ ସଂକେତ ଅର୍ଥଗୁଡ଼ିକ ଲଡ୍ଡେ (୪)ଙ୍କ ସମର୍ଥନ ମଧ୍ୟ ଲାଭ କରିଛୁ। ଲଡ୍ଡେ ମତ ଦେଇଛନ୍ତି ଯେ "ନୈତିହାସିକ ବ୍ୟକ୍ତିମାନଙ୍କ ଓ ଘଟଣା ଗୁଡ଼ିକର ଅର୍ଥରେ ସମସ୍ତ ତାତ୍ପର୍ଯ୍ୟ ଆରୋପିତ ହେବା ସନ୍ତ୍ୱେ ସେଗୁଡ଼ିକର ରୂପର ବାହ୍ୟ ଆକାରରେ ସେଗୁଡ଼ିକ ପ୍ରାୟଶଃ ଅତ୍ୟନ୍ତ ଅକିଞ୍ଚନ।" ସେ ଏକଥା ମଧ୍ୟ କହୁଛନ୍ତି ଯେ ମୂରୀୟ ସ୍ଥାପତ୍ୟ କଳାରେ "ଉଲ୍ଲେଖିତ ଘୋଡ଼ା-ନାଳ ଆକାରର ତୀକ୍ଷ୍ଣ କୋଟି ବିଶିଷ୍ଟ ଧନୁର କୌଣସି ଯଥାଯଥ ଗଠନମୂଳକ ଅର୍ଥ ନାହିଁ। ଏହା ବରଂ ଏକ ବିରାଟ ଫାଟର ବହିଃଅଂଶର ସ୍ମୃତି ଜାଗରୂକ କରେ" ଯନ୍ତ୍ର ତଥା ବିନ୍ୟାସରେ "ବାସ୍ତବ ଜଗତର ଏକ ଅଂଶରୂପେ ହିଁ" ପ୍ରାକୃତିକ ଦୃଶ୍ୟର "ଏକ ଅର୍ଥ ରହିଛୁ।"

---

ଯଦି ହିତମ ନୁହେଁ, ତେବେ ହିତମତାକୁ ହୃଦ୍‌ବୋଧ କରିବାର ଅର୍ଥ କଣ ହୋଇପାରେ ?

"ଜୀବନରୁ ଦର୍ଶନର ଉଦ୍ଭବ ହେବା ଉଚିତ—ଏହା ଯଦି ଦର୍ଶନର ଅର୍ଥ ନିମନ୍ତେ ଗୁରୁତ୍ୱପୂର୍ଣ୍ଣ, ତେବେ ଏହା ମଧ୍ୟ ସମଭାବରେ ଗୁରୁତ୍ୱପୂର୍ଣ୍ଣ ଯେ ଦର୍ଶନ ଜୀବନ—ଅଭିମୁଖୀ ହେବା ଉଚିତ। ଦର୍ଶନର ଜୀବନ ସହିତ ଏହି ସମ୍ପର୍କର ଅର୍ଥ ନୁହେଁ ଯେ ସର୍ବସାଧାରଣରେ ଜୀବନ କହିଲେ ଯାହା ବୁଝାଏ, ତାହାଦ୍ୱାରା ଦର୍ଶନ ନିୟନ୍ତ୍ରିତ।

"ବର୍ତ୍ତମାନର ଯୁଗ ଜୀବନର ଅର୍ଥ ପ୍ରତି ସଚେତନ ନୁହେଁ। ଜୀବନର ସଫଳତା ଗୁଡ଼ିକରେ ହିଁ ଆମେ ନିମ୍ନୋଜିତ ରହିବା ହେତୁରୁ ଏପରି ଘଟିଛୁ।" R. B. Perry The Approach to philosophy ପୃ୪୨୨, ୪୨୭, ୪୨୭।

(୧) D. H Parker, The Self and Nature, ୧୯୧୭, ପୃ୧୪୮, ୧୯୦।

(୨) C. A. Richardson, Spiritual pluratism, ୧୯୨୦ ପୃ୧୦, ୪୦।

(୩) କଥିତ ଗ୍ରନ୍ଥ, ପୃ ୧୮୪।

(୪) Outlines of Aesthetics, ଜ୍ୱେଲ୍‌ର Professor G. T. Laddଙ୍କ ଦ୍ୱାରା ଇଂରାଜୀରେ ଅନୂଦିତ, ପୃ ୮୬।

ସୌନ୍ଦର୍ଯ୍ୟ ବର୍ଜନ ସର୍ବଦା ଶବ୍ଦର ଶିଥିଳ ବ୍ୟବହାର ଉପରେ ନିର୍ଭର କରି ସମ୍ଭବ ହୋଇଥାଏ, ଏବଂ ଏହି କ୍ଷେତ୍ରର ସମସ୍ତ ଅସୁବିଧାଜନକ ସ୍ଥାନମାନଙ୍କରେ ଅଣଦାର୍ଶନିକ ଲୋକମାନେ ସାଧାରଣ କ୍ଷେତ୍ରରୁ ଅଧିକ ପରିମାଣରେ ଅର୍ଥ ଶବ୍ଦକୁ ବାରଂବାର ବ୍ୟବହାର କରିଥାନ୍ତି । ଭେନ୍‌ଗ୍ ଲେଖିଛନ୍ତି, "ବର୍ଣ୍ଣରୂପେ ବର୍ଣ୍ଣର କୌଣସି ଏକ ଅର୍ଥ ରହିଛି; ଏ କଥାକୁ ଉପେକ୍ଷା କରିବା ଉଚିତ ନୁହେଁ । ଏହାକୁ ବରଂ ଉପଯୋଗ କରିବା ଉଚିତ ।" (୧) ଉଲ୍ଲେଖ ରହିଛି ଯେ କବି ମଧ୍ୟ "ଯାହା ମନେ କରନ୍ତି, ତାହା କହନ୍ତି, କିନ୍ତୁ ତାଙ୍କର ଅର୍ଥ ତାଙ୍କ କଥାକୁ ଅତିକ୍ରମ କରିଯାଇ ଦୂରକୁ ହାତଠାରି ଆହ୍ୱାନ ଜଣାଇଲା ପରି ମନେ ହୁଏ । ଏଠାରେ ବରଂ କୁହାଯାଇ ପାରେ ଯେ ତାଙ୍କର ଅର୍ଥ ଏକ ସୀମାହୀନ ପଦାର୍ଥକୁ ପ୍ରସାରିତ ହେଲାପରି ମନେ ହୁଏ । ଅର୍ଥରେ ତାହା କେନ୍ଦ୍ରୀଭୂତ ମାତ୍ର ହୋଇଥାଏ ।" (୨)

ଉପର୍ଯ୍ୟୁକ୍ତ ଢଙ୍ଗେ ବସ୍ତୁବର୍ଜନବାଦର ସଂବେଗ ଯେପରି କ୍ରମେ କ୍ରମେ ଉପରକୁ ଉଠି ଉଚ୍ଚାକାଶରେ ପରିଭ୍ରମଣ କରେ, ତାହାର ପୁନରୁକ୍ତିର ସ୍ୱର ମଧ୍ୟ ସେହିପରି କ୍ରମଶଃ ବୃଦ୍ଧିଲାଭ କରେ —

"ଜୀବନର ସାମଗ୍ରିକ ସ୍ଥିତିକୁ ଚିନ୍ତା ରୂପାନ୍ତରିତ କରିଦେଲା ଏବଂ ସତ୍ତ୍ୱକୁ ଏକ ନୂତନ ଅର୍ଥ ଦେଲା । ............ଯେଉଁମାନେ ଜୀବନରୁ ଏକ ଅର୍ଥ ଓ ଏକ ମୂଲ୍ୟ ନିଃସୃତ କରିପାରନ୍ତି, ସେମାନଙ୍କ ପାଇଁ ସୁଯୋଗ ଦୃଷ୍ଟିରୁ ଆମ ଯୁଗ ସୁମହାନ୍ ।" (୧)

"ଜୀବନର ଅର୍ଥ ବିଷୟକ ସମସ୍ତ ଯୁକ୍ତି ଆମକୁ ପ୍ରବୃତ୍ତି ଆଡ଼କୁ ଫେରାଇ ନିଏ । ............ବିସ୍ମୟର ନିସ୍ତବ୍ଧ ହୃଦୟରେ ସମ୍ବେଦନରେ ଯାହା ରହିଛି, ତାହାର ତାତ୍ପର୍ଯ୍ୟ ବହିର୍ଭୂତ କୌଣସି ତାତ୍ପର୍ଯ୍ୟ ଭଙ୍ଗିରେ ନିହିତ ଥିବା ବିଷୟକୁ ଅସ୍ୱୀକାର କରିବାମାନେ ଯେଉଁ ସବୁ ବିଭିନ୍ନ ମୂଲ୍ୟ ଜୀବନରେ ରହିଛି ବୋଲି ଭବ୍ୟତାର ପ୍ରାରମ୍ଭରୁ ଘୋଷଣା କରାଯାଇଛି, ସେ ସବୁ ସଂପୂର୍ଣ୍ଣ ମୂଲ୍ୟହୀନ ହୋଇଯାଏ ।" (୨)

---

(୧) Letters of a Post—Impressionist ପୃ ୨୯ ।

(୨) A. C. Bradley, Oxford Lectures on Poetry, ୧୯୦୧, ପୃ ୨୬ ।

(୧) R. Eucken, The Meaning and Values of Life ୧୯୦୯, ପୃ ୩୮, ୧୪୭ ।

(୨) J. Harris, The Significance of Existence, ୧୯୧୧, ପୃ ୩୧୯ ।

"ଠିକ୍ ଯେପରି ଜଣେ କଳାକାର ନିଜ ଅର୍ଥକୁ ପ୍ରକାଶ କରିବାର ସଫଳ ସଂଘର୍ଷରେ ତାହି ଅର୍ଥକୁ ଆବିଷ୍କାର କରେ, ସେହିପରି ଆମ ଦୃଷ୍ଟିକୋଣରୁ ଭଗବାନ ତାଙ୍କ ନିଜ ଅଭିଳାଷକୁ କାର୍ଯ୍ୟକାରୀ କରିବା ପ୍ରଣାଳୀରେ ତାହାକୁ ପରିସ୍ଫୁଟ କରନ୍ତି । ............ଜଗତରେ ନୂତନତ୍ୱ ହେଉଛି ଜାଗତିକ ଅର୍ଥର ଏକ ଅଂଶ । ଈଶ୍ୱରଙ୍କ ଅନୁଭୂତ ଯେପରି ହୋଇଥିବା ସୁନିଶ୍ଚିତ ବୋଲି ଆମର ଧାରଣା । ତାହାପରି ଅନୁଭୂତ କ୍ଷେତ୍ରରେ ଏହା ବିଶେଷତଃ ସତ୍ୟ । ଏହିପରି କ୍ଷେତ୍ରରେ ଭବିଷ୍ୟତ ହେଉଛି ସମସ୍ତର ପ୍ରଧାନ ଉପାଦାନ ।" (୧)

"ଭଗବାନ ହେଉଛନ୍ତି ଉଭୟ ବାସ୍ତବ ତଥା ଆଦର୍ଶ । ମୋର ଦୁଆରରେ ଉପାଦେୟତା ଯେପରି ସଂଯୁକ୍ତ, ଅର୍ଥାତ୍ ଗୋଟିଏ ଘଟଣା ବା ସତ୍ୟରେ ଗୋଟିଏ ମୂଲ୍ୟ ସାଧାରଣତଃ ଯେପରି ସଂଯୁକ୍ତ, ସେହିପରି ଭାବେ ଭଗବତ୍ ସତ୍ତାରେ ବାସ୍ତବତା ସହିତ ଆଦର୍ଶ ସଂଯୁକ୍ତ ନୁହେଁ । ଏହା ହେଉଛି ଗୋଟିଏ ଅର୍ଥଦ୍ୱାରା ପ୍ରତୀକାନ୍ୱିତ ବସ୍ତୁ ସହିତ ଅର୍ଥଟି ଯେପରି ଏକ ସ୍ୱତନ୍ତ୍ର ଧରଣରେ ସଂଯୁକ୍ତ, ତଦ୍ରୂପ । ଏହି ଅର୍ଥକୁ ବିବିଧ ରୂପେ ଉପସ୍ଥାପିତ କରିବା ପାଇଁ ବସ୍ତୁନିଷ୍ଠ ପ୍ରଜ୍ଞାକଳି ବା ଚର୍ଚ୍ଚିତି ଆରୋପିତ ବା ନିର୍ଦ୍ଧାରିତ ହୋଇଥାଏ ।........

"ସର୍ବଶେଷ ବିଶ୍ଳେଷଣ ଦୃଷ୍ଟିରୁ ସତ୍ତା ହେଉଛି ଆମେ ତାହାକୁ ଯେପରି ଅର୍ଥ କରୁ । ଅନୁଭୂତ ଦୃଷ୍ଟିରୁ, ସମସ୍ତ ଅର୍ଥ ବ୍ୟତିରିକ୍ତ ସତ୍ତା ହେଉଛି ଏକ ଅସଙ୍ଗତ କମ୍ବା ଏକ ଶବ୍ଦ ମାତ୍ର ।" (୨)

"ଚେତନର ପ୍ରତ୍ୟେକ ମୁହୂର୍ତ୍ତର **ବାସ୍ତବ** ଦିଗ ତଦ୍ ବହିଃସ୍ଥ ବିରାଟ ସମ୍ଭାବନାର ନିଦର୍ଶନ ରୂପେ ହିଁ କେବଳ ମୂଲ୍ୟ ବା ଅର୍ଥର ଅଧିକାରୀ ।........

"ଅସୀମ-ସଂପ୍ରତ୍ୟୟ ପ୍ରବର୍ତ୍ତିନରେ ଅନିଚ୍ଛା ହେତୁ ଜାଗତିକ ପ୍ରଣାଳୀର ବିଶ୍ଳେଷଣମୂଳକ ମତବାଦଗୁଡ଼ିକ ପ୍ରାୟଶଃ ଅନଗସର ତଥା ନିରର୍ଥକ ହୋଇଯାଏ ।" (୩)

---

(୧) W. Temple, The Nature of Personality, ୧୯୧୧, ପୃ ୧୦୭

(୨) J. M. Baldwin, Genetic Theory of Reality, ୧୯୧୫, ପୃ ୧୦୮, ୨୨୭

(୩) E. Beefort Bax, The Real, the Rational, and the Alogical, ୧୯୨୦, ପୃ ୨୩୬, ୨୪୩ ।

"ଏହି ପରିଚ୍ଛେଦଗୁଡ଼ିକର ସ୍ପଷ୍ଟତର ଧାରଣା ପାଇବା ପାଇଁ ଆମେ ଏହି ଅର୍ଥଗୁଡ଼ିକର ପରସ୍ପରକୁ ଅଧିକ ସ୍ପଷ୍ଟଭାବେ ବିଚାର କରିବା ଉଚିତ; ଶବ୍ଦମାନଙ୍କ ଅର୍ଥଗୁଡ଼ିକ ତୁଳ୍ୟ ସେଗୁଡ଼ିକ ବିସ୍ଥାପିତ ହେବା ଯୋଗ୍ୟ କି ନା, ଆମେ ପରୀକ୍ଷା କରି ଦେଖିବା ଉଚିତ।.........ଗୋଟିଏ ଶବ୍ଦର ଅର୍ଥ ଦ୍ୱାରା ମୁଁ ଯେପରି ଅନ୍ୟ ଜଣେ ବ୍ୟକ୍ତିର ଚିନ୍ତା ସମ୍ବନ୍ଧରେ ଅବଗତ ହୁଏଁ, ଅଥବା ସତ୍ତେ ଯେପରି ତାହାର ଅଭ୍ୟନ୍ତରକୁ ଦୃଷ୍ଟି ନିକ୍ଷେପ କରେ, ସେହିପରି ମୋର ଆତ୍ମାର ଅର୍ଥ ଦ୍ୱାରା ମୁଁ ଭଗବାନ୍ ବୋଲି କହୁଥିବା ସତ୍ତାକୁ ନିରୀକ୍ଷଣ କରେଁ।.........ଭଗବାନ୍ ଶବ୍ଦର ଅର୍ଥ ହେଉଛି ଏକ **ଶାଶ୍ୱତ** ବା ଅସୀମ **ଆତ୍ମା**।" (୧)

(୧) Professor K. J. Spalding—Desire and Reason ୧୯୨୨, ପୃ ୮।

# ନବମ ପରିଚ୍ଛେଦ

## ଅର୍ଥର ଅର୍ଥ

ପିତା ! ଏଗୁଡ଼ିକ ଭୟାନକ ଶବ୍ଦ । କିନ୍ତୁ ସେଗୁଡ଼ିକର ଅର୍ଥ ବ୍ୟତୀତ ଅନ୍ୟ କିଛି ନିମନ୍ତେ ବର୍ତ୍ତମାନ ମୋ ହାତରେ ସମୟ ନାହିଁ ।

**ମେଲ୍‌ମେଥ ଦି ୱାଣ୍ଡରର**

ଦାର୍ଶନିକମାନଙ୍କ ସିଦ୍ଧାନ୍ତଗୁଡ଼ିକର ଅଧ୍ୟୟନରୁ ସୂଚିତ ହେବ ଯେ ଅର୍ଥର ସେମାନଙ୍କ ବ୍ୟବହାର ଉପରେ ଆସ୍ଥା ସ୍ଥାପନ କରାଯାଇ ନପାରେ । ସେମାନେ ଯୋଗାଉଥିବା ବିଷୟବସ୍ତୁକୁ ଦୃଷ୍ଟି ସମକ୍ଷରେ ରଖି ଆଗରୁ ଆମେ ବିଶଦଭାବେ ବର୍ଣ୍ଣନା କରିଥିବା ପ୍ରବିଧି ସାହାଯ୍ୟରେ ଅଧିକ ବିଶ୍ୱାସଯୋଗ୍ୟ ଫଳ ଲାଭ କରାଯାଇ ପାରେ କି ନା ଦେଖାଯାଉ ।

ପ୍ରାରମ୍ଭରୁ ଦୁଇଗୋଟି ସଂଜ୍ଞା ରଚନା କରିବା କଷ୍ଟକର ହେବ ନାହିଁ । ଏହି ସଂଜ୍ଞା ଦୁଇଟି ସୌନ୍ଦର୍ଯ୍ୟ କ୍ଷେତ୍ରର କ—ତାଲିକାରେ ପ୍ରଦତ୍ତ ସଂଜ୍ଞାଦ୍ୱୟର ସହସବାସୀ । ଦାର୍ଶନିକମାନଙ୍କ ପକ୍ଷରେ ଦୁଇଟି ଉପାୟରେ ସେମାନଙ୍କ ସଂଜ୍ଞେୟ ପଦର ବସ୍ତୁକରଣ ସହଜ ତଥା ସ୍ୱାଭାବିକ ହୋଇଛି । ହୁଏ ତ ସେମାନେ ଏକ ସ୍ୱତନ୍ତ୍ର ଉପାଦାନ, ଏକ ଆନ୍ତରିକ ଗୁଣର ଉଦ୍ଭାବନ କରି, ତତ୍ପରେ କହିଛନ୍ତି ଯେ ଯେଉଁ ସମସ୍ତ ବସ୍ତୁ ଏହାର ଅଧିକାରୀ ସେ ସବୁର ଅର୍ଥ ରହିଛି ବୋଲି କୁହାଯାଉ; ଅଥବା ସେମାନେ ଏକ ବିଶିଷ୍ଟ ଅବିଶ୍ଳେଷଣୀୟ ସମ୍ବନ୍ଧ ଉଦ୍ଭାବନ କରି କହିଛନ୍ତି ଯେ ଯେଉଁ ସମସ୍ତ ବସ୍ତୁ ଏହି ସମ୍ବନ୍ଧ ଦ୍ୱାରା ଅନ୍ୟ ଏକ ବସ୍ତୁ ସହିତ ଅନ୍ୱିତ, ସେଗୁଡ଼ିକର ଅର୍ଥ ରହିଛି ବୋଲି କୁହାଯାଉ ।

ଏହି ଦୁଇଟି ସଂଜ୍ଞାର ଦ୍ୱିତୀୟଟିରେ ଏକ ବ୍ୟାକରଣଗତ ବିକଳ୍ପର ସମ୍ଭାବନା ଉନ୍ମୁକ୍ତ ରହିଛି । ତାହା ଅନ୍ୟାନ୍ୟ ସମସ୍ତ ପ୍ରସ୍ତାବିତ ସଂଜ୍ଞାରେ ମଧ୍ୟ ଉଠିଥାଏ ଏବଂ

ତଦ୍ଦ୍ୱାରା ଆଲୋଚନା ବହୁତ ଅଧିକ ମାତ୍ରାରେ ଗଣ୍ଡଗୋଳପରିପୂର୍ଣ୍ଣ ହୋଇଯାଏ । ଆମେ କହୁଁ ତ କ ର ଅର୍ଥ ଖ ହୋଇଥିବା ବେଳେ, କ ଓ ଖ ମଧ୍ୟରେ ଥିବା ସମ୍ବନ୍ଧ ପରିବର୍ତ୍ତେ ଅର୍ଥ ବ୍ୟବହୃତ ବୋଲି ଗ୍ରହଣ କରିପାରୁଁ, କିମ୍ବା ଖ ପରିବର୍ତ୍ତେ ଅର୍ଥ ବ୍ୟବହୃତ ବୋଲି ଗ୍ରହଣ କରିପାରୁଁ । ପ୍ରଥମ କ୍ଷେତ୍ରରେ କ ର ଅର୍ଥ ଖ ସହିତ ତାହାର ସମ୍ବନ୍ଧ ହେବ; ଦ୍ୱିତୀୟ କ୍ଷେତ୍ରରେ କ ର ଅର୍ଥ ଖ ହେବ । ଏହି ଦ୍ୱ୍ୟର୍ଥକତା ଥରେ ବୁଝି ପଡ଼ିଗଲେ, ଅବଶ୍ୟ ବିଶେଷ କୌଣସି ଅସୁବିଧା ଜାତ ହୋଇ ନଥାଏ । କିନ୍ତୁ 'ନିର୍ଦ୍ଦେଶ'—ଏହି ପ୍ରତୀକ ଦ୍ୱୟ ଦ୍ୱାରା ଏହି ଦ୍ୱ୍ୟର୍ଥକତାର ନିରାକରଣ ସମ୍ଭବପର । ଏହି ଶବ୍ଦ ସମ୍ଭାରର ସୁବିଧାମାନଙ୍କ ମଧ୍ୟରେ ଏହା ଅନ୍ୟତମ ।

ଅର୍ଥର ଅନ୍ୟାନ୍ୟ ସଂଜ୍ଞା ପ୍ରଭୂତ ପରିମାଣରେ ମନସ୍ତାତ୍ତ୍ୱିକ । ସୁତରାଂ ସୌନ୍ଦର୍ଯ୍ୟର ସଂଜ୍ଞାଗୁଡ଼ିକ ସହିତ ସେଗୁଡ଼ିକର ସାଦୃଶ୍ୟ ସୁସ୍ପଷ୍ଟ । କିନ୍ତୁ ଏହି ଦୁଇଟି ଉଦାହରଣରୁ ସିଦ୍ଧାନ୍ତ ଗ୍ରହଣ କରିନେବା ଉଚିତ ନୁହେଁ ଯେ ସମସ୍ତ ସଂଜ୍ଞାସମସ୍ୟା ପରିଶେଷରେ ମନସ୍ତାତ୍ତ୍ୱିକ ହୋଇଯାଏ ; ମନେକର, ଆମେ 'ସ୍ନାନ' ବା 'ନିମଜ୍ଜନ'ର ସଂଜ୍ଞା ଦେବାକୁ ଚେଷ୍ଟା କରୁଛୁଁ ; ତେବେ ଆମେ ଲକ୍ଷ୍ୟ କରିପାରିବା ଯେ ଏଠାରେ ସମ୍ପୂର୍ଣ୍ଣ ଭିନ୍ନପ୍ରକାର ସଂଜ୍ଞାପକ ପନ୍ଥା ଉପରେ ପ୍ରାଧାନ୍ୟ ପଡ଼ୁଛି । ଅର୍ଥ ସୁପ୍ରତ୍ୟକ୍ଷ ରୂପେ ଏପରି ଏକ ପ୍ରତୀକ ଯେ ତାହାର ସ୍ପଷ୍ଟୀକରଣମାନଙ୍କ ମଧ୍ୟରୁ କେତେକ ମନସ୍ତତ୍ତ୍ୱ ଉପରେ ନିର୍ଭରଶୀଳ ହେବା ସୁନିଶ୍ଚିତ । ଏଠାରେ ସୌନ୍ଦର୍ଯ୍ୟ-ଦୃଷ୍ଟାନ୍ତକୁ ମନୋନୀତ କରାଯାଇଛି, କାରଣ ନ୍ୟୂନ ମାତ୍ରାରେ ହେଲେ ସୁଦ୍ଧା ଏହି ପ୍ରତୀକଟି ମଧ୍ୟ ଅର୍ଥ ପ୍ରତୀକ ତୁଲ୍ୟ ସଙ୍କଟାପନ୍ନ ।

ନିମ୍ନରେ ଅର୍ଥର ମୁଖ୍ୟ ସଂଜ୍ଞାମାନଙ୍କ ଏକ ପ୍ରତିନିଧିକ ତାଲିକା ପ୍ରଦତ୍ତ ହେଉଛି । ଏଗୁଡ଼ିକ ଅର୍ଥର ସୁପ୍ରସିଦ୍ଧ ଗବେଷକମାନଙ୍କ ସମର୍ଥନ ଲାଭ କରିଛି । ଅର୍ଥ ହେଉଛି—

କ ୧—ଏକ ଆନ୍ତରିକ ଗୁଣ ।

୨—ଅନ୍ୟ ବସ୍ତୁମାନଙ୍କ ସହିତ ଏକ ଅଦ୍ୱିତୀୟ ଅବିଶ୍ଳେଷଣୀୟ ସମ୍ବନ୍ଧ ।

୩—ଅଭିଧାନରେ ଗୋଟିଏ ଶବ୍ଦ ସହିତ ସଂଲଗ୍ନ ଅନ୍ୟାନ୍ୟ ଶବ୍ଦ ।

୪—ଗୋଟିଏ ଶବ୍ଦର ଲକ୍ଷଣାର୍ଥ ।

୫—ଏକ ସାର ।

୬—ଏକ ବସ୍ତୁ ମଧ୍ୟକୁ ନିକ୍ଷିପ୍ତ ଏକ କ୍ରିୟା ।

୭—(କ) ଏକ ଅଭିପ୍ରେତ ଘଟଣା ।

ଖ (ଖ) ଏକ ସଂକଳ୍ପ ।

(ଖ) ୮—ଗୋଟିଏ ପରିସ୍ଥିତିରେ କୌଣସି ବସ୍ତୁର ସ୍ଥାନ ।

୯—ଆମ ଭବିଷ୍ୟତ ଅନୁଭୂତିରେ ଗୋଟିଏ ବସ୍ତୁର ବ୍ୟାବହାରିକ ପରିଣତି ।

୧୦—ଗୋଟିଏ ଉକ୍ତିରେ ସଂଶ୍ଳିଷ୍ଟ ବା ନିହିତ ତାତ୍ତ୍ୱିକ ପରିଣତି ।

୧୧—କୌଣସି ବସ୍ତୁଦ୍ୱାରା ଉଦ୍ରିକ୍ତ ସଂବେଗ ।

୧୨—ଯାହା ଗୋଟିଏ ନିର୍ବାଚିତ ସମ୍ବନ୍ଧଦ୍ୱାରା ଏକ ଶବ୍ଦ ସହିତ ପ୍ରକୃତରେ ସମ୍ବନ୍ଧାନ୍ୱିତ ।

୧୩—(କ) ଗୋଟିଏ ଉଦ୍ଦୀପନର ସ୍ମୃତି ପରିଣତି; ଲବ୍ଧ ସମ୍ବନ୍ଧାବଳୀ ।

(ଗ) (ଖ) ଅନ୍ୟ କେତେକ ଘଟଣା ଯାହା ପ୍ରତି କୌଣସି ଘଟଣାର ସ୍ମୃତି ପରିଣତି ଯଥୋପଯୁକ୍ତ ।

(ଗ) ଗୋଟିଏ ଶବ୍ଦ ଯାହାର ବୋଲି ବ୍ୟାଖ୍ୟା କରାଯାଏ, ତାହା ।

(ଘ) କୌଣସି ବସ୍ତୁଦ୍ୱାରା ଯାହା ସୂଚିତ ।

**ପ୍ରତୀକ କ୍ଷେତ୍ରରେ**

ଗୋଟିଏ ପ୍ରତୀକର ବ୍ୟବହାରକାରୀ ଯାହାକୁ ପ୍ରକୃତରେ ନିର୍ଦ୍ଦେଶ କରେ ।

୧୪—ଗୋଟିଏ ପ୍ରତୀକର ବ୍ୟବହାରକାରୀର ଯାହାକୁ ନିର୍ଦ୍ଦେଶ କରୁଥିବା ଉଚିତ ।

୧୫—ଗୋଟିଏ ପ୍ରତୀକର ବ୍ୟବହାରକାରୀ ଯାହାକୁ ନିର୍ଦ୍ଦେଶ କରୁଛି ବୋଲି ନିଜେ ବିଶ୍ୱାସ କରେ ।

୧୬—ଗୋଟିଏ ପ୍ରତୀକର ବ୍ୟାଖ୍ୟାକାର ଯାହାକୁ—

(କ) ନିର୍ଦ୍ଦେଶ କରେ ।

(ଖ) ନିର୍ଦ୍ଦେଶ କରୁଛି ବୋଲି ନିଜେ ବିଶ୍ୱାସ କରେ ।

(ଗ) ବ୍ୟବହାରକାରୀ ନିର୍ଦ୍ଦେଶ କରୁଛି ବୋଲି ବିଶ୍ୱାସ କରେ ।

କ—ତାଲିକା ସହିତ ଆମେ ଆଉରି ଅଧିକ ସଂପୃକ୍ତ ରହିବା ଅନାବଶ୍ୟକ । ଖ—ତାଲିକାର ବିଚାର କରାଯାଉ । ପ୍ରଥମଟି (୩ୟ) ଅର୍ଥାତ୍ ଆଭିଧାନିକ ଅର୍ଥ ବା ଭାଷାବିଦ୍‌ର ତାତ୍ପର୍ଯ୍ୟ ଯେପରିଭାବେ ଉପରେ ବର୍ଣ୍ଣିତ ହୋଇଛି, ତାହା ହାସ୍ୟାସ୍ପଦ ମନେ ହେଉଛି; ତଥାପି ଏହା ଅତି ବ୍ୟାପକଭାବେ ବ୍ୟବହୃତ ହୁଏ । ଭାଷାତତ୍ତ୍ୱ ପରିସରରେ ଏହାର ମୂଲ୍ୟ ଅସନ୍ଦିଗ୍ଧ । ଏ କଥା ସଙ୍ଖ୍ୟା—୧୪ କୁ ଦୃଷ୍ଟିରେ ରଖି ଉତ୍ତମ ବ୍ୟବହାର

ଓ ଉଦବଚନମୟ ସଂକ୍ରାନ୍ତୀୟ ସମପ୍ରକାର ପ୍ରଶ୍ନମାନଙ୍କ ଆଲୋଚନା କାଳରେ ପ୍ରଦର୍ଶିତ ହେବ ।

ଲକ୍ଷଣାର୍ଥ (ଏର୍ଥ) ହେଉଛି, ପ୍ରାଚୀନ ତର୍କଶାସ୍ତ୍ର ଅନୁସାରେ 'ଅର୍ଥ' ଏବଂ ସାର (ଈମ) ହେଉଛି କେତେକ ସମୀକ୍ଷାମୂଳକ ବାସ୍ତବବାଦୀମାନଙ୍କ ମତରେ 'ଅର୍ଥ' । ଏହି ସମୀକ୍ଷାମୂଳକ ବାସ୍ତବବାଦୀମାନେ ହେଉଛନ୍ତି ତଙ୍କର ସାନ୍ତାୟନାଙ୍କ ଉପର୍ଯ୍ୟୁକ୍ତ ଉକ୍ତିର ସମର୍ଥକ । ଏ ଦୁଇଟି ଅର୍ଥର ବିଚାର ଏକତ୍ର କରା ଯାଇପାରେ, କାରଣ ଯେଉଁମାନେ ନିଜର ସମୀକ୍ଷା ଦ୍ୱାରା ସ୍ୱକୀୟ ବାସ୍ତବବାଦକୁ ପରାଭୂତ ହେବାକୁ ଦିଅନ୍ତି ନାହିଁ, ସେମାନଙ୍କ ପକ୍ଷରେ 'ସାର'କୁ ବସ୍ତୁକୃତ ଲକ୍ଷଣାର୍ଥ ବୋଲି ବିବେଚନା କରିବା ସର୍ବୋତ୍ତମ ହୋଇପାରେ ।

ଯେଉଁ ତାର୍କିକମାନେ ମିଲ୍‌ଙ୍କ ଆଲୋଚନାର ଆଭିମୁଖ୍ୟକୁ ଅନୁସରଣ କରନ୍ତି, ସେମାନଙ୍କ ଦ୍ୱାରା ଲକ୍ଷଣାର୍ଥ ପଦଟି ବ୍ୟବହୃତ ହୋଇଛି । ଏହି ଆଭିମୁଖ୍ୟ ଅନୁସାରେ ଦୁଇଟି ଦୃଷ୍ଟିକୋଣରୁ ଗୋଟିଏ ପ୍ରତୀକର ଅର୍ଥ ରହିଛି ବୋଲି କୁହାଯାଇ ପାରେ । ମୌଳିକ ତଥା ସର୍ବଶ୍ରେଷ୍ଠ ବୋଲି ବିବେଚିତ ହୋଇଥିବା ଏହି ଦୃଷ୍ଟିକୋଣ ଦୁଇଟି ହେଉଛି (୧) ପ୍ରତୀକଟିର ଅର୍ଥ ସେହି ବସ୍ତୁସମଷ୍ଟି, ଯାହା ପ୍ରତି ତାହା ଅଭ୍ରାନ୍ତରୂପେ ପ୍ରଯୋଜ୍ୟ ହୋଇପାରେ; ଏହି ସମଷ୍ଟିର ବସ୍ତୁଗୁଡ଼ିକ ଶବ୍ଦଟି ଦ୍ୱାରା ସୂଚିତ ହୁଏ ବା ଚିହ୍ନିତ ହୁଏ ବୋଲି କୁହାଯାଏ । ଭିନ୍ନଭାବେ କହିଲେ, ଏହି ବସ୍ତୁଗୁଡ଼ିକ ହେଉଛି ଶବ୍ଦଟିର ବାଚ୍ୟାର୍ଥ । (୨) ତାହାର ଅର୍ଥ ସେହି ଗୁଣାବଳୀ, ଯାହା ପ୍ରତୀକଟିର ପ୍ରୟୋଗକୁ ନିର୍ଦ୍ଧାରଣ କରିବାରେ ବ୍ୟବହୃତ ହୁଏ; ଅର୍ଥାତ୍ ଏହି ଗୁଣଗୁଡ଼ିକ ହେତୁରୁ ହିଁ କୌଣସି ଏକ ବସ୍ତୁ ତାହାର ବାଚ୍ୟାର୍ଥ ହୋଇଥିବା ବସ୍ତୁସମଷ୍ଟିର ଅନ୍ତର୍ଭୁକ୍ତ ହୁଏ । ଏହି ଗୁଣଗୁଡ଼ିକୁ ପ୍ରତୀକଟିର ଲକ୍ଷଣାର୍ଥ ବୋଲି କୁହାଯାଏ; ବେଳେ ବେଳେ ଏହାକୁ କେବଳ ଅର୍ଥ ବୋଲି ମଧ୍ୟ କୁହାଯାଏ । ବାଚ୍ୟାର୍ଥର ଲକ୍ଷଣାର୍ଥ ସହିତ ସମ୍ବନ୍ଧକୁ ନିମ୍ନୋକ୍ତରୂପେ ସୁବିଧାଜନକ ଭାବେ ସଂକ୍ଷେପରେ ବ୍ୟକ୍ତ କରାଯାଇଛି; ଗୋଟିଏ ଶବ୍ଦର ଲକ୍ଷଣାର୍ଥ ତାହାର ବାଚ୍ୟାର୍ଥକୁ ନିର୍ଦ୍ଧାରଣ କରେ । ପୁଣି ବାଚ୍ୟାର୍ଥ ତାହାର ବ୍ୟାପକାର୍ଥକୁ ନିର୍ଦ୍ଧାରଣ କରେ । ଯେଉଁ ବସ୍ତୁଗୁଡ଼ିକ ପ୍ରତି ଶବ୍ଦଟି ପ୍ରଯୋଜ୍ୟ, ସେଗୁଡ଼ିକର ସାଧାରଣ ଗୁଣ ହେଉଛି ଶବ୍ଦଟିର ବ୍ୟାପକାର୍ଥ । ପ୍ରାୟଶଃ, ବ୍ୟାପକାର୍ଥ ଅର୍ଥରେ ହିଁ ଲକ୍ଷଣାର୍ଥ ପଦଟି ବ୍ୟବହୃତ ହୁଏ ।

ଶବ୍ଦ ଗୁଡ଼ିକ କିପରି ଭାବେ ବ୍ୟବହୃତ ହୁଏ, ସେ ବିଷୟରେ ଯେଉଁମାନେ ବିଚାର କରିଛନ୍ତି, ସେ ସମସ୍ତଙ୍କ ପକ୍ଷରେ ଏହା ସୁପ୍ରତ୍ୟକ୍ଷ ଯେ ଉପର୍ଯ୍ୟୁକ୍ତ ବିବରଣୀଟି

ଅତ୍ୟଧିକ ପରିମାଣରେ କୃତ୍ରିମ । ବାଚ୍ୟାର୍ଥର ସୂଚନା ହେଉ କିମ୍ବା ଲକ୍ଷଣାର୍ଥର ସୂଚନା ହେଉ, ସତେ ଯେପରି ତାହା ଏକ ସରଳ ବା ମୌଳିକ ସମ୍ବନ୍ଧ, ସେହିପରି ଭାବେ ତାହାକୁ ବ୍ୟବହାର କରାଯାଇ ନପାରେ । ପ୍ରଥମେ ବାଚ୍ୟାର୍ଥ ବିଷୟ ବିଚାର କରାଯାଉ । କୌଣସି ଶବ୍ଦ ପ୍ରତୀକାୟିତ କରୁଥିବା କେତେକ ନିର୍ଦ୍ଦେଶ ବ୍ୟତୀତ ତାହାର ଅନ୍ୟ କୌଣସି ବାଚ୍ୟାର୍ଥ ନାହିଁ । ଗୋଟିଏ ଶବ୍ଦ ଏବଂ ତାହା ଯେଉଁ ବସ୍ତୁମାନଙ୍କ ପରିବର୍ତ୍ତେ ବ୍ୟବହୃତ ଏହି ଦୁଇଟିର ସମ୍ବନ୍ଧ ହେଉଛି ଏକ ପରୋକ୍ଷ ସମ୍ବନ୍ଧ (ତୁଳନା କର, ଚିତ୍ର ୧—ପୃ) ଏବଂ ଆମେ ଜୋରଦେଇ କହୁଛୁଁ ଯେ ତାହା ଏକ କାରଣିକ ସମ୍ବନ୍ଧ । ଅଭ୍ରାନ୍ତ ବ୍ୟବହାର ଦ୍ୱାରା ଯେତେବେଳେ ତହିଁରେ ଆମେ ଆହୁରି ଜଟିଳତାର ସଂଯୋଗ କରୁ, ସେତେବେଳେ ଆମେ ଏପରି କୃତ୍ରିମ ଫଳ ପାଉଁ ଯେ 'ବାଚ୍ୟାର୍ଥର ସୂଚନାକୁ' ଏକ ସରଳ ତାର୍କିକ ସମ୍ବନ୍ଧର ନାମରୂପେ ବ୍ୟବହାର କରିବା ହାସ୍ୟାସ୍ପଦ ହୋଇଯାଏ । 'ଲକ୍ଷଣାର୍ଥର ସୂଚନା' କ୍ଷେତ୍ରରେ ଅବସ୍ଥା ଆହୁରି ମନ୍ଦ । ଲକ୍ଷଣାର୍ଥ ହେଉଛି ଗୁଣମାନଙ୍କ ବା ବିଶେଷଣମାନଙ୍କ ଏକ ନିର୍ବାଚିତ ତାଲିକା । କିନ୍ତୁ କୁତ୍ରାପି କେବଳ ଗୁଣରୂପେ ଗୁଣ ଗୁଡ଼ିକ ମିଳେ ନାହିଁ । ସେଗୁଡ଼ିକ ହେଉଛି କାଳ୍ପନିକ ବା ନାମମାତ୍ର ସତ୍ତା । ଆମ ପ୍ରତୀକ ଗୁଡ଼ିକର କେତେକ ଅଂଶକୁ, ସତେ ଯେପରି ତାହା ସ୍ୱୟଂ ସଂପୂର୍ଣ୍ଣ ପ୍ରତୀକ, ସେହିପରି ଭାବେ ବିବେଚନା କରିବା ଦ୍ୱାରା ଆମେ ଦୁଷ୍ଟ ଉପମା ପ୍ରଭାବର ବଶବର୍ତ୍ତୀ ହୋଇ ଏହି ଗୁଣଗୁଡ଼ିକୁ ସତ୍ତା ବୋଲି ଛଳନା କରିବସୁଁ । ଏହି ଦୁଷ୍ଟ ଉପମା ପରିସର ବାହାରେ, ବିଶେଷଣ ଗୁଡ଼ିକୁ ସତେ ଯେପରି ସେଗୁଡ଼ିକ ବିଶେଷ୍ୟ, ସେହିପରି ଭାବେ ଗ୍ରହଣ କରିନେବାର କୌଣସି ଯଥାର୍ଥତା ନାହିଁ । ବାସ୍ତବ ଜଗତରେ, ସତ୍ତାଗୁଡ଼ିକ ହେଉଛି କେବଳ ଗୁଣଧାରୀ ବସ୍ତୁ । ଏଗୁଡ଼ିକ କେବଳ ସାଂକେତିକଭାବେ ଗୁଣ ଓ ବସ୍ତୁରୂପେ ବିଭେଦନୀୟ । ଅବଶ୍ୟ ପ୍ରତୀକାୟିତ-କରଣ ଗୁଣ ଓ ବସ୍ତୁକୁ ସତେ ଯେପରି ସେ ଦୁଇଟି ପୃଥକ୍‌କରଣ ଯୋଗ୍ୟ, ସେହିପରି-ଭାବେ ଧରିନେଇ ଅଗ୍ରସର ହୁଏ । କିନ୍ତୁ ତଦ୍ଦ୍ୱାରା ତାହାର ବାଞ୍ଛନୀୟତା କୌଣସିଭାବେ ଅବସ୍ଥା ବିଶେଷରେ ନ୍ୟୂନ ହୋଇଯାଏ ନାହିଁ । ଯେକୌଣସି ସୁବିଧାଜନକ ପ୍ରତୀକାତ୍ମକ କୌଶଳ ଆପତ୍ତିଜନକ ନୁହେଁ, ଯେ ପର୍ଯ୍ୟନ୍ତ ତାହାକୁ ଆମେ ଏକ କୌଶଳ ବୋଲି ଜାଣୁ ଏବଂ ତାହା ଆମ ଜ୍ଞାନର ବୃଦ୍ଧିକାରକ ବୋଲି ମନେକରୁଁ ନା । ଗୋଟିଏ ସୁବିଧାକୁ ସୂତ୍ରରୂପେ ପରିବର୍ତ୍ତିତ ହେବାକୁ ଦେଇ ଉଇଲିୟର ସାନ୍ତାୟନାଙ୍କ 'ସାର' ତୁଲ୍ୟ ତାହା ଆମପାଇଁ ବିଶ୍ୱର ପ୍ରକୃତି ନିର୍ଣ୍ଣୟ କରୁ ବୋଲି ଛାଡ଼ିଦେବା ଏକ ଅକାରଣ ଚପଳତା । ପକ୍ଷାନ୍ତରେ, ସାମାନ୍ୟଗୁଡ଼ିକୁ ଭାଷାଗତ ଉପକରଣ ହିସାବରେ ଗ୍ରହଣ କରିନେବାରେ କୌଣସି କ୍ଷତି ତ ନାହିଁ, ବରଂ ସେଗୁଡ଼ିକର ଯଥେଷ୍ଟ କାର୍ଯ୍ୟକାରିତା ରହିଛି । ଉଦାହରଣ ସ୍ୱରୂପ, ନିର୍ଦ୍ଦେଶର କାରଣିକ ବା ପ୍ରାସଙ୍ଗିକ ମତବାଦର ବିବୃତି ଦେବାକୁ 'ବୈଶିଷ୍ଟ୍ୟ' ଓ 'ସମ୍ବନ୍ଧ'—ଏହି ପଦ ଦୁଇଟିର ଆମେ ଅବାଧ

ବ୍ୟବହାର କରିଥିଲୁଁ । ସତେ ଯେପରି ଏ ଦୁଇଟି ବାସ୍ତବ ଜଗତର ସ୍ୱାଧୀନ ଓ ସ୍ୱୀକାର୍ଯ୍ୟ ଉପାଦାନ । ଏପ୍ରକାର ପଦ୍ଧତିର ଏକ **ଭାଷାଗତ** ଆବଶ୍ୟକତା ରହିଛି; କିନ୍ତୁ ଏ ପ୍ରକାର ଉପାଦାନର 'ବର୍ତ୍ତିତା' ନିମନ୍ତେ ଏହି ଆବଶ୍ୟକତାକୁ ତାର୍କିକ ଆବଶ୍ୟକତାର ଗୌରବ ଦେବା ହେଉଛି ଜଗତର ପ୍ରକୃତି ସମ୍ବନ୍ଧରେ ବିଭ୍ରାନ୍ତ ହୋଇଯିବା ।

ଏବେ ଲକ୍ଷଣାର୍ଥ ସମ୍ବନ୍ଧୀୟ ଆଲୋଚନାର ଆରମ୍ଭ କରାଯାଉ । ଗୋଟିଏ ଶବ୍ଦର ଲକ୍ଷଣାର୍ଥ ହେଉଛି ନାମପଦବାଚ୍ୟ ପଦାର୍ଥମାନଙ୍କ ଏକ ସମଷ୍ଟି; କିନ୍ତୁ ତଥାପି ଏହା କେଉଁ ପଦାର୍ଥଗୁଡ଼ିକ ସମଷ୍ଟି ହେବା କଥା, ତାହା ଆମକୁ ନିର୍ଦ୍ଧାରଣ କରିବାକୁ ପଡ଼ିବ । ଏଠାରେ ଗୋଟିଏ ପଦ୍ଧତି ହେବ ଭାଷାଗତ ବ୍ୟବହାର ଦ୍ୱାରା ନିର୍ଦ୍ଧାରଣ । ଶ୍ରୀ ଜନସନ୍ କହିଛନ୍ତି, "ଗୋଟିଏ ଶବ୍ଦସମଷ୍ଟିର ଅର୍ଥ କଣ ତାହା ଜାଣିବାକୁ କେବଳ ଭାଷା ବ୍ୟବହାର ରୀତିର ଜ୍ଞାନ ଯଥେଷ୍ଟ ।" ( ଲଜିକ୍ ତର୍କଶାସ୍ତ୍ର ) ଯଥାଯଥ-ଭାବେ ପ୍ରୟୋଗ କଲେ, ଏହି ପଦ୍ଧତି ଅନୁସାରେ ଗୋଟିଏ ଶବ୍ଦର ଲକ୍ଷଣାର୍ଥକୁ ତାହାର ଅର୍ଥଠାରୁ ପୃଥକ୍ କରି ହେବନାହିଁ; ଏବଂ ଏହି ଅର୍ଥର ତାତ୍ପର୍ଯ୍ୟ ହେଉଛି ଯେ ତାହା "ଅଭିଧାନରେ ଗୋଟିଏ ଶବ୍ଦ ସହିତ ସଂଲଗ୍ନ ଅନ୍ୟାନ୍ୟ ଶବ୍ଦ" (ଔପ୍ତ) । କିନ୍ତୁ ଅନ୍ୟ ଏକପଦ୍ଧତି ପ୍ରୟୋଗର ସମ୍ଭବପରତା ମଧ୍ୟ ଏଠାରେ ରହିଛି । ଏହି ପଦ୍ଧତିର ବିଚାର ଲକ୍ଷଣାର୍ଥର ଜଟିଳତାକୁ ଏବଂ ତାର୍କିକ ଉଦ୍ଦେଶ୍ୟରେ ତଦୁପରି ଆରୋପଣୀୟ ଆସ୍ଥାର ସ୍ୱଳ୍ପତାକୁ ଆହୁରି ସ୍ପଷ୍ଟଭାବେ ପ୍ରଦର୍ଶନ କରିଦେବ । ସଂଜ୍ଞା କ୍ଷେତ୍ରରେ ଏହାର ଉଦାହରଣ ରହିଛି । ଉପରେ ଦିଆଯାଇଥିବା ସୂତ୍ରକୁ ଆଂଶିକତଃ ଆମେ ନିମ୍ନୋକ୍ତରୂପେ ଭାଷାନ୍ତରିତ କରିପାରୁଁ; ଗୋଟିଏ ଶବ୍ଦକୁ ପ୍ରୟୋଗ କରୁଥିବା (ଅଥବା ତଦ୍ଦ୍ୱାରା ପ୍ରତୀକାନ୍ୱିତ ହୋଇଥିବା) ନିର୍ଦ୍ଦେଶ ତାହାର ନିର୍ଦ୍ଦେଶ୍ୟ (ଅର୍ଥାତ୍ ବାଚ୍ୟାର୍ଥ)କୁ ନିର୍ଦ୍ଧାରଣ କରେ । ବିପରୀତ ପକ୍ଷେ, ନିର୍ଦ୍ଦେଶ୍ୟ ଦ୍ୱାରା ସେହି କ୍ଷେତ୍ରରେ କି କି ନିର୍ଦ୍ଦେଶ କରାଯାଇପାରେ, ତାହା ନିର୍ଦ୍ଧାରିତ ହୁଏ । ଏଥିରୁ ଜଣାପଡ଼ୁଛି ଯେ ସମପ୍ରକାର ନିର୍ଦ୍ଦେଶକୁ ପ୍ରତୀକାନ୍ୱିତ କରୁଥିବା କ୍ଷେତ୍ରରେ ଦୁଇଟି ପ୍ରତୀକର ଲକ୍ଷଣାର୍ଥ ସମାନ ହେବ । କିନ୍ତୁ ଆମର ନିର୍ଦ୍ଦେଶ ବିବରଣୀରେ ଉଲ୍ଲେଖ ରହିଛି ଯେ କେତେକ ବୈଶିଷ୍ଟ୍ୟ ହେତୁରୁ ହିଁ କେବଳ ଗୋଟିଏ ଦତ୍ତ ପ୍ରଣାଳୀ ବା ନିର୍ଦ୍ଦେଶ କ୍ରିୟା ନିମନ୍ତେ କୌଣସି ବସ୍ତୁ ନିର୍ଦ୍ଦେଶ୍ୟ ହୋଇପାରେ; ଏହି ବୈଶିଷ୍ଟ୍ୟ ମାଧ୍ୟମରେ ତାହା ପ୍ରଣାଳୀର ସଙ୍କେତ ସମେତ ପ୍ରସଙ୍ଗର ଏକ ପରିପୂରକ ଅଂଶ ହୋଇଥାଏ । ସୁତରାଂ ଗୋଟିଏ ନିର୍ଦ୍ଦେଶର (ଏବଂ ତଦନୁକ୍ରମେ ତାହାକୁ ପ୍ରତୀକାନ୍ୱିତ କରୁଥିବା ଶବ୍ଦାବଳୀର) ଲକ୍ଷଣାର୍ଥ ହେଉଛି ନିର୍ଦ୍ଦେଶ୍ୟର ସେହି ବୈଶିଷ୍ଟ୍ୟମାନ, ଯାହା ହେତୁରୁ ହିଁ ନିର୍ଦ୍ଦେଶ୍ୟ ନିର୍ଦ୍ଦିଷ୍ଟ ହୋଇଛି । ଏବେ, ଆମେ ଯଦି ମନେରଖୁ ଯେ ଏହି ବୈଶିଷ୍ଟ୍ୟଗୁଡ଼ିକ ହେଉଛି କେବଳ

ନାମସର୍ବସ୍ୱ ସତ୍ତ୍ୱ, ତେବେ ଆମେ ଦେଖି ପାରିବା ଯେ ଶବ୍ଦମାନଙ୍କ ପ୍ରତି 'ବାଚ୍ୟାର୍ଥ' ଓ 'ଲକ୍ଷଣାର୍ଥ' ପରି ଭୟାନକ ଧରଣର ସଂକ୍ଷିପ୍ତୀକରଣ ପଦ୍ଧତିର ପ୍ରୟୋଗ କରି ତାର୍କିକମାନେ କପରି ଅତି ସହଜରେ ଗୋଟିଏ ବିଷୟକୁ ଉପେକ୍ଷା କରିଯାଇଛନ୍ତି। ଏହି ବିଷୟଟି ହେଉଛି ଅଙ୍କାତସାରରେ ସେମାନେ ଆଲୋଚନା କରୁଥିବା ସମ୍ବନ୍ଧର କାରଣିକ ସ୍ୱଭାବ। ସୁତରାଂ ଏହି ପ୍ରକାର ସଂକ୍ଷିପ୍ତୀକରଣ ପଦ୍ଧତି ଦ୍ୱାରା 'ଫ୍ରାନ୍‌ସର ରାଜା' ପରି ଏକ ଶବ୍ଦସମଷ୍ଟିରେ ବାଚ୍ୟାର୍ଥ ସହିତ ଅର୍ଥରେ ସମ୍ବନ୍ଧ ବୁଝାଇବାକୁ ଚେଷ୍ଟା କରିବା ଯେ ଏକ ଦୁରୂହ ବ୍ୟାପାର ହେବ, ଏଥିରେ ବିସ୍ମିତ ହେବାର କିଛି ନାହିଁ। (୧)

ପ୍ରାଚୀନ ବିବରଣୀର କୃତ୍ରିମତା ଆଜି ଏକ ବିଷୟ ଦ୍ୱାରା କୌତୁକପ୍ରଦଭାବେ ପ୍ରଦର୍ଶିତ ହୋଇଛି। ତାହା ହେଉଛି **ନାମମାନଙ୍କ** କ୍ଷେତ୍ରରେ ଏହାକୁ ପ୍ରୟୋଗ କରିବାର ଅସମ୍ଭାବ୍ୟତା। ନାମଗୁଡ଼ିକ ସର୍ବାଧିକ ସରଳ ପ୍ରତୀକ ଏବଂ ଏଗୁଡ଼ିକରୁ ହିଁ ଆମର ଅନ୍ୟ ସମସ୍ତ ପ୍ରତୀକାତ୍ମକ ଉପକରଣର ଅଭିବୃଦ୍ଧି ଘଟିଛି ବୋଲି ଗ୍ରହଣ କରାଯାଇ ପାରେ; ଏତଦ୍ଦ୍ୱାରା ଆମେ ଅନୁଚିତଭାବେ ଦୁଃସାହସିକ ହେଉ ନାହୁଁ। ମିଲ୍ ସିଦ୍ଧାନ୍ତ ଗ୍ରହଣ କରିଥିଲେ ଯେ ସ୍ୱକୀୟ ନାମଗୁଡ଼ିକ ଅଲକ୍ଷଣାର୍ଥିକ। ଶ୍ରୀ ଜନସନ

---

(୧) Mind (୧୯୦୫) ରେ Russell ଙ୍କ ଲିଖିତ "On Denoting" ଏହାର ଏକ ଦୃଷ୍ଟାନ୍ତ। "ଏହିପରିଭାବେ ମନେ ହେବ, 'C' ଏବଂ C ଏପରି ଭିନ୍ନ ଭିନ୍ନ ସତ୍ତ୍ୱ ଯେ 'C'ର ବାଚ୍ୟାର୍ଥ ରୂପେ C ସୂଚିତ। କିନ୍ତୁ ଏହା ଏକ ବ୍ୟାଖ୍ୟା ହୋଇ ନପାରେ, କାରଣ 'C'ର C ସହିତ ସମ୍ବନ୍ଧ ସମ୍ପୂର୍ଣ୍ଣରୂପେ ରହସ୍ୟାବୃତ! ପୁଣି, ବାଚ୍ୟାର୍ଥର ସୂଚନାକାରୀ ସମଷ୍ଟି 'C'କୁ ଆମେ କେଉଁଠି ପାଇବା, ଯାହା C କୁ ବାଚ୍ୟାର୍ଥରୂପେ ସୂଚିତ କରିବ? ଆହୁରି ମଧ୍ୟ, ଯେତେବେଳେ ଗୋଟିଏ ପ୍ରତିଜ୍ଞପ୍ତିରେ C ଥାଏ, ତହିଁରେ କେବଳ ବାଚ୍ୟାର୍ଥ ରହି ନଥାଏ; ତଥାପି ଆଲୋଚିତ ମତାନୁସାରେ C ହେଉଛି କେବଳ ବାଚ୍ୟାର୍ଥ ଏବଂ ଅର୍ଥ ସମ୍ପୂର୍ଣ୍ଣତଃ 'C' ରେ ହିଁ ନ୍ୟସ୍ତ। ଏହା ଏକ ଅମୋଚନୀୟ ଗଣ୍ଠି। ଏଥିରୁ ପ୍ରମାଣିତ ହେଲପରି ମନେ ହେଉଛି ଯେ ଅର୍ଥ ଓ ବାଚ୍ୟାର୍ଥର ସମସ୍ତ ପାର୍ଥକ୍ୟ ଭ୍ରାନ୍ତଭାବେ କଳ୍ପିତ ହୋଇଛି।" କିନ୍ତୁ ଏହି ପରିସ୍ଥିତିରୁ ରକ୍ଷା ପାଇବାକୁ ପରିକଳ୍ପିତ ନୂତନ ଧାରଣାଗୁଡ଼ିକ ଅଧିକ ଜଟିଳତା ଆଡ଼କୁ ହିଁ କେବଳ କଢ଼ାଇ ନେଇଛି, ଏବଂ ତାର୍କିକମାନେ ପୁଣି ଥରେ ତାହାର ବିମୋଚନ ପ୍ରୟାସରେ ନିୟୋଜିତ ରହିଛନ୍ତି।

(ଏବଂ ଅନ୍ୟ ସମସ୍ତ ଶ୍ରେଷ୍ଠ ତର୍କବିଦ୍ ) ଏ ବିଷୟରେ ମିଲ୍‌ଙ୍କ ସହିତ ଏକମତ, କିନ୍ତୁ ତାଙ୍କ ନିଜ ମତରେ ଏକ ସ୍ୱାତନ୍ତ୍ର୍ୟ ରହିଛି । (୧)

"ଏତଦ୍ଦ୍ୱାରା ବୁଝାଯାଉ ନାହିଁ ଯେ ସ୍ୱକୀୟ ନାମ ହେଉଛି ତାତ୍ପର୍ଯ୍ୟ ରହିତ ଅଥବା ଅର୍ଥହୀନ । ଆମେ ବରଂ ଦେଖୁ ଯେ ନେତିମୂଳକ ଭାବେ, ସ୍ୱକୀୟ ନାମ ଦ୍ୱାରା, ବର୍ଣ୍ଣନାତ୍ମକ ବା ଲକ୍ଷଣାର୍ଥକ ଅଭିବ୍ୟକ୍ତି ଦ୍ୱାରା କରାଯାଇ ପାରୁଥିବା ଅର୍ଥ କରାଯାଇ-ପାରେନା; ପୁଣି ଅସ୍ତିମୂଳକଭାବେ, ସ୍ୱକୀୟ ନାମର ଅର୍ଥ ଠିକ୍ ତାହାହିଁ, ଯାହା କେତେକ ଯଥାଯଥ ବର୍ଣ୍ଣନାତ୍ମକ ଅଭିବ୍ୟକ୍ତି ଦ୍ୱାରା ସୂଚିତ ।" ଏହିପରି ଆହୁରି ଅଧିକ ଗୁରୁତ୍ୱ (୨) ପ୍ରଦର୍ଶନ ଆବଶ୍ୟକ, କିନ୍ତୁ ଏତଦ୍ଦ୍ୱାରା କେବଳ ଏତିକି ସାର ହୁଏ ଯେ 'ଅର୍ଥ'କୁ ଏକ ଉପାଦେୟ ପ୍ରତୀକ ରୂପେ ଆଉ ବ୍ୟବହାର କରାଯାଇ ପାରେନା ।

ତଦନୁଭୂତିବାଦୀ, କୋଚେବାଦୀ ଓ ଅହଂମାତ୍ରବାଦୀଙ୍କ ଅର୍ଥ ସଂଜ୍ଞା ଯଥାର୍ଥ ମନେ ହେଉଥିଲେ ହେଁ ସର୍ବାଧିକ ବଦାନ୍ୟତା ସହକାରେ ଏହାକୁ ଏକ ଉପମା ବୋଲି ବିବେଚନା କରାଯାଏ । ଏହି ଦୃଷ୍ଟିରୁ, ୧୩ଶ ସଂଜ୍ଞା ସହିତ ନିବିଡ଼ଭାବେ ସାଦୃଶ୍ୟ ରହିଥିବା ମତମାନଙ୍କ ଏହା ହେଉଛି ଏକ ବିଚିତ୍ର ଓ ଚିତ୍ରାକର୍ଷକ ଧରଣର ଅଭିବ୍ୟକ୍ତି । ଓଲ୍ଡର ଶିଲର ଯେପରିଭାବେ ଏହାକୁ ବ୍ୟକ୍ତ କରିଛନ୍ତି, ତାହା ନିମ୍ନରୂପ; "ଅର୍ଥ ହେଉଛି ବସ୍ତୁଗୁଡ଼ିକ ପ୍ରତି ସମ୍ପାଦିତ ଏକ କ୍ରିୟା ଏବଂ ଏହା ଏକ ଅଣ୍ଡିରୁଲ୍ ସେଗୁଡ଼ିକର ଅଭ୍ୟନ୍ତରକୁ ଶକ୍ତିସମନ୍ୱିତ ହୋଇ ପ୍ରକ୍ଷିପ୍ତ ।" ସୁତରାଂ କାରଣିକତାର ବିରୋଧ କରୁଥିଲେ ସୁଦ୍ଧା ସେ ଯେ ପ୍ରକୃତରେ ତତ୍ତ୍ୱ ସହିତ ଏକମତ, ଏହା ତାଙ୍କର ଉପର୍ଯ୍ୟୁକ୍ତ ଉକ୍ତିଦ୍ୱାରା ଅସ୍ପଷ୍ଟ ହୋଇଯାଏ । ଏହାର କାରଣ ସ୍ୱରୂପ ଦର୍ଶାଇ ଦିଆଯାଇ ପାରେ ଯେ ସେ ଯେତେବେଳେ "ଆମ ଅନୁଭୂତି ଉପରେ ଆମେ କରୁଥିବା ଦାବୀ"କୁ ଅବଧାନର ବସ୍ତୁ ନିର୍ବାଚନ' ବୋଲି କହନ୍ତି, ସେତେବେଳେ ଯେଉଁ ପ୍ରଣାଳୀଗୁଡ଼ିକୁ ସ୍ୱୀକାର କରିବାକୁ ସେ ଏତେ ଅନିଚ୍ଛୁକ, ସେଗୁଡ଼ିକୁ ପୁଣି ସେ ସନ୍ନିଧ୍ୟତାବାଦୀ ଭାଷାରେ ବର୍ଣ୍ଣନା

(୧) Logic, ୧ମ ଖଣ୍ଡ, ୧୯୨୧, ପୃ ୯୭ ।

(୨) 'ସାହସ' ଶବ୍ଦଟି ବା 'ବିପଦଠାରୁ ଦୂରେଇ ନଯିବା' ଅଭିବ୍ୟକ୍ତିଟି ଏପରି ସ୍ୱଭାବର ଯେ ଏହାର ଅର୍ଥ ଏବଂ ଏହାର ସୂଚନା ବା ବାଚ୍ୟାର୍ଥ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । [ଇଂରାଜୀ ଭାଷାର] article କିମ୍ବା ତଦ୍ରୂପ ପଦସଂଯୁକ୍ତ ଅଭିବ୍ୟକ୍ତି କ୍ଷେତ୍ରରେ ହିଁ କେବଳ ଅର୍ଥ ଏବଂ ସୂଚନାର ପାର୍ଥକ୍ୟ ପ୍ରଶ୍ନ ଉଠେ ।"—କଥିତ ଗ୍ରନ୍ଥ, ପୃ ୯୨ ।

କରୁଥିଲେ ପରି ମନେହୁଏ ( ତୁଳନାକର, ପରବର୍ତ୍ତୀ ୧୩୩ (କ) ) । 'ଚିହ୍ନ' ଓ 'ପ୍ରଣାଳୀ'କୁ ଦୁଇଟି ମୌଳିକ ମନସ୍ତାତ୍ତ୍ୱିକ ପଦରୂପେ ଗ୍ରହଣ କରି ତଦବିଷୟକ ତ୍ରିବାଦର ଅବତାରଣା ସୁପ୍ରତ୍ୟକ୍ଷରୂପେ ଅର୍ଥ-ସମସ୍ୟାର ଏକ ପୂର୍ଣ୍ଣାଙ୍ଗ ଆଲୋଚନାର ପରବର୍ତ୍ତୀ । ଏଥିରେ ଅଂଶ ଗ୍ରହଣ କରି ଅଧ୍ୟାପକ ଷ୍ଟାଉଟ୍ ଦେଇଥିବା ମତରୁ (୧) ମଧ୍ୟ ସୂଚିତ ଯେ ଏକ ସାଧାରଣ ବିବାଦମାନ ପରିସ୍ଥିତିର ଏକ ଦୃଷ୍ଟାନ୍ତରେ ସମ୍ଭବତଃ ଆମେ ଏଠାରେ ଉପନୀତ ହୋଇଛୁ । ତାହା ହେଉଛି ବହୁପରିମାଣରେ ରୂପାନ୍ତରୀକରଣ-ଯୋଗ୍ୟ; କିନ୍ତୁ ଭିନ୍ନ ଭିନ୍ନ ପ୍ରତୀକତନ୍ତ୍ରରୁ ସଂଗୃହୀତ ପ୍ରତୀକମାନଙ୍କ ହେତୁ ଏକ ନିର୍ଦ୍ଦେଶ୍ୟ ପାଇଁ ବ୍ୟବହାର ।

ଆମେ ଏଥର ୭ମ ସଂଜ୍ଞାର ବିଚାର କରିବା । [ଇଂରାଜୀ ଭାଷାର] ନିମ୍ନପ୍ରକାର ମନ୍ତବ୍ୟମାନଙ୍କ ଅଧ୍ୟୟନରୁ ଏହାର ସୃଷ୍ଟି ।

They meant no harm,

He means well,

I meant to go.

What I meant was what I said.

A mechanistic universe is without meaning.

ଏହି ଅଭିବ୍ୟକ୍ତି ଗୁଡ଼ିକର ବ୍ୟବହାର କାଳରେ ସାଧାରଣତଃ ଆମେ 'mean' [ଅର୍ଥ କରିବା] ପରିବର୍ତ୍ତେ 'intend' [ଅଭିପ୍ରାୟ ରଖିବା] ଶବ୍ଦକୁ ପ୍ରତିସ୍ଥାପନ କରିପାରୁଁ । ଏଥିରୁ ସ୍ପଷ୍ଟ ହେଉଛି ଯେ, ଯେଉଁ କ୍ଷେତ୍ରରେ ଅର୍ଥ ପରିବର୍ତ୍ତେ

---

(୧) ସଂବେଦନବାଦୀ-ବ୍ୟବହାରବାଦୀ ମତବାଦକୁ ସଂପ୍ରସାରଣ କରିବା ଆବଶ୍ୟକ ମନେହୁଏ । ଏହି ମତାନୁସାରେ ସ୍ୱୀକାର କରିବାକୁ ହେବ ଯେ ସଂବେଦନାତ୍ମକ ଧ୍ୱନିଠାରୁ ଅର୍ଥରୂପେ ଧ୍ୱନି ପୃଥକ୍ ; ପୁଣି ଏହି ଦୁଇଟିଠାରୁ ଅଭିପ୍ରେତ ବସ୍ତୁ ଭିନ୍ନ । ଏହି ବସ୍ତୁର ଅସ୍ତିତ୍ୱ ବିନା ଏହି ଅର୍ଥର କୌଣସି ଅର୍ଥ ରହିବ ନାହିଁ— Mind, ଜୁଲାଇ, ୧୯୨୧ ।

ଅଭିପ୍ରାୟ ପ୍ରତିଷ୍ଠାପନ କରାଯାଇ ନପାରେ, ସେହି କ୍ଷେତ୍ରରେ ସଂଶ୍ଲିଷ୍ଟ ଅର୍ଥଠାରୁ ଏଠାରେ ଏକ ସଂପୂର୍ଣ୍ଣ ଭିନ୍ନ ଧରଣର ଅର୍ଥ ସଂଶ୍ଲିଷ୍ଟ । (୧)

ମୋର 'ଅର୍ଥ' ବା 'ଅଭିପ୍ରାୟ' ହେଉଛି, ଯାହାର ଅଗ୍ରଗତି ନିମନ୍ତେ ମୁଁ ପ୍ରୟାସ କରୁଛି; ସୁତରାଂ ଏହା ଏକ ଈପ୍ସିତ ବିଷୟ; ( କେତେକ ଆମେରିକୀୟ ଲେଖକଙ୍କ ପଦବ୍ୟବହାର ରୀତିରେ ଏହା intended [ ଅଭିପ୍ରେତ ] ବା tended towards [ ଆଡ଼କୁ ନମିତ ] । ଏହା କୌଣସି ଜ୍ଞାତ ବା ନିର୍ଦ୍ଦେଶିତ ବିଷୟଠାରୁ ପୃଥକ୍ । ଏହି ଦୃଷ୍ଟିଭଙ୍ଗୀ ଏବଂ ଅନ୍ୟ ଏକ ଦୃଷ୍ଟିଭଙ୍ଗୀ, ଅର୍ଥାତ୍ ଯେଉଁ ଦୃଷ୍ଟିଭଙ୍ଗୀ " 'ଶ୍ୱାନ' ଓ 'କୁକୁର' ଉଭୟର ଅର୍ଥ ଏକ"—ଏହି ବାକ୍ୟରେ ନିହିତ, ଏହି ଦୁଇଟି ମଧ୍ୟରେ କୌଣସି ବିରୁଦ୍ଧତା ନାହିଁ । କିନ୍ତୁ ଏକ ଶ୍ଳେଷବାକ୍ୟ ରହିଛି ଏବଂ ଆଲୋଚନାର

---

(୧) ଭାଷାତାତ୍ତ୍ୱିକ ଆକସ୍ମିକତାକୁ ଦର୍ଶାଇ ତାର୍କିକମାନେ ସମୟ ସମୟରେ ଏହି ବିଷୟକୁ ଅଗ୍ରାହ୍ୟ କରିଥାନ୍ତି । ଉଦାହରଣ ସ୍ୱରୂପ, Joseph, Introduction to Logic, ପୃ ୧୩୧ ରେ କହିଛନ୍ତି, "କୌଣସି ପଦଦ୍ୱାରା ଆମେ ଯାହା ଅଭିପ୍ରାୟ ରଖିଥାଉଁ [intend] ବା ଅର୍ଥ କରିଥାଉଁ, ତାହାର ସୂଚନା Intension [ଗୁଣାର୍ଥ] ସ୍ୱଭାବତଃ ଦେଇଥାଏ ।"

ଦାର୍ଶନିକ ତଥା ଅନ୍ୟମାନଙ୍କୁ ଅର୍ଥର ଅର୍ଥରେ ଅବଧାନ କେନ୍ଦ୍ରୀଭୂତ କରିବା ନିମନ୍ତେ Lady Welby କୋଡ଼ିଏ ବର୍ଷକାଳ ଓଜସ୍ୱିନୀ ଭାଷାରେ ଉଦ୍‌ବୋଧନ ଦେଇଥିଲେ । ବିଶେଷତଃ ତାଙ୍କର 'ବୋଧ, ଅର୍ଥ ଓ ବ୍ୟାଖ୍ୟା' ସମ୍ବନ୍ଧୀୟ ନିବନ୍ଧ-ଗୁଡ଼ିକରେ କରାଯାଇଛି । ଏହି ନିବନ୍ଧ ଗୁଡ଼ିକର ଉଲ୍ଲେଖ ଆଗରୁ ଆମେ କରିଛୁ (Mind, ୧୮୯୬, ପୃ ୧୮୬ ଇତ୍ୟାଦି) ।

ମାନସୀୟ ଅଭିପ୍ରାୟ ରୂପେ ଅର୍ଥ ଉପରେ ଅନିଶ୍ଚିତଭାବେ ପ୍ରାଧାନ୍ୟ ଅର୍ପଣ କରି ନିଜକୁ ସନ୍ତୁଷ୍ଟ ରଖିବା ଦ୍ୱାରା Lady Welby ହୁଏତ ପାଠକଙ୍କ ଦୃଢ଼ ବିଶ୍ୱାସ ଜାତ କରାଇବାରେ ଅକୃତକାର୍ଯ୍ୟ ହୋଇଛନ୍ତି । କିନ୍ତୁ ଏହି କ୍ଷେତ୍ରରେ ପ୍ରୟୋଜନୀୟ ପାର୍ଥକ୍ୟ ଗୁଡ଼ିକ ସର୍ବଦା ଏପରି ନୁହେଁ ଯେ ଯାହା କେବଳ ଏକ ମାର୍ଜିତ ଭାଷାତ୍ମକ ଅବବୋଧ ଦ୍ୱାରା ଲାଭ କରିବା ସମ୍ଭବପର । ଏଠାରେ ଆବଶ୍ୟକ ହେଉଥିବା ବିଶ୍ଳେଷଣ ତାଙ୍କର What is Meaning ? ପୁସ୍ତକରେ କିମ୍ବା ପରବର୍ତ୍ତୀ Significs and Language ( ୧୯୧୧ ) ପୁସ୍ତକରେ କରାଯାଇ ନାହିଁ । ବରଞ୍ଚ ବିବାଦୀୟ ପ୍ରଶ୍ନଟି ଏକ ପୂର୍ବବର୍ତ୍ତୀ ଧର୍ମମୂଳକ ଅବସ୍ଥାର ଭାଷା ଶୈଳୀର ପ୍ରତିଧ୍ୱନି ଦ୍ୱାରା ଆବୃତ

ଅଂଶୀଦାରମାନେ ନିର୍ଦ୍ଦେଶର ଦୃଷ୍ଟିଭଙ୍ଗୀକୁ ଅଭିପ୍ରାୟର ଦୃଷ୍ଟିଭଙ୍ଗୀ ସହିତ ସଂଯୋଗ କରି ତାହାକୁ ଉପସ୍ଥାପନ କରିବାରେ ଅଭ୍ୟସ୍ତ । "What I meant was"—ଶବ୍ଦ ସମଷ୍ଟିରେ ଏହି ଦୁଇଟି ଦୃଷ୍ଟିଭଙ୍ଗୀ ସମନ୍ୱିତ । ( ଏହା="ମୁଁ ଯାହା ନିର୍ଦ୍ଦେଶ କରିବାକୁ ଅଭିପ୍ରାୟ ରଖିଥିଲି ତାହା" ଅଥବା "ତୁମେ ଯାହା ନିର୍ଦ୍ଦେଶ କର ବୋଲି ମୁଁ ଅଭିପ୍ରାୟ ରଖିଥିଲି ତାହା" । ) ଏହା ଗଣ୍ଡଗୋଳର ଏକ ବିପଜ୍ଜନକ ଉତ୍ସ । ଆଲୋଚ୍ୟ ବିଷୟବସ୍ତୁର ଏକ ପୁଙ୍ଖାନୁପୁଙ୍ଖ ପରୀକ୍ଷା କରିବାର ଅସୁବିଧା ଆଉ ଏକ କାରଣରୁ ବହୁ ପରିମାଣରେ ବୃଦ୍ଧିପ୍ରାପ୍ତ ହୋଇଥାଏ । କାରଣଟି ହେଉଛି, ଯାହା ମୁଁ ନିର୍ଦ୍ଦେଶ କରିବାକୁ ଅଭିପ୍ରାୟ ରଖିଥିଲି, ତାହାଠାରୁ ଯାହା ମୁଁ ପ୍ରକୃତରେ ନିର୍ଦ୍ଦେଶ କରିଥିଲି, ତାହା ସମ୍ପୂର୍ଣ୍ଣ ଭିନ୍ନ ହୋଇପାରେ । ଯଦି ପାରସ୍ପରିକ ବୁଝାମଣା ଓ ଘଟଣାକ୍ରମେ ମତୈକ୍ୟ ବା ମତପାର୍ଥକ୍ୟରେ ଉପନୀତ ହେବାକୁ ଆଶା କରାଯାଏ, ତେବେ ଉପର୍ଯ୍ୟୁକ୍ତ ପାର୍ଥକ୍ୟଟିକୁ ସ୍ମରଣରେ ରଖିବା ଗୁରୁତ୍ୱପୂର୍ଣ୍ଣ ।

କେତେକ ବିଶିଷ୍ଟ ଉଦ୍ଦେଶ୍ୟରେ ଅର୍ଥର ଜଟିଳ ସଂଜ୍ଞା ଯୋଗାଇବା ନିମନ୍ତେ ନିର୍ଦ୍ଦେଶ ସହିତ ବକ୍ତାର ଅଭିପ୍ରାୟକୁ ସଂଯୋଗ କରି ବ୍ୟବହାର କରିବା ଅତି ସ୍ୱାଭାବିକ ହୋଇପାରେ । ଏକ ଆଧୁନିକ ନିବନ୍ଧରୁ ନିମ୍ନୋକ୍ତ ଉଦ୍ଧୃତି ଏଠାରେ ଦିଆଯାଇପାରେ । "ଗୋଟିଏ ବାକ୍ୟର ଅର୍ଥ ବକ୍ତା ତାହାକୁ କହିବା ମୁହୂର୍ତ୍ତରେ ଯାହା ବକ୍ତା ମନରେ ଥାଏ, ତାହା କି ଶ୍ରୋତା ତାହାକୁ ଶୁଣିବା ମୁହୂର୍ତ୍ତରେ ଯାହା ଶ୍ରୋତା ମନରେ ଥାଏ, ତାହା ? ମୁଁ ଭାବୁଛି, ଏ ଦୁଇଟିରୁ କୌଣସିଟି ବାକ୍ୟର ଅର୍ଥ ନୁହେଁ । ଯାହା ଶ୍ରୋତା ମନରେ ଥାଏ, ତାହା ନିଶ୍ଚିତ ଭାବେ ବାକ୍ୟର ଅର୍ଥ ନୁହେଁ, କାରଣ ସେ ବକ୍ତାର ଉଦ୍ଦେଶ୍ୟକୁ ସମ୍ପୂର୍ଣ୍ଣ ଭ୍ରାନ୍ତଭାବେ ଅର୍ଥ କରି ଥାଇପାରେ । କିନ୍ତୁ ଯାହା ବକ୍ତା ମନରେ ଥାଏ, ତାହା ମଧ୍ୟ ତାହାର ଅର୍ଥ ନୁହେଁ, କାରଣ ତାହାର ମସ୍ତିଷ୍କରେ ଥିବା ଚିନ୍ତାକୁ ସେ ଇଚ୍ଛା କରି ତାହାର ଉକ୍ତିରେ ଯୋଡ଼ାଇ ଦେଇପାରେ । ଅବଶ୍ୟ ସେ ଏହା କରିପାରନ୍ତା ନାହିଁ, ଯଦି ତାହାର ଉକ୍ତିର ଅର୍ଥ ତାହାର ମସ୍ତିଷ୍କରେ ଯାହା ରହିଛି,

---

ଅଧିକ ବିଭ୍ରାନ୍ତିକର ହୋଇ ଯାଇଛି । Significs and Language ରେ ନିମ୍ନୋକ୍ତ ଉଦ୍ଧୃତି ରହିଛି ( ପୃ ୯ ) ।

"ସମସ୍ତ ଅଭିବ୍ୟକ୍ତିରେ ଏକମାତ୍ର ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହେଉଛି ପ୍ରଥମତଃ ତାହା ଯେଉଁ ଦୃଷ୍ଟିକୋଣରୁ ବ୍ୟବହୃତ, ତତ୍ ସମ୍ବନ୍ଧୀୟ ଏବଂ ତତ୍ପରେ ବ୍ୟବହାରକାରୀର ଅଭିପ୍ରାୟ ରୂପେ ଅର୍ଥ ସମ୍ବନ୍ଧୀୟ ବିଶିଷ୍ଟ ଗୁଣମୂଳକ । କିନ୍ତୁ ଏଠାରେ ସର୍ବାପେକ୍ଷା ଅଧିକ ସୁଦୂର ପ୍ରସାରୀ ତଥା ଅତ୍ୟାବଶ୍ୟକ ପ୍ରଶ୍ନ ହେଉଛି ନିହିତାର୍ଥ ସମ୍ବନ୍ଧୀୟ ବା ଚରମ ତାତ୍ପର୍ଯ୍ୟ ସମ୍ବନ୍ଧୀୟ ବିଶିଷ୍ଟଗୁଣ ମୂଳକ ।"

ଠିକ୍ ତାହାହିଁ ହୋଇଥାନ୍ତା । ମୁଁ ଭାବୁଛି, ଏହି କ୍ଷେତ୍ରରେ ନିମ୍ନଲିଖିତ ଭାବେ ସୂତ୍ରବଦ୍ଧ-କରଣ ଯଥୋପଯୁକ୍ତ ହେବ । **ଯେ କୌଣସି ବାକ୍ୟର ଅର୍ଥ ହେଉଛି, ତହିଁରୁ ଯାହା ଶ୍ରୋତା ବୁଝୁ ବୋଲି ବକ୍ତା ଅଭିପ୍ରାୟ ରଖେ ।"** (୧)

'ବୁଝୁ' ଏଠାରେ ହେଉଛି ଏକ ସଂକୋଚନ । ଏହା ନିମ୍ନଲିଖିତ ବିଷୟ ପରିବର୍ତ୍ତେ ବ୍ୟବହୃତ; (କ) କୁ ନିର୍ଦ୍ଦେଶିତ ହେବା+(ଖ) ଦ୍ୱାରା ଉତ୍ତର ଦେବା+(ଗ) ନିର୍ଦ୍ଦେଶ୍ୟ ପ୍ରତି ଭାବ ପୋଷଣ କରିବା+(ଘ) ବକ୍ତା ପ୍ରତି ଭାବ ପୋଷଣ କରିବା+(ଙ) ଧାରଣା କରିବା ଯେ ବକ୍ତା ତାହାକୁ ନିର୍ଦ୍ଦେଶ କରୁଛି+(ଚ) ବକ୍ତା ତାହା ଇଚ୍ଛା କରୁଛି ଇତ୍ୟାଦି, ଇତ୍ୟାଦି ।

ଏହି ବିଷୟରେ ସନ୍ତୋଷଜନକ ବୋଲି ସାଧାରଣତଃ ଚିନ୍ତା କରାଯାଉଥିବା ପଦ ଗୁଡ଼ିକ ମଧ୍ୟରୁ ଅଧିକାଂଶ ଯେ କେତେ ଅସ୍ପଷ୍ଟ, ତାହା ପ୍ରଦର୍ଶନ କରିବାକୁ ଏହି ଜଟିଳତା ଗୁଡ଼ିକର ଉଲ୍ଲେଖ ଏଠାରେ କରାଯାଇଛି । 'ବୁଝିବା' ପରି ଗୋଟିଏ ଶବ୍ଦକୁ ତତ୍କାଳ-କାର୍ଯ୍ୟ-ସାଧକ ଏକ ଶବ୍ଦରୂପେ ବ୍ୟବହାର କରାଯାଇ ପାରେ, ଅଥବା ଯେଉଁଠାରେ ବିଷୟଟିକୁ ବାସ୍ତବରେ (ନିର୍ଦ୍ଦେଶ ଅର୍ଥରେ) ବୁଝିବା ସମ୍ଭବପର ନୁହେଁ, ସେହି ପ୍ରକାର ଆଲୋଚନା କ୍ଷେତ୍ରରେ ବ୍ୟବହାର କରାଯାଇପାରେ । ଏତଦ୍‌ବ୍ୟତୀତ ଅନ୍ୟତ୍ର, ବିଶେଷ ଧ୍ୟାନ ଦିଆଯାଇ ନଥିଲେ, ଏହା କାର୍ଯ୍ୟକାରୀ ହେବା ନିମନ୍ତେ ନିତାନ୍ତ ଅନିର୍ଦ୍ଦିଷ୍ଟ ସ୍ୱଭାବ ବିଶିଷ୍ଟ । ବଚନର ବହୁବିଧ କାର୍ଯ୍ୟ ପରବର୍ତ୍ତୀ ପରିଚ୍ଛେଦରେ ବର୍ଗୀକୃତ ଓ ଆଲୋଚିତ ହେବ । ସେଠାରେ ଦେଖାଯିବ ଯେ ଭାଷାର ପାଞ୍ଚୋଟି ନିୟମିତ କାର୍ଯ୍ୟ ମଧ୍ୟରୁ ବକ୍ତା-ଅଭିପ୍ରାୟର ଅଭିବ୍ୟକ୍ତି ହେଉଛି ଗୋଟିଏ । ଏଥିରେ ଅଯଥା ପ୍ରାଧାନ୍ୟ ଅର୍ପଣ ଅନୁଚିତ । ଆହୁରି ମଧ୍ୟ ସ୍ମରଣରେ ରଖିବା ଉଚିତ ଯେ ଅନ୍ୟାନ୍ୟ କାର୍ଯ୍ୟକ୍ଷେତ୍ରରେ ଯେପରି, ସେହିପରି ଏଠାରେ ମଧ୍ୟ ଭିନ୍ନ ଭିନ୍ନ ବ୍ୟକ୍ତି ପକ୍ଷରେ ତଥା ଭିନ୍ନ ଭିନ୍ନ ପରିସ୍ଥିତିରେ ଏହାର ଗୁରୁତ୍ୱ ବହୁପରିମାଣରେ ପରିବର୍ତ୍ତନ ସାପେକ୍ଷ ।

ଅର୍ଥ ସମସ୍ୟାର ଏକ ଆନ୍ତରିକ ସମାଧାନ ପ୍ରୟାସ ନିମନ୍ତେ ସ୍ୱାଭାବିକ ଭାଷା-ବିନ୍ୟାସର ବିବିଧତା ହୃଦୟଙ୍ଗମ କରିବା ନିତାନ୍ତ ପ୍ରୟୋଜନ । ଏଠାରେ ସୂଚିତ କରିଦେବା ଅବଶ୍ୟ ବାଞ୍ଛନୀୟ ଯେ 'ଶ୍ରୋତା ଯାହାକୁ ନିର୍ଦ୍ଦେଶ କରୁ ବୋଲି ବକ୍ତା ଅଭିପ୍ରାୟ ରଖେ' ହେଉଛି ତାତ୍ପର୍ଯ୍ୟବିଶିଷ୍ଟ 'ଅର୍ଥ' ଏବଂ 'ଶ୍ରୋତା ଯାହାକୁ ଅନୁଭବ କରୁ ଓ କାର୍ଯ୍ୟକାରୀ କରୁ ବୋଲି ବକ୍ତା ଅଭିପ୍ରାୟ ରଖେ' ହେଉଛି ତାତ୍ପର୍ଯ୍ୟବିଶିଷ୍ଟ ଅର୍ଥ

(୧) A. Gardiner, British Journal of Psychology ଖଣ୍ଡ ୧୨, ଭାଗ-୨, ୧୯୨୨, ପୃ ୩୬୧ ।

ଏହି ଦୁଇଟି ଙ୍ପଷ୍ଟତଃ ପୃଥକ୍‌କରଣ ଯୋଗ୍ୟ । ଅଧିକ ପରିମାଣରେ ସୂକ୍ଷ୍ମ ବଚନ ପରିସ୍ଥିତିମାନଙ୍କ ବହୁକ୍ଷେତ୍ରରେ ଏହି ପାର୍ଥକ୍ୟ ସ୍ୱୀକୃତ ଓ ବ୍ୟବହୃତ ହେବା ଆବଶ୍ୟକ ।

ଆମର ପ୍ରଥମ ପରିଚ୍ଛେଦରେ ଭ୍ରାନ୍ତ ପରିଚାଳନାର କେତେକ କ୍ଷେତ୍ର ଅତ୍ୟନ୍ତ ସାର୍ବଜନୀନ ହୋଇଥିବାର ଲକ୍ଷ୍ୟ କରାଯାଇଥିଲା । ସେହି କ୍ଷେତ୍ରଗୁଡ଼ିକ ସହିତ ଉପର୍ଯ୍ୟୁକ୍ତ ଅର୍ଥ ଦୁଇଟିରୁ ପ୍ରଥମଟି ବିଶେଷଭାବେ ସଂପୃକ୍ତ । ସଫଳ ମିଥ୍ୟା କଥନ କ୍ଷେତ୍ରରେ, ପ୍ରବଞ୍ଚିତ ଯେଉଁପରି ଭାବେ ନିର୍ଦ୍ଦେଶ କରୁ ବୋଲି ପ୍ରବଞ୍ଚକ ଅଭିପ୍ରାୟ ରଖିଥାଏ, ତଦ୍ରୂପଭାବେ ପ୍ରବଞ୍ଚିତ ନିର୍ଦ୍ଦେଶ କରେ । ଆମେ ଯଦି ଏଠାରେ ଅର୍ଥର ସଂଜ୍ଞା ସ୍ୱରୂପ କହିଁ ଯେ 'ଯାହା ଶ୍ରୋତା ନିର୍ଦ୍ଦେଶ କରୁ ବୋଲି ବକ୍ତା ଅଭିପ୍ରାୟ ରଖେ,' ତେବେ ପ୍ରବଞ୍ଚିତ ବକ୍ତାକୁ ଯଥାର୍ଥ ଭାବେ ବ୍ୟାଖ୍ୟା କରିଥିବ । ସେ ତାହାର ଅର୍ଥକୁ ଧରିପାରିଥିବ । କିନ୍ତୁ ଏକ ଅଧିକ ତୀକ୍ଷ୍ଣବୁଦ୍ଧି ବ୍ୟାଖ୍ୟାକାର ବିଷୟ ବିଚାର କରାଯାଉ । ଏହି ବ୍ୟାଖ୍ୟାକାର ଆହୁରି ଏକ ବ୍ୟାଖ୍ୟା ପଦ୍ଧତି (ଧରିନିଅ, ବ୍ୟାବସାୟିକ ପଦ୍ଧତିମାନଙ୍କ ସ୍ୱୀସୃଙ୍କନ ଉପରେ ଆଧାରିତ) ପ୍ରୟୋଗ କରି ଅଭିପ୍ରେତ ନିର୍ଦ୍ଦେଶ୍ୟକୁ ପରିତ୍ୟାଗ କରିଦିଏ, କିମ୍ବା ଅଭିପ୍ରେତ ନିର୍ଦ୍ଦେଶଠାରୁ ଅନ୍ୟ ଏକ ସମ୍ପୂର୍ଣ୍ଣ ଭିନ୍ନ ନିର୍ଦ୍ଦେଶ୍ୟରେ ଉପନୀତ ହୁଏ । ଏହି ଶେଷୋକ୍ତ କ୍ଷେତ୍ରରେ ଯେଉଁ ନିର୍ଦ୍ଦେଶରୁ ତାହାକୁ ଭ୍ରାନ୍ତିପଥରେ ପରିଚାଳିତ କରିବା ନିମନ୍ତେ ପ୍ରସ୍ତାବିତ ମିଥ୍ୟା ନିର୍ଦ୍ଦେଶଟି ପରିକଳ୍ପିତ ହୋଇଥିଲା, ତାହାକୁ ଦେବାକୁ ଯଦି ସେ ଜାଣି ପାରିଥାଏ, ତେବେ ପ୍ରାୟଶଃ କୁହାଯିବ ଯେ ସେ ବକ୍ତାକୁ ବୁଝି ପାରିଛି ବା ବକ୍ତାର 'ଠିକ୍ ଅର୍ଥ'କୁ ଅନୁମାନ କରି ନେଇଛି । ଏଠାରେ ଲକ୍ଷ୍ୟଯୋଗ୍ୟ ଯେ ଏହି ଶେଷୋକ୍ତ ଅର୍ଥଟି ଅଣପ୍ରତୀକାତ୍ମକ । ଚତୁର ଶ୍ରୋତା ବକ୍ତାର କଥିତ ଶବ୍ଦଗୁଡ଼ିକ ସମେତ ତାହାର କେବଳ ଆଚରଣକୁ ହିଁ ଲକ୍ଷ୍ୟ କରେ ଏବଂ ତାହାକୁ ଏକ ସଙ୍କେତ ସମଷ୍ଟି ରୂପେ ଗ୍ରହଣ କରି, ତହିଁରୁ ବକ୍ତାର ଅଭିପ୍ରାୟ ତଥା ତାହାର ମନୋଗତ ନିର୍ଦ୍ଦେଶରେ ବ୍ୟାଖ୍ୟା ଦ୍ୱାରା ଉପନୀତ ହୁଏ । ସେହି ପରିସ୍ଥିତିରେ ବ୍ୟବହୃତ କୌଣସି ଶବ୍ଦଦ୍ୱାରା ଏହି ନିର୍ଦ୍ଦେଶ ପ୍ରତୀକାନ୍ୱିତ ନୁହେଁ । କ୍ରିକେଟ ଖେଳରେ, ଯେଉଁ ବାଟ୍‌ସମ୍ୟାନ୍ ଠିକ୍‌ଭାବେ 'ଗୁଗଲି' ଖେଳେ, ସେ ଠିକ୍ ଏହି ଧରଣର ହିଁ ବ୍ୟାଖ୍ୟା କରୁଥାଏ । କେତେକ ପ୍ରଦର୍ଶିତ ସଙ୍କେତକୁ ଉପେକ୍ଷା କରି ସେ ବୋଲରର କାର୍ଯ୍ୟକଳାପର 'ଅର୍ଥ' ଅନୁମାନ କରେ ।

'ଦ୍ୱୈଧଭାବ'ର ସମସ୍ତ କ୍ଷେତ୍ର, ସ୍ୱେଚ୍ଛାକୃତ (ଅଭିପ୍ରେତ) ହୋଇଥାଉ ବା ନଥାଉ, ଏହି ଏକମାତ୍ର ପ୍ରକାରରେ ହିଁ (୧) ତାହା ବିଶ୍ଳେଷିତ ହୋଇପାରେ ।

(୧) ଏହି ବିଷୟରେ ବକ୍ତା, କୂଟନୀତଜ୍ଞ, ଧପାବାଜ ଓ ମିଥ୍ୟାବାଦୀର କଳା ସମ୍ବନ୍ଧୀୟ Martinak ଙ୍କ ଆଲୋଚନା (Psychologische Untersuchungen zur Bedeutungslehre, ପୃ ୮୨) ଦ୍ରଷ୍ଟବ୍ୟ ।

ଅନ୍ତର୍ନିରୀକ୍ଷଣମୂଳକ ଅବଧାରଣ ଗୁଡ଼ିକ ସମ୍ବନ୍ଧରେ ନିମ୍ନରେ ଆଲୋଚନା କରାଯାଇଛି । ଏଗୁଡ଼ିକ ସହିତ ଆତ୍ମପ୍ରବଞ୍ଚନାର ବିଶିଷ୍ଟ କ୍ଷେତ୍ର ସଂପୃକ୍ତ ଏବଂ ଏଗୁଡ଼ିକ ସାଧାରଣ ମତବାଦ ନିମନ୍ତେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ । ଏଠାରେ ବକ୍ତାର ଅଭିପ୍ରେତ ବା ସ୍ୱୀକୃତ ନିର୍ଦ୍ଦେଶ ଏବଂ ବାସ୍ତବ ନିର୍ଦ୍ଦେଶ ମଧ୍ୟରେ ଯେ କୌଣସି ବ୍ୟାମିଶ୍ରଣର ନିରାକରଣ ନିମନ୍ତେ ବିଶେଷ ସାବଧାନତା ଆବଶ୍ୟକ ।

ବାସ୍ତବିକ, ଏହି ବିଶିଷ୍ଟ ପ୍ରକାର ଦ୍ୱ୍ୟର୍ଥକତା ହେଉଛି ଆମର ଆଲୋଚ୍ୟ ଦ୍ୱ୍ୟର୍ଥକତାମାନଙ୍କ ମଧ୍ୟରେ ଏକ ସର୍ବାଧିକ ଅବାଞ୍ଛନୀୟ ଦୋଷ । ମାନସିକ ପ୍ରତିକ୍ରିୟାର ନିର୍ଦ୍ଦେଶମୂଳକ ଓ ଭାବାତ୍ମକ ସଂକଳ୍ପମୂଳକ ଦିଗ ଦୁଇଟିକୁ ସୁସ୍ପଷ୍ଟରୂପେ ପୃଥକ୍ କରା-ନଗଲେ, ସେ ଦୁଇଟିର ସମ୍ପର୍କ ସମ୍ବନ୍ଧୀୟ କୌଣସି ଆଲୋଚନା ସମ୍ଭବପର ନୁହେଁ । ପୁଣି, ଏକ ଅତ୍ୟନ୍ତ ବିଶିଷ୍ଟ ଧରଣର ଭାବାତ୍ମକ-ସଂକଳ୍ପମୂଳକ ଦିଗ ଅର୍ଥାତ୍ 'ଅଭିପ୍ରାୟ ରଖିବା' ସହିତ ନିର୍ଦ୍ଦେଶର ବ୍ୟାମିଶ୍ରଣ ବିପଜ୍ଜନକ । ଶବ୍ଦ ବ୍ୟବହାରରେ ଚାତୁର୍ଯ୍ୟ ପ୍ରଦର୍ଶନ କରି ଏହି ବିଷୟର ତାତ୍ପର୍ଯ୍ୟ ପରିସ୍ଫୁଟ କରିବାକୁ କୁହାଯାଇ ପାରେ ଯେ ପ୍ରାୟଶଃ ଆମେ ଯାହା ମନେକରି [mean] ନଥାଉଁ ତାହା ମନେ କରି [mean] ଥାଉଁ, ଅର୍ଥାତ୍ ଆମର ଯାହା ଅଭିପ୍ରେତ ନୁହେଁ, ତାହାକୁ ଆମେ ନିର୍ଦ୍ଦେଶ କରୁଁ ଏବଂ ଆମେ ଯେଉଁ ବିଷୟର ଚିନ୍ତା କରିବାକୁ ଚାହୁଁ ନାଁ, ସେହି ବିଷୟରେ ଚିନ୍ତା ନିରବଚ୍ଛିନ୍ନଭାବେ କରୁଥାଉଁ । 'ନିର୍ଦ୍ଦେଶ' କରିବାକୁ ଅଭିପ୍ରାୟ ରଖିବାର ଏକ ସଂକ୍ଷିପ୍ତୀ-କୃତ ଅଭିବ୍ୟକ୍ତ ରୂପେ 'ଅର୍ଥ' ବାସ୍ତବରେ ହେଉଛି ସମ୍ଭବପର ସର୍ବାଧିକ ଦୁର୍ଭାଗ୍ୟଜନକ ପ୍ରତୀକାତ୍ମକ ଉପାୟମାନଙ୍କ ମଧ୍ୟରେ ଅନ୍ୟତମ ।

ପ୍ରସଙ୍ଗ ମତବାଦର ଦୃଷ୍ଟିକୋଣରୁ ମାନସିକ ପ୍ରତିକ୍ରିୟାର ଦୁଇଟି ଦିଗ ମଧ୍ୟରେ ଥିବା ପାର୍ଥକ୍ୟକୁ ସଂକ୍ଷେପରେ, ସୁତରାଂ ଅସ୍ପଷ୍ଟରୂପେ, ନିମ୍ନୋକ୍ତଭାବେ ସୂଚିତ କରା-ଯାଇପାରେ । ଏକ ସଙ୍କେତ ଯେଉଁ ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅନ୍ତର୍ଭୁକ୍ତ, ତାହା ଯଦି ଦତ୍ତ, ତେବେ ସଙ୍କେତର ବ୍ୟାଖ୍ୟାଦ୍ୱାରା କରାଯାଇଥିବା ନିର୍ଦ୍ଦେଶ ମଧ୍ୟ ସ୍ଥିରୀକୃତ । କିନ୍ତୁ ସେହି ଏକ ସଙ୍କେତ ( ବା ବହୁ ପରିମାଣରେ ସାଦୃଶ୍ୟ ରହିଥିବା ଗୁଣବିଶିଷ୍ଟ ସଙ୍କେତଗୁଡ଼ିକ ) ଭିନ୍ନ ଭିନ୍ନ ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅନ୍ତର୍ଗତ ହେବା ସମ୍ଭବପର । ଏପରି କେତେକ ଜ୍ୟାମିତିକ ଚିତ୍ର ରହିଛି, ଯେଉଁଗୁଡ଼ିକୁ ଅଳ୍ପାଧିକ ପରିମାଣରେ ସ୍ୱେଚ୍ଛାକୃତଭାବେ ଦେଖା ଯାଇପାରେ ଯେ ସେଗୁଡ଼ିକ ଯେପରି ଅଙ୍କିତ ସମତଳରୁ ଦୂରକୁ ଚାଲିଯାଉଛି, କିମ୍ବା ତାହାର ଆଗକୁ ବଢ଼ି ଆସୁଛି, ଏଗୁଡ଼ିକ ସୁବିଦିତ ଓ ସୁବିଧାଜନକ ଦୃଷ୍ଟାନ୍ତ ଯୋଗାଇଥାଏ । ଏବେ, ଆମେ ଯଦି ପ୍ରଶ୍ନୋତ୍ଥାପନ କରୁ, କିପରିଭାବେ ସଙ୍କେତଟି ଯେଉଁ ପ୍ରସଙ୍ଗର ହିଁ ଅନ୍ତର୍ଭୁକ୍ତ, ସେହି ପ୍ରସଙ୍ଗର ଅନ୍ତର୍ଭୁକ୍ତ

ହୋଇବସେ, କିମ୍ବା କିପରିଭାବେ ତାହା ଗୋଟିଏ ପ୍ରସଙ୍ଗରୁ ଅନ୍ୟ ଏକ ପ୍ରସଙ୍ଗକୁ ପରିବର୍ତ୍ତିତ ହୁଏ ? ତେବେ ଆମେ ଭାବାତ୍ମକ ସଂକଳ୍ପମୂଳକ ଢଗ ସମ୍ବନ୍ଧରେ ପ୍ରଶ୍ନୋତ୍ଥାପନ କରୁଛୁ । ଏହି ପ୍ରଶ୍ନ ଦ୍ୱୟର ଉତ୍ତର ଅଭ୍ୟାସ-ଗଠନ, ଅଭିଳାଷ, ଭାଷାତ୍ମକ ମୂର୍ଚ୍ଛନା ସମ୍ବନ୍ଧୀୟ ବାସ୍ତବ ଘଟଣା ଉପରେ ଆଧାରିତ ହେବା ସୁନିଶ୍ଚିତ । ଏହି ଘଟଣାଗୁଡ଼ିକ କେତେକ ପରିମାଣରେ ନିର୍ଦ୍ଧାରିତ ହୋଇ ସାରିଛି । କିନ୍ତୁ ଆହୁରି ଅଧିକ ଘଟଣାର ଆବିଷ୍କାର ଏବଂ ଯେଉଁ ପ୍ରକଳ୍ପ ଦ୍ୱାରା ସେଗୁଡ଼ିକର ବ୍ୟାଖ୍ୟା ଓ ବ୍ୟବସ୍ଥା କରି ଯାଇପାରେ, ତାହାର ପ୍ରଣୟନକୁ ବାକି ରଖି, ବର୍ତ୍ତମାନ ଅବସ୍ଥାରେ ସନ୍ନିସ୍ୱତାବାଦୀ କିମ୍ବା ସ୍ୱଚଳତାବାଦୀ ଭାଷାରେ ଏହି ବିଷୟରେ ଅନୁମାନ କରିବା ସମ୍ଭବପର । କେଉଁ ପ୍ରକାର ଭାଷା ବୈଜ୍ଞାନିକ ଦୃଷ୍ଟିରୁ ସର୍ବାଧିକ ଯଥୋପଯୋଗୀ ପ୍ରତୀକତନ୍ତ୍ର ଦେଇପାରେ, କିମ୍ବା ଏକ ତଟସ୍ଥ ପ୍ରତୀକ ତନ୍ତ୍ରର ସମ୍ଭବପରତା ଅଛି କି ନା— ଏହି ବିଷୟଗୁଡ଼ିକର ନିଷ୍ପତ୍ତି ବର୍ତ୍ତମାନ ଅପରିପକ୍ୱ ଅବସ୍ଥାରେ ରହିଛି । ଇତ୍ୟବସରରେ ଏକ ଅସମାହିତ ଓ ଦୁରୂହ ସମସ୍ୟା ସମ୍ବନ୍ଧରେ ଏକ ବିଭ୍ରାନ୍ତିକର ଉକ୍ତିକୁ ଆମର ସମସ୍ତ ଅନୁସନ୍ଧାନର ଏକ ମୁଖ୍ୟ ଉପକରଣ କରି ଗଢ଼ି ତୋଳିବାର କୌଣସି ଯାଥାର୍ଥ୍ୟ ନାହିଁ । କିନ୍ତୁ 'ଅର୍ଥ'ର ଯେଉଁ ତାତ୍ପର୍ଯ୍ୟ ବିଷୟ ଏଠାରେ ଆଲୋଚିତ, ତାହାକୁ ଯଦି ଏକ ମୌଳିକ ଧାରଣା ବୋଲି ସ୍ୱୀକାର କରାଯାଏ, ତେବେ ଆମେ ଉପର୍ଯ୍ୟୁକ୍ତ ପଦ୍ଧତିକୁ ପ୍ରଶ୍ରୟ ଦେଉଛୁଁ ।

୭ମ (ଖ) ସଜ୍ଞାର ବିସ୍ତୃତ ବିବରଣୀ । "ତାହାର ଅର୍ଥ ନିହିତ"="ତାହାର ନିର୍ଦ୍ଦିଷ୍ଟ ଇଚ୍ଛା ରହିଛି"—ଏହି ସମୀକରଣର ପରିସର ସମ୍ବନ୍ଧରେ ଯେଉଁମାନଙ୍କ ସ୍ପଷ୍ଟ ଧାରଣା ନାହିଁ, ସେମାନେ ଯେଉଁ ସିଦ୍ଧାନ୍ତ ଆଡ଼କୁ ପ୍ରାୟଶଃ ଅଗ୍ରସର ହେବାର ଦେଖାଯାଏ, ତାହା ହେଉଛି, 'ଅର୍ଥ'='ଇଚ୍ଛା'='ସଂକଳ୍ପ' (ଏକ ମାନସିକ ଘଟଣା), ଅର୍ଥାତ୍ ଯାହା ସମ୍ପୂର୍ଣ୍ଣରୂପେ ମନସ୍ତାତ୍ତ୍ୱିକ, ଅଥବା, ସେମାନେ ଯେପରିଭାବେ ତାହାକୁ ବ୍ୟକ୍ତ କରିବାକୁ ସାଧାରଣତଃ ସୁଖ ପାଆନ୍ତି, ଯାହା ସମ୍ପୂର୍ଣ୍ଣରୂପେ ବ୍ୟକ୍ତିଗତ (୧) । ଠିକ୍ ଏହି ଭାଷାଗତ ଦ୍ୱ୍ୟର୍ଥକତା ପ୍ରାୟଶଃ ସୃଷ୍ଟି ହୁଏ, ଯେତେବେଳେ କିଛି ଏକ ଇଚ୍ଛା ବା ପରିକଳ୍ପନାର ସାକ୍ଷ୍ୟ ପ୍ରମାଣ ପ୍ରଦର୍ଶନ କରେ ବୋଲି ବିବେଚନା କରାଯାଏ । ଯଦି 'ଅଭିପ୍ରାୟ' ବା ଏ ପ୍ରକାର ଏକ ଇଚ୍ଛାର 'ଉଦ୍ଦେଶ୍ୟ' ପରିବର୍ତ୍ତେ 'ଅର୍ଥ'କୁ ପ୍ରତିସ୍ଥାପନ କରାଯାଏ, ତେବେ ଯେ କୌଣସି ବିଷୟର ଅର୍ଥ ହେବ ତାହାର ଉଦ୍ଦେଶ୍ୟ; ଐଶ୍ୱରିକ ପରିକଳ୍ପନାର ବ୍ୟାଖ୍ୟାକାର ସ୍ୱରୂପ ବକ୍ତାଦ୍ୱାରା ଏହା ଅବଧାରିତ । ପକ୍ଷାନ୍ତରେ,

(୧) ବ୍ୟକ୍ତିଗତ ଉପାଦାନ ପ୍ରବେଶ କରାଇବାର ଅନ୍ୟ ଏକ ଉପାୟ ହେଉଛି 'ମୋର ଅର୍ଥ'କୁ 'ମୋର ଧାରଣା' ସହିତ ସମାନ କରିଦେବା; ଏହି ଧାରଣା କୌଣସି

**ଜୀବନଶକ୍ତି** ଧାରଣା ପ୍ରତି ଯେଉଁ ନବବୈଜ୍ଞାନିକ ପରୀକ୍ଷାମୂଳବାଦୀର ପକ୍ଷପାତିତା ରହିଛି, ତାହା ପାଇଁ ଯେ କୌଣସି ବିଷୟର ଅର୍ଥ ହେଉଛି ତାହାର କାର୍ଯ୍ୟ । ଜୀବନର ଅର୍ଥ ପରି ଏକ ଅଭିବ୍ୟକ୍ତିରେ ( ତୁଳନା କର—ଉଦାହରଣ ସ୍ୱରୂପ, ଅଧ୍ୟାପକ ମ୍ୟୁନ୍‌ଷ୍ଟେରବର୍ଗଙ୍କ ଉପର୍ଯ୍ୟୁକ୍ତ ଆଲୋଚନା ) ସାଧାରଣତଃ ଏ ପ୍ରକାର ଏକ ମତ ରହିଛି । କିନ୍ତୁ ବେଳେ ବେଳେ ଆଉ ଏକ ସମ୍ବନ୍ଧପର ବ୍ୟାଖ୍ୟା ଦିଆଯାଏ । ଅର୍ଥକୁ ଯେତେବେଳେ 'ତାତ୍ପର୍ଯ୍ୟ' ସହିତ ସମାନ କରି ଦିଆ ଯାଇଥାଏ (୮ମ ଅଙ୍କ), ସେତେବେଳେ ଏହି ବ୍ୟାଖ୍ୟା ଦେବା ସମ୍ଭବପର । ଏହି କ୍ଷେତ୍ରରେ ଉଦ୍ଦେଶ୍ୟ-ସମ୍ପ୍ରତ୍ୟୟ ସର୍ବଦା ନିହିତ ନଥାଏ, ଏବଂ ଯେ କୌଣସି ବିଷୟର ଅର୍ଥ ଧରିପକାଉଛି ବୋଲି କୁହାଯାଏ, ଯେତେବେଳେ ତାହା ଅନ୍ୟାନ୍ୟ ବସ୍ତୁ ସହିତ ଯେପରି ଭାବେ ସଂଯୁକ୍ତ, ତାହା ବୁଝାଯାଇଛି, କିମ୍ବା କୌଣସି ଏକ ତନ୍ତ୍ରକୁ ସମୂହଭାବେ ନେଇ ସେଥିରେ ତାହାର ସ୍ଥାନ ରହିଥିବା ବିଷୟ ଜଣା ପଡ଼ିଛି ।

ଏହି ଉଭୟ ବ୍ୟବହାରର ଉତ୍ତମ ଦୃଷ୍ଟାନ୍ତ ଶ୍ରୀ ରସେଲଙ୍କ ଦ୍ୱାରା ଯୋଗାଇ ଦିଆଯାଇଛି । ଏହି ବ୍ୟବହାର ଦ୍ୱୟ ତାଙ୍କ ଦ୍ୱାରା ଯେପରିଭାବେ କରାଯାଇଛି, ତାହା ଯେ ନିର୍ଦ୍ଦୋଷ ତଥା ସୁବିଧା ଜନକ, ଏ କଥାର ଉଲ୍ଲେଖ ଅନାବଶ୍ୟକ କହିଲେ ଚଳେ । ଆମ ବିଶ୍ୱର ଇତିହାସ ଧର୍ମଙ୍କରେ ମେଫିଷ୍ଟୋଫେଲିସ୍ ପ୍ରଦତ୍ତ ଅମର ବିବରଣୀର ଶେଷାଂଶରେ ଲିପିବଦ୍ଧ ହୋଇଛି, "ବିଜ୍ଞାନ ଆମର ବିଶ୍ୱାସ ନିମନ୍ତେ ଯେଉଁ ଜଗତ ଉପସ୍ଥାପିତ କରିଛି, ତାହା ସ୍ଥୂଳତଃ ଏହିପରି । କିନ୍ତୁ ଜଗତ ଏହାଠାରୁ ମଧ୍ୟ ଆହୁରି ଅଧିକ ଉଦ୍ଦେଶ୍ୟ ରହିତ, ଆହୁରି ଅଧିକ ଅର୍ଥ ଶୂନ୍ୟ ।" ପୁଣି ପାଠ୍ୟପୁସ୍ତକମାନଙ୍କରେ ଯେପରି ଅଧା ଅପରିଷ୍କାର ଭାବେ ଗଣିତର ଆଲୋଚନା କରାଯାଏ, ତତ୍ସମ୍ବନ୍ଧରେ ସେ କହିଛନ୍ତି, "ଗଣିତରେ ଯେପରି ତର୍କପ୍ରସୂତାର ସ୍ୱଚ୍ଛଳ ବିକାଶ ଘଟିପାରେ, ଅନ୍ୟତ୍ର ତାହା ସମ୍ଭବପର ନୁହେଁ । ଯେଉଁ ଶିକ୍ଷାର୍ଥୀ ଏହି ଆବେଗ ଅନୁଭବ କରେ, ତାହାକୁ

---

ଏକ ବସ୍ତୁର ହୋଇଥାଉ ବା ହୋଇ ନ ଥାଉ, ସେଥିରେ କିଛିଯାଏ ଆସେ ନା । ଉଦାହରଣ ସ୍ୱରୂପ, ଯେତେବେଳେ ଆଲୋଚନାର ଜଣେ ଅଂଶୀଦାର ଘୋଷଣା କରେ ଯେ, ସେ ତାହାର ଅର୍ଥକୁ ଅସମ୍ପୂର୍ଣ୍ଣ ରୂପେ ପ୍ରକାଶ କରିଛି; ଏବଂ ଆହୁରି ଦାବି କରେ ଯେ ଧାରଣାଗୁଡ଼ିକ ଏତେ ବ୍ୟକ୍ତିଗତ ଓ ଅନୁପଲଭ୍ୟ ହୋଇଥିବାରୁ ସେଗୁଡ଼ିକୁ କଦାପି ଯଥାଯଥଭାବେ 'ବ୍ୟକ୍ତକରାଯାଇ' ନ ପାରେ ।

ଗୁଡ଼ିଏ ଅର୍ଥଶୂନ୍ୟ ଉଦାହରଣ ଦେଇ ନିରୁତ୍ସାହିତ କରିବା କିମ୍ବା କେତେକ ଆମୋଦ-ଦାୟକ ବୈଷମ୍ୟ ପ୍ରଦର୍ଶନ କରି ବିଭ୍ରାନ୍ତ କରିବା ଆଦୌ ଉଚିତ ନୁହେଁ ।'' (୧)

ଉପର୍ଯ୍ୟୁକ୍ତ ଦୃଷ୍ଟିଭଙ୍ଗୀରୁ 'ଅର୍ଥ' ମୁକ୍ତ ବୋଲି କୁହାଯାଉଥିବା ଯେଉଁ ପ୍ରକାର ତଥ୍ୟରେ ସଙ୍ଗତ, ତାହା ଗୁରୁତ୍ୱପୂର୍ଣ୍ଣ ନୁହେଁ । ମାନବୀୟ ବା ଅମାନବୀୟ ଅଭିକଳ୍ପ ବା ସଂକଳ୍ପ ଗୁଡ଼ିକ ଏପ୍ରକାର ତଥ୍ୟମାନଙ୍କ ଏକ ଉପଶ୍ରେଣୀ ଗଠନ କରେ । କିନ୍ତୁ ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ବହୁ ଉପଶ୍ରେଣୀ ମଧ୍ୟ ରହିଛି । ଉଦାହରଣ ସ୍ୱରୂପ, ମୁଁଛ ଘୋଷଟାର ଅର୍ଥ ହୃଦୟଙ୍ଗମ କରିବାରେ କେତେକ ବ୍ୟକ୍ତି ମନ୍ଥର ଅଟନ୍ତି ବୋଲି କୁହା ଯାଉଥିଲା । ଭିନ୍ନ ଭାଷାରେ କହିଲେ, ଏହି ଘଟଣା ସହିତ କାରଣିକ ସମ୍ବନ୍ଧରେ ଅନ୍ୱିତ ସମସ୍ତ ପ୍ରକାର ପରିବେଶ ବିଷୟରେ ସେମାନେ ସହଜରେ ଚିନ୍ତାକରି ପାରୁ-ନଥିଲେ । ଅନୁରୂପଭାବେ, ଆମେ ପ୍ରଶ୍ନ କରିପାରୁଁ—ଜୀବିକାହୀନତାର ଅର୍ଥ କଣ ?

ଆଦମଙ୍କ ଅଧୋଗତି ସଂକ୍ରାନ୍ତୀୟ ପରିସ୍ଥିତିର ଏବଂ ଆତ୍ମାର ଇତିହାସ ତଥା ଭାଗ୍ୟର ବ୍ୟାଖ୍ୟା ଦ୍ୱାରା ଜଣେ ଈଶ୍ୱର ବିଜ୍ଞାନୀ ପାପର 'ଅର୍ଥ' ବୁଝାଇବ । ସେହିପରି, ଟପ୍ ଟୋପିକୁ ବାହ୍ୟାଡ଼ମ୍ବର ପ୍ରଦର୍ଶନର ଉପକରଣ ରୂପେ ସ୍ୱୀକାର କରିବା ଦ୍ୱାରା ଜଣେ ସମାଜ ବିଜ୍ଞାନୀର ମନରେ ତାହାର 'ଅର୍ଥ' ଫୁଟି ଉଠିପାରେ ।

ଶ୍ରୀ ହ୍ୱାଇଟ୍‌ହେଡ୍ କହିଛନ୍ତି, ''ଅଧିକାଂଶ ଶିଶୁଙ୍କ ପକ୍ଷରେ ସଂଖ୍ୟାମୂଳକ କାଳ ନିର୍ଣ୍ଣୟର କୌଣସି ଅର୍ଥ ଥାଏ କି ନା ଏଥିରେ ମୋର ସନ୍ଦେହ ରହିଛି । ଥରେ ମୁଁ ଜଣେ ଉଚ୍ଚବାଚଶୀୟ ସ୍କୁଲ ଛାତ୍ରକୁ ପଚାରିଲି; କେତେକାଳ ପୂର୍ବେ ଆମର ସଦାପ୍ରଭୁ ବସବାସ କରୁଥିଲେ ? ସେ ଉତ୍ତର ଦେଲା, 'କ୍ଲେଶ ଧନ' ।

କାଳ ନିର୍ଣ୍ଣାୟକ ସଂଖ୍ୟା ଗୁଡ଼ିକ କୌଣସି ବିଷୟ ସୂଚିତ କରନ୍ତି ନାହିଁ ବୋଲି ଏଠାରେ ଅଭିଯୋଗ କରିଯାଉ ନାହିଁ । କିନ୍ତୁ ସମ୍ଭବତଃ ସମୟର ସାଧାରଣ ପରିମାପନରେ ସେଗୁଡ଼ିକର 'ତାତ୍ପର୍ଯ୍ୟ' ଶିଶୁମନ ଧରିପାରେ ନାହିଁ । ସେହିପରି ଭାବେ କୁହାଯାଏ ଯେ ସୁଦୂରବର୍ତ୍ତୀ ତାରକାମାନଙ୍କ ଦୂରତ୍ୱସୂଚକ ସଂଖ୍ୟାଗୁଡ଼ିକ ଆମ ସମସ୍ତଙ୍କ ପକ୍ଷରେ 'ଅର୍ଥ'ଶୂନ୍ୟ ।

କିନ୍ତୁ ଏହି ଦୃଷ୍ଟିଭଙ୍ଗୀର ଅର୍ଥ ବକ୍ତୃତା ଦେଉଥିବା ବ୍ୟକ୍ତିଙ୍କ ପକ୍ଷରେ ସୁଦ୍ଧା ବିଶେଷ ଉପାଦେୟ ହେବା ନିମନ୍ତେ ଅତ୍ୟଧିକ ଅସ୍ପଷ୍ଟ । ଜୀବିକାହୀନତାର ଅର୍ଥ ତାହାର

(୧) କଥିତ ଗ୍ରନ୍ଥ, Mysticism and Logic, ପୃ ୪୭ ଏବଂ ୭୬ ।
(୨) What is Education ? ପୃ ୧୨୮

କାରଣ କି ତାହାର ପରିଣତି ? ଯଦି ପରିଣତି ହୁଏ, ତେବେ ତାହାକୁ ସାମାଜିକ ଦୃଷ୍ଟିକୋଣରୁ ଗ୍ରହଣ କରାଯିବ କି, ଜନବିଶେଷ ବ୍ୟକ୍ତି ସେହି ପରିଣତିରୁ ଯେଉଁ କଷ୍ଟପାଏ, ତାହା ହିଁ ବିବେଚ୍ୟ ? ଏହି ସମସ୍ତ ବିବେଚନାରୁ ସାଧାରଣତଃ ବିଭିନ୍ନ ପ୍ରକାର ସୀମାଧାର୍ଯ୍ୟ କରାଯାଏ; ଏବଂ ସେଗୁଡ଼ିକ ସାହାଯ୍ୟରେ, କୌଣସି ତତ୍ତ୍ୱରେ ସ୍ଥାନ ହିସାବରେ ଅର୍ଥର ଅଧିକ ନିର୍ଦ୍ଦିଷ୍ଟ ତାତ୍ପର୍ଯ୍ୟ ନିର୍ଣ୍ଣୀତ ହୁଏ । ସେଗୁଡ଼ିକ ମଧ୍ୟରୁ ଅର୍ଥର ସ୍ୱାଧୀନ ସଂଜ୍ଞାରୂପେ ବିବେଚିତ ହେବାପାଇଁ ଦୁଇଗୋଟି ସଂଜ୍ଞା ଯଥେଷ୍ଟ ପରିମାଣରେ ଗୁରୁତ୍ୱପୂର୍ଣ୍ଣ । ଏହାହିଁ କାରଣ ହେଉଛି ଯେ ଏ ଦୁଇଟି ମଧ୍ୟରୁ ପ୍ରତ୍ୟେକଟିକୁ ଗୋଟିଏ ଗୋଟିଏ ତତ୍ତ୍ୱଶାସ୍ତ୍ରୀୟ ସୌଧର ଭିତ୍ତି-ପଥର କରାଯାଇଛି । ଏହି ଦୁଇଟି ସଂଜ୍ଞା ହେଉଛି **ବ୍ୟାବହାରିକ** ପରିଣତି ରୂପେ 'ଅର୍ଥ' ଏବଂ ତାର୍କିକ ପରିଣତି ରୂପେ 'ଅର୍ଥ' । ଉଭୟ କ୍ଷେତ୍ରରେ, ଯେ କୌଣସି ବସ୍ତୁର ଯେଉଁ ତତ୍ତ୍ୱରେ 'ଅର୍ଥ' ଥାଏ, ସେହି ବସ୍ତୁର 'ଅର୍ଥ' ସେହି ତତ୍ତ୍ୱର ଅବଶିଷ୍ଟାଂଶ । ଆମେ ଯେତେବେଳେ **ସ୍ୱାଭାବିକ** ସଂକେତ ବିଷୟର ବିଚାର କରିବସିବା, ସେତେବେଳେ ଏହି ଅର୍ଥର ଆଉ ଏକ ଅଧିକ ଅବ୍ୟାପକ ଓ ଅଧିକ ବୈଜ୍ଞାନିକ ପ୍ରକାରଭେଦ ପାଇ ପାରିବା ।

ବ୍ୟାବହାରିକ ପରିଣତି ହିସାବରେ ଅର୍ଥର ବିବରଣୀ ( ୯ମ ସଂଜ୍ଞା ) ବ୍ୟାବହାରିକତାବାଦୀମାନଙ୍କ ମତ ସହିତ ମୁଖ୍ୟତଃ ସଂପୃକ୍ତ ବୋଲି ବିବେଚିତ ହୁଏ । "ସକ୍ରିୟ ହେଉ ବା ନିଷ୍କ୍ରିୟ ହେଉ, ଆମ ଭବିଷ୍ୟତ ବ୍ୟାବହାରିକ ଅନୁଭୂତିରେ କେତେକ ବିଶେଷ ପରିଣତି ରୂପେ ପ୍ରତ୍ୟେକ ପ୍ରତିଜ୍ଞପ୍ତିର ଅର୍ଥ ସର୍ବଦା ପ୍ରଦର୍ଶିତ ହୋଇପାରେ—" (୧) ଏହା ହେଉଛି ସ୍ୱୟଂ ଉଇଲିଅମ୍ ଜେମ୍ସଙ୍କ ଧାରଣା । ଅନ୍ୟତ୍ର, **ପ୍ରେଗମେଟିଜମ** ପୁସ୍ତକରେ (ପୃ ୨୦୧) ସେ ଲେଖିଛନ୍ତି "ସତ୍ୟ ପ୍ରତ୍ୟୟ ହେଉଛି ସେହି ପ୍ରତ୍ୟୟ, ଯାହାକୁ ଆମେ ହୃଦୟଙ୍ଗମ, ପ୍ରମାଣ, ଅନୁମୋଦନ ଓ ସାକ୍ଷ୍ୟପ୍ରମାଣ ଦ୍ୱାରା ସମର୍ଥନ କରିପାରୁ । ମିଥ୍ୟା ପ୍ରତ୍ୟୟ ହେଉଛି ଯାହାକୁ ଆମେ ଏହିପରି କରିପାରୁ ନା । ସତ୍ୟ ପ୍ରତ୍ୟୟର ଅଧିକାରୀ ହେବାରେ ଆମଠାରେ ଏହି ବ୍ୟାବହାରିକ ପାର୍ଥକ୍ୟ ଲକ୍ଷ୍ୟ କରାଯାଇ ପାରେ । ତେଣୁ ଏହାହିଁ ହେଉଛି ସତ୍ୟର ଅର୍ଥ, କାରଣ ସତ୍ୟକୁ କେବଳ ଏତିକି ବୋଲି ଆମେ ଜାଣୁ ।"

ଏହା ସହିତ ସଙ୍ଗତି ରକ୍ଷା କରି ଭିନ୍ନ ମତାବଲମ୍ବୀ କେତେକ ଦାର୍ଶନିକ ଅଛନ୍ତି, ଯେଉଁମାନେ 'ଅର୍ଥ' ସୂଚିତ ହେବା'କୁ 'ସଶ୍ଳିଷ୍ଟ ହେବା' ବା 'ତର୍କସମ୍ମତ ଭାବେ ନିହିତ ହେବା'ର ସମାର୍ଥକ ଶବ୍ଦରୂପେ ନିଜର ଗଦ୍ୟ ରଚନାରେ ପ୍ରବେଶ

(୧) William James, The Meaning of Truth, ପୃ ୨୧୦ ।

କରାଇଛନ୍ତି ( ୧୦ମ ସଜ୍ଞା ) । ସାଧାରଣ ଦାର୍ଶନିକ ବାକ୍ୟାଳାପ କ୍ଷେତ୍ରରେ, ଗୋଟିଏ ମତ ବା ଉକ୍ତିର ସମସ୍ତ ବା ଯେ କୌଣସି ଏକ ତାତ୍ତ୍ୱିକ ପରିଣତିକୁ ଏହିପରିଭାବେ ତାହାର ଅର୍ଥର ଅନ୍ତର୍ଭୁକ୍ତ କରାଯାଇଥାଏ । ଉଦାହରଣ ସ୍ୱରୂପ, ( **ମାଇଣ୍ଡ** ୧୯୦୮, ପୃ ୪୯୧ ରେ ) କୁହାଯାଇଛି ଯେ "ସ୍ପିନୋଜାଙ୍କ ମତରେ, କେବଳ ପରିଣତି ଉପରେ ପ୍ରାଧାନ୍ୟ ଅର୍ପଣର ଅର୍ଥ ହେଉଛି କାରଣ ସମ୍ବନ୍ଧରେ ଅଜ୍ଞତା, ସେହିପରି ଅଧ୍ୟାପକ ଲିଙ୍କ ମତରେ କେବଳ କାରଣ ଉପରେ ପ୍ରାଧାନ୍ୟ ଅର୍ପଣର ଅର୍ଥ ପରିଣତି ସମ୍ବନ୍ଧରେ ଅଜ୍ଞତା ।"

୧୧ଶ ସଜ୍ଞା (ସବେଗ) ବିଷୟରେ କୌଣସି ମନ୍ତବ୍ୟ ଦେବାର ଆବଶ୍ୟକତା ନାହିଁ କହିଲେ ଚଳେ । ଏହା ଅର୍ଥର ଏକ ସୁନିର୍ଦ୍ଦିଷ୍ଟ ତାତ୍ପର୍ଯ୍ୟ, ଏବଂ ପାଠୁଆ ମହଲ ବ୍ୟତୀତ ଅନ୍ୟତ୍ର ଏହା ଅନ୍ୟାନ୍ୟ ସମସ୍ୟାରେ ଗଣ୍ଡଗୋଳ ଉଆଇବାର ସମ୍ଭାବନା ନାହିଁ । ପରବର୍ତ୍ତୀ ପରିଚ୍ଛେଦରେ ଭାଷାର ସବେଗାତ୍ମକ ବ୍ୟବହାର ସମ୍ବନ୍ଧରେ ଏକ ସ୍ୱତନ୍ତ୍ର ଆଲୋଚନା ରହିଛି । ଏହି ବିଷୟରେ ଯାହା ଆଗରୁ କୁହାଯାଇଛି, ସେଠାରେ ତାହାର ପ୍ରୟୋଗ କରାଯାଇଛି । ଅର୍ଥର ସବେଗାତ୍ମକ ବ୍ୟବହାରର କେତେକ ବିଲକ୍ଷଣମୂଳକ ଦୃଷ୍ଟାନ୍ତ ପୂର୍ବବର୍ତ୍ତୀ ପରିଚ୍ଛେଦରେ ଯୋଗାଇ ଦିଆ ଯାଇଥିଲା । ଅନେକତ୍ର ଏହି ଶବ୍ଦଟି ବିଶୁଦ୍ଧରୂପେ ସବେଗାତ୍ମକ ( ତୁଳନାକର—'ଉତ୍ତମ', ) । ଏହି କ୍ଷେତ୍ରମାନଙ୍କରେ ଲେଖକ ଯଦି ଜଣେ ଶୈଳୀଶିଳ୍ପୀ ହୋଇଥାନ୍ତି, ତେବେ ଏହି ଶବ୍ଦର କୌଣସି ପ୍ରତିଶବ୍ଦ ନ ଥାଏ; ଏବଂ କୌଣସି ବିଗ୍ରହବୁଦ୍ଧିସମ୍ପନ୍ନ ପାଠକ ଏହାର ଏକ ପ୍ରତୀକାତ୍ମକ ସଜ୍ଞା ଦେବାର ପ୍ରୟାସ କରନ୍ତି ନାହିଁ ।

ଅର୍ଥାତ୍ ଏହି ତାତ୍ପର୍ଯ୍ୟର ସବିଶେଷ ଆଲୋଚନା ମୂଲ୍ୟମାନଙ୍କ ଗବେଷଣା ସହିତ ପ୍ରାୟ ସମାନ । ଅଧ୍ୟାପକ ଡବ୍ଲ୍ୟୁ. ଏମ୍. ଅର୍ବାନ ତାଙ୍କର ଏତଦ୍ ବିଷୟକ ବିରାଟ ତଥା ଦୁର୍ବୋଧ ଗ୍ରନ୍ଥରେ ଏହିପରି ଏକ ପ୍ରୟାସ କରିଛନ୍ତି । ତହିଁରେ 'ମୂଲ୍ୟ-ବିଧେୟ ଗୁଡ଼ିକ' 'ଗର୍ଚ୍ଛିତ ଭାବାତ୍ମକ-ସଙ୍କଳ୍ପମୂଳକ ଅର୍ଥ' ପରି ଜଣାପଡ଼େ । " 'ଈଶ୍ୱର', 'ପ୍ରେମ', 'ସ୍ୱାଧୀନତା' ପ୍ରଭୃତି ଶବ୍ଦମାନଙ୍କ ଏକ ବାସ୍ତବ ସବେଗାତ୍ମକ ଲକ୍ଷଣାର୍ଥ ରହିଛି ଏବଂ ଏମାନଙ୍କ କ୍ଷେତ୍ରରେ ଅନୁଚିହ୍ନ ସ୍ୱରୂପ ଏକ ସବେଗାତ୍ମକ ଅର୍ଥ ରହିଯାଏ ।... ଏହିପରି ଶବ୍ଦମାନଙ୍କ ସବେଗାତ୍ମକ ଲକ୍ଷଣାର୍ଥକୁ ଆମେ ପୂର୍ବବର୍ତ୍ତୀ ସବେଗାତ୍ମକ ପ୍ରତିକ୍ରିୟାର ଗର୍ଚ୍ଛିତ ଅର୍ଥ ବୋଲି କହିପାରୁଁ । ପୁଣି ଏହି ଅର୍ଥର ସହସମ୍ବନ୍ଧୀ ମାନସିକ ଉପାଦାନ ଗଠନ କରୁଥିବା ସବେଗାତ୍ମକ ସାରାଂଶକୁ ଆମେ ପୂର୍ବବର୍ତ୍ତୀ ଅବଧାରଣ-ଅନୁଭୂତିର ଅବଶେଷ ବୋଲି କହିପାରୁଁ । ଏହି ଉଭୟ ଉକ୍ତି ସମ୍ପୂର୍ଣ୍ଣତଃ ଯଥାର୍ଥ ।"

(୧) କିନ୍ତୁ ପାରମ୍ପରିକ ପରିବେଶ ପ୍ରତି ଅଟାନଙ୍କ ରୁଚି ରହିଥିଲା, କିନ୍ତୁ ଯେଉଁଗୁଡ଼ିକ ଯେଉଁ ମତଗୁଡ଼ିକ ଅଧିକାଂଶରେ ନର୍ଦ୍ଦୋଷ ଓ ଅତି ସରଳ ସହିତ ବର୍ଣ୍ଣିତ, ସେଗୁଡ଼ିକ ସହିତ ତାଙ୍କର ସାଧାରଣ ପରିଚୟ ବାଧାପ୍ରାପ୍ତ ହେବା ଉଚିତ ହୋଇନାହିଁ; ଏହା ଏକ କ୍ଷୋଭକର ବିଷୟ ।

ଏହାପରେ ଆମେ ତୃତୀୟ ଆଲୋଚନାର ବିଚାର କରିବା । ଏହି ଆଲୋଚନାର ପ୍ରଥମ ଅଙ୍କରେ ( ୧୬ଶ ଅଙ୍କ ) ପ୍ରାକୃତିକ ସଙ୍କେତର ନୀତି ଉପସ୍ଥିତ ହୋଇଛି । ସାଧାରଣତଃ ଗ୍ରହଣ କରି ନିଆଯାଏ ଯେ ଯେ କୌଣସି ଏକ ଘଟଣା ଅନ୍ୟାନ୍ୟ ଘଟଣା ସହିତ ବହୁବିଧ-ଭାବେ ସମ୍ବନ୍ଧାନ୍ୱିତ ହେବ । ଯେ କୌଣସି ଘଟଣା ବାସ୍ତବରେ କାରଣିକ ବା କାଳିକ ସମ୍ବନ୍ଧରେ ଅଥବା ଅନ୍ୟ କୌଣସି ସମ୍ବନ୍ଧରେ ଅନ୍ୱିତ ହୋଇଥିବା କ୍ଷେତ୍ରରେ, ସେହି ସମ୍ବନ୍ଧ ଦୃଷ୍ଟିରୁ ଘଟଣାଟିକୁ ସଙ୍କେତ ରୂପେ ଗ୍ରହଣ କଲେ, ଅନ୍ୟ ଏକ ଘଟଣା ରହିବ, ଯାହା ହେଉଛି ପୂର୍ବୋକ୍ତ ଘଟଣାର ଅର୍ଥ । ଭିନ୍ନ ଭାବରେ କହିଲେ, ଶେଷୋକ୍ତ ଘଟଣାଟି ହେଉଛି ପୂର୍ବୋକ୍ତ ଘଟଣାର ତଦ୍ରୂପଭାବେ ସମ୍ବନ୍ଧାନ୍ୱିତ ସଙ୍ଗୀ । ଉଦାହରଣ ସ୍ୱରୂପ, ଗୋଟିଏ ଦିଆସିଲି କାଠି ମାରିବାର ଫଳ ହେଉଛି ହୁଏତ ଅଗ୍ନିଶିଖା କିମ୍ବା ଧୂଆଁ କିମ୍ବା କାଠିର ମୁଣ୍ଡ ଝଡ଼ି ପଡ଼ିବା କିମ୍ବା କେବଳ ଏକ ଘର୍ଷଣ ଶବ୍ଦ କିଂବା ଏକ ଚିତ୍କାର । ଏହି କ୍ଷେତ୍ରରେ, ଘର୍ଷଣକୁ ଯଦି ଏହି ସଂବନ୍ଧର ସଙ୍କେତ ବୋଲି ଧରିଯାଏ, ତେବେ ବାସ୍ତବ ଫଳ ହେଉଛି ତାହାର ଅର୍ଥ । ପୁଣି ବିପରୀତ ଭାବେ ଘର୍ଷଣ ହେଉଛି ବାସ୍ତବ ଫଳର ଅର୍ଥ ।

ପ୍ରାୟଶଃ ଏହି ଦୃଷ୍ଟିଭଙ୍ଗୀରୁହିଁ ମନୋବିଶ୍ଳେଷକମାନେ ସ୍ୱପ୍ନର ଅର୍ଥ ବିଷୟ କହନ୍ତି । ସେ ଯେତେବେଳେ କେତେକ ମାନସିକ ଘଟଣାର 'ଅର୍ଥ' ଆବିଷ୍କାର କରେ, ସେ ସେତେବେଳେ ଯାହା ପାଇଛି, ତାହା ସାଧାରଣତଃ ହେଉଛି କାରଣର ଏକ ଅଦିଖିଆ ଅଂଶ । ଏତଦ୍‌ବ୍ୟତୀତ ଅର୍ଥର ଅନ୍ୟ କୌଣସି ବାସ୍ତବ ବ୍ୟବହାର ସେ କ୍ୱଚିତ୍ କରିଥାଏ । କିନ୍ତୁ ଅଚେତନ ଅଭିଳାଷ ମତବାଦର ପ୍ରବର୍ତ୍ତନ ଦ୍ୱାରା 'ଅର୍ଥ'ର ତାତ୍ପର୍ଯ୍ୟ ହୋଇଯାଏ ଅଚେତନ ଭାବେ ଅଭିପ୍ରେତ କୌଣସି ବସ୍ତୁ । ପୁଣି 'ସାମାନ୍ୟ ପ୍ରତୀକମାନ' ଯଥା—ରଜା, ରାଣୀ ପ୍ରଭୃତି ପ୍ରବେଶ କରାଇବା ଦ୍ୱାରା ଅର୍ଥର ତାତ୍ପର୍ଯ୍ୟ ହୋଇଯାଏ ପ୍ରତୀକର କୌଣସି ଏକ ଆନ୍ତରିକ ଗୁଣ । ତଥାପି ସେ ଯାହା ଆଲୋଚନା କରୁଛି ବୋଲି ବିଶ୍ୱାସ କରେ, ତହିଁରେ କୌଣସି ପରିବର୍ତ୍ତନ ଘଟେ ନାହିଁ । ଭିନ୍ନ ଭାବରେ କହିଲେ, ମନୋବିଶ୍ଳେଷଣକାରୀର ତଥା ସମସ୍ତ ପ୍ରକୃତି-ବିଜ୍ଞାନୀଙ୍କ ପକ୍ଷରେ କାରଣିକ ସଙ୍କେତ-ସମ୍ବନ୍ଧଗୁଡ଼ିକ ହେଉଛି ସର୍ବାଧିକ ଅନୁରକ୍ତିର ବିଷୟ ।

(୧) Valuation, ପୃ ୧୩୩ ।

ଉପର୍ଯ୍ୟୁକ୍ତ ତାତ୍ପର୍ଯ୍ୟବିଶିଷ୍ଟ 'ଅର୍ଥ'ରୁ ୧୭୩ ସଙ୍କାକୁ ସାବଧାନତା ସହକାରେ ପୃଥକ୍ କରାଯିବା ଆବଶ୍ୟକ । ଏହି 'ଅର୍ଥ'ରୁ ସେହି 'ଅର୍ଥ'କୁ ଗଠ କରିବା ବେଳେ ଆଗରୁ ଦିଆଯାଇଥିବା ବ୍ୟାଖ୍ୟା—ବିବରଣୀକୁ ଆମକୁ ମନେ ପକାଇବାକୁ ହେବ । ଆଗରୁ ମତ ଗ୍ରହଣ କରାଯାଇଥିଲା ଯେ ସମସ୍ତ ଚିନ୍ତନ, ସମସ୍ତ ନିର୍ଦ୍ଦେଶ ହେଉଛି ମନସ୍ତାତ୍ତ୍ୱିକ ପ୍ରସଙ୍ଗହେତୁକ ଅନୁକୂଳନ । ଏହି ପ୍ରସଙ୍ଗଗୁଡ଼ିକ ବାହ୍ୟପ୍ରସଙ୍ଗଗତ ଉପାଦାନଗୁଡ଼ିକୁ ସଂଯୋଜିତ କରେ । ଆମ ଅନୁକୂଳନ ଯେତେ 'ସାମାନ୍ୟ' ବା ଯେତେ 'ଅପକର୍ଷିତ' ହେଉ ନା କାହିଁକି, ସଂଘଟିତ ହେଉଥିବା ବିଷୟର ସାଧାରଣ ବିବରଣୀ ଅପରିବର୍ତ୍ତିତ ରହେ । ଏହିପରିଭାବେ 'ଅର୍ଥ'ର ଏକ ସୁସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଧାରଣାରେ ଆମେ ଉପନୀତ ହେଉଁ । ଏହି ସଂଜ୍ଞାନୁସାରେ କ ର ଅର୍ଥ ହେଉଛି କ କୁ ବ୍ୟାଖ୍ୟା କରୁଥିବା ମାନସିକ ପ୍ରଣାଳୀ ଯାହା ପ୍ରତି ଅନୁକୂଳିତ (୧) । ଯେଉଁ ଦୃଷ୍ଟିଭଙ୍ଗୀରୁ ଶବ୍ଦଗୁଡ଼ିକର ଅର୍ଥ ଥାଏ, ତନ୍ମଧ୍ୟରେ ଏହାହିଁ ହେଉଛି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ।

ସରଳ ବ୍ୟାଖ୍ୟାମାନଙ୍କ କ୍ଷେତ୍ରରେ, ଯଥା—ଏକ ଧ୍ୱନିକୁ ଚିହ୍ନିବା, ଏହି ଅନୁକୂଳକୁ ବୁଝାଇବା କଷ୍ଟକର ନୁହେଁ । ଅଧିକ ଜଟିଳ ବ୍ୟାଖ୍ୟାମାନଙ୍କ କ୍ଷେତ୍ରରେ, ଯଥା—ଏହି ମୁହୂର୍ତ୍ତରେ ପାଠକ ଯେଉଁ ପ୍ରକାର ବ୍ୟାଖ୍ୟା ଦେବାର ପ୍ରୟାସ କରୁଛନ୍ତି, ଏକ ପୁଙ୍ଖାନୁପୁଙ୍ଖ ବିବରଣୀ ଦେବା ଅଧିକ କଷ୍ଟକର । ଏହାର ଆଂଶିକ କାରଣ ହେଉଛି ଯେ ଏ ପ୍ରକାର ବ୍ୟାଖ୍ୟା ଗୁଡ଼ିକ ଭିନ୍ନ ଭିନ୍ନ ସ୍ତରଦେଇ ଗଠ କରିଥାଏ । ଏହାର ଅନ୍ୟ ଏକ ଆଂଶିକ କାରଣ ହେଉଛି ଯେ ଏ ପର୍ଯ୍ୟନ୍ତ ଅତି ଅଳ୍ପ ସଂଖ୍ୟକ ଗୁରୁତ୍ୱପୂର୍ଣ୍ଣ ମନସ୍ତାତ୍ତ୍ୱିକ ନିୟମମାନ ନିରୂପିତ ହୋଇଛି, ଏବଂ ଏଗୁଡ଼ିକ କେବଳ ଅସ୍ପଷ୍ଟରୂପେ ହିଁ ନିରୂପିତ ହୋଇଛି । ଏକ ଅନୁରୂପ କ୍ଷେତ୍ରର ବିଚାର କରାଯାଉ । ନିଉଟନଙ୍କ ଆଗରୁ, ଜୁଆର-ଭଟ୍ଟା ଘଟଣାର 'ଅର୍ଥ' ସମ୍ବନ୍ଧରେ ବୈଜ୍ଞାନିକମାନଙ୍କ ମନରେ ଅତ୍ୟଧିକ ସନ୍ଦେହ ରହିଥିଲା; ଏବଂ ଏହାକୁ 'ସାଗର ଶାସକ' ଚନ୍ଦ୍ରର କଳାଗୁଡ଼ିକ ସହିତ ସଂଯୁକ୍ତ କରିବା ନିମନ୍ତେ ବିଚିତ୍ର ଧରଣର 'ସହାନୁଭୂତି' ଏବଂ 'ସାଦୃଶ୍ୟ' ସମ୍ବନ୍ଧଗୁଡ଼ିକୁ ସ୍ୱୀକାର୍ଯ୍ୟରୂପେ ଗ୍ରହଣ କରାଯାଉଥିଲା । ବ୍ୟାପକତର ଏକ-ରୂପତାଗୁଡ଼ିକର ଜ୍ଞାନର ଅଭିବୃଦ୍ଧି ହେତୁ ଏପ୍ରକାର କଳ୍ପନା ପ୍ରସୂତ ସମ୍ବନ୍ଧର ନିରାକରଣ ସମ୍ଭବପର ହେଲା । ସେହିପରି, ମନସ୍ତାତ୍ତ୍ୱିକ ନିୟମମାନଙ୍କ ଅଧିକ ନିର୍ଭୁଲ ଜ୍ଞାନଦ୍ୱାରା ଆମେ 'ଅର୍ଥ', 'ଜାଣିବା', 'ର ଉଦ୍ଦେଶ୍ୟ ହେବା', 'ସଚେତନତା' ଓ 'ସଙ୍କେତ' ସଦୃଶ ସମ୍ବନ୍ଧଗୁଡ଼ିକୁ ମଧ୍ୟ ଭାଷାଗତ କାଳ୍ପନିକ ସମ୍ବନ୍ଧ ବୋଲି ବିବେଚନା କରିବାକୁ ସମର୍ଥ ହେବା । ଏଗୁଡ଼ିକର ସ୍ଥାନ ପର୍ଯ୍ୟବେକ୍ଷଣୀୟ ସହ ସମ୍ବନ୍ଧମାନଙ୍କ ଦ୍ୱାରା ପୂରଣ କରାଯିବ ।

---

(୧) ତୁଳନା କର, ତୃତୀୟ ପରିଚ୍ଛେଦ ।

ଏ ପ୍ରକାର ଏକ ମତଭେଦରୁ ଉତ୍ଥାପିତ ସର୍ବାଧିକ ପ୍ରଥାଗତ ଆପତ୍ତିଗୁଡ଼ିକ ଅନ୍ତର୍ନିରୀକ୍ଷଣ ଉପରେ ଅଯଥା ଆସ୍ଥା ସ୍ଥାପନ କରିବା ହେତୁରୁ ଜାତ ହୋଇଥାଏ । ଅନ୍ୟାନ୍ୟ ଅବଧାରଣ ପରି ଅନ୍ତର୍ନିରୀକ୍ଷଣ ମୂଳକ ଅବଧାରଣମାନ ମଧ୍ୟ ବ୍ୟାଖ୍ୟା ଆମେ 'ବର୍ଷା ହେବ ବୋଲି ମୁଁ ଭାବୁଛି'—ଏହି ଅବଧାରଣ ଗଠନ କରୁଁ କି ବାୟୁମାପକ ଯନ୍ତ୍ରକୁ ଦେଖି 'ବର୍ଷା ହେବାକୁ ଯାଉଛି'—ଏହି ଅବଧାରଣ ଗଠନ କରୁଁ, ଉଭୟ କ୍ଷେତ୍ରରେ, ସମଭାବରେ ଏକ ସଂକେତ ପରିସ୍ଥିତି ସହିତ ଆମେ ସଂପୃକ୍ତ । ଉଭୟ କ୍ଷେତ୍ରରେ, ଏକ ପୂର୍ବବର୍ତ୍ତୀ ଅନୁକୂଳନ କିମ୍ବା ତାହାର କୌଣସି ଏକ ଅଂଶ କିମ୍ବା ତାହାର ଏକ ସହଚରୀ ବିଷୟକୁ ସଂକେତ ରୂପେ ଗ୍ରହଣ କରି ଆମେ ଏକ ଦ୍ୱିତୀୟ ସ୍ତରର ଅନୁକୂଳନ କରୁଛୁ । ଏଠାରେ ପୂର୍ବବର୍ତ୍ତୀ ଅନୁକୂଳନର ଏକ ଅଂଶ ଅଥବା ତାହାର ଏକ ସହଚରୀ ବିଷୟକୁ ସଂକେତରୂପେ ଗ୍ରହଣ କରିବା ଅଧିକ ପ୍ରଥାଗତ । ଉଦାହରଣ ସ୍ୱରୂପ, ଅନ୍ତର୍ନିରୀକ୍ଷଣ କ୍ଷେତ୍ରରେ ଆମେ ଯେଉଁ ନିର୍ଦ୍ଦେଶ ସମ୍ବନ୍ଧରେ ଅବଧାରଣ ଗଠନ କରିବାକୁ ଚେଷ୍ଟା କରୁଛୁ, ତାହାକୁ ପ୍ରତୀକାନ୍ୱିତ କରୁଥିବା ଶବ୍ଦକୁ ଆମେ ସଂକେତରୂପେ ଗ୍ରହଣ କରିପାରୁ । ଏହିପରି ଶବ୍ଦ ପାଇବାରେ ଅସଫଳ ହେଲେ, କୌଣସି ଅବାଚନିକ ପ୍ରତୀକକୁ ମଧ୍ୟ ଆମେ ସଂକେତ ସ୍ୱରୂପ ଗ୍ରହଣ କରିପାରୁ । ପୁଣି ଏଥିରେ ମଧ୍ୟ ଆମେ ଯଦି ଅସଫଳ ହେଉଁ, ତେବେ ନିର୍ଦ୍ଦେଶର ସହଚରୀ ଅସ୍ପଷ୍ଟ ଅନୁଭବକୁ ସୁଦ୍ଧା ଆମେ ସଂକେତ ସ୍ୱରୂପ ଗ୍ରହଣ କରିପାରୁଁ । ଅବଶ୍ୟ ଆମ ନିଜର ଅନୁକ୍ରିୟାଗୁଡ଼ିକ ପ୍ରତି ଆମେ ସାକ୍ଷାତ୍ଭାବେ ଅନୁକ୍ରିୟାଶୀଳ ହେବା ସମ୍ଭବପର; ଅଭ୍ୟାସଗତ ଓ ପ୍ରତ୍ୟକ୍ଷମୂଳକ କ୍ରିୟାର ଏକ ଦୀର୍ଘ ଶୃଙ୍ଖଳ କ୍ଷେତ୍ରରେ ସର୍ବଦା ଆମେ ଏହା ହିଁ କରିଥାଉଁ । କିନ୍ତୁ ଏ ପ୍ରକାର ଅନୁକ୍ରିୟା ସ୍ୱଭାବତଃ ଅଚେତନ ହୋଇଥିବାରୁ, ଅର୍ଥାତ୍ ତାହା କୌଣସି ବିଷୟର ଚେତନ ହୋଇ ନଥିବାରୁ, ଚିନ୍ତନ ସ୍ୱଭାବର କୌଣସି ମତ ସପକ୍ଷରେ ବା ବିପକ୍ଷରେ ସାକ୍ଷ୍ୟ ପ୍ରମାଣ ଯୋଗାଉଥିବା ଅନ୍ତର୍ନିରୀକ୍ଷଣମୂଳକ ଅବଧାରଣମାନଙ୍କରେ ତାହା ଆମକୁ ଉପନୀତ କରାଇ ପାରେନାହିଁ । ଏ ପ୍ରକାର ଅବଧାରଣଗୁଡ଼ିକ ଚେତନର ହିଁ ମନନାତ୍ମକ ସମୀକ୍ଷା ଉପରେ ଆଧାରିତ ବୋଲି ଜଣାପଡ଼ିବା ସୁନିଶ୍ଚିତ । ସୁତରାଂ ସେଗୁଡ଼ିକ ହେଉଛି ଏପରି ବ୍ୟାଖ୍ୟା, ଯାହାର ସଂକେତଗୁଡ଼ିକ ସଂପୃକ୍ତ ନିର୍ଦ୍ଦେଶମାନଙ୍କ ସେ କୌଣସି ସହଚରୀ ଚେତନ ଉପାଦାନରୁ ଗୃହୀତ । ଏକଥା ନିଶ୍ଚିତ ଯେ ଏହି ସଂକେତଗୁଡ଼ିକ ଅବିଶ୍ୱାସ୍ୟ ଓ ଦୁର୍ବ୍ୟାଖ୍ୟେୟ । ଏଗୁଡ଼ିକ ପ୍ରାୟଶଃ ଅସ୍ପଷ୍ଟ ତଥା ଅନିର୍ଦ୍ଦିଷ୍ଟ ଅନୁଭବ ବ୍ୟତୀତ ଆଉ ଅଧିକ କିଛି ନୁହେଁ । ତେଣୁ ଆମେ ପ୍ରତୀକାନ୍ୱିତ କରିବା ପଦ୍ଧତି ପ୍ରବେଶ କରାଇବାକୁ ଆଗ୍ରହାନ୍ୱିତ ହେଉ ଏବଂ ତଦ୍ଦ୍ୱାରା ଅଧିକତ ତଥା ସ୍ପଷ୍ଟତର ସଂକେତ ପାଇବାକୁ ଆଶା ରଖୁଁ । ଉଦାହରଣ ସ୍ୱରୂପ, ଅବଧାରଣର ବିଶ୍ଳେଷଣ ବୋଲି ବୁଝାଯାଉଥିବା କାର୍ଯ୍ୟକୁ ଆମେ ଯେତେବେଳେ ସାକ୍ଷାତ୍ ଅନ୍ତର୍ନିରୀକ୍ଷଣ ଦ୍ୱାରା ସମ୍ପାଦନ କରିବାକୁ ପ୍ରୟାସ କରୁ, ସେତେବେଳେ

ନିୟମାନୁଗତଭାବେ ଆମ ପ୍ରଣାଳୀ ବିକଳ୍ପ ପ୍ରତୀକମାନଙ୍କ ବ୍ୟବସ୍ଥା କରିବାକୁ ଆମକୁ ପ୍ରଭାବିତ କରେ; ଏବଂ ଏହି ବିକଳ୍ପ ପ୍ରତୀକମାନ ସେହି ଏକ ନିର୍ଦ୍ଦେଶକୁ ପ୍ରତୀକାନ୍ୱିତ କରୁଛି ବୋଲି ନିଜର ଦୃଢ଼ବିଶ୍ୱାସ ଜାତ କରାଇବାକୁ ଆମେ ଚେଷ୍ଟାକରୁଁ । ଆମେ ତାପରେ କହୁଁ ଯେ ଗୋଟିଏ ପ୍ରତୀକକୁ ଆମେ ଅନ୍ୟ ଏକ ପ୍ରତୀକଦ୍ୱାରା ଅର୍ଥ କରୁଛୁଁ । ମୌଳିକ ଉପାଦାନ ସଂକ୍ରାନ୍ତୀୟ ଆଧୁନିକ ଯୁକ୍ତିଗୁଡ଼ିକର ଅଧିକାଂଶ କ୍ଷେତ୍ରରେ ଏହି ପ୍ରକାର କେତେକ ପଦାର୍ଥିକ କିମ୍ବା ନିଷ୍ପତ୍ତିକ ସ୍ୱୀକାର ଏକ ଅପରିହାର୍ଯ୍ୟ ସୋପାନ ସ୍ୱରୂପ ରହିଥିବା ବିଷୟ ଲକ୍ଷ୍ୟ କରାଯାଇ ପାରିବ । ସୁତରାଂ ଏ ପ୍ରକାର ସ୍ୱୀକାରଗୁଡ଼ିକ ନିମନ୍ତେ କି ଧରଣର ସାକ୍ଷ୍ୟପ୍ରମାଣ ମିଳୁଛି, ତାହା ବିଚାର କରିବା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ଏଠାରେ ପ୍ରଥାଗତ ଉତ୍ତର ହେବ ଯେ ଏହା ଏକ ସାକ୍ଷ୍ୟପ୍ରମାଣ ସଂକ୍ରାନ୍ତୀୟ ବ୍ୟାପାର ନୁହେଁ । ଏହା ହେଉଛି ଏକ ଅବ୍ୟବହିତ ଦୃଢ଼ବିଶ୍ୱାସ ବିଷୟକ ବ୍ୟାପାର । କିନ୍ତୁ ଏହି ସାକ୍ଷାତ୍ ନିଶ୍ଚିତଗୁଡିକ ଘଡ଼ିକୁ ଘଡ଼ି ପରିବର୍ତ୍ତିତ ହେବା ଏବଂ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ କ୍ଷେତ୍ରରେ ଭିନ୍ନ ଭିନ୍ନ ହେବା ସୁପରିଜ୍ଞାତ । ଏଗୁଡିକ ବାସ୍ତବରେ ହେଉଛି ଅନୁଭବ; ଏବଂ ସେହି ହେତୁରୁ ଏଗୁଡ଼ିକର କାରଣ, ଯଦି ଅନୁସନ୍ଧାନ କରାଯାଇ ପାରେ, ତେବେ ଜଣା ପଡ଼ିବ ଯେ ତାହା ଏଗୁଡ଼ିକର ପ୍ରାମାଣିକତା ପ୍ରଶ୍ନ ପ୍ରତି ଅବାନ୍ତର ନୁହେଁ । ଏବେ ଦେଖା-ଯିବ ଯେ ଗୋଟିଏ ପ୍ରତୀକ ଅନ୍ୟ ଏକ ପ୍ରତୀକର ଯଥାର୍ଥ ବିଶ୍ଳେଷଣ ବୋଲି, ଅର୍ଥାତ୍ ଉଭୟ ପ୍ରତୀକଦ୍ୱାରା ପ୍ରତୀକାନ୍ୱିତ ହୋଇଥିବା ନିର୍ଦ୍ଦେଶ ଦୁଇଟିର ତାଦାତ୍ମ୍ୟ ରହିଛି ବୋଲି ଦୃଢ ବିଶ୍ୱାସର ମୁଖ୍ୟ କାରଣ, ସଂପୃକ୍ତ ନିର୍ଦ୍ଦେଶ ଦୁଇଟିରେ ମିଳିପାରୁଥିବା ଅନ୍ୟ କୌଣସି ଚରିତ୍ରର ସାଦୃଶ୍ୟରେ ଥାଏ । ଏଠାରେ ମାନସିକ ପ୍ରତିମା ଅବାନ୍ତର ବୋଲି ପ୍ରାୟଶଃ ସ୍ୱୀକୃତ ହୁଏ । ତେଣୁ ଏହି ଚରିତ୍ରଗୁଡ଼ିକ ମଧ୍ୟ ପୁଣି ଅନୁଭବ ହେବ । ଏଗୁଡ଼ିକ ହେଉଛି— ନିର୍ଦ୍ଦେଶମାନଙ୍କ ସହଗ୍ରସ୍ତ ଅନୁଭବ, ନିର୍ଦ୍ଦେଶମାନଙ୍କ ସହିତ ପ୍ରତୀକଗୁଡ଼ିକର କାରଣିକ ସମ୍ବନ୍ଧର ଅସଂଜନତା ବା ଅନାସଂଜନତାର ଅନୁଭବ ଏବଂ ପ୍ରତୀକଗୁଡ଼ିକର କେବଳ ବାହ୍ୟିକ ସାଦୃଶ୍ୟ ବା ବୈସାଦୃଶ୍ୟ ଜନିତ ଅନୁଭବ । ଏଥିରୁ ସୂଚିତ ଯେ ଅନୁଭବମାନଙ୍କ ଏହି ଗଣ୍ଠିଲ ଅସ୍ପଷ୍ଟ ଜାଲିକା ହିଁ ହେଉଛି ଆମ ଅନ୍ତର୍ନିରୀକ୍ଷଣମୂଳକ ନିଶ୍ଚିତଗୁଡ଼ିକର ଆଧାର । ସୁତରାଂ ସାକ୍ଷାତ୍ ପରିଦର୍ଶନ ଓ ବିଶ୍ଳେଷଣ ପ୍ରଣାଳୀ ଦ୍ୱାରା ଆମର ମତାମତମାନଙ୍କ ସ୍ପଷ୍ଟୀକରଣ ଦୁରୂହ ଜଣାପଡ଼ିବାରେ ଅଥବା ଏତଦ୍‌ଲବ୍ଧ ଫଳ ବାଦବିବାଦ ସୃଷ୍ଟି କରୁଥିବାରେ ବିସ୍ମିତ ହେବାର କିଛି ନାହିଁ ।

'ମୁଁ ଚିନ୍ତା କରୁଛି', 'ତାହା ଗୋଟିଏ ଚଉକି', 'ଏହା ଉତ୍ତମ'—ଏହିପରି ଅତି ସାଧାରଣ ଧରଣର ଅବଧାରଣା ଗଠନ କଲାବେଳେ ଠିକ୍ କଣ ଅବଧାରିତ

ହେଉଛି, ତାହା ନିର୍ଦ୍ଧାରଣ କରିବାର ପ୍ରୟାସ ଯେଉଁମାନେ କରିଛନ୍ତି, ସେମାନେ ଉପର୍ଯ୍ୟୁକ୍ତ ମତକୁ ହଠାତ୍ ଅଗ୍ରାହ୍ୟ କରିଦେବାକୁ ପ୍ରସ୍ତୁତ ହେବେ ନାହିଁ । ବାସ୍ତବିକ ଅନ୍ୟାନ୍ୟ କ୍ଷେତ୍ରର ଅଧିକାଂଶ ଅବଧାରଣମାନଙ୍କ ଅପେକ୍ଷା ଏହି ଦ୍ୱିତୀୟ ପ୍ରକାର ଅବଧାରଣମାନଙ୍କ କ୍ଷେତ୍ରରେ ଯେ ଆମେ ବହୁ ପରିମାଣରେ ଭ୍ରାନ୍ତିର ବଶବର୍ତ୍ତୀ ପ୍ରାୟଶଃ ହୋଇଥାଉଁ, ଏ କଥାର ସମ୍ଭବପରତା ଖୁବ୍ ବେଶୀ । ଏହାର ସୁପ୍ରତ୍ୟକ୍ଷ କାରଣ ହେଉଛି ଯେ ଏହି କ୍ଷେତ୍ରରେ ତଥ୍ୟାପନ ଅତ୍ୟନ୍ତ କଷ୍ଟସାଧ୍ୟ । ସମର୍ଥନ କାରକ (୧) ସାକ୍ଷ୍ୟପ୍ରମାଣ ନଥିଲେ, କୌଣସି ବ୍ୟକ୍ତିର ନିର୍ଦ୍ଦେଶ ବା 'ଅର୍ଥ' ବିଷୟକ ନିଷ୍ପତ୍ତିର କୌଣସି ମୂଲ୍ୟ ନାହିଁ, ଯଦିଓ ଏ ପ୍ରକାର ଆତ୍ମବିଶ୍ୱାସର ବିଲୋପ ସହଜରେ ଘଟେ ନାହିଁ ।

ନିର୍ଦ୍ଦେଶର ସହଗୃହୀ ଅବାଚନିକ ସଂବେଦନ ଗୁଡ଼ିକ ଓ ମାନସିକ ପ୍ରତିମାଗୁଡ଼ିକ ଏ ପ୍ରକାର ଅବିଶ୍ୱାସୀ ସଂକେତ ହୋଇଥିବା ଯୋଗୁ ହିଁ ପ୍ରତୀକଗୁଡ଼ିକ ଏତେ ଗୁରୁତ୍ୱପୂର୍ଣ୍ଣ । ସାଧାରଣତଃ ଆମ ପ୍ରତୀକାନ୍ୱିତକରଣ ପଦ୍ଧତିକୁ ଆମେ ଆମର ଅର୍ଥର ନିର୍ଦ୍ଦେଶକ ରୂପେ ଗ୍ରହଣ କରୁଁ ଏବଂ ସହଗୃହୀ ସଂକେତ-ଅନୁଭବ ଗୁଡ଼ିକ ଆମ ପ୍ରତୀକମାନଙ୍କ ଅନୁଭବଗୁଡ଼ିକ ସହିତ ଅବିଚ୍ଛେଦ୍ୟଭାବେ ସମ୍ମିଶ୍ରିତ ହୋଇଯାଏ । କିନ୍ତୁ କେତେକ ପରିସ୍ଥିତିରେ ସମସ୍ତ ଲଭ୍ୟ ପ୍ରତୀକ, ସେଗୁଡ଼ିକ ଦ୍ୱାରା ପ୍ରତୀକାନ୍ୱିତ ହେବାକୁ ଥିବା ନିର୍ଦ୍ଦେଶ ପ୍ରତି ଅନୁପଯୋଗୀ ବୋଲି ଅନୁଭୂତ ହୋଇପାରେ ଏବଂ ଏହି ଘଟଣାରୁ ସୂଚିତ ହେଉଛି ଯେ ପ୍ରତୀକମାନଙ୍କ ବ୍ୟତୀତ ଅନ୍ୟାନ୍ୟ ଅନୁଭବମୂଳକ

---

(୧) ଏହି ସମର୍ଥନ କାରକ ସାକ୍ଷ୍ୟପ୍ରମାଣ ଓ ତାହାର ମୂଲ୍ୟ, ଅର୍ଥାତ୍ ସହଯୋଗୀ ସଂକେତମାନ ବା ପ୍ରାସଙ୍ଗିକ ଆଚରଣ ଠିକ୍ କି ପ୍ରକାର ହେବ ତାହା ଗବେଷଣାର ବିଷୟ । ଉଦାହରଣ ସ୍ୱରୂପ, ଅଧିକାଂଶ ଶବ୍ଦ-ସାହଚର୍ଯ୍ୟ ପରୀକ୍ଷଣ ସନ୍ଦେହାତ୍ମକ ପ୍ରାକ୍ସ୍ୱୀକାର ଉପରେ ନିର୍ଭର କରି ପରିକଳ୍ପିତ ହୁଏ । ତେଣୁ ଅବାଚନିକ ସଂକେତ ଓ ବାଚନିକ ସଂକେତ (ଅର୍ଥାତ ପ୍ରତୀକ) ଗୁଡ଼ିକ ସହିତ ତତ୍ସମ୍ପୃକ୍ତ ଅବଧାରଣ ପ୍ରଣାଳୀମାନଙ୍କ ସମ୍ବନ୍ଧମୂଳକ ସମସ୍ୟା ପ୍ରାୟଶଃ ଉଠାଯାଇ ନାହିଁ । ନିର୍ଦ୍ଦେଶର ସାକ୍ଷ୍ୟ ପ୍ରମାଣ ହିସାବରେ ପ୍ରତୀକାନ୍ୱିତକରଣର ମୂଲ୍ୟ ବିଷୟକ ସମ୍ପୂର୍ଣ୍ଣତଃ ସମୀକ୍ଷାରହିତ ପ୍ରାକ୍ସ୍ୱୀକାରଗୁଡ଼ିକ ଉପରେ ନିର୍ଭର କରି ମନସ୍ତାତ୍ତ୍ୱିକ ପରୀକ୍ଷଣମାନ ପରିଚାଳିତ ହୁଏ ଏବଂ ଏଗୁଡ଼ିକର ସତ୍ୟାସତ୍ୟ ଉପରେ ପରୀକ୍ଷଣମୂଳକ ମନସ୍ତତ୍ତ୍ୱର ଏକ ବିରାଟ ଅଂଶ ଯଥାର୍ଥ ବା ଭ୍ରାନ୍ତ ହେବା ସୁନିଶ୍ଚିତ । ତେଣୁ ଏହି ସମସ୍ୟା ଅବଧାନଯୋଗ୍ୟ ମନେ ହୁଏ ।

ସଂକେତ ଲାଭ କରିବା ସମ୍ଭବପର । ସୁତରାଂ ଆମ ପ୍ରତୀକମାନଙ୍କ ଉପରେ ଆମେ **ସଂପୂର୍ଣ୍ଣରୂପେ** ନିର୍ଭରଶୀଳ ନୋହୁଁ ।

ତଥାପି ଆମେ ଯାହା ଅର୍ଥ କରୁଛୁଁ, ତାହାର ସୂଚକ ରୂପେ ପ୍ରତୀକମାନଙ୍କ ଉପରେ ଅପାର ଆସ୍ଥାସ୍ଥାପନର ସୁପ୍ରତ୍ୟକ୍ଷ କାରଣମାନ ରହିଛି; ଏହିପରି ଆସ୍ଥା ସ୍ଥାପନ ହେଉଛି ଗାଣିତିକଙ୍କ ଏବଂ ଅନ୍ୟାନ୍ୟ ଅପକର୍ଷଣମୂଳକ ଚିନ୍ତାରତ ବ୍ୟକ୍ତିଙ୍କ ଏକ ବୈଶିଷ୍ଟ୍ୟ । ଏହିପରି ବିଷୟମାନଙ୍କ କ୍ଷେତ୍ରରେ, ଯଥାର୍ଥରୂପେ ବ୍ୟବହୃତ ପ୍ରତୀକମାନ ହେଉଛି ସହଜରେ ପୃଥକ୍‌କରଣ ଯୋଗ୍ୟ ହୋଇ ନଥିବା ସହଗୃହୀ ଅନୁଭବ ଗୁଡ଼ିକର ଅପରିହାର୍ଯ୍ୟ ପ୍ରତିସ୍ଥାପନୀୟ ଚିହ୍ନ । ଉଦାହରଣ ସ୍ୱରୂପ, ୧୦୨ ଆତଫଳ ନିର୍ଦ୍ଦେଶର ସହଗୃହୀ ଅନୁଭବକୁ ୧୦୩ ଆତଫଳ ନିର୍ଦ୍ଦେଶର ସହଗୃହୀ ଅନୁଭବଠାରୁ ପୃଥକ୍ କରିବା ସହଜ ନୁହେଁ । ଏହି ପ୍ରତୀକ ଗୁଡ଼ିକର ଅବର୍ତ୍ତମାନରେ ଏହି ଦୁଇଟି ନିର୍ଦ୍ଦେଶ ମଧ୍ୟରୁ ଗୋଟିକୁ ଅପରଟିରୁ ପୃଥକ୍ କରିବାକୁ ଆମେ ଅସମର୍ଥ ହୋଇଥାଉ । ଆକର୍ଷଣମୂଳକ ଚିନ୍ତାରେ ନୀତିଗତଭାବେ, ଏବଂ ଅଧିକାଂଶ ଚିନ୍ତାଶୀଳ ବ୍ୟକ୍ତିଙ୍କ ପକ୍ଷରେ, ଆମ ନିର୍ଦ୍ଦେଶଗୁଡ଼ିକ ଆମର ପ୍ରତୀକମାନଙ୍କୁ ନିର୍ଦ୍ଧାରଣ କରିବା ପରିବର୍ତ୍ତେ, ପ୍ରତୀକମାନଙ୍କ ପାରସ୍ପରିକ ସମ୍ବନ୍ଧ ଓ ସଂଯୁକ୍ତ ଆମ ନିର୍ଦ୍ଦେଶକୁ ନିର୍ଦ୍ଧାରଣ କରେ । ଏଠାରେ ପଦ୍ଧତିଗତ କେତେକ ନିୟମର ଲଙ୍ଘନ ଯେପରି ନହୁଏ, ଆମେ କେବଳ ସେତିକି ଜଗିଲେ ହେଲା । ଏହି ନିୟମମାନଙ୍କ ମଧ୍ୟରୁ କେତେକ ବ୍ୟାକରଣ ଶାସ୍ତ୍ରରେ ସାହିତ୍ୟିକ ବ୍ୟବହାର ଓ ବାକ୍ୟ ଗଠନର ପ୍ରଚଳିତ ସ୍ୱୀତି ବିଷୟକ ଅଂଶରେ ଲିପିବଦ୍ଧ; ଏଗୁଡ଼ିକ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ । କିନ୍ତୁ ଅନ୍ୟାନ୍ୟ ନିୟମ ଏକ ସଂପୂର୍ଣ୍ଣ ଭିନ୍ନ ପର୍ଯ୍ୟାୟଭୁକ୍ତ । ସାଧାରଣ ବସ୍ତୁ ପ୍ରକୃତିଠାରୁ ନ୍ୟୂନ କୌଣସି ବିଷୟରୁ ଏହି ନିୟମମାନ ଉଦ୍ଭୂତ ହୋଇ ନାହିଁ । ଯେ କୌଣସି ବିଷୟ ପ୍ରତି ନିର୍ଦ୍ଦେଶ କରାଯାଇ ଥାଉ ନା କାହିଁକି, ଯଦି କୌଣସି ପ୍ରତୀକତନ୍ତ୍ର ଏହି ନିୟମାବଳୀର ଅନୁବର୍ତ୍ତୀ ନ ହୁଏ, ତେବେ ତାହା ନିର୍ଦ୍ଦେଶ ଲିପିବଦ୍ଧକରଣର ମାଧ୍ୟମରୂପେ ଅକାମୀ ହୋଇଯିବା ସୁନିଶ୍ଚିତ । ଏହି ଦୃଷ୍ଟିରୁ ଏହି ନିୟମାବଳୀକୁ ତାର୍କିକ ନିୟମ କୁହାଯାଇ ପାରେ । ପ୍ରତୀକତନ୍ତ୍ରର ଏହି ମୌଳିକ ଆବଶ୍ୟକ ନିୟମ ଏବଂ ଉକ୍ତ ବାକ୍ୟାଳାପର ଉପର୍ଯ୍ୟୁକ୍ତ ଗୌଣ ଧରଣର ନିୟମ ବହୁଦିନରୁ କେତେକ ଗଣ୍ଡଗୋଳର ସମ୍ମୁଖୀନ ହୋଇଛି । **ପଞ୍ଚମ** ପରିଚ୍ଛେଦରେ, ପ୍ରଥମ ପ୍ରକାର କେତେକ ନିୟମର ଆଲୋଚନା କରିବା ସୁଯୋଗ ମିଳିଥିଲା । ଆମର ଶେଷ ପରିଚ୍ଛେଦରେ, ଆମେ ଯେତେବେଳେ ପ୍ରତୀକ ପରିସ୍ଥିତି ସମ୍ପର୍କରେ ଆଲୋଚନା କରିବା, ସେତେବେଳେ ଦ୍ୱିତୀୟ ପ୍ରକାର କେତେକ ନିୟମର ଉଲ୍ଲେଖ କରାଯିବ ଏବଂ ସେଗୁଡ଼ିକ ଉପରେ କେତେକ ମନ୍ତବ୍ୟ ଦିଆଯିବ ।

ଏହି ତାର୍କିକ ଆବଶ୍ୟକତା ଗୁଡ଼ିକ ପୂରଣ ହୋଇ ପାରୁଥିଲେ, ମୁଖ୍ୟତଃ, ସର୍ଜ୍ଞାଦୃଷ୍ଟିରୁ ଅନ୍ୟୋନ୍ୟସାପେକ୍ଷ ହୋଇଥିବା ପ୍ରତୀକମାନଙ୍କ ମାଧ୍ୟମରେ, ଆମେ ନିର୍ଦ୍ଦେଶଗୁଡ଼ିକର ସଂଯୋଗ ବିଧାନ କରିବାକୁ, ଅଥବା ଭିନ୍ନ ଭାବରେ କହିଲେ, ଭିନ୍ନ ଭିନ୍ନ ନିର୍ଦ୍ଦେଶର ସାଧାରଣ ଅଂଶ ଆକର୍ଷଣ କରିବାକୁ ସମର୍ଥ ହେଉଁ; ଅର୍ଥାତ୍ ଭିନ୍ନ ଭିନ୍ନ ସ୍ତରର ସାମାନ୍ୟତା ବର୍ଗରରୁ ନିର୍ଦ୍ଦେଶମାନଙ୍କ ପାର୍ଥକ୍ୟ ପ୍ରଦର୍ଶନ, ତୁଳନା ଓ ସଂଯୋଗ କରିବା ନିମନ୍ତେ ଆମେ ସମର୍ଥ ହେଉଁ । ଏହି ବିଭିନ୍ନ ପ୍ରକାର ଅନୁକୂଳନର ସଂଯୋଗ ଦ୍ୱାରା ଏକ ବିଶିଷ୍ଟ ଅବଧାରଣ ଗଠନ ହେଉଛି ସେହି ପ୍ରଣାଳୀ, ଯାହାକୁ ସାଧାରଣତଃ ଚିନ୍ତନ ବୋଲି କୁହାଯାଏ । ସାଧାରଣତଃ ଏହି ପ୍ରକ୍ରିୟା ପ୍ରତୀକମାନଙ୍କ ବ୍ୟବହାର ଦ୍ୱାରା ଏକ ଦୀର୍ଘ ଶୃଙ୍ଖଳ ମାଧ୍ୟମରେ ତିଷ୍ଠିରହେ । କୌଣସି ଦତ୍ତ ମୁହୂର୍ତ୍ତରେ ଅନୁପଲଭ୍ୟ ଉଦ୍ଦୀପନମାନଙ୍କ ପ୍ରତିସ୍ଥାପନୀୟ ଚିହ୍ନରୂପେ, ସମାଯୋଜନମାନଙ୍କ ବିଶଦ-କାରଣାନୁବନ୍ଧର ପରିଣତ ସଂରକ୍ଷକ ରୂପେ ଏବଂ ଏହି ସମାଯୋଜକ ମାନଙ୍କ ପୁନଃସଂସ୍ଥାନର ସାଧନ ବ୍ୟବସ୍ଥାପକ ରୂପେ ଏହି ପ୍ରତୀକଗୁଡ଼ିକ ଏତେ ଶକ୍ତିଶାଳୀ, ଏତେ ସନ୍ଧିଗ୍ଧ ଭାବରେ ବ୍ୟାପୃତ ଏବଂ ଏତେ ଜଟିଳଭାବେ ପରସ୍ପର ସଂଶ୍ଳିଷ୍ଟ ହୋଇଯାଏ ଯେ ଯାହା ଘଟୁଥାଏ, ତାହା ପ୍ରାୟ ସମ୍ପୂର୍ଣ୍ଣରୂପେ ଆମଠାରୁ ଲୁକ୍‌କାୟିତ ହୋଇ ରହେ । ତାପରେ, ବିଭିନ୍ନ ପ୍ରକାର ସତ୍ତା, ଗୁଣ, ପ୍ରତିଜ୍ଞପ୍ତି, ସଂଖ୍ୟା, କ୍ରିୟା, ସାମାନ୍ୟ ଗୁଡ଼ିକ ସହିତ ଏକ ଅନୁପମ ସମ୍ବନ୍ଧରେ, ଅର୍ଥାତ୍ ଜ୍ଞାନ ସମ୍ବନ୍ଧରେ ଆମେ ନିଜକୁ ଅନ୍ୱିତ ବୋଲି ବିବେଚନା କରିବସୁଁ । ଏହି ସତ୍ତାଗୁଡ଼ିକ ପ୍ରକୃତରେ ଯାହା, ନେତିପରି, ଅର୍ଥାତ୍ ପ୍ରତୀକାତ୍ମକ ଉପାୟ ବୋଲି ଚିହ୍ନି ରଖିଲେ, ଏଗୁଡ଼ିକ ଅତ୍ୟନ୍ତ ଉପାଦେୟ ହୋଇପାରେ । ଆମେ ଦେଖିସାରିଛୁଁ ଯେ ନିର୍ଦ୍ଦେଶ୍ୟ ରୂପେ ଏଗୁଡ଼ିକର ଗବେଷଣା ପ୍ରୟାସ ଆମକୁ ଦର୍ଶନରେ ଉପନୀତ କରାଏ ଏବଂ ଏତଦ୍ଦ୍ୱାରା ଦାର୍ଶନିକଙ୍କ ନିରଙ୍କୁଶ ସାମ୍ରାଜ୍ୟ ଗଠିତ ହୁଏ ।

ଲକ୍ଷ୍ୟ କରାଯାଇ ପାରେ ଯେ ଯଥାର୍ଥ ବ୍ୟାଖ୍ୟା ପାଇଁ ସଂଜ୍ଞା (୧୬କ) ଓ ସଂଜ୍ଞା (୧୩କ ଖ)ର ଅନ୍ତିମ ପରିଣତି ସମାନ । ଯାହା ସହିତ ସଂକେତ ସମ୍ବନ୍ଧ ଦ୍ୱାରା ସଂକେତଟି ବାସ୍ତବରେ ଅନ୍ୱିତ ତାହା ହେଉଛି ସେହି ସଂକେତର ଯଥାଯଥ ବ୍ୟାଖ୍ୟା ଲବ୍ଧ ଅର୍ଥ (୧୩କ ଙ) । କିନ୍ତୁ ମିଥ୍ୟା ବ୍ୟାଖ୍ୟାକରଣ କ୍ଷେତ୍ରରେ ଏହି ଦୁଇଟି ଅର୍ଥ ଭିନ୍ନ ଭିନ୍ନ । ଏଠାରେ ଅନୁରକ୍ତର ଅନ୍ୟ ଏକ ବିଷୟ ହେଉଛି ଯେ ଏହି ବିବରଣୀ 'ସତ୍ୟର ସମ୍ବନ୍ଧ-ବାଦ'ର ଆବଶ୍ୟକତା ଦୂର କରେ, କାରଣ ଏକ ଯଥାଯଥ ନିର୍ଦ୍ଦେଶରେ ଏପରି କିଛି ନଥାଏ, ଯାହା ସହିତ ସଂକେତର ନିର୍ଦ୍ଦେଶ୍ୟରୂପେ ସଂଜ୍ଞା (୧୬କ) ଅନୁଯାୟୀ ଅର୍ଥ ହୋଇଥିବା ବସ୍ତୁ ବା ଘଟଣା **ସହସମ୍ବନ୍ଧୀ;** ନିର୍ଦ୍ଦେଶ୍ୟ ରୂପେ ଯାହା ଥାଏ, ତାହା ଏହି ବସ୍ତୁ ବା ଘଟଣା ସହିତ ସମ୍ପୂର୍ଣ୍ଣ ଅଭିନ୍ନ । ଇଚ୍ଛାକଲେ, ଆମେ

କହିପାରୁଁ ଯେ ଏକ ନିର୍ଦେଶ ତାହାର ନିର୍ଦେଶ୍ୟର ସହିତ ସମ୍ବନ୍ଧୀ, କିନ୍ତୁ ନିର୍ଦେଶ ସମ୍ବନ୍ଧରେ ଆମେ ଦେଇଥିବା ବିଶଦ ବିବରଣୀର ଏହା ଏକ ସଂକ୍ଷିପ୍ତୀକୃତ ଅଭିବ୍ୟକ୍ତି ମାତ୍ର ।

ଏହି ସମସ୍ତ ବିଚାରକୁ ଦୃଷ୍ଟି ସମକ୍ଷରେ ରଖି, ଏବେ ଆମେ ବକ୍ତା ଓ ଶ୍ରୋତା ପକ୍ଷରେ ଦ୍ୱିବିଧ ଅର୍ଥ ରହିଥିବା ପ୍ରତୀକମାନଙ୍କ ବୈଶିଷ୍ଟ୍ୟ ବିଷୟ ବୁଝିପାରିବା । ଆମେ ସଜ୍ଞା ଦେଇଥିବା ମୁତାବକ ଗୋଟିଏ ପ୍ରତୀକ ଏକ ନିର୍ଦେଶକ୍ରିୟାକୁ ପ୍ରତୀକାନ୍ୱିତ କରେ, ଅର୍ଥାତ୍ ବକ୍ତାଠାରେ ଥିବା ଏହାର କାରଣମାନଙ୍କ ମଧ୍ୟରେ ନିର୍ଦେଶ କ୍ରିୟାମାନ ରହିଥାଏ । ଅବଶ୍ୟ ଏଥି ସହିତ ବକ୍ତାର ଲିପିବଦ୍ଧକରଣ ଓ ପ୍ରକାଶନର ଅଭିଳାଷ ତଥା ଶ୍ରୋତା ପ୍ରତି ଗୃହୀତ ଅଭିବୃତ୍ତିମାନ ମଧ୍ୟ ନିହିତ ରୂପେ ଜଡ଼ିତ । ଏହିପରି ଭାବେ କାରଣପ୍ରସୂତ ହୋଇଥିବାରୁ, ବ୍ୟକ୍ତ ହେବାବେଳେ, ଗୋଟିଏ ପ୍ରତୀକ ଶ୍ରୋତା ପକ୍ଷରେ ଏକ ନିର୍ଦେଶ କ୍ରିୟାର ସଙ୍କେତ ହୋଇଥାଏ । କିନ୍ତୁ ବୁଝିବାରେ ଅସୁବିଧା ହେଉଥିବା କ୍ଷେତ୍ର ବ୍ୟତୀତ ଅନ୍ୟତ୍ର ଏହି ନିର୍ଦେଶ କ୍ରିୟା କୌଣସି ବିଶେଷ ଅନୁରକ୍ତିର ବିଷୟ ହୋଇ ନ ଥାଏ, ଏବଂ ସାଧାରଣତଃ ପ୍ରତୀକଟି ଯାହା ପରିବର୍ତ୍ତେ ବ୍ୟବହୃତ ତାହାର, ଅର୍ଥାତ୍ ତାହା ପ୍ରତୀକାନ୍ୱିତ କରୁଥିବା ନିର୍ଦେଶ ଦ୍ୱାରା ନିର୍ଦେଶିତ ବିଷୟର ତାହା ସଙ୍କେତରୂପେ ଗୃହୀତ ହୁଏ । ଏହି ଅର୍ଥକରଣ ସଫଳ ହୋଇଥିବା କ୍ଷେତ୍ରରେ, ବକ୍ତା କରୁଥିବା ନିର୍ଦେଶ ସହିତ ସମସ୍ତ ପ୍ରାସଙ୍ଗିକ ବିଷୟରେ ଅନୁରୂପ ହୋଇଥିବା ଏକ ନିର୍ଦେଶ ଶ୍ରୋତା ମଧ୍ୟ କରିଥାଏ । ଏହାହିଁ ପ୍ରତୀକକୁ ସଙ୍କେତରୂପେ ତାହାର ବୈଶିଷ୍ଟ୍ୟ ଦିଏ । ସୁତରାଂ ଭାଷା ବ୍ୟବହାର ବା ତାହାର ଆଦାନ ପ୍ରଦାନର ସଜ୍ଞା ନିମ୍ନୋକ୍ତଭାବେ ଦିଆଯାଇ ପାରେ । ଏହା ପ୍ରତୀକମାନଙ୍କ ଏପରି ଏକ ବ୍ୟବହାର ଯେ ସେଗୁଡ଼ିକ ଦ୍ୱାରା ବକ୍ତାଠାରେ ପ୍ରତୀକାନ୍ୱିତ ହୋଇଥିବା ନିର୍ଦେଶ କ୍ରିୟାମାନଙ୍କ ସହିତ ସମସ୍ତ ପ୍ରାସଙ୍ଗିକ ବିଷୟରେ ଅନୁରୂପ ନିର୍ଦେଶ କ୍ରିୟାମାନ ଶ୍ରୋତାଠାରେ ତଦ୍ଦ୍ୱାରା ସଙ୍ଘଟିତ ହୁଏ ।

ଏହି ଦୃଷ୍ଟିକୋଣରୁ ଏକଥା ସୁସ୍ପଷ୍ଟ ଯେ ଭାବବିନିମୟ ମତବାଦ ନିମନ୍ତେ ସମସ୍ୟା ହେଉଛି ମନସ୍ତାତ୍ତ୍ୱିକ ପ୍ରସଙ୍ଗମାନଙ୍କ ବିଶ୍ଳେଷଣ ତଥା ସୀମା ନିର୍ଣ୍ଣୟନ । ଏହା ଏକ ଆବେହ ସମସ୍ୟା ଏବଂ ଆକାରତଃ ଅନ୍ୟାନ୍ୟ ବିଜ୍ଞାନର ସମସ୍ୟାମାନଙ୍କ ସହିତ ଏହା ସଂପୂର୍ଣ୍ଣରୂପେ ସମାନ । କିନ୍ତୁ ମନସ୍ତାତ୍ତ୍ୱିକ ଘଟଣାମାନଙ୍କ ପର୍ଯ୍ୟବେକ୍ଷଣରେ ଅସୁବିଧା ହେତୁ ଏବଂ ଏ ପର୍ଯ୍ୟନ୍ତ ପର୍ଯ୍ୟବେକ୍ଷିତ ଏ କ୍ଷେତ୍ରର ଏକରୂପତା ଗୁଡ଼ିକର ଅଗଭୀରତା ହେତୁ, ଭାବ ବିନିମୟ ଘଟିଛି କି ଘଟିନାହିଁ ତାହାର ପରୀକ୍ଷା ନିମନ୍ତେ ପ୍ରଯୋଜ୍ୟ ପ୍ରଣାଳୀଗୁଡ଼ିକ ପରୋକ୍ଷ ହୋଇ ରହିଛି । ନିର୍ଦେଶଗୁଡ଼ିକୁ ଆମେ ସାକ୍ଷାତ୍ଭାବେ ପର୍ଯ୍ୟବେକ୍ଷଣ କରିପାରୁ ନ ଥିବାରୁ, ସେଗୁଡ଼ିକର ଅଧ୍ୟୟନ ସଂକେତ ମାଧ୍ୟମରେ କରିବାକୁ

ହିଁ ହୁଏ । ଏହି ମାଧ୍ୟମ ହେଉଛି ହୁଏତ ସହଜଦୃଶ୍ୟ ଅନୁଭବ କିମ୍ବା ପ୍ରତୀକ । ଅନୁଭବଗୁଡ଼ିକ ସ୍ପଷ୍ଟତଃ ଯଥେଷ୍ଟ ନୁହେଁ । ପ୍ରତୀକଗୁଡ଼ିକ ପର୍ଯ୍ୟାପ୍ତ ପରିମାଣରେ ସାଂବେଦନିକ ସୂଚନା (୧) ଯୋଗାଇଥାଏ, କିନ୍ତୁ ପ୍ରତୀକଗୁଡ଼ିକ ମଧ୍ୟ ଆମକୁ ଭ୍ରାନ୍ତ ପଥରେ ପରିଚାଳିତ କରି ପାରେ । ତେଣୁ ସେଗୁଡ଼ିକର ନିୟନ୍ତ୍ରଣ ପାଇଁ ଆମକୁ କୌଣସି ପଦ୍ଧତି ଉଦ୍ଭାବନ କରିବାକୁ ହୁଏ । ଏଥି ନିମନ୍ତେ ହିଁ ସଂଜ୍ଞାର ଗୁରୁତ୍ୱ ରହିଛି । ଯେଉଁ କ୍ଷେତ୍ରରେ ପ୍ରତୀକ-ମାନଙ୍କ ସୂଚିତକରଣ ଶକ୍ତି ଉପରେ ଆସ୍ଥା ସ୍ଥାପନର କାରଣ ରହିଥାଏ, ସେଠାରେ ସମସ୍ତ ବିକଳ୍ପ ଅଭିବ୍ୟକ୍ତି ରହିତ ଏକ ଭାଷା ଯେ ବୈଜ୍ଞାନିକ ଦୃଷ୍ଟିକୋଣରୁ ବାଞ୍ଛନୀୟ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଅଧିକାଂଶ ବିଷୟ କ୍ଷେତ୍ରରେ ଶବ୍ଦମାନଙ୍କ ସମ୍ଭବପର ବିଶ୍ୱାସଘାତକତା କେବଳ ସଂଜ୍ଞା ମାଧ୍ୟମରେ ହିଁ ନିୟନ୍ତ୍ରଣ କରାଯାଇ ପାରେ ଏବଂ ଏ ପ୍ରକାର ବିକଳ୍ପ ଅଭିବ୍ୟକ୍ତି ଗୁଡ଼ିକର ସଂଖ୍ୟା ଯେତେ ଅଧିକ ହେବ ଅସଙ୍ଗତିର ଆଶଙ୍କା ସେତେ ନ୍ୟୂନ ହେବ । କିନ୍ତୁ ଏହାର ସର୍ତ୍ତ ସ୍ୱରୂପ, ଆମକୁ ପ୍ରତୀକମାନଙ୍କ ନିଜସ୍ୱ 'ଅର୍ଥ' ରହିଛି ବୋଲି ମନେ କରିବାକୁ ଏବଂ ତଦ୍ୱାରା ଜଗତକୁ କାଳ୍ପନିକ ସତ୍ତ୍ୱଗୁଡ଼ିକରେ ଭରପୂର କରିବାକୁ କ୍ଷାନ୍ତ ରହିବାକୁ ହେବ ।

ପ୍ରତିଶବ୍ଦ-ପ୍ରଶ୍ନ ସମ୍ଭବତଃ ଉତ୍ତମ ବ୍ୟବହାରର (୧୬ଶ ସଂଜ୍ଞା) ବିଚାର କରିବାକୁ ଆମକୁ ଅଗ୍ରସର କରାଇ ନିଏ । ପ୍ରତୀକାନ୍ୱିତକରଣର ଯଥାର୍ଥତାରେ କଣ ନିହିତ, ତାହା ଆମେ ଆଗରୁ ଦେଖି ସାରିଛୁଁ । ଗୋଟିଏ ପ୍ରତୀକ ଯଥାର୍ଥ, ଯେତେବେଳେ ତାହା ପ୍ରତୀକାନ୍ୱିତ କରୁଥିବା ନିର୍ଦ୍ଦେଶର ଏକ ଅନୁରୂପ ନିର୍ଦ୍ଦେଶ କୌଣସି ଯଥୋପଯୁକ୍ତ ବ୍ୟାଖ୍ୟାକାରଠାରେ ଜାତ କରାଏ । ଏହିପରି ଭାବେ, ଏକ ଦତ୍ତ ଗୋଷ୍ଠୀର ପ୍ରତୀକ-ବ୍ୟବହାରକାରୀଙ୍କ ଠାରେ ଗୋଟିଏ ବିଷୟ ସମ୍ବନ୍ଧରେ ଏକ ନିର୍ଦ୍ଧାର୍ଯ୍ୟତା ଜାତ ହେବ,

---

(୧) ଆମେ ଯାହା କହୁଛୁଁ, ତାହା ଆମକୁ ଦେଖାଇ ଦେବାକୁ ଆମେ କେତେ ପରିମାଣରେ ପ୍ରତୀକମାନଙ୍କ ଉପରେ ନିର୍ଭରଶୀଳ, ତାହାର ଏକ ଦୃଷ୍ଟାନ୍ତ ରେଳ ଟିକଟ ହଜାଇ ଦେଇଥିବା ଜଣେ ବିଶପଙ୍କ କ୍ଷେତ୍ରରେ ରହିଛି । ଏହି ସମ୍ବାଦଟି କିଛିଦିନ ପୂର୍ବେ ପରିବେଷିତ ହୋଇଥିଲା ।

ଟିକଟ ପରୀକ୍ଷକ ଜଣକ ଗିର୍ଜାର ଜଣେ କାର୍ଯ୍ୟ ନିର୍ବାହକ ଥିଲେ; ସେ କହିଲେ, "କିଛି ବ୍ୟସ୍ତ ହେବାର ନାହିଁ; ଆଜ୍ଞା, ସବୁ ଠିକ୍ ଅଛି ।"

ବିଶପ ଉତ୍ତର ଦେଲେ, "ନା, ସବୁ ଠିକ୍ ନାହିଁ ! ଟିକଟ ବିନା ମୁଁ କିମିତି ଜାଣିବି ଯେ ମୁଁ କେଉଁଠିକୁ ଯାଉଛି ?"

ଯାହାକୁ ତାହାର ଯଥାର୍ଥ ଅର୍ଥ ବା ଉତ୍ତମ ବ୍ୟବହାର କୁହାଯିବ । ଏହି ନିଧାର୍ଯ୍ୟ ବିଷୟଟିକୁ କାଳକ୍ରମେ ଆମେ ସଂପୃକ୍ତ କରେଇ **ଏକମାତ୍ର** ଅର୍ଥ ବୋଲି କହି ବସୁଁ । ଯାହା ନିଧାର୍ଯ୍ୟ ହୁଏ, ତାହା ହେଉଛି ସେହି ନିର୍ଦ୍ଦେଶ, ଯାହାକୁ ଏହି ଗୋଷ୍ଠୀର ପ୍ରତ୍ୟେକ ବ୍ୟକ୍ତି ପ୍ରାସଙ୍ଗିକ ଆଲୋଚ୍ୟ ମଣ୍ଡଳର ଯେ କୌଣସି ପରିସ୍ଥିତିରେ ପ୍ରତୀକଟିର ବ୍ୟାଖ୍ୟାକାଳରେ ବ୍ୟବହାର କରିବ । ଏହା ଗୁରୁତ୍ୱପୂର୍ଣ୍ଣ ଯେ ସୀମିତ ପରିସର ବାହାରେ ମଧ୍ୟ ଏହି ଅର୍ଥଗୁଡ଼ିକ ପରିବର୍ତ୍ତିତ ନ ହେବା ଉଚିତ, ଏଥିରେ ସନ୍ଦେହର ଅବକାଶ ନାହିଁ । କିନ୍ତୁ ଏଥିରୁ ଏହି ଅର୍ଥଗୁଡ଼ିକ ଅଲୌକିକ ଭାବେ ପ୍ରତିଷ୍ଠିତ ବା ସ୍ୱଭାବତଃ ଅପରିବର୍ତ୍ତନଶୀଳ ବୋଲି ଗ୍ରହଣ କରିବାର ଆବଶ୍ୟକତା ନାହିଁ । ଆମେ ବରଂ ଏଠାରେ ତୁଳନାର ଏକରୂପ ପ୍ରତିମାନ ରକ୍ଷା କରିବାକୁ ବ୍ୟଗ୍ର ହେବା ଯୁକ୍ତିସଙ୍ଗତ ହେବ । ଶବ୍ଦ ଗୁଡ଼ିକର ଅର୍ଥ ଆବଶ୍ୟିକରୂପେ ଯାହା ହେବା କଥା, ସେଗୁଡ଼ିକର ଅର୍ଥ ସେଇଆ—ଏହି ବାକ୍ୟାଂଶଟି ଏତେ ସାଧାରଣ ହୋଇଥିବାର କାରଣ 'ଆବଶ୍ୟିକ' ପଦର ଦ୍ୱ୍ୟର୍ଥକତାରେ ରହିଛି । ଭାବବିନିମୟର ଏକ ପ୍ରୟୋଜନୀୟ ଅଙ୍ଗ ହେବା ବିଷୟ ପରିବର୍ତ୍ତେ କିମ୍ବା ଶବ୍ଦଗୁଡ଼ିକର ମନେ କରାଯାଉଥିବା ଅନ୍ତସ୍ଥ 'ଅର୍ଥମାନଙ୍କ' ଅଧିକାରୀ ହେବା ପରିବର୍ତ୍ତେ ଏହି ପଦଟି ବ୍ୟବହୃତ ହୋଇପାରେ । ଉଦାହରଣ ସ୍ୱରୂପ, ଯୁକ୍ତି କରାଯାଇଛି ଯେ ଉତ୍ତମ ପରି ଏକ ଶବ୍ଦର ପ୍ରତିଶବ୍ଦ ନାହିଁ ଏବଂ ଏହା ପ୍ରତିସ୍ଥାପନୀୟ ନୁହେଁ । ଏହି ହେତୁରୁ ଲୋକେ ଏହାର ଉତ୍ତମ ବ୍ୟବହାର କଲାବେଳେ ସେମାନଙ୍କ ମନରେ ଏପରି ଏକ ପ୍ରତ୍ୟୟ ରହିବ, ଯାହାକୁ ସେମାନେ ଭିନ୍ନଭାବେ ପ୍ରତୀକାନ୍ୱିତ କରି ପାରିବେ ନାହିଁ । ଏଥିରୁ ନିଃସୃତ ହେଉଛି ବୋଲି ମନେ କରାଯାଏ ଯେ ଏହି ଶବ୍ଦଟି ନିର୍ଦ୍ଦିଷ୍ଟଭାବେ ବ୍ୟବହୃତ ହେଉଥିବା ହେତୁ ଏକ ଅଦ୍ୱିତୀୟ ତଥା ସରଳ ନୈତିକ ପ୍ରତ୍ୟୟର ଅଥବା ଯେପରି ବେଳେ ବେଳେ କୁହାଯାଇଥାଏ, ଏକ ଅନୁପମ ଗୁଣ ବା ବିଧେୟର ସ୍ଥିତି ସୂଚିତ । କୌଣସି ବସ୍ତୁ ଏହି ଗୁଣର ଅଧିକାରୀ ହେବା ନ ହେବାରେ କିଛି ଯାଏ ଆସେ ନାହିଁ । ଠିକ୍ ଏହିପରିଭାବେ ଗାଣିତିକମାନେ ଅତି ଦୃଢ଼ତାର ସହିତ କହିବାରେ ଅଭ୍ୟସ୍ତ ଯେ କୌଣସି ବସ୍ତୁର ସ୍ଥିତି ନ ଥିଲେ ମଧ୍ୟ ତଥାପି 'ସଂଖ୍ୟାରେ ୧୦୭ ହେବା' ଗୁଣ ରହିବ ।

ନିର୍ଦ୍ଦେଶମାନଙ୍କ ଏହି ନିଧାର୍ଯ୍ୟତା ଗୁଡ଼ିକ ଅଧିକାଂଶତଃ ଅଭିଧାନ ଗୁଡ଼ିକର ବ୍ୟବହାର ଦ୍ୱାରା ସମର୍ଥିତ ଓ ସଂରକ୍ଷିତ ହୁଏ, ଏବଂ ଅନେକ ଉଦ୍ଦେଶ୍ୟନିମନ୍ତେ 'ଆଭିଧାନିକ ଅର୍ଥ' ଓ 'ଉତ୍ତମ ବ୍ୟବହାର' ସମତୁଲ୍ୟ ହେବ । କିନ୍ତୁ ଆଭିଧାନିକ ଅର୍ଥର ଏକ ଅଧିକ ମାର୍ଜିତ ତାତ୍ପର୍ଯ୍ୟର ସୂଚନା ଦିଆଯାଇ ପାରେ । ଅଭିଧାନ ହେଉଛି ପ୍ରତିସ୍ଥାପନୀୟ ପ୍ରତୀକମାନଙ୍କ ଏକ ତାଲିକା । ଏହା ଫଳତଃ ଏତିକି କହେ; "ଏପରି ପରିସ୍ଥିତିରେ ତାହା ପରିବର୍ତ୍ତେ ଏହା ବ୍ୟବହୃତ ହୋଇପାରେ । "ଏପରି କରିବା

ସନ୍ତୋଷପ୍ରଦ ହୁଏ, କାରଣ ଏହି ଉକ୍ତିମାନଙ୍କର ଏବଂ ଯଥୋପଯୁକ୍ତ ବ୍ୟାଖ୍ୟାକାର-ମାନଙ୍କ ନିମନ୍ତେ ପ୍ରତୀକ ଦୁଇଟି ଦ୍ୱାରା ସୃଷ୍ଟ ନିର୍ଦ୍ଦେଶଦ୍ୱୟ ପର୍ଯ୍ୟାପ୍ତ ପରିମାଣରେ ପରସ୍ପର ସଦୃଶ ହେବ । ଏହିପରିଭାବେ, ଅଭିଧାନ ପ୍ରତୀକମାନଙ୍କ ପରିସର ଗୁଡ଼ିକର ସଜ୍ଞା ଦେବା ଅପେକ୍ଷା ବରଂ ପ୍ରତୀକମାନଙ୍କ ନିର୍ଦ୍ଦେଶ ଗୁଡ଼ିକ ଆଂଶିକତଃ ଅନ୍ୟୋନ୍ୟ-ସମ୍ପାତୀ ହୋଇଥିବା ବିଷୟ ଲକ୍ଷ୍ୟ କରିବାରେ ସାହାଯ୍ୟ କରେ ।

ନିର୍ଦ୍ଦେଶର ସୂଚକରୂପେ ପ୍ରତୀକମାନଙ୍କ ନିସ୍ପନ୍ନରେ ଉପର୍ଯ୍ୟୁକ୍ତ ଅସୁବିଧା ହେତୁରୁ ଆମ ତାଲିକାର ଅବଶିଷ୍ଟ ଦୁଇଟି ସଂଜ୍ଞା (୧୪ଶ ଓ ୧୬ଶ) ଗଠିତ ହୋଇଛି । ଆମେ ଦେଖି ସାରିଛୁ ଯେ ପ୍ରତୀକରେ ନିଜର ଆସ୍ଥା ହେତୁରୁ ପ୍ରତୀକର ବ୍ୟବହାରକାରୀ ଯେଉଁ ନିର୍ଦ୍ଦେଶ ସେ କରୁଛି ବୋଲି ନିଜେ ବିଶ୍ୱାସ କରେ, ତାହା ବାସ୍ତବରେ ସେ ଯେଉଁ ନିର୍ଦ୍ଦେଶ କରୁଥାଏ, ତାହାଠାରୁ ସଂପୂର୍ଣ୍ଣ ଭିନ୍ନ ହୋଇପାରେ । ଏହି ଘଟଣାଟି ପ୍ରକାଶଭଙ୍ଗୀର ଦଯନୂ ତୁଳନା ଦ୍ୱାରା ଅନେକତ୍ର ପରିସ୍ଫୁଟ ହୁଏ । ସେହିପରି, ଶ୍ରୋତା-ଦ୍ୱାରା କବଯାଉଥିବା ନିର୍ଦ୍ଦେଶ ଅନେକତ୍ର ବକ୍ତା କରିଥିବା ନିର୍ଦ୍ଦେଶର ସଂପୂର୍ଣ୍ଣ ବିସଦୃଶ ହେବ । ତଦ୍ୟତଃ, ପ୍ରତୀକର ଅର୍ଥ ହେବ, ଯାହା ବକ୍ତା ନିର୍ଦ୍ଦେଶ କରୁଛି ବୋଲି ଶ୍ରୋତା ବିଶ୍ୱାସ କରେ । ଏହି ଶେଷୋକ୍ତ କ୍ଷେତ୍ରଟି ବୋଧହୁଏ ଭୁଲ୍ ବୁଝାମଣାର ସୁଯୋଗ ସୃଷ୍ଟି କରିବାରେ ସର୍ବାଧିକ ସମୃଦ୍ଧ ।

# ଦଶମ ପରିଚ୍ଛେଦ

## ପ୍ରତୀକ ପରିସ୍ଥିତି

ଗୋଟିଏ ଶବ୍ଦ ପାଇଁ ଅନେକଥର ଜଣଙ୍କୁ ବିଜ୍ଞ ବୋଲି ବିବେଚନା କରାଯାଏ, ଏବଂ ଗୋଟିଏ ଶବ୍ଦ ପାଇଁ ଅନେକଥର ତାହାଙ୍କୁ ଅଜ୍ଞ ବୋଲି ବିବେଚନା କରାଯାଏ । ବାସ୍ତବିକ, ଆମେ ଯାହା କହୁଛୁଁ ତହିଁରେ ସତର୍କତା ଅବଲମ୍ବନ କରିବା ଉଚିତ ।—

କନ୍‌ଫୁସିଅସ୍ ।

ଆବ୍‌ବା ଆମନ ଆବ୍‌ବା ସିସୋଜଙ୍କୁ ପ୍ରଶ୍ନ ପଚାରିବା ଉଦ୍ଦେଶ୍ୟରେ କହିଲେ, "ଧର୍ମପୁସ୍ତକଗତ ବିଷୟ ପଠନ କାଳରେ ଶବ୍ଦଗୁଡ଼ିକୁ ଏପରିଭାବେ ସଜାଇ ରଖିବାକୁ ମୋ ମନରେ ଅଭିଳାଷ ଜନ୍ମେ ଯେପରି କି ତହିଁରୁ ଯେ କୌଣସି ପ୍ରଶ୍ନର ଉତ୍ତର ମିଳିପାରିବ ।" ବୃଦ୍ଧ ତାହାଙ୍କୁ କହିଲେ, "ଏହା ନିଷ୍ପ୍ରୟୋଜନ, କାରଣ ହୃଦୟର ପବିତ୍ରତାହିଁ କେବଳ ଆବଶ୍ୟକ । ବିଶେଷ ସତର୍କତା ଅବଲମ୍ବନ ନ କଲେ ପୁଣି, ମନୁଷ୍ୟ ଯାହା କହିବା ଉଚିତ, ତାହା ଏଥିରୁ ନିର୍ଗତ ହୁଏ ।"—ପଲେଡ଼ିଅସ୍,

"ଦି ବୁକ୍ ଅଫ୍ ପାରାଡ଼ାଇଜ"

ଶବ୍ଦ ବ୍ୟବହାର କ୍ଷେତ୍ରରେ ବ୍ୟାଖ୍ୟାର ପ୍ରସଙ୍ଗକାଦର ଯେପରି ପ୍ରୟୋଗ କରାଯାଏ, ତାହାର ଏକ ସ୍ଥୂଳଚିତ୍ର ଏବେ ଅଙ୍କନ କରାଯାଇ ପାରେ । ପ୍ରଥମେ, ଏହି ବିଷୟର ଶ୍ରୋତାର ଦରକଥା ବିଚାର କରାଯାଉ । ପରେ, ଆମେ ବକ୍ତା ସମ୍ବନ୍ଧୀୟ ଅଧିକ ଦୁରୂହ ବିଷୟକୁ ପ୍ରତ୍ୟାବର୍ତ୍ତନ କରିବା । ଶବ୍ଦକୁ ବୁଝିବାର ଏକ ପ୍ରାରମ୍ଭିକ ସୋପାନ ସ୍ୱରୂପ ଅତି ସରଳ ଧରଣର ଏକ ବ୍ୟାଖ୍ୟା ଆମର ରହିବା ଅନିବାର୍ଯ୍ୟ । ଏହାକୁ ସଂବେଦନାତ୍ମକ ପୃଥକ୍‌କରଣ ବା ସଂବେଦନାତ୍ମକ ଚୟୋତ୍କରଣ କୁହାଯାଇ ପାରେ । ଏହି ସ୍ତରରେ (୧) ଆମେ ଧ୍ୱନିକୁ ଧ୍ୱନିରୂପେ ନେଇ ସେଗୁଡ଼ିକୁ ପୃଥକ୍ କରୁଁ ବୋଲି କୁହାଯାଇ ପାରେ । (କେତେକ କ୍ଷେତ୍ରରେ ଯାହା ପୃଥକ୍ କରାଯାଏ, ତାହା ହେଉଛି ଉଚ୍ଚାରଣ-ଇନ୍ଦ୍ରିୟମାନଙ୍କ ଚଳନ ଅଥବା ଏହି ଚଳନର

କମ୍ବା ଧ୍ୱନିର ମାନସିକ ପ୍ରତିମା; ଏହା ଉକ୍ତ ଲିଖିତ ପୃଥକ୍କରଣ ସହିତ ସମ୍ପୂର୍ଣ୍ଣ ସମାନ୍ତରାଳ । ) ସୁତରାଂ ଆମେ ଏଠାରେ ଏକ ପ୍ରାଥମିକ ସଂକେତର ବ୍ୟାଖ୍ୟା କରୁଥାଉଁ । ସ୍ପଷ୍ଟତଃ, ଯେ ପର୍ଯ୍ୟନ୍ତ ଗୋଟିଏ ଧ୍ୱନି ବା ପ୍ରତିମାକୁ ଅନ୍ୟ ଏକ ଧ୍ୱନି ବା ପ୍ରତିମାଠାରୁ, ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ, ପୃଥକ୍ କରା ନ ଯାଇଛି, ସେ ପର୍ଯ୍ୟନ୍ତ ଶବ୍ଦମାନଙ୍କ ବ୍ୟବହାର ସମ୍ଭବପର ନୁହେଁ । ଆମ ଶବ୍ଦ ବ୍ୟବହାର ଅଭ୍ୟାସଗତ ହୋଇଥିବାରୁ ଏହି ପୃଥକ୍କରଣ ସାଧାରଣତଃ ଅଜ୍ଞାତସାରରେ ହିଁ ସମ୍ପାଦିତ ହୋଇଥାଏ । କିନ୍ତୁ ଏହା ସଚେତନଭାବେ କରାଯାଇ ପାରେ । ଉଦାହରଣ ସ୍ୱରୂପ, ଆମେ ଯେତେବେଳେ ଏକ ବିଦେଶୀ ଭାଷା ଶିକ୍ଷାକରୁଁ । ପଦ୍ୟ ଓ ଯଥାର୍ଥ ବୈଜ୍ଞାନିକ ଗଦ୍ୟର ମଧ୍ୟ ମୁଖ୍ୟ ପାର୍ଥକ୍ୟଗୁଡ଼ିକ ମଧ୍ୟରୁ ଗୋଟିଏ ହେଉଛି ଯେ ପଦ୍ୟରେ ଆମକୁ ସଚେତନ ରହି ଶବ୍ଦମାନଙ୍କ ସଂବେଦନାତ୍ମକ ବୈଶିଷ୍ଟ୍ୟ ପ୍ରତି ଅବହିତ ରହିବାକୁ ପଡ଼ିବ, କିନ୍ତୁ ଗଦ୍ୟରେ ଏହା ନିଷ୍ପ୍ରୟୋଜନ । କିନ୍ତୁ ଧ୍ୱନିରୂପେ ଶବ୍ଦଗୁଡ଼ିକ ପ୍ରତି ଏହି ଜ୍ଞାତସାର ଅବଧାନ ଆମର ବ୍ୟାଖ୍ୟାକରଣର ଅଗ୍ରଗତିରେ ବାଧା ସୃଷ୍ଟି କରି ବସେ ।

ବ୍ୟାଖ୍ୟାକରଣର ପରବର୍ତ୍ତୀ ସ୍ତରରେ ପ୍ରାଥମିକ ସଙ୍କେତକୁ କୌଣସି ଏକ-ପ୍ରକାର ଧ୍ୱନି ବୋଲି କେବଳ ଚିହ୍ନିବା ଅବସ୍ଥାରୁ ତାହାକୁ ଏକ ଶବ୍ଦ ବୋଲି ଚିହ୍ନିବା ଅବସ୍ଥାକୁ ଆମେ ଗତି କରୁଁ । ସଙ୍କେତର ମନସ୍ତାତ୍ତ୍ୱିକ ପ୍ରସଙ୍ଗ ପରିବର୍ତ୍ତନ ହେତୁରୁ ଏହି ପରିବର୍ତ୍ତନ ଘଟିଥାଏ । ତାହାକୁ ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ସବଳିତ ଧ୍ୱନି ବୋଲି ଚିହ୍ନିବା ପାଇଁ ଯେଉଁ ପ୍ରସଙ୍ଗର ଆବଶ୍ୟକତା ପଡ଼େ, ତାହା ବର୍ତ୍ତମାନ ସଙ୍କେତ ତଥା ତତ୍ସହିତ ଅଳ୍ପ ଓ ଅଧିକ ମାତ୍ରାରେ ଅନୁରୂପ ହୋଇଥିବା ଅତୀତର ଅନ୍ୟାନ୍ୟ ଧ୍ୱନି ସଂବେଦନ ଦ୍ୱାରା ଗଠିତ । ତାହାକୁ ଏକ ଶବ୍ଦ ବୋଲି ଚିହ୍ନିବା ପାଇଁ ତତ୍ସହିତ ଧ୍ୱନିମାନଙ୍କ ବ୍ୟତୀତ ଆହୁରି ଅଧିକ ଅନୁଭୂତି (୧) ସବଳିତ ଏକ ପ୍ରସଙ୍ଗ ଗଠିତ

---

(୧) ଯଦି ଗୋଟିଏ ବ୍ୟାଖ୍ୟାମୂଳକ ପ୍ରଣାଳୀର ସଂଘଟନ ପାଇଁ ତାହା ଆଗରୁ ଅନ୍ୟ ଏକ ବ୍ୟାଖ୍ୟାମୂଳକ ପ୍ରଣାଳୀର ସଂଘଟନ ଆବଶ୍ୟକ, ତେବେ ପରବର୍ତ୍ତୀ ବ୍ୟାଖ୍ୟାମୂଳକ ପ୍ରଣାଳୀ ପୂର୍ବବର୍ତ୍ତୀ ବ୍ୟାଖ୍ୟାମୂଳକ ପ୍ରଣାଳୀଠାରୁ ଉଚ୍ଚତର ସ୍ତରରେ ଅବସ୍ଥାପିତ ବୋଲି କୁହାଯାଏ (ତୁଳନା କର—ପରିଚ୍ଛେଦ-୫, ତଦନ୍ତର୍ଗତ ସୂତ୍ର-୩) । ଏହି ସ୍ତରକୁ ଉଚ୍ଚତର କୁହାଯାଉ ବା ନିମ୍ନତର କୁହାଯାଉ, ସେଥିରେ କିଛି ଯାଏ ଆସେ-ନାହିଁ । ଯାହାହେଉ, ଏଠାରେ ତାହାକୁ ଉଚ୍ଚତର ବୋଲି କୁହାଯିବ ।

(୧) ସଂବେଦନ, ପ୍ରତିମା, ଅନୁଭବ ଇତ୍ୟାଦି ଏବଂ ସମ୍ଭବତଃ ଆମ ମାନସିକ ଅବସ୍ଥାର ଅଚେତନ ପରିବର୍ତ୍ତନ ଗୁଡ଼ିକୁ ବୁଝାଇବାକୁ ଏଠାରେ ଏହି ପଦଟିକୁ ସାଧାରଣଭାବେ ବ୍ୟବହାର କରାଯାଇଛି ।

ହେବା ଆବଶ୍ୟକ । ଠିକ୍ କିପରିଭାବେ ଯେ ଶବ୍ଦଗୁଡ଼ିକ ରହିଛି ବୋଲି ଆମେ ପ୍ରଥମେ ଜାଣିବା ଆରମ୍ଭ କରୁଁ ବା କେତେକ ଧ୍ୱନିକୁ ଶବ୍ଦ ବୋଲି ଗ୍ରହଣ କରୁଁ, ଅଥଚ ଅନ୍ୟଗୁଡ଼ିକୁ ଶବ୍ଦ ବୋଲି ଗ୍ରହଣ କରୁନାଁ, ସେ ସମ୍ବନ୍ଧରେ ଏବେ ସୁଦ୍ଧା ପରୀକ୍ଷାମୂଳକ ଗବେଷଣା କରିବା ବାକି ରହିଛି । କିନ୍ତୁ ଶୈଶବାବସ୍ଥାରେ ଲୋକେ ଆମ ସହିତ କଥାବାର୍ତ୍ତା କରୁଛନ୍ତି ବୋଲି ସିଧାସଳଖ ଅନ୍ଦାଜ କରି ଆମେ ଏହି ସୋପାନରେ ଉପନୀତ ହେଉ ନାଁ । ଏହି ଅନ୍ଦାଜ ଆଦୌ ସମ୍ଭବପର ହେବାର ବହୁପୂର୍ବରୁ ଆମର ଏକ ବ୍ୟାପକ ବ୍ୟକ୍ତିଗତ ଭାଷା ବିକାଶ ଲାଭ କରି ସାରିଥାଏ । ଏହି ବ୍ୟକ୍ତିଗତ ଭାଷା ଯେଉଁ ଘଟଣା ମାଧ୍ୟମରେ ଗଢ଼ିଉଠିଥାଏ, ତାହା ନିମ୍ନରୂପ; କେତେକ ଧ୍ୱନି ଅନ୍ୟ କେତେକ ଅନୁଭୂତ ସହିତ ଏପରିଭାବେ ପ୍ରପଞ୍ଚ ମଧ୍ୟକୁ ଆସିଥାଏ ଯେ ଧ୍ୱନି ଶୁଣାଯିବାକୁ ଏକ ସଙ୍କେତ ରୂପେନେଇ ତାହାକୁ ଏକ ଅନୁକ୍ରିୟା ଦ୍ୱାରା ବ୍ୟାଖ୍ୟା କରାଯାଏ ଏବଂ ଏହି ଅନୁକ୍ରିୟା ସଂପୃକ୍ତ ସହଗାମୀ ଅନୁଭୂତ ଦ୍ୱାରା ଉଦ୍ରିକ୍ତ ଅନୁକ୍ରିୟା ଅନୁରୂପ ହୋଇଥାଏ । ପୁଣି ଏହି ବ୍ୟାଖ୍ୟା ମଧ୍ୟ ସଚେତନଭାବେ କିମ୍ବା ଅଚେତନଭାବେ କରାଯାଇପାରେ । ସାଧାରଣ ଅବସ୍ଥାରେ ଏହା ଅଚେତନଭାବେ ହିଁ କରାଯାଇ ଥାଏ; କିନ୍ତୁ ଯଦି ଅସୁବିଧା ଜାତ ହୁଏ, ତେବେ ଏହି ବ୍ୟାଖ୍ୟା ପୁଣି ସଚେତନଭାବେ କରିବାକୁ ପ୍ରବୃତ୍ତି ଜନ୍ମେ । ଯେ ପର୍ଯ୍ୟନ୍ତ ଆମେ ଅନାୟାସରେ ବୁଝି ପାରୁଥାଉଁ, ସେ ପର୍ଯ୍ୟନ୍ତ ବ୍ୟବହୃତ ଶବ୍ଦମାନଙ୍କ ପ୍ରତି ଆମର ଚେତନଶୀଳତା ନିୟମାନୁଗତଭାବେ ସ୍ୱଳ୍ପ । କିନ୍ତୁ ଯେତେ-ବେଳେ ଆମେ ଏକ ଅପରିଚିତ ଭାଷା ବିନ୍ୟାସ ଭିତରେ ଅଥବା ଏକ ଅଦ୍ଭୁତ ପ୍ରକାର ନିର୍ଦ୍ଦେଶ୍ୟର ସମ୍ମୁଖୀନ ହେଉଁ, ସେତେବେଳେ ଆମର ଚେତନଶୀଳତା ବୃଦ୍ଧି ଲାଭ କରେ, ଏବଂ ଆମର ବ୍ୟାଖ୍ୟା ବାଧାପ୍ରାପ୍ତ ହୁଏ ।

ଏହି ବିଚାରଗୁଡ଼ିକ ଶିକ୍ଷାଦାନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ । ଶବ୍ଦଗୁଡ଼ିକୁ ଭ୍ରାନ୍ତଭାବେ ଅର୍ଥ କରିବା ହେତୁରୁ ନୁହେଁ, ସେଗୁଡ଼ିକୁ ପ୍ରଥମେ ଧ୍ୱନିରୂପେ ଚିହ୍ନି ପାରିବାର ଅସାମର୍ଥ୍ୟ ହେତୁରୁ, ଅନେକ ଶିଶୁ ପ୍ରକୃତରେ ଯେତେ ନିର୍ବୋଧ, ତହିଁରୁ ଅଧିକ ନିର୍ବୋଧ ଜଣା ପଡ଼ନ୍ତି । ବୟସ୍କ ଲୋକମାନେ ମଧ୍ୟ କ୍ଷିପ୍ରଗତିରେ କଥିତ ବା 'ଆକ୍ସେଣ୍ଟ' ସହ କଥିତ ବାଚନିକ ଧ୍ୱନିଗୁଡ଼ିକୁ ପୃଥକ୍ କରିବା ସାମର୍ଥ୍ୟରେ ପରସ୍ପର ବହୁ ପରିମାଣରେ ଭିନ୍ନ । ଭାଷା ଶିକ୍ଷାରେ ସ୍ୱାଚ୍ଛନ୍ଦ୍ୟ ଉପରେ ଏହି ସାମର୍ଥ୍ୟର ପ୍ରଭୂତ ପ୍ରଭାବ ରହିଛି ।

ଗୋଟିଏ ଧ୍ୱନିକୁ ଏକ ଶବ୍ଦ ବୋଲି ଚିହ୍ନିବା ମାତ୍ରେ ଧ୍ୱନିଟିର ପୂର୍ବବର୍ତ୍ତୀ ଚିହ୍ନିବାର ଗୁରୁତ୍ୱ ହ୍ରାସ ପାଇବା ପରି ମନେହୁଏ, କିନ୍ତୁ ବାସ୍ତବତଃ ଏହା ହୋଇ ନପାରେ । ଏକଥା ସତ୍ୟ ଯେ ଶବ୍ଦଟି ଉଚ୍ଚ ସ୍ୱରରେ ବା ନିମ୍ନସ୍ୱରରେ, କ୍ଷିପ୍ରତାର ସହିତ

ବା ମନ୍ଥରତାର ସହିତ, ଉତ୍ଥାନଶୀଳ ସ୍ୱର ଭଙ୍ଗୀରେ ବା ପତନଶୀଳ ସ୍ୱର ଭଙ୍ଗୀରେ ଏବଂ ଏହିପରି ଅନ୍ୟାନ୍ୟ ଯେ କୌଣସି ଭାବେ ଉଚ୍ଚାରିତ ହୋଇଥିଲେ ହେଁ ତାହାକୁ ଚିହ୍ନା ଯାଇପାରେ । କିନ୍ତୁ ଧ୍ୱନି ସ୍ୱରୂପ ଗୋଟିଏ ଶବ୍ଦର ଦୁଇଟି ଉଚ୍ଚାରଣ ପରସ୍ପର ଯେତେ ପୃଥକ୍ ହୋଇଥିଲେ ମଧ୍ୟ, ତଥାପି ସେ ଦୁଇଟିର ଏକ ସାଧାରଣ ବୈଶିଷ୍ଟ୍ୟ (୧) ରହିବା ସୁନିଶ୍ଚିତ; ନଚେତ୍ ଧ୍ୱନି ଦୁଇଟିକୁ ସେହି ଏକ ଶବ୍ଦ ବୋଲି ଚିହ୍ନିବା ସମ୍ଭବପର ନୁହେଁ । ଏହି ବୈଶିଷ୍ଟ୍ୟ ହେତୁରୁ ହିଁ କେବଳ ଧ୍ୱନି ଦୁଇଟି ସମପ୍ରକାର ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅନ୍ତର୍ଭୁକ୍ତ ହୁଏ; ଏବଂ ଏହି କାରଣରୁ ହିଁ ସେ ଦୁଇଟିକୁ ସଦୃଶ-ଭାବେ ଅର୍ଥ କରାଯାଏ । ଏହି ସାଧାରଣ ବୈଶିଷ୍ଟ୍ୟକୁ ସଚେତନଭାବେ ଧରିପାରିବାକୁ ଆମେ ଅସମର୍ଥ ହୋଇପାରୁ; କିନ୍ତୁ ଏଥିରେ ବିସ୍ମିତ ହେବାର କିଛି ନାହିଁ । ସଫଳତାର ସହିତ ଓ ଅନାୟାସରେ ବ୍ୟାଖ୍ୟା ପ୍ରଣାଳୀର ଅଗ୍ରଗତି ହୋଇଥିବା ସ୍ଥଳେ ବ୍ୟାଖ୍ୟାର ଅପେକ୍ଷାକୃତ ସରଳ ସ୍ତରଗୁଡ଼ିକରୁ ଅଧିକ ବିଶଦ ବ୍ୟାଖ୍ୟାଗୁଡ଼ିକର ଅଭିବୃଦ୍ଧି ଘଟିବା ମାତ୍ରେ ସଚେତନତାରୁ ପୂର୍ବବର୍ତ୍ତୀ ସ୍ତରଗୁଡ଼ିକ ଅବଲୁପ୍ତପ୍ରାୟ ହୋଇ ଯାଏ—ଏ କଥାକୁ ଗ୍ରହଣ କରିନେବା ସାଧାରଣତଃ ସମ୍ଭବପର ମନେହୁଏ । ବ୍ୟାଖ୍ୟାର କୌଣସି ସ୍ତରରେ ଅସୁବିଧା ବା ଅସାଫଲ୍ୟ ସ୍ପଷ୍ଟ ହେବାର ଅଧିକାଂଶ କ୍ଷେତ୍ରରେ ସଚେତନତାର ପରିସରକୁ ନିମ୍ନତର ସ୍ତରମାନଙ୍କ ପୁନରୁତ୍ଥାନ ଘଟିବା ଆରମ୍ଭ ହୋଇଥାଏ ଏବଂ ଆମେ ପୁଣି ଏହି ନିମ୍ନତର ସ୍ତରମାନଙ୍କରେ କୌଣସି ନା କୌଣସିଭାବେ ନିୟୋଜିତ ରହି ବସୁଁ । ଯେଉଁ ଉଚ୍ଚସ୍ତରୀୟ ବ୍ୟାଖ୍ୟାର ଅଦୃଢ଼ତାରୁ ଏଗୁଡ଼ିକର ଉଦ୍ରେକ ଆରମ୍ଭ ହୁଏ, ତନ୍ନିମନ୍ତେ ଆମର ଏପ୍ରକାର ନିୟୋଜନ ପ୍ରାୟଶଃ ପ୍ରତିକୂଳ ପରିସ୍ଥିତି ସୃଷ୍ଟି କରିଥାଏ ।

ଏ ପର୍ଯ୍ୟନ୍ତ ଆମେ ସରଳ ନାମଗୁଡ଼ିକୁ ଓ ଉକ୍ତିଗୁଡ଼ିକୁ ବୁଝିବା ସ୍ତରରେ ସନ୍ତୁଷ୍ଟ ପାରିଛୁ, ଏବଂ କେବଳ ଏହି ଉପାୟ ଦ୍ୱାରା ଯଥେଷ୍ଟ ବ୍ୟାପକ ପରିସରଭୁକ୍ତ ନିର୍ଦ୍ଦେଶର ଲିପିବଦ୍ଧ କରଣ ତଥା ଆଦାନ ପ୍ରଦାନ ସମ୍ଭବପର ହୋଇ ପାରୁଛି । ଏ ପ୍ରକାର ସରଳ ଧରଣର ଏକ ପ୍ରତୀକପଦ୍ଧତି ସରଳ ନିର୍ଦ୍ଦେଶ୍ୟ କିମ୍ବା ସେଗୁଡ଼ିକର ସମଷ୍ଟି ନିମନ୍ତେ ପର୍ଯ୍ୟାପ୍ତ; କିନ୍ତୁ ଜଟିଳ ନିର୍ଦ୍ଦେଶ୍ୟ ଅଥବା କେବଳ ଏକୀଭୂତ ହେବା ଅପେକ୍ଷା ଅଧିକ ଜଟିଳ ସଂରଚନା ବିଶିଷ୍ଟ ନିର୍ଦ୍ଦେଶ୍ୟ ସମଷ୍ଟି ନିମନ୍ତେ ଏହା ଏକାନ୍ତ ଅନୁପଯୁକ୍ତ । ଏ ପ୍ରକାର ଜଟିଳ ନିର୍ଦ୍ଦେଶ୍ୟମାନଙ୍କ ନିର୍ଦ୍ଦେଶଗୁଡ଼ିକୁ ପ୍ରତିକାତ୍ମିତ କରିବାକୁ ବିଶେଷ ପ୍ରକାର ସଂରଚନା ବିଶିଷ୍ଟ ଜଟିଳ ପ୍ରତୀକମାନ ଆବଶ୍ୟକ । ଅବଶ୍ୟ ପ୍ରତିକଟି

(୧) ସ୍ମରଣରେ ରଖିବା ଉଚିତ ଯେ ଏ ପ୍ରକାର ଗଠନମୂଳକ ବୈଶିଷ୍ଟ୍ୟମାନ 'ହୁଏତ କ କିମ୍ବା ଖ କିମ୍ବା ଗ ଇତ୍ୟାଦି' ଆକାର ବିଶିଷ୍ଟ ହୋଇପାରେ ।

ନିର୍ଦ୍ଦେଶ୍ୟର ଜଟିଳତାକୁ ଅତି ନିଖୁଣ୍ଭାବେ ପ୍ରତିବିମ୍ବିତ କରିବା ଅଥବା ତାହାର ସମ୍ବାଦୀ ହେବା ଆବଶ୍ୟକ ପରି ମନେ ହୁଏ ନାହିଁ । ସମ୍ଭବତଃ, ଆଦିମ ଭାଷାମାନଙ୍କରେ ଏହି ସମ୍ବାଦିତା ନିବିଡ଼ତର ହୋଇଥାଏ । ଅତି ସମୃଦ୍ଧ ଭାଷାମାନଙ୍କ କ୍ଷେତ୍ରରେ, ଯେଉଁ ଉପାୟରେ ଜଟିଳ ପ୍ରତୀକମାନ ଗଠିତ ହୁଏ ଓ ଯେଉଁ ଉପାୟରେ ସେଗୁଡ଼ିକ ପ୍ରତୀକ-ରୂପେ ନିଜର ସଂରଚନା ଲାଭ କରେ, ତାହା ବହୁବିଧ ତଥା ବହୁ ସଂଖ୍ୟକ । ସେହି ଏକ ନିର୍ଦ୍ଦେଶ୍ୟର ଜଟିଳ ପ୍ରତୀକମାନଙ୍କୁ ବିକଳ୍ପ ଆକାର ଦିଆଯାଇ ପାରେ । ତନ୍ନିହିତ ସରଳ ପ୍ରତୀକମାନ ଅର୍ଥାତ୍ ନାମଗୁଡ଼ିକ ଅପରିବର୍ତ୍ତିତ ରହିଥିଲେ ସୁଦ୍ଧା ଏହା କରାଯାଇ-ପାରେ । ଏହି ଆକାରଗୁଡ଼ିକର ଅଧ୍ୟୟନ ବ୍ୟାକରଣ ଶାସ୍ତ୍ରର ଏକ ଅଙ୍ଗ । କିନ୍ତୁ ଏଗୁଡ଼ିକର ଫଳପ୍ରଦ ଆଲୋଚନା ନିମନ୍ତେ, ବୈୟାକରଣମାନେ ମନସ୍ତାତ୍ତ୍ୱିକ ସମସ୍ୟା-ମାନଙ୍କରେ ଏବେ ଯେଉଁପରିମାଣର ଆନ୍ତରିକତା ସହ ଅନୁରକ୍ତ ହେବା ଓ ସଚେତନ ରହିବା ପ୍ରଥାଗତ, ତହିଁରୁ ଅଧିକ ପରିମାଣର ଆନ୍ତରିକତା ଆବଶ୍ୟକ ।

ଏହି ଜଟିଳ ପ୍ରତୀକମାନଙ୍କ ମଧ୍ୟରୁ କେତୋଟି ଅପେକ୍ଷାକୃତ ସହଜ ପ୍ରତୀକର ଏବେ ଆମେ ବିସ୍ତୃତ ଆଲୋଚନା କରି ପାରୁଁ । ସ୍ୱକୀୟ ନାମ ଓ ବର୍ଣ୍ଣନାତ୍ମକ ଅଭିବ୍ୟକ୍ତି ମଧ୍ୟରେ ଥିବା ପାର୍ଥକ୍ୟରୁ ଆଲୋଚନା ଆରମ୍ଭ କରାଯାଉ । ଆଗରୁ ଆମେ ଦେଖିଛୁଁ ଯେ ସାମାନ୍ୟ ନିର୍ଦ୍ଦେଶମାନଙ୍କ ତୁଳନାରେ ବିଶେଷ ନିର୍ଦ୍ଦେଶମାନଙ୍କ କ୍ଷେତ୍ରରେ ଅତି ସରଳ ଧରଣର ପ୍ରସଙ୍ଗମାନ ଆବଶ୍ୟକ ହୁଏ, ଏବଂ ଯେ କୌଣସି ବର୍ଣ୍ଣନାତ୍ମକ ଅଭିବ୍ୟକ୍ତିକୁ ବୁଝିବାବେଳେ ତହିଁରେ ଅଧିକ ଜଟିଳ ଧରଣର ପ୍ରସଙ୍ଗ ନିହିତ ଥିବା ଜଣାପଡେ । ଜଣେ ବ୍ୟକ୍ତିର ନାମ ମନେକର ଟମାସ । ଏହିପରି ଏକ ପ୍ରତୀକର ବ୍ୟବହାର କରିବାକୁ ଆମର କେବଳ ଏତିକି ଆବଶ୍ୟକ ଯେ ଟମାସ୍-ଅନୁଭୂତି ସମ୍ବଳିତ ଏକ ପ୍ରସଙ୍ଗରେ ଏହି ନାମଟି ଥିବ । ଏହି ସଂଯୋଗର ପ୍ରତିଷ୍ଠା ନିମନ୍ତେ ଏ ପ୍ରକାର ଅନୁଭୂତିରୁ ଅଳ୍ପ କେତେଗୋଟି ମାତ୍ର ସାଧାରଣତଃ ଯଥେଷ୍ଟ ହୋଇଥାଏ । ଏ ପ୍ରକାର ପ୍ରତ୍ୟେକ ଅନୁଭୂତି ପ୍ରସଙ୍ଗ ଗଠନ କରିବାରେ ସାହାଯ୍ୟ କରିବ, କାରଣ ଆମ ପରିଚିତ ବ୍ୟକ୍ତିଙ୍କ ମଧ୍ୟରୁ ପ୍ରତ୍ୟେକର ଯେ ଗୋଟିଏ ନାମ ରହିଛି ଏକଥା ହୃଦୟଙ୍ଗମ ନ କରି ଓ ନାମଟି କଣ ନ ଜାଣି ତାହା ସହିତ ସମ୍ବନ୍ଧ ରଖିଥିବା କ୍ୱଚିତ୍ ଘଟିଥାଏ । ଏହା ସହିତ 'ମୋର ବନ୍ଧୁବାନ୍ଧବ' ପରି ଏକ ବର୍ଣ୍ଣନାତ୍ମକ ନାମକୁ ବୁଝିବା ବିଷୟର ତୁଳନା କର । ଏଠାରେ ଯେଉଁ ଅନୁଭୂତି ଆବଶ୍ୟକ, ତାହା ସମସ୍ତ କ୍ଷେତ୍ରରେ ସମାନ ହେବ ନାହିଁ । କେତେ-ବେଳେ ଜଣେ ଅଜା ସହିତ ସାକ୍ଷାତ ହେଲାଣି ତ କେତେବେଳେ ଜଣେ ଝିଅଙ୍କ ସହିତ ସାକ୍ଷାତ୍ ହେବ । କିନ୍ତୁ ସବୁ ସମୟରେ ଯେ ସେମାନଙ୍କ ଆମ ସହିତ ରହିଥିବା ସମ୍ବନ୍ଧ କୌଣସି ମାତ୍ରାରେ ଏକ ପ୍ରଭାବଶାଳୀ ବୈଶିଷ୍ଟ୍ୟ ହେବ, ଏକଥା ନୁହେଁ । ପୁଣି ଯଥାକ୍ରମେ ସେମାନଙ୍କ ନାତି ଓ କକା ପ୍ରତି ଯେଉଁ ସମ୍ବନ୍ଧ ରହିଛି ବୋଲି ସେମାନେ

ସ୍ୱୀକାର କରିବେ, ତାହା ଯେ ଏକ ସୁପ୍ରତ୍ୟକ୍ଷ ସମ୍ବନ୍ଧ, ତାହା ମଧ୍ୟ ନୁହେଁ । ସୁତରାଂ ଏଠାରେ ଯଦି ପ୍ରୟୋଜନୀୟ ପ୍ରସଙ୍ଗକୁ ଗଠନ କରିବାକୁ ହୁଏ, ତେବେ ପରସ୍ପର ବହୁପରିମାଣରେ ପୃଥକ୍ ହୋଇଥିବା ଏକ ଅନୁଭୂତ ଶ୍ରେଣୀ ତନ୍ନିମନ୍ତେ ଆବଶ୍ୟକ ।

'ବନ୍ଧୁବାନ୍ଧବ' ବସ୍ତୁତଃ ହେଉଛି ଏକ ଅପକର୍ଷଣ । ଏହା ଯେଉଁ ନିର୍ଦ୍ଦେଶକୁ ପ୍ରତୀକାନ୍ୱିତ କରେ, ତାହା ଅନୁଭୂତମାନଙ୍କ ଏକ ଗୋଷ୍ଠୀକରଣ ଦ୍ୱାରା ସରଳ ଓ ସାକ୍ଷାତ୍‌ଭାବେ ଗଠିତ ହୋଇ ନ ପାରେ । ଏହା ହେଉଛି ଅନୁଭୂତମାନଙ୍କ ବିଭିନ୍ନ ଗୋଷ୍ଠୀକରଣର ଫଳ । ଏଗୁଡ଼ିକ ମଧ୍ୟରେ ଥିବା ପାର୍ଥକ୍ୟ ହିଁ ଏଗୁଡ଼ିକର ସାଧାରଣ ଉପାଦାନକୁ ସ୍ୱତନ୍ତ୍ର ରୂପେ ଠିଆ କରିବାକୁ ସମର୍ଥ କରେ; ଏହି ଦୃଷ୍ଟିରୁ ଏହା ଏକ ଅପକର୍ଷଣ । ନିର୍ବାଚନ ଓ ଅପସାରଣ ଫଳରେ ଏହି ପ୍ରଣାଳୀ ଏକ ଶବ୍ଦ ସମ୍ଭାରର ଅଧିକାରୀ ହେବା ଏବଂ ଚିନ୍ତାର ଅଭିବୃଦ୍ଧି ଘଟିବା କ୍ଷେତ୍ରରେ ସର୍ବଦା କାର୍ଯ୍ୟ କରୁଥାଏ । ଅଣ-ପ୍ରତୀକାତ୍ମକ ଅନୁଭୂତଦ୍ୱାରା ଶବ୍ଦଗୁଡ଼ିକରୁ ସାକ୍ଷାତ୍‌ଭାବେ ପ୍ରସଙ୍ଗମାନ ଗଠିତ ହେବା କଦାଚିତ୍ ସମ୍ଭବପର, କାରଣ ବିଷୟମାନୁଗତଭାବେ ସେଗୁଡ଼ିକୁ ଅନ୍ୟ ଶବ୍ଦମାନଙ୍କ ମାଧ୍ୟମରେ ହିଁ ଶିଖିବାକୁ ହୁଏ । ଅତି ଶୈଶବାବସ୍ଥାରୁ ଆମେ ଭାଷା ଶିକ୍ଷା କରିବା ନିମନ୍ତେ ଭାଷାର ବ୍ୟବହାର ଆରମ୍ଭ କରୁଁ । କିନ୍ତୁ ଏହା ପ୍ରତିଶବ୍ଦ ବା ବିକଳ୍ପ ଅଭିବ୍ୟକ୍ତିର ଆହରଣ ବ୍ୟାପାର ମାତ୍ର ନୁହେଁ । ସୁତରାଂ ନିର୍ଦ୍ଦେଶ ନିର୍ଦ୍ଦେଶ ମଧ୍ୟରେ ଥିବା ସାଦୃଶ୍ୟ ଉପରେ ଉପର୍ଯ୍ୟୁକ୍ତ ପ୍ରକାର ପ୍ରାଧାନ୍ୟ ଅର୍ପଣ ତଥା ବିରୋଧ ମାଧ୍ୟମରେ ଉପଜାତ ପାର୍ଥକ୍ୟର ନିରାକରଣ ଆବଶ୍ୟକ । ଏହି ଉପାୟମାନଙ୍କ ଦ୍ୱାରା ଅଧିକରୁ ଅଧିକତର ଅପକର୍ଷଣମୂଳକ ନିର୍ଦ୍ଦେଶଗୁଡ଼ିକର ଅଭିବୃଦ୍ଧି ଘଟେ, ଏବଂ ଅପକର୍ଷଣର ଆଦିମ ପ୍ରତୀକାନ୍ୱିତ କରଣ ଅର୍ଥାତ୍ ରୂପକର ବ୍ୟବହାର ସମ୍ଭବପର ହୁଏ । ଅତି ସାଧାରଣ ଅର୍ଥରେ କହିଲେ, ରୂପକ ହେଉଛି ଗୋଟିଏ ଦିଗ ସମ୍ବନ୍ଧରେ ଅନ୍ୱିତ ଏକ ବସ୍ତୁଶ୍ରେଣୀରେ ଏପରି ଏକ ନିର୍ଦ୍ଦେଶ ପ୍ରୟୋଗ କରିବା, ଯଦ୍ୱାରା ସମପ୍ରକାର ସମ୍ବନ୍ଧରେ ଅନ୍ୱିତ ଅନ୍ୟ ଏକ ଶ୍ରେଣୀର ପାର୍ଥକ୍ୟ ନିର୍ଣ୍ଣୟନ ସୁବିଧା ହେବ । (୧) ରୂପକ ଭାଷାକୁ ବୁଝିବା କ୍ଷେତ୍ରରେ, ଗୋଟିଏ ନିର୍ଦ୍ଦେଶ ଅନ୍ୟ ଏକ ନିର୍ଦ୍ଦେଶର ଆଂଶିକ ପ୍ରସଙ୍ଗକୁ ଅପକର୍ଷିତ ଆକାରରେ ଗ୍ରହଣ କରେ ।

ଦୁଇଟି ଉପାୟରେ ଗୋଟିଏ ନିର୍ଦ୍ଦେଶ ଅନ୍ୟ ଏକ ନିର୍ଦ୍ଦେଶର ପ୍ରସଙ୍ଗକୁ ଆଂଶିକତଃ ଗ୍ରହଣ କରି ନେଇ ପାରେ । ଉଦାହରଣ ସ୍ୱରୂପ, ସମୁଦ୍ର ପ୍ରତି ଏକନିର୍ଦ୍ଦେଶ

---

(୧) ଅନ୍ୟାନ୍ୟ ଆକାରର ରୂପକମାନଙ୍କ ନିମନ୍ତେ Principles of Literary Criticism, ପରିଚ୍ଛେଦ-୩୨ ଦ୍ରଷ୍ଟବ୍ୟ ।

ସହିତ ମନୁଷ୍ୟ ପ୍ରତି ଏକ ନିର୍ଦ୍ଦେଶ ସଂଯୋଜିତ ହୋଇପାରେ ଏବଂ ତାହାର ପରିଣତି ହେବ ନାବିକ ପ୍ରତି ନିର୍ଦ୍ଦେଶ । ଏଠାରେ କୌଣସି ରୂପକ ନିହିତ ନାହିଁ । ପକ୍ଷାନ୍ତରେ ଆମେ ଯେତେବେଳେ ସମୁଦ୍ର ମଧ୍ୟରେ ବିପଦ ଆଶଙ୍କା କରି, ତାହାକୁ ପ୍ରତିହତ କରିବା ନିମନ୍ତେ ପ୍ରସ୍ତୁତ ରହୁଁ, ସେତେବେଳେ ସମୁଦ୍ର ପ୍ରତି ନିର୍ଦ୍ଦେଶ ପ୍ରସଙ୍ଗର ସେହି ଅଂଶ, ଯାହା ଅନ୍ୟାନ୍ୟ ନିର୍ଦ୍ଦେଶ ସହିତ ସଂଯୁକ୍ତ, ତାହା ଅପକର୍ଷିତ ଆକାରରେ ରୂପାୟିତ ହେଉଛି, ଅର୍ଥାତ୍ ଏହି କ୍ଷେତ୍ରର ସମୁଦ୍ରର ପ୍ରାସଙ୍ଗିକ ଗୁଣରେ ଚନ୍ଦ୍ରଦ୍ୱାରା ଆକର୍ଷିତ ହେବା ଗୁଣ ବା ମାଛମାନଙ୍କ ବସତି ସ୍ଥଳ ହେବା ଗୁଣ ଅନ୍ତର୍ଭୁକ୍ତ ହେବ ନାହିଁ । ଏହି କ୍ଷେତ୍ରରେ, ଯେପରି ଭାବେ ପୂର୍ବରୁ ରହିଥିବା ନୈରାଶ୍ୟ ବୋଧକୁ ଉତ୍ତାଳ ତରଙ୍ଗର ନିରବଚ୍ଛିନ୍ନ ଉତ୍ଥାନପତନ ବହୁଗୁଣିତ କରେ, ମୁଖ୍ୟତଃ ତାହାରି ଉପରେ ହିଁ ରୂପକର କାବ୍ୟିକ ମୂଲ୍ୟ ନିର୍ଭର କରିବ । କୁଚୁଲେଏନ ପୌରାଣିକ ଗଳ୍ପରେ ଏହି ବିଷୟର ଏକ ଚମତ୍କାର ଦୃଷ୍ଟାନ୍ତ ରହିଛି ।

ବସ୍ତୁତଃ, ରୂପକର ବ୍ୟବହାରରେ ଅପକର୍ଷଣମୂଳକ ଚନ୍ତାର ପ୍ରସଙ୍ଗରୂଳୀ ପ୍ରସଙ୍ଗମାନ ନିହିତ । ଏଥିରେ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଯେ ଏତଦ୍ ଅନ୍ତର୍ଗତ ବସ୍ତୁଗୁଡ଼ିକ କେବଳ ସାଧାରଣ ପ୍ରାସଙ୍ଗିକ ବୈଶିଷ୍ଟ୍ୟମାନଙ୍କ ଅଧିକାରୀ ହେବ, ଏବଂ ଅବାନ୍ତର ବା ଆକସ୍ମିକ ବୈଶିଷ୍ଟ୍ୟମାନ ପରସ୍ପର ବିନାଶ ସାଧନ କରିବ । ବିଶେଷଣ, ଅବ୍ୟୟ [Prepositions], କିମ୍ବା ଇତ୍ୟାଦିର ସମସ୍ତ ବ୍ୟବହାର ଏହି ନୀତି ଉପରେ ପ୍ରତିଷ୍ଠିତ । ଏଠାରେ ଅବ୍ୟୟ ଗୁଡ଼ିକ [Prepositions] ବିଶେଷଭାବେ ଚିତ୍ତାକର୍ଷକ, କାରଣ ଯେଉଁ ପ୍ରକାର ପ୍ରସଙ୍ଗମାନଙ୍କ ଉପରେ ଏଗୁଡ଼ିକ ନିର୍ଭରଶୀଳ, ସେହି ପ୍ରସଙ୍ଗମାନ ସ୍ପଷ୍ଟତଃ ତଦନ୍ତର୍ଗତ ବସ୍ତୁ ଦୃଷ୍ଟିରୁ ବ୍ୟାପକତା ଓ ବିଭିନ୍ନତାରେ ପରସ୍ପର ପୃଥକ୍ । ମନେ ହେବ ଯେ 'ଅନ୍ତର୍ଗତ' ଓ 'ବହିଃସ୍ଥ' ପ୍ରସଙ୍ଗଗତ ଜଟିଳତାରେ ସମ୍ପନ୍ନ । ତେଣୁ ବଚନବିନ୍ୟାସ ଗଣ୍ଡଗୋଳ କ୍ଷେତ୍ରରେ, ଆଶାନୁରୂପଭାବେ, ଏଗୁଡ଼ିକର ସ୍ଥାନ ଅନାୟାସରେ ସଂରକ୍ଷିତ ହୁଏ । ଆହୁରି ମଧ୍ୟ, ଶବ୍ଦଗୁଡ଼ିକ ଅନ୍ୟାନ୍ୟ ଶବ୍ଦ ମାଧ୍ୟମରେ, ବିଶେଷତଃ ଶିକ୍ଷିତ ବ୍ୟକ୍ତିମାନଙ୍କ କ୍ଷେତ୍ରରେ, ଯେ ପରିମାଣରେ ପ୍ରସଙ୍ଗ ଲାଭ କରେ, ତାହା ଭାଷାର ବହୁଳ ଅଂଶର ରୂପକାତ୍ମକ ଦିଗରୁ ତଥା ଯେକୌଣସି ଶବ୍ଦ ଅନାୟାସରେ ରୂପକାତ୍ମକ ଭାବେ ବ୍ୟବହୃତ ହୋଇପାରୁଥିବା ବିଷୟରୁ ସୂଚିତ ହୁଏ । ପକ୍ଷାନ୍ତରେ, ଅତି ସରଳ ଧରଣର ମନୁଷ୍ୟ ସମାଜର ଶବ୍ଦସମ୍ଭାର ସ୍ୱଳ୍ପସଂଖ୍ୟକ ତଥା ବସ୍ତୁନିଷ୍ଠ ହୋଇଥିବାରୁ ସେ କ୍ଷେତ୍ରରେ ଉପରେ ପ୍ରଦତ୍ତ ବିବରଣୀ ପ୍ରାୟ ସତ୍ୟ; କାରଣ ସେମାନଙ୍କ ଶବ୍ଦାବଳୀ ମଧ୍ୟରୁ ଅଧିକାଂଶ ଅନୁଭୂତି ସହିତ ସାକ୍ଷାତ୍ ସମ୍ବନ୍ଧରୁ ସ୍ୱାଭାବିକଭାବେ ଲବ୍ଧ । ସ୍ୱକୀୟ ନାମର ବୈଶିଷ୍ଟ୍ୟମାନଙ୍କ ମଧ୍ୟରୁ ଅନେକ ସେମାନଙ୍କ ଭାଷାରେ ସର୍ବତ୍ର ପରିଲକ୍ଷିତ ହୁଏ । ଆଂଶିକତଃ ଏହି କାରଣରୁ ହିଁ ସେମାନଙ୍କ ଭାଷା

ଅପେକ୍ଷାକୃତ ଭାବେ ଗଣ୍ଡଗୋଳ ମୁକ୍ତ । କିନ୍ତୁ ଠିକ୍ ଏହି କାରଣରୁ ହିଁ ସେଗୁଡ଼ିକ ପ୍ରତି ସେମାନେ ଏକ ସମୀକ୍ଷାରହିତ ବା ଇନ୍ଦ୍ରଜାଲସଶ୍ଳିଷ୍ଟ ମନୋବୃତ୍ତି ପୋଷଣ କରନ୍ତି । ଆମେ ଅପକର୍ଷଣ ଶକ୍ତିର ଅଧିକାରୀ ହୋଇଥିବାରୁ ଆମକୁ ତାହାର ମୂଲ୍ୟ ଦେବାକୁ ପଡ଼େ, ଏବଂ ତାହା ହେଉଛି ଆମର ଭାଷାଗତ ଗଣ୍ଡଗୋଳ । ଯେଉଁ ସ୍ତରରେ ଏହି ଗଣ୍ଡଗୋଳ ସମ୍ଭବପର, ସେହି ସ୍ତରକୁ ଉପଯୁକ୍ତ ଭାଷାବିଦ୍‌ମାନେ ପଦ୍ଧତି-ପାରମ୍ପର୍ଯ୍ୟ ବୋଲି ବୋଧହୁଏ କୁହାଯାଇ ପାରିବ ।

ଏ ପର୍ଯ୍ୟନ୍ତ ଯାହା କୁହାଯାଉଛି, ତହିଁରେ ଆମେ ମୁଖ୍ୟତଃ ଶ୍ରୋତା ସହିତ ସଂପୃକ୍ତ ରହିଛୁଁ । ପ୍ରତୀକଗୁଡ଼ିକୁ ଶ୍ରୋତା ସମକ୍ଷରେ ଯେପରିଭାବେ ଉପସ୍ଥାପିତ କରାଯାଏ, ସେଗୁଡ଼ିକୁ ସେ ସେହିପରି ଭାବେ ଅର୍ଥକରେ । ଯେଉଁ ପ୍ରକ୍ରିୟାଗୁଡ଼ିକ ଦ୍ୱାରା ନିର୍ଦ୍ଦେଶମାନ ବକ୍ତାଠାରେ ପ୍ରତୀକାନ୍ୱିତ ହୁଏ, ସେଗୁଡ଼ିକର ପରୀକ୍ଷା କରିବା ଆମର ଏବେ ସୁଦ୍ଧା ବାକି ରହିଛି । କେତେକ ଦୃଷ୍ଟିକୋଣରୁ ଆଲୋଚ୍ୟ କ୍ଷେତ୍ର ହେଉଛି ପୂର୍ବବର୍ତ୍ତୀ କ୍ଷେତ୍ରର ବିପରୀତ, କିନ୍ତୁ ଅନ୍ୟାନ୍ୟ ଦୃଷ୍ଟିରୁ ବିଚାରକଲେ ଯାହା ଏଠାରେ ଘଟେ, ତାହା ସଂପୂର୍ଣ୍ଣ ଭିନ୍ନ ଧରଣର । ଶ୍ରୋତାପକ୍ଷରେ ଶବ୍ଦ ହେଉଛି ସଂକେତ ଏବଂ ଶବ୍ଦ ବିନା ଆବଶ୍ୟକୀୟ ନିର୍ଦ୍ଦେଶ ଘଟେ ନାହିଁ । ସମ୍ଭବତଃ, କେତେକ ମାନସିକ ପ୍ରକୃତିର ବ୍ୟକ୍ତିଙ୍କ କ୍ଷେତ୍ରରେ ଏହାର ଏକ ଠିକ୍ ଅନୁରୂପ ପ୍ରକ୍ରିୟା ବକ୍ତାଠାରେ ଘଟେ । ଏଠାରେ କେବଳ ପାର୍ଥକ୍ୟ ହେଉଛି ଯେ ଶବ୍ଦଗୁଡ଼ିକ ବାହାରୁ ପ୍ରଦତ୍ତ ହୁଏ ନାହିଁ; ସେଗୁଡ଼ିକ କୌଣସି ପ୍ରକାର ଅନ୍ତଃସ୍ଥ କାରଣିକତା ମାଧ୍ୟମରେ ଉତ୍ପନ୍ନ ହୁଏ । ଏଠାରେ ଦୁଇଟି ପୃଥକ୍ ପ୍ରକ୍ରିୟା, ଅର୍ଥାତ୍ ନିର୍ଦ୍ଦେଶ ଓ ପ୍ରତୀକାନ୍ୱିତ କରଣ ନାହିଁ; ଯାହା ରହିଛି ତାହା ଗୋଟିଏ ମାତ୍ର ପ୍ରକ୍ରିୟା, ଅର୍ଥାତ୍ ପ୍ରତୀକମାନଙ୍କ ମାଧ୍ୟମରେ ନିର୍ଦ୍ଦେଶ । ଏଠାରେ ପରିସ୍ଥିତିଟି ଏପରି ଯେ ନିର୍ଦ୍ଦେଶ ପ୍ରତୀକ ଦ୍ୱାରା ପରିଚାଳିତ ।

ଯାହାହେଉ, ଅଧିକାଂଶ ଚିନ୍ତକଙ୍କ ପକ୍ଷରେ ପ୍ରତୀକ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ ପରି ମନେହୁଏ । ପ୍ରତୀକକୁ ପରିହାର କରାଯାଇ ପାରେ; କେତେକ ସୀମା ମଧ୍ୟରେ ତାହା ପରିବର୍ତ୍ତିତ ହୋଇପାରେ ଏବଂ ଯେଉଁ ନିର୍ଦ୍ଦେଶ ନିମନ୍ତେ ତାହା ଏକ ପ୍ରତୀକ, ସେହି ନିର୍ଦ୍ଦେଶର ତାହା ଅଧୀନ । ଏ ପ୍ରକାର ଲୋକଙ୍କ ପକ୍ଷରେ ସ୍ୱାଭାବିକ କ୍ଷେତ୍ରରେ, କେବଳ ଅବସ୍ଥା ବିଶେଷରେ ହିଁ ପ୍ରତୀକ ହେଉଛି ନିର୍ଦ୍ଦେଶ ନିମନ୍ତେ ଆବଶ୍ୟକ ହେଉଥିବା ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅଂଶ । ଆମ ସମସ୍ତଙ୍କ ପକ୍ଷରେ ଏପରି ନିର୍ଦ୍ଦେଶଗୁଡ଼ିକ ରହିଛି, ଯାହାର ଉପଯୋଗ କେବଳ ଶବ୍ଦମାନଙ୍କ ସାହାଯ୍ୟରେ, ଅର୍ଥାତ୍ ଶବ୍ଦସମନ୍ୱିତ ପ୍ରସଙ୍ଗମାନଙ୍କ ଦ୍ୱାରା ଯେ କରାଯାଏ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଭିନ୍ନ ମାନସିକ ପ୍ରକୃତିର ଏବଂ ଭିନ୍ନ ସ୍ତରର ଲୋକଙ୍କ ପାଇଁ ଏହି ଅବସ୍ଥା ଆବଶ୍ୟକ ରୂପେ ସମାନ ନୁହେଁ ।

ପୁଣି ସେହି ଏକ ବ୍ୟକ୍ତି ନିମନ୍ତେ ସୁଦ୍ଧା ଗୋଟିଏ ପରିସ୍ଥିତିରେ ଯେଉଁ ଶବ୍ଦକୁ ଗୋଟିଏ ନିର୍ଦ୍ଦେଶ ପରିହାର କରିବାକୁ ସମର୍ଥ, ଅନ୍ୟ ପରିସ୍ଥିତିରେ ସେହି ଶବ୍ଦର ଆବଶ୍ୟକତା ଥାଇପାରେ, ସେହି ଶବ୍ଦବିନା ସେହି ନିର୍ଦ୍ଦେଶ କରାଯିବା ଅସମ୍ଭବ ହୋଇପାରେ। ଭିନ୍ନ ଭିନ୍ନ ପରିସ୍ଥିତିରେ, ଅନୁରୂପ ନିର୍ଦ୍ଦେଶମାନଙ୍କ ନିମନ୍ତେ ସମ୍ପୂର୍ଣ୍ଣ ଭିନ୍ନ ଭିନ୍ନ ପ୍ରସଙ୍ଗ ନିର୍ଣ୍ଣାୟକ ହୋଇପାରେ। ସ୍ମରଣରେ ରହିବା କଥା ଯେ ଦୁଇଟି ନିର୍ଦ୍ଦେଶ ବ୍ୟାବହାରିକ ଉଦ୍ଦେଶ୍ୟରେ ଏକ ବୋଲି ବିବେଚିତ ହେବା ନିମନ୍ତେ, ମୁଖ୍ୟଗୁଣମାନଙ୍କରେ ଯଥେଷ୍ଟ ପରିମାଣରେ ସଦୃଶ ହୋଇଥିଲେ ସୁଦ୍ଧା ଗୌଣଗୁଣମାନଙ୍କରେ ବହୁ ପରିମାଣରେ ପରସ୍ପର ଭିନ୍ନ ହୋଇପାରେ । କାର୍ଯ୍ୟକାରୀ ହେଉଥିବା ପ୍ରସଙ୍ଗରେ ପ୍ରୟୋଜନାତିରିକ୍ତ ବିଷୟ ଅନ୍ତର୍ଭୁକ୍ତ ହୋଇ ଥାଇପାରେ । କିନ୍ତୁ ଯେଉଁ ବ୍ୟାପକ ପ୍ରସଙ୍ଗ ଉପରେ ଏହି ସଙ୍କୀର୍ଣ୍ଣ ପ୍ରସଙ୍ଗ ନିର୍ଭରଶୀଳ, ତାହାର ଯଦି ପରିବର୍ତ୍ତନ ଘଟେ, ତେବେ ଏହି ଗୌଣଗୁଣମାନଙ୍କ ମଧ୍ୟରୁ ଯେ କୌଣସିଟି କେବଳ ଏକ ସହଗାମୀ ଗୁଣ ହେବା ପରିବର୍ତ୍ତେ ଏକ ମୁଖ୍ୟ ଉପାଦାନ ହୋଇ ଯାଇପାରେ। ଶାବ୍ଦିକ-ସ୍ୱାଧୀନତାରୁ ଶାବ୍ଦିକ-ନିର୍ଭରଶୀଳତାକୁ ପରିବର୍ତ୍ତନ କ୍ଷେତ୍ରରେ ଏହା ଘଟିଥାଏ ପରି ମନେ ହୁଏ । ଯେତେବେଳେ ଶବ୍ଦଟି ନିର୍ଦ୍ଦେଶ ପ୍ରସଙ୍ଗର ଏକ ମୁଖ୍ୟ ଉପାଦାନ ନୁହେଁ, ସେତେବେଳେ ଶାବ୍ଦିକ ସ୍ୱାଧୀନତା ଥାଏ, ଏବଂ ଯେତେବେଳେ ତାହା ନିର୍ଦ୍ଦେଶ ପ୍ରସଙ୍ଗର ଏକ ମୁଖ୍ୟ ଉପାଦାନ, ସେତେବେଳେ ଶାବ୍ଦିକ ନିର୍ଭରଶୀଳତା ଥାଏ ।

ବ୍ୟକ୍ତି ବ୍ୟକ୍ତି ମଧ୍ୟରେ, ଏବଂ ସେହି ଏକ ବ୍ୟକ୍ତି ପକ୍ଷରେ ପରିସ୍ଥିତି ପରିସ୍ଥିତି ମଧ୍ୟରେ ରହିଥିବା ଏହି ପାର୍ଥକ୍ୟଗୁଡ଼ିକର ବ୍ୟାବହାରିକ ପରିଣତିମାନ ଗୁରୁତ୍ୱପୂର୍ଣ୍ଣ । ଯେଉଁମାନେ ସେମାନଙ୍କ ନିର୍ଦ୍ଦେଶ ଗୁଡ଼ିକରେ ବ୍ୟାପକ ଅବ୍ୟବସ୍ଥା ନ ଭିଆଇ ନିଜର ଶବ୍ଦଭଣ୍ଡାର ପରିବର୍ତ୍ତନ କରିବାରେ ଅସମର୍ଥ ଏବଂ ଯେଉଁମାନେ ପରିସ୍ଥିତି ସହିତ ସାମଞ୍ଜସ୍ୟ ରକ୍ଷା କରିବାକୁ ନିଜର ପ୍ରତୀକତନ୍ତ୍ରର ପରିବର୍ତ୍ତନ ଅନାୟାସରେ କରିବା ନିମନ୍ତେ ସମର୍ଥ—ଏହି ଦୁଇ ଶ୍ରେଣୀ ମଧ୍ୟରେ ଆମକୁ ଆଲୋଚନାରେ ସର୍ବଦା ପାର୍ଥକ୍ୟ ରକ୍ଷା କରିବାକୁ ପଡିବ । ବୌଦ୍ଧିକ ବିସ୍ତାର ସମସ୍ତ ସ୍ତରରେ ଏପରି ଲୋକମାନେ ରହିଥିବାର ଦେଖାଯିବ, ଯେଉଁମାନଙ୍କୁ ଯଦି ସୂଚନା ଦିଆଯାଏ ଯେ ସେମାନେ ନିଜର ପ୍ରତୀକଗୁଡ଼ିକର ପରିବର୍ତ୍ତନ କରିବା ଉଚିତ, ତେବେ ସେମାନଙ୍କର ମନେ ହେବ ଯେ ସେମାନଙ୍କୁ ନିଜର ବିଶ୍ୱାସଗୁଡ଼ିକୁ ପରିବର୍ତ୍ତନ କରିବା ଉଚିତ ବୋଲି ସୂଚନା ଦିଆଯାଉଛି । ଏମାନଙ୍କ କ୍ଷେତ୍ରରେ ଏପରି ମନେ ହେବା ଅନିବାର୍ଯ୍ୟ; ଏ ପ୍ରକାର ଲୋକଙ୍କ ପକ୍ଷରେ ଭିନ୍ନ ଭାବେ କହିବା ଭିନ୍ନଭାବେ ଚିନ୍ତା କରିବା ସହିତ ସମାନ, କାରଣ ସେମାନଙ୍କ ଶବ୍ଦାବଳୀ ହେଉଛି ସେମାନଙ୍କ ନିର୍ଦ୍ଦେଶ ପ୍ରସଙ୍ଗଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ଯେଉଁମାନେ ନିଜର ପ୍ରତୀକ ତନ୍ତ୍ର ଦ୍ୱାରା ଏହିପରିଭାବେ ଅନୁବଦ୍ଧ ନୁହନ୍ତି, ସେମାନଙ୍କ ସାଧାରଣତଃ ମନେ ହୁଏ ଯେ ଲୋକଙ୍କର ନିଜ ପ୍ରିୟ ପ୍ରକାଶଭଙ୍ଗୀକୁ

ସାମଗ୍ରିକ ଭାବେ ପରିହାର କରିବାରେ ଏହି ଅସାମର୍ଥ୍ୟ ହେଉଛି ଏକ ସ୍ୱତନ୍ତ୍ର ପ୍ରକାର ସ୍ଥାନୀୟ—ଜବୋଧତା । (୧) କିନ୍ତୁ ଏହା ଜଧାରୀୟରୂପେ ବସ୍ତୁ ସହିତ ଶବ୍ଦର ସମ୍ବନ୍ଧ ବିଷୟକ ଏକ ଅମାର୍ଜିତ ଅନ୍ଧବିଶ୍ୱାସ ମୂଳକ ମତର ସୂଚକ ହେବା ଆବଶ୍ୟକ ନୁହେଁ ; କାରଣ ଆମେ ସ୍ୱୀକାର କରିବାକୁ ପ୍ରସ୍ତୁତ ରହିବା ଉଚିତ ଯେ ବିଶିଷ୍ଟ ଶବ୍ଦଗୁଡ଼ିକ ସତେ ଯେପରି ନିରଙ୍କୁଶ ଓ ଐନ୍ଦ୍ରଜାଲିକ ସଦ୍‌ଗୁଣର ଅଧିକାରୀ, ସେହିପରି ଭାବେ ଧରିନେଇ ସେଗୁଡ଼ିକୁ ଜାବୁଡ଼ି ଧରିବା ଅନ୍ୟ ଏକ ବିଷୟର ସୂଚକ ହୋଇପାରେ । ତାହା ହେଉଛି, ବକ୍ତା ପକ୍ଷରେ ସେହି ଶବ୍ଦଟି ନିର୍ଦ୍ଦେଶ ପ୍ରସଙ୍ଗର ଏକ ଆବଶ୍ୟକ ଅଂଗ । ଏହାର କାରଣ ହୋଇପାରେ ଯେ ଯେତେବେଳେ ପ୍ରଥମେ ନିର୍ଦ୍ଦେଶ କରାଯାଇଥିଲା, ସେତେବେଳେ ଶବ୍ଦଟିର ସ୍ଥିତି ତଦ୍ରୂପ ରହିଥିଲା । ଏହାର ବିକଳ୍ପ କାରଣ ମଧ୍ୟ ହୋଇପାରେ ଯେ ଗଣ୍ଡଗୋଳରୁ ନିଷ୍କୃତି ପାଇବାକୁ ହେଲେ, ଏଠାରେ ଅଣବାଚନିକ ସଙ୍କେତଗୁଡ଼ିକ ଯଥେଷ୍ଟ ହେବ ନାହିଁ । ପକ୍ଷାନ୍ତରେ, ଯେ କୌଣସି ପ୍ରସ୍ତାବିତ ପ୍ରତୀକକୁ ବ୍ୟବହାର କରିବା ପାଇଁ ଅତ୍ୟଧିକ ତତ୍ପରତା ମଧ୍ୟ ହେଉଛି ନିର୍ଦ୍ଦେଶ ନିର୍ଦ୍ଦେଶ ମଧ୍ୟରେ ପାର୍ଥକ୍ୟ ରକ୍ଷାରେ ଏକ ନିମ୍ନସ୍ତରୀୟ ଶକ୍ତିର ପରିଚାୟକ । ଏତଦ୍ୱାରା ଦର୍ଶକର ଧାରଣା ଜନ୍ମେ ଯେ ବକ୍ତା କୌଣସି ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ଆଦୌ କରୁ ନାହିଁ ।

---

(୧) ଏହାକୁ ପଦସ୍ଥ ବ୍ୟକ୍ତି ଏବଂ ଅନ୍ୟମାନଙ୍କ ଜିଦ୍‌ଖୋର-ପ୍ରବୃତ୍ତି ସହିତ ବ୍ୟାମିଶ୍ରିତ କରି ପକାଇବା ଅନୁଚିତ ହେବ । ଏମାନଙ୍କ ଜିଦ୍‌ଖୋର ପ୍ରବୃତ୍ତି ଅନେକସ୍ଥ ବାଚନିକ ପରିବର୍ତ୍ତନରେ ଅସମ୍ମତି ଦ୍ୱାରା ପ୍ରକାଶ ପାଇଥାଏ । ଏହି ବିଷୟକ ଏକ ନିଗ୍ରୋ ଉପାଖ୍ୟାନ C. S. Peirce ବାରମ୍ବାର କହୁଥିଲେ, "ତୁମେ ଜାଣ, ମାଯା, ଜେନେରାଲ ୱାସିଂଟନ ଓ ଜେନେରାଲ ଜେକସନ୍ ପରମ ବନ୍ଧୁ ଥିଲେ । ଆଚ୍ଛା, ଦିନେ କଣ ହୋଇଛି ନା, ଜେନେରାଲ ୱାସିଂଟନ ଜେନେରାଲ ଜେକସନଙ୍କୁ କହିଲେ, 'ଜେନେରାଲ, ମୋର ଏହି ଘୋଡ଼ାଟି କେତେ ଉଚ୍ଚ ବୋଲି ତୁମେ ଭାବୁଛ ?' 'ମୁଁ ଜାଣି ନାହିଁ, ଜେନେରାଲ'—କହିଲେ ଜେନେରାଲ ଜେକସନ । ତାପରେ ସେ ପଚାରିଲେ 'ଘୋଡାଟି କେତେ ଉଚ୍ଚ କି, ଜେନେରାଲ ୱାସିଂଟନ ?' ଜେନେରାଲ ୱାସିଂଟନ ଉତ୍ତର ଦେଲେ, 'କାହିଁକି ମ ! ଇଏ ପରା ଷୋହଳ ଫୁଟ ଉଚ୍ଚ ।' ଜେନେରାଲ ଜେକସନ କହିଲେ, 'ଫୁଟ କହିଲ ଯେ ଜେନେରାଲ ୱାସିଂଟନ ? ଫୁଟ କି ? ତୁମେ ବୋଧହୁଏ ହାତ ମନେ କରିଛ ଜେନେରାଲ ।' ତାପରେ ଜେନେରାଲ ୱାସିଂଟନ କହିଲେ, 'ମୁଁ ଫୁଟ କହିଲି କି ଜେନେରାଲ ଜେକସନ୍ ? ମାନେ, ତୁମେ ଏହା ହିଁ କହୁଛ କି ଯେ ମୁଁ ମୋ ଘୋଡ଼ାର ଉଚ୍ଚତା ଷୋହଳ ଫୁଟ ବୋଲି କହିଲି ? ଆଚ୍ଛା ହେଉ, ଜେନେରାଲ ଜେକସନ, ମୁଁ ଯଦି ଫୁଟ କହିଲି, ଯଦି ମୁଁ ଫୁଟ ହିଁ କହିଥାଏଁ, ତେବେ ମୁଁ ସେହି ଫୁଟ କଥାରେ ହିଁ ଅଟଳ ରହୁଛି ।"

କିନ୍ତୁ ଭାଷା-ଆଚରଣର ଲକ୍ଷଣ-ବିଶ୍ଳେଷଣ ହେଉଛି ଏକ ଜଟିଳ ବିଷୟ; ଏବଂ ଏ ସନ୍ଦାନ୍ତୀୟ ପର୍ଯ୍ୟବେକ୍ଷଣରେ ସତ୍ୟାସତ୍ୟକୁ ଯଦି ପର୍ଯ୍ୟବେକ୍ଷିତ ବ୍ୟକ୍ତିର ସାଧାରଣ ଆଚରଣ ସମ୍ବନ୍ଧୀୟ ଏକ ବ୍ୟାପକ ଜ୍ଞାନଦ୍ୱାରା ପରୀକ୍ଷା କରିବା ସମ୍ଭବପର ନହୁଏ, ତେବେ ତାହିରେ ବିଶେଷ ଆସ୍ଥା ସ୍ଥାପନ କରାଯାଇ ନପାରେ । ଏହି ସମସ୍ତ ଦୃଷ୍ଟାନ୍ତର ଏଠାରେ ଏକ ସ୍ଥୂଳ ବର୍ଣ୍ଣନା ଦେବାର ଉଦ୍ଦେଶ୍ୟ ହେଉଛି ଯେ ଏବେ ମଧ୍ୟ କିପ୍ରକାର କାର୍ଯ୍ୟର ଆବଶ୍ୟକତା ରହିଛି, ତାହାର କେବଳ ଏକ ସୂଚନା ଦେବା । ଏହି ପ୍ରକାର କାର୍ଯ୍ୟରେ ଅନେକେ ସ୍ୱଭାବତଃ ବହୁ ପରିମାଣରେ ସାଫଲ୍ୟ ଅର୍ଜନ କରନ୍ତି । ଜଣେ ବକ୍ତାର ମୁହଁରୁ ଶବ୍ଦଗୁଡ଼ିକ କିପରିଭାବେ ବାହାରୁଛି କେବଳ ସେତିକି ଲକ୍ଷ୍ୟକରି ନିର୍ଦ୍ଦିଷ୍ଟ ଶବ୍ଦଗୁଡ଼ିକ ପ୍ରତି ଧ୍ୟାନ ନଦେଇ ସୁଦ୍ଧା, ତାହାର କଥା ମନଦେଇ ଶୁଣିବା ଯୋଗ୍ୟ କି ନୁହେଁ, ତାହା ଏମାନେ ପ୍ରାୟଶଃ ଅନାୟାସରେ ନିର୍ଣ୍ଣୟ କରି ପାରନ୍ତି । ଯାହାହେଉ, ରାଜନୀତିଜ୍ଞ ତଥା ଧର୍ମପ୍ରଚାରକମାନଙ୍କ ବିଶେଷ ଢଙ୍ଗର କଥନ ଭଙ୍ଗୀର ଅଧ୍ୟୟନ ଅଥବା ହଠାତ୍ ସିଦ୍ଧାନ୍ତ ଗ୍ରହଣର ଏକ ଉପାଦେୟ ନିୟନ୍ତ୍ରକ ସ୍ୱରୂପ କାର୍ଯ୍ୟକରେ । ଯେଉଁ ଲୋକଙ୍କ କ୍ଷେତ୍ରରେ ନିର୍ଦ୍ଦେଶ ପ୍ରତୀକର ନିୟନ୍ତ୍ରଣ କରେ ଏବଂ ଯେଉଁ ଲୋକଙ୍କ କ୍ଷେତ୍ରରେ ପ୍ରତୀକ ନିର୍ଦ୍ଦେଶର ନିୟନ୍ତ୍ରଣ କରେ ଏହି ଦୁଇ ଶ୍ରେଣୀର ଲୋକଙ୍କ ମଧ୍ୟରେ ସାଧାରଣତଃ ଏକ ପାର୍ଥକ୍ୟ ରକ୍ଷା କରିବା ସର୍ବଦା ଆବଶ୍ୟକ ହୋଇଥାଏ, ଯଦିଓ ଏ ଦୁଇଟି ଅବସ୍ଥା କଦାଚିତ୍ ପରସ୍ପର ଅସଂପୃକ୍ତ ଭାବେ ରହିଥିବାର ଦେଖାଯାଏ । ଏକଥା ଆମେ ଆଗରୁ ସୂଚିତ କରିଦେଇଥିଲୁଁ । ଏ ଦୁଇଟିକୁ ଶାବ୍ଦିକ ସ୍ୱାଧୀନତା ଓ ଶାବ୍ଦିକ ନିର୍ଭରଶୀଳତା ବୋଲି ଅଭିହିତ କରାଯାଇ ପାରେ । ଅଧିକାଂଶ ବକ୍ତା ଏ ଦୁଇଟିର ଗୋଟିକରୁ ଅନ୍ୟଟିକୁ ଏକାଦିକ୍ରମେ ପରିବର୍ତ୍ତନ କରିଥାନ୍ତି । କିନ୍ତୁ ଏ ଦୁଇଟିର ପାର୍ଥକ୍ୟ ରକ୍ଷା କରିବା କ୍ଷେତ୍ରରେ ଏହି ବ୍ୟାବହାରିକ ଅସୁବିଧା ରହିଥିବା ସତ୍ତ୍ୱେ ଭାଷାଗତ ଗବେଷଣାର ପ୍ରସ୍ଥାନବିନ୍ଦୁମାନଙ୍କ ମଧ୍ୟରେ ଶାବ୍ଦିକ ସ୍ୱାଧୀନତା ଓ ଶାବ୍ଦିକ ନିର୍ଭରଶୀଳତାର ପାର୍ଥକ୍ୟ ରକ୍ଷା ଅନ୍ୟତମ; କାରଣ ଯେଉଁ ଅନିଷ୍ଟକର ରୋଗରୁ ମନୁଷ୍ୟର ଭାବବିନିମୟ କ୍ରିୟା ଏତେ ଅଧିକ ପରିମାଣରେ କ୍ଷତିଗ୍ରସ୍ତ ହୁଏ, ତାହାକୁ ନିରର୍ଥକ ଉକ୍ତି, ପ୍ରଗଲ୍ଭତା, ଶୂନ୍ୟଗର୍ଭତା କିମ୍ବା ଅନ୍ୟ ଯେ କୌଣସି ନାମରେ ଅଭିହିତ କରିବାକୁ ଆମେ ସ୍ଥିର କରୁଁ ନା କାହିଁକି, ତାହାର ଲକ୍ଷଣଗୁଡ଼ିକ ଏହି ଦୁଇଟି ଅବସ୍ଥା ବିଶେଷରେ ଭିନ୍ନ ଭିନ୍ନ । ବାସ୍ତବିକ, ଏ ଦୁଇଟି ଅବସ୍ଥାର ପାର୍ଥକ୍ୟ ରକ୍ଷା ବିନା ଏହି ଲକ୍ଷଣଗୁଡ଼ିକ ପରସ୍ପର ବିରୋଧୀ ଓ ଅନିର୍ଦ୍ଦିଷ୍ଟାର୍ଥକ ହୋଇଯାଏ । ନିଜର ବ୍ୟକ୍ତିଗତ ଅଭିଜ୍ଞତାରୁ ଅଧିକାଂଶ ଲେଖକ ବା ବକ୍ତା ଏ ବିଷୟରେ ଏକମତ ହେବେ ଯେ କେତେକ ପରିସ୍ଥିତିରେ ସେମାନଙ୍କ ବକ୍ତବ୍ୟର ଗତି ଧୀର, ଗମ୍ଭୀର ଏବଂ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ, କାରଣ ସେତେବେଳେ ସେମାନେ ଶବ୍ଦଗୁଡ଼ିକ ଉପରେ ନିର୍ଭରଶୀଳ । ପ୍ରୟୋଜନୀୟ ଶବ୍ଦଗୁଡ଼ିକ, ଯାହା ବିନା କୌଣସି ବିଷୟର ସଂଘଟନ

ସମ୍ଭବପର ନୁହେଁ, ସେମାନଙ୍କ ମନକୁ ଯେତେବେଳେ ଧୀରେ ଧୀରେ ଅସେ ଏବଂ ସେଗୁଡ଼ିକୁ ପାଇବା ନିମନ୍ତେ ସେମାନଙ୍କୁ ଅପେକ୍ଷା କରିବାକୁ ପଡ଼େ । ପୁଣି ଅନ୍ୟ କେତେକ ପରିସ୍ଥିତିରେ ଭିନ୍ନ କାରଣରୁ ମଧ୍ୟ ବକ୍ତବ୍ୟର ଗତି ତଦ୍ରୂପ ହୋଇଥାଏ । ଏହି କ୍ଷେତ୍ରମାନଙ୍କରେ, ସେମାନଙ୍କ ସେହି ମୁହୂର୍ତ୍ତିରେ ଶାବ୍ଦିକ ସ୍ୱାଧୀନତା ରହିଥିବାରୁ ଉକ୍ତିକୁ ଏକ ଚୂଡ଼ାନ୍ତରୂପ ଦେବା ଉଦ୍ଦେଶ୍ୟରେ ସେମାନେ ନିର୍ଦ୍ଦେଶର ତଥା ପରିସ୍ଥିତିର ସର୍ବାପେକ୍ଷା ଯଥୋପଯୁକ୍ତ ପ୍ରତୀକ ପଦ୍ଧତି ନିର୍ବାଚନ ପାଇଁ ସମସ୍ତ ଆବଶ୍ୟକ କରନ୍ତି ।

ଏହି କଥନ ପ୍ରଣାଳୀଦ୍ୱୟରୁ କୌଣସି ଗୋଟିକୁ ଏକମାତ୍ର ଯଥାର୍ଥ ବା ଯଥୋପଯୁକ୍ତ ପ୍ରଣାଳୀ ରୂପେ ସୈଦ୍ଧାନ୍ତିକଭାବେ ପ୍ରତିଷ୍ଠିତ କରାଯାଇ ନ ପାରେ । ଉଦାହରଣ ସ୍ୱରୂପ, ଶାବ୍ଦିକ-ନିର୍ଭରଶୀଳତାକୁ ଶୁକାଗ୍ରତା ସହିତ ସର୍ବତୋଭାବେ ସମାନ ବୋଲି ଅଥବା ଆବଶ୍ୟକରୂପେ ସେହି ଦିଗାଭିମୁଖୀ ବୋଲି ଗ୍ରହଣ କରିନେବା ଉଚିତ ନୁହେଁ । ଶୁକାଗ୍ରତା ହେଉଛି ନିର୍ଦ୍ଦେଶରହିତ ଶବ୍ଦ ବ୍ୟବହାର । ଶାବ୍ଦିକ ନିର୍ଭରଶୀଳତା କ୍ଷେତ୍ରରେ ଗୋଟିଏ ନିର୍ଦ୍ଦେଶ ନିମନ୍ତେ ଏକ ନିର୍ଦ୍ଦିଷ୍ଟ ଶବ୍ଦ ଆବଶ୍ୟକ । ଏହି ଘଟଣାକୁ ଯେ ନିର୍ଦ୍ଦେଶର ଅଭିବ୍ୟଞ୍ଜକ ବୋଲି କୌଣସି ପ୍ରକାରେ ଗ୍ରହଣ କରାଯାଇ ନ ପାରେ, ତାହା ସହଜରେ ଉପଲବ୍ଧ । ତଥାପି ଖାଇବା ବା ସାଇକେଲ ଚଢ଼ିବା ପରି କେତେକ କ୍ରିୟାର ବର୍ଣ୍ଣନା କରାଯାଇ । ଏହି କ୍ରିୟାଗୁଡ଼ିକ ବିଭିନ୍ନ ପରିମାଣରେ ନିୟନ୍ତ୍ରଣ ସାପେକ୍ଷ ହୋଇଥିବା ଦୃଷ୍ଟିରୁ କଥନ କ୍ରିୟାର ଅନୁରୂପ । ଯଦି ଏହି ଅନ୍ୟପ୍ରକାର କ୍ରିୟାଗୁଡ଼ିକର ବର୍ଣ୍ଣନା କରାଯାଏ, ତେବେ ଦେଖାଯିବ ଯେ ଏହି ଦୁଇ ଚରମ ପ୍ରଣାଳୀ, ଅର୍ଥାତ୍ ଶାବ୍ଦିକ ନିର୍ଭରଶୀଳତା ଓ ଶାବ୍ଦିକ ସ୍ୱାଧୀନତାର ସମ୍ମିଶ୍ରଣ ଦ୍ୱାରା ଗଠିତ ଏକ କଥନପ୍ରଣାଳୀକୁ ସମର୍ଥନ କରି ସିଦ୍ଧାନ୍ତ ଗ୍ରହଣ କରିବା ନିମନ୍ତେ ସମ୍ଭବତଃ କାରଣ ରହିଛି । ଗୁରୁତ୍ୱପୂର୍ଣ୍ଣ ଉକ୍ତିର କେତେକ ସ୍ଥଳରେ ସ୍ୱେଚ୍ଛାକୃତ ନିୟନ୍ତ୍ରଣର ମାତ୍ରା ସର୍ବାଧିକ ହେବା ଉଚିତ, ଅର୍ଥାତ୍ ଯେଉଁ ମନସ୍ତାତ୍ତ୍ୱିକ ପ୍ରସଙ୍ଗରେ ଶବ୍ଦଟି ଆତଙ୍କିତ ଏବଂ ଯାହା ହେତୁରୁ ନିର୍ଦ୍ଦେଶ କରାଯାଏ, ସେହି ମନସ୍ତାତ୍ତ୍ୱିକ ପ୍ରସଙ୍ଗରେ ଯେତେ ସଂଖ୍ୟକ ବିଭିନ୍ନ ଉପାଦାନ ରହିବା ସମ୍ଭବପର, ସେତେ ସଂଖ୍ୟକ ଉପାଦାନ ରହିବା ଉଚିତ । ପ୍ରତୀକପଦ୍ଧତିର ଅବଶିଷ୍ଟାଂଶକୁ ଶାବ୍ଦିକ ଅଭ୍ୟାସ, କଥନ ଯନ୍ତ୍ରର କାର୍ଯ୍ୟ ବା ଭାଷାଗତ ଦୃଷ୍ଟିକୋଣ ବୋଲି ଉଲ୍ଲିଖିତ କରାଯାଉଥିବା ସଙ୍କୀର୍ଣ୍ଣ ପ୍ରସଙ୍ଗ ପଦ୍ଧତିମାନଙ୍କ ନିୟନ୍ତ୍ରଣରେ ଛାଡ଼ିଦେବା ଉଚିତ ।

ମନସ୍ତାତ୍ତ୍ୱିକ ଗବେଷଣାରେ ସର୍ବଦା ଯେପରି ହୋଇଥାଏ, ସେହିପରି ଏହି କ୍ଷେତ୍ରରେ ମଧ୍ୟ ବିକୃତିବିଜ୍ଞାନ ପ୍ରତୀକର ବ୍ୟବହାର ଉପରେ ଯଥେଷ୍ଟ ଅଲୋକପାତ

କରିଥାଏ । ଏବେ ବାକ୍ୟଘାତ (୧) ଉପରେ ଗବେଷଣା କାର୍ଯ୍ୟ ଚାଲିଛି । ଏଥିରୁ ଅନେକ କିଛି ଆଶା କରାଯାଇପାରେ । ଇତ୍ୟବସରରେ ଭାଷାର ସ୍ୱାଭାବିକ ବ୍ୟବହାରଗତ କେତେକ ଅସୁବିଧାର ବିଚାର ଚିତ୍ତାକର୍ଷକ ହେବ । ଉପରେ ବର୍ଣ୍ଣିତ ହୋଇଥିବା ବ୍ୟାଖ୍ୟାମାନଙ୍କ ସୂତ୍ରଗୁଡ଼ିକ ସହିତ ସଂବାଦିତା ରକ୍ଷାକର ସମସାମୟିକ ସମ୍ଭବପର ଅସାଫଲ୍ୟର ସ୍ତର ରହିଛି । ଧ୍ୱନିରୂପେ ଶବ୍ଦକୁ ଚିହ୍ନିବାରେ ଆମେ ଅସଫଳ ହୋଇପାରୁଁ ।

---

(୧) ବିଶେଷତଃ Henri Pieron ଙ୍କ Thought and the Brain (International Library of Psychology, ୧୯୨୭) ତୃତୀୟ ଖଣ୍ଡ ପୃ ୧୪୯—୨୨୭ ଏବଂ Kinnier Wilson ଙ୍କ Aphasia (Psyche Miniatures, ୧୯୨୬) ଦ୍ରଷ୍ଟବ୍ୟ । ଏଥିରେ ଉଭୟ ସମ୍ବେଦନାତ୍ମକ ଓ ପ୍ରଚାରାତ୍ମକ ଦିଗର ଆଲୋଚନା କରାଯାଇଛି ।

Dr. Henry Head ଚାରି ପ୍ରକାର ବାଚନିକ ଗଣ୍ଡଗୋଳର ପାର୍ଥକ୍ୟ ନିମ୍ନଲିଖିତଭାବେ ପ୍ରଦର୍ଶନ କରିଛନ୍ତି । ଏଗୁଡ଼ିକର ନାମ କରଣ "ଶବ୍ଦ ବ୍ୟବହାରରେ ସର୍ବପ୍ରଧାନ ଦୋଷ" ଦୃଷ୍ଟିରୁ କରାଯାଇଛି ।

(୧) ଶାବ୍ଦିକ ବାକ୍ୟଘାତ—"ମୁଖ୍ୟତଃ ଏହା ଏକ ଶବ୍ଦ ଗଠନମୂଳକ ବ୍ୟାଘାତ ।.........କଥନ ସାମର୍ଥ୍ୟ ପ୍ରତ୍ୟାବୃତ୍ତ ହେଲେ, କଥିତ ବା ଲିଖିତ ଶବ୍ଦାବଳୀ ମାଧ୍ୟମରେ ପ୍ରଦତ୍ତ ଆଦେଶର ସମ୍ପାଦନ କରାଯାଇପାରେ । କିନ୍ତୁ ଯେଉଁ ଆଦେଶଗୁଡ଼ିକର ସମ୍ପାଦନ ନିମନ୍ତେ କୌଣସି ଶବ୍ଦ ବା ଶବ୍ଦ ସମଷ୍ଟି କଥିତ ହେବା ଆବଶ୍ୟକ, ତାହା ଉତ୍ତମରୂପେ କରାଯାଇ ପାରେ ନା ।"

(୨) ଶବ୍ଦ ବିନ୍ୟାସ ବାକ୍ୟଘାତ—ରୋଗୀ "ପ୍ରଳାପପ୍ରବଣ ହୁଏ । କେବଳ ଶବ୍ଦୋଚ୍ଚାରଣରେ ଯେ ସମତା ନଷ୍ଟହୁଏ, ଏକଥା ନୁହେଁ, ଶବ୍ଦସମଷ୍ଟିର ଛନ୍ଦ ମଧ୍ୟ ତ୍ରୁଟିପୂର୍ଣ୍ଣ ହୁଏ ଏବଂ ବ୍ୟାକରଣଗତ ସଂଯୁକ୍ତତାର ଅଭାବ ଘଟେ ।.........ଐକିକ ଶବ୍ଦମାନ ଶୁଦ୍ଧଭାବେ ଲେଖାଯାଇପାରେ; କିନ୍ତୁ ଏକ ସୁନ୍ଦରବଦ୍ଧ ଉକ୍ତି ଦେବାର ଯେ କୌଣସି ପ୍ରୟାସର ବିଭ୍ରାଟ ସୃଷ୍ଟି ହେବାର ସମ୍ଭାବନା ଥାଏ ।"

(୩) ନାମମୂଳକ ବାକ୍ୟଘାତ—"ମୁଖ୍ୟତଃ ଏହା ହେଉଛି ନାମମାନଙ୍କ ତ୍ରୁଟିପୂର୍ଣ୍ଣ ବ୍ୟବହାର, ଏବଂ ଶବ୍ଦ ବା ଅନ୍ୟାନ୍ୟ ପ୍ରତୀକର ନାମାତ୍ମକ ଅର୍ଥ ବୁଝିବାରେ ଅସାମର୍ଥ୍ୟ ।" ଏହି ସମ୍ପର୍କରେ Dr. Head ମନ୍ତବ୍ୟ ଦେଇଛନ୍ତି, "ନାମ କରଣ ଓ

 

ଶବ୍ଦଟି ଆମକୁ ଲୁହାଗଲା ବେଳେ ଏବଂ ଆମେ ନିଜେ ତାହାକୁ ଉଚ୍ଚାରଣ କରି ବସିଲା ବେଳେ ଉଭୟଙ୍କୁ ଏହା ସମ୍ଭବପର । ଦ୍ୱିତୀୟତଃ, ଯଦିବା ଆମେ ଏଥିରେ ସଫଳ ହେଉ, ଶବ୍ଦଟିକୁ ବୁଝିବା ନିମନ୍ତେ ପ୍ରୟୋଜନୀୟ ପ୍ରସଙ୍ଗର ବିଚ୍ୟୁତି ଘଟିପାରେ । ଏହି ଗଣ୍ଡଗୋଳ ହୁଏତ ଶରୀରତାତ୍ତ୍ୱିକ ବ୍ୟତିକରଣ ଅଥବା ମନୋବିଶ୍ଳେଷକମାନେ ପ୍ରଦର୍ଶନ କରିଥିବା ସଂବେଗାତ୍ମକ ବ୍ୟତିକରଣ ହେତୁରୁ ଘଟିପାରେ । ଆମର ଅସାଫଲ୍ୟ ଗୋଟିଏ ନାମ ସମ୍ପୃକ୍ତ ହୋଇପାରେ, ଏବଂ ଏପ୍ରକାର କ୍ଷେତ୍ରରେ ସଂବେଗାତ୍ମକ ପ୍ରଭାବ ପଡ଼ୁଥାଇ ପାରେ ବୋଲି ସନ୍ଦେହ କରିବାର କାରଣ ଥାଏ । ପକ୍ଷାନ୍ତରେ, ଆମର ଅସାଫଲ୍ୟ ଗୋଟିଏ ବର୍ଣ୍ଣନାତ୍ମକ ଅଭିବ୍ୟକ୍ତି ସମ୍ପୃକ୍ତ ଅଥବା ବସ୍ତୁତଃ ଯେ କୌଣସି ଅମୂର୍ତ୍ତି ପ୍ରତୀକ ସମ୍ପୃକ୍ତ ହୋଇପାରେ । ଏ କ୍ଷେତ୍ରରେ ବହୁପରିମାଣରେ ବିଭିନ୍ନ ଅନୁଭୂତି ଗୁଡ଼ିକ ପ୍ରତି ଏକାଧିକ ସୂକ୍ଷ୍ମ ଅନୁକୂଳନ ନିହିତ ଥାଏ ଏବଂ ସେଗୁଡ଼ିକରେ ଏକ ସଙ୍କୀର୍ଣ୍ଣ ଅଂଶ ମାତ୍ର ସାଧାରଣ ହୋଇଥାଏ । ତେଣୁ ଏହି ସାଧାରଣ ଅଂଶର ପୃଥକ୍‌କରଣରେ ଅସାଫଲ୍ୟର ସହିତ ହୋଇ ତତ୍‌ସମ୍ପର୍କୀୟ ସାଧାରଣ ଅମୂର୍ତ୍ତି ପରିସରଟିର ଅସାଫଲ୍ୟ

---

ତାହାର ସହଯୋଗୀ ପ୍ରକ୍ରିୟାମାନଙ୍କଠାରୁ ଶବ୍ଦ ଗଠନର ପାର୍ଥକ୍ୟ ହେଉଛି ବାଗ୍‌ଘାତ-ଗୁଡ଼ିକର ବର୍ଗୀକରଣରେ ଏକ ସମ୍ପୂର୍ଣ୍ଣ ନୂତନ ବୈଶିଷ୍ଟ୍ୟ ।" ଏହା ଅସାଧାରଣ ମନେ ହୁଏ ।

(୪) ଶବ୍ଦାର୍ଥ ସମ୍ବନ୍ଧମୂଳକ—"ଶବ୍ଦ ବା ଶବ୍ଦସମଷ୍ଟିର ସମ୍ପୂର୍ଣ୍ଣ ତାତ୍ପର୍ଯ୍ୟ ବା ଅଭିପ୍ରାୟ ହୃଦୟଙ୍ଗମ କରିବାରେ ଅସାମର୍ଥ୍ୟ ଉପରେ ଏହାର ପ୍ରଭାବ ପର୍ଯ୍ୟବସିତ ।" ରୋଗୀ "ଶବ୍ଦ ବା ଶବ୍ଦ ସମଷ୍ଟିମାନଙ୍କ ଅନ୍ତିମ ବା ଅବାଚନିକ ଅର୍ଥ ବୁଝିବା ଶକ୍ତି ହରାଇଥାଏ, ଏବଂ ଆଦିଷ୍ଟ କର୍ମର ଲକ୍ଷ୍ୟ ବା ଅଭିପ୍ରାୟ ବୁଝିବାରେ ଅସଫଳ ହୁଏ ।"

ଉପର୍ଯ୍ୟୁକ୍ତ ବର୍ଗୀକରଣର ନୈଦାନିକ ମୂଲ୍ୟ ଯାହା ଥାଉ ନା କାହିଁକି ତାତ୍ତ୍ୱିକତା ଦୃଷ୍ଟିରୁ ଏହା ଆଦୌ ସନ୍ତୋଷଜନକ ନୁହେଁ । ପୁଣି Dr. Head ଙ୍କ ଅର୍ଥ ଶବ୍ଦର ବ୍ୟବହାରରେ ଏପ୍ରକାର ଶବ୍ଦସମ୍ଭାର ପ୍ରୟୋଗର ଅବିଚ୍ଛେଦ୍ୟ ସଙ୍କଟ ଓ ଅବୋଧତା ନିହିତ । ଏ ସମ୍ପର୍କରେ Kinnier Wilson ମନ୍ତବ୍ୟ ଦେଇଛନ୍ତି (କଥିତ ଗ୍ରନ୍ଥ ପୃ ୭୮) "ଆହୁରି ଅଗ୍ରଗତି ନହେବା ପର୍ଯ୍ୟନ୍ତ ଏକ ମନସ୍ତାତ୍ତ୍ୱିକ ବ୍ୟବସ୍ଥାରେ ପ୍ରମସ୍ତିଷ୍କୀୟ ପ୍ରକ୍ରିୟାରୁ ବିଚ୍ଛେଦ ଜନିତ ଗୁରୁତର ଅସୁବିଧା ରହିଥାଏ ଏବଂ ଏଠାରେ ଦାବୀ କରାଯାଉଥିବା ଅଧିକତର ବୈଜ୍ଞାନିକ ବୈଧତାଦ୍ୱାରା ଏହି କ୍ଷତିର ପୂରଣ ହୁଏ ନାହିଁ ।"

ମଧ୍ୟ ରହିଥିବା ସମ୍ଭବପର । (୧) କିନ୍ତୁ ବୋଧତାର କେତେକ ମୁହୂର୍ତ୍ତ ଆମ ସମସ୍ତଙ୍କ ଜୀବନରେ ସାମୟିକଭାବେ ଆସେ । ଏହି ସମୟରେ ସମସ୍ତ ଅପକର୍ଷଣ ମୂଳକ ମନ୍ତବ୍ୟ ଅଯଥା ପାଣ୍ଡିତ୍ୟପୂର୍ଣ୍ଣ ଓ ଅବୋଧ ମନେ ହୁଏ । ଏହା ପ୍ରାୟଶଃ ଶରୀରତାତ୍ତ୍ୱିକ କାରଣରୁ ଘଟୁଥିବା ପରି ମନେ ହୁଏ ।

ପୁଣି ଏକ ଉଚ୍ଚତର ସ୍ତରକୁ ଉଠିଲେ, ଦେଖାଯିବ ଯେ ଏକ ଜଟିଳ ପ୍ରତୀକର ଅଂଶୀଦାର ପ୍ରତୀକମାନଙ୍କୁ ବୁଝିବାକୁ ଆମର କୌଣସି ଅସାମର୍ଥ୍ୟ ନ ଥାଇ ପାରେ, ଅଥଚ ତଥାପି ଆମେ ସମ୍ପୂର୍ଣ୍ଣ ବାକ୍ୟଟିକୁ ବୁଝିବାକୁ ଅସମର୍ଥ ହୋଇପାରୁ । ଏହି କ୍ଷେତ୍ରରେ କୁହାଯିବ ଯେ ଆମେ ପ୍ରତୀକର ତାର୍କିକ ଆକାର ହୃଦୟଙ୍ଗମ କରି-ପାରୁନାହୁଁ । ତାର୍କିକ ଆକାରର ସଙ୍କେତ ଦେବା ନିମନ୍ତେ ଏଠାରେ କୁହାଯାଇ ପାରେ ଯେ ତାହା ହେଉଛି—"କ୍ରୁଶୋ ଜାହାଜର ଧ୍ୱଂସାବଶେଷରୁ ଓହ୍ଲାଇଲେ" ଏବଂ "କ୍ଲାଇକ୍‌ଯୋଟ୍ ଗ୍ରେଜନାଷ୍ଟେ ଉପରୁ ଝସି ପଡ଼ିଲେ"—ଏ ପ୍ରକାର ଜଟିଳ ପ୍ରତୀକ-

---

(୧) କି ପ୍ରକାର ଶବ୍ଦଗୁଡିକ ପ୍ରଥମେ ସ୍ମୃତିରୁ ଅନ୍ତର୍ହିତ ହୁଏ ?—ଏହା ବହୁ ଦିନରୁ ଏକ ବିବାଦୀୟ ପ୍ରଶ୍ନ ହୋଇ ରହିଛି । ଉଦାହରଣ ସ୍ୱରୂପ, Ribot ତାଙ୍କର ସ୍ମୃତି ସମ୍ବନ୍ଧୀୟ ସୁପ୍ରସିଦ୍ଧ ଆଲୋଚନାରେ (Les Maladies de la Memoire, ତୃତୀୟ ପରିଚ୍ଛେଦ) ଏକାଧିକ ବିଶେଷଜ୍ଞଙ୍କ ମନ୍ତବ୍ୟ ଉଦ୍ଧାର କରି ସିଦ୍ଧାନ୍ତ ଗ୍ରହଣ କରିଛନ୍ତି ଯେ "ସ୍ମୃତିଭ୍ରଂଶ ବିଶିଷ୍ଟରୁ ସାମାନ୍ୟ ଦିଗରେ ଗତିଶୀଳ ହୁଏ । ପ୍ରଥମେ ଏହା ସ୍ୱକୀୟ ନାମ ଉପରେ ପ୍ରଭାବ ପକାଇଥାଏ ।" ଇତ୍ୟାଦି । କିନ୍ତୁ ଏହି କ୍ଷେତ୍ରରେ, ଗୋଟିଏ ଶବ୍ଦର ସାମାନ୍ୟତାଠାରୁ ତାହାର ଅପକର୍ଷମୋଜ୍ଞା ନିର୍ଧାରି-ରୂପେ ନ୍ୟୂନପ୍ରାଧାନ୍ୟ ବିଶିଷ୍ଟ ନୁହେଁ । ଏହା ମଧ୍ୟ ବିସ୍ମୃତ ନହେବା ଆବଶ୍ୟକ ଯେ ଏଠାରେ ବିଭିନ୍ନ ପ୍ରକାର କାର୍ଯ୍ୟପରକ ବ୍ୟାଘାତ ସଶ୍ଳିଷ୍ଟ ଥାଇପାରେ ଏବଂ ଏଗୁଡ଼ିକୁ ପାର୍ଥକ୍ୟ ନିର୍ବିଶେଷରେ 'ସ୍ମୃତିଭ୍ରଂଶ' ଓ 'ବାକ୍ୟଘାତ' ବୋଲି ବର୍ଣ୍ଣନା କରାଯାଏ । Ribot ଯଥାର୍ଥରେ କହିଛନ୍ତି ଯେ "ଶରୀର ଗଠନ ବିଜ୍ଞାନରେ ତଥା ତାହାର କ୍ରିୟାମୂଳକ ବିଜ୍ଞାନରେ ଆହୁରି ଅଧିକ ପ୍ରଗତି ନହେବା ପର୍ଯ୍ୟନ୍ତ ମନୋବିଜ୍ଞାନୀ ଏ କ୍ଷେତ୍ରରେ ନିରୁପାୟ ।" କିନ୍ତୁ ଏହା ମଧ୍ୟ ସୁସ୍ପଷ୍ଟ ଯେ ଯେକୌଣସି ଏକ ଦତ୍ତ ଶବ୍ଦ ଭିନ୍ନ ଭିନ୍ନ ବକ୍ତାଙ୍କ ପକ୍ଷରେ ଅପକର୍ଷିତାବସ୍ଥା ଓ ସାମାନ୍ୟତା ଦୃଷ୍ଟିରୁ ଭିନ୍ନ ଭିନ୍ନ ସ୍ତରୀୟ ହୋଇପାରେ । ମୋଟ ଉପରେ ଏକଥା ସତ୍ୟ ହୋଇପାରେ ଯେ "ପୁରାତନ ଅପେକ୍ଷା ନୂତନର, ସରଳ ଅପେକ୍ଷା ଜଟିଳର ଭ୍ରାନ୍ତ ହେବା ସମ୍ଭାବନା ଅଧିକ' (ତୁଳନା କର, Pieron, କଥିତ ଗ୍ରନ୍ଥ, Thuoght and the Brain, ପୃ ୧୬୫) । କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ଘଟଣାରେ କେଉଁ ଗୋଟିକ ଯେ କେଉଁ ପ୍ରକାର, ତାହା ନିର୍ଦ୍ଧାରଣ

ମାନଙ୍କରେ ଯାହା ସାଧାରଣ । ସେଠାରେ ଅଂଶୀଦାର ପ୍ରତୀକମାନଙ୍କ (୧) ଏକୈକ ପ୍ରତି ସ୍ଥାପନ ସମ୍ଭବପର ହୋଇପାରେ ।

ଆଗରୁ ଆମେ ସୂଚନା ଦେଇଛୁ ଯେ ତାର୍କିକ-ଆକାର ସମସ୍ୟାରେ ଆହୁରି ଅଧିକ ଅନୁଧ୍ୟାନ ଦେବାର ଆବଶ୍ୟକତା ରହିଛି, କିନ୍ତୁ ପ୍ରଚଳିତ ତାର୍କିକ ପ୍ରାକ୍‌ସ୍ୱୀକାର-ଗୁଡ଼ିକ ଗ୍ରହଣ କରି ଏହି ଅନୁଧ୍ୟାନ ଚଳାଯାଇ ପାରିବାର ସମ୍ଭାବନା ନାହିଁ । ତାର୍କିକ ଆକାରକୁ ଏକ ଅନ୍ତିମ ସପ୍ରତ୍ୟୟ ବୋଲି ବିବେଚନା କରିବା ଏକ ସାଂଘାତିକ ଭ୍ରମ ହେବ, କାରଣ ଗୋଟିଏ ଜଟିଳ ପ୍ରତ୍ୟୟର ଅର୍ଥକରଣରେ ଯାହା ନିହିତ, ତାହା ହେଉଛି ଯେ ସମଗ୍ର ପ୍ରତୀକ ସମେତ ଅଂଶୀଦାର ପ୍ରତୀକମାନଙ୍କ ପ୍ରସଙ୍ଗଗୁଡ଼ିକ ଏକ ଉଚ୍ଚତର ପ୍ରରୂପର ପ୍ରସଙ୍ଗ ଗଠନ କରିବା ଉଚିତ । ସମସ୍ତ ବିମର୍ଶାତ୍ମକ ପ୍ରତୀକାନ୍ୱିତ-କରଣରେ ପ୍ରସଙ୍ଗଗୁଡ଼ିକ ପରସ୍ପର ସଶ୍ଳିଷ୍ଟ ହୋଇ ଏକ ଉଚ୍ଚତର ପ୍ରସଙ୍ଗ ଗଠନ କରିବା ପ୍ରକ୍ରିୟା ନିହିତ । ପୁଣି ଜଟିଳ ପ୍ରତୀକମାନଙ୍କ ବ୍ୟାଖ୍ୟା ଓ ସରଳ ପ୍ରତୀକମାନଙ୍କ ବ୍ୟାଖ୍ୟା ସମପ୍ରକୃତିକ ହୋଇଥାଏ; ପାର୍ଥକ୍ୟ କେବଳ ଏତିକି ଯେ ଏହି ଉଚ୍ଚତର ପ୍ରସଙ୍ଗମାନଙ୍କ ଉପାଦାନଗୁଡ଼ିକ ମଧ୍ୟ ଗୋଟିଏ ଗୋଟିଏ ପ୍ରସଙ୍ଗ । ସେହି ଏକ ପ୍ରକାର ଅପକର୍ଷଣ, ରୂପକ ଇତ୍ୟାଦିର ନିସ୍ପାଦିତ ଉଭୟଙ୍କ ଉପଯୋଗ କରାଯାଏ, ଏବଂ ଅସାଫଲ୍ୟର ସମ୍ଭାବନା ଥିବା ସ୍ତରଗୁଡ଼ିକର ପୁନରାବୃତ୍ତି ମଧ୍ୟ ଘଟେ । ଏହିପରି ଭାବେ ବହୁଲୋକ "ଅଗ୍ନି ଉତ୍ତପ୍ତ" ପରି ଏକ ପ୍ରତୀକକୁ ବୁଝିବା ନିମନ୍ତେ ସମର୍ଥ ହୁଅନ୍ତି, ଯଦିଓ ସେମାନେ ବିଧେୟାତ୍ମକ ଘଟଣାର ଧାରଣା ଅଥବା ସମ୍ବନ୍ଧାତ୍ମକ ଗୁଣର ବିସ୍ତାର କରିବା କ୍ଷେତ୍ରରେ ବିଫଳ ହୋଇଥାନ୍ତି ।

ଜଟିଳ ନିର୍ଦ୍ଦେଶମାନଙ୍କ ଆକାର ବା ଗଠନ ଏବଂ ତତ୍ସହିତ ସେଗୁଡ଼ିକର ପ୍ରତୀକମାନଙ୍କ ଆକାର ବା ଗଠନର ଅଧ୍ୟୟନ ଉଭୟ ତର୍କଶାସ୍ତ୍ର ନିମିତ୍ତ ଏବଂ ଯାହାକୁ ସାଧାରଣତଃ ବ୍ୟାକରଣ କୁହାଯାଏ, ତନ୍ନିମିତ୍ତ ଏକ ମୌଳିକ ଆବଶ୍ୟକତା । ବ୍ୟାକରଣକୁ ପ୍ରତୀକପଦ୍ଧତିମାନଙ୍କ ପ୍ରାକୃତିକ ଇତିହାସ ବୋଲି ବିବେଚନା କରାଯାଇ-ପାରେ । ଏହି ବିଜ୍ଞାନ ଶିକ୍ଷାବିତ୍ ତଥା ଭାଷାର ବିଦ୍ୟାର୍ଥୀମାନଙ୍କ ଅବଧାନର ବିଷୟବସ୍ତୁ

---

କରିବାକୁ ଉପର୍ଯ୍ୟୁକ୍ତ ତୃତୀୟ ପରିଚ୍ଛେଦରେ ସ୍ଥୂଳ ଭାବେ ବର୍ଣ୍ଣିତ ହୋଇଥିବା ପ୍ରସଙ୍ଗବାଦ ପରି କୌଣସି ମତବାଦର ସାହାଯ୍ୟ ଆବଶ୍ୟକ ।

(୧) ଏହି ବିଶେଷ ପ୍ରତୀକ ଗୁଡ଼ିକ କେଉଁ ପରିମାଣରେ ସେହି ଏକ ତାର୍କିକ ଆକାର ବିଶିଷ୍ଟ, ସେ ସମ୍ବନ୍ଧରେ ସୂକ୍ଷ୍ମ ବାଦାନୁବାଦ ଉଠିପାରେ ।

ହୋଇ ରହିଛି । ଏହାର କାରଣ ସୁପ୍ରତ୍ୟକ୍ଷ । କିନ୍ତୁ ଏତଦ୍ଦ୍ୱାରା ଅଧିକ ସୁଦୂରପ୍ରସାରୀ ଅନୁସନ୍ଧାନମାନ ବ୍ୟାହତ ହୁଏ । ଏକ ଆଦର୍ଶ ବିଜ୍ଞାନରୂପେ ବ୍ୟାକରଣ ରାଜକୀୟତାର ଏକ ବାଚନିକ ବିଶ୍ଳେଷଣ ଦେବାରେ ସୀମିତ ରହିବା ପ୍ରଥାଗତ ହୋଇଯାଏ; ଏବଂ ଯଦିଓ ସମସ୍ତ ସମୟରେ ଏହା ପ୍ରସ୍ତାବମୂଳକ ହୋଇଥାଏ, ତଥାପି କୌଣସି ବାସ୍ତବ ସମୀକ୍ଷାତ୍ମକ ପ୍ରବନ୍ଧ ଏହା ପ୍ରୟୋଗ କରେ ନାହିଁ । କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଆଲୋଚ୍ୟ-ମଣ୍ଡଳରେ ହିଁ ଯେ ଗୋଟିଏ ବ୍ୟବହାର ଉତ୍ତମ ହୋଇପାରେ, ବିଶେଷତଃ ଏହି କଥାଟି କଦାପି ହୃଦୟଙ୍ଗମ କରାଯାଏ ନାହିଁ । ଆହୁରି ମଧ୍ୟ, ଯେଉଁ ପରିସ୍ଥିତିରେ ଶବ୍ଦଗୁଡ଼ିକର ବ୍ୟବହାର କରାଯାଇ ପାରେ, ସେହି ପରିସ୍ଥିତି ଶ୍ରେଣୀମାନଙ୍କର କ୍ରମ ନିର୍ଦ୍ଧାରଣ ଅଦ୍ୟାବଧି କଦାପି ଗୁରୁତ୍ୱ ସହକାରେ କରାଯାଇ ନାହିଁ ।

ଯେଉଁ ବିଜ୍ଞାନ ଭାଷା-ମାଧ୍ୟମରେ ପ୍ରକୃତ ମଧ୍ୟକୁ ଅନ୍ତର୍ଦ୍ଦୃଷ୍ଟି ଲାଭ କରିବାର ଅନୁଶାସନ ରୂପେ ନିଜକୁ ସମର୍ଥିତ କରିପାରେ, ବର୍ତ୍ତମାନ ଅବସ୍ଥାରେ, ଶିକ୍ଷାଦାତା ବା ଶିକ୍ଷା ଗ୍ରହୀତା କାହାରି ପାଇଁ ତାହାର କୌଣସି ବିଶେଷ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନାହିଁ । ଏହି ବିଜ୍ଞାନର ପ୍ରାରମ୍ଭିକ ବିଷୟାବଳୀର ଆଲୋଚନା ପାଇଁ ସ୍ଥାୟୀ ସମ୍ମୁକ୍ତ ସମିତିମାନଙ୍କ ନିଯୁକ୍ତି ଭାଷାତାତ୍ତ୍ୱିକ ପରିସରରେ ଏକ ପ୍ରଚଳିତ ରୀତି ହୋଇଯାଇଛି । ଏତଦ୍ଦ୍ୱାରା ସୂଚିତ ହେଉଛି ଯେ ୧୮୬୯ ଖ୍ରୀଷ୍ଟାବ୍ଦରେ ଯେଉଁ ଅବସ୍ଥା ହେତୁ ପ୍ରାର୍ଟ କହି ପକାଇଥିଲେ ଯେ "ହେ ଭଗବାନ, ମୌଳିକ ବ୍ୟାକରଣ ଗତ ସଙ୍ଗ ଶିକ୍ଷା ଦିଆଯାଉଥିବା ବିଚରା ଶିଶୁଙ୍କୁ ରକ୍ଷାକର", ସେହି ଅବସ୍ଥା ଏବେ ସୁଦ୍ଧା ରହିଛି । କିନ୍ତୁ ବାସ୍ତବିକ, ବ୍ୟାକରଣର ପ୍ରାଚୀନ ସମସ୍ୟାମାନ ଅର୍ଥାତ୍ ବ୍ୟବହାର ରୀତିର ପ୍ରତିଷ୍ଠା, ବାକ୍ୟମାନଙ୍କର ବିଶ୍ଳେଷଣ, ପଦଗୁଡ଼ିକର ବର୍ଗୀକରଣ ଇତ୍ୟାଦି ହେଉଛି ସ୍ୱଳ୍ପ ପ୍ରାଧାନ୍ୟ ବିଶିଷ୍ଟ ଗୌଣ ସମସ୍ୟା । ଯେ ପର୍ଯ୍ୟନ୍ତ ଭାଷା ମାଧ୍ୟମର ପ୍ରକୃତ ବିଷୟକ ମୌଳିକ ସମସ୍ୟାର ଗବେଷଣା କରାଯାଇ ନାହିଁ, ସେ ପର୍ଯ୍ୟନ୍ତ ଏଗୁଡ଼ିକର ଅନୁସନ୍ଧାନ-ପଥ ଉନ୍ମୁକ୍ତ ନୁହେଁ । ଏହି ମୌଳିକ ସମସ୍ୟା ସମାଧାନରେ ପ୍ରତୀକତତ୍ତ୍ୱର ଭୂମିକା ରହିଛି । ଏହି ମୌଳିକ ଅନୁସନ୍ଧାନକୁ ଅତି ଅଳ୍ପମାତ୍ରାରେ ସୁଦ୍ଧା ଯଦି ଅଗ୍ରଗତି କରାଇ ନିଆଯାଏ, ତେବେ ସମ୍ଭବତଃ ଜଣାପଡ଼ିବ ଯେ ଉପର୍ଯ୍ୟୁକ୍ତ ଗୌଣ ସମସ୍ୟାମାନଙ୍କରୁ କେତେକ ସମ୍ପୂର୍ଣ୍ଣରୂପେ କୃତ୍ରିମ; ଅନ୍ୟଗୁଡ଼ିକ ସବିଶେଷ ବର୍ଣ୍ଣନା (୧) ସହିତ ହିଁ ସମ୍ପୃକ୍ତ । ଅଥଚ ଦେଖାଯିବ ଯେ ଏହି ପରବର୍ତ୍ତୀ ସମସ୍ୟାଗୁଡ଼ିକରେ ବୈୟାକରଣମାନେ ମାନବୀୟ ପରିଶ୍ରମ ଓ ବିଚକ୍ଷଣତା ଭଳି ଅମୂଲ୍ୟ ସମ୍ପଦର ଅକାତର ବିନିଯୋଗ କରିଛନ୍ତି ।

---

(୧) ପରିଶିଷ୍ଟ-କ ଦେଖ ।

ଯେଉଁ ବ୍ୟାପକତର ପ୍ରଶିକ୍ଷଣମୂଳକ ସମସ୍ୟାଗୁଡ଼ିକ ଶୈଶବାବସ୍ଥାରେ ଭାଷାଶିକ୍ଷା ସହିତ ସମ୍ପୃକ୍ତ, ସେଗୁଡ଼ିକ ବାରମ୍ବାର ଦୃଷ୍ଟି ଆକର୍ଷଣ କରିଛି, ଏବଂ ସୁଲି, ମଣ୍ଟେସରି, ଓ ଜିଆ ଏବଂ ପିଆଜେଙ୍କ ଦ୍ୱାରା ବହୁ ଉପାଦେୟ ତଥ୍ୟ ସଂଗୃହୀତ ହୋଇଛି । କିନ୍ତୁ ଏବେ ସୁଦ୍ଧା ମନୋବିଜ୍ଞାନୀମାନେ ଏପରି କେତେକ ପ୍ରାକ୍ ସ୍ୱୀକାର ଗ୍ରହଣ କରି-ନିଅନ୍ତି, ଯାହା ଅନୁସନ୍ଧାନରୁ କୌଣସି ସୁବିଧା ହାସଲ କରିବା କ୍ଷେତ୍ରରେ ବ୍ୟାଘାତ ସୃଷ୍ଟି କରେ । ମ୍ୟୁନଷ୍ଟେରବର୍ଗ କହନ୍ତି ଯେ "କଥିତ ଶବ୍ଦଗୁଡ଼ିକୁ ନ ବୁଝି ସେଗୁଡ଼ିକୁ ଅନୁକରଣ କରିବା ଦ୍ୱାରା ଶିଶୁର ଭାଷାଶିକ୍ଷା ଆରମ୍ଭ ହୁଏ; ପରେ ସେ ସେଗୁଡ଼ିକୁ ବୁଝେ । ଦ୍ୱିତୀୟ ସ୍ତରରେ ପହଞ୍ଚି ପାରୁଥିବା ଶିଶୁ ଭାଗ୍ୟବାନ ନିଶ୍ଚୟ ! କିନ୍ତୁ ସରଳମତି କ୍ଷୁଦ୍ର ଶିଶୁ ଦୁର୍ଭାଗ୍ୟକୁ ଏ ପ୍ରକାର କିଛି କରେ ନାହିଁ । ଏଥିରୁ ଯଥେଷ୍ଟ ଅଧିକ ଯଥାର୍ଥ ହେଉଛି ଥଟସ୍ ଅନ ଏଡୁକେଶନ୍ ( ଶିକ୍ଷା ସମ୍ବନ୍ଧରେ ଚିନ୍ତା ) ଗ୍ରନ୍ଥରେ ବ୍ୟକ୍ତ ଲେଶୋଙ୍କ ମତ— "ଶିଶୁମାନେ ପ୍ରକୃତରେ କିପରି ଭାବେ ଶବ୍ଦଗୁଡ଼ିକୁ ବୁଝି ପାରନ୍ତି, ସେଥିପ୍ରତି ଆମ ପକ୍ଷରୁ ଦୃଷ୍ଟି ଦିଆ ନଯିବା ସେମାନଙ୍କ ପ୍ରଥମ ଭ୍ରାନ୍ତିଗୁଡ଼ିକର କାରଣ ପରି ମତେ ଜଣାପଡ଼େ, ଏବଂ ଏଗୁଡ଼ିକ ନିରାକୃତ ହେବା ପରେ ସୁଦ୍ଧା ସେମାନଙ୍କ ଜୀବନର ଅବଶିଷ୍ଟାଂଶରେ ସେମାନଙ୍କ ମନର ପ୍ରକୃତି ଉପରେ ଏଗୁଡ଼ିକର ପ୍ରଭୂତ ପ୍ରଭାବ ପଡ଼ିଥାଏ ।" ଭାଷା-ଶିକ୍ଷା ଓ ବ୍ୟବହାର ବିଷୟକ ସମୂହ ପ୍ରଶ୍ନର ଏକ ନୂତନ ଭିତ୍ତି ଆବଶ୍ୟକ, ବ୍ୟାଖ୍ୟା-କାରୀଙ୍କ ମାନସିକ ଶକ୍ତି ଗୁଡ଼ିକର ସ୍ୱଚ୍ଛନ୍ଦ ବିକାଶ ଉଦ୍ଦେଶ୍ୟରେ ଏହି ପ୍ରଶ୍ନର ବସ୍ତୁନିଷ୍ଠ ବିଚାର ଆବଶ୍ୟକ ।

ଏ ପ୍ରକାର ବାଗ୍ରୀତିଗତ ପଦ୍ଧତିର ଏକ ଦୃଷ୍ଟାନ୍ତ ସ୍ୱରୂପ ଆମେ ବସିଥିବା ବସ୍ତୁପାଇଁ ଯେଉଁ ଯେଉଁ ସ୍ତରରେ 'ଚଉକି', 'କାଠ', 'ଚଳୁ' ଇତ୍ୟାଦି ଯଥାର୍ଥ ପ୍ରତୀକ ହୋଇପାରେ, ସେଗୁଡ଼ିକର ଏକ କ୍ରମ ବିଧାନ କରିପାରୁ । ଏହିପରି ଏକ କ୍ରମବିଧାନ ଚତୁର୍ଥ ପରିଚ୍ଛେଦରେ ଆମେ ଦେଖି ସାରିଛୁ । ସେଠାରେ ଏହି ଯଥାର୍ଥ ବୈୟାକରଣିକ ପଦ୍ଧତି ଅର୍ଥାତ୍ ପ୍ରତୀକ ପ୍ରଣାଳୀର ସମୀକ୍ଷାମୂଳକ ପରୀକ୍ଷା ଅଭାବରୁ କିପରି ତତ୍ତ୍ୱବିଜ୍ଞାନରୂପେ ଅଭିହିତ ବିଭ୍ରାନ୍ତିଗୁଡ଼ିକର ଉତ୍ପତ୍ତି ହୋଇଛି, ତାହା ଦର୍ଶାଇ ଦିଆଯାଇଥିଲା । ଯେହେତୁ ବୈୟାକରଣମାନେ ଯଦି କେବଳ ବୈଜ୍ଞାନିକ ଭିନ୍ନ ବିଜ୍ଞାନ ଆବଶ୍ୟକତାଗୁଡ଼ିକ ମଧ୍ୟକୁ ଅଧିକ ଉନ୍ନତ ଧରଣର ଅନ୍ତର୍ଦୃଷ୍ଟି ନିକ୍ଷେପ କରିବାକୁ ସମର୍ଥ ହୋଇଥାନ୍ତେ ଏବଂ ସେମାନଙ୍କ ସମ୍ପୃକ୍ତ ବିଜ୍ଞାନର ବ୍ୟାବହାରିକ ଗୁରୁତ୍ୱ ପ୍ରତି ଅଧିକ ସକ୍ରିୟ ଧ୍ୟାନ ଦେଇଥାନ୍ତେ, ତେବେ ବହୁପୂର୍ବରୁ ବ୍ୟାକରଣ ଯେଉଁ କି ସାଫଲ୍ୟ ଅର୍ଜନ କରିଥାନ୍ତା, ତାହାର ଏକ ବିଲକ୍ଷଣ ମୁକ୍ତ ଦୃଷ୍ଟାନ୍ତ ହେଉଛି ସୌନ୍ଦର୍ଯ୍ୟ ଓ ଅର୍ଥର ଆମ ବିଶ୍ଳେଷଣ । ଏକ ବ୍ୟାପକ ବିଷୟବସ୍ତୁର ଜଟିଳ ଅଂଶାନୁଅଂଶରେ ସ୍ୱଭାବତଃ ବିନ୍ୟସ୍ତ ରହି ଏବଂ ଏକ ବିରାଟ ପ୍ରବନ୍ଧ ତଥା ଏକ ବିଶଦ ଅର୍ଦ୍ଧ-ଦାର୍ଶନିକ

ଶବ୍ଦ ସମ୍ଭାରର ଅଧିକାଂଶ ହୋଇ ବୈୟାକରଣ ନଜର ଅଜ୍ଞାତସାରରେ, ଶବ୍ଦଗୁଡ଼ିକ କିପରି ବ୍ୟବହୃତ ହୁଏ ? ଏବଂ ସେଗୁଡ଼ିକ କିପରି ବ୍ୟବହୃତ ହେବା ଉଚିତ ?—ଏହି ପ୍ରଶ୍ନ ଦ୍ୱୟର ସମାଧାନ ଲିପ୍ସୁ ବ୍ୟକ୍ତିଙ୍କ ପ୍ରଗତି ପଥରେ ଏକ ପ୍ରକାର ଅଟଳ ଅନ୍ତରାୟର କାରଣ ହୋଇଛି । ପ୍ରଥମ ଦୃଷ୍ଟିରେ, ଆଂଶିକତଃ ଅନୁରୂପ ମନେ ହେଉଥିବା ପ୍ରଶ୍ନ ଦ୍ୱୟ, ଅର୍ଥାତ୍ କେଉଁ ଶବ୍ଦଗୁଡ଼ିକ କେତେବେଳେ ବ୍ୟବହୃତ ହୁଏ ? ଏବଂ କେଉଁ ଶବ୍ଦଗୁଡ଼ିକ କେତେବେଳେ ବ୍ୟବହୃତ ହେବା ଉଚିତ ?—ଏହି ଦୁଇଟିର ଅଧ୍ୟୟନ ବୈୟାକରଣ ମଧ୍ୟ କରି ଆସୁଛି । ନିଜର ବିଚ୍ୟୁତି ପ୍ରଶ୍ନରେ ଭ୍ରାନ୍ତ ହେବାରୁ ତାହାର କାର୍ଯ୍ୟ ଯେ ସ୍ୱଳ୍ପ ଗୁରୁତ୍ୱପୂର୍ଣ୍ଣ ହୋଇପାରେ—ଏହି ପ୍ରସ୍ତାବକୁ ବୈୟାକରଣ ଅସ୍ୱୀକାର କରେ । ସଂକ୍ଷେପରେ, ଚଳନର ଏକ ଆଦର୍ଶମୂଳକ ପରୀକ୍ଷା ବିନା ଶବ୍ଦଗୁଡ଼ିକରେ ଏକ ଆଦର୍ଶମୂଳକ ପରୀକ୍ଷା ଆରମ୍ଭ କରାଯାଇ ନପାରେ; ଏବଂ ଯେଉଁ ବାସ୍ତବ ନିର୍ଦ୍ଦେଶଗୁଡ଼ିକ ଶାବ୍ଦିକ ବ୍ୟବହାର ସହିତ ପ୍ରୟୋଗ କରେ, ସେଗୁଡ଼ିକର ପର୍ଯ୍ୟାପ୍ତ ବା ସ୍ତର ଓ ସତ୍ୟାସତ୍ୟ ସମ୍ବନ୍ଧୀୟ ପ୍ରଶ୍ନ ଉତ୍ଥାପନ ନକରି ଏହି ଭିତ୍ତି ସମ୍ବନ୍ଧୀୟ କୌଣସି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ବିଚାର କରାଯାଇ ନପାରେ । ପ୍ରତୀକମାନଙ୍କ ଦ୍ୱାରା ଯେଉଁ ନିର୍ଦ୍ଦେଶ-ଗୁଡ଼ିକ ପ୍ରତୀକାନ୍ୱିତ ହୁଏ, ସେଗୁଡ଼ିକ ସହିତ ପ୍ରତୀକମାନଙ୍କୁ ଅସଂପୃକ୍ତ ରଖି ତଦ୍‌ବିଷୟକ ଅଧ୍ୟୟନ କରାଯାଇ ନପାରେ—ଏ କଥାକୁ ଯଦି ସ୍ୱୀକାର କରାଯାଏ, ତେବେ ଯଥାସମ୍ଭବ ସର୍ବାଧିକ ସମ୍ପୂର୍ଣ୍ଣ ଅନୁସନ୍ଧାନରୁ ନ୍ୟୂନ ସ୍ତରରେ, ଏହି ନିର୍ଦ୍ଦେଶଗୁଡ଼ିକର ଆମ ପରୀକ୍ଷାକୁ ସ୍ଥଗିତ ରଖିଦେବା ନିରାପଦ ହେବ ନାହିଁ ।

ଏବେ ନିର୍ଦ୍ଦେଶ ଗୁଡ଼ିକରେ ଏବଂ ସେଗୁଡ଼ିକର ପ୍ରତୀକମାନଙ୍କରେ ଥିବା ଜଟିଳତାର ବିସ୍ତାରକୁ ପ୍ରତ୍ୟାବର୍ତ୍ତନ କରାଯାଉ । ଏ ଦୁଇଟିର ସଂବାଦିତା ଲକ୍ଷ୍ୟ କରିବାର ପ୍ରୟାସ ଦୁଇଟି ପୃଥକ୍ ବିଚାରଧାରାକୁ ଦିଗ୍‌ଦର୍ଶକ ନୀତିରୂପେ ପ୍ରୟୋଗ କରିବାକୁ ଆମକୁ ପ୍ରବର୍ତ୍ତାଇ-ଥାଏ । ଏ ଦୁଇଟିରୁ ଗୋଟିକ ବିଷୟ, ଅର୍ଥାତ୍ ନିର୍ଦ୍ଦେଶର ଅଧ୍ୟୟନ ସହିତ ଆମେ ଏଠାରେ ମୂଳରୁ ଶେଷ ପର୍ଯ୍ୟନ୍ତ ସଂପୃକ୍ତ ରହିବୁ । ନିର୍ଦ୍ଦେଶର ପରିବର୍ତ୍ତନ ସହିତ ପ୍ରତୀକର ଆକାର ମଧ୍ୟ ପରିବର୍ତ୍ତିତ ହୋଇଥାଏ । କିନ୍ତୁ ପ୍ରତୀକର ଆକାରଗତ ପରିବର୍ତ୍ତନର ଅନ୍ୟାନ୍ୟ କାରଣ ମଧ୍ୟ ରହିଛି ଏବଂ ଆମେ ଆଗରୁ ସେ ସମ୍ବନ୍ଧରେ କେତେକ ବିଷୟର ଉଲ୍ଲେଖ କରିସାରିଛୁ । ନିର୍ଦ୍ଦେଶକୁ ପ୍ରତୀକାନ୍ୱିତ କରିବା ବ୍ୟତୀତ ଆମର ଶବ୍ଦଗୁଡ଼ିକ ହେଉଛି ଯେଉଁ ସଂବେଗ, ଅଭିବୃତ୍ତି, ଭାବଦଶା, ମନୋଦଶା, ଅନୁରକ୍ତି ବା ମାନସିକ ପ୍ରସ୍ତୁତିରେ ନିର୍ଦ୍ଦେଶଗୁଡ଼ିକ ସଂଘଟିତ ହୁଏ, ସେଗୁଡ଼ିକର ମଧ୍ୟ ସଂକେତ ସ୍ୱରୂପ । ସେଗୁଡ଼ିକ ଏହିପରିଭାବେ ସଂକେତ ହେବାର କାରଣ ହେଉଛି ଯେ ସେଗୁଡ଼ିକ ଏହି ଅଭିବୃତ୍ତିମାନଙ୍କ ବା ଅନୁରକ୍ତିମାନଙ୍କ ସହିତ କୌଣସି ଶିଥିଳ ଅଥବା ଦୃଢ଼ ପ୍ରସଙ୍ଗମାନଙ୍କରେ ଅନ୍ୱିତ । ସୁତରାଂ ଗୋଟିଏ ବାକ୍ୟ କହିବା ଦ୍ୱାରା ଆମେ

ଅନ୍ତତଃ ଦୁଇଟି ସଂକେତ ପରିସ୍ଥିତିର ଉଦ୍ଭବ କରୁଛୁ । ସେହିପରି, ବାକ୍ୟଟିକୁ ଶୁଣିବା ସମ୍ପର୍କରେ ଆମେ ଅନ୍ତତଃ ଦୁଇଟି ସଂକେତ ପରିସ୍ଥିତିର ସମ୍ମୁଖୀନ ହେଉଛୁ । ଗୋଟିକରେ ପ୍ରତୀକମାନଙ୍କରୁ ନିର୍ଦ୍ଦେଶର ଏବଂ ତହିଁରୁ ନିର୍ଦ୍ଦେଶ୍ୟର ବ୍ୟାଖ୍ୟା କରାଯାଏ । ଅପରଟିରେ ଶାବ୍ଦିକ ସଂକେତରୁ ବକ୍ତାର ଅଭିବୃତ୍ତି, ଭାବଦଶା, ଅନୁରକ୍ତି, ଉଦ୍ଦେଶ୍ୟ, ଅଭିଳାଷ ଇତ୍ୟାଦିର ଏବଂ ତହିଁରୁ ଯେଉଁ ପରିସ୍ଥିତି, ପରିବେଶ, ଅବସ୍ଥାରେ ଉକ୍ତିଟି ଦିଆଯାଇଛି, ତାହାର ବ୍ୟାଖ୍ୟା କରାଯାଏ ।

ଏ ଦୁଇଟିରୁ ପ୍ରଥମଟି ଯେପରିଭାବେ ଉପରେ ବର୍ଣ୍ଣିତ ହୋଇଛି, ତାହା ହେଉଛି ଏକ ପ୍ରତୀକ ପରିସ୍ଥିତି । ଦ୍ୱିତୀୟଟି ହେଉଛି କେବଳ ଏକ ଶାବ୍ଦିକ ସଂକେତ ପରିସ୍ଥିତି । ଏହା ସମସ୍ତ ସାଧାରଣ ପ୍ରତ୍ୟକ୍ଷ, ପାଣିପାଗ ସମ୍ବନ୍ଧୀୟ ଭବିଷ୍ୟତବାଣୀ ପ୍ରଭୃତିରେ ନିହିତ ସଂକେତ-ପରିସ୍ଥିତିର ଅନୁରୂପ । ଏ ଦୁଇଟିର ବ୍ୟାମିଶ୍ରଣ ପରିହାର୍ଯ୍ୟ, ଯଦିଓ ଦୁଇଟିର ପୃଥକ୍ କରଣ ଅନେକତଃ କଷ୍ଟସାଧ୍ୟ । ଏହିପରିଭାବେ ହୁଏତ ଆମେ ଗୋଟିଏ ପ୍ରତୀକରୁ ଗୋଟିଏ ନିର୍ଦ୍ଦେଶର ବ୍ୟାଖ୍ୟା କରିପାରୁ ଏବଂ ତାପରେ ଏହି ନିର୍ଦ୍ଦେଶକୁ ବକ୍ତାଠାରେ ଏକ ଅଭିବୃତ୍ତି ଥିବା ବିଷୟର ଏକ ସଂକେତରୂପେ ଗ୍ରହଣ କରିପାରୁ । ବକ୍ତାର ଉକ୍ତିକୁ ଏକ ଶାବ୍ଦିକ ସଂକେତରୂପେ ନେଇ ତହିଁରୁ ସାକ୍ଷାତଭାବେ ବ୍ୟାଖ୍ୟାକରି ଆମେ ଯେଉଁ ଅଭିବୃତ୍ତିରେ ଉପନୀତ ହୋଇଥାଉ, ତାହା ଉପର୍ଯ୍ୟୁକ୍ତ ଅଭିବୃତ୍ତି ସହିତ ଅଭିନ୍ନ ହୋଇପାରେ କିମ୍ବା ଭିନ୍ନ ହୋଇପାରେ ।

ଶାବ୍ଦିକ ସଂକେତ ଗୁଡ଼ିକର ସମାଧାନ ହେଉଛି ଏକ ବ୍ୟାପକ ବିଷୟ । ଏହାର ବିଭିନ୍ନ ଶାଖା ରହିଛି ଏବଂ ସେଗୁଡ଼ିକୁ ପୃଥକ୍ କରାଯାଇପାରେ । ଯଥାଯଥ ପ୍ରତୀକାନ୍ୱିତକରଣକୁ . ଏଗୁଡ଼ିକ ମଧ୍ୟରେ (୧ମ) ସ୍ଥାନ ଦେବା ସୁବିଧାଜନକ ହେବ । ଏହା ସହିତ ନିମ୍ନଲିଖିତ ବିଭାଗଗୁଡ଼ିକର ଉଲ୍ଲେଖ ଦ୍ୱାରା ଭାବ ବିନିମୟର ସାଧନ ସ୍ୱରୂପ ଭାଷାର ମୁଖ୍ୟ କାର୍ଯ୍ୟଗୁଡ଼ିକ ଅଭିବ୍ୟକ୍ତ ହେବ ବୋଲି ମନେ ହୁଏ ।

(୨ୟ) ବକ୍ତାର ଶ୍ରୋତା ପ୍ରତି ଅଭିବୃତ୍ତି, ଯଥା—ବନ୍ଧୁତା କିମ୍ବା ଶତ୍ରୁତାରୁ ଉଦ୍ଭୂତ କେତେକ ପରିସ୍ଥିତି ରହିଛି । ଲିଖିତ ଭାଷାରେ, ଏହି ଅଭିବୃତ୍ତିମାନଙ୍କ (୧)

---

(୧) କେବଳ ଅଭିବୃତ୍ତିର ନୁହେଁ, ପ୍ରତୀକାତ୍ମକ ଓ ବାକ୍ୟବିନ୍ୟାସମୂଳକ ଉପାଦାନର ମଧ୍ୟ ବାଚକ ସ୍ୱରମାନ ସଂକେତ ରୂପେ ଥାଏ । ବଚନରେ ଯେଉଁ ପାର୍ଥକ୍ୟ ଗୁଡ଼ିକୁ ବିଶ୍ରାମ ଓ ସ୍ୱରଭଙ୍ଗୀ ଦ୍ୱାରା ପ୍ରକାଶ କରାଯାଏ, ଲିଖିତ ଭାଷାରେ ସେଗୁଡ଼ିକୁ ସଂରକ୍ଷିତ କରିବା ପ୍ରୟାସର ଏକ ଉତ୍ତମ ଉଦାହରଣ ହେଉଛି ଭାଷାର

ସର୍ବାଧିକ ସୁପ୍ରତ୍ୟକ୍ଷ ନିଦର୍ଶନ ଗୁଡ଼ିକରୁ ଅଧିକାଂଶ ଆବଶ୍ୟକରୂପେ ଅପ୍ରକାଶିତ ରହିଯାଏ । ଭଙ୍ଗୀ ଓ ସ୍ୱରର ତାରତମ୍ୟ ପରିବର୍ତ୍ତେ ଏ କ୍ଷେତ୍ରରେ ବିଭିନ୍ନ ଉପାୟ ଅବଲମ୍ବନ କରିବାକୁ ପଡ଼େ । ପ୍ରଥାଗତ ସୀତ, ଅଧୁକ୍ତି, ଅସମ୍ପୂର୍ଣ୍ଣ ଉକ୍ତି, ଆଲଙ୍କାରିକ ଉକ୍ତି, ନିମ୍ନରେ ରେଖାଙ୍କନ ଇତ୍ୟାଦି ଉପାୟଗୁଡ଼ିକ ସହିତ ଆମେ ପତ୍ରଲିଖନ ପ୍ରବନ୍ଧରେ ସୁପରିଚିତ । ଏହି ପରିପ୍ରେକ୍ଷୀରେ ଶବ୍ଦକ୍ରମ ସ୍ପଷ୍ଟତଃ ବିଶେଷ ଗୁରୁତ୍ୱପୂର୍ଣ୍ଣ; କିନ୍ତୁ ଆମେ ପରେ ଦେଖିବା ଯେ କୌଣସି ଏକ ସାଧାରଣ ସାହିତ୍ୟିକ ଉପାୟକୁ ବଚନର କାର୍ଯ୍ୟ-ମାନଙ୍କ ମଧ୍ୟରୁ କୌଣସି ଗୋଟିକର ହିଁ ନିମନ୍ତେ ବିନିଯୋଗ କରାଯାଇ ନପାରେ । ଏହା ସୁନିଶ୍ଚିତ ଯେ ଅବସ୍ଥା ବିଶେଷରେ ତାହା ଅନ୍ୟାନ୍ୟ କାର୍ଯ୍ୟ ନିମନ୍ତେ ମଧ୍ୟ ବ୍ୟବହୃତ ହୋଇପାରେ । ତେଣୁ ବଚନର ସେହି କାର୍ଯ୍ୟ ନିମନ୍ତେ ପ୍ରାପ୍ୟ ସମସ୍ତ ପ୍ରତୀକାତ୍ମକ ଆକାର ପରିବର୍ତ୍ତନ ମଧ୍ୟରୁ ଯେ କୌଣସି ଗୋଟିକୁ ଉପଯୋଗୀ କରାଯାଇ ପାରେ । ଉଦାହରଣ ସ୍ୱରୂପ, ଯେଉଁ କ୍ଷେତ୍ରରେ ନିର୍ଦ୍ଦେଶାତ୍ମକ କାରଣରୁ ଏକ ସଂକ୍ଷିପ୍ତୀକୃତ ଅଭିବ୍ୟକ୍ତି ଅନୁପଯୁକ୍ତ, ସେଠାରେ ମଧ୍ୟ ସୌଜନ୍ୟ ବା ଶ୍ରୋତାପ୍ରତି ସମ୍ମାନର ନିଦର୍ଶନ ସ୍ୱରୂପ ଅଥବା ଏକ ସଂପ୍ରସାରିତ ଉକ୍ତି ହିଁଏତ ପାଣ୍ଡିତ୍ୟ ବା

---

ଲିଖନ ପ୍ରଣାଳୀରେ ଆକ୍ସେଣ୍ଟର ବ୍ୟବହାରରେ ରହିଛି । ପାର୍ଥକ୍ୟ ପ୍ରକାଶକ ଆକ୍ସେଣ୍ଟ-ମାନଙ୍କର ଦୁଇଟି ମୁଖ୍ୟ ଶ୍ରେଣୀ ରହିଛି । ଏଗୁଡ଼ିକ ସ୍ଥୂଳତଃ ଇଂରାଜୀର ବିରାମ ଚିହ୍ନ ମାନଙ୍କ ସହ ସବାଦୀ । ଏତଦ୍‌ବ୍ୟତୀତ ଆହୁରି ଏଗାରଗୋଟି ସଂଯୋଜକ ଆକ୍ସେଣ୍ଟ ରହିଛି । ଏଗୁଡ଼ିକ ଯେଉଁ ଶବ୍ଦମାନଙ୍କ ସହ ସଂଯୁକ୍ତ ହୋଇଥାଏ, ସେହି ଶବ୍ଦ ଗୁଡ଼ିକ ପରବର୍ତ୍ତୀ ବିଷୟ ସହିତ ଅର୍ଥତଃ ସମ୍ପୃକ୍ତ ବୋଲି ସୂଚିତ ହୁଏ । ଏଗୁଡ଼ିକର ଉପେକ୍ଷା ବହୁ ଭ୍ରାନ୍ତ ଭାଷାନ୍ତରୀକରଣ ନିମିତ୍ତ ଦାୟୀ । ତଥାପି ଏହି ଭାଷାନ୍ତରୀକରଣଗୁଡ଼ିକ ପ୍ରସିଦ୍ଧ ସାହିତ୍ୟ ରୂପେ ରହି ଆସିଛି । ଯିଶାଇୟ ୪୦-୩; "ଏକ ଜଣର ରବ ପ୍ରାନ୍ତରରେ ପ୍ରଚାର କରଇ, ତୁମ୍ଭେମାନେ ସଦା ପ୍ରଭୁଙ୍କ ପଥ ପ୍ରସ୍ତୁତ କର ।" ସଂଶୋଧିତ ସଂସ୍କରଣରେ ଲିଖିତ ଅଛି ଯେ ରବ ପ୍ରାନ୍ତରରେ ନାହିଁ; ତାହା ପ୍ରଚାର କରେ, "ତୁମ୍ଭେମାନେ ପ୍ରାନ୍ତରରେ ସଦାପ୍ରଭୁଙ୍କ ପଥ ପ୍ରସ୍ତୁତ କର ।" ପୁଣି ଆଦି ପୁସ୍ତକ ୩.୨୨ ରେ ଲେଖା ଅଛି, "ସଦା ପ୍ରଭୁ ପରମେଶ୍ୱର କହିଲେ, ଦେଖ, ମନୁଷ୍ୟ ଭଲ ମନ୍ଦର ବୋଧ ପ୍ରାପ୍ତ ହୋଇ ଆମ୍ଭମାନଙ୍କ ପରି ଜଣେ ହୋଇଅଛି ।" ଏହି କ୍ଷେତ୍ରରେ ଏକ ଯଥାର୍ଥ ଆକ୍ସେଣ୍ଟ ପଦ୍ଧତିର ପ୍ରୟୋଗ ଦ୍ୱାରା ଅର୍ଥ ହେବ ଯେ "ଦେଖ, ଯେଉଁ ମନୁଷ୍ୟ ଆମ୍ଭମାନଙ୍କ ପରି ଜଣେ ହୋଇଅଛି, ସେ ମନ୍ଦ ମଧ୍ୟ ଦେଇ ଭଲର ବୋଧ ପ୍ରାପ୍ତ ହୋଇଅଛି ।" (ତୁଳନା କର, Saulez, The Romance of the Hebrew Language, ପୃ ୧୯ )

ଅନୁଗ୍ରହ ପ୍ରଦର୍ଶନର ଧାରଣା ସୃଷ୍ଟି କରିବ ବୋଲି ତାହାକୁ ଏଡ଼ାଇବାକୁ, ଏକ କ୍ଷୁଦ୍ର ବା ଅଭାବ ସାପେକ୍ଷମୂଳକ ପ୍ରକାଶଭଙ୍ଗୀ ଅନେକତ୍ର ବ୍ୟବହାର କରାଯାଏ । ଜଣେ ବକ୍ତା ଆତ୍ମୀୟତାପୂର୍ଣ୍ଣ ଆଳାପ କ୍ଷେତ୍ରରେ ଯେଉଁ ଭାଷା ବ୍ୟବହାର କରନ୍ତି, ତହିଁରୁ ଭିନ୍ନ ଭାଷାରେ ଏକ ବୃହତ୍ ଶ୍ରୋତୃମଣ୍ଡଳୀକୁ ବକ୍ତୃତା ଦେବା ସ୍ୱାଭାବିକ । ଏହି ଦୁଇଟି କ୍ଷେତ୍ରରେ ତାଙ୍କର ଅଭିବୃତ୍ତି ଭିନ୍ନ ଭିନ୍ନ ।

(୩ୟ) ଅନୁରୂପଭାବେ, ନିର୍ଦ୍ଦେଶ୍ୟ ପ୍ରତି ଆମ ଅଭିବୃତ୍ତି ଆମେ ବ୍ୟବହାର କରୁଥିବା ପ୍ରତୀକଗୁଡ଼ିକୁ ଆଂଶିକତଃ ନିର୍ଦ୍ଧାରଣ କରେ । ଏଠାରେ ପୁଣି ଜଟିଳ କ୍ଷେତ୍ରମାନଙ୍କ ଉଦ୍ଭବ ହୁଏ, ଏଠାରେ ଆମ ଅଭିବୃତ୍ତିଟି ହିଁ ବ୍ୟକ୍ତ ବା ଶାବ୍ଦିକ ସଂକେତ ମାଧ୍ୟମରେ ତାହା କେବଳ ସୂଚିତ, ଏହା ଅନିଶ୍ଚିତ ରହିପାରେ । ବିଶେଷତଃ ସୌନ୍ଦର୍ଯ୍ୟ ବିଜ୍ଞାନମୂଳକ ଅବଧାରଣଗୁଡ଼ିକ ଦ୍ୱାରା ଏହି ଅସୁବିଧା ଉପସ୍ଥାପିତ ହୁଏ ଏବଂ ଅନେକତ୍ର ନିଜେ ବକ୍ତା ମଧ୍ୟ ଏ ଦୁଇଟିରୁ କେଉଁ ଗୋଟିକ ଯେ ଘଟୁଛି ତାହା ନିର୍ଦ୍ଧାରଣ କରିବାକୁ ଅସମର୍ଥ ହୋଇପାରେ । ଏହି କାରଣରୁ କଥାରେ ଜୋରଦେବା, ଦ୍ୱିରୁକ୍ତି କରିବା ଏବଂ ଅନ୍ୟାନ୍ୟ ଏବଂ ଅନ୍ୟାନ୍ୟ ପ୍ରକାର ସୁଦୃଢ଼କାରକ ଉପାୟମାନ ଅବଲମ୍ବନ କରାଯାଇ ପାରେ ଏବଂ ସାଧାରଣତଃ କରାଯାଇ ଥାଏ । ଅବଶ୍ୟ ଏଗୁଡ଼ିକର ଅବଲମ୍ବନ ଶ୍ରୋତାମାନଙ୍କ ଉପରେ ସେଗୁଡ଼ିକର ପ୍ରଭାବ ନିମନ୍ତେ (୪ର୍ଥ), ଅଥବା ନିର୍ଦ୍ଦେଶରେ ଅସୁବିଧା ଜାତ ହେଉଥିବା କ୍ଷେତ୍ରରେ ସମ୍ମେଳନ କେନ୍ଦ୍ର, ବିଶ୍ରାମ ବା ସମର୍ଥନ ରୂପେ (୧ମ) ମଧ୍ୟ ସମଭାବରେ କରାଯାଇ ପାରେ ।

(୪ର୍ଥ) ଆମର ଅଭିପ୍ରାୟ ଅର୍ଥାତ୍ ଆମର ଉକ୍ତିଦ୍ୱାରା ଆମେ ଯେଉଁ ପରିଣତି-ପ୍ରବର୍ତ୍ତନର ପ୍ରୟାସ କରୁଥାଉଁ, ତାହା ଦ୍ୱାରା ପ୍ରତୀକମାନଙ୍କ ଗଠନ ଅନେକତ୍ର ନିର୍ଦ୍ଧାରିତ ହୋଇପାରେ । ଯଦି ଆମେ ଜଣେ ଶ୍ରୋତାର ଆତ୍ମହତ୍ୟା କାମନା କରୁଥାଉ, ତେବେ କେତେକ କ୍ଷେତ୍ରରେ ଆମେ ସେହି ଏକ ମନ୍ତବ୍ୟ ଦେଇପାରୁଁ, ଯଦିଓ ଏ ପ୍ରକାର କାର୍ଯ୍ୟ ନିମନ୍ତେ କାମନାର ଆମ କାରଣ ଭିନ୍ନ ଭିନ୍ନ ହୋଇପାରେ, ଅର୍ଥାତ୍ ଏହି କାରଣ ତାହାର ଜୀବନଯାତ୍ରା ପ୍ରତି ଆମର ହିତୈଷୀ ଅନୁରକ୍ତ ହୋଇପାରେ କିମ୍ବା ତାହାର ବ୍ୟକ୍ତିଗତ ଦୁର୍ଗୁଣ ପ୍ରତି ଆମର ଘୃଣା ହୋଇପାରେ । ସୁତରାଂ ଅଭିପ୍ରେତ ପରିଣତି ହେତୁକ ପ୍ରତୀକ ପରିବର୍ତ୍ତନକୁ ଆମ ସହିତ କଥୋପକଥନରତ ବ୍ୟକ୍ତି ପ୍ରତି ଆମର ଗୃହୀତ ଅଭିବୃତ୍ତି-ହେତୁକ ପ୍ରତୀକ ପରିବର୍ତ୍ତନ ସହିତ ବ୍ୟାମିଶ୍ରିତ କରି ନ ପକାଇବା ବିଧେୟ, ଯଦିଓ କାର୍ଯ୍ୟକ୍ଷେତ୍ରରେ ଏ ଦୁଇଟି ପ୍ରାୟଶଃ ସହସପାତୀ ହେବ ।

(୧ମ) ସତ୍ୟ ବା ମିଥ୍ୟା ହେବା ବ୍ୟତୀତ ନିର୍ଦ୍ଦେଶମାନଙ୍କ ଆଉ ଏକ ଗୁଣ ଥାଏ, ଯାହାକୁ ସହଜବୋଧ ଅନୁଭବ ଦୃଷ୍ଟିରେ ସ୍ୱାଚ୍ଛନ୍ଦ୍ୟ ବା ଅସ୍ୱାଚ୍ଛନ୍ଦ୍ୟ ବୋଲି ଅଭିହିତ

କରିଯାଇପାରେ । ସେହି ଏକ ନିର୍ଦ୍ଦେଶ୍ୟ ପ୍ରତି ଦୁଇଟି ନିର୍ଦ୍ଦେଶ ସତ୍ୟ, କିନ୍ତୁ ଏହି ସ୍ୱାଚ୍ଛନ୍ଦ୍ୟରେ ସେ ଦୁଇଟି ଅତ୍ୟନ୍ତ ଭିନ୍ନ ହୋଇପାରେ ଏବଂ ଏହା ସେ ଦୁଇଟିର ପ୍ରତୀକରେ ପ୍ରତିଫଳିତ ହୋଇପାରେ । "ମୋର ଗୌରୀଶଙ୍କର ଶୃଙ୍ଗ ଅରୋହଣର ସ୍ମୃତି କାଗଜ ହେଲପର ମନେ ହେଉଛି" ଏବଂ "ମୁଁ ଗୌରୀଶଙ୍କର ଉପରକୁ ଉଠିଲି"—ଏହି ଦୁଇଟି ପ୍ରତୀକ ଅବସ୍ଥା-ବିଶେଷରେ ସେହି ଏକ ନିର୍ଦ୍ଦେଶ ପରିବର୍ତ୍ତେ ବ୍ୟବହୃତ ହୋଇପାରେ । ସୁତରାଂ ଏହି ପ୍ରତୀକ ଦୁଇଟି ମଧ୍ୟରେ ଥିବା ବୈସାଦୃଶ୍ୟ ଏହି ଅସାଧାରଣ ଅନୁଭୂତିକୁ ମନେ ପକାଇବାରେ ଦୁରୂହତାର ମାତ୍ରା ଉପରେହିଁ ସୁସ୍ପଷ୍ଟତଃ ନିର୍ଭରଶୀଳ । ପକ୍ଷାନ୍ତରେ, ଏହା ନିଧାର୍ଯ୍ୟରୂପେ ଏକ ପ୍ରକୃତ ପ୍ରତୀକାତ୍ମକ ପାର୍ଥକ୍ୟ ହୋଇପାରେ ଏବଂ ଏହା ଅସ୍ୱାଚ୍ଛନ୍ଦ୍ୟର ତାରତମ୍ୟକୁ କେବଳ ସୂଚିତ କରେ-ନାହିଁ, ତାହାକୁ ବ୍ୟକ୍ତ କରେ । ଏହି ସ୍ୱାଚ୍ଛନ୍ଦ୍ୟ ବା ଅସ୍ୱାଚ୍ଛନ୍ଦ୍ୟକୁ ସନ୍ଦେହ ବା ନିଃସନ୍ଦେହ ଅଥବା ବିଶ୍ୱାସ ବା ଅବିଶ୍ୱାସର ମାତ୍ରା ସହିତ ବ୍ୟାମିଶ୍ରିତ କରିବା ଅନୁଚିତ । ଏ ଗୁଡ଼ିକ ଅତି ସ୍ୱାଭାବିକ ରୂପେ ନିର୍ଦ୍ଦେଶ୍ୟ ପ୍ରତି ଅଭିବୃତ୍ତିର (୩ୟ) ଶିରୋନାମଗତ ବିଷୟର ଅନ୍ତର୍ଭୁକ୍ତ ହୋଇଥାଏ । ଏହି ଅଣପ୍ରତୀକାତ୍ମକ କ୍ରିୟାମାନଙ୍କ ମଧ୍ୟରୁ ପ୍ରତ୍ୟେକଟି ଶବ୍ଦର ପ୍ରୟୋଗ କରିପାରେ । ଏହି ଶବ୍ଦ-ପ୍ରୟୋଗ ପ୍ରତୀକାତ୍ମକ ସାମର୍ଥ୍ୟ-ବିଶିଷ୍ଟ ହୋଇପାରେ ଏବଂ ଏହି କ୍ଷେତ୍ରରେ ଶ୍ରୋତାଠାରେ ନିର୍ଦ୍ଦେଶ ଜାତ କରାଇ, ତାହାର ମାଧ୍ୟମରେ ପ୍ରୟୋଜନୀୟ ଉଦ୍ଦେଶ୍ୟ ସାଧନ କରାଯାଏ । ପକ୍ଷାନ୍ତରେ, ଏହି ଶବ୍ଦ-ପ୍ରୟୋଗ ଅଣପ୍ରତୀକାତ୍ମକ ସାମର୍ଥ୍ୟବିଶିଷ୍ଟ ହୋଇପାରେ ଏବଂ ଏହି କ୍ଷେତ୍ରରେ ଶବ୍ଦମାନଙ୍କ ସାକ୍ଷାତ୍ ପ୍ରଭାବ ମାଧ୍ୟମରେ ଉଦ୍ଦେଶ୍ୟ ସାଧନ କରାଯାଏ ।

ପ୍ରାୟ ସମସ୍ତ ବାକ୍ୟରୁ ଯେ କୌଣସି ଗୋଟିକୁ ନେଇ ପାଠକ ପ୍ରୟୋଗାତ୍ମକ ପରୀକ୍ଷା କଲେ ଜାଣି ପାରିବେ ଯେ ସଂପୃକ୍ତ ନିର୍ଦ୍ଦେଶର କେବଳ ସ୍ୱଭାବ ଦ୍ୱାରା ନିୟନ୍ତ୍ରିତ ଏକ ବିଶୁଦ୍ଧ ପ୍ରତୀକାତ୍ମକ ଚିହ୍ନଠାରୁ ସେହି ବାକ୍ୟଟିର ପାର୍ଥକ୍ୟ ଉପର୍ଯ୍ୟୁକ୍ତ ଚାରୋଟି ବିଭାଗ ମଧ୍ୟରୁ ଏକ ବା ଏକାଧିକ ବିଭାଗ ଅନ୍ତର୍ଗତ ବାଧାସଜାତକ ଉପକାରଣମାନଙ୍କ ଉପରେ ନିର୍ଭରଶୀଳ । ଅଧିକନ୍ତୁ, ସମରୂପ ପରି ଜଣା ପଡ଼ୁଥିବା ପାର୍ଥକ୍ୟ ସମୟ-ବିଶେଷରେ ଗୋଟିଏ ଉପକାରଣ ଜନିତ ଏବଂ ଅନ୍ୟ ସମୟରେ ଅନ୍ୟ ଏକ ଉପକାରଣ-ଜନିତ ହୋଇପାରେ । ଭିନ୍ନଭାବରେ କହିଲେ, ମାନବୀୟ ଅଭିବୃତ୍ତି, ଉଦ୍ଦେଶ୍ୟ ଓ ପ୍ରଚେଷ୍ଟାର, ଅର୍ଥାତ୍ ଆମର ଭାବାତ୍ମକ-ସଂକଳ୍ପାତ୍ମକ ପଦ୍ଧତିର ସୁଘଟ୍ୟତାଠାରୁ ପ୍ରତୀକାତ୍ମକ ପରିସ୍ଥିତିଗତ ବାଚନିକ ଉପାଦାନର ସୁଘଟ୍ୟତା ନ୍ୟୂନ । ତେଣୁ ସମ୍ପୂର୍ଣ୍ଣ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ସେହି ଏକ ଭାଷାଗତ ପରିବର୍ତ୍ତନ ଆବଶ୍ୟକ ହୋଇଥାଏ ଏବଂ ସମ୍ଭବତଃ ତାହା ଭିନ୍ନଭିନ୍ନ କାରଣସମ୍ଭୂତ । ଏହି ହେତୁରୁ ବାକ୍ୟକୁ ଅନୁଚ୍ଛେଦର ଅଙ୍ଗରୂପେ, ଅନୁଚ୍ଛେଦକୁ ପରିଚ୍ଛେଦର ଅଙ୍ଗରୂପେ ଏବଂ ପରିଚ୍ଛେଦକୁ ଗ୍ରନ୍ଥର ଅଙ୍ଗରୂପେ

ବିସ୍ତର କରିବା ଗୁରୁତ୍ୱପୂର୍ଣ୍ଣ । ଯଦି ଆମର ବ୍ୟାଖ୍ୟାକୁ ଭ୍ରାନ୍ତ ହେବାକୁ ଛାଡ଼ି ଦିଆ ନଯାଏ, ଯଦି ଆମର ବିଶ୍ଳେଷଣକୁ ମନୋମୁଖୀ ହେବାକୁ ଛାଡ଼ିଦିଆ ନଯାଏ, ତେବେ ଏହି ଅଙ୍ଗାଙ୍ଗୀ ବିସ୍ତରର ଆବଶ୍ୟକତା ରହିଛି ।

ଭାଷାକୁ ସମ୍ପାଦନ କରିବାକୁ ପଡ଼ୁଥିବା ବହୁବିଧ କାର୍ଯ୍ୟ ପ୍ରତି ବୈୟାକରଣ-ମାନେ ଏତେ ଅଳ୍ପ ପରିମାଣରେ ଦୃଷ୍ଟି ଦେଇଥିବା ଏକ ବିସ୍ମୟକର ବ୍ୟାପାର । ସମସ୍ତ ସମୟରେ ନିଜ ସମସ୍ୟାଗୁଡ଼ିକର ଏକ ଭାବମୂଳକ ଦିଗ ରହିଥିବା ବିଷୟ ଯେପରି ଅନୁଗ୍ରାହିତ ଭାବେ ସେମାନେ ସ୍ୱୀକାର କରିଛନ୍ତି, ତାହାର ଆଲୋଚନା ଆମେ ଆଗରୁ କରିଛୁଁ । କିନ୍ତୁ ଏହି ସ୍ୱୀକାରୋକ୍ତି ମଧ୍ୟ କଦାଚିତ୍ ପ୍ରାଧାନ୍ୟ ଲାଭ କରିଥାଏ । ଏଠାରେ ଭାଷାର ଯେଉଁ ପାଞ୍ଚୋଟି କାର୍ଯ୍ୟର ଉଲ୍ଲେଖ କରାଯାଉଛି, ତାହା ଏକ ନିଃଶେଷୀ ତାଲିକା ପରି ମନେ ହୁଏ ।

(୧) ନିର୍ଦ୍ଦେଶର ପ୍ରତୀକାନ୍ୱିତ କରଣ

(୨) ଶ୍ରୋତା ପ୍ରତି ଅଭିବୃତ୍ତିର ପ୍ରକାଶ

(୩) ନିର୍ଦ୍ଦେଶ୍ୟ ପ୍ରତି ଅଭିବୃତ୍ତିର ପ୍ରକାଶ

(୪) ଅଭିପ୍ରେତ ପରିଣତିର ପ୍ରବର୍ତ୍ତନ

(୫) ନିର୍ଦ୍ଦେଶର ସମର୍ଥନ ।

ଅବଶ୍ୟ ପ୍ରତୀକର ଗଠନ ବା ଆକାରକୁ ପରିବର୍ତ୍ତନ କରୁଥିବା ଅନ୍ୟାନ୍ୟ ଉପକାରଣର ଉଲ୍ଲେଖ କରିବା କଷ୍ଟକର ନୁହେଁ । ଉଦାହରଣ ସ୍ୱରୂପ, ହୁକ୍କା କମ୍ପା କଣ୍ଠନାଳୀର ବେଦନା କମ୍ପା ହସ୍ତାଙ୍ଗୁଳିର ଅସ୍ୱାଭାବିକତା ହେତୁରୁ ପ୍ରତୀକର ରୂପ ପରିବର୍ତ୍ତିତ ହୋଇପାରେ । ସେହିପରି, ଶ୍ରୋତୃମଣ୍ଡଳୀର ଦୂରତ୍ୱ ଦ୍ୱାରା, ଏବଂ ଆହୁରି ଗୁରୁତର ଭାବେ ଘଟଣାର ସ୍ୱଭାବ ଦ୍ୱାରା ପ୍ରତୀକର ରୂପ ପରିବର୍ତ୍ତିତ ହୋଇପାରେ । ପୁଣି, ବକ୍ତା ଯଦି କୌଣସି ବାହ୍ୟ କାରଣରୁ ଉତ୍ତେଜିତ ବା ବିରକ୍ତ ହୋଇଥାନ୍ତି; ତେବେ ତାହାର ପ୍ରଭାବ ତାଙ୍କର କଥନ ରୀତି ଦ୍ୱାରା ପ୍ରଦର୍ଶିତ ହୋଇପାରେ । ବ୍ୟକ୍ତି ତଥା ବ୍ୟକ୍ତିସମ୍ପୂର୍ଣ୍ଣ ସମ୍ପ୍ରଦାୟର ସମଗ୍ର ବିଗତ ଭାଷାମୂଳକ ଇତିହାସ ସୁପ୍ରତ୍ୟକ୍ଷରୂପେ ପ୍ରତୀକ ପରିବର୍ତ୍ତନ ଉପରେ ପ୍ରଭୂତ ପ୍ରଭାବ ପକାଇଥାଏ । ଜଣେ ସ୍ପଷ୍ଟ ସ୍ୱଭାବତଃ ସ୍ପିଦସ୍ ଭାଷା କହେ ନାହିଁ । ଯଦିଓ ଏହି ଶେଷୋକ୍ତ ବିଷୟଟି ତୁଳନାତ୍ମକ-ଭାଷାବିତ୍ ପକ୍ଷରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ; ତଥାପି ଭାଷାଗତ ଆକାର ଉପରେ ଉପର୍ଯ୍ୟୁକ୍ତ ସମସ୍ତ ପ୍ରଭାବ ଏଠାରେ ବିଚାର କରାଯାଉଥିବା ଅର୍ଥରେ ଭାଷାର କାର୍ଯ୍ୟ ନୁହେଁ । (୧) ମଧ୍ୟଛନ୍ଦା,

(୧) ଯେଉଁ ଉପାୟମାନଙ୍କରେ ଲେଖକମାନେ ନିଜର ଉଦ୍ଦେଶ୍ୟ ସାଧନ କରନ୍ତି, ସେହି ଉପାୟମାନଙ୍କ ସହିତ ସେହି ଉଦ୍ଦେଶ୍ୟଗୁଡ଼ିକୁ ବ୍ୟାମିଶ୍ରିତ କରିପକାଇବା

କଣ୍ଠ ବା ଅଙ୍ଗୁଳିର ଅବସ୍ଥା, ଜିହ୍ୱା ବା ପରେଇ ପତ୍ରିଆର ଧ୍ୱନିବିକରଣ ସାମର୍ଥ୍ୟ ଭାଷାତତ୍ତ୍ୱର ସମ୍ପୃକ୍ତ ବିଷୟ ନୁହେଁ । ଯଦିଓ ତୁଳନାତ୍ମକ ଭାଷା ବିଜ୍ଞାନରେ ହିଁ ଏହି ବିଜ୍ଞାନର ସମୂହ ପରିଚର ଅନ୍ତର୍ଭୁକ୍ତ ବୋଲି ପ୍ରାୟଶଃ ବିବେଚନା କରାଯାଏ, ଏହି ଅଧ୍ୟୟନ ଯେ ମୁଖ୍ୟତଃ ଇତିହାସର ଅନ୍ତର୍ଭୁକ୍ତ, ଏକଥା ସୁସ୍ପଷ୍ଟ । ଏହା କହିବା ଦ୍ୱାରା ଏହି ଅଧ୍ୟୟନ ଯୋଗାଉଥିବା ବିଷୟ ବସ୍ତୁର ଗୁରୁତ୍ୱ ଏବଂ ସେଥିପ୍ରତି ଅନୁରକ୍ତିକୁ ଆମେ ନ୍ୟୂନ କରୁନାହୁଁ । ଆମେ ଯେଉଁ କାର୍ଯ୍ୟଗୁଡ଼ିକର ପରୀକ୍ଷା କରୁଛୁ, ସେଗୁଡ଼ିକ ହେଉଛି ଯାହା ସମସ୍ତ ଭାବ ବିନିମୟ କ୍ଷେତ୍ରରେ ଆବଶ୍ୟକରୂପେ କାର୍ଯ୍ୟକାରୀ ହୁଏ । ଯେଉଁ ପଦ୍ଧତିରେ କଥନ କ୍ରିୟା ସମ୍ପାଦିତ ହୁଏ ଏବଂ ଯେଉଁ ମୁଖ୍ୟ ଉପକାରିତା କଥନ କ୍ରିୟା ଦ୍ୱାରା ଲବ୍ଧ ହୁଏ, ଏଠାରେ ସେହି କାର୍ଯ୍ୟଗୁଡ଼ିକର ହିଁ ପରୀକ୍ଷା କରାଯାଉଛି ।

---

ଉଚିତ ନୁହେଁ । Waltor Pater କହିଛନ୍ତି, "କ୍ଷତିକର ଆଧିକ୍ୟ ! ପ୍ରକୃତ କଳାକାର ତାହାକୁ ଭୟ କରିବ, ଠିକ୍ ଯେପରି ଜଣେ ଦୌଡ଼ାଳୀ ତାହାର ପେଶୀସ୍ଥ କ୍ଷତିକର ଆଧିକ୍ୟକୁ ଭୟ କରେ; କାରଣ ଏ କଥା ସତ୍ୟ ଯେ ସମସ୍ତ କଳା କେବଳ କ୍ଷତିକର ଆଧିକ୍ୟର ପରିବର୍ଜନରେ ହିଁ ପର୍ଯ୍ୟବସିତ । ମଣି ଉପରେ ଖୋଦନ କରୁଥିବା ଶିଳ୍ପୀ ତାହାର କୃତିର ସର୍ବଶେଷ ଅବସ୍ଥାରେ ଅଦୃଶ୍ୟ କଣିକାଗୁଡ଼ିକ ମଧ୍ୟରୁ ସର୍ବଶେଷ କଣିକାର ଅପସାରଣ କ୍ରିୟାଠାରୁ ପଶ୍ଚାଦ୍‌ଗତି କରି ମାଇକେଲ୍ ଏଞ୍ଜେଲୋଙ୍କ କଳ୍ପନାନୁଯାୟୀ ଖଦଖଦଡ଼ିଆ ଭାବେ କଟା ହୋଇଥିବା ପ୍ରସ୍ତର ଖଣ୍ଡର କୌଣସି ସ୍ଥାନରେ ଲୁପ୍ତ ରହିଥିବା ଶେଷକୃତିର ସର୍ବପ୍ରଥମ ପରିକଳ୍ପନା ପର୍ଯ୍ୟନ୍ତ ସର୍ବତ୍ର କଳା କ୍ଷତିକର ଆଧିକ୍ୟର ପରିବର୍ଜନରେ ହିଁ ନିହିତ ।' Syndney Smith ଗଭୀର ସୂକ୍ଷ୍ମଦର୍ଶିତା ସହକାରେ ମନ୍ତବ୍ୟ ଦେଇଥିଲେ ଯେ ପ୍ରତ୍ୟେକ ଲିଖିତବାକ୍ୟର ଏକାଦିକ୍ରମେ ପ୍ରତ୍ୟେକ ଶବ୍ଦର ପରବର୍ତ୍ତୀ ଶବ୍ଦକୁ କାଟି ଦେଇ ଅନେକବାର ଗଦ୍ୟଶୈଳୀର ଉନ୍ନତି ବିଧାନ କରାଯାଇ ପାରେ । କିନ୍ତୁ ଅଧ୍ୟାପକ Comington ଦର୍ଶାଇଛନ୍ତି ଯେ, "ଅବସ୍ଥାବିଶେଷରେ, ବେଳେ ବେଳେ କେତେକ ପରିମାଣର ଆବଶ୍ୟକତା ରହିତ ଆଧିକ୍ୟକୁ ସୁସମନ୍ୱିତ ଗଦ୍ୟରେ ସ୍ଥାନ ଦିଆଯାଇ ପାରେ । ବାକ୍ୟାଂଶ ସହିତ ବାକ୍ୟାଂଶର ସ୍ୱରସାମ୍ୟ ରକ୍ଷା ଏବଂ ସାଧାରଣଭାବେ ଏକ ଛନ୍ଦମୟ ପରିବେଶର ପରିପ୍ରେକ୍ଷନ ଠାରୁ ଅଧିକ ଉନ୍ନତ କୌଣସି କାରଣ ଏଥିପାଇଁ ନଥାଏ ।" (Miscellaneous writings, ୧ମ ଖଣ୍ଡ ପୃ ୧୧୭, J. A. Symonds ଙ୍କ ଦ୍ୱାରା ସମ୍ପାଦିତ, ୮୭୨) । ଏଠାରେ ବିବୃତ୍ୟ ପ୍ରଶ୍ନଟି ସୁସ୍ପଷ୍ଟରୂପେ ଏକ ଉଦ୍ଦେଶ୍ୟ ସମ୍ବନ୍ଧୀୟ ପ୍ରଶ୍ନ । କିନ୍ତୁ ଶୈଳୀ, ସ୍ୱରସାମ୍ୟ, ଛନ୍ଦ ଇତ୍ୟାଦି ହିଁ ଉଦ୍ଦେଶ୍ୟ ନୁହେଁ । ଏଗୁଡ଼ିକୁ ଯେ କୌଣସି କ୍ରିୟାରେ ପ୍ରୟୋଗ କରାଯାଇ ପାରେ ।

ଆମ ତାଲିକାଟି ହ୍ରାସଶେଷୀ ହୋଇଥାଉ ବା ନ ଥାଉ, ସ୍ପଷ୍ଟତାକୁ ପ୍ରଭୂତ ପରିମାଣରେ କ୍ଷୁଣ୍ଣ ନକରି, ଏବଂ ଭାଷା ଆଚରଣକୁ ବୁଝିବା ନିମନ୍ତେ ଅନେକ କ୍ଷେତ୍ରରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇଥିବା ବିଭିନ୍ନ ଗୁଡ଼ିକୁ ବାଦ ନଦେଇ, ଏହି କାର୍ଯ୍ୟଗୁଡ଼ିକର ସଂଖ୍ୟା ନ୍ୟୂନ କରିବା ସମ୍ଭବପର ନୁହେଁ, ଅନ୍ତତଃ ଏତିକି ସୁନିଶ୍ଚିତ ।

ଉଦାହରଣ ସ୍ୱରୂପ, ଶବ୍ଦ ଗୁଡ଼ିକର ବ୍ୟବହାରଗତ ପ୍ରଣାଳୀମାନଙ୍କ ଏ ପ୍ରକାର ଏକ ବିଶ୍ଳେଷଣର ଭାଷାନ୍ତରୀକରଣ କ୍ଷେତ୍ରରେ ରହି ଥିବାରୁ ବହୁ ବିଭ୍ରାନ୍ତିର ସୃଷ୍ଟି ହୋଇଛି । ଯଥାଯଥ ଭାଷାନ୍ତରୀକରଣ ପରି ଜଣା ପଡ଼ୁଥିବା କ୍ଷେତ୍ରରେ ପୁଣି ଅବ୍ୟାଖ୍ୟେୟ ଅସାଫଲ୍ୟର ସମ୍ମୁଖୀନ ହୋଇ ଭାଷାବିତ୍‌ମାନେ ଏହି ବିଷୟର ଦାର୍ଶନିକ-ମାନଙ୍କ ସୂକ୍ତାବଳୀ ତଥା ସେମାନଙ୍କ ଅନିର୍ଦ୍ଦିଷ୍ଟାର୍ଥକ ଶବ୍ଦ ସମ୍ଭାରକୁ ଗ୍ରହଣ କରିନେବାକୁ ଅଯଥା ଅତ୍ୟଧିକ ତତ୍ପର ହୋଇ ପଡ଼ିଛନ୍ତି । ଉଦାହରଣ ସ୍ୱରୂପ, ସପିର୍‌ଙ୍କ ମତାନୁସାରେ "ସାହିତ୍ୟ କଳା ଶିଳ୍ପୀଙ୍କ ସମସ୍ତ କୃତି ତାଙ୍କ ନିଜ ଭାଷାର ଆକାରଗତ 'ପ୍ରତିଭା' ଦୃଷ୍ଟିରୁ ବିବେଚିତ ହୁଏ ବା ସ୍ୱଙ୍କେସ୍ତ ହୁଏ । କ୍ଷତି ସହ୍ୟ ନକରି ବା ପରିବର୍ତ୍ତିତ ନକରି ସେଗୁଡ଼ିକୁ ଭାଷାନ୍ତରକୁ ନିଆଯାଇ ନ ପାରେ । ତେଣୁ ଏକ ସାହିତ୍ୟିକ କଳା ଗ୍ରନ୍ଥ କଦାପି ଅନୁବାଦ୍ୟ ନୁହେଁ ବୋଲି ଦେଇଥିବା ଉକ୍ତିରେ କୋଟେ ସଂପୂର୍ଣ୍ଣରୂପେ ଠିକ୍ । ତଥାପି ସାହିତ୍ୟ ଭାଷାନ୍ତରୀକୃତ ହୁଏ, ଏବଂ ସମସ୍ତ ସମୟରେ ତାହା ଚମତ୍କାରରୂପେ ଯଥାଯଥ ହୋଇଥାଏ ।" (୧) ତେଣୁ ଏଠାରେ ଏକ ସମସ୍ୟା ଜାତ ହେଉଛି ପରି ମନେ ହୁଏ, ଏବଂ ତାହାର ଏକ ସମାଧାନ ରୂପେ ପ୍ରସ୍ତାବ ଦିଆଯାଇଛି ଯେ "ସାହିତ୍ୟରେ ଦୁଇଟି ବିଭିନ୍ନ ପ୍ରକାର ବା ସ୍ତରର କଳା ପରସ୍ପର ଜଡ଼ିତ । ଏଥିରୁ ଗୋଟିଏ ହେଉଛି ଏକ ସାମାନ୍ୟୀକୃତ ଅଣଭାଷାତ୍ମକ କଳା; ଏହା ଏକ ବୈଜାତିସ୍ୱ ଭାଷାମୂଳକ ମାଧ୍ୟମକୁ ବିନା କ୍ଷତିରେ ବଦଳା ଯାଇପାରେ । ଅପରଟି ହେଉଛି ଏକ ବିଶେଷ ଭାଷାତ୍ମକ କଳା; ଏହା ବଦଳା ଯାଇପାରେନା । ମୋର ବିଶ୍ୱାସ ଏହି ପାର୍ଥକ୍ୟ ସମ୍ପୂର୍ଣ୍ଣରୂପେ ଯୁକ୍ତିଯୁକ୍ତ, ଯଦିଓ ବ୍ୟାବହାରିକ କ୍ଷେତ୍ରରେ ଏହି ଦୁଇଟି ସ୍ତରକୁ ଅବିମିଶ୍ରିତ ଅବସ୍ଥାରେ ଆମେ କଦାପି ପାଉନା । ଭାଷାକୁ ମାଧ୍ୟମରୂପେ ନେଇ ସାହିତ୍ୟ ଗତିଶୀଳ ହୁଏ । କିନ୍ତୁ ଏହି ମାଧ୍ୟମର ଦୁଇଟି ସ୍ତର ରହିଛି । ଗୋଟିଏ ହେଉଛି ଭାଷାର ନିହିତ ଅନ୍ତର୍ବସ୍ତୁ, ଏହା ଆମ ଅନୁଭୂତିର ସ୍ୱଜ୍ଞାତ୍ମକ ପ୍ରତିଲିପି । ଅପରଟି ହେଉଛି ଦତ୍ତ ଭାଷାରେ ବିଶେଷ ଆକାର; ଏହା ହେଉଛି ଆମ ଅନୁଭୂତି ବିବରଣୀ ଯେପରିଭାବେ ନିର୍ଦ୍ଦିଷ୍ଟରୂପେ ରୂପାୟିତ । କୌଣସି ସାହିତ୍ୟ ସମ୍ପୂର୍ଣ୍ଣରୂପେ ନିମ୍ନସ୍ତରରୁ ଉପଜୀବ୍ୟ ଗ୍ରହଣ କରି ତିଷ୍ଠି ପାରେନା । ଯେଉଁ ସାହିତ୍ୟ ମୁଖ୍ୟତଃ ଏହି ସ୍ତରରୁ ଉପଜୀବ୍ୟ ଗ୍ରହଣ କରି

(୧) କଥିତ ଗ୍ରନ୍ଥ, Language, ପୃ ୨୩୭—୨୩୯ ।

ପରିପୁଷ୍ଟ, ଯଥା—ସେକ୍‌ସପିଅରଙ୍କ ନାଟକ, ତାହାର ସ୍ୱଭାବର ବିଶେଷ କୌଣସି କ୍ଷତି ନ ଘଟାଇ ତାହାକୁ ଅନୁବାଦ କରାଯାଇ ପାରେ । କିନ୍ତୁ ନିମ୍ନସ୍ତରରେ ଗତିଶୀଳ ନ ହୋଇ ଯାହା ବରଂ ଉପର ସ୍ତରରେ ଗତିଶୀଳ, ତାହା ଅନନୁବାଦ୍ୟ କହିଲେ ଚଳେ । ଏହାର ଏକ ଯଥୋପଯୁକ୍ତ ଦୃଷ୍ଟାନ୍ତ ହେଉଛି ସ୍ୱାଇନବର୍ଣ୍ଣଙ୍କ ଲିରିକ୍ କବିତା ।” ଏହି ପାର୍ଥକ୍ୟର ବିଶଦ ବ୍ୟାଖ୍ୟା ନିମନ୍ତେ ସାହିତ୍ୟକୁ ବିଜ୍ଞାନ ସହିତ ତୁଳନା କରାଯାଏ । କୁହାଯାଏ ଯେ ବୈଜ୍ଞାନିକ ସତ୍ୟ ହେଉଛି ନିର୍ବୈୟକ୍ତିକ । “ଯେଉଁ ଭାଷା ମାଧ୍ୟମରେ ଏହା ପ୍ରକାଶିତ; ତାହା ଦ୍ୱାରା ଏହାର ସାରସତ୍ତା ରଞ୍ଜିତ ହୁଏ ନା ।...... ତଥାପି ଏହା କୌଣସି ପ୍ରକାରେ ବ୍ୟକ୍ତ ହେବା ଆବଶ୍ୟକ ଏବଂ ସେହି ଅଭିବ୍ୟକ୍ତି ଆବଶ୍ୟକ ରୂପେ ଭାଷାଗତ ହେବା ସୁନିଶ୍ଚିତ । ବାସ୍ତବିକ, ବୈଜ୍ଞାନିକ ସତ୍ୟର ଅବବୋଧଟି ହିଁ ଏକ ଭାଷାଗତ ପ୍ରକ୍ରିୟା, କାରଣ ବହିରାଭରଣ ବିରହିତ ଭାଷା ବ୍ୟତୀତ ଚିନ୍ତା ଆଉ ଅନ୍ୟ କିଛି ନୁହେଁ ।” ପକ୍ଷାନ୍ତରେ ସାହିତ୍ୟ ହେଉଛି “ବ୍ୟକ୍ତିନିଷ୍ଠ ଓ ମୂର୍ତ୍ତ.........‘କଳାକାରର ସ୍ୱପ୍ନ’ ପଦକୁ କ୍ରୋଚେ ପ୍ରଚଳିତ କରିଥିଲେ । କଳାକାରର ସ୍ୱପ୍ନ ଏକ ସାମାନ୍ୟୀକୃତ ମାନବୀୟ ଅନୁଭୂତିରୁ ଅବ୍ୟବହିତ ଭାବେ ଗଠିତ ହୁଏ । .........ଯେଉଁ କେତେକ କଳାକାରଙ୍କ ଭାବଧାରା ଅଧିକାଂଶତଃ ଅଣଭାଷାତ୍ମକ ସ୍ତରରେ (ସାମାନ୍ୟୀକୃତ ଭାଷାତ୍ମକ ସ୍ତରରେ ହେଲେ ଆହୁରି ଉତ୍ତମ) ଗତିଶୀଳ, ସେମାନେ ମଧ୍ୟ ନିଜକୁ ବ୍ୟକ୍ତ କରିବା ପାଇଁ କେତେକ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ହୁଇଟମାନ୍ ଏବଂ ଅନ୍ୟ କେତେକଙ୍କ କ୍ଷେତ୍ରରେ ମନେ କରାଯାଏ ଯେ ସେମାନେ ଯେପରି “ଏକ ସାମାନ୍ୟୀକୃତ କଳାର ଭାଷା ଅର୍ଥାତ୍ ଏକ ସାହିତ୍ୟିକ ବୀଜଗଣିତ ଉଦ୍ଭାବନ ଚେଷ୍ଟାରେ ଅଛନ୍ତି ।.........ସେମାନଙ୍କ କଳା ଅଭିବ୍ୟକ୍ତି ବହୁ କ୍ଷେତ୍ରରେ ସାବଲୀଳ ନୁହେଁ । ସମସ୍ତ ସମୟରେ, ତାହା ଏକ ଅଙ୍କିତମୂଳ ତତ୍ତ୍ୱରୁ ଅନୂଦିତ ହେଲପରି କାନକୁ ଲାଗେ । ଅବଶ୍ୟ ଏହି କ୍ଷେତ୍ରରେ ଠିକ୍ ଏହାହିଁ କରାଯାଇଥାଏ ।”

ଭାଷା ମାଧ୍ୟମର ‘ଆକାରଗତ ପ୍ରଭେଦ’ ଓ ‘ନିହିତ ଅନ୍ତର୍ବସ୍ତୁ’, ଏବଂ ‘ଅଣ-ଭାଷାତ୍ମକ ସ୍ତର’, ଯହିଁରେ ‘ସ୍ୱପ୍ନ’ ଗତିଶୀଳ ହୁଏ—ଏହି ବିଷୟଗୁଡ଼ିକର ମାଧ୍ୟମରେ ଆମେ ଯଦି ଅନୁବାଦ ସମ୍ବନ୍ଧୀୟ ଅସୁବିଧାଗୁଡ଼ିକର ଆଲୋଚନା କରିବାକୁ ପ୍ରୟାସୀ ହେଉଁ, ତେବେ ରହସ୍ୟ ଅନିର୍ବାର୍ଯ୍ୟ । କିନ୍ତୁ କବିତାର ଅନ୍ତରାଳରେ ରହିଥିବା ଉପାଦାନ-ମାନଙ୍କ ପ୍ରାଚୁର୍ଯ୍ୟ ସମ୍ବନ୍ଧରେ ଆମେ ଯଦି ସଚେତନ ରହୁଁ, ତେବେ ଆମେ ନେପଲସ—ଅପଭାଷାର ସନ୍ଦେହାତ୍ମକ ଦାବୀଙ୍କୁ ପ୍ରତ୍ୟାଖ୍ୟାନ କରିବା ନିମନ୍ତେ ସମର୍ଥ ହୋଇ ପାରିବା । କବିତା-ମାଧ୍ୟମର ପ୍ରାଚୁର୍ଯ୍ୟ ସମ୍ବନ୍ଧରେ ଆମେ ପରେ ଆଲୋଚନା କରିବା । ଯାହା ହେଉ, ଭାଷାନ୍ତରୀକରଣ କେତେକ ସଂପୂର୍ଣ୍ଣତଃ ବୋଧଗମ୍ୟ କାରଣରୁ ବସ୍ତୁତଃ

ସଫଳ ବା ବିଫଳ ହୋଇପାରେ । ଶବ୍ଦମାନଙ୍କ ଯେ କୌଣସି ସଂପୂର୍ଣ୍ଣ ପ୍ରତୀକାତ୍ମକ ବ୍ୟବହାରର ଦ୍ୱୈତକରଣ ସମ୍ଭବପର, ଯଦି ସଂପୃକ୍ତ ଶବ୍ଦସମ୍ଭାର ଦ୍ୱୟରେ ସମାନ ଧରଣର ପ୍ରତୀକାତ୍ମକ ପାର୍ଥକ୍ୟମାନ ପରିବୃଦ୍ଧି ଲାଭ କରିଥାଏ । ଏହା ହୋଇ ନଥିଲେ, ବହୁଳ ଉକ୍ତିର ବ୍ୟବହାର ଅଥବା ନୂତନ ପ୍ରତୀକମାନଙ୍କ ବ୍ୟବହାର ଆବଶ୍ୟକ । ଏହିପରିଭାବେ କେତେ ପରିମାଣର ସଂବାଦିତା ସମ୍ଭବପର, ତାହା ଏକ ସଂପୂର୍ଣ୍ଣ ଅନୁସନ୍ଧେୟ ବ୍ୟାପାର । ପକ୍ଷାନ୍ତରେ, ଯେତେ ଅଧିକ ସଂଖ୍ୟକ ସଂବେଦନାତ୍ମକ ପ୍ରକ୍ରିୟା ଏଠାରେ ନିହିତ ଥିବ, ଦୁଇଟି ଭିନ୍ନ ଭିନ୍ନ ଶବ୍ଦ ସମ୍ଭାରରେ ସେଗୁଡ଼ିକ ମଧ୍ୟରୁ ଏକାଧିକ ପ୍ରକ୍ରିୟାକୁ ସମ୍ମିଶ୍ରିତ କରିବା କାର୍ଯ୍ୟ ସେତେ ଅଧିକ କଷ୍ଟସାଧ୍ୟ ହେବ । ଆହୁରି ମଧ୍ୟ, ମୂଳଭାଷାରେ ଛନ୍ଦ, ସ୍ୱରବର୍ଣ୍ଣଗତ ଗୁଣ ଇତ୍ୟାଦିର ପ୍ରୟୋଗ ଦ୍ୱାରା ଶବ୍ଦଗୁଡ଼ିକର ସାକ୍ଷାତ ପ୍ରଭାବ ଯେତେ ଅଧିକ ପରିମାଣରେ ବ୍ୟବହାର କରାଯାଇଥିବ, ଏକ ଭିନ୍ନ ଧ୍ୱନି-ମାଧ୍ୟମରେ ସଦୃଶ ପ୍ରଭାବଗୁଡ଼ିକୁ ତଦ୍ରୂପଭାବେ ରକ୍ଷା କରିବା ସେତେ କଷ୍ଟକର ହେବ । ଏହି କାରଣରୁ କେତେକ ସମାନ ପ୍ରକାର ପଦ୍ଧତିର ପ୍ରବେଶ କରାଇବା ଆବଶ୍ୟକ ହୁଏ, କିନ୍ତୁ ଏତଦ୍ଦ୍ୱାରା ଭାଷାର ଅନ୍ୟାନ୍ୟ କାର୍ଯ୍ୟ ବାଧାପ୍ରାପ୍ତ ହେବାର ସମ୍ଭାବନା ବୃଦ୍ଧି ପାଏ । ତେଣୁ ଯାହାକୁ ଭାଷାନ୍ତରୀକରଣର ଏକ 'ସାଫଲ୍ୟ' କୁହାଯାଏ, ତାହା ଅନେକତଃ ମୁଖ୍ୟତଃ ଭାଷାର ନିଜସ୍ୱ ଯୋଗ୍ୟତା ହେତୁରୁ ହିଁ ସମ୍ଭବପର ହୁଏ । ଭାଷାର କାର୍ଯ୍ୟାବଳୀ ତଥା ତାହାର ପ୍ରତ୍ୟୟାତ୍ମକ ଅବଲମ୍ବନମାନଙ୍କୁ ବୁଝି ଭାଷାନ୍ତରୀକରଣ ଗୁଡ଼ିକର ସମୀକ୍ଷା ଭାଷା ଅଧ୍ୟୟନର ଏକ ବିଶେଷ ଚିତ୍ତାକର୍ଷକ ଓ ଶିକ୍ଷାପ୍ରଦ ପଦ୍ଧତି ହୋଇଥାଏ ।

ପ୍ରାୟ ସମସ୍ତ କ୍ଷେତ୍ରରେ ବଚନ ଏକକ ସଙ୍କେତ—ପରିସ୍ଥିତି ନୁହେଁ, ଏକ ବହୁମୁଖୀ ସଙ୍କେତ-ପରିସ୍ଥିତି ଉପସ୍ଥାପିତ କରେ—ଏହି ମତ ପ୍ରାଚୀନ ବ୍ୟାକରଣର ଅନେକ ସମସ୍ୟା ଉପରେ ନୂତନ ଆଲୋକପାତ କରେ । ବିଶେଷତଃ ବାକ୍ୟ-ଗଠନ ଓ ଶବ୍ଦବିନ୍ୟାସର ବିଷୟର ଆଲୋଚନା ନୂତନଭାବେ କରାଯିବା ଆବଶ୍ୟକ । ଏହି ଦୃଷ୍ଟିକୋଣରୁ ଏକ ବିଲକ୍ଷଣଯୁକ୍ତ ଉଦାହରଣରୂପେ ଆମେ ଜଣେ ଭାଷାବିଜ୍ଞାନୀ (୧)ଙ୍କୁ ଗ୍ରହଣ କରିପାରୁଁ । ସେ ଶବ୍ଦ ତଥା ବାକ୍ୟର ଭାଷାର କେବଳ ଏକ ଦ୍ୱୈତ କ୍ରିୟା ବିଷୟ ଉଲ୍ଲେଖ କରି ସନ୍ତୁଷ୍ଟ ରହିଛନ୍ତି ।

କୁହା ଯାଉଥିବା ଏକ ବିଷୟର ବାଚ୍ୟାର୍ଥ ବକ୍ତାର ଦୃଷ୍ଟିରୁ ବ୍ୟକ୍ତ ଧ୍ୱନ୍ୟାତ୍ମକ ପ୍ରତୀକ ହେଉଛି ଶବ୍ଦ ।

---

(୧) କଥିତ ପ୍ରବନ୍ଧ, The British Journal of Psychology (ସାଧାରଣ ବିଭାଗ) ଖଣ୍ଡ—୧୨, ଭାଗ—୪, ଏପ୍ରିଲ ୧୯୨୨ ରେ Dr. A. Gardiner.

ଶ୍ରୋତାପ୍ରତି ବକ୍ତାର ଏକ ସଙ୍କଳ୍ପାତ୍ମକ ଅଭିବ୍ୟକ୍ତିସଂବଳିତ ବିଷୟ ବିଶ୍ୱର ଦୃଷ୍ଟିରୁ ବ୍ୟକ୍ତ ଧ୍ୱନ୍ୟାତ୍ମକ ପ୍ରତୀକ ହେଉଛି ବାକ୍ୟ ।

ଉକ୍ତିର ଗାର୍ଡ଼ିନରଙ୍କ ଦ୍ୱାରା ବ୍ୟବହୃତ 'ସଙ୍କଳ୍ପାତ୍ମକ ଅଭିବୃତ୍ତି' ଭାଷା-କାର୍ଯ୍ୟ ସମ୍ବନ୍ଧୀୟ ଆମ ତାଲିକାର ୪ର୍ଥ ବିଷୟର ଅନ୍ତର୍ବର୍ତ୍ତୀ ପରି ମନେହେବ । ଏହି କାର୍ଯ୍ୟ ସହିତ ସଂପୃକ୍ତ ହୋଇ ନଥିଲେ, ବଚନର କୌଣସି ବ୍ୟବହାରକୁ ଭାବ ବିନିମୟ-ପାଇଁ ପ୍ରୟାସ ବୋଲି ସ୍ୱୀକାର କରଯାଇ ନ ପାରେ—ଏହା ସାଧାରଣତଃ ଏକ ଗ୍ରହଣଯୋଗ୍ୟ ଉକ୍ତି ହେବ ।

କିନ୍ତୁ ଏହିପରି ଭାବେ ସଂଜ୍ଞାମୁକ୍ତ ହୋଇଥିବା ପଦଗୁଡ଼ିକର ବୈୟାକରଣଙ୍କ ପକ୍ଷରେ ଉପାଦେୟତା କଣ, ତାହା ସୁପ୍ରତ୍ୟକ୍ଷ ନୁହେଁ । ଯାହା ଏଠାରେ ଗୁରୁତ୍ୱପୂର୍ଣ୍ଣ, ତାହା ହେଉଛି ବଚନର ଉକ୍ତ ଦୁଇଟି କାର୍ଯ୍ୟର ବିଜାତୀୟତା ଏବଂ ଲେଖକ ତହିଁରେ ଯେପରି ପ୍ରାଧାନ୍ୟ ଆରୋପ କରିଛନ୍ତି, ତାହା ଯଥାର୍ଥ । କିନ୍ତୁ ଭାଷାର ଯେ କୌଣସି ଏକ ବ୍ୟାପକ ବିଶ୍ଳେଷଣରେ ଯେଉଁ ଅନ୍ୟାନ୍ୟ କାର୍ଯ୍ୟର ବିଚାର ଆବଶ୍ୟକ, ସେଗୁଡ଼ିକ ମଧ୍ୟ ନ୍ୟୂନ ବିଜାତୀୟ ନୁହେଁ ।

ମନସ୍ତତ୍ତ୍ୱର ଲେଖକମାନଙ୍କ ବିରୁଦ୍ଧରେ ସମୟ ସମୟରେ ଏକ ଅଭିଯୋଗ ଆଗତ କରାଯାଏ ଯେ ସେମାନେ ଶ୍ରୋତା ଦିଗକୁ ଉପେକ୍ଷା କରି ଯାଇଛନ୍ତି । ଏହା ନିଶ୍ଚିତରୂପେ ସତ୍ୟ ଯେ 'ଅଭିବ୍ୟକ୍ତି'କୁ ଭାଷାର ମୁଖ୍ୟ କାର୍ଯ୍ୟ (୧) ରୂପେ ଗ୍ରହଣ କରି ତହିଁରେହିଁ ନିଜକୁ ନିୟୋଜିତ ରଖିବା କ୍ଷତିକାରକ ହୋଇଛି । କିନ୍ତୁ ଏଥିପାଇଁ 'ଅଭିବ୍ୟକ୍ତି' ଶବ୍ଦଟିର ହିଁ ଏକ ଅସାଧାରଣ ମାଦକ ପ୍ରଭାବ ଯେତେ ଦାୟୀ, ତଦ୍ୱାରା ଶ୍ରୋତା ଉପେକ୍ଷିତ ହୋଇ ଯାଉଥିବା ବିଷୟ ସେତେ ଦାୟୀ ନୁହେଁ । ବୈଜ୍ଞାନିକ ଆଲୋଚନାରେ ଏପରି କେତେକ ପଦ ରହିଛି, ଯାହା ଯେ କୌଣସି ପ୍ରଗତିକୁ ଅସମ୍ଭବ କରି ପକାଏ ପରି ମନେ ହୁଏ । ସେଗୁଡ଼ିକ ଅନୁସନ୍ଧିତ୍ସୁ ମନକୁ ସ୍ତମ୍ଭୀଭୂତ କରିଦିଏ, ବିଚଳିତ କରିଦିଏ; କିନ୍ତୁ ତଥାପି ସେଗୁଡ଼ିକ ଦ୍ୱାରା ଏକ ପ୍ରକାର ସନ୍ତୋଷ ଜାତ ହୁଏ । ଯେଉଁମାନେ ନିଜେ କଣ କହିଛନ୍ତି, ତାହା ଜାଣିବାକୁ ଚାହାନ୍ତି, ସେମାନଙ୍କ ପକ୍ଷରେ ଏହି ପଦଗୁଡ଼ିକ ନୈରାଶ୍ୟମୂଳକ ହେଲେ ସୁଦ୍ଧା, ଯେଉଁମାନଙ୍କର ଶବ୍ଦଗୁଡ଼ିକ ସହିତ ମୁଖ୍ୟ ସମ୍ପର୍କ ହେଉଛି ଅସୁବିଧାରୁ ନିଷ୍କୃତି ପାଇବା, ସେମାନଙ୍କ ପକ୍ଷରେ ଏଗୁଡ଼ିକ ଅତ୍ୟନ୍ତ ଆନନ୍ଦ ଦାୟକ । ଏ ପ୍ରକାର ପଦମାନଙ୍କ ମଧ୍ୟରୁ ଗୋଟିଏ ହେଉଛି 'ଅଭିବ୍ୟକ୍ତି'

---

(୧) ଉଦାହରଣ ସ୍ୱରୂପ, Wundt, Volkerpsychologie ତୃତୀୟ ସଂସ୍କରଣ ୧—ପୃ ୦୩ ।

ଆଉ ଗୋଟିଏ ହେଉଛି 'ରୂପାସ୍ରିତ'; 'ଅର୍ଥ'ର ଅବଶେଷ ଆଲୋଚନାରେ ତ ଆମେ ଏବେ ସଂପୃକ୍ତ ରହିଛୁ । ଯାହା ଏଠାରେ ଆବଶ୍ୟକ, ତାହା ହେଉଛି ଏ ପ୍ରକାର ପଦମାନଙ୍କରେ ଲୁକ୍‌କାୟିତ ପ୍ରଣାଳୀମାନଙ୍କ ଅଭ୍ୟନ୍ତରକୁ ଏକ ଅନ୍ୱୀକ୍ଷାମୂଳକ ଅନୁସନ୍ଧାନ ଚଳାଇବା । ଆମ ବିଶ୍ଳେଷଣ ପ୍ରଦର୍ଶନ କରି ଦେଇଛି ଯେ ଶ୍ରୋତା ବିଷୟ ଏଥିରେ ପ୍ରବେଶ କରାଇ ଆଲୋଚ୍ୟ ଘଟଣା ଉପରେ କୌଣସି ବିଶେଷ ଆଲୋକପାତ କରାଯାଇ ନ ପାରେ । ଅଧିକନ୍ତୁ ମନୋବିଜ୍ଞାନ ତଥା ଅନ୍ୟମାନେ ବଚନ କ୍ଷେତ୍ରରେ ଜଣେ ଶ୍ରୋତା ନିହିତ ଥିବା ବିଷୟ ଅନୁଧ୍ୟାନ କଲାବେଳେ ଏହି ବିଷୟରେ ପ୍ରାଧାନ୍ୟ ଅର୍ପଣ କରିବାକୁ ଭୁଲି ନାହାନ୍ତି । ଉଦାହରଣ ସ୍ୱରୂପ, ଡ଼ିଟ୍ରିକ୍‌ଙ୍କ ୧୯୦୦ ଖ୍ରୀଷ୍ଟାବ୍ଦର ରଚନା ଏଠାରେ ଉଲ୍ଲେଖ ଯୋଗ୍ୟ । ଏହି ବିଷୟକ ଗବେଷଣା ଓ ଅଧ୍ୟାପନା ନିମନ୍ତେ ଯେଉଁ ଅଳ୍ପ କେତେକ ସଙ୍କେତ ପଦର ସୃଷ୍ଟି କରାଯାଇଥିଲା, ତନ୍ମଧ୍ୟରୁ ଗୋଟିକର ଅଧିକାରୀ ଥିଲେ ଡ଼ିଟ୍ରିକ୍ । ସେ ଲେଖିଛନ୍ତି, "ଭାଷାମୂଳକ ବିଜ୍ଞାନ ନିମନ୍ତେ ଏ ବିଷୟଟି ମୌଳିକ ଯେ ଭାଷା କେବଳ ଏକ ଅଭିବ୍ୟକ୍ତ ବ୍ୟାପାର ନୁହେଁ; ଏହା ଏକ ଅନୁଭୂତ ବ୍ୟାପାର ମଧ୍ୟ । ଭାବ ବିନିମୟ ହେଉଛି ଏହାର ମୂଳପିଣ୍ଡ; ଏ ବିଷୟକୁ ଭାଷାର ସଂଜ୍ଞା ଦେବା କାଳରେ ଉପେକ୍ଷା କରିଯିବା ଆଦୌ ଉଚିତ ନୁହେଁ ।" ଏତଦନୁଯାୟୀ, "ଅନ୍ତତଃ ଜଣେ ଅନ୍ୟ ବ୍ୟକ୍ତି ବ୍ୟାଖ୍ୟାର ପ୍ରୟାସ କରି ପାରୁଥିବା ପର୍ଯ୍ୟନ୍ତ" (୧) ଏହି ଶବ୍ଦଗୁଡ଼ିକୁ ସେ ନିଜେ ଦେଇଥିବା ଭାଷାର ସଂଜ୍ଞାରେ ଅନ୍ତର୍ଭୁକ୍ତ କରିଛନ୍ତି । ଗୋଟିଏ ବିଜ୍ଞାନ ପ୍ରତି ଏ ପ୍ରକାର ଶବ୍ଦମାନଙ୍କ ସଂଯୋଗର ଅବଦାନ କଣ, ସେ ବିଷୟରେ ସନ୍ଦେହର ଅବକାଶ ରହିଛି । କିନ୍ତୁ ଏକଥା ନିଶ୍ଚିତ ଯେ ଫନ ହମବୋଲ୍‌ଟ ନିମ୍ନୋକ୍ତ ଉକ୍ତି ଦେବାବେଳେ ଏ ଦିଗରେ ଅଯଥା ଅଧିକ ଅଗ୍ରସର ହୋଇ ଯାଇଛନ୍ତି । ତାଙ୍କର ଉକ୍ତିଟି ହେଉଛି (୨) "ମନୁଷ୍ୟ ଅନ୍ୟମାନଙ୍କ ଠାରେ ନିଜ ବ୍ୟବହୃତ ଶବ୍ଦଗୁଡ଼ିକର ବୋଧଗମ୍ୟତାର ଯେତେବେଳେ ପ୍ରୟୋଗାତ୍ମକ ପରୀକ୍ଷା କରିନିଏ, କେବଳ ସେତିକି ବେଳେ ହିଁ ସେ ନିଜକୁ ବୁଝିପାରେ । ଭାଷାର ଉତ୍ପତ୍ତି ଓ ଅଭିବୃଦ୍ଧିରେ ଷ୍ଟାଇନ୍‌ଥଲ୍ ଯେପରି ଭାବେ

---

(୧) O. Dittrich, Die Probleme der Sprachpsychologie ପୃ ୧୧—୧୨ ।

(୨) Sprachphilosophische Werke, Steinthal ଙ୍କ ଦ୍ୱାରା ସଂପାଦିତ ( ୧୮୮୪ ), ପୃ ୨୮୧ ।

ପ୍ରାଧାନ୍ୟ ଦେଇଛନ୍ତି, ତାହା ମଧ୍ୟ ସୁପ୍ରସିଦ୍ଧ (୧) । ପୁଣି ଓ ସପର ମଧ୍ୟ ବଚନ କ୍ରିୟାର ଏକ ମାନକ ଆଲୋଚନା ଦେଇଛନ୍ତି । ଆମର ପ୍ରଥମ ପରିଚ୍ଛେଦରେ ଆମେ ଦେଖିଛୁ ଯେ ତାଙ୍କର ଏହି ଆଲୋଚନା ଅନ୍ୟାନ୍ୟ ବିଷୟର ବିବେଚନା ଦୃଷ୍ଟିରୁ ସନ୍ତୋଷଜନକ ନୁହେଁ । ସେ ଏ ଦିଗରେ ଏତେଦୂର ଆଗେଇ ଯାଇଛନ୍ତି ଯେ 'ଭାଷା ପରିଗମନ'କୁ ପୂର୍ଣ୍ଣତା ଦେବାପାଇଁ ବକ୍ତା ପ୍ରତି ଧ୍ୟାନ ଦେଉଥିବା ଶ୍ରୋତାର ଚରିମାନ ଅଙ୍କନ କରିଛନ୍ତି (୨) । ମାର୍ଟିନାକ୍ ସଙ୍କଳ୍ପାତ୍ମକ ସଙ୍କେତମାନଙ୍କ ନିମନ୍ତେ ଏକ ଅନୁରୂପ ପରିଗାମୀ ବୃତ୍ତିକୁ ଶ୍ରୋତା କର୍ତ୍ତୃକ ଅଭିଳାଷର ପରିପୂରଣ ଦ୍ୱାରା ପ୍ରତିକ୍ରିୟା ମାଧ୍ୟମରେ ପୂର୍ଣ୍ଣତା ଦେଇଛନ୍ତି (୩) । ବଲ୍‌ଡ ୱିଇନ୍ ଯାହାକୁ "ବ୍ୟାଖ୍ୟାସ୍ୱରୂପ ବିଧେୟ ଆରୋପ କ୍ରିୟା" ଓ "ପ୍ରସ୍ତାବ ସ୍ୱରୂପ ବିଧେୟ ଆରୋପ କ୍ରିୟା" ବୋଲି ଅଭିହିତ କରିଛନ୍ତି, ତହିଁରେ ବକ୍ତା ଓ ଶ୍ରୋତାର ସମ୍ବନ୍ଧମାନଙ୍କ ବର୍ଣ୍ଣନାରେ ଏବଂ ଭାବବିନିମୟ କ୍ଷେତ୍ରରେ ନିଜସ୍ୱ କାର୍ଯ୍ୟ ଦ୍ୱାରା ଭାଷା କିପରି ଭାବେ ପ୍ରଭାବିତ ହୁଏ, ତାହାର ବର୍ଣ୍ଣନାରେ ସେ ତାଙ୍କ ଗ୍ରନ୍ଥ, 'ଥଟ୍ ଆଣ୍ଡ ଥିଙ୍ଗ୍‌ସ' [ ଚିନ୍ତା ଓ ବସ୍ତୁ ] ର ୨ୟ ଖଣ୍ଡରେ ସବୁଠାରୁ ଅଧିକ ପୃଷ୍ଠା ବିନିଯୋଗ କରିଛନ୍ତି । (୪)

ଭାଷାର ଯେ ଅନେକ କାର୍ଯ୍ୟ ରହିଛି—ଏହି ବିଷୟର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ବ୍ୟାବହାରିକ ସ୍ୱୀକୃତି ପ୍ରଚଳିତ ବୈୟାକରଣିକ ପଦ୍ଧତି ବିରୁଦ୍ଧରେ ବୃନଟଙ୍କ ବଳିଷ୍ଠ ଆକ୍ରମଣରେ ଦେଖିବାକୁ ମିଳିବ । (୧) ୧୯୦୩ ମସିହା ଆଗରୁ ମଧ୍ୟ ଫରାସୀ ପଣ୍ଡିତ-ଚୂଡ଼ାମଣି ବୃନଟଙ୍କ ହୃଦ୍‌ବୋଧ ହୋଇ ସାରିଥିଲା ଯେ ଶିକ୍ଷା ନିମନ୍ତେ ପ୍ରସ୍ତୁତିର ପଦ୍ଧତିରୂପେ ହେଉ ବା ବାସ୍ତବ ଶିକ୍ଷାଦାନର ଅଙ୍ଗରୂପେ ହେଉ, ତଥାକଥିତ 'ବଚନର ଅଂଶାବଳୀ' [ବିଶେଷ୍ୟ—ବିଶେଷଣାଦି ରୂପେ ପଦ ବିଭାଗ]ର ପରିହାର କରିବାର ଆବଶ୍ୟକତା ରହିଛି । ୧୯୦୮ ମସିହାରେ, ସର୍‌ବନ୍‌ର ଅଧ୍ୟାପକ ଥିଲାବେଳେ, ସେ ଏହି ଦୃଢ ବିଶ୍ୱାସକୁ ସ୍ପଷ୍ଟ ଓ ଦୃଢ଼ଭାବେ ପ୍ରକାଶ କରିଥିଲେ । ପନ୍ଦର ବର୍ଷକାଳ ସେ ଏହି

(୧) Abriss der Sprachwissenshaft, ୧ମ ଖଣ୍ଡ ଦ୍ୱିତୀୟ ସଂସ୍କରଣ ( ୮୮୧ ), ପୃ ୩୭୪ ।

(୨) କଥିତ ଗ୍ରନ୍ଥ, Cours de Linguistique Generale ( ୧୯୧୬ ), ପୃ ୨୮ ।

(୩) କଥିତ ଗ୍ରନ୍ଥ, Psychologische Untersuchungen Zur Bedeutungslehre ( ୧୯୦୧ ), ପୃ ୭୫ ।

(୪) ୨ୟ ଖଣ୍ଡ, ପୃ ୧୫୨ ।

ବିବାଦାସ୍ପଦ ବିଷୟ ଉପରେ କାର୍ଯ୍ୟକରି ତାହାକୁ ଦଶଥର ପୁନଃ ପୁନଃ ପରୀକ୍ଷା କରିଥିଲେ । "ପ୍ରତ୍ୟେକ ପୁନରାଲୋଚନା ପରେ ମୁଁ ପୁଣି-ଠିକ୍ ସେହି ସିଦ୍ଧାନ୍ତକୁ ହିଁ ପ୍ରତ୍ୟାବର୍ତ୍ତିତ କରୁଥିଲି—ଯେ ପର୍ଯ୍ୟନ୍ତ ବିଶେଷ୍ୟ ବିଶେଷଣାଦି ପଦ ବିଭାଗ ସଂରକ୍ଷିତ ରହିଥିବ, ସେ ପର୍ଯ୍ୟନ୍ତ ପୁରାତନ ଯୋଜନାର କୌଣସି ନବୀକରଣ, ଭାଷାଗତ ଘଟଣାବଳୀର କୌଣସି ନୂତନ ଶ୍ରେଣୀବିଭକ୍ତିକରଣ ସନ୍ତୋଷଜନକ ହେବ ନାହିଁ । ଭାଷା ଅଧ୍ୟୟନ ପଦ୍ଧତିକୁ ସଂକେତ ଉପରେ ନିର୍ଭରଶୀଳ ହେବାକୁ ଆଉ ନଦେଇ, ପ୍ରତ୍ୟୟ ଉପରେ ନିର୍ଭରଶୀଳ କରାଇବା ନିମନ୍ତେ ଉପାୟ ଉଦ୍ଭାବନ କରିବାକୁ ଆମକୁ ସଂକଳ୍ପବଦ୍ଧ ହେବାକୁ ପଡ଼ିବ ।" ଭାଷାର ଏହି ବିସ୍ମୟମୂଳକ ସମାଧାନ ପନ୍ଥା ପଛରେ ଯେ ବଚନ ପରିସ୍ଥିତିର ଏକ ବିଶୁଦ୍ଧ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ରହିଛି, ଏ ବିଷୟରେ ଅଧ୍ୟାପକ ବୃନଟ ସଂପୂର୍ଣ୍ଣ ସଚେତନ ଥିଲେ । ଏଥିରେ ସେ ଅଧିକାଂଶ ଭାଷାବିଦ୍‌ଙ୍କଠାରୁ ଭିନ୍ନ । ଲକ୍ଷ୍ୟ କରିବା ଚିତ୍ତାକର୍ଷକ ହେବ ଯେ ଫରାସୀ ଭାଷାର ବୃଦ୍ଧି ପ୍ରୟୋଗମାନଙ୍କ ତାଙ୍କର ନିଃଶେଷୀ ବିବରଣୀ ଆମର ଉପର୍ଯ୍ୟୁକ୍ତ ପଞ୍ଚବିଭାଗ ବିଶିଷ୍ଟ ବିଭାଜନ ସହିତ ସମଞ୍ଜସ ।

ଏହି ବାଧାସଂକୀର୍ତ୍ତକ ଉପକାରଣ ମାନଙ୍କ ଦ୍ୱାରା ପ୍ରଭାବିତ ହେଉଥିଲେ ସୁଦ୍ଧା ନିର୍ଦ୍ଦେଶ ସହିତ ପ୍ରତୀକର ସମ୍ବନ୍ଧକୁ ଏବେ ଆମେ ଅଧିକ ଯଥାଯଥ ଭାବେ ବ୍ୟକ୍ତ କରିପାରୁ । ଏବେ ଆମେ ଦେଖିପାରିବା ଯେ ଗୋଟିଏ ପ୍ରତୀକର ଆକାର ପ୍ରତି ପ୍ରାସଙ୍ଗିକ ଏକାଧିକ ପଦମାନଙ୍କ ମଧ୍ୟରୁ କେବଳ ଗୋଟିଏ ପଦ ହିଁ ସେହି ପ୍ରତୀକର ନିର୍ଦ୍ଦେଶ । ଅଧିକାଂଶ କ୍ଷେତ୍ରରେ ଏହା ମୁଖ୍ୟ ଉପାଦାନ ସୁଦ୍ଧା ହୋଇ ନଥାଏ, ଏବଂ ଆମେ ଅନୁସନ୍ଧାନ କରୁଥିବା ବଚନ ଯେତେ ଅଧିକ ଆଦିମ, ଏହା ସେତେ ନ୍ୟୂନ ଗୁରୁତ୍ୱପୂର୍ଣ୍ଣ ପରି ମନେ ହୁଏ । ତଥାପି ଶବ୍ଦମାନଙ୍କ ଏହି ନିର୍ଧାର୍ଯ୍ୟରୂପେ ପ୍ରତୀକାତ୍ମକ ହୋଇଥିବା କାର୍ଯ୍ୟ ଅନ୍ୟ ଯେ କୌଣସି କାର୍ଯ୍ୟ ଅପେକ୍ଷା ସହଜରେ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଯାଏ । ଏହାର କାରଣ ହେଉଛି-ଯେ ଅବ୍ୟବହିତରୂପେ ଉପସ୍ଥିତ ନଥିବା ବସ୍ତୁବର୍ଗ, ଅର୍ଥାତ୍ ଯେଉଁ ବସ୍ତୁଗୁଡ଼ିକ ଆମର ବର୍ତ୍ତମାନ ଅନୁଭୂତି ସହିତ ଅତ୍ୟନ୍ତ ନିବିଡ଼ ତଥା ସରଳ ପ୍ରସଙ୍ଗମାନଙ୍କରେ ସମନ୍ୱିତ ନୁହେଁ, ସେହି ପ୍ରକାର ବସ୍ତୁଗୁଡ଼ିକ ସହିତ ଆମର ସମସ୍ତ ସୂକ୍ଷ୍ମ ବ୍ୟବହାର ନିମନ୍ତେ ଏବଂ ଆମର ଅଧିକ ଜଟିଳ ଓ ମାର୍ଜିତ ସମସ୍ତ ନିର୍ଦ୍ଦେଶ ନିମନ୍ତେ ଆମେ ସହାୟକ ଏବଂ ପାର୍ଥକ୍ୟ ନିର୍ଣ୍ଣାୟକ ଚିହ୍ନମାନ ଆବଶ୍ୟକ କରୁ । ସୁତରାଂ ସାଧାରଣ ବ୍ୟବହାର ଭିତରେ ଶବ୍ଦମାନଙ୍କ କାର୍ଯ୍ୟାବଳୀର ଏକ ବିବରଣୀ ନିର୍ଧାର୍ଯ୍ୟରୂପେ ପ୍ରତୀକା-ନ୍ୱିତକରଣ ସମ୍ପୃକ୍ତ ବିଷୟରୁ ଆରବ୍ଧ ହେବା ସ୍ୱାଭାବିକ ।

ପ୍ରତୀକଗୁଡ଼ିକୁ ଯେଉଁ ନିର୍ଦ୍ଦେଶର ସହବର୍ତ୍ତୀ ହେବାକୁ ଥାଏ, ତାହାର ବିବେଚନାରୁ ସାଧାରଣ କ୍ଷେତ୍ରରେ, ଗୋଟିଏ ଆକାର ନୁହେଁ, ବରଂ ବିବିଧ ଆକାରର ପ୍ରତୀକ ପ୍ରୟୋଗର ସମ୍ଭାବନା ଥାଏ । ମନେକର, ଆମ ନିର୍ଦ୍ଦେଶର ସହବର୍ତ୍ତୀ ହୋଇ କ କିମ୍ବା

ଖ କମ୍ବା ଗ କମ୍ବା ଘ ରହିପାରେ । ଏଗୁଡ଼ିକ ହେଉଛି ଭିନ୍ନ ଭିନ୍ନ ଆକାର ବା ଗଠନ-ବିଶିଷ୍ଟ ପ୍ରତୀକ । ଯେଉଁ ପ୍ରସଙ୍ଗ ଉପରେ ନିର୍ଦ୍ଦେଶଟି ନିର୍ଭରଶୀଳ, ତାହାର ଏକ ସମ୍ଭାବିତ ଅଂଶରୂପେ ଏହି ପ୍ରତୀକଗୁଡ଼ିକ ମଧ୍ୟରୁ ଯେ କୌଣସି ଗୋଟିଏ ରହିପାରେ । ଏହାର ତାତ୍ପର୍ଯ୍ୟ ହେଉଛି ଯେ ପ୍ରସଙ୍ଗଟିରେ ଏହାର ଅନ୍ତର୍ଭୁକ୍ତି ଦ୍ୱାରା ନିର୍ଦ୍ଦେଶରେ କୌଣସି ପରିବର୍ତ୍ତନ ଘଟିବ ନାହିଁ । ସମ୍ଭାବିତ ପ୍ରତୀକ ଆକାରମାନଙ୍କ ଏକ ଶ୍ରେଣୀ ରହିଥିବାରୁ ହିଁ ପ୍ରତୀକଟି ଏତେଗୁଡ଼ିଏ ଭିନ୍ନ ଭିନ୍ନ କାର୍ଯ୍ୟ ସମ୍ପାଦନ କରିବାକୁ ସମର୍ଥ ହୁଏ । ଏହି କାରଣରୁ ହିଁ ଏହା ଏତେଗୁଡ଼ିକ ଭିନ୍ନ ଭିନ୍ନ, ଯଦିଓ ସମସାମୟିକ, ପରିସ୍ଥିତିର ଏକ ସଙ୍କେତ ହୋଇଥାଏ ।

ମନେକର, ନିର୍ଦ୍ଦେଶ କରିବା ବ୍ୟତୀତ ବକ୍ତା ତାହାର ଶ୍ରୋତୃମଣ୍ଡଳୀ ପ୍ରତି କୌଣସି ଅଭିବୃତ୍ତି, ଯଥା—ସୌହାର୍ଦ୍ଦ୍ୟ, ଏବେ ଗ୍ରହଣ କରୁଛି । ତେବେ ଏହି ପ୍ରତୀକ ଆକାରଗୁଡ଼ିକ, ଅର୍ଥାତ୍ କ, ଖ, ଗ, ଘ ମଧ୍ୟରେ, ହୁଏତ ଗୋଟିଏ, ମନେକର ଘ, ହେଉଛି ଏହି ଅଭିବୃତ୍ତିର ବିଶିଷ୍ଟ ପ୍ରକୃତି ଦୃଷ୍ଟିରୁ, ଅନ୍ୟମାନଙ୍କ ଅପେକ୍ଷା ଅଧିକ ଉପଯୁକ୍ତ । ଏହା ଏହି ଦୃଷ୍ଟିରୁ ଯଥୋପଯୁକ୍ତ ଯେ ଏହା ଏହି ଅଭିବୃତ୍ତି ପ୍ରସଙ୍ଗର ଏକ ସମ୍ଭାବିତ ଅଂଶ, ଅର୍ଥାତ୍ ଏହା ଏପରି ଏକ ଶ୍ରେଣୀର ପ୍ରତୀକମାନଙ୍କ ମଧ୍ୟରୁ ଗୋଟିଏ, ଯାହାର ବ୍ୟବହାର ଦ୍ୱାରା ଅଭିବୃତ୍ତିରେ କୌଣସି ପରିବର୍ତ୍ତନ ଘଟିବ ନାହିଁ । ଯଦି କେବଳ ଏତିକି ନିହିତ ହୋଇଥାଏ, ତେବେ ଏଠାରେ ଘ ବ୍ୟବହୃତ ହେବ; କାରଣ ଏଠାରେ ଧରିନିଆଯାଉଛି ଯେ ଅନ୍ୟ ଯେ କୌଣସି ଉପଯୁକ୍ତ ମନ୍ତବ୍ୟ ଦେବା ଦ୍ୱାରା ନିର୍ଦ୍ଦେଶରେ ପରିବର୍ତ୍ତନ ଘଟିବ ।

ଏହାପରେ ମନେ କରାଯାଉ ଯେ ନିଜର ନିର୍ଦ୍ଦେଶ୍ୟ ପ୍ରତି ବକ୍ତାର ଏକ ବିରୁଚିଭାବ ରହିଛି । ତେବେ ଅନୁରୂପଭାବେ ଏହା ପ୍ରତୀକର ଆହୁରି ପରିବର୍ତ୍ତନ ଘଟାଇବ । ସେହିପରିଭାବେ, ପୁଣି ନିଜ ମନ୍ତବ୍ୟର ପରିଣତି ପ୍ରତି ବକ୍ତାର ଆଶା, ଅଭିଳାଷ ଓ ଅଭିପ୍ରାୟ ପ୍ରତୀକରେ ଅନ୍ୟାନ୍ୟ ପରିବର୍ତ୍ତନ ଘଟାଇବ । ଅନେକ କ୍ଷେତ୍ରରେ, ସେହି ଏକ ପରିବର୍ତ୍ତନ ଦ୍ୱାରା ଉପର୍ଯ୍ୟୁକ୍ତ ଉଭୟ ଅବସ୍ଥାର ଆବଶ୍ୟକତା ପୂରଣ ହୋଇପାରିବ । କିନ୍ତୁ ବେଳେ ବେଳେ ଏହା ସମ୍ଭବପର ହୁଏ ନାହିଁ । ଉଦାହରଣ ସ୍ୱରୂପ, ଯେତେବେଳେ କୌଣସି କାରଣରୁ ବକ୍ତାର ନିଜ ଅଭିବୃତ୍ତି ଏବଂ ଯେଉଁ ଅଭିବୃତ୍ତିର ପରିବର୍ଦ୍ଧନ ସେ କାମନା କରୁଥାଏ, ଏ ଦୁଇଟି ପରସ୍ପର ଅସମଞ୍ଜସ ହୋଇଥାଏ, ସେତେବେଳେ ସ୍ୱାଭାବିକ ଶବ୍ଦ-ଅଭିବୃତ୍ତି ପ୍ରସଙ୍ଗଗୁଡ଼ିକ କାର୍ଯ୍ୟକାରୀ ନ ହେବା ସୁନିଶ୍ଚିତ । ଏହି କ୍ଷେତ୍ରରେ ସୁବିବେଚନା ସହକାରେ ପ୍ରତୀକାନ୍ୱିତ କରିଣ କେତେକ ଲୋକଙ୍କ ପକ୍ଷରେ ଅତ୍ୟନ୍ତ କଷ୍ଟସାଧ୍ୟ ହୋଇଯାଏ । ଅନୁରୂପଭାବେ, ନିର୍ଦ୍ଦେଶ ସମ୍ବନ୍ଧୀୟ ବକ୍ତାର ନିଜ

ସ୍ପଷ୍ଟ ବା ଅସ୍ପଷ୍ଟ ଧାରଣାକୁ ଅନେକଥର ପ୍ରଚ୍ଛନ୍ନ ରଖିବାର ଆବଶ୍ୟକତା ପଡ଼େ, ଯାହା ଏକ ସମ୍ମିଶ୍ରଣ ବିଧାନ କରି ଉପସ୍ଥାପିତ କରିବାକୁ ହୁଏ । ଆମେ ଆଗରୁ ମନ୍ତବ୍ୟ ଦେଇଛୁ ଯେ ବକ୍ତାର ଦୃଢ଼ତା ବା ଅଦୃଢ଼ତା ଅର୍ଥାତ୍ ତାହାର ସନ୍ଦେହ ବା ବିଶ୍ୱାସ-ମାତ୍ରାକୁ, ନିର୍ଦ୍ଦେଶ୍ୟ ପ୍ରତି ସାଧାରଣ ଅନୁଭୂତିମାନଙ୍କ ସମନ୍ତ୍ରସ୍ଥ ବୋଲି ଗ୍ରହଣ କରିବା ସର୍ବୋତ୍ତମ ।

ଏଥିରୁ ଦେଖାଯିବ ଯେ ଯେଉଁ ଲେଖା ବା କଥାଗୁଡ଼ିକ ମିଶ୍ରିତ ବା ଆଲଙ୍କାରିକ ଧରଣର, ଅର୍ଥାତ୍ ଯାହା ଶବ୍ଦମାନଙ୍କ ବିଶୁଦ୍ଧ ବା ବୈଜ୍ଞାନିକ ବା ନିଚ୍ଛକ ପ୍ରତୀକାତ୍ମକ ବ୍ୟବହାରମୂଳକ ନୁହେଁ; ତନ୍ମଧ୍ୟରୁ ଅଧିକାଂଶ ଏପରି ଏକ ଆକାର ଧାରଣ କରିବ, ଯାହା ହେଉଛି ପାରସ୍ପରିକ ମିଶ୍ରଣର ପରିଣତି । କଦାଚିତ୍ ହୁଏତ ଏକ ପ୍ରତୀକାନ୍ୱିତ-କରଣ ମିଳିବ, ଯାହା ତାହାର ପ୍ରତୀକାତ୍ମକ ଶୁଦ୍ଧତାର କୌଣସି କ୍ଷତି ନ ଘଟାଇ (ପାଠକମାନଙ୍କ ପ୍ରତି ଲେଖକଙ୍କ ଅଭିବୃତ୍ତି କ୍ରମରେ) ଯଥୋପଯୁକ୍ତ, (ତାଙ୍କର ନିର୍ଦ୍ଦେଶ୍ୟ ସହିତ) ଯଥାଯଥ, (ଅଭିଳଷିତ ପରିଣାମମାନ ଉଦ୍ଭବ କରିବାର ସମ୍ଭାବନା ଦୃଷ୍ଟିରୁ) ସୁବିବେଚିତ, ଏବଂ (ତାଙ୍କର ନିର୍ଦ୍ଦେଶ ଗୁଡ଼ିକର ଦୃଢ଼ତା ବା ଅଦୃଢ଼ତାର ସୂଚକରୂପେ) ବ୍ୟକ୍ତିନିଷ୍ଠ । ଏତେ ସଂଖ୍ୟକ କାର୍ଯ୍ୟ ଏକସଙ୍ଗେ ତୁଲାଇବାକୁ ବିଶୁଦ୍ଧ ପ୍ରତୀକ ସମର୍ଥ ହେବା ବିରୁଦ୍ଧରେ ଅତି ବଳିଷ୍ଠ ବାଧା, ବ୍ୟାଘାତମାନ ରହିଥାଏ । ପରିଣାମତଃ, ଅଧିକାଂଶ ବଚନରେ ଏହି କାର୍ଯ୍ୟମାନଙ୍କ ମଧ୍ୟରୁ କେତେକକୁ ବାଦ ଦେବାକୁ ପଡ଼େ । 'ସୁପ୍ରଭାତ' ଏବଂ 'ଶୁଭବିଦାୟ'ରେ ନିର୍ଦ୍ଦେଶାତ୍ମକ କ୍ରିୟା ଲୋପ ପାଇଛି, ଅର୍ଥାତ୍ ଏହି ଶାବ୍ଦିକ ସଙ୍କେତମାନ ପ୍ରତୀକ ନୁହେଁ । ଏଗୁଡ଼ିକ ଯଥୋପଯୁକ୍ତ ହେବା ଯଥେଷ୍ଟ । ସେହିପରି ବିସ୍ମୟ-ହର୍ଷ-ବିଷାଦାଦି ସୂଚକ ଅଭିବ୍ୟକ୍ତି ଏବଂ ଗାଳି ପକାଇବା ପ୍ରତୀକ ନୁହେଁ; ଏଗୁଡ଼ିକ କେବଳ ଯଥାଯଥ ହେବା ସର୍ତ୍ତ ପୂରଣ କଲେ ହେଲା । ଯଥାଯଥ ହେବା ହେଉଛି ସୂକ୍ଷ୍ମତାର ନିମ୍ନସ୍ତରରେ ଥିବା ଅତି ସହଜ ସର୍ତ୍ତମାନଙ୍କ ମଧ୍ୟରୁ ଗୋଟିଏ ଏବଂ ଏହି ସ୍ତରରେ ହିଁ ଏହି ସଂବେଗାତ୍ମକ ଅଭିବ୍ୟକ୍ତିଗୁଡ଼ିକର ଅଭିବୃଦ୍ଧି ଘଟିଥାଏ । ଏଠାରେ କେବଳ ଏପରି ପ୍ରସଙ୍ଗମାନ ଆବଶ୍ୟକ, ଯାହା ମନେ ହେବ ଯେ ମନସ୍ତତ୍ତ୍ୱରେ ସେଗୁଡ଼ିକ ହେଉଛି ଯଥାସମ୍ଭବ ସରଳତମ ପର୍ଯ୍ୟାୟବିଶିଷ୍ଟ । ଦାନ୍ତକଥା— ଓଃ, ଆଃ କରିବା ପ୍ରସଙ୍ଗ ଯେପରି ସରଳ, ଏହି ପ୍ରସଙ୍ଗମାନ ତଦ୍ରୂପ । ଆଦେଶ ବା ଆଜ୍ଞା ଯେଉଁ ଦୁଇଟି ସର୍ତ୍ତର ପୂରଣ କରିବା ଆବଶ୍ୟକ, ତାହା ହେଉଛି ନିର୍ଦ୍ଦେଶ ଓ ଉଦ୍ଦେଶ୍ୟ । ଯଥୋପଯୁକ୍ତ ହେବା ଏବଂ ଯଥାଯଥ ହେବା ଯେପରିଭାବେ ଉପରେ ବ୍ୟବହୃତ ହୋଇଛି, ସେହି ଅର୍ଥରେ କୌଣସିଟି ଆଦେଶ ବା ଆଜ୍ଞା କ୍ଷେତ୍ରରେ ପୂରଣ ନ ହୋଇପାରେ । ବାସ୍ତବିକ ଏହିପରି ଅନେକ କ୍ଷେତ୍ରରେ ଏ ଦୁଇଟିର ପୂରଣ ନହେବା ଅବଶ୍ୟମ୍ଭାବୀ; ଅନେକ ସାମରିକ ଆଦେଶ ଏହାର ଦୃଷ୍ଟାନ୍ତ । ପକ୍ଷାନ୍ତରେ, ଉଦ୍ଧୃ

ପ୍ରଦର୍ଶନ ସହଜରେ ନିର୍ଦ୍ଦେଶ କରିବାକୁ ପରିହାର କରିପାରେ, ଅର୍ଥାତ୍ ଏହା ଅର୍ଥହୀନ ହୋଇପାରେ; ଏବଂ କେବଳ ଅଭିପ୍ରେତ ଉଦ୍ଦେଶ୍ୟଦ୍ୱାରା ହିଁ ଏହା ପରିଗୃହୀତ ହୋଇ-ପାରେ । ପ୍ରଶ୍ନ ଓ ଅନୁରୋଧ ଗୁଡ଼ିକ ଉଲ୍ଲିଖିତ ବିଷୟରେ ଆଦେଶ ସଦୃଶ । ଯେଉଁ ଉପାୟ ଅବଲମ୍ବନ କରି ଅଭିଳଷିତ ପରିଣତି ଲାଭ କରିବାର ଚେଷ୍ଟା କରାଯାଏ, କେବଳ ସେହି ବିଷୟରେ ହିଁ ଏଗୁଡ଼ିକ ଆଦେଶଠାରୁ ଭିନ୍ନ ।

ଭାଷାର କାର୍ଯ୍ୟଗୁଡ଼ିକ ମଧ୍ୟରୁ ଏକ ବା ତତୋଽଧିକ କାର୍ଯ୍ୟକୁ ଉପେକ୍ଷା କରି-ଯାଉଥିବା ଏହି ଦୃଷ୍ଟାନ୍ତଗୁଡ଼ିକ ଏ ପ୍ରକାର ବିଭିନ୍ନତାର ସୁପ୍ରସିଦ୍ଧ ଓ ସର୍ବାଧିକ ପରିମାଣରେ ଆଲୋଚିତ ବିଷୟକୁ ସ୍ୱଭାବତଃ ବାଦ କରିଦିଅନ୍ତି । ତାହା ହେଉଛି ଗଦ୍ୟମୂଳକ ଭାଷା ବ୍ୟବହାର ମଧ୍ୟରେ ଥିବା ପାର୍ଥକ୍ୟ । ଏହି ପାର୍ଥକ୍ୟର ଏହିପରିଭାବେ ବର୍ଣ୍ଣନା ଦେବାଦ୍ୱାରା ତାହା ସନ୍ତୋଷଜନକଭାବେ ପ୍ରତୀକାନୁଗ ହେଉ ନାହିଁ । ସର୍ବାଧିକ ସାଧାରଣ ଓ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଉଦ୍ଦେଶ୍ୟରେ ଯଥୋପଯୁକ୍ତ ପାଠକମାନଙ୍କ-ଠାରେ କବିତାଦ୍ୱାରା ସଞ୍ଜାତ ମାନସିକ ଅବସ୍ଥା ବା ଅବସ୍ଥାମାନଙ୍କ ସହିତ ସମ୍ବନ୍ଧ ମାଧ୍ୟମରେ ପଦ୍ୟର ସର୍ବୋତ୍ତମ ସଂଜ୍ଞା ଦିଆ ଯାଇଥାଏ । ସମୁଚିତ ଶାବ୍ଦିକ ସାଧନ ସହିତ ଏହାର କୌଣସି ସମ୍ପର୍କ ନଥାଏ । ତେଣୁ ଗଦ୍ୟ ଓ ପଦ୍ୟ ମଧ୍ୟରେ ବିରୋଧିତାର ପ୍ରତିବଦଳରେ ଭାଷାର ପ୍ରତୀକାତ୍ମକ ଓ ସମ୍ବେଗାତ୍ମକ ବ୍ୟବହାରର ବିରୋଧିତା କଥା କୁହାଯାଇ ପାରେ । ନିଚ୍ଛକ ପ୍ରତୀକାତ୍ମକ ଭାଷାରେ ଶବ୍ଦଗୁଡ଼ିକର ସମ୍ବେଗାତ୍ମକ ପ୍ରଭାବ ସେଗୁଡ଼ିକର ପ୍ରୟୋଗ ପ୍ରତି ଅବାନ୍ତର । ଏଣୁ ପ୍ରଭାବ ସାକ୍ଷାତ୍ ହେଉ ବା ପରୋକ୍ଷ ହେଉ, ସେଥିରେ କିଛି ଯାଏ ଆସେ ନାହିଁ । ଅନ୍ୟ ପକ୍ଷରେ, ଯେଉଁ ଉପାୟମାନଙ୍କ ଦ୍ୱାରା ଅଭିବୃତ୍ତି, ଭାବଦଶା, ଅଭିଳାଷ, ଅନୁଭବ, ସମ୍ବେଗ ଇତ୍ୟାଦି ଶ୍ରୋତୃମଣ୍ଡଳୀ-ଠାରେ ବାଚନିକ ପ୍ରଣାଳୀରେ ଉଦ୍ରେକ କରାଯାଇପାରେ, ସେହି ସମସ୍ତ ଉପାୟ ଉଦ୍ଦୀପକ ଭାଷାରେ ସଂପୃକ୍ତ । ଭାଷାର ଏହି ଦୁଇଟି ବ୍ୟବହାର ମଧ୍ୟରେ ପାର୍ଥକ୍ୟ ରକ୍ଷାର ଗୁରୁତ୍ୱ ସମ୍ବନ୍ଧରେ ଆମେ ଆଗରୁ ଏକ ବିଶେଷ ଆଲୋଚନା କରିସାରିଛୁ । ଯେଉଁ ଉପାୟମାନଙ୍କ ଅବଲମ୍ବନରେ ଉଦ୍ଦୀପକ ଭାଷା ତାହାର ପ୍ରଭାବ ପ୍ରତିଷ୍ଠା କରେ, ତଦ୍‌ବିଷୟକ ଅଧିକ କେତେକ ବିଚାର ଆମେ ଏଠାରେ ସଂଯୋଗ କରିପାରୁ ।

ଶବ୍ଦମାନଙ୍କ ଏହି ଅତିରିକ୍ତ ପ୍ରଭାବଗୁଡ଼ିକର ପୁଙ୍ଖାନୁପୁଙ୍ଖ ଅଧ୍ୟୟନ ଦିଗରେ ବିଶେଷ କିଛି କାର୍ଯ୍ୟ ନକରି ମଧ୍ୟ, ଶିକ୍ଷିତ ବ୍ୟକ୍ତିମାନେ ଅନେକଥର ଏଗୁଡ଼ିକର ବର୍ଣ୍ଣନା ଦେଇଛନ୍ତି । ଉଦାହରଣ ସ୍ୱରୂପ, ଲଫ୍‌କାଡ଼ିଓ ହେର୍ଣ୍ଣ ଲେଖିଛନ୍ତି ଯେ ତାଙ୍କ ପାଇଁ "ଶବ୍ଦ ଗୁଡ଼ିକର ବର୍ଣ୍ଣ, ଆକାର, ଚରିତ୍ର ରହିଛି । ସେଗୁଡ଼ିକର ମୁଖ ରହିଛି, ଭାବଭଙ୍ଗୀ, ଆଚରଣ, ଅଙ୍ଗଭଙ୍ଗୀ ରହିଛି । ସେଗୁଡ଼ିକର ଭାବଦଶା, ସ୍ୱଭାବ, ସ୍ୱାତନ୍ତ୍ର୍ୟ ରହିଛି । ସେଗୁଡ଼ିକର ଆଭା, ସ୍ୱର, ବ୍ୟକ୍ତିତ୍ୱ ରହିଛି । ମୁଁ ଯେତେବେଳେ ମୋର ପ୍ରିୟ ବନ୍ଧୁମାନଙ୍କ

ପାଇଁ ଲେଖେଁ, ସେମାନେ ମୋର ଶବ୍ଦଗୁଡ଼ିକର ରଙ୍ଗ ଦେଖି ପାରିବେ; ପ୍ରସ୍ଫୁଟିତ ଶବ୍ଦାଂଶଗୁଡ଼ିକର ସୁବାସ ଆଘ୍ରାଣ କରି ପାରିବେ; ଶବ୍ଦଗୁଡ଼ିକର ବାମନଭୂତ ସୁଲଭ ସୂକ୍ଷ୍ମ ଖାମଖିଆଲିଭାବ ସେମାନଙ୍କୁ ଚକିତ-ଶଙ୍କିତ କରି ଦେଇପାରିବ । କାରଣ ଶାଶ୍ୱତ ନିୟମରେ ପରଂପରାକ୍ରମେ ଶବ୍ଦମାନଙ୍କ ଦାବୀ ଲୋକଙ୍କଦ୍ୱାରା ସ୍ୱୀକୃତ ହେବ ।"

ଶବ୍ଦ ବା ଶବ୍ଦମାନଙ୍କ ବିନ୍ୟାସ ଗୁଡ଼ିକ ଧ୍ୱନିରୂପେ ସାକ୍ଷାତ୍ ଭାବେ ଏବଂ ଯାହାକୁ ଶିଥିଳଭାବେ 'ସାହଚର୍ଯ୍ୟ' କୁହାଯାଏ, ତାହାର ମାଧ୍ୟମରେ ବହୁ ବିଭିନ୍ନ ପ୍ରକାରରେ ନ୍ୟୂନତର ସାକ୍ଷାତ୍‌ଭାବେ ଅଭିବୃତ୍ତିମାନଙ୍କ ଉଦ୍ରେକ କରିଥାଏ । ଶବ୍ଦମାନଙ୍କ ଧ୍ୱନ୍ୟାତ୍ମକ ଗୁଣରୁ ସାକ୍ଷାତ୍ ଭାବେ ( ଅର୍ଥାତ୍ ଶାରୀରିକ କିମ୍ବା ରୂପେ ) ଲବ୍ଧ ପରିଣତି ସମ୍ଭବତଃ ସ୍ୱଳ୍ପ ଛନ୍ଦ ଓ ଧ୍ୱନିସାମ୍ୟ ଦ୍ୱାରା ଜାତ କମବେଶି ସ୍ପଷ୍ଟ ତଥା ସମ୍ମୋହକ ପ୍ରଭାବ ମଧ୍ୟରେହିଁ କେବଳ ତାହା ଗୁରୁତ୍ୱପୂର୍ଣ୍ଣ ହୋଇଯାଏ । ଏଥିରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ଶବ୍ଦ-ଗୁଡ଼ିକର ବିଲକ୍ଷଣଯୁକ୍ତ ସମ୍ବନ୍ଧମାନଙ୍କରେ ସେଗୁଡ଼ିକର ସ୍ଥିତିର ଅତୀତ ଅନୁଭୂତ ହେତୁରୁ ସେଗୁଡ଼ିକର ସହଚାରୀ ହୋଇ ରହିଥିବା ଅବ୍ୟବହିତ ସଂବେଗ ସମୂହ । ଏଗୁଡ଼ିକୁ ପାଇବା ପାଇଁ ଅତୀତର ସେହି ସମ୍ବନ୍ଧମାନଙ୍କୁ ମନେ ପକାଇବାର କୌଣସି ଆବଶ୍ୟକତା ନ ଥାଏ । ଦ୍ୱିତୀୟତଃ, ଆଉ କେତେକ ପରିଣତି ରହିଛି, ଯାହାକୁ ସାଧାରଣତଃ ସାହଚର୍ଯ୍ୟ ହେତୁକ ସଂବେଗ ବୋଲି ବର୍ଣ୍ଣନା କରାଯାଏ । ଏ ପ୍ରକାର ସଂବେଗମାନ ସମଗ୍ର ପରିସ୍ଥିତି ଗୁଡ଼ିକୁ ମନେ ପକାଇବା ଦ୍ୱାରା ଜାତ ହୁଏ । ଏହି ଆଲୋଚନାରେ ଆମର ଅବଧାନ ଏ ପର୍ଯ୍ୟନ୍ତ କାବ୍ୟିକ ଭାଷାରେହିଁ ସୀମିତ ରହିଛି । କିନ୍ତୁ ଠିକ୍ ଏହି ପାର୍ଥକ୍ୟ ଓ ଠିକ୍ ଏହି କିସ୍ମାତ୍ମକ ବିଭିନ୍ନତା ଅବାଚନିକ ଭାଷା କ୍ଷେତ୍ରରେ ମଧ୍ୟ ଜାତ ହୁଏ । ଆମେ ଗୋଟିଏ ଛବିକୁ ଦେଖିଲାବେଳେ ଦୁଇଟି ଅଭିବୃତ୍ତି ମଧ୍ୟରୁ ଗୋଟିକୁ ଅଥବା ଉଭୟଙ୍କୁ ଆମେ ଗ୍ରହଣ କରିପାରୁଁ । ଗୋଟିଏ କବିତାର ପଠନ କାଳରେ ଯାହା ଘଟେ, ଏହା ତଦ୍ରୂପ । ଛବିଟିକୁ ଏକ ଉଦ୍ଦୀପନରୂପେ ଗ୍ରହଣ କରି, ଆମେ ତାହାର ଅନୁଗତ ରହିପାରୁଁ । ଏତଦ୍ଦ୍ୱାରା ତାହାର ବର୍ଣ୍ଣଗୁଣ ଓ ଆକାର-ଗୁଣ ସଂବେଗାତ୍ମକଭାବେ ଆମ ଉପରେ କାର୍ଯ୍ୟ କରେ । ପକ୍ଷାନ୍ତରେ, ଏକ ଭିନ୍ନ ଅଭିବୃତ୍ତି ନେଇ ଆମେ ତାହାର ଆକାରମାନଙ୍କ ଓ ବର୍ଣ୍ଣମାନଙ୍କ ( ତାହାର ଶବ୍ଦମାନଙ୍କ ) ବ୍ୟାଖ୍ୟା କରିପାରୁଁ । ଏହି ଅଭିବୃତ୍ତି ଦୁଇଟି ମଧ୍ୟରୁ ପ୍ରଥମଟି ଦ୍ୱିତୀୟଟିର ଏକ ଅପରିହାର୍ଯ୍ୟ ପ୍ରାରମ୍ଭିକ ବୃତ୍ତି ନୁହେଁ । ଏହାପରି ମନେ କରିବା ଦ୍ୱାରା ଏ ଦୁଇଟିର ପାର୍ଥକ୍ୟ ସମ୍ବନ୍ଧରେ ଭ୍ରାନ୍ତ ଜାତ ହେବ । ଶ୍ରୀ କ୍ଲାଇବ୍ ବେଲ୍ କହିଛନ୍ତି ଯେ ଛବିଗୁଡ଼ିକ କ୍ଷେତ୍ରରେ ଏହି ଅଭିବୃତ୍ତି ଦ୍ୱୟ ମଧ୍ୟରୁ ପ୍ରଥମଟିକୁ ସମ୍ପୂର୍ଣ୍ଣ ରୂପେ ବାଦ୍ ଦେଇ ଅନେକ ଲୋକ ଦ୍ୱିତୀୟଟିକୁ ଗତ କରିଯିବାରେ ଅଭ୍ୟସ୍ତ । ଏହା ଦର୍ଶାଇବା ଦ୍ୱାରା ସେ ଏକ ଉପାଦେୟ କାର୍ଯ୍ୟ ସମ୍ପାଦନ କରିଛନ୍ତି । ଏହିପରି ଭାବେ ବାଦ୍ ଦେବାଦ୍ୱାରା ଅବଶ୍ୟ ଛବିଟି ତାହାର ମୁଖ୍ୟ

ଅଂଶ ହୁଏଇଥାଏ । ବୃତ୍ତ ପଠନଶୀଳ ବ୍ୟକ୍ତିଙ୍କ ପାଇଁ ଏକ ଅନୁରୂପ ଉପକାର ଅଧ୍ୟାପକ ସେଣ୍ଟସ୍‌ବେରୀଙ୍କ ଦ୍ୱାରା କରାଯାଇଛି ।

କିନ୍ତୁ ଯଦିଓ ଏହି ଅଭିବୃତ୍ତିଦ୍ୱୟ ମଧ୍ୟରୁ ପ୍ରଥମଟି ଅର୍ଥାତ୍ ଗୋଟିଏ କଳାକୃତିକୁ ଉଦ୍ଦୀପନରୂପେ ନେଇ ତଦ୍ଦ୍ୱାରା ପ୍ରଭାବିତ ହେବା ବିଷୟକୁ ପ୍ରୋତ୍ସାହିତ କରିବାର ଆବଶ୍ୟକତା ରହିଛି, ଦ୍ୱିତୀୟଟି ଅର୍ଥାତ୍ ବ୍ୟାଖ୍ୟାମୂଳକ ଅଭିବୃତ୍ତି ମଧ୍ୟ ସମଭାବରେ ଆବଶ୍ୟକ । ଏହି ବିଷୟରେ ସତ୍ୟତାର ଗୋଟିଏ ସ୍ତର ସଂସ୍ଥାପନ ନିମନ୍ତେ ଉଭୟ ଗୋଷ୍ଠୀର ସମୀକ୍ଷକମାନେ ଅଯଥା ଆଗ୍ରହାତିଶଯ୍ୟ ପ୍ରକାଶ କରିଛନ୍ତି । ଛବିଟିକୁ ବା କବିତାଟିକୁ ତାହାର ସଂପୂର୍ଣ୍ଣ ପରିଣାମ ଉଦ୍ଭବ କରିବାକୁ ସୁବିଧା ଦେବା ନିମନ୍ତେ, ବିଶୁଦ୍ଧ ଆକାରଗୁଡ଼ିକ ଆମକୁ ପ୍ରଭାବିତ କରିବାକୁ ଛାଡ଼ି ଦେବାପରେ, ଆମେ ଅଧିକାଂଶ କ୍ଷେତ୍ରରେ ତାହାକୁ ବ୍ୟାଖ୍ୟା କରିବାକୁ ଅଗ୍ରସର ହେବା ଆବଶ୍ୟକ । କିନ୍ତୁ ଏହିପରି କରିବା ଦ୍ୱାରା ଦୁଇଟି ସଂକଟ ରହିଛି, ଯାହାକୁ ବିଚାରବାନ୍ ବ୍ୟକ୍ତି ଏଡ଼ାଇ ଯାଇପାରିବ । ଏଥିରୁ ଗୋଟିଏ ହେଉଛି ବ୍ୟକ୍ତିନିଷ୍ଠ ସହାନୁଭୂତିମୂଳକ ସଂକଟ; ଏ ସମ୍ବନ୍ଧରେ କହିବା ନିଷ୍ପ୍ରୟୋଜନ । ଅପର ସଂକଟଟି ହେଉଛି କୌଣସି ପରିସ୍ଥିତି ପ୍ରତି ଏକ ଅଭିବୃତ୍ତିର ଉଦ୍ଦୀପନକୁ ତାହାର ବୈଜ୍ଞାନିକ ବର୍ଣ୍ଣନା ସହିତ ବ୍ୟାମିଶ୍ରଣ କରି ପକାଇବା । ଭାଷାର ଏହି ଅତ୍ୟନ୍ତ ଭିନ୍ନ ଭିନ୍ନ ବ୍ୟବହାର ଦ୍ୱୟ ମଧ୍ୟରେ ଥିବା ପାର୍ଥକ୍ୟ ଶବ୍ଦମାନଙ୍କ କ୍ଷେତ୍ରରେହିଁ ସର୍ବାଧିକ ସୁସ୍ପଷ୍ଟରୂପେ ପରିଲକ୍ଷିତ ହୁଏ । କିନ୍ତୁ ଆମେ ଯାହା ସବୁ କହୁଛୁ, ସେଗୁଡ଼ିକ କଳା ଓ ଫଟୋଗ୍ରାଫିମଧ୍ୟରେ ଥିବା ପାର୍ଥକ୍ୟ କ୍ଷେତ୍ରରେ ମଧ୍ୟ ସମଭାବରେ ପ୍ରଯୋଜ୍ୟ ହେବ । ଏହି ପାର୍ଥକ୍ୟଟି ହେଉଛି ଗୋଟିଏ ବସ୍ତୁର ଦୁଇ ପ୍ରକାରରେ ଉପସ୍ଥାପନ ମଧ୍ୟରେ ଥିବା ପାର୍ଥକ୍ୟ । ଏଥିରୁ ଗୋଟିଏ ହେଉଛି କୌଣସି ବନ୍ୟାହର ଉଦ୍ଭୂତ ସାକ୍ଷାତ୍ ସଂବେଗାତ୍ମକ ଆନ୍ଦୋଳନର ବ୍ୟବହାର କରି ବସ୍ତୁପ୍ରତି ଅନୁଭୂତ ସଂବେଗମାନଙ୍କ ସହିତ ବସ୍ତୁର ଦର୍ଶନ ବା ଶ୍ରବଣ ସମ୍ବନ୍ଧୀୟ ସମୂହ ପରିସ୍ଥିତିର ପୁନଃସଂସ୍ଥାପନ ଦ୍ୱାରା ବସ୍ତୁଟିର ଉପସ୍ଥାପନ ଏବଂ ଅପରଟି ହେଉଛି ବସ୍ତୁର ସଂପୂର୍ଣ୍ଣଭାବେ ବୈଜ୍ଞାନିକ ଅର୍ଥାତ୍ ପ୍ରତୀକାତ୍ମକ ଉପସ୍ଥାପନ । ଅଭିବୃତ୍ତି ଉଦ୍ରେକର ସାଧନ ରୂପେ ବସ୍ତୁବର୍ଗ ପ୍ରତି ଉକ୍ତି ଅଭିବୃତ୍ତିଟି ଆବଶ୍ୟକରୂପେ ନିର୍ଦ୍ଦେଶିତ ହେବାର ପ୍ରୟୋଜନୀୟତା ନାହିଁ; କିନ୍ତୁ ପ୍ରାୟଶଃ ଏହା ଏକ ବ୍ୟାପକତର ସାମଞ୍ଜସ୍ୟର ବିଧାୟକ ହୋଇଥାଏ । ଆଲେଖ୍ୟ କ୍ଷେତ୍ର ସହିତ ନିବିଡ଼ଭାବେ ସାଦୃଶ୍ୟ ଥିବା ଆଉ ଏକ କ୍ଷେତ୍ର ଅର୍ଥାତ୍ ଚିତ୍ରାଙ୍କନ ପରିସରରେ ଆମେ ଯଦି ଏହି ପାର୍ଥକ୍ୟଗୁଡ଼ିକୁ ବିଚାର କରି ଦେଖିବା, ତେବେ ସେଗୁଡ଼ିକ ଅଧିକତର ସୁସ୍ପଷ୍ଟ ହେବ । ଚିତ୍ରାଙ୍କନରେ ସଂବେଗଗୁଡ଼ିକ ବିଭିନ୍ନ ପ୍ରଣାଳୀରେ ପ୍ରବେଶ କରେ ନାହିଁ । ଯେଉଁ ପ୍ରଣାଳୀମାନଙ୍କ ମାଧ୍ୟମରେ ସେଗୁଡ଼ିକ ପ୍ରବେଶ କରେ, ସେମାନଙ୍କ ତାରତମ୍ୟ ଅନୁସାରେ ସଂବେଗଗୁଡ଼ିକର ଭିନ୍ନତା ଓ ପୃଥକତ୍ୱର ବୃଦ୍ଧି ଘଟେ । ଯେପରି ଧ୍ୱନିଗୁଣ ଗୁଡ଼ିକର ଓ

ପ୍ରାଧାନ୍ୟ ଅର୍ପଣ କରି କହିବା ଭଙ୍ଗୀର ସାକ୍ଷାତ୍ ସଂବେଗାତ୍ମକ ପରିଣତିଗୁଡ଼ିକୁ ଆମେ ପୃଥକ୍ କରିପାରୁଁ, ଠିକ୍ ସେହିପରି ବର୍ଣ୍ଣ ଓ ଆକାରର ଅନୁରୂପ ସାକ୍ଷାତ୍ ପରିଣତିଗୁଡ଼ିକୁ ମଧ୍ୟ ଆମେ ପୃଥକ କରିପାରୁଁ । ଉଦାହରଣ ସ୍ୱରୂପ, ଠିକ୍ ଯେପରି ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣ ସମ୍ବନ୍ଧୀୟ ଗୁଣ ଛନ୍ଦର ବିରୋଧୀ ହୋଇପାରେ, ସେହିପରି ରଙ୍ଗ ଆକାରର ବିରୋଧୀ ହୋଇପାରେ; ଅର୍ଥାତ୍ ଏ ଦୁଇଟି ଅସମଞ୍ଜସ ସଂବେଗମାନଙ୍କ ଉଦ୍ରେକ କରିପାରେ । ସେହିପରି, ସ୍ୱୀକାର କରାଯାଇଛି ଯେ ଅଭିଜ୍ଞତା ହେତୁରୁ ରଙ୍ଗଗୁଡ଼ିକ ସଂବେଗାତ୍ମକ ପ୍ରଭାବର ଅଧିକାରୀ ହୋଇପାରେ, ଏବଂ ଏହି ସଂବେଗାତ୍ମକ ପରିଣତି ରଙ୍ଗଗୁଡ଼ିକର ସହଯୋଗିତା ହେତୁକ ସଂବେଗାତ୍ମକ ପରିଣତି ନୁହେଁ । ଉଦାହରଣ ସ୍ୱରୂପ, ଜଣେ ଏସ୍କିମୋ ଓ ଜଣେ ମୁଅର ଇଂଲଣ୍ଡୀୟ ପଦ୍ଧତିରେ ରଙ୍ଗଦେବା ଦ୍ୱାରା ଭିନ୍ନ ଭିନ୍ନ ଭାବେ ପ୍ରଭାବିତ ହେବେ, କାରଣ ସେହି କୃତିର ଭିନ୍ନ ଅଂଶ ସହିତ ସେମାନେ ସୁପରିଚିତ । ଏହା ସହଯୋଗିତାଠାରୁ ସମ୍ପୂର୍ଣ୍ଣ ପୃଥକ୍ ।

ଭାଷାର ବୈଜ୍ଞାନିକ ବ୍ୟବହାରରେ ସ୍ୱଭାବତଃ ସଂବେଗାତ୍ମକ ପରିଣତିଗୁଡ଼ିକର ଉପେକ୍ଷା କରାଯାଇଥାଏ । ସେଗୁଡ଼ିକର ଅନ୍ତର୍ଭୁକ୍ତି ଦ୍ୱାରା ଭାଷାକୁ ଏକ ଦ୍ୱୈତକାର୍ଯ୍ୟର ସମ୍ପାଦନ ନିମନ୍ତେ ଯେ ବିନିଯୋଗ କରାଯାଇ ପାରିବ, ଏକଥା ସୁପ୍ରତ୍ୟକ୍ଷ । ଉଦାହରଣ ସ୍ୱରୂପ, ଆମେ ଯେତେବେଳେ ବ୍ୟଗ୍ର, ସେତେବେଳେ ଘଣ୍ଟା କିପରି ମନ୍ଥର ଗତିରେ ଅଗ୍ରସର ହେଲାପରି ଆମକୁ ଲାଗେ, ସେହି ବିଷୟର ଆମେ ଯଦି ବର୍ଣ୍ଣନା ଦେବାକୁ ଇଚ୍ଛାକରୁଁ, ତେବେ ଆମେ ଦୁଇଟି ବିକଳ୍ପ ପନ୍ଥାର ଅବଲମ୍ବନ କରିପାରୁ । କେବଳ ପରିସ୍ଥିତିର ଉପାଦାନଗୁଡ଼ିକ ନିମନ୍ତେ ପ୍ରତୀକମାନ ବ୍ୟବହାର କରି ଏବଂ ଏହି ପ୍ରତୀକମାନଙ୍କ ସଂବେଗାତ୍ମକ ଉଚ୍ଚାରଣକୁ ଉପେକ୍ଷା କରି ଆମ କାଳ-ପରିମାଣ-ବୋଧର ପ୍ରସାରଣଗତ ବୈଶିଷ୍ଟ୍ୟ ଗୁଡ଼ିକର ଆମେ ଏକ ମନସ୍ତାତ୍ତ୍ୱିକ ବିବରଣୀ ଦେଇପାରୁ । ପକ୍ଷାନ୍ତରେ, ଏହି ଉପାଦାନଗୁଡ଼ିକ ମଧ୍ୟରୁ କେବଳ ଅଳ୍ପ କେତେକ ନିର୍ବାଚିତ ଉପାଦାନ ନିମନ୍ତେ ପ୍ରତୀକମାନଙ୍କ ବ୍ୟବହାର ଦ୍ୱାରା ସେଗୁଡ଼ିକୁ ଆମେ ଏପରିଭାବେ ବିନ୍ୟସ୍ତ କରିପାରୁ, ଯଦ୍ଦ୍ୱାରା ସେଗୁଡ଼ିକ ଶ୍ରୋତାଠାରେ ଯଥାଯଥ ସଂବେଗ-ମାନଙ୍କ ପୁନଃ ପ୍ରବର୍ତ୍ତନ କରିବ । ବ୍ୟାବହାରିକ କ୍ଷେତ୍ରରେ, ଦେଖାଯାଏ ଯେ ଭାଷା ବ୍ୟବହାରର ଏହି ଦୁଇଟି ପଦ୍ଧତି, ସମସ୍ତ କ୍ଷେତ୍ରରେ ନ ହେଲେ ମଧ୍ୟ ଅଧିକାଂଶ କ୍ଷେତ୍ରରେ ପରସ୍ପର ବିରୋଧୀ । ଶେଲି ଲେଖିଥିଲେ,

"ହେ ପ୍ରଫୁଲ୍ଲ ଆତ୍ମା, ତୁମକୁ ଅଭିବାଦନ ଜଣାଉଛି, ତୁମେ କଦାପି ପକ୍ଷୀ ନଥିଲ ।"

ଅଧ୍ୟାପକ ମେକେଞ୍ଜି ଦୃଢ଼ତାର ସହିତ କହିଛନ୍ତି, ଶେଲି ଏହା ଲେଖିଲାବେଳେ "ପ୍ରକୃତରେ ତାଙ୍କର ଉଦ୍ଦେଶ୍ୟ ନଥିଲା ଯେ ସ୍ୱତନ୍ତ୍ର ପକ୍ଷୀ ଶ୍ରେଣୀର ଅନ୍ତର୍ଗତ ହୋଇଥିବା ବିଷୟକୁ ଅସ୍ୱୀକାର କରିବା ।" ବିପରୀତ ପକ୍ଷେ, ଗୋଟିଏ ଉକ୍ତି ସାଙ୍କେତିକତା ଦୃଷ୍ଟିରୁ ଯଥାଯଥ ହୋଇଥିଲେ ସୁଦ୍ଧା ତାହାର ସମ୍ବେଗାତ୍ମକ ପ୍ରଭାବ ନଗଣ୍ୟ ହୋଇପାରେ । ଏହି ବିରୋଧର ବ୍ୟତିକ୍ରମ ଦୃଷ୍ଟାନ୍ତ ରହିଛି, କିନ୍ତୁ ତଥାପି ଏହା ଏତେ ବ୍ୟାପକ ଯେ ବିଶ୍ଳେଷଣ ଓ ସୃଷ୍ଟି ମଧ୍ୟରେ, ବିଜ୍ଞାନ ଓ କଳା ମଧ୍ୟରେ, ଗଦ୍ୟ ଓ ପଦ୍ୟ ମଧ୍ୟରେ ପ୍ରଥାଗତଭାବେ ରକ୍ଷା କରାଯାଉଥିବା ବିରୋଧିତା ସମର୍ଥନ ଯୋଗ୍ୟ । ଏ ଦୁଇଟିର ପୃଥକତ୍ୱର କାରଣ କେବଳ ଗୋଟିଏ ଘଟଣାରେ ନିହିତ । ତାହା ହେଉଛି, ପ୍ରତୀକମାନଙ୍କ ଯେଉଁ ବିନ୍ୟାସ ମୂଳତଃ ନିହିତ ରହିଥିବା ସମ୍ବେଗ ସମୂହର ଅନୁରୂପ ସମ୍ବେଗମାନଙ୍କ ଉଦ୍ରେକ ଦ୍ୱାରା ପରିସ୍ଥିତିକୁ ପୁନଃସଂସ୍ଥାପନ କରେ, ତାହା ଘଟଣାକ୍ରମେ କଦାଚିତ୍ ପରିସ୍ଥିତିର ଯଥାଯଥ ପ୍ରତୀକ ହୋଇଥାଏ । ତେଣୁ ଏମ୍. ବେର୍ଗସଁ ଏବଂ ବିଶ୍ଳେଷକ ଗୋଷ୍ଠୀ ଉଭୟେ ଯଥାର୍ଥ; ଭାଷାର କାର୍ଯ୍ୟଦ୍ୱୟ ମଧ୍ୟରୁ ଏକ ବା ଅପରଟିର ପ୍ରାଧାନ୍ୟ ସେମାନେ ରକ୍ଷା କରୁଛନ୍ତି । କିନ୍ତୁ ଭାଷାରେ ଯେ ଏହି ଉଭୟ କାର୍ଯ୍ୟ ନିଷ୍ପତ୍ତିରୂପେ ରହିବ, ଏହି ବିଷୟଟିକୁ ସ୍ପଷ୍ଟଭାବେ ନ ଦେଖିବା ବିଷୟରେ ହିଁ ସେମାନେ ଭ୍ରାନ୍ତ । ଏହା ହେଉଛି, ମୁହଁ କଥା କହିବା ପାଇଁ ନା ଖାଇବା ପାଇଁ ରହିବା ଉଚିତ— ଏ ବିଷୟରେ ବିବାଦ କରିବା ଭୁଲ୍ ।

ଯେଉଁ ଜଟିଳତା ଓ ଦ୍ୱ୍ୟର୍ଥକତାଗୁଡ଼ିକ ବୈଜ୍ଞାନିକ ଭାଷାରେ ରହିଛି, ସେଗୁଡ଼ିକର ମାତ୍ରା ଯେ ଉଦ୍ଦୀପନ ଉଦ୍ଦେଶ୍ୟରେ ବ୍ୟବହୃତ ଭାଷାରେ ନ୍ୟୂନ ନୁହେଁ, ଏହା ଏକ ସ୍ୱୀକୃତ ସତ୍ୟ । କିନ୍ତୁ ସାଧାରଣ ବ୍ୟବହାର ସ୍ଥଳରେ, ଯାହାକୁ ଗୋଟିଏ କବିତା ବା ଗୋଟିଏ ଛବିର "ସେମାନଙ୍କ ବ୍ୟାଖ୍ୟା" ବୋଲି ସମ୍ପୂର୍ଣ୍ଣ ଯଥାର୍ଥଭାବେ ବୁଝାଯାଏ, ତହିଁରେ ଯଦି ଦୁଇଜଣ ବ୍ୟକ୍ତି ପରସ୍ପର ଭିନ୍ନ ହୁଅନ୍ତି, ତେବେ ସେଠାରେ ଯେଉଁ ପଦ୍ଧତିର ପ୍ରୟୋଗ କରାଯିବା କଥା, ତାହା ଜଣେ ପଦାର୍ଥବିଜ୍ଞାନୀର ମନ୍ତବ୍ୟ ଉପରେ ସେ ଦୁହିଁଙ୍କର ବ୍ୟାଖ୍ୟାଗତ ଭିନ୍ନତା କ୍ଷେତ୍ରରେ ପ୍ରଯୋଜ୍ୟ ବୋଲି ସୁପାରିଶ କରାଯାଉଥିବା ପଦ୍ଧତିଠାରୁ ସମ୍ପୂର୍ଣ୍ଣ ପୃଥକ୍ । ତଥାପି ଏହି ଦୁଇଟି କ୍ଷେତ୍ରରେ ଏକ ଅନ୍ତର୍ନିହିତ ସାଦୃଶ୍ୟ ରହିଛି, କାରଣ ଉଭୟ ହେଉଛି ପ୍ରତୀକପରିସ୍ଥିତି, ଯାହାଓ ସଙ୍କୀର୍ଣ୍ଣ ଅର୍ଥରେ କେବଳ ଦ୍ୱିତୀୟ କ୍ଷେତ୍ରଟି ହିଁ ପ୍ରତୀକାତ୍ମକ ।

ଏହି ଦୁଇଟି ବ୍ୟବହାର ମଧ୍ୟରେ ଥିବା ପାର୍ଥକ୍ୟ ନିମ୍ନଲିଖିତଭାବେ ଆଂଶିକ ନିଧାର୍ଯ୍ୟରୂପେ ବର୍ଣ୍ଣିତ ହୋଇପାରେ; ପ୍ରତୀକାତ୍ମକ ବଚନରେ ମୁଖ୍ୟ ବିଚାରଗୁଡ଼ିକ ହେଉଛି ପ୍ରତୀକପଦ୍ଧତିର ଶୁଦ୍ଧତା ଓ ନିର୍ଦ୍ଦେଶଗୁଡ଼ିକର ସତ୍ୟତା । ଉଦ୍ଦୀପକ ବଚନରେ ମୁଖ୍ୟ

ବିଗ୍ରହ ହେଉଛି ଉକ୍ତିର ଅଭିବୃତ୍ତିର ସ୍ୱଭାବ । ଅବଶ୍ୟ, ଅଭିବୃତ୍ତି ଉଦ୍ରେକର ସାଧନ-ରୂପେ ପ୍ରତୀକାତ୍ମକ ଉକ୍ତିମାନଙ୍କ ବ୍ୟବହାର କରାଯାଇ ପାରେ । କିନ୍ତୁ ଯେତେବେଳେ ଏହିପରି ଭାବେ ପ୍ରତୀକାତ୍ମକ ଉକ୍ତିଗୁଡ଼ିକର ବ୍ୟବହାର କରାଯାଉଥାଏ, ସେତେବେଳେ ଦେଖାଯିବ ଯେ ଯଦି ସେଗୁଡ଼ିକ ଶ୍ରୋତାଦ୍ୱାରା ଗୃହୀତ, ତେବେ ସେଗୁଡ଼ିକର ସତ୍ୟତା ବା ମିଥ୍ୟାତ୍ୱର କୌଣସି ମୂଲ୍ୟ ନାହିଁ ।

ଯେଉଁ ଉପାୟରେ ଶବ୍ଦଗୁଡ଼ିକ ଦ୍ୱାରା ଅନୁଭବ ଓ ଅଭିବୃତ୍ତିର ଉଦ୍ରେକ କରାଯାଏ, ତାହାର ସଂଖ୍ୟା ଅନେକ; ସାହିତ୍ୟର ମନୋବିଜ୍ଞାନ ପକ୍ଷରେ ତାହାର ଅଧ୍ୟୟନ ଏକ ଚିତ୍ତାକର୍ଷକ ବିଷୟ ହେବ । ଧ୍ୱନିରୂପେ, ପୁଣି ଉଚ୍ଚାରଣର ଗତିରୂପେ, ଏବଂ ସହଯୋଗର ବହୁ ସୂକ୍ଷ୍ମ ଜାଲିକାମ ଦ୍ୱାରା ଓ ଅତୀତରେ ସେଗୁଡ଼ିକର ସଂଘଟନ ପ୍ରସଙ୍ଗ ମାଧ୍ୟମରେ ଏହି ଉପାୟଗୁଡ଼ିକ ଅତି ସାକ୍ଷାତ୍‌ଭାବେ ଭାବସଙ୍କଳ୍ପ ପ୍ରଣାଳୀଗତ ବ୍ୟକ୍ତିର ଆବେଗ ମାନଙ୍କ ଉପରେ କାର୍ଯ୍ୟ କରିବା ନିମନ୍ତେ ସମର୍ଥ । କିନ୍ତୁ ଏହି ଗୌଣ ପ୍ରଭାବ ଗୁଡ଼ିକର ବୃଦ୍ଧି, ନିୟନ୍ତ୍ରଣ ଓ ସଂଯୋଜନ ଅପେକ୍ଷା ଆହୁରି ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ଶବ୍ଦ ବିନ୍ୟାସଗୁଡ଼ିକର ଛନ୍ଦ, ରାଗ, ତାଳ, ଯତିପାତ ଇତ୍ୟାଦି ସମ୍ବନ୍ଧୀୟ ପ୍ରଭାବ । ମୁକ୍ତିଯୁକ୍ତଭାବେ ଗ୍ରହଣ କରାଯାଇପାରେ ଯେ ଛନ୍ଦ ଏବଂ ବିଶେଷତଃ ରାଗ, ତାଳ, ଯତିପାତାଦିର କିଛିଅନ୍ତ ପରିମାଣରେ ଏକ ସମ୍ମୋହକ ପ୍ରଭାବ ରହିଛି । ଏହା ଯଦି ସ୍ୱୀକୃତ ହୁଏ, ତେବେ ଏହିପରିଭାବେ ବିନ୍ୟସ୍ତ ଶବ୍ଦାବଳୀ ଏବଂ ପୌନଃପୁନିକ ବ୍ୟବହାର-ବିବର୍ଜିତ ଶବ୍ଦ ସମଷ୍ଟି ମଧ୍ୟରେ ଉଦ୍ଦୀପକ ସାମର୍ଥ୍ୟ ଦୃଷ୍ଟିରୁ ଯେଉଁ ଅତି ସୁସ୍ପଷ୍ଟ ପାର୍ଥକ୍ୟ ରହିଛି, ତାହାର କାରଣ ସହଜରେ ବୁଝାଯାଇ ପାରେ । ରାଗ-ତାଳ-ବିରାମ ସହି ପଠନର ସହଗାମୀ ସ୍ୱର-ବ୍ୟଞ୍ଜନ-ବୈଶିଷ୍ଟ୍ୟ ପ୍ରତି କେତେକ ବ୍ୟକ୍ତି ଅଧିକ ସଚେତନ; ପୁଣି ମୁକ୍ତ କବିତାର ଅନ୍ତର୍ଗତ ସମପ୍ରକାର ଶବ୍ଦାଂଶଗୁଡ଼ିକୁ ନିମ୍ନ ବା ଉଚ୍ଚ ସ୍ୱରରେ ଆବୃତ୍ତି କରିବାର ପ୍ରଭାବ ପ୍ରତି କେତେକ ବ୍ୟକ୍ତି ଅଧିକ ସଚେତନ; ଏହି ଚେତନା-ଶୀଳତାକୁ ବୁଝାଇବା ନିମନ୍ତେ ସେମାନଙ୍କଠାରେ କେତେକ ପରିମାଣର ତୀବ୍ର ସୌନ୍ଦର୍ଯ୍ୟବୋଧ କ୍ଷମତା ରହିଛି ବୋଲି ସ୍ୱୀକାର କରିବା ସୁବିଧାଜନକ ହେବ । ସଂବେଗଶୀଳତା, ବିଶ୍ୱାସ-ଅନୁଭବର ଅତିରଞ୍ଜନ, ସମୀକ୍ଷା-ଶକ୍ତିର ରହସ୍ୟାବୃତ୍ତକରଣ, 'ବାସ୍ତବରେ ଏହା ଏପରି କି ?'—ପ୍ରଶ୍ନର ଉତ୍ଥାପନ ଅଭିବୃତ୍ତିର ଦମନ—ଏସବୁ ହେଉଛି, କାବ୍ୟାନୁଭୂତିର ବିଶେଷତ୍ୱ । ସମ୍ମୋହନମୂଳକ ପ୍ରାକ୍‌ସ୍ୱୀକାର ସହିତ ଏଗୁଡ଼ିକ ସୁସମଞ୍ଜସ । ଏହି ସବୁ କାବ୍ୟିକ ପ୍ରଭାବ ସହିତ ଆମେ ଯଦି ତାହାର ପରୋକ୍ଷଭାବେ ଉପସ୍ଥାପନ ଶକ୍ତିକୁ (ଛନ୍ଦପ୍ରତି 'ଦୋଳାୟମାନ', 'ଘୂର୍ଣ୍ଣନଶୀଳ', 'ଗୁରୁଗମ୍ଭୀର', 'ଦ୍ରୁତଗତିଶୀଳ', 'ଭଗ୍ନ' ପରି ଶବ୍ଦର ପ୍ରୟୋଗରୁ ଏହା ସୂଚିତ), ତାହାର ସାକ୍ଷାତ୍‌-ଭାବେ ସଂବେଗମାନଙ୍କୁ ନିୟନ୍ତ୍ରଣ କରିବା ସାମର୍ଥ୍ୟକୁ (ଶାନ୍ତିକାରକ, ଉତ୍ତେଜକ,

ଗାମ୍ଭୀର୍ଯ୍ୟକାରକ, ପ୍ରଫୁଲ୍ଲକାରକ ପରି ଶବ୍ଦରୁ ଏହା ସୂଚିତ), ଏବଂ ତାହାର ଏକୀକରଣ ପ୍ରଭାବକୁ (ନିମ୍ନସ୍ତରରେ କେବଳ ଦୃଢ ସହାୟକରୂପେ ତାହାର ବ୍ୟବହାରରୁ ଏହା ପ୍ରଦର୍ଶିତ) ସଂଯୋଗ କରୁ ତେବେ ବଚନର ଉଦ୍ଦୀପକ ବ୍ୟବହାରରେ ଏହା ଏତେ ବ୍ୟାପକଭାବେ ଉପସ୍ଥିତ ଥିବାର ଦେଖି ବିସ୍ମିତ ହେବାର କିଛି ନାହିଁ ।

ଶବ୍ଦଗୁଡ଼ିକର ମାଧ୍ୟମରେ ପରୋକ୍ଷ ପ୍ରଣାଳୀରେ ଉଦ୍ଦୀପନ ମଧ୍ୟ ସମ୍ଭବପର, ଏଠାରେ ତାହାର ବିଶଦ ଆଲୋଚନା ଅନାବଶ୍ୟକ । ଶ୍ରୋତାର ବ୍ୟକ୍ତିଗତ ଭାବାବେଗ, ଆବଶ୍ୟକତା, ଅଭିଳାଷ ବା ପରିବେଶ ଗୁଡ଼ିକର ବିନା ସହାୟତାରେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ରଭାବେ ମଧ୍ୟ ଶବ୍ଦଗୁଡ଼ିକ ଶ୍ରୋତା ଉପରେ ଗଭୀର ପ୍ରଭାବ ପକାଇବା ପାଇଁ ସମର୍ଥ । ଉକ୍ତ ମାଧ୍ୟମରେ, ମାନସିକ ପ୍ରତିମା ସୃଷ୍ଟି ଦ୍ୱାରା (ରୂପକର ପ୍ରୟୋଗ ଦ୍ୱାରା ନିମ୍ନସ୍ତରୀୟ ମାର୍ଜିତ କ୍ଷେତ୍ରରେ ଏହା ସମ୍ପାଦିତ ହୁଏ) ଓ ସିଧା ସଳଖ ରୂପକ ପ୍ରୟୋଗ ଦ୍ୱାରା ମଧ୍ୟ ଏହି ପ୍ରଭାବ ପକାଇବା ସମ୍ଭବପର । ରୂପକ ପ୍ରୟୋଗ କ୍ଷେତ୍ରରେ, ରୂପକଟି ନିର୍ଦ୍ଦେଶିତ କୌଣସି ଗଠନମୂଳକ ବୈଶିଷ୍ଟ୍ୟର ବିକାଶ ବା ତହିଁରେ ପ୍ରାଧାନ୍ୟ ଅର୍ପଣ ନିମନ୍ତେ ଯେପରି ସଂକୀର୍ଣ୍ଣ ଅର୍ଥର ପ୍ରତିକାତ୍ମିକରଣ କ୍ଷେତ୍ରରେ ବ୍ୟବହୃତ ହୁଏ, ଏଠାରେ ତଦ୍ରୂପଭାବେ ବ୍ୟବହୃତ ହୋଇ ନଥାଏ । ବୈପରୀତ୍ୟ, ବିରୋଧିତା, ସାମଞ୍ଜସ୍ୟ ଓ ପାରସ୍ପରିକ କ୍ରିୟାକାରିତ୍ୱବିନାଶର ଏବଂ ଏତଲ୍ଲବ୍ଧ ସମତାର ସମ୍ମିଶ୍ରିତ ଫଳପ୍ରାପ୍ତି ନିମନ୍ତେ ବରଂ ନିର୍ଦ୍ଦେଶଗୁଡ଼ିକର ନୂତନ, ଆଶୁ ଓ ଚିତ୍ତାକର୍ଷକ ସନ୍ଧିତମାନ ଯୋଗାଇବାକୁ ଏଠାରେ ରୂପକର ପ୍ରୟୋଗ କରାଯାଏ । ପକ୍ଷାନ୍ତରେ କେବଳ ସଂବେଗାତ୍ମକ ଆଭାସର ପରିବର୍ତ୍ତନ ଓ ସାମଞ୍ଜସ୍ୟ ବିଧାନ ପାଇଁ ମଧ୍ୟ ରୂପକର ପ୍ରୟୋଗ କରାଯାଏ । ଉପର୍ଯ୍ୟୁକ୍ତ ମାଧ୍ୟମମାନଙ୍କ ବ୍ୟତୀତ ସାହଚର୍ଯ୍ୟ ମାଧ୍ୟମରେ, ପୁନରୁତ୍‌ଥାନ ମାଧ୍ୟମରେ ତଥା ଦୃଢସହାୟକ ପରିସ୍ଥିତିଗୁଡ଼ିକର ସୂକ୍ଷ୍ମ ସଂଯୋଗମାନଙ୍କ ମାଧ୍ୟମରେ ମଧ୍ୟ ଶବ୍ଦଗୁଡ଼ିକ ପ୍ରଭାବ ପକାଇବାକୁ ସମର୍ଥ ହୁଏ । ଏହା ସମସ୍ତ ବିଷୟରୁ ଅଧିକରୁ ଅଧିକ ସାହାଯ୍ୟ ଗ୍ରହଣ ଦ୍ୱାରା ଶବ୍ଦଗୁଡ଼ିକର ଉଦ୍ଦୀପନା ପରିସରର କୌଣସି ସୀମା ରହୁନାହିଁ । ଇତିହାସରେ ଏହାର ବହୁ ନିଦର୍ଶନ ରହିଛି ।

ଏହି ବିଭିନ୍ନ ଆକାରବିଶିଷ୍ଟ ଉଦ୍ଦୀପନର ବୈଶିଷ୍ଟ୍ୟମୂଳକ ଗୁଣ କଳାମାନଙ୍କରେ ପରିଲକ୍ଷିତ ହୁଏ । କଳା କ୍ଷେତ୍ରରେ ସାର୍ବିକତା ପାଇଁ ବ୍ୟକ୍ତିନିଷ୍ଠ ବିଶେଷ ବିଶେଷ ପରିସ୍ଥିତିରୁ ମୁକ୍ତ ରହିବା ଆବଶ୍ୟକ ହୁଏ । ସୁତରାଂ କଳା କ୍ଷେତ୍ରର ଉଦ୍ଦୀପନର ବୈଶିଷ୍ଟ୍ୟରେ ସାକ୍ଷାତ ଓ ପରୋକ୍ଷ ଉପାୟମାନଙ୍କ ବାରମ୍ବାର ସମ୍ମିଶ୍ରଣ ନିହିତ । ଯେଉଁମାନେ କବିତା ମାଧ୍ୟମକୁ ବ୍ୟବହାର କରନ୍ତି ନାହିଁ, ସେମାନଙ୍କ ପକ୍ଷରେ କବିତାରେ ମିଳୁଥିବା ସାକ୍ଷାତ୍ ଉପାୟ ଗୁଡ଼ିକୁ ଅବହେଳା କରିଯିବା ବା ସେଗୁଡ଼ିକର ମୂଲ୍ୟାର୍ପଣ ଯଥୋଚିତ ଭାବେ ନ କରିବା ଏକ ସାଧାରଣ ଅଭ୍ୟାସ । କୁହାଯାଏ ଯେ

କବିତାର ହୃଦୟଗ୍ରାହିତା ଇନ୍ଦ୍ରିୟାନୁଭୂତମୂଳକ ନୁହେଁ; ଏହା ପ୍ରତ୍ୟୟର ମଧ୍ୟବର୍ତ୍ତିତାରେ ଲାଭ କରାଯାଏ; ସୁତରାଂ ଏହା କେବଳ ପରୋକ୍ଷ ଉପାୟରେ ହୃଦୟଗ୍ରାହ୍ୟ ହୋଇପାରେ । ଏହି କାରଣ ଦର୍ଶାଇ କବିତାକୁ କଳା ପରିସରର ବହିର୍ଭୂତ କରିବା ପ୍ରୟାସ ଅନେକଥର କରାଯାଇଛି, କେବଳ ଅଜ୍ଞାନତା ହିଁ ହେଉଛି ଏ ପ୍ରକାର ଯୁକ୍ତି ବାଢ଼ିବାର କାରଣ ।

ଦୁର୍ଭାଗ୍ୟକ୍ରୁ ବଚନର ଏହି ଦୁଇଟି କାର୍ଯ୍ୟ ମଧ୍ୟରେ ଥିବା ପାର୍ଥକ୍ୟର ଗୁରୁତ୍ୱ ଉପରେ ପ୍ରାଧାନ୍ୟ ଅର୍ପଣ କହାଉ ଆବଶ୍ୟକ । ଏ ଦୁଇଟିର ବ୍ୟାମିଶ୍ରଣରୁ ଏପରି ବାଦ-ବିତଣ୍ଡାର ସୂତ୍ରପାତ ହୁଏ, ଯହିଁରେ ବୁଦ୍ଧି ଓ ସଂବେଗ, ଯୁକ୍ତି ଓ ଅନୁଭବ, ତର୍କ ଓ ପ୍ରଜ୍ଞାକୁ କୃତ୍ରିମଭାବେ ପରସ୍ପର ବିରୋଧୀ ବୋଲି ଉପସ୍ଥାପିତ କରାଯାଏ । କିନ୍ତୁ ଏହା ସହଜରେ ଉପଲକ୍ଷ୍ୟ ଯେ ଏହି ଦୁଇଟି କାର୍ଯ୍ୟ ମଧ୍ୟରୁ କୌଣସିଟି ଅପରର ପରିସର ମଧ୍ୟକୁ ଅବୈଧଭାବେ ପ୍ରବେଶ କରିବାର କୌଣସି ଆବଶ୍ୟକତା ନାହିଁ । (୧) ତଥାପି ପ୍ରତ୍ୟେକ ବ୍ୟବହାର ପାଇଁ ସଦୃଶ ଧରଣର ନିର୍ଦ୍ଧାରକ ପ୍ରତୀକ ସମଷ୍ଟି ବିକାଶ ଲାଭ କରିଛି । ପ୍ରତୀକାତ୍ମକ ବଚନ ନିମନ୍ତେ ଯେପରି ସତ୍ୟ, ସତ୍ତ୍ୱ, ସାମାନ୍ୟତା ପ୍ରଭୃତି ପ୍ରତୀକମାନ ରହିଛି, ଉଦ୍ଦୀପକ ବଚନ ନିମନ୍ତେ ସେହିପରି ସତ୍ୟ, ସତ୍ତ୍ୱ, ସାମାନ୍ୟତା ପ୍ରଭୃତି ପ୍ରତୀକମାନ ରହିଛି । ଏହି ଆକାରଗତ ସମାନ୍ତରାଳତା ଅତ୍ୟନ୍ତ ଭ୍ରାନ୍ତିକାରକ ହୋଇଥାଏ, କାରଣ ସତ୍ୟ ପ୍ର ଓ ସତ୍ୟ ସଂ—ଏହି ଶବ୍ଦ ଦୁଇଟି ପ୍ରତୀକ ହିସାବରେ ସମ୍ପୂର୍ଣ୍ଣ ଭିନ୍ନ । ପ୍ରଥମଟିର ସଜ୍ଞା ନିର୍ଦ୍ଦେଶ ମାଧ୍ୟମରେ ଦିଆଯାଏ, କିନ୍ତୁ ଦ୍ୱିତୀୟଟି ଯଥୋପଯୁକ୍ତ ଓ ବିଶୁଦ୍ଧିର ସମାର୍ଥକ; ଏଥିରେ ନିର୍ଦ୍ଦେଶ ନିହିତ ନୁହେଁ । ବଡ଼ ଦୁର୍ଭାଗ୍ୟର କଥା, ସାହିତ୍ୟ ସେବୀମାନେ ଏତେ ଅଧିକ ଥର ଓ ବାରମ୍ବାର ସେମାନଙ୍କ ସମଗ୍ର ସର୍ବସ୍ୱ ମାନସିକ ସ୍ଥିତିକୁ ଏକ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ବିତାଇ ଦେଇଛନ୍ତି । ସେମାନଙ୍କ ଧାରଣା ହୋଇଛି ଯେ ଏ କ୍ଷେତ୍ରରେ ପ୍ରଜ୍ଞା ଓ ତର୍କବୁଦ୍ଧି ମଧ୍ୟରେ ବିରୋଧିତା ରକ୍ଷା କରି ତାହାର ମାଧ୍ୟମରେ ସେମାନେ ଏକ ମୌଳିକ ସମସ୍ୟା ସମ୍ବନ୍ଧରେ ମନନ କ୍ରିୟାରତ ରହିଛନ୍ତି ।

ବଚନ କ୍ରିୟା ଉପରେ ସମୀକ୍ଷା ରହିତ ଆସ୍ଥା ସ୍ଥାପନ ଏହି ବିଷୟଟିକୁ ଏକ ଶୃଙ୍ଖଳାଶୂନ୍ୟ ବିଭ୍ରାଟରେ ପରିଣତ କରିଛି । ଏହି ବିଷୟ ତଥା ଆହୁରି ଅନେକ ବିଷୟ

---

(୧) ବଚନ-ବିଶୃଙ୍ଖଳା ମାନଙ୍କ ଆଲୋଚନାରେ ଏହି ପାର୍ଥକ୍ୟର ଫଳପ୍ରଦ ପ୍ରୟୋଗ ନିମନ୍ତେ Kinner Wilson ଙ୍କ କଥିତ ଗ୍ରନ୍ଥ Aphasia (୧୯୨୬) ପୃ ୫୩—୭୨ ଦେଖ ।

ଗଣିତର ଅନୁରକ୍ତିର ଉଦ୍ରେକ କରିଛି । ଏହା ଯଥାର୍ଥ ଏବଂ ଏହାହିଁ ହେଉଛି ପ୍ରତୀକପଦ୍ଧତି ସମ୍ବନ୍ଧରେ ଅନୁସନ୍ଧାନ ଚଳାଇବା ସପକ୍ଷରେ ଏକ ସବଳ ଯୁକ୍ତି । କେବଳ ଶିଶୁ ନୁହନ୍ତି, ଯେ କୌଣସି ବ୍ୟକ୍ତି, ଗୃହୀତ ଓ ସୁପରିଚିତ ନିର୍ଦ୍ଦେଶ ଗୁଡ଼ିକର କେବଳ ବିନିମୟ କରିବା ଅବସ୍ଥାର ଊର୍ଦ୍ଧ୍ୱକୁ ଉଠିବାକୁ ଯଦି ପ୍ରୟାସ କରନ୍ତି, ତେବେ ଶବ୍ଦମାନଙ୍କ ଅପ୍ରାସଙ୍ଗିକତା ଓ ଅନ୍ତସ୍ଥ ବୈଶିଷ୍ଟ୍ୟ ହେତୁରୁ ତାଙ୍କ ମନରେ ନାନା ଅମୂଳକ ପ୍ରଶ୍ନ ଉଠେ ଓ ବିଭ୍ରାନ୍ତି ଜାତ ହୁଏ । ଏକଥାକୁ ଯଦି ଆମେ ମନରେ ରଖୁଁ, ତେବେ ଭାଷାର ଅନୁସନ୍ଧାନ ଗୁରୁତ୍ୱ ସହକାରେ କରିବାକୁ ପ୍ରସ୍ତାବ ଦେବା ସୁନିଶ୍ଚିତ ରୂପେ ହୁଏତ ଏକ ପରିହାସ କିମ୍ବା ଏକ ପ୍ରକାର ଅଯଥା ପାଣ୍ଡିତ୍ୟ ପ୍ରଦର୍ଶନ ବୋଲି ମନେ କରିବାକୁ ଆମର ଇଚ୍ଛା ହେବ ନାହିଁ । କିନ୍ତୁ ଯେଉଁମାନେ କଦାପି ଚିନ୍ତା ଦ୍ୱାରା ବ୍ୟତିବ୍ୟସ୍ତ ହୋଇ ନାହାନ୍ତି, ଚିନ୍ତାର ଅଭିବ୍ୟକ୍ତି ନିମନ୍ତେ କଦାପି କୌଣସି ଅସୁବିଧାର ସମ୍ମୁଖୀନ ହୋଇ ନାହାନ୍ତି, ସେମାନେ ଠିକ୍ ଏହାହିଁ ମନେ କରି ଥାଆନ୍ତି । ଏ ପ୍ରକାର କୌଣସି ଅସୁବିଧା ଭାଷା ସୃଷ୍ଟି କରେ ନାହିଁ—ଏହି ମତକୁ ସମସ୍ତ ବୁଦ୍ଧିମାନ ବ୍ୟକ୍ତି ପର୍ଯ୍ୟବେକ୍ଷଣ ଅଥବା ବ୍ୟକ୍ତିଗତ ଅନୁଭୂତି ବଳରେ ପ୍ରତ୍ୟାଖ୍ୟାନ କରିଦେଇ ପାରିବେ । ଏହାର ବିପରୀତ ମତ, ଅର୍ଥାତ୍ ଏହି ଅସୁବିଧାଗୁଡ଼ିକ ଏତେ ଦୁର୍ଜ୍ଜେୟ ଯେ ଏଗୁଡ଼ିକର ନିରାକରଣ ସମ୍ଭବପର ନୁହେଁ—ଏହି ମତ ଯଦିଓ ମନୁଷ୍ୟମନ ପକ୍ଷରେ ଅଧିକ ଉପଯୋଗୀ, ତଥାପି ଅନୁରୂପ କାରଣରୁ ଏହା ମଧ୍ୟ ପରିହାର୍ଯ୍ୟ । ଭାଷା ଏପର୍ଯ୍ୟନ୍ତ ଯାହା କରୁଛି, ତହିଁରୁ ଆଶା କରାଯାଇ ପାରେ ଯେ କାଳକ୍ରମେ ତାହାର କାର୍ଯ୍ୟଗୁଡ଼ିକୁ ସଂପୂର୍ଣ୍ଣରୂପେ ସମ୍ପାଦନ କରିବାପାଇଁ ତାହାକୁ ବିନିଯୋଗ କରିବା ସମ୍ଭବପର । ଏହି ଉଦ୍ଦେଶ୍ୟରେ ସଂକେତ ସିଦ୍ଧାନ୍ତ ଓ ଶିକ୍ଷାର ସହଯୋଗ ଆବଶ୍ୟକ । ଯେଉଁ ଅଭ୍ୟାସଗୁଡ଼ିକ ଦ୍ୱାରା ଭାଷାକୁ ସ୍ୱଚ୍ଛନ୍ଦରେ ବ୍ୟବହାର କରାଯାଇ ପାରେ, ସେ ଗୁଡ଼ିକର ଅଭିବୃଦ୍ଧି ନ ଘଟିଲେ, ଧ୍ୱନି ଓ ନୀତିମୂଳକ କୌଣସି ଆକାରଗତ ଉପକରଣ, ଭାଷା-ଅପବ୍ୟବହାରର ସଂସ୍କାର ଆବଶ୍ୟକ ବୋଲି କରାଯାଉଥିବା କୌଣସି ଦାବୀ ଫଳପ୍ରଦ ହେବ ନାହିଁ । ଯାହା ଏଠାରେ ଆବଶ୍ୟକ, ତାହା କେବଳ ସଂଜ୍ଞାଗତ ବିଶୁଦ୍ଧତା ଏବଂ ଅଭିବ୍ୟକ୍ତିଗତ ଯଥାର୍ଥତା ନୁହେଁ, ତାହା ମଧ୍ୟ ହେଉଛି ସଂପ୍ରସାରଣ ପ୍ରୟୋଜନ ହେଉଥିବା ସ୍ଥଳେ ଦ୍ରୁତ ସଂପ୍ରସାରଣ ନିମନ୍ତେ ନମନୀୟତା, ଅନାୟାସ ଓ ସ୍ୱାଚ୍ଛନ୍ଦ୍ୟ । ଏହି ସାମର୍ଥ୍ୟ-ଗୁଡ଼ିକର ବିକାଶ ଏକ ନିର୍ଦ୍ଦିଷ୍ଟ ତାଲିମ ଦ୍ୱାରାହିଁ ଘଟିପାରେ । ବର୍ତ୍ତମାନ ଅବସ୍ଥାରେ ଏହି ତାଲିମ ଯେଉଁ ବିଷୟାବଳୀରେ ସଂପୃକ୍ତ, ତାହାକୁ ବୁଝିବା ନିମନ୍ତେ ଏକ ଯଥୋପଯୁକ୍ତ ଭାଷା ହେଉଛି ଏକ ପୂର୍ବାବଶ୍ୟକତା ।

ଏକ ନୂତନ ବିଜ୍ଞାନ ଅର୍ଥାତ୍ ପ୍ରତୀକ ପଦ୍ଧତି-ବିଜ୍ଞାନ ଲୋକଲୋଚନକୁ ଆସିବା ପାଇ ଏବେ ପ୍ରସ୍ତୁତ ହୋଇ ରହିଛି । ଏହା ସହିତ ଏକ ନୂତନ ଶିକ୍ଷାମୂଳକ ପ୍ରବିଧିର

ପ୍ରବର୍ତ୍ତିନ ହେବ । ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଉପକରଣରେ ଆମେ ଅଧିକାରୀ; ତାହା ହେଉଛି ଭାଷା । ଏବେ ଭାଷାର ପ୍ରକୃତ ସମ୍ବନ୍ଧରେ ଅଜ୍ଞ ରହି ମଧ୍ୟ ଆମେ ସନ୍ତୁଷ୍ଟ ରହୁଛୁ । ଅନୁକରଣ ଦ୍ୱାରା, ସ୍ୱଜ୍ଞାଦ୍ୱାରା ଅଥବା ଅନୁଭୂତ ଲବ୍‌ଧ ପଦ୍ଧତି ଦ୍ୱାରା ତାହାର ବ୍ୟବହାର ସମ୍ବନ୍ଧୀୟ ଜ୍ଞାନର ଆମେ ଆହରଣ ଓ ଜ୍ଞାପନ ଚେଷ୍ଟାରେ ରହୁଛୁ । ଜଣେ ଆଧୁନିକ ଶିଶୁ ବହୁ ବିଭିନ୍ନ ପ୍ରକାରରେ ଆରିଷ୍ଟଟଲଙ୍କଠାରୁ ଅଧିକ ସୁବିଧାଗ୍ରସ୍ତ । କିନ୍ତୁ ସେ ସ୍ୱୀୟ ପ୍ରୟାସ ବଳରେ ଏହାର ଅଧିକାରୀ ହୋଇନାହିଁ; କାରଣ ଏ ପ୍ରକାର ଉନ୍ନତାବସ୍ଥା ମୁନିଶ୍ଚିତରୂପେ ହେଉଛି ସହଯୋଗିତାମୂଳକ ପ୍ରଚେଷ୍ଟାର ଫଳ । ଭାଷାଗତ ସମସ୍ୟାମାନଙ୍କ ଏହି ପୁସ୍ତକ ପ୍ରଦତ୍ତ ସମାଧାନ ଗୁଡ଼ିକରେ ଯେଉଁମାନେ ସନ୍ତୁଷ୍ଟ ନୁହନ୍ତି, ସେମାନେ ଅଧିକ ଉତ୍ତମ ସମାଧାନମାନ ଆବିଷ୍କାର କରିବେ ବୋଲି ଆଶା କରିବା କଥା । କିନ୍ତୁ ଏକ ନୂତନ ଆତ୍ମମୂଲ୍ୟ ଯୋଗାଇଥିବା ବିଷୟକ ଆମର ଦାବୀ ଯଦି ଯଥାର୍ଥ ହୋଇଥାଏ, ତେବେ ଯେଉଁ ସୁଦୂରପ୍ରସାରୀ ବ୍ୟାବହାରିକ ଫଳମାନଙ୍କ ସମ୍ବନ୍ଧରେ ଆମେ ଆଲୋଚନା କରିଛୁ, ସେଗୁଡ଼ିକୁ ଏବେ ମଧ୍ୟ ଲାଭ କରାଯାଇପାରେ ।

## ସାରାଂଶ

ଏକ ଦୀର୍ଘ ଆଲୋଚନାର ପରିସମାପ୍ତି ଘଟିଛି । ଏଥିରେ ନିହିତ ରହିଛି ବହୁ ପୃଥକ୍ ପୃଥକ୍ ସମସ୍ୟାର ଭିନ୍ନ ଭିନ୍ନ ପରୀକ୍ଷା, ପଦ୍ଧତି ପ୍ରୟୋଗର ବିଶଦ ଉଦାହରଣ, ଐତିହାସିକ ଦୃଷ୍ଟାନ୍ତ ଏବଂ ଦୃଷ୍ଟପ୍ରବୃତ୍ତିର ବିଶିଷ୍ଟ ସମାଲୋଚନା । ପ୍ରତୀକପଦ୍ଧତି ବିଜ୍ଞାନର ପରିସର ଓ ଭୂମିକାର ଏକ ସାଧାରଣ ଧାରଣା ଦେବା ନିମନ୍ତେ ଆଲୋଚିତ ମୁଖ୍ୟ ବିଷୟ ଗୁଡ଼ିକର ଏକ ସଂକ୍ଷିପ୍ତ ସ୍ଥୂଳ ବିବରଣୀ ପରିଶେଷରେ ଦେବା ବାଞ୍ଛନୀୟ । ଏଠାରେ ଉଲ୍ଲିଖିତ ହୋଇଥିବା ବିଷୟଗୁଡ଼ିକଠାରୁ ନ୍ୟୂନ ଗୁରୁତ୍ୱପୂର୍ଣ୍ଣ ହୋଇ ନଥିବା ବହୁ ବିଷୟ ପ୍ରତି ସମସ୍ତ ପ୍ରକାର ଇଙ୍ଗିତ ପରିହାର କରିବା ଦ୍ୱାରାହିଁ ଯେଉଁ ଅନ୍ତର୍ବସ୍ତୁ ତାଲିକା ପ୍ରତି ପାଠକର ଦୃଷ୍ଟି ଆକର୍ଷଣ କରାଯାଉଛି, ତନ୍ନିହିତ ଅପରିହାର୍ଯ୍ୟ ଦୃଷ୍ଟିବିଭ୍ରମ-ହାନିକୁ ଅମେ ଏଡ଼ାଇ ଯାଇପାରିବା ।

## ୧—ଚିନ୍ତା, ଶବ୍ଦ ଏବଂ ବସ୍ତୁ

ଚିନ୍ତା ଉପରେ ଭାଷାର ପ୍ରଭାବ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟ । ପ୍ରତୀକତତ୍ତ୍ୱ ହେଉଛି ଏହି ପ୍ରଭାବର ଅଧ୍ୟୟନ । ଦୈନନ୍ଦିନ-ଜୀବନସଂପୃକ୍ତ କ୍ଷେତ୍ରରେ ଏହା ଯେପରି ପ୍ରଭାବଶାଳୀ, ଅଧିକାଂଶ ଦୁର୍ବୋଧ ଚିନ୍ତାଧାରା କ୍ଷେତ୍ରରେ ମଧ୍ୟ ଏହା ସେହିପରି ପ୍ରଭାବଶାଳୀ ।

ଯେ କୌଣସି ଏକ ଉକ୍ତ ଦେବା ବା ତାହାର ଅର୍ଥ କରିବା କାଳରେ ତହିଁରେ ତିନୋଟି ଉପାଦାନ ନିହିତ ଥାଏ ।

୧ । ମାନସିକ ପ୍ରକ୍ରିୟାମାନ ।

୨ । ପ୍ରତୀକ ।

୩ । ଏକ ନିର୍ଦ୍ଦେଶ୍ୟ—ଯାହା'ର' ଚିନ୍ତା କରାଯାଉଛି ।

ପ୍ରତୀକ ତତ୍ତ୍ୱର ତାତ୍ତ୍ୱିକ ସମସ୍ୟା ହେଉଛି—

ଏହି ତିନୋଟି କିପରିଭାବେ ସଂପୃକ୍ତ ? ତାହାର ବିଚାର କରିବା ।

ଆଲୋଚନା ଏବଂ ମୁକ୍ତିରେ ଆମକୁ ଶବ୍ଦ ବ୍ୟବହାର କରିବାକୁ ପଡ଼ୁଥିବା ହେତୁ ଏଠାରେ ବ୍ୟାବହାରିକ ସମସ୍ୟା ହେଉଛି—

ଶବ୍ଦଗୁଡ଼ିକ ପ୍ରତି ଆମ ଅଭ୍ୟାସଗତ ଅଭିବୃତ୍ତି ମାନଙ୍କ ଦ୍ୱାରା ଏବଂ ପ୍ରକାଶ୍ୟଭାବେ ଆଉ ଗୃହୀତ ହେଉ ନଥିଲେ ହେଁ, ତଥାପି ଆମ ବ୍ୟାବହାରିକ କ୍ଷେତ୍ରରେ ଏବେ ମଧ୍ୟ ଉପଦର୍ଶନ ଦେବାର ସୁବିଧା ପାଉଥିବା ମତବାଦମାନଙ୍କ ହେତୁରୁ ବିଲୁପ୍ତ ହୋଇ ନଥିବା ପ୍ରାକ୍ସ୍ୱୀକାର ମାନଙ୍କ ଦ୍ୱାରା ଆମ ଆଲୋଚନାଟି କି ପରିମାଣରେ ବିକୃତ ହୋଇଯାଏ ? ଏହାର ସମାଧାନ କରିବା ।

ଏହି ପ୍ରାକ୍ସ୍ୱୀକାରମାନଙ୍କ ମଧ୍ୟରୁ ମୁଖ୍ୟ ପ୍ରାକ୍ସ୍ୱୀକାରଟି ନାମକୁ ବସ୍ତୁର ଅଂଶ ସ୍ୱରୂପ ବିବେଚନା କରୁଥିବା ଐନ୍ଦ୍ରଜାଲିକ ମତବାଦରୁ ନିଃସୃତ । ଏହି ମତବାଦ ଅନୁସାରେ ପ୍ରତୀକ ଓ ନିର୍ଦ୍ଦେଶ୍ୟ ମଧ୍ୟରେ ଏକ ଅନ୍ତର୍ନିହିତ ସମ୍ବନ୍ଧ ଥାଏ । ଏତନ୍ନିଃସୃତ ଚିନ୍ତାଧାରା ବ୍ୟାବହାରିକ କ୍ଷେତ୍ରରେ ଶବ୍ଦଗୁଡ଼ିକର ଶାଶ୍ୱତ ଅର୍ଥ ଅନ୍ୱେଷଣରେ ପ୍ରବୃତ୍ତି ଜାତ କରେ । ସଂକେତମାନଙ୍କ ସାଧାରଣ ଅଧ୍ୟୟନ ଦ୍ୱାରା ହିଁ ଏହି ଅଭ୍ୟାସର ନିଦ୍ରାକରଣରେ କୃତକାର୍ଯ୍ୟ ହେବା ସମ୍ଭବପର । ତଦନନ୍ତର ସଂଜ୍ଞାର ଏକ ନିର୍ଦ୍ଦେଶାତ୍ମକ ମତବାଦରେ ଉପନୀତ ହୋଇ, ତଦ୍ୱାରା ଏପ୍ରକାର କୁସଂସ୍କାରରୁ ଉଦ୍ଭୂତ ସମସ୍ୟାଭାସ ଗୁଡ଼ିକର ପରିବର୍ଜନ କରାଯାଇ ପାରେ । ଏହି ସମସ୍ୟାଭାସଗୁଡ଼ିକ ନିରାକୃତ ହେଲେ, ସମସ୍ତ ବିଷୟ ଅଧିକ ସୁଗମ ଓ ଅଧିକ ଚିତ୍ତାକର୍ଷକ ହୋଇଯାଏ ।

## ୨—ଶବ୍ଦଶକ୍ତି

ସାଧାରଣ ଇନ୍ଦ୍ରଜାଲ ପରିସରରେ ଶବ୍ଦ-ଇନ୍ଦ୍ରଜାଲର ଏକ ବିଶିଷ୍ଟ ସ୍ଥାନ ରହିଛି । ପୂର୍ବକାଳରୁ ଏଇ ନିକଟ ଅତୀତ ପର୍ଯ୍ୟନ୍ତ ଶବ୍ଦଗୁଡ଼ିକ ପ୍ରତି ଆମର ସ୍ୱାଭାବିକ

ଅଭିବୃତ୍ତି ଯାହା ରହି ଆସିଛି, ତାହାକୁ ହୃଦୟଙ୍ଗମ ନକଲେ ଆଧୁନିକ ରହସ୍ୟବାଦୀଙ୍କ ମଧ୍ୟରେ ରହିଥିବା ତର୍କବିଦ୍‌ଙ୍କ ଓ ଅନ୍ୟମାନଙ୍କ ଆଚରଣର ବହୁଳାଂଶ ଅବୋଧ ରହିଯିବ; କାରଣ ସେହି ଏକ ପ୍ରକାର ଅଭିବୃତ୍ତିମାନ ଅପ୍ରକାଶିତ ଓ ଅସ୍ୱୀକୃତଭାବେ ଏବେ ସୁଦ୍ଧା ବଳବତ୍ତର ରହିଛି । ଏହି ଐନ୍ଦ୍ରଜାଲିକ ବିଶ୍ୱାସଗୁଡ଼ିକର ଉତ୍ପତ୍ତି ଓ ସ୍ଥିତିଶୀଳତା ଉପରେ ମଧ୍ୟ ସଙ୍କେତତତ୍ତ୍ୱ ଆଲୋକପାତ କରିବାକୁ ସମର୍ଥ ।

## ୩—ସଂକେତ ପରିସ୍ଥିତି

ସମସ୍ତ ଚିନ୍ତାରେ ଆମେ ସଙ୍କେତମାନଙ୍କ ବ୍ୟାଖ୍ୟା କରୁଥାଉଁ । ସୁସ୍ପଷ୍ଟ କ୍ଷେତ୍ରମାନଙ୍କରେ ଆମେ ଦ୍ୱିଧାହୀନଭାବେ ଏହା ସ୍ୱୀକାର କରୁଁ । ଗଣିତ ଓ ବ୍ୟାକରଣର ଅଧିକ ଜଟିଳ କ୍ଷେତ୍ରମାନଙ୍କରେ ଅଧିକ ଜଟିଳ ଆକାରର ସେହି ଏକ ପ୍ରକ୍ରିୟା ହିଁ ନିହିତ । ପ୍ରତୀକମାନଙ୍କ ଆମର ସମୀକ୍ଷାରହିତ ବ୍ୟବହାର ଦ୍ୱାରା ଏହି ବିଷୟଟି ଆମଠାରୁ ଲୁକ୍‌କାୟିତ ରହିଯାଏ । 'ଭାଷାଗତ ଅପବର୍ତ୍ତିନରୁ ଯଷ୍ଟ ମସ୍ତିଷ୍କତା ସହିତ ମୁଖ୍ୟତଃ ସମ୍ପୃକ୍ତ ହୋଇଥିବା 'ଅର୍ଥିକରଣ' ଓ ଚିନ୍ତନର ବିଶ୍ଳେଷଣ ନିମନ୍ତେ ପ୍ରତୀକ-ମାନଙ୍କ ଏ ପ୍ରକାର ବ୍ୟବହାର ଅନୁକୂଳ ।

ତେଣୁ ଆମେ ଅର୍ଥିକରଣରୁ ଆରମ୍ଭ କରିବା ବିଧେୟ ।

ଯେ କୌଣସି ସଙ୍କେତର ଆମ ଅର୍ଥିକରଣ ହେଉଛି ତାହା ପ୍ରତି ଆମର ମନସ୍ତାତ୍ତ୍ୱିକ ପ୍ରତିକ୍ରିୟା । ଏହି ପ୍ରତିକ୍ରିୟା ଅନୁରୂପ ପରିସ୍ଥିତିମାନଙ୍କରେ ଆମର ପୂର୍ବା-ଭିଜ୍ଞତା ଦ୍ୱାରା ଏବଂ ଆମର ଉପସ୍ଥିତ ଅନୁଭୂତି ଦ୍ୱାରା ନିର୍ଦ୍ଧାରିତ ହୋଇଥାଏ ।

ଏହି ବିଷୟଟି କାରଣିକ ପ୍ରସଙ୍ଗମାନଙ୍କ ଅଥବା ସହସମ୍ବନ୍ଧୀ ଶ୍ରେଣୀଗୁଡ଼ିକର ମାଧ୍ୟମରେ ଯଥୋଚିତ ସାବଧାନତା ସହକାରେ ଯଦି ବ୍ୟକ୍ତ ହୁଏ, ତେବେ ଅବଧାରଣ, ବିଶ୍ୱାସ ଓ ଅର୍ଥିକରଣରେ ଆମେ ଏପରି ଏକ ବିବରଣୀ ପାଉଁ, ଯାହା ଚିନ୍ତନର ମନସ୍ତତ୍ତ୍ୱକୁ ଅନ୍ୟାନ୍ୟ ଆବେଗମୂଳକ ବିଜ୍ଞାନର ସମସ୍ତରୀୟ କରେ ଏବଂ ଘଟଣାକ୍ରମେ ସତ୍ୟ ସମ୍ପର୍କିତ ସମସ୍ୟା ସମାହିତ ହୋଇଯାଏ ।

ଚିନ୍ତନର ଯେଉଁ ମତବାଦ ଜ୍ଞାତା ଓ ଜ୍ଞେୟ ମଧ୍ୟରେ ରହସ୍ୟଜନକ ସମ୍ବନ୍ଧମାନ ଥିବା ବିଷୟକୁ ଅସ୍ୱୀକାର କରେ ଏବଂ ଜ୍ଞାନକୁ ସାଧାରଣ ବୈଜ୍ଞାନିକ ଅନୁସନ୍ଧାନର ଅଧ୍ୟୟନୀୟ ଏକ କାରଣିକ ବ୍ୟାପାର ବୋଲି ମନେକରେ, ତାହା ସାମାନ୍ୟ ବୁଦ୍ଧି ପ୍ରୟୋଗ ଦ୍ୱାରା ଅନୁସନ୍ଧାନ ଲିପ୍ତ ବ୍ୟକ୍ତିବର୍ଗଙ୍କ ହୃଦୟଗ୍ରାହୀ ହେବ ।

ଅଭିବୃତ୍ତି ଯାହା ରହି ଆସିଛୁ, ତାହାକୁ ହୃଦୟଙ୍ଗମ ନକଲେ ଆଧୁନିକ ରହସ୍ୟବାଦୀଙ୍କ ମଧ୍ୟରେ ରହିଥିବା ତର୍କବିଦ୍‌ଙ୍କ ଓ ଅନ୍ୟମାନଙ୍କ ଆଚରଣର ବହୁଳାଂଶ ଅବୋଧ ରହିଯିବ; କାରଣ ସେହି ଏକ ପ୍ରକାର ଅଭିବୃତ୍ତିମାନ ଅପ୍ରକାଶିତ ଓ ଅସ୍ୱୀକୃତଭାବେ ଏବେ ସୁଦ୍ଧା ବଳବତ୍ତର ରହିଛି । ଏହି ଐନ୍ଦ୍ରଜାଲିକ ବିଶ୍ୱାସଗୁଡ଼ିକର ଉତ୍ପତ୍ତି ଓ ସ୍ଥିତିଶୀଳତା ଉପରେ ମଧ୍ୟ ସଙ୍କେତତତ୍ତ୍ୱ ଆଲୋକପାତ କରିବାକୁ ସମର୍ଥ ।

## ୩—ସଂକେତ ପରିସ୍ଥିତି

ସମସ୍ତ ଚିନ୍ତାରେ ଆମେ ସଙ୍କେତମାନଙ୍କ ବ୍ୟାଖ୍ୟା କରୁଥାଉଁ । ସୁସ୍ପଷ୍ଟ କ୍ଷେତ୍ରମାନଙ୍କରେ ଆମେ ଦ୍ୱିଧାହୀନଭାବେ ଏହା ସ୍ୱୀକାର କରୁଁ । ଗଣିତ ଓ ବ୍ୟାକରଣର ଅଧିକ ଜଟିଳ କ୍ଷେତ୍ରମାନଙ୍କରେ ଅଧିକ ଜଟିଳ ଆକାରର ସେହି ଏକ ପ୍ରକ୍ରିୟା ହିଁ ନିହିତ । ପ୍ରତୀକମାନଙ୍କ ଆମର ସମୀକ୍ଷାରହିତ ବ୍ୟବହାର ଦ୍ୱାରା ଏହି ବିଷୟଟି ଆମଠାରୁ ଲୁକ୍‌କାୟିତ ରହିଯାଏ । 'ଭାଷାଗତ ଅପବର୍ତ୍ତିନରୁ ପଷ୍ଟ ମସୃଣତା ସହିତ ମୁଖ୍ୟତଃ ସମ୍ପୃକ୍ତ ହୋଇଥିବା 'ଅର୍ଥକରଣ' ଓ ଚିନ୍ତନର ବିଶ୍ଳେଷଣ ନିମନ୍ତେ ପ୍ରତୀକ-ମାନଙ୍କ ଏ ପ୍ରକାର ବ୍ୟବହାର ଅନୁକୂଳ ।

ତେଣୁ ଆମେ ଅର୍ଥକରଣରୁ ଆରମ୍ଭ କରିବା ବିଧେୟ ।

ଯେ କୌଣସି ସଙ୍କେତର ଆମ ଅର୍ଥକରଣ ହେଉଛି ତାହା ପ୍ରତି ଆମର ମନସ୍ତାତ୍ତ୍ୱିକ ପ୍ରତିକ୍ରିୟା । ଏହି ପ୍ରତିକ୍ରିୟା ଅନୁରୂପ ପରିସ୍ଥିତିମାନଙ୍କରେ ଆମର ପୂର୍ବା-ଭିଜ୍ଞତା ଦ୍ୱାରା ଏବଂ ଆମର ଉପସ୍ଥିତ ଅନୁଭୂତି ଦ୍ୱାରା ନିର୍ଦ୍ଧାରିତ ହୋଇଥାଏ ।

ଏହି ବିଷୟଟି କାରଣିକ ପ୍ରସଙ୍ଗମାନଙ୍କ ଅଥବା ସହସମ୍ବନ୍ଧୀ ଶ୍ରେଣୀଗୁଡ଼ିକର ମାଧ୍ୟମରେ ଯଥୋଚିତ ସାବଧାନତା ସହକାରେ ଯଦି ବ୍ୟକ୍ତ ହୁଏ, ତେବେ ଅବଧାରଣ, ବିଶ୍ୱାସ ଓ ଅର୍ଥକରଣରେ ଆମେ ଏପରି ଏକ ବିବରଣୀ ପାଉଁ, ଯାହା ଚିନ୍ତନର ମନସ୍ତତ୍ତ୍ୱକୁ ଅନ୍ୟାନ୍ୟ ଆବେଗମୂଳକ ବିଜ୍ଞାନର ସମସ୍ତରୀୟ କରେ ଏବଂ ଘଟଣାକ୍ରମେ ସତ୍ୟ ସମ୍ପର୍କିତ ସମସ୍ୟା ସମାହିତ ହୋଇଯାଏ ।

ଚିନ୍ତନର ଯେଉଁ ମତବାଦ ଜ୍ଞାତା ଓ ଜ୍ଞେୟ ମଧ୍ୟରେ ରହସ୍ୟଜନକ ସମ୍ବନ୍ଧମାନ ଥିବା ବିଷୟକୁ ଅସ୍ୱୀକାର କରେ ଏବଂ ଜ୍ଞାନକୁ ସାଧାରଣ ବୈଜ୍ଞାନିକ ଅନୁସନ୍ଧାନର ଅଧ୍ୟୟନୀୟ ଏକ କାରଣିକ ବ୍ୟାପାର ବୋଲି ମନେକରେ, ତାହା ସାମାନ୍ୟ ବୁଦ୍ଧି ପ୍ରୟୋଗ ଦ୍ୱାରା ଅନୁସନ୍ଧାନ ଲିପ୍ତ ବ୍ୟକ୍ତିବର୍ଗଙ୍କ ହୃଦୟଗ୍ରାହୀ ହେବ ।

ସଙ୍କେତ ପରସ୍ଥିତ ସମ୍ବନ୍ଧ ଶୃଙ୍ଖଳାବଦ୍ଧ । ଏ ପ୍ରକାର ଏକ ସଙ୍କେତ-ଶୃଙ୍ଖଳର ସରଳତମ କ୍ଷେତ୍ରର ସର୍ବୋତ୍ତମ ଅଧ୍ୟୟନ ପ୍ରତ୍ୟକ୍ଷଣ କ୍ଷେତ୍ରରେ କରାଯାଇ ପାରେ ।

## ୪—ପ୍ରତ୍ୟକ୍ଷଣରେ ସଂକେତାବଳୀ

ଏକ ସଙ୍କେତ-ତତ୍ତ୍ୱର ଅଭାବ ହେତୁରୁ ଏବଂ ପ୍ରତ୍ୟଭିଜ୍ଞା-ପଦ୍ଧତି-ବ୍ୟବସ୍ଥା ବିନା ବସ୍ତୁଗୁଡ଼ିକର ତ୍ୱରିତ ନାମକରଣ ଅଭ୍ୟାସ ସମ୍ଭୂତ ପ୍ରହେଳିକା ହେତୁରୁ ଦାର୍ଶନିକମାନେ ବହିର୍ଜଗତ ସମ୍ବନ୍ଧୀୟ ଆମ ଜ୍ଞାନର ନିଷ୍ପତ୍ତିରେ ବହୁ ବାଧାବିଘ୍ନର ସୃଷ୍ଟି କରିଛନ୍ତି ।

ପ୍ରକୃତରେ ବୃତ୍ତାକାର ପେନିଗୁଡ଼ିକ ବୃତ୍ତାଭାସ ଆକାର ବିଶିଷ୍ଟ ପରି ଦେଖାଯାଏ— ଏହି ପ୍ରକାର ବିରୋଧାଭାସ ଗୁଡ଼ିକ ପ୍ରତୀକମାନଙ୍କର, ମୁଖ୍ୟତଃ 'ଦେଖ'—ପ୍ରତୀକର ଅପବ୍ୟବହାର ହେତୁରୁ ଜାତ ହୁଏ ।

ଗୋଟିଏ ଟେବୁଲ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଆମେ ଯାହା ଦେଖୁ, ତାହା ପ୍ରଥମତଃ ହେଉଛି ଚକ୍ଷୁପଟଳୀୟ କେତେକ ପରିବର୍ତ୍ତନ । ଏଗୁଡ଼ିକ ହିଁ ହେଉଛି ଆମର ପ୍ରାଥମିକ ସଙ୍କେତ । ଆମେ ଏଗୁଡ଼ିକର ବ୍ୟାଖ୍ୟା କରୁ ଏବଂ ଟେବୁଲର ପୃଷ୍ଠଭାଗ ପରି ତଳମାନଙ୍କ ଦ୍ୱାରା ଆବଦ୍ଧ ଦୃଷ୍ଟି କ୍ଷେତ୍ରରେ ଉପନୀତ ହେଉ । ଏ ଗୁଡ଼ିକରେ ଆମର ବିଶ୍ୱାସକୁ ଦ୍ୱିତୀୟ ସ୍ତରର ସଙ୍କେତ ରୂପେ ଗ୍ରହଣକରି ଅନୁରୂପଭାବେ ଗଠିତ କରିବା ଦ୍ୱାରା ଆମର ଅର୍ଥକରଣ ଅଗ୍ରଗତିଶୀଳ ହୁଏ । ଏହାର ପରିଣତି ସ୍ୱରୂପ, ଟେବୁଲ, କାଷ୍ଠ, ତନ୍ତୁ, କୋଷାଣୁ, ଅଣୁ, ପରମାଣୁ, ତଡ଼ିତ୍‌ପରମାଣୁ ଇତ୍ୟାଦିରେ ଆମେ ଉପନୀତ ହେଉ । ଏହି ବ୍ୟାଖ୍ୟାତ୍ମକ ପ୍ରସ୍ତାବର ପରବର୍ତ୍ତୀ ସୋପାନ ଗୁଡ଼ିକ ହେଉଛି ପଦାର୍ଥ ବିଜ୍ଞାନ । ଏଥିରୁ ଜଣାପଡ଼ିବ ଯେ ପଦାର୍ଥ ବିଜ୍ଞାନରେ ଆହୁରି କିଛି ସଯୋଗ କରିବାକୁ ସମର୍ଥ ହୋଇଥିବା ଅଥବା ପଦାର୍ଥବିଜ୍ଞାନକୁ ସଂଶୋଧନ କରି ପାରୁଥିବା 'ଦର୍ଶନ' ନାମଧେୟ କୌଣସି ଅଧ୍ୟୟନ ନାହିଁ । ଅବଶ୍ୟ, 'ଟେବୁଲ' ଓ 'ଆଣବିକ ସସ୍ଥିତି' ପରି ପ୍ରତୀକମାନ ଆଲୋଚନାର ଯେଉଁ ସ୍ତରଗୁଡ଼ିକରେ ଯଥୋପଯୁକ୍ତ, ସେଗୁଡ଼ିକର ପଦ୍ଧତିବଦ୍ଧ-କରଣରେ ପ୍ରତୀକତନ୍ତ୍ରର ଅବଦାନକୁ ସ୍ୱୀକାର କରାଯାଇ ପାରେ ।

ଏହି ପରିସରର ଯେଉଁ କ୍ଷେତ୍ରମାନଙ୍କରେ ଦର୍ଶନର ପ୍ରୟୋଗ କରାଯାଇଛି, ସେଠାରେ ଏପରି ଏକ ପଦ୍ଧତିର ଆବଶ୍ୟକତା ରହିଛି, ଯାହା ସାହାଯ୍ୟରେ ସେହି କ୍ଷେତ୍ରର ବିଭ୍ରାନ୍ତିଗୁଡ଼ିକ ନିରାକୃତ ହେବା ସମ୍ଭବପର । ଏହିପରି ଏକ ପଦ୍ଧତି ଏକ ସଙ୍କେତ-ତତ୍ତ୍ୱ ଉପରେ ଆଂଶିକତଃ ନିର୍ଭରଶୀଳ । ଆଂଶିକତଃ ଏହା ନିର୍ଭର କରେ ପରବର୍ତ୍ତୀ ପରିଚ୍ଛେଦରେ ଆଲୋଚିତ ହୋଇଥିବା ପ୍ରତୀକାନ୍ୱିତ କରଣର ସୂତ୍ରମାନଙ୍କ ଉପରେ ।

## ୫—ପ୍ରତୀକକରଣର ସୂତ୍ରାବଳୀ

ବୈଜ୍ଞାନିକ ପଦ୍ଧତିର ଯେ କୌଣସି ବିବରଣୀ ପାଇଁ ସମଗ୍ରଭାବରେ ମୌଳିକ ହୋଇଥିବା କେତେକ ପ୍ରତୀକକରଣ ମତ ବା ପ୍ରଥା ଭିତ୍ତିଆଦାନ ପ୍ରଦାନରେ ଅନ୍ତର୍ନିହିତ ହୋଇ ରହିଛି ।

ଏଗୁଡ଼ିକରୁ କେତେକ ବ୍ୟକ୍ତ ହେବାମାତ୍ରେ ପର୍ଯ୍ୟାପ୍ତ ପରିମାଣରେ ସୁପ୍ରତ୍ୟକ୍ଷ ମନେ ହୁଏ; କିନ୍ତୁ ସମ୍ଭବତଃ ଏହି କାରଣରୁ ହିଁ ଏଗୁଡ଼ିକ ସାଧାରଣତଃ ଅବହେଳିତ । ଅନ୍ୟ କେତେକ ମତ ତାର୍କିକମାନଙ୍କ ଦ୍ୱାରା ବ୍ୟକ୍ତ ହୋଇଛି, କିନ୍ତୁ ସେଗୁଡ଼ିକରେ କୌଣସି ପ୍ରାଧାନ୍ୟ ଅର୍ପଣ କରାଯାଇ ନାହିଁ । ସେ ଗୁଡ଼ିକ ଏପର୍ଯ୍ୟନ୍ତ ପ୍ରାଚୀନ ସମସ୍ୟା-ମାନଙ୍କ ଏକ ସଂକୀର୍ଣ୍ଣ ପରିସର ସହିତ ସଂପୃକ୍ତ ହୋଇ ରହିଆସିଛି । କିନ୍ତୁ ସୁଶୃଙ୍ଖଳିତ ଆଲୋଚନାରେ ସେଗୁଡ଼ିକ ଯେପରିଭାବେ ନିହିତ, ତଦ୍ରୂପଭାବେ ସେ ସବୁକୁ ଯେବେ ପୂର୍ଣ୍ଣତଃ ଉଲ୍ଲେଖ କରାଯାଏ, ତେବେ ଦେଖାଯିବ ଯେ ବହୁକାଳରୁ ଅସମାହିତ ହୋଇ ରହି ଆସିଥିବା ଅନେକ ସମସ୍ୟାର ସମାଧାନ ସେଗୁଡ଼ିକ ବସ୍ତୁତଃ ଯୋଗାଇଦେଇ-ପାରିବ ।

ଏ ପ୍ରକାର ସମସ୍ୟାମାନଙ୍କ ଉଦାହରଣ ସତ୍ୟତା, ସତ୍ତା, ସାମାନ୍ୟ, ଅମୂର୍ତ୍ତି-କରଣ, ନଞ୍ଚର୍ଥକ ଘଟଣା, ସଦ୍‌ଗୁଣବନ୍ତ ଜିଭୁଜ, ଗୋଲାକାର ବର୍ଗକ୍ଷେତ୍ର ପ୍ରଭୃତି ସମ୍ପର୍କିତ ସମସ୍ୟା ମାନଙ୍କରେ ରହିଛି ।

ଆଲୋଚ୍ୟ ମତ ବା ସ୍ୱୀକାର୍ଯ୍ୟମାନଙ୍କ ମଧ୍ୟରୁ ଯେଉଁଗୁଡ଼ିକୁ ସୂତ୍ରବଦ୍ଧ କରିବା ସର୍ବାଧିକ ପ୍ରୟୋଜନ, ସେଗୁଡ଼ିକର ସଂଖ୍ୟା ହେଉଛି ଛଅ । ଏଗୁଡ଼ିକୁ ପ୍ରତୀକକରଣର ସୂତ୍ରାବଳୀ ବୋଲି ଅଭିହିତ କରାଯାଇଛି । ଏଗୁଡ଼ିକ ମାନସିକ ପ୍ରକ୍ରିୟାମାନଙ୍କ ସ୍ୱଭାବରୁ ନିଃସୃତ । କିନ୍ତୁ ପ୍ରତୀକାନ୍ୱିତକରଣକୁ ନିୟନ୍ତ୍ରିତ କରିବା ନିମନ୍ତେ ଏଗୁଡ଼ିକର ଆବଶ୍ୟକତା ଥିବାରୁ ଏଗୁଡ଼ିକୁ ପ୍ରତୀକ ଓ ନିର୍ଦ୍ଦେଶ ମାଧ୍ୟମରେ ବ୍ୟକ୍ତ କରାଯାଇଛି ।

ଏହି ସୂତ୍ର ଗୁଡ଼ିକର ପାଳନ ଦ୍ୱାରା ଏକ ସୁସ୍ପଷ୍ଟ ଗଦ୍ୟଶୈଳୀର ଗଠନ ସୁନିଶ୍ଚିତ ହୋଇଯାଏ, ଯଦିଓ ବିଜ୍ଞବ୍ୟକ୍ତିଙ୍କ ପକ୍ଷରେ ଏହା ଅବଶ୍ୟିକରୂପେ ଏକ ବୋଧଗମ୍ୟ ଶୈଳୀ ନ ହୋଇପାରେ ।

## ୬—ସଂଜ୍ଞା ସିଦ୍ଧାନ୍ତ

ପ୍ରତୀକମାନଙ୍କ ଯେ କୌଣସି ଆଲୋଚନା ବା ଅର୍ଥକରଣରେ ନିର୍ଦ୍ଦେଶ୍ୟଗୁଡ଼ିକୁ ଚିହ୍ନିବା ପାଇଁ ଆମର ଏକ ଉପାୟ ରହିବା ଆବଶ୍ୟକ । ଗୋଟିଏ ଶବ୍ଦ ବା ପ୍ରତୀକ

କାହାକୁ ନିର୍ଦ୍ଦେଶ କରୁଛୁ ?—ଏହି ପ୍ରଶ୍ନର ଉତ୍ତର ଏପରି ଏକ ପ୍ରତୀକ ବା ପ୍ରତୀକ-ମାନଙ୍କ ପ୍ରତିସ୍ଥାପନରେ ପର୍ଯ୍ୟବସିତ, ଯାହାକୁ ପ୍ରତିସ୍ଥାପନୀୟ ପ୍ରତୀକଠାରୁ ଅଧିକ ଉତ୍ତମରୂପେ ବୁଝି ହେବ ଯାଇପାରେ ।

ଏ ପ୍ରକାର ପ୍ରତିସ୍ଥାପନ ହେଉଛି ସଂଜ୍ଞା, ଆରମ୍ଭସ୍ଥଳରୂପେ ଜ୍ଞାତ ନିର୍ଦ୍ଦେଶ୍ୟ-ଗୁଡ଼ିକର ନିର୍ବାଚନ ଏବଂ ଏଗୁଡ଼ିକ ସହିତ ସଂଜ୍ଞେୟ ପଦର ସମ୍ବନ୍ଧ ଦ୍ୱାରା ସଂଜ୍ଞେୟ ପଦକୁ ଚିହ୍ନିବା ଏଥିରେ ନିହିତ ।

ସଂଜ୍ଞାପକ ପନ୍ଥାମାନଙ୍କ ଅର୍ଥାତ୍ ଏହି ଉଦ୍ଦେଶ୍ୟରେ ବହୁଳଭାବେ ସାଧାରଣତଃ ବ୍ୟବହାର କରାଯାଉଥିବା ସମ୍ବନ୍ଧ ଗୁଡ଼ିକର ସଂଖ୍ୟା ସୀମିତ, ଯଦିଓ ଅପକର୍ଷଣମୂଳକ ଚିନ୍ତାର ବିଶେଷଜ୍ଞମାନେ ଏଠାରେ ଅନ୍ୟାନ୍ୟ ପନ୍ଥା ଅବଲମ୍ବନ କରିବା ମଧ୍ୟ ସମ୍ଭବପର । ଉପଯୋଗିତା ଦୃଷ୍ଟିରୁ ସାମାନ୍ୟୀକରଣ ଦ୍ୱାରା ସେଗୁଡ଼ିକୁ ବସ୍ତୁତଃ ଆଠ ଗୋଟି ଶିରୋନାମର ବ୍ୟବହାର କରି ଭାଗ ଭାଗ କରାଯାଇ ପାରେ । ଏହି ସଂଜ୍ଞାପକ ପନ୍ଥାମାନଙ୍କ ସହିତ ପରିଚିତି କେବଳ ଯେ ଅନୁମାନ ଓ ମୁକ୍ତିଗତ ଆଚରଣକୁ ସୁଗମ କରିବାରେ ସହାୟକ ହୁଏ, ଏ କଥା ନୁହେଁ, ବହୁବିଧ ସମ୍ଭବପର ଦୃଷ୍ଟିକୋଣ-ଜନିତ ବାଚନିକ ସଙ୍କର-ବର୍ଗୀକରଣର ଗୋଲକଧନ୍ଦାରୁ ନିଷ୍କୃତି ପାଇବାର ଏକ ଉପାୟ ମଧ୍ୟ ଏହା ଯୋଗାଇଥାଏ ।

## ୭—ସୌନ୍ଦର୍ଯ୍ୟର ଅର୍ଥ

ଆଲୋଚନାର ଏକ ସର୍ବାଧିକ ବିଭ୍ରାନ୍ତିକର ବିଷୟକୁ ଅର୍ଥାତ୍ ସୌନ୍ଦର୍ଯ୍ୟ ବିଜ୍ଞାନକୁ ଏକ ଉଦାହରଣ ରୂପେ ନେଇ ବ୍ୟାବହାରିକ କ୍ଷେତ୍ରରେ ଉପର୍ଯ୍ୟୁକ୍ତ ସଂଜ୍ଞା ପ୍ରଣାଳୀ ପ୍ରୟୋଗର ଉପାଦେୟତା ପ୍ରତିପାଦନ କରାଯାଇ ପାରେ ।

ସୌନ୍ଦର୍ଯ୍ୟର ସଂଜ୍ଞା ବହୁବାର ଓ ବହୁ ଭିନ୍ନ ଭିନ୍ନଭାବେ ଦିଆଯାଇଛି । ପୁଣି, ସେହିପରି ବହୁବାର ଏହା ଅସଂଜ୍ଞେୟ ବୋଲି ମଧ୍ୟ ଘୋଷଣା କରାଯାଇଛି । କିନ୍ତୁ ବିଶିଷ୍ଟ ସଂଜ୍ଞାପକ ସମ୍ବନ୍ଧଗୁଡ଼ିକ ପ୍ରତି ଆମେ ଯଦି ଧ୍ୟାନ ଦେଉ, ତେବେ ଦେଖାଯିବ ଯେ ଏ ପର୍ଯ୍ୟନ୍ତ ପ୍ରସ୍ତାବିତ ସମସ୍ତ ସଂଜ୍ଞାକୁ ସୁବିଧାରେ ଷୋହଳ ଗୋଟି ସଂଜ୍ଞାରୂପେ ଉପସ୍ଥାପିତ କରାଯାଇ ପାରିବ ।

ତାପରେ ଦେଖାଯିବ ଯେ ଏଗୁଡ଼ିକ ମଧ୍ୟରୁ ପ୍ରତ୍ୟେକଟି ଏକ ସ୍ୱତନ୍ତ୍ର ନିର୍ଦ୍ଦେଶ୍ୟ-ପରିସର ଯୋଗାଉଛି । ଏ ପ୍ରକାର ଯେ କୌଣସି ଗୋଟିଏ ପରିସରର ଅଧ୍ୟୟନ ସେଥିରେ ଅନୁରକ୍ତ ବ୍ୟକ୍ତିମାନଙ୍କ ଦ୍ୱାରା କରାଯାଇ ପାରେ । ସ୍ପଷ୍ଟତଃ ଏତଦ୍ଦ୍ୱାରା ଏକ ବିଭ୍ରାନ୍ତି-

କାରକ ଅନେକାର୍ଥକତା ଉଦ୍‌ଘାଟିତ ହେଉଛି । ( ଅନିସ୍ପନ୍ନିତଭାବେ ବ୍ୟବହୃତ ସମସ୍ତ ପଦ କ୍ଷେତ୍ରରେ ଏ ପ୍ରକାର ଅନେକାର୍ଥକତାର ସମ୍ଭାବନା ଥାଏ । ) କିନ୍ତୁ ଏହା ସତ୍ତ୍ୱେ ଆମେ ଯଦି ଆମ ସମର୍ଥିତ ସଂଜ୍ଞାର ଏକ ସଂକ୍ଷିପ୍ତ ପ୍ରତିସ୍ଥାପନୀୟ ପଦରୂପେ ସୌନ୍ଦର୍ଯ୍ୟ ପଦକୁ ପ୍ରୟୋଗ କରିବା ଅଭ୍ୟାସକୁ ଅବ୍ୟାହତ ରଖିବାକୁ ସ୍ଥିର କରୁଁ, ତେବେ କେବଳ ନୈତିକତା ଓ ପ୍ରୟୋଜନୀୟତା ଦୃଷ୍ଟିରୁହିଁ ଆମେ ତାହା କରିବା; ଏବଂ ଏପ୍ରକାର ଆଚରଣ ଯେଉଁ ସମସ୍ତ ବିଭ୍ରାନ୍ତିର ସୃଷ୍ଟି କରିବା ସୁନିଶ୍ଚିତ, ତଜ୍ଜନିତ ସଙ୍କଟର ଆଶଙ୍କାକୁ ସ୍ୱେଚ୍ଛାରେ ବରଣ କରିବା ।

ପ୍ରତୀକାତ୍ମକ ବ୍ୟବହାରମାନଙ୍କ ବ୍ୟତୀତ ସୌନ୍ଦର୍ଯ୍ୟ ପଦର ସଂବେଗାତ୍ମକ ବ୍ୟବହାରମାନ ମଧ୍ୟ ରହିଛି । ସୌନ୍ଦର୍ଯ୍ୟ ଅସଂଜ୍ଞେୟ—ଏହି ମତ ପାଇଁ ବହୁକ୍ଷେତ୍ରରେ ଏହି ସଂବେଗାତ୍ମକ ବ୍ୟବହାରମାନହିଁ ଦାୟୀ, କାରଣ ଏକ ସଂବେଗାତ୍ମକ ପଦ ରୂପେ ଏହାର କୌଣସି ସନ୍ତୋଷଜନକ ପ୍ରତିସ୍ଥାପନୀୟ ଶାବ୍ଦିକ ଅଭିବ୍ୟକ୍ତି ନାହିଁ । ପ୍ରତୀକାତ୍ମକ ଓ ସଂବେଗାତ୍ମକ ବ୍ୟବହାରମାନଙ୍କ ମଧ୍ୟରେ ପାର୍ଥକ୍ୟ ରକ୍ଷା କରିବାର ଅସାଫଲ୍ୟ ଆଲୋଚନା ଓ ଗବେଷଣା କ୍ଷେତ୍ରରେ ବହୁ ବିଭ୍ରାନ୍ତିର ସୃଷ୍ଟି କରିଛି ।

## ୮ । ଦାର୍ଶନିକ ମାନଙ୍କ ଅର୍ଥ

ଉପର୍ଯ୍ୟୁକ୍ତ ରୀତିରେ ଅଗ୍ରସର ହୋଇ 'ଅର୍ଥ' ପଦଟିର ପରୀକ୍ଷା କଲେ, ଦେଖାଯିବ ଯେ ସର୍ବୋତ୍ତମ ଦାର୍ଶନିକମାନଙ୍କ ଲେଖାରେ ଏହି ପଦ ସମ୍ବନ୍ଧରେ ବହୁ ପରିମାଣରେ ପରସ୍ପର ପୃଥକ୍ ହୋଇଥିବା ଗୁଡ଼ିଏ ମତ ରହିଛି । ମାଇଣ୍ଡ ଓ ବ୍ରେନ ପତ୍ରିକା ମାଧ୍ୟମରେ କରାଯାଇଥିବା ଏଇ ନିକଟ ଅତୀତର ବାଦାନୁବାଦ ପ୍ରଦର୍ଶନ କରି-ଦେଇଛି ଯେ ଏହି ପଦର ବ୍ୟବହାରମାନଙ୍କରୁ ଉତ୍ପନ୍ନ ଅନେକାର୍ଥତାର ଆଲୋଚନା କ୍ଷେତ୍ରରେ ଅଭିଜ୍ଞ ଆଲୋଚକମାନେ ମଧ୍ୟ ନିଜକୁ ଅସହାୟ ମନେ କରନ୍ତି । ଆମେରିକୀୟ ଚିନ୍ତାନାୟକମାନଙ୍କ ମଧ୍ୟରେ ସର୍ବାଧିକ ସମର୍ଥ ଓ ସର୍ବାଧିକ କର୍ମପ୍ରବଣ ବ୍ୟକ୍ତିଙ୍କ ଗୋଷ୍ଠୀର, ଅର୍ଥାତ୍ ୧୯୨୧ ସାଲର ସମୀକ୍ଷାତ୍ମକ ବାସ୍ତବବାଦୀମାନଙ୍କର, ଅନୁସୃତ ପ୍ରଣାଳୀରେ ମଧ୍ୟ ସେହି ଏକ ପ୍ରକାର ଅସାରଗତା ପରିଲକ୍ଷିତ ହୋଇଛି । ପୁଣି ଅଧ୍ୟାପକ ମ୍ୟୁନଷ୍ଟେରବର୍ଗଙ୍କ ପରି ଜଣେ ପ୍ରଭାବଶାଳୀ ବିଶେଷଜ୍ଞଙ୍କ ଦ୍ୱାରା କରାଯାଇଥିବା ବ୍ୟବହାର ମଧ୍ୟ ସମଭାବରେ ଆପତ୍ତିଜନକ ହୋଇଛି । ବାସ୍ତବିକ, ସମସ୍ତ ସମ୍ପ୍ରଦାୟର ପ୍ରସିଦ୍ଧ ଲେଖକମାନଙ୍କ ପ୍ରୟୋଗ ପଦ୍ଧତିର ସଯତ୍ନ ଅଧ୍ୟୟନ ଦ୍ୱାରା ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେଉଁ ଯେ ଯଦିଓ ଏହି ପଦଟି ପର୍ଯ୍ୟାପ୍ତ ପରିମାଣରେ ବୋଧଗମ୍ୟ ବୋଲି ଏକ ଅବ୍ୟକ୍ତ ପ୍ରାକ୍‌ସ୍ୱୀକାର ରହିଛି, ଏହାର ବ୍ୟବହାର ରୀତିକୁ ନିୟନ୍ତ୍ରିତ କରିବା ନିମନ୍ତେ କୌଣସି ନୀତି ନାହିଁ କି ବିଭ୍ରାନ୍ତି ନିରାକରଣ ନିମନ୍ତେ କୌଣସି ପ୍ରବନ୍ଧ ନାହିଁ ।

## ୯—ଅର୍ଥର ଅର୍ଥ

କିନ୍ତୁ ସମସ୍ୟାଟିକୁ ବୈଜ୍ଞାନିକ ପଦ୍ଧତିରେ ସମାଧାନ କରିବାର ପ୍ରୟାସ ଯେତେବେଳେ କରାଯାଏ, ସେତେବେଳେ ଆମେ ଦେଖୁଁ ଯେ ଏହି କ୍ଷେତ୍ରରେ ସର୍ବାଧିକ ଭ୍ରମଶୂନ୍ୟତା ଓ ନିର୍ଭରଯୋଗ୍ୟତା ବାଞ୍ଛନୀୟ ହୋଇଥିଲେ ମଧ୍ୟ ଏଠାରେ ଫଳପ୍ରଦଭାବେ ଅନ୍ତତଃ ଛୋଟିଆ ବିଭିନ୍ନ ଶ୍ରେଣୀର ସଙ୍କେତର ପାର୍ଥକ୍ୟ ରକ୍ଷା କରାଯାଇପାରେ ।

ଅନ୍ୟାନ୍ୟ କ୍ଷେତ୍ରରେ, ଯେଉଁ ନିର୍ଦ୍ଦିଷ୍ଟ ବିଷୟରେ ଅନେକାର୍ଥତା ଜାତ ହୁଏ, କେବଳ ସେହି ବିଷୟ ନିମିତ୍ତ ହିଁ ତାହା ମାରାତ୍ମକ ହୋଇପାରେ । କିନ୍ତୁ ଅର୍ଥ କ୍ଷେତ୍ରରେ, ଏପ୍ରକାର ଅନେକାର୍ଥତା ଆଲୋଚନାଟି ହିଁ ଯେ କ'ଣ, ତାହାକୁ ମଧ୍ୟ ସନ୍ଦେହାତ୍ମକ କରିପକାଏ । ଯେ କୌଣସି ବିଷୟରେ ଯେ କୌଣସି ମତାମତ ଦେବାରେ 'ଅର୍ଥ' ପଦର କୌଣସି ନା କୌଣସି ଏକ ମତ ପ୍ରାକ୍‌ସ୍ୱୀକୃତ ହୋଇ ରହିଥାଏ । ସୁତରାଂ 'ଅର୍ଥ' ସମ୍ବନ୍ଧରେ ମତର ଏକ ବାସ୍ତବ ପରିବର୍ତ୍ତନର ତାତ୍ପର୍ଯ୍ୟରେ ଜଣେ ସଂରକ୍ଷଣଶୀଳ ଚିନ୍ତକ ପକ୍ଷରେ ତାହାର ସମସ୍ତ ମତର ପରିବର୍ତ୍ତନ ନିହିତ । ତିନୋଟି ଶିରୋନାମର ଅନ୍ତର୍ଭୁକ୍ତ କରି ଅର୍ଥର ସଙ୍କେତମାନଙ୍କ ଆଲୋଚନା କରାଯାଇ-ପାରେ । ପ୍ରଥମ ବିଭାଗରେ ଭାଷାଦ୍ୱାରା ସୃଷ୍ଟ କାଳ୍ପନିକ ବସ୍ତୁମାନ ରହିଥାଏ । ଦ୍ୱିତୀୟ ବିଭାଗ ସାମୟିକ ଓ ଅନିୟମିତ ବ୍ୟବହାର ସୀତଗୁଡ଼ିକୁ ଗୋଷ୍ଠୀବଦ୍ଧ ଓ ପୃଥକ୍ ପୃଥକ୍ କରି ରଖେ । ତୃତୀୟ ବିଭାଗଟି ସାଧାରଣଭାବେ ସଙ୍କେତ ଓ ପ୍ରତୀକ ପରିସ୍ଥିତି-ମାନଙ୍କୁ ଅନ୍ତର୍ଭୁକ୍ତ କରେ ।

ଏ ପ୍ରକାର ଏକ ବିବରଣୀର ଗୋଟିଏ ଚିତ୍ତାକର୍ଷକ ପରିଣତି ହେଉଛି ଯେ ଆମେ 'ଅର୍ଥ' ପଦଟିକୁ ହିଁ ଆପାତତଃ ପରିହାର କରିବାକୁ ଏବଂ ତାହା ସ୍ଥାନରେ 'ଅଭିପ୍ରାୟ', 'ମୂଲ୍ୟ' 'ନିର୍ଦ୍ଦେଶ୍ୟ', 'ସବେଗ' ପରି ଅନ୍ୟାନ୍ୟ ପଦ ପ୍ରୟୋଗ କରିବାକୁ ବାଧ୍ୟ ହେଉ; ଏଠାରେ ଏହି ପଦଗୁଡ଼ିକ 'ଅର୍ଥ'ର ସମାର୍ଥକ ପଦରୂପେ ବ୍ୟବହୃତ ହୋଇଥାଏ । ପକ୍ଷାନ୍ତରେ ଅର୍ଥ ପଦ ପରିବର୍ତ୍ତେ ଆମେ ଏକ ସମ୍ପ୍ରସାରିତ ପ୍ରତୀକ ବ୍ୟବହାର କରୁ, ଏବଂ ତାହା ସହଜରେ ବୁଝି ହେବା ପରିବର୍ତ୍ତେ, ଟିକିଏ କଷ୍ଟ ସ୍ୱୀକାର କଲାପରେ ହିଁ ବୁଝି ହୁଏ ।

ଏହି ସମ୍ପ୍ରସାରଣଗୁଡ଼ିକର ଯତ୍ନରୁ ଅଧ୍ୟୟନ ଦ୍ୱାରା ଗୋଟିଏ ବିଷୟରେ ସନ୍ଦେହର ଅବକାଶ ରହୁନାହିଁ; ଯାହାକୁ ଦାର୍ଶନିକ ଓ ତତ୍ତ୍ୱବିଜ୍ଞାନୀମାନେ ଏକ ଦୁର୍ବୋଧ୍ୟ ଓ ଅନୁପମ ସମ୍ପ୍ରତ୍ୟୟରୂପେ ବହୁକାଳରୁ ବିବେଚନା କରିଆସୁଥିଲେ ଏବଂ ଯାହାକୁ ସେମାନେ

ନିଜର ତଥା ଅନୁରୂପ ଶବ୍ଦ ସମ୍ଭାର ପ୍ରୟୋଗକୁ ସ୍ୱୀକୃତ ଦେଉଥିବା ବିବରଣାତ୍ମକ ମନସ୍ତତ୍ତ୍ୱବିତଙ୍କ ସ୍ୱତନ୍ତ୍ର ଅଧ୍ୟୟନ ପରିସରର ଏକ ସମ୍ପୂର୍ଣ୍ଣଭାବେ ଅନ୍ତର୍ଭୁକ୍ତ ବିଷୟ ବୋଲି ପରିଚିହ୍ନିତ କରି ଆସୁଥିଲେ, ତାହା ଏବେ ଅର୍ଦ୍ଧଶତାବ୍ଦୀରୁ ଅଧିକକାଳ ଧରି ବିଭିନ୍ନ ବିଶିଷ୍ଟ ବିଜ୍ଞାନମାନଙ୍କ ଦ୍ୱାରା ବିଶଦଭାବେ ଅଧ୍ୟୟନ ଓ ବିଶ୍ଳେଷଣ କରାଯାଉଛି । ଗତ କେତେ ବର୍ଷ ମଧ୍ୟରେ ଜୀବବିଜ୍ଞାନରେ ଯେଉଁ ଅଗ୍ରଗତି ଘଟିଛି, ଏବଂ ମୃତ୍ତ ଓ ବଂଶାନୁକ୍ରମରେ ଯେଉଁ ଶରୀରତାତ୍ତ୍ୱିକ ଗବେଷଣା କରାଯାଇଛି; ତାହାର ପରିଣତ ସ୍ୱରୂପ ସଙ୍କେତର 'ଅର୍ଥ' ସାମୂହିକ ବିଚାରର ଦୃଷ୍ଟିରୁ ଆଉ ସନ୍ଦେହମୂଳକ ରହୁନାହିଁ । ଅଧିକନ୍ତୁ ଏତଦ୍ୱାରା ପ୍ରଦର୍ଶିତ ହୋଇଛି ଯେ ଚିନ୍ତା ଓ ଭାଷାକୁ ମଧ୍ୟ ଅନୁରୂପଭାବେ ଅଧ୍ୟୟନ କରାଯିବା ଆବଶ୍ୟକ ।

## ୧୦ । ପ୍ରତୀକ ପରିସ୍ଥିତି

ବିଜ୍ଞାନରୂପେ ପ୍ରତୀକତନ୍ତ୍ର ବିକାଶର ପ୍ରଥମ ସୋପାନ ଏହିପରିଭାବେ ସମ୍ପୂର୍ଣ୍ଣ ହୋଇଛି ଏବଂ ଦେଖାଯାଇଛି ଯେ ଏହା ହେଉଛି ଅନ୍ୟାନ୍ୟ ସମସ୍ତ ବିଜ୍ଞାନର ଏକ ଅପରିହାର୍ଯ୍ୟ ପ୍ରାରମ୍ଭିକ ବିଷୟ । ବ୍ୟାକରଣ ଓ ତର୍କଶାସ୍ତ୍ରର ଯେଉଁ ଅଂଶଗୁଡ଼ିକୁ ଏଥିସହିତ ସଂଯୋଗ କଲେ ଅନାବଶ୍ୟକତା ଦୋଷ ଉପୁଜିବାର ସମ୍ଭାବନା ନାହିଁ, ସେହି ଅଂଶଗୁଡ଼ିକୁ ଏହା ସହିତ ଗ୍ରହଣ କରାଯାଇପାରେ । ଏହି ସମଗ୍ର ବିଷୟଟି ଗଣିତର ଦର୍ଶନ ଆଖ୍ୟା ଦେଇ ତଦ୍ଦ୍ୱାରା ଯାହା କରାଯାଇଛି ଏବଂ ଏପର୍ଯ୍ୟନ୍ତ ଯାହାକୁ ଅତିପଦାର୍ଥବିଜ୍ଞାନ [ତତ୍ତ୍ୱବିଜ୍ଞାନ] ବୋଲି ବିବେଚନା କରି ତଦ୍ଦ୍ୱାରା ଯାହା କରାଯାଇଛି—ଏହି ଉଭୟର ବିଷୟବସ୍ତୁ ସୁନିଶ୍ଚିତରୂପେ ଯୋଗାଇ ପାରିବ । ଏତଦ୍ୱାରା ବୈଜ୍ଞାନିକ ଗବେଷଣାର ଉଭୟ ପ୍ରାନ୍ତସ୍ଥ କାର୍ଯ୍ୟରେ ସହାୟତା ମିଳିବ ।

ପ୍ରତୀକମାନଙ୍କ ସମସ୍ତ ସମୀକ୍ଷାମୂଳକ ଅର୍ଥକରଣରେ ପ୍ରତୀକ ପରିସ୍ଥିତିକୁ ବୁଝିବାର ଆବଶ୍ୟକତା ରହିଛି । ଯେଉଁ ଅବସ୍ଥାରେ କେବଳ ନିର୍ଦ୍ଦିଷ୍ଟ ପ୍ରତୀକମାନଙ୍କ ଦ୍ୱାରା ହିଁ ନିର୍ଦ୍ଦେଶ କରିବା ସମ୍ଭବପର (ଶାବ୍ଦିକ ନିର୍ଭରଶୀଳତା) ଏବଂ ଯେଉଁ ଅବସ୍ଥାରେ ପ୍ରତୀକମାନଙ୍କ ନିର୍ବାଚନରେ ସ୍ୱାଧୀନତା ରହିଛି (ଶାବ୍ଦିକ ସ୍ୱାତନ୍ତ୍ର୍ୟ)—ଏହି ଦୁଇଟିର ପାର୍ଥକ୍ୟ ହେଉଛି ଏ କ୍ଷେତ୍ରରେ ମୁଖ୍ୟ ପାର୍ଥକ୍ୟ । ଅପକୃଷ୍ଟ ଅବସ୍ଥାରେ ଥାଉ ଅଥବା ଉତ୍କୃଷ୍ଟ ଅବସ୍ଥାରେ ଥାଉ, ଭାଷା ପ୍ରଣାଳୀର ପରୀକ୍ଷା ମଧ୍ୟ ଏହି ପାର୍ଥକ୍ୟରୁ ଆରବ୍ଧ ହେବା ବିଧେୟ । ଅଧିକନ୍ତୁ ଲକ୍ଷ୍ୟକରିବା ଗୁରୁତ୍ୱପୂର୍ଣ୍ଣ ଯେ ସଂକୀର୍ଣ୍ଣ ଅର୍ଥରେ ପ୍ରତୀକାନୁତକରଣ ବ୍ୟତୀତ ଶବ୍ଦଗୁଡ଼ିକର ଆହୁରି କେତେକ କାର୍ଯ୍ୟ ମଧ୍ୟ ରହିଛି । ଏହି ଉଦ୍ଦୀପନାମୂଳକ ବିଚାରଗୁଡ଼ିକର ଅଧ୍ୟୟନ ସ୍ୱଭାବତଃ କାବ୍ୟିକଭାଷାର ଅବଲମ୍ବନ ମାନଙ୍କ ଏବଂ ଏହି ଭାଷାକୁ ସଙ୍କେତମୂଳକ ବା ବୈଜ୍ଞାନିକ ଭାଷାଠାରୁ ପୃଥକ କରିବାର ଉପାୟମାନଙ୍କ

ଏକ ବିବରଣୀ ଆଡ଼କୁ ଅଗ୍ରସର କରାଇନିଏ । ଏହିପରିଭାବେ ଦେଖାଯିବ ଯେ ପ୍ରତୀକ-ତନ୍ତ୍ରର ପ୍ରବିଧି ହେଉଛି ସାହିତ୍ୟିକ ସୌନ୍ଦର୍ଯ୍ୟବିଜ୍ଞାନର ମୁଖ୍ୟ ଉପକରଣମାନଙ୍କ ମଧ୍ୟରେ ଅନ୍ୟତମ ।

ଶିକ୍ଷାକ୍ଷେତ୍ରରେ ଏବଂ ସାମୂହିକଭାବେ ଆଲୋଚନା କ୍ଷେତ୍ରରେ ଏହାର ପ୍ରୟୋଗ-ଦ୍ୱାରା ଏହାର ବ୍ୟାବହାରିକ ଗୁରୁତ୍ୱ ଉପଲବ୍ଧ ହେବ, କାରଣ ଯେତେବେଳେ ଚିନ୍ତା ଉପରେ ପ୍ରଭାବ ବୃଦ୍ଧିପାଇଯାଏ ଏବଂ ଭାଷାଗତ ଭ୍ରାନ୍ତଧାରଣାରୁ ଉଦ୍ଭୂତ କାଳ୍ପନିକ ବସ୍ତୁଗୁଡ଼ିକ ନିରାକୃତ ହୋଇଯାଏ, ସେତେବେଳେ ଅର୍ଥକରଣର ଅଧିକ ଫଳପ୍ରଦ ପଦ୍ଧତି ପ୍ରୟୋଗର ଓ ଏକ କଥୋପକଥନ କଳାର ପଥ ଉନ୍ମୁକ୍ତ ହୋଇଯାଏ । ଏତଦ୍ଦ୍ୱାରା କଥୋପକଥନର ପ୍ରଥାଗତ ଅବାଞ୍ଛିତ ପରିବେଶର ଉଦ୍ଭବ ହେବନାହିଁ ଏବଂ ତାହା ଅଂଶୀଦାରମାନଙ୍କ ଅଧିକ ଉପଭୋଗ୍ୟ ହେବ ।

# ପରିଶିଷ୍ଟ-କ

## ବ୍ୟାକରଣ ସମ୍ବନ୍ଧରେ ପଦେ

"ଅବୋଧ ଅପକର୍ଷଣ, ପ୍ରତାରଣାପୂର୍ଣ୍ଣ ଦାବୀସମ୍ବଳିତ ହୋଇଥିଲେ ସୁଦ୍ଧା ଅଧିକାଂଶତଃ ଶୂନ୍ୟଗର୍ଭ ସଜ୍ଞା, ମିଥ୍ୟା ସୂତ୍ର, ଆକାର ଗୁଡ଼ିକର ଅସମ୍ଭାଳ ଧରଣର ତାଲିକା—ମୁକ୍ତି, ସତ୍ୟତା ଓ ଶିକ୍ଷା ବିରୁଦ୍ଧରେ କୃତ ଏହି ସବୁ ପାପର ବିଭିନ୍ନ ପ୍ରକାର ଦୃଷ୍ଟାନ୍ତମାନ ପାଇବାକୁ ଯେ କୌଣସି ଏକ ପାଠ୍ୟ ପୁସ୍ତକର ଅଳ୍ପ କେତେକ ପୃଷ୍ଠାମାତ୍ର ଜଣକୁ ଓଲଟାଇବାକୁ ପଡ଼ିବ।" ଆଧୁନିକ ବ୍ୟାକରଣ-ଶିକ୍ଷାର ଅଧିକାଂଶ ବିଷୟକୁ ନିନ୍ଦାକରିବା ନିମନ୍ତେ ଏହା ତୀବ୍ର ଭାଷାର ପ୍ରୟୋଗ ହୋଇଯାଉଛି । କିନ୍ତୁ ପୂର୍ବବର୍ତ୍ତୀ ୧୦ମ ପରିଚ୍ଛେଦରେ ଆମେ ଦେଖିଛୁଁ ଯେ ଅଧ୍ୟାପକ ବ୍ରୁନଟ୍ ତାଙ୍କର ଏହି ଉକ୍ତ ରହିଥିବା ଗ୍ରନ୍ଥର ପ୍ରକାଶନ (୧)ପରେ ଭାଷାତ୍ମକ ବିଶ୍ଳେଷଣ ଉପରେ ପନ୍ଦର ବର୍ଷକାଳ ଅଧିକ ଗବେଷଣା କଲାପରେ ମଧ୍ୟ ତାହାକୁ ପରିବର୍ତ୍ତନ କରିବା ନିମନ୍ତେ କୌଣସି କାରଣ ଖୋଜିପାଇ ନଥିଲେ । ଉପସ୍ଥିତ ଗ୍ରନ୍ଥର ପାଠ୍ୟକ୍ରମରେ ଆମେ ଦେଖିବାକୁ ପାଉଛୁଁ ଯେ ଶାବ୍ଦିକ ଅନ୍ଧବିଶ୍ୱାସ, ଅପ୍ରଚଳିତ ଦର୍ଶନ ଓ କୁବୋଧ ତର୍କର ଏକ ଅସମଞ୍ଜସ ସମଷ୍ଟିକୁ ବଚନବିନ୍ୟାସ-ତତ୍ତ୍ୱର କାର୍ଯ୍ୟ ତୁଲାଇବାକୁ ବିନିଯୋଗ କରାଯାଉଛି । ଏହି ବିଷୟକୁ ବିଗ୍ଭର କଲେ, ବିଂଶ ଶତାବ୍ଦୀର ଶିଶୁକୁ ଏବେ ସୁଦ୍ଧା ଯେଉଁ ବୈୟାକରଣିକ ଖାଦ୍ୟ ଯୋଗାଇ ପରିପୁଷ୍ଟ କରାଯାଉଛି, ତଦ୍‌ବିରୁଦ୍ଧରେ ଯେ କୌଣସି ଭାଷାର ପ୍ରୟୋଗ ଯେ ସର୍ବୋତ୍ତମ-ଜ୍ଞାନର ଅଧିକାରୀ ଭାଷାବିଦ୍‌ମାନଙ୍କୁ ଅତ୍ୟଧିକ ତୀବ୍ର ମନେ ହେବ ନାହିଁ, ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ପ୍ରଚଳିତ ବୈୟାକରଣିକ ବର୍ଗୀକରଣରେ କେତେକ ଦୃଷ୍ଟାନ୍ତ ଦେବା ପରେ ବ୍ରୁନଟ ତାହା ଉପରେ ମନ୍ତବ୍ୟ ଦେଇଛନ୍ତି —

[୧] L' Enseignement de la Langue Francaise, ପୃ ୩

"ଓଃ ! ଏହି ବୈୟାକରଣିକ ବର୍ଗୀକରଣମାନ ! ବିଜ୍ଞାନର ଅନ୍ୟାନ୍ୟ ବିଭାଗ ନିମନ୍ତେ କି ଆଦର୍ଶ ଯୋଗାଉଛି ! 'ବୈୟାକରଣିକ' [grammatikal] ବୋଲି କୁହାଯାଉଥିବା ବିଶ୍ଳେଷଣରେ ପୁଣି ସେହି ଭାଷା ରହିଥିବା ବିଷୟ ଲକ୍ଷ୍ୟ କରାଯାଇପାରେ । ଉଦାହରଣ ସ୍ୱରୂପ, Its enleverent tout Cequis'y trouvait [ସେଠାରେ ଯାହା ମିଳିଲା, ତାହା ସମସ୍ତ ସେମାନେ ନେଇଗଲେ] ବାକ୍ୟର ବିଗ୍ରହ କର ।

Tout [ସମସ୍ତ]; ଅନିର୍ଦ୍ଦିଷ୍ଟାର୍ଥକ ବିଶେଷଣ, ପୁଂଲିଙ୍ଗ ଏକ ବଚନ Ce [ତାହା]କୁ ବିଶେଷିତ କରୁଛି (!!)

Ce [ତାହା]; ନିର୍ଦ୍ଦେଶାତ୍ମକ ସର୍ବନାମ, ସେହି ବସ୍ତୁ ପରିବର୍ତ୍ତେ ବ୍ୟବହୃତ [!], ନେଇଗଲେ କ୍ରିୟାର ସାକ୍ଷାତ କର୍ମ କାରକ ।

qui [ଯାହା]; ସମ୍ବନ୍ଧାତ୍ମକ ସର୍ବନାମ, Ce [ତାହା] ସହିତ ଅନ୍ୱିତ, ତୃତୀୟ ପୁରୁଷ ଏକବଚନ, ମିଳିଲା କ୍ରିୟାର କର୍ତ୍ତାକାରକ ।

S' ଅର୍ଥାତ୍ Se [ନିଜେ], ବ୍ୟକ୍ତି ବାଚକ ସର୍ବନାମ (?!) ତୃତୀୟ ପୁରୁଷ ଏକ ବଚନ, ମିଳିଲା କ୍ରିୟାର ସାକ୍ଷାତ୍ କର୍ମକାରକ (?!)

(Cowrrier des examenes de 1908 ପୃ ୩୦୨)

"କି ସୁନ୍ଦର ! ଏକ ଅନିର୍ଦ୍ଦିଷ୍ଟାର୍ଥକ ଶବ୍ଦ, କିନ୍ତୁ ତଥାପି ତାହା ନିର୍ଦ୍ଦିଷ୍ଟ କରେ ! ଗୋଟିଏ ସର୍ବନାମ, ତାହା, ସମସ୍ତ ଗୋଟିଏ ବୁଝାଯାଉଥିବା ବିଶେଷ୍ୟ ପରିବର୍ତ୍ତେ ଆବଶ୍ୟକ ରୂପେ ବ୍ୟବହୃତ ! ପୁଣି, ମିଳିଲା କ୍ରିୟାର ସର୍ବନାମ ବ୍ୟକ୍ତିବାଚକ ଏବଂ ଏକ ସାକ୍ଷାତ୍ କର୍ମକାରକ ! Ce maretial (ସେହିବସ୍ତୁ) ଯାହାକୁ କଳ୍ପନା କରିବାକୁ ପଡ଼ିବ ଏବଂ ପରିଶେଷରେ ମିଳିବ !!"

ତାଙ୍କର ସର୍ବଶେଷ ମନ୍ତବ୍ୟ ହେଉଛି, ଏ ପ୍ରକାର କକ୍ଷଚ୍ୟୁତ ବିଷୟାବଳୀ ଦ୍ୱାରା ଗଠିତ ଶିକ୍ଷା ପାଇବା ନିମନ୍ତେ ବହୁ ଶତ ସହସ୍ର ଶିଶୁଙ୍କୁ ବାଧ୍ୟ କରା ଯାଉଥିବା ବିଷୟ ଚିନ୍ତା କଲେ, ଯେ କୌଣସି ଲୋକର ମନ ସେମାନଙ୍କ ପ୍ରତି ଅପାର କରୁଣାରେ ବିଗଳିତ ହୋଇଯିବ ।" (୧)

ପ୍ୟାରିସର ମୁସି ପେଡ଼ା ଗୋଜିକ୍ [ଶିକ୍ଷା ବିଜ୍ଞାନ ସଂଗ୍ରହାଳୟ]ଠାରେ ୧୯୦୭ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ଅଧିବେଶନଠାରୁ ଆରମ୍ଭ କରି ଭିନ୍ନଭିନ୍ନ ଦେଶରେ ବୈୟା-

(୧) କଥିତ ଗ୍ରନ୍ଥ, ପୃ ୧୬

କରଣିକ ପରମ୍ପରାର ଆଲୋଚନା ସମ୍ବନ୍ଧେ ବିବିଧ ପ୍ରକାର କମିଟିମାନ କାର୍ଯ୍ୟକାରୀ ହୋଇଛି । ଉଦ୍ଦେଶ୍ୟ ହେଉଛି ଏହି ଅସଙ୍ଗତିମାନଙ୍କ ମଧ୍ୟରୁ ସର୍ବାଧିକ ସୁପ୍ରତ୍ୟକ୍ଷ ଅସଙ୍ଗତିମାନଙ୍କ ନିରାକରଣ । ଇଂରାଜୀ କମିଟିର ସୁପାରିଶଗୁଡ଼ିକ ୧୯୧୧ ସାଲରେ ପ୍ରକାଶିତ ହୋଇଥିଲା ଏବଂ ସେଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ବିଭିନ୍ନ ଭାଷାପର୍ଷଦ ଏବେ ସଚେଷ୍ଟ ରହିଛନ୍ତି । କିନ୍ତୁ ଏ ପ୍ରକାର ପ୍ରୟୋଗ କ୍ଷେତ୍ରରେ ଦୁଇଟି ଭିନ୍ନଭିନ୍ନ ସମସ୍ୟା ନିହିତ । ଗୋଟିଏ ସମସ୍ୟା ହେଉଛି ଯେ କୌଣସି ଗୋଟିଏ ଭାଷାର ବୈୟାକରଣିକ ପରିଭାଷାରେ ରହିଥିବା ସୁପ୍ରତ୍ୟକ୍ଷ ଅସଙ୍ଗତିଗୁଡ଼ିକର ନିରାକରଣ ଏହି କ୍ଷେତ୍ରରେ ସଂଶୋଧିତ ପରିଭାଷାର ବାଞ୍ଛନୀୟତା ଏବଂ କମିଟି ଦ୍ୱାରା କରାଯାଇଥିବା କାର୍ଯ୍ୟର ମୂଲ୍ୟ ସମ୍ବନ୍ଧରେ ବିଶେଷ କୌଣସି ବାଦବିବାଦର ସ୍ଥାନ ନାହିଁ । ଅପର ସମସ୍ୟାଟି ଯାହା ସହିତ ସଂପୃକ୍ତ ତାହା ହେଉଛି "ସମସ୍ତ ବ୍ୟାକରଣ ଶିକ୍ଷାରେ ମୂଳରୁ ଯେଉଁ ଶବ୍ଦ ସମ୍ଭାର ପ୍ରବର୍ତ୍ତିତ କରାଯିବ, ତାହାର ଗୁରୁତ୍ୱ । ତାହା ଏପରି ଏକ ଶବ୍ଦ ସମ୍ଭାର ହେବା ଉଚିତ ଯାହା ପରବର୍ତ୍ତୀ କାଳରେ ଯେକୌଣସି ଅନ୍ୟ ଏକ ଭାଷା ଶିକ୍ଷା କ୍ଷେତ୍ରରେ ନ୍ୟୂନତମ ପରିବର୍ତ୍ତିତ କରି ପ୍ରୟୋଗଯୋଗ୍ୟ ହୋଇ ପାରିବ । (୧) ଏହା ସତ୍ୟ ଯେ "ସମସ୍ତ ସମପ୍ରକାର ଭାଷାର ସାଧାରଣ ଗଠନ ସମ୍ବନ୍ଧୀୟ ନୀତିଗୁଡ଼ିକୁ ଏକ ସମଆକାରବିଶିଷ୍ଟ ପାରିଭାଷିକ ଶବ୍ଦସମ୍ଭାର ସୁସ୍ପଷ୍ଟ କରିଦିଏ । ପଦମାନଙ୍କ ଅନାବଶ୍ୟକ ବିଭିନ୍ନତା ଦ୍ୱାରା ଭାଷାମାନଙ୍କ ମୌଳିକ ଏକତା ଅପ୍ରକାଶିତ ରହିଯାଏ ।" (୨) କିନ୍ତୁ ସ୍ମରଣରେ ରଖିବା ଆବଶ୍ୟକ ଯେ ଭାରତୀୟ-ୟୁରୋପୀୟ ବୈୟାକରଣମାନଙ୍କ ଦ୍ୱାରା ଗଠନଗତ କଳ୍ପିତ ସାଦୃଶ୍ୟ ଉପରେ ପ୍ରାଧାନ୍ୟ ଅର୍ପଣ ମାନବ ଜାତିତତ୍ତ୍ୱବିଦଙ୍କ ପ୍ରାଚୀନ କଥନର ଅଧ୍ୟୟନରେ ଏକ ମୁଖ୍ୟ ବାଧା ହୋଇ ରହିଛି । କିନ୍ତୁ ଏହି ଅଧ୍ୟୟନହିଁ ହେଉଛି ସେମାନଙ୍କ ଅଧ୍ୟୟନୀୟ ବିଷୟବସ୍ତୁର ଏକ ଅପରିହାର୍ଯ୍ୟ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଶାଖା । ଯେଉଁ ଭାଷାଗୋଷ୍ଠୀରେ ଇଂରାଜୀ ରହିଛି, ସେଠାରେ ସାଦୃଶ୍ୟ ଲକ୍ଷ୍ୟ କରିବା

---

(୧) Report of Government Committce on Classics, ପୃ ୧୬୩

(୨) Report of Government Committee on Modern Languages, ପୃ ୫୫ ।

ନିମନ୍ତେ ଏକ ପଦ୍ଧତି ରହିବା ଉପାଦେୟ । (୧) କିନ୍ତୁ ଯେଉଁ ଏକରୂପତା ଉପରେ ଏହିପରିଭାବେ ପ୍ରାଧାନ୍ୟ ଅର୍ପଣ କରାଯାଏ, ତାହା ସମସ୍ତ ଭାଷାର ଏବଂ ବସ୍ତୁର ଚିନ୍ତାରହିଁ ଆବଶ୍ୟକତା ବୋଲି ବିବେଚିତ ହେବାର ଆଶଙ୍କା ସର୍ବଦା ରହିଛି । ତାପରେ, ଅଭିବ୍ୟକ୍ତିର ଏହି ତଥାକଥିତ ଆବଶ୍ୟକତାଗୁଡ଼ିକ ଅଭିବ୍ୟକ୍ତ ବସ୍ତୁବର୍ଗର ହିଁ ବାସ୍ତବ ପ୍ରକୃତିର ପ୍ରତିବିମ୍ବନ ବୋଲି ମନେହେବା ସ୍ୱାଭାବିକ ।

ଉଇଟ୍‌ଗେନ୍‌ଷ୍ଟାଇନ୍‌ଙ୍କ ଟ୍ରେକଟେଟସ୍ ଲଜିକୋ ଫିଲସଫିକସ୍‌ରେ ତାଙ୍କର ଉପକ୍ରମଣିକା ଦେଇ ବର୍ଟେଣ୍ଡ ରସେଲ୍ ବସ୍ତୁବର୍ଗ ସହିତ ଶବ୍ଦ-ପ୍ରତୀକମାନଙ୍କ ସଂବାଦିତା

---

(୧) ଏଠାରେ ମଧ୍ୟ ଏକ ଐତିହାସିକ ସମାଧାନ ପନ୍ଥାର ସଙ୍କଟ ଆଶଙ୍କା ପର୍ଯ୍ୟାପ୍ତ ପରିମାଣରେ ରହିଛି । ଏହି ପରିଶିଷ୍ଟର ଶେଷଭାଗରେ ଯେଉଁ ବାଦାନୁବାଦର ଉଲ୍ଲେଖ ରହିଛି, ସେହି ସମ୍ପର୍କରେ Professor Jespersen କହିଛନ୍ତି— "ସମଆକାର ବିଶିଷ୍ଟ ପାରିଭାଷିକ ଶବ୍ଦାବଳୀ ବିରୁଦ୍ଧରେ ମୁଁ ପଦେସୁଦ୍ଧା କହୁ ନାହିଁ । କିନ୍ତୁ ଲାଟିନ ବ୍ୟାକରଣ ସହିତ ଜଡ଼ିତ ରହିବାର ଫଳ ସ୍ୱରୂପ ଇଂରାଜୀ ବ୍ୟାକରଣର ଘଟଣାବଳୀର ମିଥ୍ୟାକରଣ ଯେପରି ଅନୁଚିତ ମାତ୍ରାରେ ବାରମ୍ବାର ହୋଇଛି, ତଦ୍‌ବିରୁଦ୍ଧରେ ପୂର୍ବରୁ ସ୍ୱର ଉତ୍ତୋଳନ କରୁଛି ।...... ବୈୟାକରଣିକ ପାରିଭାଷିକ ଶବ୍ଦାବଳୀ ପାଇଁ ଗଠିତ କମିଟି ଯେଉଁ ପାଞ୍ଚୋଟି ଭାଷାର ଆଲୋଚନା କରିଛି, ସେଗୁଡ଼ିକ ପ୍ରକୃତରେ ଯେତେ ପରିମାଣରେ ପରସ୍ପର ସଦୃଶ, ତହିଁରୁ ଅଧିକ ପରିମାଣରେ ସେଗୁଡ଼ିକ ସଦୃଶ ବୋଲି ପ୍ରଦର୍ଶନ କରାଯାଇଛି । ଇଂରାଜୀଭାଷାରେ ପାଞ୍ଚୋଟି କାରକ ରହିଥିବା ବିଷୟ କମିଟି କହୁଛି, ଯଦିଓ ଏହାର ଅସଙ୍ଗତି Madvig ବହୁପୂର୍ବରୁ ଅର୍ଥାତ୍ ୧୮୪୧ ଖ୍ରୀଷ୍ଟାବ୍ଦରେ ମଧ୍ୟ ସୁସ୍ପଷ୍ଟଭାବେ ଦେଖିପାରିଥିଲେ । Professor Sonnenschein କହିଛନ୍ତି ଯେ କମିଟିର ଉଦ୍ଦେଶ୍ୟ ହେଉଛି ବ୍ୟାକରଣର ସରଳୀକରଣ, ଜଟିଳୀକରଣ ନୁହେଁ । ଯଦି ଏହାହିଁ ତାହାର ଉଦ୍ଦେଶ୍ୟ ହୋଇଥାଏ, ତେବେ ନିଜ ଲକ୍ଷ୍ୟର ଠିକ୍ ବିପରୀତ ବିଷୟ ହାସଲ କରିବାରେ କମିଟି ସଫଳ ହୋଇଛି ।" ଏକରୂପତା ମଧ୍ୟରେ ଭାଷା ବିଜ୍ଞାନମୂଳକ ଆଲୋଚନା ଯେ ପୁରୋଭାଗ ହୋଇନାହିଁ, ଏଥିରେ ଏକମତ ହେବା ନିମନ୍ତେ 'କାରକ-ଗୁଡ଼ିକ'ର ବର୍ଗୀକରଣ ବା ସେଗୁଡ଼ିକର ଶିକ୍ଷାମୂଳକ ଉପାଦେୟତା ବିଷୟରେ କୌଣସି ପକ୍ଷ ଗ୍ରହଣ କରିବା ଅନାବଶ୍ୟକ ।

ସମସ୍ୟାର ଯେପରି ଉତ୍ଥାପନ କରିଛନ୍ତି, ସେହିପରିଭାବେ ବୈୟାକରଣମାନେ କେତେଦୂର ସୁସ୍ପଷ୍ଟରୂପେ ଏହି ସମସ୍ୟାର ବିଚାର କରିଛନ୍ତି, ତାହା ସନ୍ଦେହଜନକ। ଏଠାରେ ରସେଲ୍ ଭାଷା ସମ୍ବନ୍ଧରେ ଚାରୋଟି ସମସ୍ୟାର ଉଲ୍ଲେଖ କରିଛନ୍ତି।

"ପ୍ରଥମତଃ, ଏକ ସମସ୍ୟା ରହିଛି ଯେ ଭାଷାଦ୍ୱାରା କୌଣସି ବସ୍ତୁକୁ ମନେ-କରିବା ଅଭିପ୍ରାୟରେ ଭାଷା ବ୍ୟବହାର କରିବାବେଳେ ଆମ ମନରେ ପ୍ରକୃତରେ କଣ ଘଟେ, ଏହି ସମସ୍ୟାଟି ମନସ୍ତତ୍ତ୍ୱର ଅନ୍ତର୍ଭୁକ୍ତ। ଦ୍ୱିତୀୟତଃ, ଏକ ସମସ୍ୟା ରହିଛି ଯେ ଚିନ୍ତା ଶବ୍ଦ ବା ବାକ୍ୟ ଏବଂ ତଦ୍ଦ୍ୱାରା ଯାହା ନିର୍ଦ୍ଦେଶିତ ବା ତାହାର ଯାହା ଅର୍ଥ, ଏହି ଦୁଇଟି ମଧ୍ୟରେ ବର୍ତ୍ତମାନ ସମ୍ବନ୍ଧଟି କଣ; ଏହି ସମସ୍ୟାଟି ଜ୍ଞାନ-ମୀମାଂସାର ଅନ୍ତର୍ଭୁକ୍ତ। ତୃତୀୟତଃ, ମିଥ୍ୟା ପରିବର୍ତ୍ତେ ସତ୍ୟଜ୍ଞାପନ ନିମନ୍ତେ ବାକ୍ୟ ବ୍ୟବହାର ସମ୍ବନ୍ଧୀୟ ଏକ ସମସ୍ୟା ରହିଛି; ସଂପୃକ୍ତ ବାକ୍ୟଗୁଡ଼ିକର ବିଷୟବସ୍ତୁ ଯେଉଁ ବିଶିଷ୍ଟ ବିଜ୍ଞାନମାନଙ୍କରେ ଆଲୋଚିତ ହୁଏ, ଏହି ସମସ୍ୟାଟି ସେହି ବିଜ୍ଞାନମାନଙ୍କର ଅନ୍ତର୍ଭୁକ୍ତ। ଚତୁର୍ଥତଃ, ଏକ ପ୍ରଶ୍ନ ରହିଛି; (ବାକ୍ୟରୂପୀ) ଏକ ଘଟଣାର ଅନ୍ୟ ଏକ ଘଟଣା ସହିତ କି ସମ୍ପର୍କ ରହିବା ଆବଶ୍ୟକ ଯେପରି କି ସେହି ଅନ୍ୟ ଘଟଣା ନିମନ୍ତେ ପ୍ରଥମୋକ୍ତ ଘଟଣାଟି ଏକ ପ୍ରତୀକ ହେବାକୁ ସମର୍ଥ ହେବ ? ଏହି ଶେଷୋକ୍ତ ବିଷୟଟି ହେଉଛି ଏକ ତର୍କଶାସ୍ତ୍ରଗତ ପ୍ରଶ୍ନ, ଏବଂ ଏହି ପ୍ରଶ୍ନ ସହିତ ହିଁ ଶ୍ରୀ ଉଇଟଗେନଷ୍ଟାଇନ ସଂପୃକ୍ତ। ଯଥାର୍ଥ ପ୍ରତୀକାନ୍ୱିତକରଣର ସର୍ତ୍ତାବଳୀ ସହିତ, ଅର୍ଥାତ୍ ଯେଉଁ ପ୍ରତୀକାନ୍ୱିତକରଣରେ ଗୋଟିଏ ବାକ୍ୟର 'ଅର୍ଥ' ଏକ ସଂପୂର୍ଣ୍ଣ ନିର୍ଦ୍ଦିଷ୍ଟ ବିଷୟ, ସେଥି ସହିତ ହିଁ ସେ ସଂପୃକ୍ତ।"

ଏହି ଚାରୋଟି ପ୍ରଶ୍ନ ମଧ୍ୟରୁ ଶେଷ ପ୍ରଶ୍ନଟିର ସହିତ ଆମେ ଏଠାରେ ସଂପୃକ୍ତ। ଏହାର ତାତ୍ପର୍ଯ୍ୟ ସମ୍ବନ୍ଧରେ ସଂପୂର୍ଣ୍ଣରୂପେ ଅବହିତ ରହି କିମ୍ବା ନରହି, ବୈୟାକରଣ ମାନେ ଉଇଟଗେନ୍‌ଷ୍ଟାଇନଙ୍କ ଉତ୍ତରକୁ ମୌନ ସମ୍ମତି ଦେଇଥିଲେ ପରି ପ୍ରାୟଶଃ ମନେହୁଏ। ଏହାର ଉଦାହରଣ ସେମାନଙ୍କ ଉଦ୍ଦେଶ୍ୟ ବିଧେୟ ସମ୍ବନ୍ଧୀୟ ଆଲୋଚନାରେ ରହିଛି : ଉଇଟ୍‌ଗେନ୍‌ଷ୍ଟାଇନଙ୍କ ଉତ୍ତର ହେଉଛି, "ପ୍ରତିଜ୍ଞପ୍ତିମୂଳକ ସଙ୍କେତରେ ସରଳ ସଙ୍କେତମାନଙ୍କ ବିନ୍ୟାସ ସହିତ ବାସ୍ତବ ଘଟଣା ଚିତ୍ରରେ ବସ୍ତୁବର୍ଗର ବିନ୍ୟାସ ସମ୍ବାଦୀ ଅଟେ।" (୧) ଏହି ଅପ୍ରୀତିକର ସିଦ୍ଧାନ୍ତ ଆମର ପ୍ରଥମ ପରିଚ୍ଛେଦରେ ଆଲୋଚିତ ପରୋକ୍ଷ ସମ୍ବନ୍ଧ ଅର୍ଥାତ୍ 'ପରିବର୍ତ୍ତେ ବ୍ୟବହୃତ'କୁ ଉପସ୍ଥାପନ ସହିତ ଏକ ବୋଲି ନିର୍ବିଚାରରେ ଗ୍ରହଣ କରିନେବା ଉପରେ ଆଧାରିତ। ପ୍ରତିଜ୍ଞପ୍ତି ୨-୧୬ ରେ କୁହାଯାଇଛି, 'ଗୋଟିଏ ଘଟଣା ଏକ ଚିତ୍ରପଟ ହେବା ନିମନ୍ତେ ଯାହାକୁ ଚିତ୍ରରୂପେ

---

(୧) Tractatus, ପ୍ରତିଜ୍ଞପ୍ତି ୩-୨୧।

ତାହା ଉପସ୍ଥାପିତ କରୁଛି, ତତ୍ସହିତ ସାଧାରଣ ହୋଇ ତାହାର କିଛି ବିଷୟ ରହିବା ଅନାବଶ୍ୟକ।" ପୁଣି, ୨-୧୭୧ ରେ ରହିଛି। "ଚିତ୍ରପଟରେ ଯାହାର ଆକାର ରହିଛି, ତାହାର ପ୍ରତ୍ୟେକ ସତ୍ତ୍ୱକୁ ଚିତ୍ରପଟ ପ୍ରତିଫଳିତ କରିପାରେ...... । ୨-୧୮୨—ପ୍ରତ୍ୟେକ ଚିତ୍ର ହେଉଛି ଏକ ତାର୍କିକ ଚିତ୍ର ମଧ୍ୟ..... । ୩-ଘଟଣାର ତାର୍କିକ ଚିତ୍ର ହେଉଛି ଚିନ୍ତା......୩-୧—ପ୍ରତୀକପ୍ରିରେ ଚିନ୍ତା ଇନ୍ଦ୍ରିୟାନୁଭବ୍ୟ ହୋଇ ଅଭିବ୍ୟକ୍ତ...... ୩-୧୧—ଯେଉଁ ସଙ୍କେତ ମାଧ୍ୟମରେ ଆମେ ଚିନ୍ତାକୁ ବ୍ୟକ୍ତ କରୁଁ, ତାହାକୁ ମୁଁ ପ୍ରତୀକପ୍ରିମୂଳକ ସଙ୍କେତ ବୋଲି ଅଭିହିତ କରଛି । ୩-୨—ପ୍ରତୀକପ୍ରିମାନଙ୍କରେ ଚିନ୍ତାକୁ ଏପରିଭାବେ ବ୍ୟକ୍ତ କରାଯାଇପାରେ ଯେପରି ଚିନ୍ତାର ବିଷୟବସ୍ତୁଗୁଡ଼ିକ ସହିତ ପ୍ରତୀକପ୍ରିମୂଳକ ସଙ୍କେତର ଉପାଦାନଗୁଡ଼ିକ ସମ୍ବାଦୀ ହେବ ।" ଏଥିରେ ବ୍ୟବହୃତ ପ୍ରତ୍ୟେକ ଶବ୍ଦକୁ ଏଠାରେ ଏକ ବିଶିଷ୍ଟ ଅର୍ଥରେ ବୁଝିବାର ଆବଶ୍ୟକତା ପଡ଼ିବ, ତେବେ ସୁଦ୍ଧା ପ୍ରତୀକ ପରିସ୍ଥିତିର ଏହିପରି ଏକ ବିବରଣୀ ସନ୍ତୋଷିତଙ୍କ ପୂର୍ବବର୍ତ୍ତୀ ଯୁଗର ମୂଳ-ପଣ୍ଡିତମାନଙ୍କ ଉକ୍ତିଗୁଡ଼ିକ ସଦୃଶ ହୋଇଯାଉଛି । ତଥାପି, ଏହାକୁ ଏକ ମନସ୍ତାତ୍ତ୍ୱିକ ବିବରଣୀ ନକହି 'ତାର୍କିକ' ବିବରଣୀ ବୋଲି ଅଭିହିତ କରାଯାଇଛି । ସାମୂହିକଭାବେ ବିଚାର କଲେ, ଏହାର କୌଣସି ଦୁର୍ବୋଧଯୋଗ୍ୟ କାରଣ ନାହିଁ ।

ଏହି ସୂତ୍ରରେ ଦୁଇଟି ପଦକ୍ଷେପ ନିଆଯାଏ । କିପରିଭାବେ ଏକ ଚିନ୍ତା ଗୋଟିଏ ବସ୍ତୁ'ର ଚିନ୍ତା ହୋଇପାରିବ, ତାହାକୁ ବୁଝାଇବା ପାଇଁ ଚିନ୍ତା ଓ ବସ୍ତୁ ମଧ୍ୟରେ ଏକ ସାଧାରଣ ଗଠନଗତ ରକ୍ଷାକରିବା ପ୍ରଥମ ପଦକ୍ଷେପର ଉଦ୍ଦେଶ୍ୟ । କିନ୍ତୁ ଏକ କାରଣିକ ମତବାଦରେ ଗଠନଗତ ସମ୍ବାଦିତା ପ୍ରାକ୍ସ୍ୱୀକାର ଅନାବଶ୍ୟକ ଏବଂ ଅତିମାତ୍ରାରେ ଅସଙ୍ଗତ । (୧) ଦ୍ୱିତୀୟ ପଦକ୍ଷେପ ଅର୍ଥାତ୍ ପ୍ରତୀକପ୍ରିମୂଳକ ସଙ୍କେତ ଓ ଘଟଣାବଳୀର ଗଠନ ମଧ୍ୟରେ ସମ୍ବାଦିତା ସମ୍ବନ୍ଧୀୟ ଦୃଢ଼ୋକ୍ତି ପ୍ରଥମ ପଦକ୍ଷେପଠାରୁ ମଧ୍ୟ ଆହୁରି ଅଧିକ ଦୁଃସାହସିକ ଓ ଭିତ୍ତିହୀନ । ଏକ ସରଳ କ୍ଷେତ୍ରରେ, ଅର୍ଥାତ୍ ଯେଉଁ

---

(୧) ଏହାର ଅସମ୍ଭାବ୍ୟତା ଶବ୍ଦ ଓ ଚିନ୍ତା ମଧ୍ୟରେ ଏକ ଦୃଢ଼ ସମ୍ବାଦିତାରେ ଅନୁରୂପ ବିଶ୍ୱାସଠାରୁ ବିଶେଷ ନ୍ୟୂନ ନୁହେଁ । ଶବ୍ଦ ଓ ଚିନ୍ତା ମଧ୍ୟରେ ଦୃଢ଼ ସମ୍ବାଦିତା ଥିବା ବିଷୟ ଊନବିଂଶ ଶତାବ୍ଦୀରେ ଭାଷାବିଦଙ୍କ ଲେଖାରେ ବାରଂବାର ଦେଖିବାକୁ ମିଳେ । ଏଥିରେ ସର୍ବାଧିକ ପ୍ରାଧାନ୍ୟ ଅର୍ପଣ ବୋଧହୁଏ Donaldson ହିଁ କରିଛନ୍ତି । ସେ (The New Cratylus ପୃ ୬୧ ରେ ) ଲେଖିଛନ୍ତି; "ମନସ୍ତତ୍ତ୍ୱର ଲେଖକମାନେ ଏତେ ସତର୍କ ସହିତ ଯେଉଁ ମାନସିକ ଘଟଣାମାନଙ୍କ ସଂଗ୍ରହଣ ଓ ବର୍ଗୀକରଣ କରିଛନ୍ତି, ସେଗୁଡ଼ିକର ଠିକ୍ ଏକ ପ୍ରତିରୂପ ଭାଷାର ଆନ୍ତରିକ ଗଠନରୀତିରେ

କ୍ଷେତ୍ରରେ ଆମେ ପ୍ରତୀକ-ଚିତ୍ର ଅଙ୍କନ କରୁ ଏବଂ ଯେଉଁ କ୍ଷେତ୍ରରେ ରସାୟନ ବିଦ୍ୟା ଓ ସଙ୍ଗୀତ ବିଦ୍ୟାର ସାଙ୍କେତିକ ଚିହ୍ନ ପରି ସାଙ୍କେତିକ ଚିହ୍ନମାନ ବ୍ୟବହାର କରୁଁ, ଆମେ ଅବଶ୍ୟ କେତେକ ପରିମାଣର ସଦୃଶତା ରକ୍ଷାକରି ପାରୁଁ, ଏହାର କାରଣ ଉଲ୍ଲିଖିତ ପରିଚ୍ଛେଦରେ ଦର୍ଶାଇ ଦିଆଯାଇଛି । ତାହା ହେଉଛି ଏପ୍ରକାର ଅନୁକରଣ-ମୂଳକ ଭାଷାର ଉପାଦାନଗୁଡ଼ିକ ସରଳ ସଙ୍କେତମାନଙ୍କ ସହିତ ପ୍ରାୟ ସମାନ । ସାଙ୍କେତିକ ଚିହ୍ନମାନଙ୍କ କ୍ଷେତ୍ରରେ, ଯେଉଁ ବସ୍ତୁଗୁଡ଼ିକ ପରିବର୍ତ୍ତେ ସାଙ୍କେତିକ ଚିହ୍ନମାନ ବ୍ୟବହୃତ, ସେହି ବସ୍ତୁଗୁଡ଼ିକ ସହିତ ଏହି ଚିହ୍ନମାନଙ୍କ ଏକ ସରଳ ସଦୃଶତା ଟାଣି ଓଟାରି ରକ୍ଷା କରିବାପାଇଁ ଏକ ସୁପରିକଳ୍ପିତ ପ୍ରୟାସ ଯୁଗ ଯୁଗ ଧରି ବୈଜ୍ଞାନିକମାନଙ୍କ ଦ୍ୱାରା କରାହୋଇ ଆସୁଛି । ପୁଣି, ଯେକୌଣସି ପ୍ରାଚୀନ ଭାଷାରେ ଏପରି ଏକ ସମସ୍ୟା ଥାଇପାରେ, ଯେତେବେଳେ ସେହି ସମ୍ପ୍ରଦାୟର ବ୍ୟକ୍ତିମାନେ ସେମାନଙ୍କ ଚତୁର୍ଦ୍ଦିଗସ୍ଥ ବସ୍ତୁମାନଙ୍କ ମଧ୍ୟରେ ଏକ ସରଳ ଧରଣର ପାର୍ଥକ୍ୟ ରକ୍ଷାକରିବା ଦ୍ୱାରା ସେମାନଙ୍କ ଭାଷାରେ ମଧ୍ୟ ତତ୍ସଦୃଶ ଏକ ପାର୍ଥକ୍ୟସମଷ୍ଟି ଦେଖାଯାଏ । ଏଠାରେ ଅବଶ୍ୟ ବସ୍ତୁବର୍ଗ ପ୍ରତି ନିର୍ଦ୍ଦେଶମାନଙ୍କ ଏବଂ ବିଭିନ୍ନ ପ୍ରକାର ବସ୍ତୁବର୍ଗ ପ୍ରତି ବିଭିନ୍ନ ପ୍ରକାର ଶବ୍ଦର ସମ୍ବାଦିତା ମାଧ୍ୟମରେ ହିଁ ସମ୍ବାଦିତା ରକ୍ଷା କରାଯାଏ । କିନ୍ତୁ ଏକଥା ସୁସ୍ପଷ୍ଟ ଯେ ଏ ପ୍ରକାର ଏକ ଭାଷା ଲୋକଙ୍କ ଚିନ୍ତାଗତ ଅନ୍ତରଙ୍ଗ ପାର୍ଥକ୍ୟମାନଙ୍କ ଏବଂ ଭାଷାର କ୍ରମ ବର୍ଦ୍ଧମାନ ଜଟିଳତା ସହିତ ପାଦ ମିଳାଇ ଅଗ୍ରସର ହେବାକୁ ଅସମର୍ଥ । ସେମାନେ ପୃଥକ୍ କରିବାକୁ ଇଚ୍ଛା କରୁଥିବା ନୂତନ ନୂତନ ଦିଗ ଓ ଗଠନଗୁଡ଼ିକ ନିମନ୍ତେ ନୂତନ ନୂତନ ପ୍ରକାରର ଶବ୍ଦ ଓ ନୂତନ ନୂତନ ବାଚନିକ ବିନ୍ୟାସର ବାଞ୍ଛନୀୟତା ଉପଲବ୍ଧ ହେବ । ତେଣୁ ପୁରାତନ ଭାଷା ସାମଗ୍ରୀକୁ ଟାଣି ଭିଡ଼ି ଉପଯୋଗୀ କରିବାକୁ ପଡ଼ିବ ଏବଂ କାଳ୍ପନିକ ସତ୍ତ୍ୱର ଆଶ୍ରୟ ନେବାକୁ ହେବ, କାରଣ ଭାଷାଗତ ଉପାଦାନ ଓ ବିନ୍ୟାସଗୁଡ଼ିକ ନିଜ ନିଜର ଯଥାର୍ଥ କାର୍ଯ୍ୟ ସମ୍ପାଦନ କରିବାକୁ ଆଉ ସମର୍ଥ ନୁହେଁ ।

---

ଆମେ ଦେଖିବାକୁ ପାଉ । ମନର ସଂଗଠନ ବିଷୟରେ ଆମେ ଯାହା ଜାଣୁ, ମାନବୀୟ ବଚନର ଗଠନରେ ତାହାର ସମ୍ପୂର୍ଣ୍ଣ ପ୍ରତିବର୍ତ୍ତି ବା ପ୍ରତିମା ଦେଖିବାକୁ ମିଳେ । ଉଭୟ କ୍ଷେତ୍ରରେ, ସେହି ଏକ ବର୍ଣ୍ଣନା, ସେହି ଏକ ଅଂଶାନୁଅଂଶର ବିନ୍ୟାସ, ସେହି ଏକ ନାମ ପଦ୍ଧତି ପ୍ରୟୋଗ କରାଯାଇ ପାରିବ । ମନ-ଦର୍ଶନ ସମ୍ବନ୍ଧୀୟ ଏକ ଗ୍ରନ୍ଥକୁ ଭାଷା-ଦର୍ଶନ ସମ୍ବନ୍ଧୀୟ ଏକ ଗ୍ରନ୍ଥରୂପେ ଆମେ ପରିବର୍ତ୍ତନ କରିଦେଇ ପାରିବା । ଏଥିନିମନ୍ତେ, କେବଳ ଏତିକି ମନେକରି ନେବାକୁ ହେବ ଯେ ପ୍ରଥମଟିରେ ଏକ ବ୍ୟକ୍ତିନିଷ୍ଠ ବିଷୟ ସ୍ୱରୂପ ଚିନ୍ତା ସମ୍ବନ୍ଧରେ ଯାହା ଯାହା କୁହାଯାଇଛି, ଦ୍ୱିତୀୟଟିରେ ବସ୍ତୁନିଷ୍ଠ ବିଷୟ ସ୍ୱରୂପ ଶବ୍ଦ ସମ୍ବନ୍ଧରେ ସେଗୁଡ଼ିକୁ ପୁଣି ଥରେ କୁହାଯାଇଛି ।

ତ୍ରିକ ବର୍ତ୍ତମାନର ଉଦ୍ଦେଶ୍ୟଗୁଡ଼ିକୁ ଅନୁପଯୁକ୍ତଭାବେ ସାଧନ କରିବ, କାରଣ ଏହି ଉଦ୍ଦେଶ୍ୟମାନଙ୍କ ସାଧନ ନିମନ୍ତେ ସେଗୁଡ଼ିକ ମୂଳରୁ ଉଦ୍ଦିଷ୍ଟ ହୋଇ ପରିକଳ୍ପିତ ହୋଇନଥିଲେ । ଉଦାହରଣ ସ୍ୱରୂପ, ଆଧୁନିକ ପଦାର୍ଥବିଜ୍ଞାନରେ 'ଶକ୍ତି' (Energy) ପଦଟି ସମ୍ପୃକ୍ତ ନିର୍ଦ୍ଦେଶ ନିମନ୍ତେ ଏକ ଭ୍ରାନ୍ତ ଧରଣର ଶବ୍ଦପରି ମନେହୁଏ, ଏବଂ ସ୍ୱୀକୃତ ବୈୟାକରଣିକ ବହିର୍ଭୂତ କୌଣସି ଶବ୍ଦ ଅଧିକତର ଉପଯୋଗୀ ହେବାର ସମ୍ଭବପରତା ନାହିଁ । ଏହି କାରଣରୁ କ୍ୱାଣ୍ଟମ୍ ସିଦ୍ଧାନ୍ତରେ କେତେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ ।

ପ୍ରତୀକ ଓ ନିର୍ଦ୍ଦେଶ୍ୟ ମଧ୍ୟରେ ଆଂଶିକତଃ ସମ୍ବାଦିତା ରକ୍ଷା କରୁଥିବା ବ୍ୟତିକ୍ରମମୂଳକ ଦୃଷ୍ଟାନ୍ତମାନଙ୍କରୁ ସମସ୍ତ ଭିବିବିନିମୟ କ୍ଷେତ୍ରରେ ଏପ୍ରକାର ସମ୍ବାଦିତାର ଅନିବାର୍ଯ୍ୟତାକୁ ସାମାନ୍ୟୀକରଣ ଦ୍ୱାରା ଗଠ କରିବା ପ୍ରସ୍ତାବ ଅଯୌକ୍ତିକ । କୌଣସି ଏକ ଦଉକ୍ଷେତ୍ରରେ, ସମ୍ବାଦିତାର ପରିମାଣ କେବଳ ଅନୁଭୂତିମୂଳକ ଅନୁସନ୍ଧାନ ଦ୍ୱାରା ହିଁ ସ୍ଥିର କରାଯାଇପାରେ । ଏ ପ୍ରକାର ଅନୁସନ୍ଧାନ ଲବ୍ଧ ଫଳ ସନ୍ଦେହଜନକ ନୁହେଁ । ଏ ପ୍ରକାର ସଂବାଦିତା ବୈଜ୍ଞାନିକ ପ୍ରତୀକ ପଦ୍ଧତିଗୁଡ଼ିକୁ ସ୍ୱତନ୍ତ୍ର ପରିବର୍ଦ୍ଧିତ ପରିସରର ଅଧିକାରୀ କରିପାରେ ଏବଂ ଅତି ଉଚ୍ଚକୋଟିର ଯଥାର୍ଥତା ମଧ୍ୟ ଦେଇପାରେ । ଏତଦ୍ଦ୍ୱାରା ଏହି ପଦ୍ଧତିଗୁଡ଼ିକ ଅବରୋହ ପ୍ରଣାଳୀମାନଙ୍କ ପ୍ରୟୋଗ-ଯୋଗ୍ୟ ହୋଇପାରେ । କିନ୍ତୁ ସଂଖ୍ୟା ବା ଦୈଶିକ ସମ୍ବନ୍ଧ ପରି ସର୍ବାଧିକ ସରଳ ଓ ସର୍ବାଧିକ ଯୋଜନାବଦ୍ଧ ବୈଶିଷ୍ଟ୍ୟମାନଙ୍କ କ୍ଷେତ୍ରରେ ହିଁ ଏ ପ୍ରକାର ସମ୍ବାଦିତାର ବିନିଯୋଗ କରାଯାଇପାରେ । ସାଧାରଣ ଭାଷା ନିୟମିତଭାବେ ଏହାକୁ ପରିହାର କରେ । ଏତଦ୍ଦ୍ୱାରା ଯଥାର୍ଥତା କ୍ଷୁଣ୍ଣ ହୁଏ, କିନ୍ତୁ ପରିବର୍ତ୍ତନଶୀଳତା, ସ୍ୱାଚ୍ଛନ୍ଦ୍ୟ ଓ ସୁବିଧାର ବୃଦ୍ଧି ଘଟେ । ଏଠାରେ କ୍ଷତିର ପରିମାଣ ଯେତେ ବେଶୀ ବୋଲି ବେଳେ ବେଳେ ମନେ କରାଯାଇଥାଏ, ତାହା ସେତେ ବେଶୀ ପ୍ରକୃତରେ ନୁହେଁ, କାରଣ ପ୍ରତୀକଗୁଡ଼ିକୁ ଆକ୍ଷରିକଭାବେ (୧) ଗ୍ରହଣକଲେ ତାହା ଭ୍ରାନ୍ତିକାରକ ହେଉଥିବା ସତ୍ତ୍ୱେ, ଭାଷାକୁ ଟାଣି ଓଟାରି ବ୍ୟବହାର କରି ସଫଳତା ସହକାରେ ନିର୍ଦ୍ଦେଶ କରିବା ସମ୍ଭବପର ଏବଂ ତାହା ବୋଧଗମ୍ୟ ହେବା ସମ୍ଭବପର । ସ୍ୱୟଂ ଉଇଟଗେନଷ୍ଟାଇନଙ୍କ ପରି କେତେକଙ୍କ ପକ୍ଷରେ ଏହି ସମ୍ବାଦିତାର ସମ୍ଭବପରତା ଏବଂ ତହିଁରୁ ଅଧିକ କିଛି କରିପାରିବାର ଅସମ୍ଭାବ୍ୟତା ଭାଷା ପ୍ରତି ଏକ ଅସନ୍ତୋଷ ଜାତ କରିଛି । ଏହା ଏକ ତତ୍ତ୍ୱଶାସ୍ତ୍ରବିରୁଦ୍ଧ ରହସ୍ୟବାଦର ପଥ ମଧ୍ୟ ଉନ୍ମୁକ୍ତ କରିଦେଇଛି । ପୁଣି ବୋର୍ଗଙ୍କ ପରି ଅନ୍ୟ କେତେକଙ୍କ ପକ୍ଷରେ ସତ୍ତାର କଳ୍ପିତ ପ୍ରକୃତି ଉପରେ

(୧) ଗୋଟିଏ ଉପମା ବା ବସ୍ତୁକରଣକୁ 'ଆକ୍ଷରିକ'ଭାବେ ଗ୍ରହଣ କରିବା ହେଉଛି ଏକ ପ୍ରତୀକ ବା ପ୍ରତୀକାତ୍ମକ ଉପକରଣ ଯେ ତାହାର ମୌଳିକ ବ୍ୟବହାର

ପ୍ରତିଷ୍ଠିତ ଏହି ସମ୍ବାଦିତାର ତଥାକଥିତ ଅସମ୍ବାଦ୍ୟତା ଏକ ଭିନ୍ନପ୍ରକାର ଅସନ୍ତୋଷର ସୃଷ୍ଟି କରିଛି ଏବଂ ଏକ ରହସ୍ୟବାଦୀ ତତ୍ତ୍ୱଶାସ୍ତ୍ର ଆଡ଼କୁ ପଥ ପ୍ରଦର୍ଶନ କରିନେଇଛି । (୨)

ଏହି ଚରମ ବିବାଦୀୟବିଷୟମାନ ବୈୟାକରଣଙ୍କୁ ନିଜର ଆଲୋଚ୍ୟ ବିଷୟ ସହିତ ଅସମ୍ପୃକ୍ତ ପରି ମନେହେବ, ତଥାପି ଏହି ବିବାଦୀୟ ବିଷୟମାନ ଉତ୍ଥାପନ ନକରି ବାସ୍ତବ ଘଟଣା ସହିତ ଭାଷାର ସମ୍ବନ୍ଧଗୁଡ଼ିକ ଉପରେ ସେ ମତଦେବା ସମ୍ଭବପର ନୁହେଁ । ପୁଣି ଦଶମ ପରିଚ୍ଛେଦରେ ଯେଉଁ ଅର୍ଥରେ ଯଥାର୍ଥ ଭାଷାମୂଳକ କାର୍ଯ୍ୟର ସଙ୍କା

---

ଦୃଷ୍ଟିରୁ ସଙ୍କୁଚିତ—ଏହି ବିଷୟକୁ ଉପେକ୍ଷା କରିଯିବା । ତୁଳନା କର—ପଞ୍ଚମ ପରିଚ୍ଛେଦ ଅନ୍ତର୍ଗତ ସୂତ୍ର—୩ ।

(୨) Introduction to Metaphysics, ପୃ ୪୦—୪୧ । ବିଶ୍ଳେଷଣ ସର୍ବଦା ସ୍ଥିତିଶୀଳ ବସ୍ତୁଉପରେ କାର୍ଯ୍ୟ କରେ । କିନ୍ତୁ ସ୍ୱଜ୍ଞା ଗତିଶୀଳତାରେ ଅର୍ଥାତ୍ କାଳିକ ବ୍ୟାପ୍ତିରେ ନିଜକୁ ସମ୍ପୃକ୍ତ ରଖେ । ସ୍ୱଜ୍ଞା ଓ ବିଶ୍ଳେଷଣ ମଧ୍ୟରେ ଏକ ଅତି ସୁସ୍ପଷ୍ଟ ସୀମାରେଖା ରହିଛି । ସତ୍ତା, ଅନୁଭୂତିଲବ୍ଧ ବିଷୟ ଓ ମୂର୍ତ୍ତି ବିଷୟ ହେଉଛି ଯାହା, ପରିବର୍ତ୍ତନଶୀଳତା ହିଁ ତାହା । କିନ୍ତୁ ଉପାଦାନ ଅପରିବର୍ତ୍ତନଶୀଳ । ଏହି ବୈଶିଷ୍ଟ୍ୟମାନଙ୍କ ଦ୍ୱାରା ଏଗୁଡ଼ିକୁ ଚିହ୍ନୋଟ କରାଯାଏ । ସଙ୍କେତାର ଉପାଦାନ ଅପରିବର୍ତ୍ତନଶୀଳ ବୋଲି ସ୍ୱୀକୃତ । ଏହା ଏକ ପ୍ରତୀକଚିହ୍ନ, ଏକ ସରଳୀକୃତ ପୁନର୍ଗଠନ, ଏହା ବହୁକ୍ଷେତ୍ରରେ ଏକ ପ୍ରତୀକ ମାତ୍ର । ଯେ କୌଣସି କ୍ଷେତ୍ରରେ ଏହା ହେଉଛି ଚଳମାନ ସତ୍ତାର ଏକ ନିଶ୍ଚଳ ରୂପ । ......ଏହି ପ୍ରତୀକ ଚିହ୍ନମାନଙ୍କ ସାହାଯ୍ୟରେ ସତ୍ତାର ପୁନର୍ଗଠନ ସମ୍ଭବପର ବୋଲି ବିଶ୍ୱାସ କରିବାରେ ହିଁ ଭ୍ରାନ୍ତ ପର୍ଯ୍ୟବସିତ ।''

ଏହି ରହସ୍ୟବାଦୀ ସୂତ୍ରାବଳୀ ଏବଂ ଏଗୁଡ଼ିକର ଭାଷାମୂଳକ ସମର୍ଥନ କ୍ଷେତ୍ରରେ କ୍ଲାସିକ ସମସ୍ୟା, ଅର୍ଥାତ୍ ଈଶ୍ୱରଙ୍କ ନାମଦେବା ସମ୍ଭବପର କି ? ବିଷୟକୁ ମନେ ପକାଇବା ଚିତ୍ତାକର୍ଷକ ହେବ । ଚର୍ଚ୍ଚ ଫାଦରମାନେ ମତଧାର୍ଯ୍ୟ କରିଥିଲେ ଯେ ଈଶ୍ୱରଙ୍କୁ 'ନାମଦେବା' ସମ୍ଭବପର ନୁହେଁ । ଏହି ମତରେ ସନ୍ତୁଷ୍ଟ ନରହି S. Bonaventura ଏହି ନେତିମୂଳକ ସିଦ୍ଧାନ୍ତ ପାଇଁ ଭାଷାର ସ୍ୱଭାବରୁ ହିଁ ତିନୋଟି କାରଣ ଦର୍ଶାଇଥିଲେ । (୧) ନାମିତ ବସ୍ତୁସହିତ ନାମର କୌଣସି ପରିମାଣଗତ ତଥା ଗୁଣଗତ ସାମଞ୍ଜସ୍ୟ ଥାଏ, (କିନ୍ତୁ ଈଶ୍ୱର ଅସୀମ ହୋଇଥିବା ସ୍ଥଳେ ଭାଷା ସୀମିତ) । (୨) ପ୍ରତ୍ୟେକ ନାମ କୌଣସି ପ୍ରକାର ଏକ ଆକାର ଦୃଷ୍ଟିରୁ ଦିଆଯାଏ, (କିନ୍ତୁ ଈଶ୍ୱର ନିରାକାର) । (୩) ପ୍ରତ୍ୟେକ ନାମର ତାତ୍ପର୍ଯ୍ୟରେ ଗୁଣସମ୍ବଳିତ ଏକ ସତ୍ତା ନିହିତ, (କିନ୍ତୁ ଈଶ୍ୱର ଏକ ନିର୍ଗୁଣ ସତ୍ତାମାତ୍ର) ।

ଦିଆଯାଇଛି, ସେହି ଅର୍ଥରେ ତାହାର ଆଲୋଚନା ନିମନ୍ତେ କୌଣସି ଭିତ୍ତି ମଧ୍ୟ ଯେ ପାଇ ପାରିବ ନାହିଁ । (ଅବଶ୍ୟ ଦଶମ ପରିଚ୍ଛେଦରେ ଭାଷାତ୍ମକ କାର୍ଯ୍ୟ ଯେଉଁ ଅର୍ଥରେ ବର୍ଣ୍ଣିତ ହୋଇଛି ତାହା ବାକ୍ୟଗଠନରେ ଶବ୍ଦମାନଙ୍କ କାର୍ଯ୍ୟଠାରୁ ଭିନ୍ନ) ।

ଯେଉଁ ଭାଷା କାର୍ଯ୍ୟକୁ ସତ୍ତ୍ୱର ଏକ ମୌଳିକ ବୈଶିଷ୍ଟ୍ୟରୁ ନିଃସୃତ ବୋଲି ମନେ କରାଯାଏ ଏବଂ ଯାହାକୁ କୌଣସି ନିର୍ଦ୍ଦେଶ ସିଦ୍ଧାନ୍ତର ଅବଲମ୍ବନ ବିନା ସାଧାରଣ ବୁଦ୍ଧି ଦ୍ୱାରା ସାକ୍ଷାତ୍‌ଭାବେ ସ୍ୱୀକାର କରାଯାଇପାରେ ବୋଲି ଗ୍ରହଣ କରାଯାଏ, ତାହାର ଏକ ବିଲକ୍ଷଣ ଦୃଷ୍ଟାନ୍ତ ସମ୍ବନ୍ଧରେ ଆମେ ଏଠାରେ ଆଲୋଚନା କରିପାରୁଁ । ତାହା ହେଉଛି ପ୍ରତିଜ୍ଞପ୍ତି ଓ ଉଦ୍ଦେଶ୍ୟ-ବିଧେୟ ସମ୍ବନ୍ଧ ସମସ୍ୟା । ଏହି ବିଷୟକ ସମସ୍ତ ପ୍ରାଚୀନ ମତ ଆରିଷ୍ଟଟଲ୍‌ଙ୍କ ବିଚାରଧାରାରୁ ନିଃସୃତ । ତେଣୁ ପ୍ରଥମରୁ ଯେପରିଭାବେ ଏହାକୁ ସମାଧାନ କରିବାର ପ୍ରୟାସ କରାଯାଇଥିଲା ତାହାକୁ ଏଠାରେ ମନେପକାଇବା ବାଞ୍ଛନୀୟ । ଆରିଷ୍ଟଟଲୀୟ ଦର୍ଶନର ସର୍ବାଧିକ ସୁସ୍ପଷ୍ଟ ଆଧୁନିକ ବ୍ୟାଖ୍ୟା ଅନୁସାରେ, ଆରିଷ୍ଟଟଲ୍‌ଙ୍କ ଦୃଷ୍ଟିରୁ ଶବ୍ଦଗୁଡ଼ିକର (ଅସଂଲଗ୍ନଭାବେ ହେଉ ବା ସଂଯୁକ୍ତଭାବେ ହେଉ) ତାତ୍ପର୍ଯ୍ୟରେ ଯାହା ଥାଏ, ତାହା ହେଉଛି ମାନସିକ ବୃତ୍ତିର କୌଣସି ଏକ ପ୍ରକାର-ଭେଦ, (୧) "ଅଥବା ଶବ୍ଦଗୁଡ଼ିକ ଦ୍ୱାରା ଉପସ୍ଥାପିତ ଘଟଣାର ଏକ ପ୍ରକାର-ଭେଦ । କିନ୍ତୁ ପ୍ରତିଜ୍ଞପ୍ତି ଅଭିହିତ ଏକ ପଦସଂଯୋଜନର ତାତ୍ପର୍ଯ୍ୟଠାରୁ ଗୋଟିଏ ପଦର ତାତ୍ପର୍ଯ୍ୟକୁ ପୃଥକ୍ କରାଯାଏ । ଭାଷା ନାମଧେୟ ସମଷ୍ଟି ଅନ୍ତର୍ଭୁକ୍ତ ଗୋଟିଏ ବିଶେଷ୍ୟପଦ ବା ଗୋଟିଏ କ୍ରିୟାପଦ ଏକ ଏବଂ ସେହି ଏକ କଳ୍ପିତ ମୂର୍ତ୍ତି ବା ସଂପ୍ରତ୍ୟୟ ସହିତ ସଂପୃକ୍ତ । ବକ୍ତା ବା ଶ୍ରୋତାର ମନରେ ଏହି ସମ୍ପର୍କ ବିଧାନ ନିମନ୍ତେ କୌଣସି ସଚେତନ ସଂଯୋଜନ ବା ବିଯୋଜନମୂଳକ କ୍ରିୟା ରହିବାର ଆବଶ୍ୟକତା ନାହିଁ । ଉଚ୍ଚାରିତ ହେବା କାଳରେ ସଂପୃକ୍ତ ପ୍ରତ୍ୟୟ ଶୃଙ୍ଖଳର ଗତିକୁ ଏହା କିଛିସମୟ ପାଇଁ ସ୍ଥଗିତ ରଖିଦିଏ ଏବଂ ସେହି ନିର୍ଦ୍ଦିଷ୍ଟ ସମଷ୍ଟି, ଯାହାକୁ ତାହାର ଅର୍ଥ କୁହାଯାଏ, ସେହି ବିଷୟରେ ଚିନ୍ତା କରିବାକୁ ମନକୁ ପ୍ରବୃତ୍ତ କରେ । କିନ୍ତୁ ବିଶେଷ୍ୟ ହେଉ ବା କ୍ରିୟା ହେଉ, ଅସଂଲଗ୍ନଭାବେ ଗୃହୀତ ହୋଇଥିଲେ, ତାହା ଏଥିରୁ ଅଧିକ ଆଉ କିଛି କରେ ନାହିଁ । ଏ ଦୁଇଟିରୁ କୌଣସିଟି କୌଣସି ବିଷୟର

---

(୧) De Interpretatione ଉପରେ ମନ୍ତବ୍ୟ ଦେବାକୁ ଯାଇ ସ୍କଲାଷ୍ଟିକମାନେ କେବଳ ପ୍ରବୃତ୍ତି ପ୍ରତି ନିର୍ଦ୍ଦେଶ ରହିଥିବା କ୍ଷେତ୍ରରେ ବୌଦ୍ଧିକ ସଂପ୍ରତ୍ୟୟ ପ୍ରତିଷ୍ଠାପନ କରିଛନ୍ତି । ଏହା ସେମାନଙ୍କ ସ୍ୱଭାବସିଦ୍ଧ ଗୁଣସୂଚକ ଏବଂ ବସ୍ତୁବାଦୀ-ନାମବାଦୀ ବିବାଦମୂଳକ ଭାବର ପରିଚାୟକ ।

ସ୍ୱୀକାର ବା ଅସ୍ୱୀକାର କରେ ନାହିଁ, କିମ୍ବା ସତ୍ୟ ବା ମିଥ୍ୟା କିଛି ଜ୍ଞାପନ କରେନାହିଁ । ଏହି ଶେଷୋକ୍ତ ଉଦ୍ଦେଶ୍ୟର ସାଧନପାଇଁ ଏ ଦୁଇଟିକୁ ଏକ ନିର୍ଦ୍ଦିଷ୍ଟ ପ୍ରକାରରେ ସଂଯୋଜିତ କରି ଏକ ପ୍ରତିଜ୍ଞପ୍ତି ଗଠନ କରିବାକୁ ହବ । ଏହିପରିଭାବେ, ପ୍ରତିଜ୍ଞପ୍ତିର ତାତ୍ପର୍ଯ୍ୟ ତାହାର ସାଂଗଠନିକ ଉପାଦାନଦ୍ୱୟ ମଧ୍ୟରୁ ପ୍ରତ୍ୟେକଟିର ତାତ୍ପର୍ଯ୍ୟଠାରୁ ବିଶିଷ୍ଟରୂପେ ଭିନ୍ନ । ପ୍ରତିଜ୍ଞପ୍ତି ଏପରି ଏକ ବିଷୟ ଜ୍ଞାପନ କରେ, ଯାହା ଏକ ଘଟଣାମୂଳକ ବ୍ୟାପାର ବୋଲି ସୂଚିତ ଏବଂ ଯାହା ହୁଏତ ସତ୍ୟ କିମ୍ବା ମିଥ୍ୟା ହୋଇପାରେ । ଭିନ୍ନ ଭାବରେ କହିଲେ, ଏହା ଯେଉଁ ବିଶ୍ୱାସ ବା ଅବିଶ୍ୱାସମୂଳକ ଅବସ୍ଥା ବକ୍ତା ମନରେ ନିହିତ ବା ଶ୍ରୋତାମନରେ ଉଦ୍ରିକ୍ତ ବୋଲି ସୂଚିତ କରେ, ତାହା ବିଶେଷ୍ୟ ବା କ୍ରିୟାକୁ ଅସଂଲଗ୍ନଭାବେ ଗ୍ରହଣ କଲେ ତନ୍ମଧ୍ୟରୁ କୌଣସିଟିରୁ ସୂଚିତ ହୁଏନାହିଁ । ଏହି ବିଷୟରେ ହିଁ ତାତ୍ପର୍ଯ୍ୟ ସଂକଳିତ ଅନ୍ୟାନ୍ୟ ଶବ୍ଦ ବିନ୍ୟାସ (ଅନୁରୋଧମୂଳକ, ପ୍ରଶ୍ନମୂଳକ ଇତ୍ୟାଦି—ଏଗୁଡ଼ିକ ସତ୍ୟତା ବା ମିଥ୍ୟାତ୍ୱର ଜ୍ଞାପକ ନୁହେଁ ) ତଥା ପ୍ରତିଜ୍ଞପ୍ତିର ସ୍ୱକୀୟ ଉପାଦାନିକ ଅଂଶଠାରୁ ପ୍ରତିଜ୍ଞପ୍ତି ପୃଥକ୍ । ପ୍ରତିଜ୍ଞପ୍ତିର ଅଙ୍ଗମାନଙ୍କରୁ ପ୍ରତ୍ୟେକଟିର, ଅର୍ଥାତ୍ ବିଶେଷ୍ୟ ବା କ୍ରିୟାର ଏକ ସ୍ୱକୀୟ ତାତ୍ପର୍ଯ୍ୟ ରହିଛି । ଏଗୁଡ଼ିକ ବଚନର ଅନ୍ତିମ ଉପାଦାନ କାରଣ ବିଶେଷ୍ୟ କିମ୍ବା କ୍ରିୟା ପଦର ଅଂଶମାନଙ୍କ କୌଣସି ତାତ୍ପର୍ଯ୍ୟ ନାହିଁ । (୧)

ଆରିଷ୍ଟଟଲ୍‌ଙ୍କ ସମୟରୁ ବୈୟାକରଣ ଓ ତର୍କବିଦ୍ ଉଭୟଙ୍କ ମନରେ ରହି ଆସିଥିବା ସମସ୍ତ ଅନିଶ୍ଚିତତା ଓ ଦ୍ୱିଧା ଏହି ଉକ୍ତିରେ ମିଳିପାରିବ । ଶବ୍ଦଗୁଡ଼ିକର ତାତ୍ପର୍ଯ୍ୟରେ 'ମାନସିକ ବୃତ୍ତି' ଥାଏ କି ସେଗୁଡ଼ିକ ଦ୍ୱାରା 'ଉପସ୍ଥାପିତ' ହେଉଥିବା ବସ୍ତୁ ଥାଏ—ଏହି ସନ୍ଦେହ, ଏବଂ ପ୍ରତିଜ୍ଞପ୍ତିର (ଯାହା ଏଠାରେ ବାକ୍ୟ ସହିତ ସମାନ ବୋଲି ଗୃହୀତ ହୋଇଛି) ବିବୃତିମୂଳକ ବୈଶିଷ୍ଟ୍ୟ ଏବଂ ତତ୍‌ସମ୍ପର୍କରେ ଉଦିତ ବିଶ୍ୱାସ ଓ ଅବିଶ୍ୱାସମୂଳକ ଅବସ୍ଥା—ଏହି ଦୁଇଟି ମଧ୍ୟରେ ବ୍ୟାମିଶ୍ରଣ ଉପର୍ଯ୍ୟୁକ୍ତ ଉକ୍ତିଗତ ଅନିଶ୍ଚିତତା ଗୁଡ଼ିକରେ ବିଶେଷ ଉଲ୍ଲେଖଯୋଗ୍ୟ ।

ବିଭ୍ରାନ୍ତିର ଏହି ଦୁଇଟି ଉତ୍ସ ମଧ୍ୟରୁ ପ୍ରଥମଟି ସମ୍ବନ୍ଧରେ ଆମେ ବିଶଦଭାବେ ଆଲୋଚନା କରିସାରିଛୁ । କିନ୍ତୁ ଦ୍ୱିତୀୟଟିର ନିରାକରଣ ପାଇଁ ଅଧିକ ସାବଧାନତା ଆବଶ୍ୟକ । ଆଧୁନିକ ମନସ୍ତାତ୍ତ୍ୱିକ ଗବେଷଣା, ବିଶେଷତଃ ସଂସୂଚନର ସ୍ୱଭାବ ସମ୍ବନ୍ଧୀୟ ଓ ଅନୁଭବ ଉପରେ ମାଦକଦ୍ରବ୍ୟର ପ୍ରଭାବ ସମ୍ବନ୍ଧୀୟ ଗବେଷଣା ବିଶ୍ୱାସର ନିର୍ଦ୍ଦେଶ ସହିତ ସମ୍ବନ୍ଧ ସମ୍ପର୍କୀୟ ଉଇଲିଅମ ଜେମସ୍‌ଙ୍କ ମତବାଦକୁ ଅସିଦ୍ଧ ବୋଲି

(୧) Grote, Aristotle ୧ମ ଖଣ୍ଡ, ପୃ ୧୬୭ ।

ପ୍ରତିପାଦନ କରିବାକୁ ଅସମର୍ଥ ହୋଇଛୁ । ଜେମସ୍‌ଙ୍କ ମତ ଅନୁସାରେ, "ବିଶ୍ୱାସ ଅଥବା ସତ୍ତ୍ୱବୋଧ ତାହାର ଅନ୍ତଃ ପ୍ରକୃତି ଦୃଷ୍ଟିରୁ ହେଉଛି ଏକପ୍ରକାର ଅନୁଭବ; ଯେ କୌଣସି ଅନ୍ୟ ମାନସିକ ବୃତ୍ତି ଅପେକ୍ଷା ସଂବେଗ ସହିତ ଏହାର ସାଦୃଶ୍ୟ ଅଧିକ ।" ବିଶ୍ୱାସ ଓ ଅବିଶ୍ୱାସ ସନ୍ଦେହର ବିରୋଧୀ । "ସମ୍ପୂର୍ଣ୍ଣ ବୌଦ୍ଧିକ ଦିଗରୁ ବିଚାର କଲେ, ଏ ଦୁଇଟି ଶାନ୍ତ ଗୁଣାନ୍ୱିତ" ଏବଂ ପରବର୍ତ୍ତୀ ବ୍ୟାବହାରିକ କ୍ରିୟା-ସହିତ ନିବିଡ଼ଭାବେ ସମ୍ବନ୍ଧାନ୍ୱିତ ।" (୧) ଆଜିକାଲି ଯାହାକୁ ମାନସିକ ଅବସ୍ଥାର ଭାବାତ୍ମକ-ସଂକଳ୍ପାତ୍ମକ ବୈଶିଷ୍ଟ୍ୟ ବୋଲି କୁହାଯିବ, ତାହା ସହିତ ବିଶ୍ୱାସ ଓ ଅବିଶ୍ୱାସ, ସନ୍ଦେହ ଓ ପ୍ରଶ୍ନୋତ୍ଥାପନ ସମାନ ବୋଲି ମନେହୁଏ । ସୁତରାଂ ଯେଉଁ ଅବସ୍ଥା ସହିତ ଏଗୁଡ଼ିକ ସମ୍ପୃକ୍ତ, ତହିଁରୁ ଏଗୁଡ଼ିକ ତତ୍ତ୍ୱତଃ ପୃଥକ୍-କରଣ-ଯୋଗ୍ୟ; ଅର୍ଥାତ୍ ସେହି ଏକ ନିର୍ଦ୍ଦେଶ ବେଳେବେଳେ ବିଶ୍ୱାସର ଏବଂ ବେଳେ ବେଳେ ଅବିଶ୍ୱାସର ବା ସନ୍ଦେହର ସହଗାମୀ ହୋଇପାରେ । ଏହି ହେତୁରୁ, ଉପସ୍ଥିତ ବିଶ୍ୱାସ-ଅନୁଭବମାନଙ୍କ ପ୍ରକୃତିଦ୍ୱାରା ଭାଷା ଯେତେବେଳେ ପରିବର୍ତ୍ତିତ ହୋଇଥାଏ, ସେହି ପରିବର୍ତ୍ତନଗୁଡ଼ିକୁ ନିର୍ଦ୍ଦେଶ୍ୟ ପ୍ରତି ଅଭିବୃତ୍ତିର ଅଭିବ୍ୟକ୍ତି ଶିରୋନାମର ଅନ୍ତର୍ଭୁକ୍ତ କରାଯାଏ । ଦଶମ ପରିଚ୍ଛେଦରେ ଏହା ଭାଷାକାର୍ଯ୍ୟର ତୃତୀୟ ବିଭାଗରେ ଉଲ୍ଲିଖିତ ହୋଇଛି ।

ପ୍ରତିଜ୍ଞପ୍ତିର ଏକ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଗୁଣର ସୁସ୍ପଷ୍ଟ ବିଶ୍ଳେଷଣରେ ଏହି ପୃଥକ୍‌କରଣ ପ୍ରଭୂତ ପରିମାଣରେ ସାହାଯ୍ୟ କରେ । ପ୍ରତିଜ୍ଞପ୍ତି ଯେପରିଭାବେ ବିବୃତିକୁ ପ୍ରତୀକାନ୍ୱିତ କରୁଥିବା, ଅର୍ଥାତ୍ ଚିନ୍ତାର ଏକ ସମ୍ପୂର୍ଣ୍ଣ ବିଷୟବସ୍ତୁ ପରିବର୍ତ୍ତେ ବ୍ୟବହୃତ ହେଉଥିବା ପରି ଜଣାପଡ଼େ, ସେହି ବୈଶିଷ୍ଟ୍ୟ ଏକ ସରଳବାକ୍ୟର ଅଂଶଗୁଡ଼ିକରେ ନଥାଏ । କେବଳ ଗୋଟିଏ ବିଶେଷ୍ୟ ପଦ କିମ୍ବା କେବଳ ଗୋଟିଏ କ୍ରିୟାପଦଠାରୁ ସେ ଦୁଇଟିର ଉପଯୁକ୍ତ ସମନ୍ୱୟନ ଦ୍ୱାରା ଗଠିତ ବାକ୍ୟ କୌଣସି ନା କୌଣସିଭାବେ ଭିନ୍ନ ହୋଇଥାଏ; ଏବଂ ଏହି ପାର୍ଥକ୍ୟକୁ କେନ୍ଦ୍ରକରି କେବଳ ବୈୟାକରଣିକ ବିଶ୍ଳେଷଣ ନୁହେଁ, ତର୍କ ଓ ଦର୍ଶନ ମଧ୍ୟ ଆରିଷ୍ଟଟଲଙ୍କ ସମୟରୁ ଏପର୍ଯ୍ୟନ୍ତ ଘୂର୍ଣ୍ଣିତ ହୋଇ ଆସୁଛି ।

ଏଥିରେ ପୁଣି ସତ୍ୟତା ସମସ୍ୟାକୁ ଅସମାହିତ ଅବସ୍ଥାରେ ପ୍ରବେଶ କରାଇବା ଦ୍ୱାରା ବିଭ୍ରାନ୍ତିର ମାତ୍ରା ଅଧିକ ବୃଦ୍ଧି ପାଇଛି । କେବଳ ପ୍ରତିଜ୍ଞପ୍ତିମାନଙ୍କରେ ହିଁ 'ସତ୍ୟ' ଓ 'ମିଥ୍ୟା' ଶବ୍ଦ ଦ୍ୱୟ ଯଥାର୍ଥଭାବେ ପ୍ରଯୋଜ୍ୟ ହୁଏ—ଏହା ଏକ ସର୍ବବାଦୀ ସମ୍ମତ ମତ ବୋଲି ପ୍ରାୟଶଃ ବିବେଚିତ ହୋଇ ଆସୁଛି । ଯଦିଓ ଏହି ମତୈକ୍ୟ ଅନ୍ୟ

(୧) Principles of Psychology, ୨ୟ ଖଣ୍ଡ, ପୃ ୨୮୪ ।

ଏକ ମତ-ପାର୍ଥକ୍ୟ ହେତୁରୁ କିଛି ପରିମାଣରେ ଅସ୍ପଷ୍ଟ ହୋଇ ରହିଯାଇଛି । ମତ-ପାର୍ଥକ୍ୟ ରହିଥିବା ବିଷୟଟି ହେଉଛି, ସତ୍ୟ ହୋଇଥିବା ବିଶ୍ୱାସଗୁଡ଼ିକୁ ଯେଉଁ ପ୍ରତିଜ୍ଞପ୍ତି ବ୍ୟକ୍ତ କରେ, ସେଗୁଡ଼ିକ ସତ୍ୟ ପ୍ରତିଜ୍ଞପ୍ତି, କି ଯେଉଁ ବିଶ୍ୱାସଗୁଡ଼ିକର ବିଷୟ-ବସ୍ତୁ ସତ୍ୟ ପ୍ରତିଜ୍ଞପ୍ତି, ସେଗୁଡ଼ିକ ସତ୍ୟ ବିଶ୍ୱାସ । ଏହି ବାଦବିବାଦ ଗୁଡ଼ିକରେ 'ପ୍ରତିଜ୍ଞପ୍ତି' ପ୍ରତୀକଟିର ବିଭିନ୍ନ ପ୍ରକାର ଅର୍ଥାନ୍ତର ଘଟିଥାଏ । ଏହା କେତେବେଳେ ଗୋଟିଏ ବାକ୍ୟ ପରିବର୍ତ୍ତେ, କେତେବେଳେ ଏକ ନିର୍ଦ୍ଦେଶ୍ୟ ପରିବର୍ତ୍ତେ, ପୁଣି ଆଉ କେତେବେଳେ ଏକ ମାନସିକ ପ୍ରକ୍ରିୟା ବା ପ୍ରଣାଳୀର ସମ୍ବନ୍ଧାତ୍ମକ ଗୁଣ ପରିବର୍ତ୍ତେ ବ୍ୟବହୃତ ହୁଏ । ପ୍ରତୀକ ବିଜ୍ଞାନରେ ଏହା ଏକ ତତ୍ତ୍ୱକର୍ତ୍ତାଙ୍କ ଅନୁସନ୍ଧେୟ କ୍ଷେତ୍ର । କିନ୍ତୁ ଏକ ଜଟିଳ ପ୍ରତୀକ, ଯଥା—'ବରଫ ଥଣ୍ଡା କରେ'କୁ ଗଠନ କରୁଥିବା ପ୍ରତୀକ ଦୁଇଟି, ଅର୍ଥାତ୍ 'ବରଫ' ଓ 'ଥଣ୍ଡାକରେ'କୁ ଯଦି ଅସଫଳଗ୍ଭବେ ନିଆଯାଏ, ସେ ଦୁଇଟିରୁ ଜଟିଳ ପ୍ରତୀକଟିକୁ ଭିନ୍ନ କରୁଥିବା ପାର୍ଥକ୍ୟର ବିଶ୍ଳେଷଣ ସମ୍ବନ୍ଧରେ ପୂର୍ବବର୍ତ୍ତୀ ଷଷ୍ଠ ପରିଚ୍ଛେଦରେ ଯାହା କୁହାଯାଇଛି, ସେହି ଦୃଷ୍ଟିରୁ ସତ୍ୟତାର ପ୍ରବେଶ ଜନିତ ଆପାତ ଜଟିଳତାମାନଙ୍କ ଦ୍ୱାରା କୌଣସି ଅସୁବିଧାର ସୃଷ୍ଟି ହୁଏନାହିଁ । ଏଗୁଡ଼ିକ ସମସ୍ୟାର ଏକ ବିଭ୍ରାନ୍ତିକର ପୁନର୍ନାମକରଣ ମାତ୍ର । ଏଗୁଡ଼ିକ ଅସମ୍ପୂର୍ଣ୍ଣ ରୂପେ ସମାନ୍ତରାଳ ହୋଇଥିବାରୁ ବିଭ୍ରାନ୍ତିକର ମନେହୁଏ ।

ସଙ୍କେତ ସିଦ୍ଧାନ୍ତ ଅନୁସାରେ, ପ୍ରତ୍ୟେକ ନିର୍ଦ୍ଦେଶ, ଯେତେ ସରଳ ହୋଇ-ଥିଲେ ହେଁ, ତାହା ହୁଏ ତ ସତ୍ୟ କିମ୍ବା ମିଥ୍ୟା । ସତ୍ୟ କିମ୍ବା ମିଥ୍ୟା ହେବା ବିଷୟରେ 'ବରଫ' ଦ୍ୱାରା ଯେଉଁ ନିର୍ଦ୍ଦେଶ ପ୍ରତୀକାନ୍ୱିତ ଏବଂ 'ବରଫ ଥଣ୍ଡାକରେ' ଦ୍ୱାରା ଯେଉଁ ନିର୍ଦ୍ଦେଶ ପ୍ରତୀକାନ୍ୱିତ, ସେ ଦୁଇଟି ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଏହି ଉକ୍ତିର ଅଯଥା ବିଶଦ ବ୍ୟାଖ୍ୟା ଯେପରି କରା ନ ଯାଏ, ସେଥିପ୍ରତି ସାବଧାନ ରହିବା ଆବଶ୍ୟକ । ଶବ୍ଦଗୁଡ଼ିକୁ ଅଲଗା ଅଲଗା ନେଇ ସହଜରେ ଏପରି ବ୍ୟବହାର କରାଯାଇପାରେ ଯେ ସେଗୁଡ଼ିକ ଆଦୌ ପ୍ରତୀକ ନୁହେଁ । ଯେତେବେଳେ ଏହା ହିଁ କରା-ଯାଇଥାଏ, ସେତେବେଳେ କେତେକ ବିକ୍ଷିପ୍ତ ମାନସିକ ପ୍ରତିମା ଓ ଅନ୍ୟାନ୍ୟ ମାନସିକ ପ୍ରକ୍ରିୟାର ଯେ ଉଦ୍ରେକ ହୋଇପାରେ, ଏଥିରେ ସନ୍ଦେହ ନାହିଁ । ପୁଣି, ଆମେ ଯଦି 'ଅର୍ଥ' ଶବ୍ଦର ଆମ ବ୍ୟବହାରରେ ସାବଧାନତା ଅବଲମ୍ବନ ନ କରୁ, ତେବେ ଆମର ମନେ ହୋଇପାରେ ଯେ ଏହିପରିଭାବେ ବିଗ୍ଭର କରାଯାଉଥିବା ଅଣପ୍ରତୀକାତ୍ମକ ଶବ୍ଦ-ଗୁଡ଼ିକର ମଧ୍ୟ ଅର୍ଥ ରହିଛି, ଏବଂ ଏହି ଅର୍ଥ ପ୍ରତୀକାତ୍ମକଭାବେ ଗୋଟିଏ ପ୍ରତିଜ୍ଞପ୍ତିରେ ସେଗୁଡ଼ିକ ରହିଥିବା ଅବସ୍ଥାରେ ଅର୍ଥ ସହିତ ପରିମାଣତଃ ଓ ତାତ୍ପର୍ଯ୍ୟତଃ ସମାନ । କିନ୍ତୁ, ଗୋଟିଏ ଏକାକୀ ଶବ୍ଦ, ତାହା ବିଶେଷ୍ୟ ହୋଇଥାଉ କି କ୍ରିୟା ହୋଇଥାଉ,

ଯେତେବେଳେ ତାହା ଏପରିଭାବେ ଗୃହୀତ ଯେ ଏକ ସାଧାରଣ ଧରଣର ନିର୍ଦ୍ଦେଶ ପ୍ରସଙ୍ଗରେ ତାହା ଅଂଶୀଭୂତ, କେବଳ ସେତିକିବେଳେ ହିଁ ଏଠାରେ ଆବଶ୍ୟକ ହେଉଥିବା ଅର୍ଥରେ ତାହାର ଅର୍ଥ ଥାଏ । କେବଳ ଏହିପରିଭାବେ ଗୃହୀତ ହୋଇଥିବା କ୍ଷେତ୍ରରେ ହିଁ ତାହା ଗୋଟିଏ ପ୍ରତିଜ୍ଞପ୍ତିର ଏକ ପ୍ରତୀକାତ୍ମକ (ସଂବେଗାତ୍ମକଠାରୁ ଭିନ୍ନ) ଔପାଦାନିକ ଅଂଶ ହୁଏ । ଯେ କୌଣସି ଶବ୍ଦ ଏହିପରିଭାବେ ଗୃହୀତ ହୋଇଥିଲେ, କୌଣସି ଘଟଣାମୂଳକ ଅବସ୍ଥା ପ୍ରତି ନିର୍ଦ୍ଦେଶର ପ୍ରତୀକ ରୂପେ, ତାହା ସତ୍ୟ ତଥା ମିଥ୍ୟା ହେବା ସାମର୍ଥ୍ୟର ଅଧିକାରୀ ହୋଇବସେ । ଏହି ବିଷୟରେ, ଉକ୍ତ ଉଦ୍ଦେଶ୍ୟରେ ପ୍ରତୀକାତ୍ମକଭାବେ ବ୍ୟବହୃତ ଏକ ବାକ୍ୟଠାରୁ ଏହା କୌଣସି ପ୍ରକାର ଭିନ୍ନ ନୁହେଁ ।(୧)

ତେଣୁ ଐକିକ ଶବ୍ଦ ଓ ବାକ୍ୟ ମଧ୍ୟରେ ସୁସ୍ପଷ୍ଟ ପାର୍ଥକ୍ୟ କାହିଁରେ ପର୍ଯ୍ୟବସିତ, ତାହା ଦେଖିବାକୁ ଏ ଯାବତ୍ ଆମର କାମ ରହିଛି । ପ୍ରତୀକ ପରିସ୍ଥିତିର ସ୍ୱଭାବ ଦୃଷ୍ଟିରୁ ଯାହା ଆଶା କରିବା କଥା, ଠିକ୍ ତାହା ହିଁ ଏଠାରେ ମିଳିଥାଏ । ତାହା ହେଉଛି, ଏହି ପାର୍ଥକ୍ୟ ଏକ ନୁହେଁ, ଅନେକ; ଏବଂ ଏଗୁଡ଼ିକରୁ କୌଣସି ଗୋଟିଏ ପାର୍ଥକ୍ୟ ସର୍ବଦା ବା ଆବଶ୍ୟକରୂପେ ସବୁ କ୍ଷେତ୍ରରେ ଉପସ୍ଥିତ ନ ଥାଏ, ଯଦିଓ କୁହାଯାଇପାରେ ଯେ ସାଧାରଣ କ୍ଷେତ୍ରରେ ଏଗୁଡ଼ିକରୁ କେତେକ ନିହିତ ଥାଏ । ପ୍ରଥମତଃ, ପ୍ରତୀକମାନଙ୍କ ନିର୍ଦ୍ଦେଶଗୁଡ଼ିକ ଗଠନ ଦୃଷ୍ଟିରୁ ପ୍ରାୟଶଃ ଭିନ୍ନ ଭିନ୍ନ ହେବ । ଉଦାହରଣ ସ୍ୱରୂପ, 'ଭରତିଆ ଗାଏ'ର ନିର୍ଦ୍ଦେଶରେ ଦୁଇଟି ଅଂଶ ରହିଛି । ତେଣୁ 'ଭରତିଆ'ର ନିର୍ଦ୍ଦେଶଠାରୁ ଏହା ଭିନ୍ନ ହେବ । ଠିକ୍ ସେହିପରି 'ଉତ୍ତମ ଭରତିଆ' ବା 'ଭରତିଆ ଶୁକ'ରେ ମଧ୍ୟ ଦ୍ୱୈତ ନିର୍ଦ୍ଦେଶ ରହିଛି । ସୁତରାଂ ଏହା 'ଭରତିଆ'ର ନିର୍ଦ୍ଦେଶଠାରୁ ଭିନ୍ନ । ତେଣୁ ଯଦିଓ ଅଧିକାଂଶ ଜଟିଳ ନିର୍ଦ୍ଦେଶ ବସ୍ତୁତଃ ପ୍ରତିଜ୍ଞପ୍ତିମୂଳକ ଆକାର ବ୍ୟବହାର କରିଥାଏ, ଏହି ପାର୍ଥକ୍ୟ ମୌଳିକ ନୁହେଁ । ପ୍ରତିଜ୍ଞପ୍ତିମୂଳକ ଆକାର ବ୍ୟବହାର କରିବାର ଗୋଟିଏ କାରଣ ରହିଛି । ତାହା ହେଉଛି, ଯେଉଁ କ୍ଷେତ୍ରରେ ଦ୍ୱ୍ୟର୍ଥକତାର ସମ୍ଭାବନା ଥାଏ, ସେହି କ୍ଷେତ୍ରରେ ଔପାଦାନିକ ନିର୍ଦ୍ଦେଶଗୁଡ଼ିକର ସମନ୍ୱୟନକୁ

---

(୧) Sheffield ସ୍ୱୀକାର କରିଛନ୍ତି ଯେ ବିଶେଷ୍ୟ—କ୍ରିୟା ସଂଯୋଗର ଏହି ବହୁବିଧ କାର୍ଯ୍ୟ ହେଉଛି ବିଶ୍ଳେଷଣ ନିମନ୍ତେ ଏକ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ( Grammar and Thinking, ପୃ ୩୪ ) । କିନ୍ତୁ 'ଅର୍ଥ' ଶବ୍ଦକୁ ସେ ଯେପରିଭାବେ ବ୍ୟବହାର କରିଛନ୍ତି, ସେହି ହେତୁରୁ ତାଙ୍କ ଦ୍ୱାରା ସମାଲୋଚିତ ବୈୟାକରଣମାନଙ୍କ ପକ୍ଷରେ ତାଙ୍କର ପାର୍ଥକ୍ୟଗୁଡ଼ିକର ମୂଲ୍ୟ ଅବୋଧ ରହିଯାଇଥିବ ।

ପ୍ରତିକାନ୍ୱିତ କରିବାର ଏହା ଏକ ସ୍ୱାଭାବିକ ପଦ୍ଧତି । ଏଥିରୁ ଜଣାପଡ଼ୁଛି ଯେ ନିର୍ଦ୍ଦେଶ-ଗ୍ରହିକର ସମନ୍ୱୟନକୁ ସ୍ପଷ୍ଟ କରିବା ନିମନ୍ତେ ବାକ୍ୟ ହେଉଛି ମୁଖ୍ୟ ପ୍ରତୀକାତ୍ମକ କୌଶଳ, କିନ୍ତୁ ଏହା ଏକମାତ୍ର ପ୍ରତୀକାତ୍ମକ କୌଶଳ ନୁହେଁ । ଏହାକୁ ହିଁ ସାଧାରଣତଃ ପ୍ରତି-ଜ୍ଞପ୍ତିର 'ସଂଶ୍ଳେଷକ' କାର୍ଯ୍ୟ ବୋଲି ବର୍ଣ୍ଣନା କରାଯାଏ । ଏହା ଏକ ସନ୍ତୋଷଜନକ ପଦ ନୁହେଁ, କାରଣ ଯେଉଁ ଶାବ୍ଦିକ ବିନ୍ୟାସଗୁଡ଼ିକ ପ୍ରତିଜ୍ଞପ୍ତି ଆକାର ବିଶିଷ୍ଟ ନୁହେଁ, ଯଥା—'ଉଡ଼ନ୍ତା ଶୁକ' ବା 'ଏହି ଉଡ଼ନ୍ତା ଶୁକ' (୧) ମଧ୍ୟ ସମଭାବରେ ସଂଶ୍ଳେଷକ । ତର୍କ ଶାସ୍ତ୍ରରେ, ବିଶ୍ଳେଷଣର ନିବାକରଣ ପାଇଁ ସମସ୍ତ ପ୍ରତିଜ୍ଞପ୍ତିକୁ ଉଦ୍ଦେଶ୍ୟ-ସଂଯୋଜକ-ବିଧେୟ ଆକାରରେ ରୂପାନ୍ତରୀକରଣ ଏକ ପ୍ରଥା ହୋଇ ରହିଆସିଛି, ଯଦିଓ ଆଧୁନିକ ତାର୍କିକମାନେ ଉପଲବ୍ଧି କରିଛନ୍ତି ଯେ ସମ୍ବନ୍ଧାତ୍ମକ ପ୍ରତିଜ୍ଞପ୍ତିମାନଙ୍କ ନିମନ୍ତେ ଅଧିକ ବିଶଦୀକୃତ ପ୍ରଥାମାନ ବାଞ୍ଛନୀୟ ।

କିନ୍ତୁ ବାକ୍ୟ ବିଭିନ୍ନ ପ୍ରକାର ସଂବେଗାତ୍ମକ କାର୍ଯ୍ୟ (୨) ମଧ୍ୟ କରିଥାଏ । ବାକ୍ୟ ହେଉଛି ଆହ୍ୱାନର ପ୍ରଥାଗତ ଆକାର, କାରଣ ଶ୍ରୋତାମାନେ ଜ୍ଞାନ ଆହରଣ ନିମନ୍ତେ ପ୍ରସ୍ତୁତ ରହିବା ପୂର୍ବରୁ ନିର୍ଦ୍ଦେଶ ଘଟୁଛି ବୋଲି ଜଣାଇଦେବାର ଏକ ବିଶିଷ୍ଟ ଇଙ୍ଗିତ ପାଇବାକୁ ଆଶା କରନ୍ତି । ଆହୁରି ମଧ୍ୟ ଏହା ହେଉଛି ବକ୍ତାଠାରେ ବିଶ୍ୱାସର ଏବଂ ଗ୍ରାହ୍ୟ, ଅଗ୍ରାହ୍ୟ ବା ସନ୍ଦେହ ଅନୁଭବର ଉପସ୍ଥିତି ସୂଚକ ଏକ ପ୍ରଥାଗତ ବାଚନିକ ସଙ୍କେତ ଏବଂ ଏହା ହେଉଛି ଶ୍ରୋତାଠାରେ ଅନୁରୂପ ଅନୁଭବମାନଙ୍କର ଉଦ୍ଦୀପକ । ପୁଣି ଏହି ଅନୁବୃତ୍ତିଗୁଡ଼ିକ ଶ୍ରୋତା ଗ୍ରହଣ କରିନେଉ ବୋଲି ବକ୍ତା ରଖିଥିବା ଅଭିପ୍ରାୟ ଅଭିଳାଷ ଇତ୍ୟାଦି ମଧ୍ୟ ବାକ୍ୟ ଦ୍ୱାରା ପ୍ରକାଶିତ ହୋଇପାରେ ।

ବାକ୍ୟର ଏହି ବିବରଣୀକୁ ଆମ ସମକ୍ଷରେ ରଖି ବିଶେଷ୍ୟ ଓ କ୍ରିୟାର ପାର୍ଥକ୍ୟ ଏବଂ ସମସ୍ତ ବିବୃତିରେ ସେ ଦୁଇଟିକୁ ସଂଯୋଗ କରିବାର ଆବଶ୍ୟକତା—ଏହି ଉଭୟ ବିଷୟରେ ରହିଥିବା ପ୍ରାଚୀନ ମତର ଆମେ ବିଚାର କରିପାରୁଁ । ଆଦିମ ଭାଷାମାନଙ୍କରେ କ୍ରିୟାଗୁଡ଼ିକର ଓ ବିଶେଷ୍ୟଗୁଡ଼ିକର ପୃଥକ୍‌କରଣ ବକ୍ତାର କାର୍ଯ୍ୟାବଳୀ ଓ ତାହାର

---

(୧) ତୁଳନା କର—ଉଦାହରଣ ସ୍ୱରୂପ, Thought and Things, ୨ୟ ଖଣ୍ଡ । ପରୀକ୍ଷଣମୂଳକ ତର୍କ, ପୃ୨୬୨ରେ Baldwinଙ୍କ ବ୍ୟବହାର ।

(୨) ତୁଳନାକର—C, Dickensଙ୍କ works ; ସାକ୍ଷର ସଂସ୍କରଣ, ୧୯୦୩, ୧୨ ଖଣ୍ଡ, ପୃ ୧୬ ।

ପାରିପାର୍ଶ୍ୱିକ ବସ୍ତୁବର୍ଗ ମଧ୍ୟରେ ଥିବା ପାର୍ଥକ୍ୟକୁ ପ୍ରତିଫଳିତ କରେ ବୋଲି ମନେ କରିବାର କେତେକ କାରଣ ରହିଛି । (୧)ପରବର୍ତ୍ତୀ ଅବସ୍ଥାରେ, ଏକ ସ୍ୱାଭାବିକ ଆକାରଗତ ସାଦୃଶ୍ୟ ଭିତ୍ତିକାନୁମାନ ଦ୍ୱାରା, ଭାଷାତ୍ମକ ବିଷୟବସ୍ତୁ ସମ୍ବନ୍ଧୀୟ ଏହି ଶ୍ରେଣୀ ବିଭାଗ ବସ୍ତୁ

---

(୧) ଆଧୁନିକ ଲାଇପ୍‌ଜିଗ୍ ଗୋଷ୍ଠୀ ମନସ୍ତତ୍ତ୍ୱବିଦ୍‌ଗଣଙ୍କ, ଅର୍ଥାତ୍ Professor Dittrich ଓ ତାଙ୍କର ଅନୁଗାମୀମାନଙ୍କ ଲେଖାରେ ଏହି କ୍ଷେତ୍ରରେ ଉଦ୍ଦେଶ୍ୟ ଓ ବିଧେୟ ବିଷୟ ପୁନରୁତ୍‌ଥାପିତ ହୋଇଛି । ସେମାନଙ୍କ ସାଧାରଣ ଉଦ୍ଦେଶ୍ୟ ବା Protosubjekt ଆମ ପରିଭାଷାର ନିର୍ଦ୍ଦେଶ୍ୟ ସହିତ ବହୁ ପରିମାଣରେ ସମାନ । ସେମାନଙ୍କ ସାଧାରଣ ବିଧେୟ ବା Protopradikat ହେଉଛି ଏହି ବାସ୍ତବ ଘଟଣାଚକ୍ର ପ୍ରତି ଗ୍ରହଣ କରାଯାଇଥିବା ଅଭିବୃତ୍ତି (ସ୍ୱୀକାର, ସନ୍ଦେହ, ଅଭିଳାଷ ବା ଅନ୍ୟ କୌଣସି ସମ୍ବେଗ) । Protosubiekt ହେଉଛି ସ୍ଥିର (Dittrich ତାଙ୍କର probleme ଗ୍ରନ୍ଥର ପୃ ୬୧ରେ), କିନ୍ତୁ Proto-pradikat ହେଉଛି ପରିବର୍ତ୍ତନଶୀଳ । ଏହି ଦୁଇଟି ଉପାଦାନିକ ଅଂଶ ତୁଳନାରେ ଉଦ୍ଦେଶ୍ୟ ଓ ବିଧେୟର ସ୍ୱଭାବ ହେଉଛି ଦ୍ୱିତୀୟ ପ୍ରସ୍ଥୀୟ ଏବଂ ବିଶେଷ୍ୟ କ୍ରିୟାର ସ୍ୱଭାବ ତୃତୀୟ ପ୍ରସ୍ଥୀୟ । ଏହି ମତାନୁସାରେ "Fall in Home Raits" ( ପାରିବାରିକ ନିସ୍ତନ୍ତ୍ରଣରେ ପଡ଼େ ) ହେଉଛି ଗୋଟିଏ ବାକ୍ୟ । ଏହାର Proto subjekt ହେଉଛି 'ପାରିବାରିକ ନିସ୍ତନ୍ତ୍ରଣରେ ପଡ଼େ ।' ଏହାର Proto pradikat ହେଉଛି ଏକ ସ୍ୱୀକୃତିର ଅନୁଭବ । ସୁତରାଂ ବାକ୍ୟର କୌଣସି ଅଭିବ୍ୟକ୍ତ ଉଦ୍ଦେଶ୍ୟ ଏଠାରେ ରହିବ ନାହିଁ । 'ପଡେ଼'କୁ ଏଠାରେ ଏକ ଅଣାତ୍ମଚକ ନିର୍ବୈକ୍ତିକ Pradikativum ବୋଲି ବିବେଚନା କରାଯାଏ । 'ପଡେ଼'ର ଉଦ୍ଦେଶ୍ୟ କାହିଁକି ବ୍ୟକ୍ତ ହୋଇନାହିଁ, ତାହାର କାରଣ ସ୍ୱରୂପ କୁହାଯାଏ ଯେ ଏଠାରେ ତାହା ଅନୁରକ୍ତିର ବିଷୟ ନୁହେଁ । ଏହି ମତ ଅନୁଯାୟୀ ଯୁକ୍ତିର ପ୍ରସଙ୍ଗ ପରିସର ମଧ୍ୟରେ ( Aussage-grundlage ) ଯେଉଁ ସବୁ ବିଷୟ ପଡ଼ିବାର ସାମର୍ଥ୍ୟ ରହିଛି, ଯେଗୁଡ଼ିକ ମଧ୍ୟରେ 'ପଡେ଼'ର ଉଦ୍ଦେଶ୍ୟ ମିଳିବା ନିଶ୍ଚିତ । ଏହି ସବୁ ବିଶଦୀକରଣ ସହିତ ଆମେ ଏଠାରେ ସମ୍ପୃକ୍ତ ନୋହୁଁ । ଏହି ବିଚାରଧାରା Gomperzଙ୍କ ପରିଭାଷା ଉପରେ ଆଧାରିତ । Gomperzଙ୍କ ପରିଭାଷାର ଜ୍ଞାନ ଆହରଣ କରିବାକୁ ପାଠକ ପରିଶିଷ୍ଟ-ଘ ଏବଂ Dittrichଙ୍କ ଗ୍ରନ୍ଥ ଅଧ୍ୟୟନ କରିବା ଆବଶ୍ୟକ । ଏଠାରେ ଏତିକି ଉଲ୍ଲେଖ କରିବା ଯଥେଷ୍ଟ ଯେ ଏହି ସମ୍ପ୍ରଦାୟର ଲେଖାରେ ଯେଉଁମାନେ ସୁପରିଚିତ ନୁହନ୍ତି, ସେମାନଙ୍କ ପକ୍ଷରେ ପ୍ରାଚୀନ ପ୍ରଥାଗତ

ବା ବିଶେଷ ଏବଂ ତହିଁରେ 'ରହିଥିବା' ବା 'ଘଟିଥିବା' ଅବସ୍ଥା, ଗୁଣ ଓ ପରିବର୍ତ୍ତନ-ମାନଙ୍କ ମଧ୍ୟରେ ପାର୍ଥକ୍ୟ ଲକ୍ଷ୍ୟ କରିବା ନିମିତ୍ତ ବହୁଳ ପରିମାଣରେ ବ୍ୟବହୃତ ହେଉ-ଥିଲି । ଆଗରୁ ମୁଁ ଉପସ୍ଥାପିତ କରିସାରିଛି ଯେ ଏହି କାଳ୍ପନିକ ସତ୍ତ୍ୱଗୁଡ଼ିକ ସମସ୍ତ କ୍ଷେତ୍ରରେ ଭାଷାତ୍ମକ ଉତ୍ସରୁ ହିଁ ସୃଷ୍ଟ । କିନ୍ତୁ ତଥାପି ଏତଦ୍ଦ୍ୱାରା ବିଶେଷ ଓ ସାମାନ୍ୟ, ବସ୍ତୁ ଓ ଗୁଣ, ଉଦ୍ଦେଶ୍ୟ ଓ ବିଧେୟ, ସତ୍ତ୍ୱମୂଳକ ବିଷୟ ଓ ଗୁଣାତ୍ମକ ବିଷୟ ବିଶେଷ୍ୟ ଓ କ୍ରିୟା ମଧ୍ୟରେ ବିରୋଧିତା ରକ୍ଷା କରିବା ବ୍ୟାହତ ହୋଇ ନାହିଁ । ଏହି ସମସ୍ତ ବିଭିନ୍ନ ପ୍ରକାରରେ ଏଗୁଡ଼ିକୁ ବିଭ୍ରାନ୍ତକରଭାବେ ନାମିତ କରସାଇଛି, କିନ୍ତୁ ଚିନ୍ତା ସମ୍ପୃକ୍ତ ରହିବା ଯୋଗ୍ୟ ସର୍ବାଧିକ ମୌଳିକ ଶ୍ରେଣୀରୂପେ ଏଗୁଡ଼ିକ ମନେହେବା ବାଧାପ୍ରାପ୍ତ ହୋଇ ନାହିଁ । (୧) ଆରିଷ୍ଟଟଲଙ୍କ ପକ୍ଷରେ ବିଶେଷ ହେଉ ବା ସାମାନ୍ୟ ହେଉ, କୌଣସିଟି ଅପର ସହିତ ଅସମ୍ପୃକ୍ତଭାବେ କଳ୍ପନୀୟ ନୁହେଁ ; ଏହି ତତ୍ତ୍ୱ ମୀମାଂସାର ପ୍ରୟୋଗ ତାଙ୍କର ପ୍ରତିଜ୍ଞପ୍ତି ସିଦ୍ଧାନ୍ତରେ କରସାଇଛି, କିନ୍ତୁ ଏହା ଦେଖି ବିଶେଷ ବିଚଳିତ ହେବାର କିଛି ନାହିଁ । ତାଙ୍କର ଗୃହୀତ ତଥ୍ୟାନୁସାରେ ଶବ୍ଦଗୁଡ଼ିକ ସତ୍ତ୍ୱର 'ସମ୍ବାଦ' । ଗୋଟିଏ ବିଶେଷ ବସ୍ତୁ ପରିବର୍ତ୍ତେ ବ୍ୟବହୃତ କେବଳ କ୍ରିୟା ଏକାକୀ ଏକ ସମ୍ପୂର୍ଣ୍ଣ 'ଅର୍ଥ'ର ଅଧିକାରୀ ହୋଇ ନ ପାରେ । ଭିନ୍ନ ଭିନ୍ନ ପ୍ରକାର ନିର୍ଦ୍ଦେଶ ପରିବର୍ତ୍ତେ

---

ତାତ୍ପର୍ଯ୍ୟବିଶିଷ୍ଟ 'ଉଦ୍ଦେଶ୍ୟ' ଓ 'ବିଧେୟ' ପଦର ଏହି ବ୍ୟବହାର ବିଭ୍ରାନ୍ତିକର ହେବାର ସମ୍ଭାବନା ରହିଛି । ଯେଉଁ ବ୍ୟବହାର ସହିତ ଆମେ ଆଗରୁ ସୁପରିଚିତ, ତାହା ସହିତ ଏହି ନୂତନ ବ୍ୟବହାରର ବିଶେଷ କୌଣସି ସାଦୃଶ୍ୟ ନାହିଁ ।

(୧) ଉଦାହରଣ ସ୍ୱରୂପ, ଭାଷାବିତ୍‌ମାନଙ୍କ ମଧ୍ୟରେ ବ୍ୟାପକଭାବେ ପ୍ରଚଳିତ ଥିବା ଏକ ମତ Sapirଙ୍କ ଦ୍ୱାରା ବ୍ୟକ୍ତ ହୋଇଛି । ସେ ଯେପରିଭାବେ ଲେଖିଛନ୍ତି, ସେଥିରୁ ମନେହେବ, ସତେ ଯେପରି ସେ ବିଶ୍ୱର କେତେକ ଚରମ ବୈଶିଷ୍ଟ୍ୟ ସମ୍ବନ୍ଧରେ ଆଲୋଚନା କରୁଛନ୍ତି । 'ନିଶ୍ଚୟ କିଛି ନା କିଛି ବସ୍ତୁ ରହିଥିବ,ଯାହା ବିଷୟରେ କୁହାଯିବ; ଏବଂ ଆଲୋଚନାର ଏହି ବିଷୟ ଥରେ ନିର୍ବାଚିତ ହୋଇ ଗଲେ, ତତ୍ସମ୍ବନ୍ଧରେ ନିଶ୍ଚୟ କିଛି କୁହାଯିବ ।······ଆଲୋଚନାର ବିଷୟ ହେଉଛି ଏକ ବିଶେଷ୍ୟ ··ବିଶେଷ୍ୟ ଓ କ୍ରିୟା ମଧ୍ୟରେ ପାର୍ଥକ୍ୟ ରକ୍ଷାକରିବାରେ କୌଣସି ଭାଷା ସମ୍ପୂର୍ଣ୍ଣଭାବେ ଅକୃତକାର୍ଯ୍ୟ ହୋଇ ନାହିଁ ।' କଥିତ ଗ୍ରନ୍ଥ, ପୃ ୧୨୬

ଭିନ୍ନ ଭିନ୍ନ ଶବ୍ଦ ଓ ଶବ୍ଦ ବିନ୍ୟାସ ବ୍ୟବହୃତ ହୁଏ ଏବଂ ଭିନ୍ନ ଭିନ୍ନ ପ୍ରକାର ନିର୍ଦ୍ଦେଶ୍ୟ ଭିନ୍ନ ଭିନ୍ନ ପ୍ରକାର ଶବ୍ଦ ଆବଶ୍ୟକ କରେ—ଏହି ଉଭୟ ବିଷୟର ପ୍ରଭେଦ ବିଷୟକ ଆହୁରି ଅଧିକ ଉତ୍ତମ ଉଦାହରଣ ଅନ୍ୟତ୍ର ଥାଇ ନପାରେ । ଆମେ ଦେଖି ପାରିବୁ ଯେ ଏହି ଉଭୟ ଗୃହୀତ ତଥ୍ୟ ଭିତ୍ତିହୀନ ।

କିନ୍ତୁ ଯଦିବା ଉପର୍ଯ୍ୟୁକ୍ତ ଯୁକ୍ତିଗୁଡ଼ିକର ବୈଧତାକୁ ସ୍ୱୀକାର କରି ନିଆଯାଏ, ତେବେ ସୁଦ୍ଧା କୁହାଯାଇ ପାରେ ଯେ ଏଥିରୁ ଯେଉଁ ଶିକ୍ଷା ମିଳୁଛି, ତାହା ହେଉଛି, ବୈୟାକରଣମାନେ ନିଶ୍ଚିତରୂପେ ମୌଳିକ ତତ୍ତ୍ୱଗୁଡ଼ିକ ସହିତ ସମସ୍ତ ପ୍ରକାର ସମ୍ପର୍କ ଛିନ୍ନ କରିବା ଉଚିତ ଏବଂ ତଥାକଥିତ 'ସାଧାରଣ ବୁଦ୍ଧି' ଲବ୍ଧ ବର୍ଗୀକରଣରେ ନିଜର ଆଲୋଚନାକୁ ସୀମିତ ରଖିବା ଉଚିତ । କିନ୍ତୁ ମନେ ରଖିବା ଆବଶ୍ୟକ ଯେ ଭାଷାତ୍ମକ ବିଷୟାବଳୀରେ ,ସାଧାରଣ 'ବୁଦ୍ଧି' ଶବ୍ଦଟିହିଁ ହେଉଛି ଏକ ବିଶବୀକୃତ ଓ ବିଭ୍ରାନ୍ତିକର ତତ୍ତ୍ୱମାତ୍ର । ସାଧାରଣ ବୁଦ୍ଧିଗତ କେତେକ ସିଦ୍ଧାନ୍ତ ଆମ ଦ୍ୱିତୀୟ ପରିଚ୍ଛେଦରେ ଆଲୋଚିତ ହୋଇଛି । ଏଠାରେ ଆହୁରି ଏକ ବିଷୟ ଉଲ୍ଲେଖଯୋଗ୍ୟ । ବର୍ତ୍ତମାନ ପ୍ରଚଳିତ ଯେଉଁ ପାର୍ଥକ୍ୟଗୁଡ଼ିକର ତଥା ପରିଭାଷାର ପ୍ରୟୋଗ ସପକ୍ଷରେ ବୈୟାକରଣ ପ୍ରସ୍ତାବ ବାଢ଼ୁଛି, ତାହା କେବଳ ଯେ ଆରିଷ୍ଟଟଲୀୟ ମୂଳତତ୍ତ୍ୱରୁ ଲବ୍ଧ, ସେ କଥା ନୁହେଁ, ତାହା ମଧ୍ୟ ହେଉଛି "ତତ୍ତ୍ୱମୀମାଂସା ମୂଳକ ବାକ୍ୟବିନ୍ୟାସ ବୋଧ ଶତାବ୍ଦୀ"ର ପରିଣତି । ଅଧ୍ୟାପକ ହେଲ (୧)ଦର୍ଶାଇଛନ୍ତି ଯେ ୧୮୦୧ରେ ହେରମାନ୍‌ଙ୍କ ଦ୍ୱାରା କାଣ୍ଟୀୟ ପଦାର୍ଥ-ତତ୍ତ୍ୱକୁ ବ୍ୟାକରଣରେ ପ୍ରୟୋଗ କରିବା ପରେ ଏହି ଶତାବ୍ଦୀର ଆରମ୍ଭ ହୋଇଥିଲା ।

ଏହି ଶତାବ୍ଦୀରେ ଅନୁଭୂତ ହୋଇଛି ଯେ ଭାଷାର ମନସ୍ତତ୍ତ୍ୱ ମଧ୍ୟକୁ ଏକ ଅନ୍ୱୀକ୍ଷାମୂଳକ ଅନୁସନ୍ଧାନ କୌଣସି ମତେ ପରିହାର କରାଯାଇ ନପାରେ, କିନ୍ତୁ ଏକ ପ୍ରାଚୀନ ଓ ମର୍ଯ୍ୟାଦାପୂର୍ଣ୍ଣ ବିଜ୍ଞାନରୁ ଶବ୍ଦସମଷ୍ଟିମାନଙ୍କ ନିମନ୍ତେ ପ୍ରାପ୍ତ ଏକ କୋଡ଼ ସୁବିଧାଜନକ ନାମର କେବଳ ମାନକୀକରଣ ଅପେକ୍ଷା ଆହୁରି ଅଧିକ ଫଳ ଲାଭ କରିବାକୁ ହେଲେ, ଏଠାରେ ବସ୍ତୁନିବିଷୟର ସାକ୍ଷାତ୍‌ଭାବେ ସମ୍ମୁଖୀନ ହେବା ଗୁରୁତ୍ୱପୂର୍ଣ୍ଣ । ଉପସ୍ଥିତ

---

(୧) St Louis Congress (୧୯୦୪) Proceedings । Classical Association ର Proceedings (୧୯୦୭) ରେ ସେହି ଏକ ଲେଖକଙ୍କ ରଚନା "The Heritage of Unreason in Syntactical Method" ସହିତ ତୁଳନୀୟ ।

ବିଶୃଙ୍ଖଳା ଅବସ୍ଥାରୁ କୌଣସି ପ୍ରକାର ଏକ ଶୃଙ୍ଖଳାର ଉଦ୍ଭବ ପାଇଁ ବୈୟାକରଣମାନେ ଯେଉଁ ଆନ୍ତରିକ ଉଦ୍ୟମ କରିଛନ୍ତି, ତାହାକୁ କୌଣସି ପ୍ରକାରେ ନ୍ୟୂନ କରି ଦର୍ଶାଇବା ଅଥବା ଏହି ଲକ୍ଷ୍ୟର ପୂରଣ ନିମନ୍ତେ ଯେଉଁ ସମସ୍ତ ଓ ଶକ୍ତି ବିନିଯୋଗ କରାଯାଇଛି, ତାହାର ମୂଲ୍ୟହ୍ରାସ କରିବା ଆମର ଅଭିପ୍ରାୟ ନୁହେଁ । କିନ୍ତୁ ଏହି ଉଦ୍ୟମର ଫଳ ସ୍ୱରୂପ ଯେଉଁ ପ୍ରକାର ପାରିଭାଷିକ ନାମର ସୃଷ୍ଟି କରାଯାଉଛି ତାହାର ଏକ ଉତ୍ତମ ଉଦାହରଣ ଦିଆଯାଉ । 'I should write to him, if I knew his addresss' [ମୁଁ ତାଙ୍କର ଠିକଣା ଜାଣିଥିଲେ, ତାଙ୍କୁ ପତ୍ର ଦେଇଥାନ୍ତି] ଏହି ବାକ୍ୟର ତାତ୍ପର୍ଯ୍ୟ ବୁଝାଇବାକୁ ଦୁଇଟି ବୈୟାକରଣିକ ପଦ ସୁପାରିଶ କରାଯାଇଛି । ସେ ଦୁଇଟି ହେଲା, 'Subjunctive—equivalent' [କ୍ରିୟାର ସମ୍ଭାବ୍ୟାବସ୍ଥାର ସମତୁଲ୍ୟ] ଏବଂ Future in the past [ଅତୀତକାଳୀନ ଭବିଷ୍ୟତ] (ବୈୟାକରଣିକ ପରିଭାଷା କମିଟିର ବିବରଣୀ ପୃ ୩୬-୩୭ରେ ଏ ଦୁଇଟିର ବ୍ୟବହାର ପାଇଁ ସୁପାରିଶ କରାଯାଇଛି) । ଏ ଦୁଇଟି ପଦର ବୈଧତା ସମ୍ବନ୍ଧରେ ଏବେ ସୁରୋପରେ ପ୍ରଥମ ପର୍ଯ୍ୟାୟଭୁକ୍ତ ବିଶେଷଜ୍ଞମାନଙ୍କ ମଧ୍ୟରୁ ଦୁଇଜଣଙ୍କ ମତ ପାର୍ଥକ୍ୟ ପ୍ରକାଶିତ ହୋଇଛି । (୧) ଧରିନିଆଯାଉ ଯେ ଆଜିକାଲି ବ୍ୟବହୃତ ହେଉଥିବା ପ୍ଲାଷ୍ଟିକ ମୃଗୀୟ ପଦସମ୍ଭାରର ଆବର୍ଜନାରୁ ଏକ ମର୍ଯ୍ୟାଦା-ପୂର୍ଣ୍ଣ ପାରିଭାଷିକ ନାମାବଳୀର ନିଃସରଣ କରାଯାଇପାରେ । କିନ୍ତୁ ତଥାପି କି ପ୍ରକାର ସଫଳତା ଅର୍ଜନ କରାଗଲା ? ବଚନର ମୁଖ୍ୟ ଆକାରଗୁଡ଼ିକୁ ନାମ ଦେବା ବ୍ୟତୀତ ଆମେ ଅଧିକ କିଛି କରୁନ ଥାଉ । ସୁତରାଂ ଏହି ନାମଗୁଡ଼ିକର ଶିକ୍ଷା ଦେବାରେ ଏବଂ ନାମିତ ଉକ୍ତିମାନଙ୍କ ମାନକ ବ୍ୟବହାର ଦ୍ୱାରା ସମ୍ମାନ ଅର୍ଜନ କରାଇବାରେ ବ୍ୟାକରଣ ଏବେ ଯେପରି ସୀମିତ ରହିଛି, ତାହା ସ୍ପଷ୍ଟତଃ ଯୁକ୍ତିଯୁକ୍ତ ହେବ ନାହିଁ । ବ୍ୟାକରଣର ଭୂଲ୍, ତାହାର ପରିଭାଷା ଦୋଷମୁକ୍ତ ହେବା ନୁହେଁ; ତାହା ହେଉଛି ବ୍ୟାକରଣ ଯେଉଁ କ୍ଷେତ୍ରର ଆଲୋଚନା କରେ ବୋଲି ସ୍ୱୀକୃତ ହୁଏ, ସେହି କ୍ଷେତ୍ରର ଅନ୍ତର୍ଭୁକ୍ତ ନ୍ୟୂନ ଗୌରବ ତଥା ସୁପରିଚିତ

---

(୧) Professor Sonnencheinଙ୍କ ମତ ବିରୋଧରେ Professor Jespersenଙ୍କ ଦ୍ୱାରା ଲିଖିତ ପତ୍ର ଦ୍ରଷ୍ଟବ୍ୟ (Times Literary Supplement, ୨୯ ଜୁନ ୧୯୨୨, ପୃ ୪୨୮) । ଦୁର୍ଭାଗ୍ୟରୁ ଏହି ଲେଖକଙ୍କ ଗ୍ରନ୍ଥ, Philosophy of Grammar (୧୯୨୪)ରେ, ଭାଷାର ଏକ ମନସ୍ତାତ୍ତ୍ୱିକ ଅଧ୍ୟୟନ ଦ୍ୱାରା ଯେଉଁ ଅଧିକତର ମୌଳିକ ସମସ୍ୟାଗୁଡ଼ିକର ଉଦ୍ଭବ ହୁଏ, ସେଥିରୁ କୌଣସିଟିର ଏବଂ ବିଶେଷତଃ ଭାଷା ସଂସ୍କାରର ସମୀକ୍ଷାମୂଳକ ଦିଗର କୌଣସି ସଫଳ ଆଲୋଚନା କରାଯାଇନାହିଁ ।

ଅଂଶଗୁଡ଼ିକ ପ୍ରତି ବୈୟାକରଣମାନଙ୍କ ଅନୁରକ୍ତି ପ୍ରଦର୍ଶନର ଅଭାବ । ଏହି କାରଣରୁହିଁ ବ୍ୟାକରଣ ପ୍ରତି ଅସନ୍ତୋଷ ଏତେ ପ୍ରବଳ । ପାଠ୍ୟକ୍ରମରୁ ଏହି ବିଷୟକୁ ଯଦି ବାଦ ନଦେବା କଥା ଏବଂ ଏହା ସହିତ ଭାବବିନିମୟର ସାଧନ ରୂପେ ଭାଷାର ସମସ୍ତ ତାତ୍ତ୍ୱିକ ଅଧ୍ୟୟନକୁ ଯଦି ବାଦ୍ ନଦେବା କଥା, ତେବେ ଏହାର ସଂସ୍କାର ବିଧାନକୁ ଅଧିକ କାଳ ସ୍ଥଗିତ ରଖିବା ଅନୁଚିତ । (୧)

ଭାଷାର କାର୍ଯ୍ୟାବଳୀକୁ ତଥା ଯେଉଁ ବିଭିନ୍ନ ପ୍ରକାରରେ ଶବ୍ଦଗୁଡ଼ିକ ଆମର କାର୍ଯ୍ୟସିଦ୍ଧି କରିଥାନ୍ତି ଅଥବା ଆମକୁ ଭ୍ରାନ୍ତ ବାଟରେ ପରିଚାଳିତ କରିଥାନ୍ତି, ସେ ସବୁକୁ ବୁଝିବା ସମସ୍ତ ଯଥାର୍ଥ ଶିକ୍ଷାର ଏକ ମୁଖ୍ୟ ଉଦ୍ଦେଶ୍ୟ ହେବା ଆବଶ୍ୟକ । ଭାଷାମାଧ୍ୟମରେ ହିଁ ପାରମ୍ପରିକ ସୂତ୍ରରେ ଲବ୍ଧ ଆମର ବୌଦ୍ଧିକ ସମ୍ପଦ ଓ ଆମର ସାମାଜିକ ପ୍ରଥାର ବହୁ ଅଂଶ ଆମର ହସ୍ତଗତ ହୋଇଥାଏ । ସେଥି ସହିତ ସଂଯୋଗରକ୍ଷା କରିବା ନିମନ୍ତେ ଭାଷା ହେଉଛି ଏକ ମୁଖ୍ୟ ସାଧନ । ଏହାର ସଦୁପଯୋଗ କରିବାରେ ଆମ ସାମର୍ଥ୍ୟ ଦ୍ୱାରା ଜୀବନ ପ୍ରତି ଆମର ସମଗ୍ର ଦୃଷ୍ଟିକୋଣ, ଆମର ଆଚରଣ, ଆମର ଚରିତ୍ରର ଗୁରୁତର ଭାବେ ପ୍ରଭାବିତ ହୋଇଥାଏ । ଭାଷାର ଶିଥିଳ ଓ ଆନ୍ତରିକତାଶୂନ୍ୟ ବ୍ୟବହାର କେବଳ ଯେ ବୌଦ୍ଧିକ ବିଭ୍ରାନ୍ତିର ପଥ ଉନ୍ମୁକ୍ତ କରିଦିଏ, ତାହା ନୁହେଁ; ଏତଦ୍ୱାରା ଅପରିହାର୍ଯ୍ୟ ବିଚାର୍ଯ୍ୟ ବିଷୟ ପ୍ରତି ଆମେ ବିମୁଖ ହୋଇ ବସୁଁ, କିମ୍ବା କପୋଳ କଳ୍ପିତ ସୂତ୍ରାବଳୀକୁ ସ୍ୱୀକାର କରି ନେଇ ନିରସ୍ତ ରହୁଁ । ଶବ୍ଦଗୁଡ଼ିକ ଆଜିକାଲି ଅଜ୍ଞାନତାର ଆବରଣ ନିମନ୍ତେ ଯେପରି ଏକ ସାଧାରଣ ଉପାୟ ହୋଇ ରହିଛି, ତହିଁରୁ ଅଧିକ ସାଧାରଣ ଆଗରୁ କଦାପି ହୋଇ ନଥିଲା । ବାଚନିକ ଧ୍ୱନି-ପ୍ରତିଧ୍ୱନିର ଆମେ ଯେତେବେଳେ କେବଳ ଶିହରଣ ଅନୁଭବ କରୁଥାଉ, ସେତେବେଳେ ନିର୍ଦ୍ଦିଷ୍ଟ ମତାମତର ଅଧିକାରୀ ହୋଇଯାଇଛୁ ବୋଲି ନିଜକୁ ମଧ୍ୟ ଏବେ ଆମେ ପ୍ରରୋଚିତ କରୁଛୁଁ ।

ଯେଉଁ ବୈୟାକରଣମାନେ ସେମାନଙ୍କ ବିଜ୍ଞାନରେ ଜ୍ଞାନର ଚାବିକାଠି ରହିଛି ବୋଲି ଏବେ ମଧ୍ୟ ବିଚାର କରନ୍ତି, ସେମାନଙ୍କ ସଂଖ୍ୟା କେତେ ବା ହେବ ? ଏମାନଙ୍କ ପକ୍ଷରେ ସୁଦ୍ଧା [ପ୍ରାୟଶଃ, ବ୍ୟାକରଣ ସତ୍ୟତାର ଆହରଣ ଓ ସଂରକ୍ଷଣ ଉପାୟମାନଙ୍କ

(୧) ପ୍ରତୀକ ଚିହ୍ନମାନଙ୍କ ବ୍ୟବହାର ଦ୍ୱାରା ସମଗ୍ର ବୈୟାକରଣିକ ପାରିଭାଷିକ ପଦ-ସମ୍ଭାର ଉପକରଣକୁ ଶିକ୍ଷାରେ ପରିହାର କରିବାର ସୂଚନାମୂଳକ ଏକ ପ୍ରୟାସ Miss Isable Try ଙ୍କ ଦ୍ୱାରା A Key to Language (୧୯୨୫)ରେ କରାଯାଇଛି । ଏଠାରେ ଆଲୋଚିତ ଭାଷା ବିଶ୍ଳେଷଣର ଅଧିକ ଦୁରୂହ ସମସ୍ୟା-ମାନଙ୍କ କ୍ଷେତ୍ରକୁ ଏହି ପଦ୍ଧତି ଲାଭପ୍ରଦଭାବେ ସଂପ୍ରସାରିତ ହୋଇପାରେ ।

ଏକ ପ୍ରେରଣାଦାୟକ ଅଧ୍ୟୟନ ହେବା ପରିବର୍ତ୍ତେ ନିଧାର୍ଯ୍ୟଭାବେ ସୀମିତ ପରିସରବିଶିଷ୍ଟ ଏକ ପ୍ରାବନ୍ଧିକ ଅନୁଶୀଳନ ହୋଇ ଗଲାଣି । ଏହି ବିଜ୍ଞାନର ପ୍ରତିଷ୍ଠାତାମାନେ ଭାଷାର ପ୍ରକୃତ ଶକ୍ତି ସମ୍ବନ୍ଧରେ ଯଥେଷ୍ଟ ପରିମାଣରେ ଭ୍ରାନ୍ତ ଧାରଣାର ଯେ ବଶବର୍ତ୍ତୀ ହୋଇ-ଥିଲେ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ତଥାପି ସେମାନେ ଭାଷାର ଗୁରୁତ୍ୱ ଉପଲବ୍ଧି କରି ପାରିଥିଲେ । ଶବ୍ଦଗୁଡ଼ିକ ହେତୁରୁ କେତେକ ପ୍ରଚ୍ଛନ୍ନ ସଙ୍କଟ ଓ ଭ୍ରାନ୍ତିରେ ପଡ଼ିବା ସମ୍ଭବପର; ସେଗୁଡ଼ିକର ବିରୁଦ୍ଧରେ ଜାଗ୍ରତ ରହିବାକୁ ଯେଉଁ ଉପାୟମାନଙ୍କ ଅବଲମ୍ବନ କରାଯାଇପାରେ, ତାହାର ପରୀକ୍ଷା ଆମେ ଆମର ଅଧ୍ୟୟନ ପରିସରରେ କରିଛୁ । ପ୍ରଗତିକର ପ୍ରତ୍ୟେକ ବ୍ୟବହାରକାରୀ ଯେପରି ଏହି ପ୍ରଚ୍ଛନ୍ନ ସଙ୍କଟ ଓ ଭ୍ରାନ୍ତିଗୁଡ଼ିକର ଉଦ୍‌ଘାଟନ କରିପାରେ, ସେଥିପାଇଁ ତାହାକୁ ସମର୍ଥ କରାଇବା ବ୍ୟାକରଣର କାର୍ଯ୍ୟ ହେବା ଉଚିତ । ଭାବବିନିମୟର ମାଧ୍ୟମ ରୂପେ ଭାଷାର ଯଥାର୍ଥ ବ୍ୟବହାର ଶିକ୍ଷାପାଇଁ କେତେକ ଅପରିହାର୍ଯ୍ୟ ପ୍ରାଥମିକ ସୋପାନ ରହିଛି । ଏହି ସୋପାନ ଗୁଡିକ ମଧ୍ୟରେ ରହିଛି ଭାଷାନ୍ତରୀକରଣ ଓ ବିଶେଷତଃ ସମ୍ପ୍ରସାରଣ ପ୍ରତିସ୍ଥାପନ ପ୍ରବନ୍ଧ ଓ ବିଭିନ୍ନ ସ୍ତରରେ ଭୁଲ୍ ବୁଝାମଣାର ନିରାକରଣ ଓ ପଥରୁଦ୍ଧକରଣ ପଦ୍ଧତି, ସଂବେଗାତ୍ମକ ଶବ୍ଦ ତଥା ଅଭିବ୍ୟକ୍ତିର ପୃଥକୀକରଣ, ଭାଷାର ପାଞ୍ଚଗୋଟି ମୁଖ୍ୟ କାର୍ଯ୍ୟର, ଚିହ୍ନୋଟ କରଣ । ତେଣୁ ଏହି ସମସ୍ତ ବିଷୟରେ ତାଲିମ ଦେବା ହେଉଛି ବ୍ୟାକରଣର କାର୍ଯ୍ୟ ।

# ପରିଶିଷ୍ଟ-ଖ

## ପ୍ରସଙ୍ଗମାନଙ୍କ ସମ୍ବନ୍ଧରେ ପଦେ

ସଙ୍କେତ ଓ ନିର୍ଦ୍ଦେଶ୍ୟ ଉଭୟ ସମ୍ବେଦନ ହୋଇ ଥିବାବେଳେ ପ୍ରତୀକର ଏକ ସରଳ କ୍ଷେତ୍ର ପାଇଁ ନିର୍ଦ୍ଦେଶର ଯେଉଁ କାରଣିକ ସିଦ୍ଧାନ୍ତ ତୃତୀୟ ପରିଚ୍ଛେଦରେ (ମୂଳତଃ ପୃ ୫୪ ଓ ବିଶେଷତଃ ପୃ ୫୭ ଓ ୬୨ ) ସ୍ଥୂଳଭାବେ ବର୍ଣ୍ଣିତ ହୋଇଥିଲା, ତାହାକୁ ନିମ୍ନୋକ୍ତଭାବେ ବ୍ୟକ୍ତ କରାଯାଇପାରେ—*

ମନେକର ଅ ହେଉଛି ଏକ ମାନସିକ ପ୍ରକ୍ରିୟା ବା ଘଟଣା । ଯଦି ବର୍ତ୍ତମାନ ଦେଖାଯାଏ ଯେ ଏକ ସମ୍ବେଦନ ଧ ( ଯଥା-ଏକ ଧ୍ୱନି ) ଅ ର ପୂର୍ବବର୍ତ୍ତୀ ଯେପରି କି—

ଧ ର ଏକ ଗୁଣ କ ( ଯଥା-କର୍କଶ ଧ୍ୱନି ହେବା ) ହେଉଛି ସାମୀପ୍ୟ ପ୍ରସଙ୍ଗମାନଙ୍କ ( ଏହି କ୍ଷେତ୍ରରେ ଦ୍ୱୈତ ) ଏକ ଔପାଦାନିକ ଗୁଣ । ଏହା ଅପର ଔପାଦାନିକ ଗୁଣ ଆ ( ଏକ ଆଲୋକ ସମ୍ବେଦନ ହେବା )ର ନିର୍ଦ୍ଧାରକ । ( ଏହିପ୍ରକାର ପ୍ରସଙ୍ଗମାନଙ୍କ ଅନ୍ତର୍ଗତ ବିଷୟଗୁଡ଼ିକ ହେଉଛି ଧ ସ ଧ ସ ...) । କ, ଆ, କ, ଆ,··· କ ଗୁଣଗୁଡ଼ିକ ହେତୁରୁ ଧ ସ , ଧ ସ ...ଧ ଅ ଏକ ପ ପ୍ରସଙ୍ଗ ଗଠନ କରେ ଯାହା ପ ବିଷୟର ନିର୍ଦ୍ଧାରକ ।

ତେବେ ଏ କ୍ଷେତ୍ରରେ ଅ କୁ କ ଗୁଣ ବିଷୟରେ ଧ ର ଅର୍ଥକରଣ ବୋଲି କୁହାଯାଏ । ପ କୁ ଧ ପ୍ରତି ଏକ ପ୍ରାସଙ୍ଗିକ ଗୁଣ ବୋଲି କୁହାଯାଏ । ପୁଣି ଧ କୁ ଏକ ସଙ୍କେତ ବୋଲି କୁହାଯାଏ । ଏଠାରେ ଅ ହେଉଛି ଏକ ବିଶ୍ୱାସ ଯେ କିଛି ଗୋଟାଏ ଘଟିବ, ଯାହା ହେଉଛି ଏକ ଆଲୋକ ସମ୍ବେଦନ ଏବଂ ତାହା ଧ ର ସମୀପବର୍ତ୍ତୀ ।

ଏବେ ଯଦି ଏପରି କିଛି ( ମନେକର ସ ) ଥାଏ, ଯାହା କ ଆ ହେତୁରୁ ଧ ସହିତ ଧ ବିଷୟରେ ନିର୍ଦ୍ଧାରକ ହୋଇଥିବା ଏକ ସାମୀପ୍ୟ ପ୍ରସଙ୍ଗ ଗଠନ କରେ, ତେବେ ସ କୁ ଅ ର ନିର୍ଦ୍ଦେଶ୍ୟ ବୋଲି କୁହାଯାଏ; ଏଠାରେ ଅ ହେଉଛି ଧ ବିଷୟରେ ଧ ର ଏକ ଅର୍ଥକରଣ ମାତ୍ର । ଲକ୍ଷ୍ୟ କରାଯାଇପାରେ ଯେ ସ ର ସଙ୍କରେ ହିଁ ସ୍ୱୀକୃତ ଯେ ସ ଆ ଗୁଣର ଅଧିକାଂଶ ଓ ତାହା ଧ ର ସମୀପବର୍ତ୍ତୀ ।

ଏହି ଗୁଣ ଦ୍ୱୟଯୁକ୍ତ ଯଦି କିଛି ଥାଏ, ତେବେ ଅ କୁ କ ଗୁଣ ବିଷୟରେ ଧ ର ସତ୍ୟ ଅର୍ଥକରଣ ବୋଲି କୁହାଯାଏ । କିନ୍ତୁ ଏହି ଆବଶ୍ୟକୀୟ ଗୁଣଦ୍ୱୟ ସମ୍ବଳିତ ଯଦି କିଛି ନ ଥାଏ, ତେବେ ଅ କୁ ସେହି ବିଷୟରେ ଏକ ମିଥ୍ୟା ଅର୍ଥକରଣ ବୋଲି କୁହାଯାଏ ।

ଅଧିକ ଅପାରିଭାଷିକ ଭାଷାରେ କହିଲେ, ଯେତେବେଳେ ଏକ ଦିଆସିଲି କାଠିର ଘର୍ଷଣ ଧ୍ୱନି ଶୁଣିବାର ଫଳ ସ୍ୱରୂପ, ଆମେ ଏକ ଆଲୋକମୟ ଅଗ୍ନିଶିଖାର ପ୍ରତୀକ୍ଷା କରୁଁ, ସେହି କ୍ଷେତ୍ରରେ ଆମର ବିଶ୍ୱାସ ହେଉଛି ଏକ ପ୍ରକ୍ରିୟା ଯାହା ଏକ ମନସ୍ତାତ୍ତ୍ୱିକ ପ୍ରସଙ୍ଗର ଅଙ୍ଗ । ଏହି ପ୍ରସଙ୍ଗର ଅଙ୍ଗମାନ ଏକ ବହୁମୁଖୀ ମୁଦ୍ରଣମୂଳକ ସମ୍ବନ୍ଧରେ ପରସ୍ପର ଅନ୍ୱିତ । ଏହାର ଅନ୍ୟାନ୍ୟ ଅଙ୍ଗ ହେଉଛନ୍ତି ଘର୍ଷଣ ଧ୍ୱନି ଓ ଆଲୋକମୟ ଅଗ୍ନିଶିଖାର କେତେକ ଅଜିତ ସମ୍ବେଦନ । ସେଗୁଡ଼ିକ ପୁଣି ସାମୀପ୍ୟ ସମ୍ବନ୍ଧ ଦ୍ୱାରା ସେଗୁଡ଼ିକ ଦ୍ୱୈତ ପ୍ରସଙ୍ଗମାନଙ୍କରେ ପରସ୍ପର ଅନ୍ୱିତ । ଏବେ ଯଦି ଏହି ସମ୍ବନ୍ଧ ଦ୍ୱାରା ଘର୍ଷଣ ଧ୍ୱନି ଏକ ଆଲୋକମୟ ଅଗ୍ନିଶିଖା ଦ୍ୱାରା ପୁଣି ଅନ୍ୱିତ ହୁଏ, ତେବେ ଆମର ବିଶ୍ୱାସ ସତ୍ୟ; ଏହି ସମ୍ବେଦନ ହେଉଛି ଆମ ବିଶ୍ୱାସର ନିର୍ଦ୍ଦେଶ୍ୟ । ଘର୍ଷଣ ଧ୍ୱନି ସହିତ ଏହିପରିଭାବେ ସମ୍ବନ୍ଧାନ୍ୱିତ ହୋଇ ଯଦି ଆଲୋକମୟ ଅଗ୍ନିଶିଖା ନାହିଁ, ତେବେ ଆମର ବିଶ୍ୱାସ ମିଥ୍ୟା । ଏହି କ୍ଷେତ୍ରରେ ନିର୍ଦ୍ଦେଶ୍ୟ ବୋଲି ଅଭିହିତ କରିବା ଯୋଗ୍ୟ ଯଦି କିଛି ଥାଏ, ତେବେ ତାହା କ'ଣ, ସେ ବିଷୟରେ ଆମେ ଆଲୋଚନା କରିସାରିଛୁଁ ।

ଯେଉଁମାନଙ୍କ ପକ୍ଷରେ ଜଟିଳ ବିଷୟାବଳୀର ବିଚାର କ୍ଷେତ୍ରରେ ପ୍ରତୀକ ଚିହ୍ନ-ମାନଙ୍କ ବ୍ୟବହାର ଉପାଦେୟ ହୋଇଥାଏ, ସେମାନଙ୍କ ନିମନ୍ତେ ଉପର୍ଯ୍ୟୁକ୍ତ ବିବରଣୀର ନିମ୍ନପ୍ରଦତ୍ତ ଚିତ୍ରଣ ଭ୍ରାନ୍ତିକର ହେବ ନାହିଁ । ଏହା ବରଂ ବିବରଣୀ ଅନ୍ତର୍ଭୁକ୍ତ ହୋଇ ପାରି ନ ଥିବା କେତେକ ଅତିରିକ୍ତ ଜଟିଳତା ଉପରେ କିୟତ୍ ପରିମାଣରେ ଆଲୋକପାତ କରିବ । ବିନ୍ଦୁମାନଙ୍କ ଦ୍ୱାରା ଗଠିତ ମଧ୍ୟବର୍ତ୍ତୀ ରେଖା ବାହ୍ୟ ପ୍ରସଙ୍ଗଗୁଡ଼ିକଠାରୁ ମନସ୍ତାତ୍ତ୍ୱିକ ପ୍ରସଙ୍ଗଗୁଡ଼ିକୁ ପୃଥକ୍ କରୁଛି । ବଙ୍କିମ ଓ ସାଧାରଣ ଧରଣର ରେଖାଗୁଡ଼ିକ ପ୍ରସଙ୍ଗମାନଙ୍କ ସୂଚନା ଦେଉଛି । ଧ, ସ ଇତ୍ୟାଦି ଉଦ୍ଦୀପନମାନଙ୍କ ନିମନ୍ତେ ବ୍ୟବହୃତ ଏବଂ ଧ, ସ ଇତ୍ୟାଦି ସମ୍ବାଦୀ ସମ୍ବେଦନମାନଙ୍କ ନିମନ୍ତେ ବ୍ୟବହୃତ—ରୂପେ ବିବେଚନା କରାଯାଇପାରେ ( ମୁଦ୍ରା ପୂରାଇବା—ଚକୋଲେଟ ବାହାରିବା ) । ଏହାର ପରିଣତି ସ୍ୱରୂପ କେତେକ ବ୍ୟାପକ ବହୁମୁଖୀ ପ୍ରସଙ୍ଗ ରହିଛି । ତହିଁରେ କୋକୋଆ ଗଛର ଉତ୍ପାଦନ, ନିକେଲ୍‌ର ଆପେକ୍ଷିକ ଗୁରୁତ୍ୱ ଏବଂ ଏହି ଯନ୍ତ୍ର ଠିକ୍‌ଭାବେ କାର୍ଯ୍ୟ କରିବା ପାଇଁ ତାହାର ନିୟମିତ ରକ୍ଷଣାବେକ୍ଷଣ ଇତ୍ୟାଦି ନିହିତ । ଅନୁରୂପ ପରିସ୍ଥିତିମାନଙ୍କ ସହିତ ମନସ୍ତତ୍ତ୍ୱ ମୂଳରୁ ଶେଷ-ପର୍ଯ୍ୟନ୍ତ ସମ୍ପୃକ୍ତ । କିନ୍ତୁ ସେଗୁଡ଼ିକରେ ନିହିତ ପ୍ରସଙ୍ଗମାନଙ୍କ ବିଶ୍ଳେଷଣ

ଏହି ଧରଣରେ କରାଯିବା ଏତେ ସହଜ ନୁହେଁ । ମନସ୍ତତ୍ତ୍ୱରେ, ଅତି ଅଳ୍ପ ସଂଖ୍ୟକ ଅଙ୍ଗ ବିଶିଷ୍ଟ ପ୍ରସଙ୍ଗମାନ ପାଇବାରେ ବାସ୍ତବିକ ସ୍ୱତନ୍ତ୍ର ଧରଣର ଅସୁବିଧାମାନ ରହିଛି । ଏକ ଉଦ୍ଦୀପନ-ସମ୍ବେଦନ ପ୍ରସଙ୍ଗରେ ସୁଦ୍ଧା ସମ୍ବେଦନର ସ୍ୱଭାବ ବିଷୟର ନିର୍ଦ୍ଧାରଣ ପାଇଁ ଅନ୍ୟାନ୍ୟ ମନସ୍ତାତ୍ତ୍ୱିକ ଅଙ୍ଗର ଅନ୍ତର୍ଭୁକ୍ତି ସାଧାରଣତଃ ଆବଶ୍ୟକ ହୋଇଥାଏ । ଏହି ମନସ୍ତାତ୍ତ୍ୱିକ ଅଙ୍ଗମାନଙ୍କ ମଧ୍ୟରେ ଅନ୍ୟାନ୍ୟ ସମ୍ବେଦନ ରହିବ; ଏବଂ ଏପରି କେତେକ ଅବସ୍ଥା ମଧ୍ୟ ରହିବ, ଯେଉଁଗୁଡ଼ିକ 'ଅବଧାନ' ଶବ୍ଦର ବ୍ୟବହାର କାଳରେ ବିଚାର କରାଯାଏ ।

———

# ପରିଶିଷ୍ଟ-ଗ

## ଏନେସିଡେମସଙ୍କ ସଙ୍କେତ ସିଦ୍ଧାନ୍ତ

ଏନେସିଡେମସ୍‌ଙ୍କ ମତାମତ ସମ୍ବନ୍ଧରେ ଆମେ ଯାହା ଜାଣୁଁ, ତାହା ମୁଖ୍ୟତଃ ସେକ୍‌ସଟସ୍‌ ଏମ୍ପିରିକସ୍‌ଙ୍କ ରଚନାବଳୀରେ ଥିବା ସେହି ବିଷୟକ କେତେକ ସଂକ୍ଷିପ୍ତ ଉଲ୍ଲେଖରୁ ହିଁ ଲବ୍‌ଧ । ଏନେସିଡେମସ୍‌ଙ୍କ ଲିଖିତ ବିଲୁପ୍ତ ଗ୍ରନ୍ଥ ପିର୍‌ହୋନିଓ୍ୱନ ଲୋଗୋଇର ଚତୁର୍ଥ ପୁସ୍ତକଟି ସଙ୍କେତ ସିଦ୍ଧାନ୍ତର ବିବରଣୀ ଦେବାରେ ନିୟୋଜିତ ହୋଇଥିଲା । ସେହି ପୁସ୍ତକଗତ ମୁଖ୍ୟ ଯୁକ୍ତି ଗୁଡ଼ିକର ସାରାଂଶ ସେକ୍‌ସଟସ୍‌ଙ୍କ ଦ୍ୱାରା ତାଙ୍କ ପ୍ରବନ୍ଧମାନଙ୍କରେ ୮୭-୧୩୪ରେ ପ୍ରଦତ୍ତ ହୋଇଛି । ଏଥିରୁ କେଉଁ ଅଂଶଗୁଡ଼ିକ ସେକ୍‌ସଟସ୍‌ ନିଜେ ସଂଯୋଗ କରିଛନ୍ତି, ତାହା ଅନେକାଂଶ ସୁସ୍ପଷ୍ଟ ନୁହେଁ ।

ଫୋଟିଅସ୍‌ଙ୍କ (୧) ମତାନୁସାରେ, ଏନେସିଡେମସ୍‌ଙ୍କ ବକ୍ତବ୍ୟ ହେଉଛି— ଅଦୃଶ୍ୟ ବସ୍ତୁ ଦୃଶ୍ୟ ସଙ୍କେତମାନଙ୍କ ଦ୍ୱାରା ପ୍ରକାଶିତ ହୋଇ ନ ପାରେ; ଏବଂ ଏପ୍ରକାର ସଙ୍କେତମାନଙ୍କରେ ଆସ୍ଥାସ୍ଥାପନ ଏକ ଭ୍ରମ । ସେକ୍‌ସଟସ୍‌ଙ୍କ (୨) ଏକ ଅନୁଚ୍ଛେଦରେ ଏହି ମତ ସମର୍ଥିତ ହୋଇଛି । ଏହି ଅନୁଚ୍ଛେଦ ଦ୍ୱାରା ପ୍ରଦର୍ଶିତ ହୋଇଛି ଯେ ଏଠାରେ ଏପିକ୍ୟୁରିଏନ୍‌ମାନଙ୍କ ମତଗୁଡ଼ିକୁ ସମାଲୋଚନା କରାଯାଉଛି । ଏହି ଯୁକ୍ତିକୁ ନିମ୍ନୋକ୍ତ-ଭାବେ ଉପସ୍ଥାପିତ କରାଯାଏ—

'ସମପ୍ରକୃତିକ ସମସ୍ତ ପର୍ଯ୍ୟବେକ୍ଷକଙ୍କୁ ଘଟଣାଗୁଡ଼ିକ ଯଦି ସମସ୍ତ ପ୍ରକାର ଦେଖାଯାଏ, ଏବଂ ସଙ୍କେତଗୁଡ଼ିକ ଯଦି ଘଟଣା, ତେବେ ସଙ୍କେତଗୁଡ଼ିକ ସମପ୍ରକୃତିକ ସମସ୍ତ ପର୍ଯ୍ୟବେକ୍ଷକଙ୍କୁ ସମପ୍ରକାର ଦେଖାଯିବା ସୁନିଶ୍ଚିତ । ଏହି ପ୍ରାକଳ୍ପିକ ପ୍ରତିଜ୍ଞପ୍ତିଟି

---

(୧) Biblioth, ୧୭୦, ପୃ ୧୨ ।

(୨) Advanced Mathematics, ୮୨, ୨୧୫ ।

ସ୍ତଃସିଦ୍ଧ । ଏହାର ପୂର୍ବଗ ସ୍ୱୀକୃତ ହେଲେ, ଅନୁଗକୁ ସ୍ୱୀକାର କରିବାକୁହିଁ ହେବ । ତାପରେ, ସେକ୍‌ସଟସ୍‌ କହୁଛନ୍ତି, (୧) ସମ ପ୍ରକୃତିକ ସମସ୍ତ ପର୍ଯ୍ୟବେକ୍ଷକଙ୍କୁ ନିଶ୍ଚିତ ରୂପେ ସମପ୍ରକାର ଦେଖାଯାଏ । କିନ୍ତୁ (୨) ସମପ୍ରକୃତିକ ସମସ୍ତ ପର୍ଯ୍ୟବେକ୍ଷକଙ୍କୁ ସଙ୍କେତ-ଗୁଡ଼ିକ ସମପ୍ରକାର ଦେଖାଯାଏ ନାହିଁ । ୧ମ ପ୍ରତିଜ୍ଞପ୍ତିର ସତ୍ୟତା ପର୍ଯ୍ୟବେକ୍ଷଣ ଉପରେ ପ୍ରତିଷ୍ଠିତ । କାରଣ ଯଦିଓ ରୋଗଗ୍ରସ୍ତ ବା ରକ୍ତଚକ୍ଷୁ ବିଶିଷ୍ଟ ବ୍ୟକ୍ତିକୁ ଶ୍ୱେତବସ୍ତୁ ଶ୍ୱେତ ଦେଖାଯାଏ ନାହିଁ, ତଥାପି ସ୍ୱାଭାବିକ ଚକ୍ଷୁବିଶିଷ୍ଟ ବ୍ୟକ୍ତିଙ୍କୁ ଅର୍ଥାତ୍‌ ସମସ୍ତ ସମପ୍ରକୃତିକ ପର୍ଯ୍ୟବେକ୍ଷକଙ୍କୁ ଶ୍ୱେତବସ୍ତୁ ସର୍ବଦା ନିଶ୍ଚିତରୂପେ ଶ୍ୱେତ ଦେଖାଯାଏ । ୨ୟ ପ୍ରତିଜ୍ଞପ୍ତିର ସତ୍ୟତା ପାଇଁ ଚିକିତ୍ସାକଳା ଦୈନନ୍ଦିନ ଦୃଷ୍ଟାନ୍ତ ଯୋଗାଇ ଥାଏ । ଜ୍ୱରର ଲକ୍ଷଣ ଅର୍ଥାତ୍‌ ମୁହଁ ଫଣ ଫଣ ହେବା, ଚର୍ମର ଆର୍ଦ୍ରତା, ଶରୀରର ଅତ୍ୟଧିକ ଉତ୍ତାପ, ନାଡ଼ୀର ଦ୍ରୁତଗତି ଇତ୍ୟାଦି ସମ ମାନସିକ ଗଠନ ବିଶିଷ୍ଟ ଚିକିତ୍ସକମାନଙ୍କ ଦ୍ୱାରା ପର୍ଯ୍ୟବେକ୍ଷିତ ହେଲେ, ସେମାନେ ଏଗୁଡ଼ିକର ଅର୍ଥ ସମପ୍ରକାରରେ କରନ୍ତି ନାହିଁ । ଏଠାରେ ସେକ୍‌ସଟସ୍‌ ତାଙ୍କ ସମୟର ବିଶେଷଜ୍ଞ ମାନଙ୍କ ଦ୍ୱାରା ଗୃହୀତ ହେଉଥିବା କେତେକ ପରସ୍ପର ବିରୋଧୀ ମତବାଦର ଉଲ୍ଲେଖ କରିଛନ୍ତି । ଏହି ଲକ୍ଷଣ ମାନଙ୍କରୁ ହେରୋ-ଫିଲସ୍‌ ରକ୍ତର ଉତ୍ତମ ଗୁଣର ସଙ୍କେତ ପାଆନ୍ତି । ଏରସିଷ୍ଟ୍ରେଟସ୍‌ଙ୍କ ଅନୁସାରେ ଏହି ଲକ୍ଷଣ ଗୁଡ଼ିକ ହେଉଛି ଶିରାରୁ ଧମନୀକୁ ରକ୍ତ ପ୍ରବାହିତ ହେବାର ସୂଚନା । ଆସ୍କ୍ଲେପିଆ-ଡିଜଙ୍କ ମତରେ, ଏ ଗୁଡ଼ିକ ଦ୍ୱାରା ମଧ୍ୟବର୍ତ୍ତୀ ଶୂନ୍ୟସ୍ଥାନ ମାନଙ୍କରେ ରକ୍ତାଣୁଗୁଡ଼ିକର ଅତ୍ୟଧିକ ପ୍ରେଷ ବିଷୟ ପ୍ରତିପାଦିତ । ଏହି ରକ୍ତାଣୁ ଓ ମଧ୍ୟବର୍ତ୍ତୀ ଶୂନ୍ୟସ୍ଥାନ ଉଭୟ ଅତ୍ୟନ୍ତ କ୍ଷୁଦ୍ର ହୋଇଥିବାରୁ ଇନ୍ଦ୍ରିୟଗ୍ରାହ୍ୟ ନୁହେଁ । ଏଗୁଡ଼ିକ କେବଳ ବୁଦ୍ଧି ଦ୍ୱାରାହିଁ ଜଣାପଡ଼େ । ଏହି ଯୁକ୍ତିକୁ ସେକ୍‌ସଟସ୍‌ ଏନେସିଡେମସ୍‌ଙ୍କ ଠାରୁ ଗ୍ରହଣ କରି ସ୍ୱକୀୟ ପଦ୍ଧତିରେ ତାହାର ଅଭିବୃଦ୍ଧି ଘଟାଇଛନ୍ତି । ଚିକିତ୍ସା ଶାସ୍ତ୍ରୀୟ ଯେଉଁ ଉଦାହରଣ ଗୁଡ଼ିକ ଏଠାରେ ଦିଆଯାଇଛି, ତନ୍ନିମିତ୍ତ ସମ୍ଭବତଃ ସେ ନିଜେହିଁ ଦାୟୀ ।"

ଯାହାହେଉ, ସଙ୍କେତମାନଙ୍କୁ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁରୂପେ ଗ୍ରହଣ କରି ଏପିକ୍ୟୁରିଏନ୍‌ମାନେ ଯେଉଁ ବିବରଣୀ ଦେଉଥିଲେ ତାହାକୁ ମିଥ୍ୟାବୋଲି ପ୍ରତିପାଦନ କରି ସେକ୍‌ସଟସ୍‌ ସନ୍ତୁଷ୍ଟ ରହି ନ ଥିଲେ । ସେ ଷ୍ଟୋଇକ୍‌ମାନଙ୍କ ମତକୁ ମଧ୍ୟ ସମାଲୋଚନା

---

(୧) R. D. Hicks, Stoic and Epicurean, ପୃ ୩୯୦

(୨) ତତ୍ରୈବ, ପୃ ୩୯୧, ଏହାର ଉତ୍ସ ହେଉଛି Pyrrh. Hyp. ୨ୟ, ୧୦୦ । ତୁଳନା କର—୯୯—୧୦୨ ପ୍ରସଙ୍ଗ; Advanced Mathematics ୮ମ, ୧୪୮—୧୫୮ ।

କରିଥିଲେ ଏବଂ ତାହା ତର୍କ କିମ୍ବା ବୁଦ୍ଧି ଦ୍ୱାରା ବୋଧଗମ୍ୟ ନୁହେଁ ବୋଲି ପ୍ରଦର୍ଶନ କରିବାକୁ ଅଗ୍ରସର ହୋଇଥିଲେ । (ଫୋଟିଅସ୍‌ଙ୍କ ଭାଷାରେ), "ଯାହା ଅବୋଧ ଓ ପ୍ରଚ୍ଛନ୍ନ ତାହାର କୌଣସି ପ୍ରକାଶ୍ୟ ଓ ସୁପ୍ରତ୍ୟକ୍ଷ ସଙ୍କେତ ନାହିଁ"—ଏହା ପ୍ରତିପାଦନ କରିବା ପରେ ଏନେସିଡେମସ୍ ନିଜେ ଆଉ ଅଧିକ ଅଗ୍ରସର ନ ହୋଇ ଥାଇ ପାରନ୍ତି । କିନ୍ତୁ ଅନେକ ଭାବନ୍ତି ଯେ ସମ୍ଭବତଃ ସେକ୍‌ସଟସ୍ ନିଜେହିଁ 'ସ୍ମରଣାର୍ଥକ' ସଙ୍କେତ ଓ 'ନିଦର୍ଶନାତ୍ମକ' ସଙ୍କେତର ପାର୍ଥକ୍ୟ ନିରୂପଣ ନିମନ୍ତେ ଦାୟୀ । ଏହି ଦୁଇ ଶ୍ରେଣୀର ସଙ୍କେତ ମଧ୍ୟରେ ଥିବା ପାର୍ଥକ୍ୟ ସହିତ ପରବର୍ତ୍ତୀ ସଂଶୟବାଦୀ ମାନେ ସୁପରିଚିତ ଥିଲେ । ଏହି ପାର୍ଥକ୍ୟ ଅନୁସାରେ, "କେତେଗୁଡ଼ିଏ ସଂକେତ ରହିଛି, ଯେଉଁ ଗୁଡ଼ିକ ସାହଚର୍ଯ୍ୟ ନିୟମ ଦ୍ୱାରା କାର୍ଯ୍ୟକାରୀ ହୁଏ ବୋଲି ଆମେ କହିବା ଉଚିତ ହେବ । ଏ ପ୍ରକାର ସଂକେତ ଆମକୁ ସ୍ମରଣ କରାଇ ଦିଏ ଯେ ଆମ ଅତୀତ ଅନୁଭୂତିରେ ଦୁଇଟି ଘଟଣା ସଂଯୁକ୍ତ ହୋଇଥିଲା, ଯଥା—ନିଆଁ ସହିତ ଧୂଆଁ; ଘା ସହିତ ଦାଗ; ହୃଦଯନ୍ତ୍ରରେ ଛୁରିକା ଭେଦ ସହିତ ପରବର୍ତ୍ତୀ ମୃତ୍ୟୁ । କାଳକ୍ରମେ ଏହି ଘଟଣା ଯୁଗଳ ମଧ୍ୟରୁ ଯଦି ଗୋଟିଏ ସାମୟିକ ଭାବେ ଅସ୍ପଷ୍ଟ ହୋଇଯାଏ ଏବଂ ଅବ୍ୟବହିତ ଚେତନଶୀଳତାର ପରିସର ବହିର୍ଭୂତ ହୋଇଯାଏ, ତେବେ ଅପରଟିର ଉପସ୍ଥିତି ତାହାକୁ ସ୍ମରଣ କରାଇ ଦେଇପାରେ । ଯେଉଁ ଘଟଣାଟି ଉପସ୍ଥିତ ଥାଏ, ତାହାକୁ ସଂକେତ ଏବଂ ଯାହା ସାମୟିକ ଭାବେ ଅନୁପସ୍ଥିତ ତାହାକୁ ସାଂକେତିକ ବୋଲି ଆମେ ଅଭିହିତ କରିବା ଯୁକ୍ତିଯୁକ୍ତ । 'ସଂକେତ' ପଦଟିର ଅର୍ଥ ଯଦି ଏହିପରି ଭାବେ କରାଯାଏ, ତାହା ବିରୁଦ୍ଧରେ, ଅର୍ଥାତ୍ ସ୍ମରଣାର୍ଥକ ବା ସ୍ମୃତି ଉଦବୋଧକ ସଂକେତ ବିରୁଦ୍ଧରେ ସେକ୍‌ସଟସ୍‌ଙ୍କ କୌଣସି ଅଭିଯୋଗ ନାହିଁ । ଏହାର ସହାୟତାରେ ଭବିଷ୍ୟଦ୍‌ବାଣୀ ସମର୍ଥିତ ହୁଏ । ଧୂଆଁରୁ ନିଆଁ, ଦାଗରୁ ଘା, ମାରାତ୍ମକ ଛୁରିକା ଘାତରୁ ଆସନ୍ନ ମୃତ୍ୟୁ ଆମେ ଅନୁମାନ କରିପାରୁ । କାରଣ ଏହି ସମସ୍ତ କ୍ଷେତ୍ରରେ ଆମେ ଅତୀତ ଅନୁଭୂତି ଉପରେ ନିର୍ଭର କରି ଅଗ୍ରଗାମୀ ହେଉ । ଅପର ଶ୍ରେଣୀର ସଂକେତ, ଅର୍ଥାତ୍ ଯାହାକୁ ନିଦର୍ଶନାତ୍ମକ ସଂକେତ ବୋଲି କୁହାଯାଇ ପାରେ, ତାହାର ବିରୁଦ୍ଧରେ ହିଁ ସେକ୍‌ସଟସ୍‌ଙ୍କ ଅଭିଯୋଗମାନ ଉଦ୍ଦିଷ୍ଟ । ସେଠାରେ ଦୁଇଟି ଘଟଣା ମଧ୍ୟରୁ ଗୋଟିକୁ ସାଂକେତିକ ବୋଲି ଗ୍ରହଣ କରାଯାଏ ଏବଂ ତାହା କଦାପି କାହାର ଅନୁଭୂତିରେ ଘଟି ନ ଥାଏ, ଅର୍ଥାତ୍ ଯାହା ସ୍ୱକୀୟ ସ୍ୱଭାବ ହେତୁରୁ ସଂପୂର୍ଣ୍ଣତଃ ଅଜ୍ଞାତ ପ୍ରଦେଶର ଏକ ଅଂଶ, ସେହି କ୍ଷେତ୍ରରେ ଦୃଢ଼ ହଠଧର୍ମୀମାନେ ମତ ଦିଅନ୍ତି ଯେ ଯଦି କେତେକ ସର୍ତ୍ତର ପୂରଣ କରାଯାଇ ପାରେ, ତେବେ ସେମାନେ ସଂକେତ ବୋଲି ଆଖ୍ୟା ଦେଉଥିବା ଅନ୍ୟ କେତେକ ଘଟଣା ଦ୍ୱାରା ଉପର୍ଯ୍ୟୁକ୍ତ ପ୍ରକାର ସାଂକେତିକ ଘଟଣାର ସ୍ଥିତି ସୂଚିତ ଓ ନିଦର୍ଶିତ । ଉଦାହରଣ ସ୍ୱରୂପ, ହଠଧର୍ମୀମାନଙ୍କ ମତରେ ଶରୀରର ଚଳନ ଦ୍ୱାରା ଆତ୍ମାର ସ୍ଥିତି ସୂଚିତ ଓ ନିଦର୍ଶିତ । ଚଳନ ହେଉଛି ଆତ୍ମିକ ସ୍ଥିତିର ସଙ୍କେତ । ଏହି ପରବର୍ତ୍ତୀ ଅର୍ଥଯୁକ୍ତ

ସଂକେତର ସ୍ଥିତି, ଅର୍ଥାତ୍ ସୂଚନାମୂଳକ ଓ ନିଦର୍ଶନାତ୍ମକ ସଂକେତର ସ୍ଥିତି ସେକ୍‌ସଟସ୍ ସ୍ୱୀକାର କରି ନାହାନ୍ତି ଏବଂ ଏତଦ୍‌ସମ୍ପର୍କୀୟ ମୁକ୍ତ ଭ୍ରାନ୍ତି ବୋଲି ପ୍ରଦର୍ଶନ କରିବାର ଦାୟିତ୍ୱ ଗ୍ରହଣ କରିଛନ୍ତି ।"

ସଂଶୟବାଦୀମାନଙ୍କ ମତର ଏ ପ୍ରକାର ବ୍ୟାଖ୍ୟା ଯଦି ଯଥାର୍ଥ ହୋଇଥାଏ, ତେବେ ଏ କଥା ସ୍ପଷ୍ଟ ଯେ ସେମାନଙ୍କ ପୁରଣାର୍ଥକ ସଂକେତର ବିବରଣୀରେ ସେମାନେ ବୈଜ୍ଞାନିକ ଆବେଷ୍ଟନରେ ଏକ ଆଧୁନିକ ମତବାଦ ପ୍ରଖ୍ୟାପନର ଅତି ନିକଟବର୍ତ୍ତୀ ହୋଇଛନ୍ତି । କିନ୍ତୁ ଦର୍ଶନାତ୍ମକ ସଂକେତ ସମ୍ବନ୍ଧରେ ସେମାନଙ୍କ ସନ୍ଦେହ ଅତୀନ୍ଦ୍ରିୟ ବିଷୟ ଅନୁମାନ କରିବାର ସମ୍ଭବପରତାକୁ ଅସ୍ୱୀକାର କରୁଛି । ଯଦି ଗୋଟିଏ ଘଟଣା ବା ଷ୍ଟୋଇକ୍‌ମାନଙ୍କ ଭାଷାରେ ଏକ 'ସଂକେତ' ଦତ୍ତ ହୋଇଥାଏ, ତେବେ ସାଙ୍କେତିକ ବସ୍ତୁର ସ୍ୱଭାବ ଅନୁଭବ ନିରପେକ୍ଷଭାବେ ଆମେ ନିର୍ଦ୍ଧାରଣ କରି ନ ପାରୁଁ । ଏତଦ୍-ସମ୍ପର୍କୀୟ ମୁକ୍ତ ଯେଉଁ ମୁଖ୍ୟ ପଦାବଳୀ ସାହାଯ୍ୟରେ ପରିଗୃହୀତ ହୋଇଥିଲା, ସେଗୁଡ଼ିକ ବିଭ୍ରାନ୍ତିକର ହୋଇଥିବା ଘଟଣାରେ ଏବଂ ସେଗୁଡ଼ିକର ଆଧୁନିକ ସମାର୍ଥକ ପଦଗୁଡ଼ିକରେ ଏବେ ମଧ୍ୟ ସେହି ବିଭ୍ରାନ୍ତି ରହି ଆସିଥିବା ଘଟଣାରେ ବିସ୍ମିତ ହେବାର କିଛି ନାହିଁ । ଯେଉଁ ବସ୍ତୁଗୁଡ଼ିକୁ ଆମେ ନିର୍ଦ୍ଦେଶିତ କରି ନପାରୁଁ, ସେଗୁଡ଼ିକର କୌଣସି ସଙ୍କେତ ରହି ନ ପାରେ । କିନ୍ତୁ ଯେଉଁ ବସ୍ତୁଗୁଡ଼ିକ ଅନନୁଭୂତ, ସେଗୁଡ଼ିକୁ ଆମେ ନିର୍ଦ୍ଦେଶ କରିବା ସମ୍ଭବପର ।

ହାରକ୍ୟୁଲେନିଅମର ଖନନ କାର୍ଯ୍ୟରେ ଯେତେବେଳେ ସଫଳତା ମିଳିବ ଏବଂ ସମ୍ଭବତଃ ସଙ୍କେତ ଓ ଅନୁମାନର ଏପିକ୍ୟୁରିଏନ୍ ମତବାଦ ସମ୍ବନ୍ଧୀୟ ଫିଲୋଡେମସ୍‌ଙ୍କ ବିଲୁପ୍ତ ଗ୍ରନ୍ଥର ଉଦ୍ଧାର କରାଯାଇ ପାରିବ, ଯେତେବେଳେ ଏହି ଗ୍ରନ୍ଥ ତଥା ଏହି ପ୍ରସିଦ୍ଧ ବାଦାନୁବାଦ ସମ୍ପର୍କୀୟ ଅନ୍ୟାନ୍ୟ ଦଲିଲ୍ ପତ୍ର ସାହାଯ୍ୟରେ ହୁଏତ ଜାଣିହେବ ଯେ ବିଶ୍ୱର ଏକ ମୁକ୍ତ ସଂଗତ ବିବରଣୀ ଦେବା ପାଇଁ ସେହି ପ୍ରାଚୀନ ଯୁଗରେ କି ପରିମାଣରେ ପ୍ରଗତି କରାଯାଇ ପାରିଥିଲା । ପରବର୍ତ୍ତୀ ପନ୍ଦର ଶହ ବର୍ଷ ଧରି ଐଶ୍ୱରିକ ବିଷୟରେ ଅନୁରକ୍ତି ଏତେ ସମ୍ପୂର୍ଣ୍ଣରୂପେ ଯଦି ଜନ ମାନସରେ ପ୍ରଭାବ ବିସ୍ତାର କରି ରହି ନଥାନ୍ତା, ତେବେ ଏକ ସୁସ୍ଥ ସଂଶୟବାଦ ଦ୍ୱାରା ଯେ କି ସୁଫଳ ମିଳିପାରିଥାନ୍ତା, ତାହା କେତେକାଂଶରେ ହୃଦୟଙ୍ଗମ କରିବାକୁ ଆମେ ଉପର୍ଯ୍ୟୁକ୍ତ ବିବରଣୀରୁ ସମର୍ଥ ହୋଇପାରିବା ।

———

# ପରିଶିଷ୍ଟ-ଘ

## କେତେକ ଆଧୁନିକ ଲେଖକ

ଅର୍ଥର ସାହିତ୍ୟ ସହିତ ଯେଉଁମାନେ ପରିଚିତ ନୁହନ୍ତି, ସେମାନଙ୍କ ପକ୍ଷରେ ସଙ୍କେତ, ପ୍ରତୀକ, ଚିନ୍ତା ଓ ବସ୍ତୁର ଆଲୋଚନା ପ୍ରସଙ୍ଗରେ ସର୍ବାଧିକ ପ୍ରସିଦ୍ଧି ଲାଭ କରିଥିବା ଚିନ୍ତାନାୟକମାନେ ଯେଉଁ ଭାଷା ପ୍ରୟୋଗ କରିବାକୁ ଯଥାର୍ଥ ବୋଲି ମନେ-କରିଥାନ୍ତି, ସେହି ଭାଷା ଯେ କେତେ ଅଦ୍ଭୁତ ଓ ପରସ୍ପର ବିରୋଧୀ, ତାହା ହୃଦୟଙ୍ଗମ କରିବା କଷ୍ଟକର ହେବ । ଆମର ଅଷ୍ଟମ ପରିଚ୍ଛେଦରେ ଏହାର ବିବିଧ ପ୍ରକାର କେତେକ ଦୃଷ୍ଟାନ୍ତ ସଂକ୍ଷିପ୍ତ ଆକାରରେ ପ୍ରଦତ୍ତ ହୋଇଥିଲା । ଯଦିଓ ଏହିପରିଭାବେ ସେମାନଙ୍କ ମତ ଉପସ୍ଥାପନ କରିବାର ଆବଶ୍ୟକତା ରହିଛି, ତଥାପି ନିରପେକ୍ଷମନା ବ୍ୟକ୍ତିଙ୍କ ମନରେ ହୁଏ ତ ପ୍ରଶ୍ନ ଉଠିପାରେ ଯେ ଏହିଦ୍ୱାରା ବେଳେବେଳେ ସେମାନଙ୍କ ପ୍ରତି ଅନ୍ୟାୟ କରାଯାଇ ନାହିଁ କି ? ତେଣୁ ନିକଟ ଅତୀତରେ ଏହି ପ୍ରଶ୍ନର ଆଲୋଚନା କରିଥିବା ସର୍ବାଧିକ ପ୍ରସିଦ୍ଧ ବିଶେଷଜ୍ଞମାନଙ୍କ ଲେଖାରୁ ଆମେ କେତେକ ଅଧିକ ଦୀର୍ଘ ଉଦାହରଣ ଏଠାରେ ସଂଯୋଗ କରୁଛୁଁ । ଏଗୁଡ଼ିକର ନିଜସ୍ୱ ଯୋଗ୍ୟତା ଦୃଷ୍ଟିରୁ ଏଗୁଡ଼ିକୁ ବିଚାର କରାଯାଇପାରେ । ଆମେ ଆଶା କରୁଛୁଁ ଯେ ଏକ ନୂତନ ସମାଧାନ ପନ୍ଥାର ଆବଶ୍ୟକତା ସମ୍ବନ୍ଧରେ ମୂଳରୁ ଦିଆଯାଇଥିବା ଆମ ଯୁକ୍ତି ଏହି ଉପାୟରେ ସମର୍ଥନ ଲାଭ କରିବ ।

### ୧-ହୁସେର୍ଲ୍

ସଙ୍କେତ ଓ ଅର୍ଥ ସମସ୍ୟା ସମ୍ବନ୍ଧୀୟ ବିଶଦ-ଆଲୋଚନାର ସର୍ବାଧିକ ପ୍ରସିଦ୍ଧ ଆଧୁନିକ ପ୍ରୟାସ ବୋଧହୁଏ ହେଉଛି ଯାହା ଅଧ୍ୟାପକ ଏଡମଣ୍ଡ ହୁସେର୍ଲଙ୍କ ଦ୍ୱାରା କରାଯାଇଛି । ସେହି ବିଷୟକୁ ନେଇ ଆମେ ଏଠାରେ କାର୍ଯ୍ୟାରମ୍ଭ କରିଥାଉଁ । ହୁସେର୍ଲଙ୍କ ପରିଭାଷା ବୁଝିବାକୁ ଯାହା ହୃଦୟଙ୍ଗମ କରିବା ଆବଶ୍ୟକ, ତାହା ହେଉଛି ଯେ ସେ ଯାହା କିଛି ଲେଖିଛନ୍ତି, ସେ ସବୁ 'ପ୍ରପଞ୍ଚବାଦୀ ପଦ୍ଧତି ଓ ପ୍ରପଞ୍ଚବାଦୀ ଦର୍ଶନ''ରୁ ପରିବୃଦ୍ଧି ଲାଭ କରିଛି । ୧୯୧୦ ସାଲରୁ ପ୍ରଥମେ ଗୋଟିନ୍‌ଜେନ୍ ଓ ପରେ ଫ୍ରାଇବର୍ଗର ଦର୍ଶନ ବିଭାଗର ଅଧ୍ୟାପକରୂପେ ସେ ଏହି ପଦ୍ଧତି ଓ ଦର୍ଶନର ବିଶଦୀକରଣରେ

ନିଃସ୍ୱାକ୍ଷିତ ରହିଥିଲେ । ଜୁନ୍ ୧୯୨୨ ସାଲରେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଏକ ବିରାଟ ଶ୍ରୋତୃ ମଣ୍ଡଳୀକୁ ସେ ନିଜ ବକ୍ତୃତାଧାରାର ଏକ ବର୍ଣ୍ଣନା ଏକ ନିବନ୍ଧମାଳା ମାଧ୍ୟମରେ ଦେଇଥିଲେ । ତାଙ୍କର ପଦ୍ଧତି ଓ ତାଙ୍କର ପାରିଭାଷିକ ଶବ୍ଦସମ୍ଭାର ବିଷୟରେ ସୂଚନା ଦେବାକୁ ସେ କିମ୍ବା ତାଙ୍କର କ୍ଷମତା ପ୍ରାପ୍ତ ଅନୁବାଦକ ଯେଉଁ ପ୍ରୟାସ କରିଛନ୍ତି, ତାହା ବ୍ୟାଖ୍ୟା ମୂଳକ ଟିପ୍ପଣିକା, ସିଲବସରେ ଲିପିବଦ୍ଧ ହୋଇ ରହିଛି । ନିମ୍ନୋକ୍ତ ଉଦ୍ଧୃତିଟି ତହିଁରୁ ଗୃହୀତ ହୋଇଛି ।

"କେବଳ ମୂର୍ତ୍ତି ପ୍ରପଞ୍ଚବାଦ ମୂଳକ ଯୁକ୍ତି (Anschauung) ରୁ ହିଁ ନିଃସୃତ କରି ଏକ ନୂତନ ଅନୁଭବ ନିରପେକ୍ଷ ବିଜ୍ଞାନର ସୃଷ୍ଟି ସମ୍ଭବପର ହୋଇଛି, ଏବଂ ଏବେ ତାହା ଉନ୍ନତି ଲାଭ କରୁଛି । ଏହି ବିଜ୍ଞାନ, ଅର୍ଥାତ୍ ଅନୁଭବାତୀତ ପ୍ରପଞ୍ଚବାଦ ପ୍ରପଞ୍ଚବାଦମୂଳକ ବ୍ୟକ୍ତିପରକତ୍ୱର ପରିସର ଅନ୍ତର୍ଗତ ଆଦର୍ଶ ସମ୍ଭବପରତାଗୁଡ଼ିକର ସମଗ୍ରତା ସମ୍ବନ୍ଧରେ ଗବେଷଣା କରେ, ଏବଂ ଏହି ଗବେଷଣା ସେଗୁଡ଼ିକର ବୈଶିଷ୍ଟ୍ୟ-ମୂଳକ ଆକାର ତଥା ସ୍ଥିତି ସମ୍ବନ୍ଧୀୟ ନିୟନ୍ତ୍ରିତ ହୋଇଥାଏ ।

ଯଥାର୍ଥ ଧାରାରେ ଏହାର ସଂପ୍ରସାରଣ କରିସିବା ଉପରେ, ମୌଳିକ 'ଆତ୍ମବାଦମୂଳକ, (ଦାର୍ଶନିକ ଚିନ୍ତାରତ ବ୍ୟକ୍ତିର ତଦାନୀନ୍ତନ ଆତ୍ମା ପ୍ରତି ନିର୍ଦ୍ଦେଶିତ) ପ୍ରପଞ୍ଚବାଦକୁ ପରସ୍ପର ଭାବ ବିନିମୟକାରୀ ଚେତନଶୀଳ ବ୍ୟକ୍ତିଙ୍କ ଏକ ପ୍ରକାଶ୍ୟ ବହୁତ୍ୱ ପ୍ରତି ନିର୍ଦ୍ଦେଶିତ ଏକ ଅନୁଭବାତୀତ ସମାଜବାଦମୂଳକ ପ୍ରପଞ୍ଚବାଦ ରୂପେ ପରିବର୍ଦ୍ଧିତ କରିବା ନିର୍ଭର କରେ । ପ୍ରପଞ୍ଚବାଦର ଏକ ପଦ୍ଧତିବଦ୍ଧ ସୁସମନ୍ୱିତ ପରିବର୍ଦ୍ଧନ ଆନିଶ୍ଚୟିକ ରୂପେ ସହସଂବନ୍ଧୀ ଜ୍ଞାନ-କ୍ରିୟା, ଜ୍ଞାନ-ତାତ୍ପର୍ଯ୍ୟ ଓ ଜ୍ଞାନ-ବାସ୍ତବତା ସହିତ ସଂପୃକ୍ତ ଏକ ସର୍ବବ୍ୟାପୀ ତର୍କଶାସ୍ତ୍ର ଆଡ଼କୁ ଅଗ୍ରସର କରାଇ ନିଏ ।"

ନିଜର ସିଦ୍ଧାନ୍ତମାନଙ୍କ ମଧ୍ୟରୁ ଗୋଟିକର ବ୍ୟାଖ୍ୟା ସ୍ୱରୂପ ହୁସେର୍ଲ୍ କହିଛନ୍ତି; "ଅନୁଭବାତୀତ ଚିଦଣୁବାଦ ହେଉଛି ଚରମ ବ୍ୟକ୍ତିପରକତ୍ୱ ପ୍ରତି ଅନୁଦର୍ଶୀ ନିର୍ଦ୍ଦେଶର ଅପରିହାର୍ଯ୍ୟ ପରିଣତି । ଏଥିରେ ସଂଗଠିତ ବାସ୍ତବତା ଅତିରିକ୍ତ ଏକ ସ୍ୱତନ୍ତ୍ର ଅନୁଭବ-ନିରପେକ୍ଷ ଗୁଣ ମଧ୍ୟ ରହିଥାଏ । ତାହା ହେଉଛି ବୈକ୍ତିକ ଚିଦଣୁମାନଙ୍କ ପାରସ୍ପରି-ଆବଶ୍ୟକତାର ଏବଂ ସହସମ୍ଭାବ୍ୟ ଚିଦଣୁମାନଙ୍କ ଏକ ଜଗତର ସମ୍ଭବପରତା ସମ୍ବନ୍ଧୀୟ ସର୍ତ୍ତାବଳୀର ଗୁଣ । ସୁତରାଂ ଏହି କ୍ଷେତ୍ରର 'ତତ୍ତ୍ୱମୀମାଂସା ମୂଳକ' ଗବେଷଣା ପରିସରର ଅନ୍ତର୍ଭୁକ୍ତ ହୋଇ ଚିଦଣୁମାନଙ୍କରେ ପାରସ୍ପରିକ ଭାବେ ସଂଗଠିତ ହୋଇ ରହିଥିବା ଏକ ବାସ୍ତବ ଜଗତ ସହିତ ଚିଦଣୁମାନଙ୍କ ସମ୍ବନ୍ଧ ମାଧ୍ୟମରେ ସେମାନଙ୍କ 'ସମନ୍ୱୟ ଐକ୍ୟ'ର ସାର ଆବଶ୍ୟକତା ରହିଛି । ଏତଦ୍‌ବ୍ୟତୀତ ପରିଣାମବାଦ ସମସ୍ୟା,

ଜଗତର ତଥା ତାହାର ଉପାଦାନର ଅର୍ଥ ସମ୍ବନ୍ଧୀୟ ସମସ୍ୟା ଏବଂ ଈଶ୍ୱର ସମ୍ବନ୍ଧୀୟ ସମସ୍ୟା ମଧ୍ୟ ଏହି ପରିସରର ଅନ୍ତର୍ଭୁକ୍ତ ।

ତାଙ୍କ ପ୍ରଦର୍ଶିତ ତତ୍ତ୍ୱର ଅଧ୍ୟୟନ ଏକ ପ୍ରକାର ମୂଲ୍ୟାବଳୀ ମାଧ୍ୟମରେ କରାଯାଉ—ଏହାହିଁ ହୁସେର୍ଲ୍‌ଙ୍କ ଇଚ୍ଛା । ଅର୍ଥର ସୀମିତ ପରିସରରେ ସାରସଂଗ୍ରହଣ ନିମନ୍ତେ ହୁସେର୍ଲ୍‌ଙ୍କ ଶିଷ୍ୟ, ମ୍ୟୁନ୍‌ଷ୍ଟର୍ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଜେ ଗେଯର୍ ମଧ୍ୟ ଅନୁରୂପ ପ୍ରଣାଳୀର ଆଶ୍ରୟ ନେଇଥିଲେ । ଗେଯରଙ୍କ ବକ୍ତବ୍ୟ ତାଂକ ଗ୍ରନ୍ଥ 'ନୟେ ଉଣ୍ଡ ଆଲଟେ ୱେଗେ ଡେଆର ଫିଲୋଜୋଫି' (ଦର୍ଶନର ନୂତନ ଓ ପୁରାତନ ପ୍ରଣାଳୀ)ରେ ରହିଛି । ହୁସେର୍ଲ୍‌ଙ୍କ 'ଲୋଗିସେଯ୍ ଉଣ୍ଟେରଜୁଖୁନ୍ ଗେନ୍' (ତାର୍କିକ ଅନୁସନ୍ଧାନ) ଏବଂ ଇଡ୍‌ଇନ୍ ସ୍ରୁ ଆଇନେର ରାଇନେନ୍ ଫେନୋମେନୋଲୋଗି (ଏକ ଶୁଦ୍ଧ ପ୍ରତ୍ୟକ୍ଷବାଦ ମୂଳକ ଚିନ୍ତା) ଗ୍ରନ୍ଥ ଦ୍ୱୟରେ ପ୍ରଦତ୍ତ ଜ୍ଞାନମୀମାଂସା ପ୍ରତି ତାଂକର ମୁଖ୍ୟ ଅବଦାନ-ମାନଂକ ସାରାଂଶ ଦେବା ହେଉଛି ଗେଯରଂକ ଗ୍ରନ୍ଥର ଆଭିମୁଖ୍ୟ ।

ହୁସେର୍ଲ୍‌ଙ୍କ ମତରେ, ଯାହା ସାଧାରଣତଃ ବଚନ ବା ବଚନର ଅଂଶାବଳୀର ଅର୍ଥ (Bedeutung) ବା ତାତ୍ପର୍ଯ୍ୟ (Sinn) ବୋଲି ବର୍ଣ୍ଣିତ ହୁଏ, କେବଳ ତାହାର ପ୍ରତିହିଁ ଅଭିବ୍ୟକ୍ତିର କାର୍ଯ୍ୟ ସାକ୍ଷାତ୍ ରୂପେ ଓ ଅବ୍ୟବହିତ ରୂପେ ଉପଯୋଗୀ ହୋଇ-ଥାଏ । ଗୋଟିଏ ଶବ୍ଦ-ଧ୍ୱନି ସହିତ ସଂଶ୍ଳିଷ୍ଟ ଅର୍ଥ କିଛି ବ୍ୟକ୍ତ କରୁଥିବା ହେତୁରୁହିଁ, ସେହି ଶବ୍ଦ-ଧ୍ୱନିକୁ 'ଅଭିବ୍ୟକ୍ତି' ବୋଲି କୁହାଯାଏ (ଇଡ୍‌ଇନ୍ ସ୍ରୁ ଅଇନେର ରାଇନେନ ଫେନୋମେନୋଲୋଗି, ପୃ ୨୫୭ ଏବଂ ତଦ୍‌ପରବର୍ତ୍ତୀ ପୃଷ୍ଠା) "ଅର୍ଥ ଏବଂ ଯାହାବୋଲି ଅର୍ଥ କରାଯାଉଛି ବା ଯାହା ଅର୍ଥ ବ୍ୟକ୍ତ କରୁଛି—ଏ ଦୁଇଟି ମଧ୍ୟରେ ଏକ ସାର-ସମ୍ବନ୍ଧ ରହିଥାଏ, କାରଣ ଅର୍ଥ କରାଯାଉଥିବା ବିଷୟର ନିଜସ୍ୱ ଅନ୍ତର୍ବସ୍ତୁ ମାଧ୍ୟମରେ ହିଁ ଅର୍ଥ ଅର୍ଥ କରାଯାଉଥିବା ବିଷୟର ଅଭିବ୍ୟକ୍ତ ହୋଇଥାଏ । ଯାହା ବୋଲି ଅର୍ଥ କରାଯାଉଛି ଚିନ୍ତା ବା ବଚନର 'ବସ୍ତୁ'ରେ ଥାଏ ତେଣୁ ଆମେ ଏହି ତିନୋଟିକୁ ଅର୍ଥାତ୍ ଶବ୍ଦ, ଅର୍ଥ ଓ ବସ୍ତୁକୁ ପରସ୍ପର ପୃଥକ୍ କରି ରଖିବା ଆବଶ୍ୟକ ।" (୧)

ଯାହା ସମ୍ବନ୍ଧରେ ଅଭିବ୍ୟକ୍ତି କିଛି ବ୍ୟକ୍ତ କରେ, ତାହା ହେଉଛି ବସ୍ତୁ । ବସ୍ତୁ ସମ୍ବନ୍ଧରେ ଯାହା କୁହାଯାଏ, ତାହା ହେଉଛି ଅର୍ଥ । ତେଣୁ ଉକ୍ତ ଅର୍ଥ ସାହାଯ୍ୟରେ ବସ୍ତୁ ସହିତ ସମ୍ବନ୍ଧାନ୍ୱିତ ହୁଏ । କିନ୍ତୁ ହୁସେର୍ଲ୍ ସ୍ପଷ୍ଟତଃ ଗ୍ରହଣ କରନ୍ତି ଯେ "ବସ୍ତୁ କଦାପି ଅର୍ଥ ସହିତ ସମାନ (Zusammen fallt) ନୁହେଁ" (ଲୋଗିସେଯ୍ ଉଣ୍ଟେର-

(୧) Geyser, କଥିତ ପୃ ୨୮ ।

ଲୁଙ୍ଖୁନ୍ ଗେନ୍ (ସ୍ତ-୧—ପୃ ୪୬) । ତାଂକର ଏହି ଉକ୍ତି ଯେଉଁ ଘଟଣା ଉପରେ ଆଧାରିତ, ତାହା ହେଉଛି : "ଅନେକ ଅଭିବ୍ୟକ୍ତିର ଅର୍ଥ ଏକ, କିନ୍ତୁ ବସ୍ତୁ ଭିନ୍ନ ଭିନ୍ନ ହୋଇପାରେ । ପୁଣି, ଅନେକ ଅଭିବ୍ୟକ୍ତିର ଅର୍ଥ ଭିନ୍ନ ଭିନ୍ନ, କିନ୍ତୁ ବସ୍ତୁ ଏକ ହୋଇପାରେ" (ତତ୍ରୈବ, ପୃ ୪୭) । "ଉଦାହରଣ ସ୍ୱରୂପ, ଦୁଇଟି ଅଭିବ୍ୟକ୍ତି ଅର୍ଥାତ୍

'ସମକୋଣିକ ତ୍ରିଭୁଜ ଓ ସମବାହୁକ ତ୍ରିଭୁଜ'ର ଅର୍ଥ ଭିନ୍ନ ଭିନ୍ନ, କିନ୍ତୁ ଏ ଦୁଇଟି ଯାକ ସେହି ଏକ ବସ୍ତୁକୁ ନାମିତ କରୁଛି । ବିପରୀତ ପକ୍ଷେ, ଯେତେବେଳେ ବୁସେଫେଲସ୍ ଓ ଗୋଟିଏ ଘୋଡ଼ାଗାଡ଼ିର ଘୋଡ଼ାକୁ 'ଘୋଡ଼ା' ବୋଲି ବର୍ଣ୍ଣନା କରଯାଏ, ସେତେବେଳେ ବସ୍ତୁ ଭିନ୍ନ ଭିନ୍ନ, କିନ୍ତୁ ଅର୍ଥ ଏକ ହେବା ସୂଚିତ ହେଉଛି । କୌଣସି ଅଭିବ୍ୟକ୍ତିର ଅର୍ଥ ଗୋଟିଏ ବସ୍ତୁ କେବଳ ସେହି କ୍ଷେତ୍ରରେ ହିଁ ହୁଏ, ଯେତେବେଳେ ଏକ ଚନ୍ନନ କିମ୍ବା ମନନାତ୍ମକଭାବେ ସେହି ବସ୍ତୁ ଦିଗାଭିମୁଖୀ ହୋଇଥାଏ ।" (୧)

ଗେସର୍‌ଙ୍କ ଅନୁସାରେ (ପୃ୩୩), 'ଅର୍ଥ' ଅଭିବ୍ୟକ୍ତିଟିର ତାତ୍ପର୍ଯ୍ୟ ହେଉଛି ନିୟମାନୁଗତଭାବେ ସମ୍ପ୍ରତ୍ୟୟର ସମାର୍ଥକ (was meist als Begriff bezeichnet wird, ଯାହା ଅଧିକାଂଶତଃ ସମ୍ପ୍ରତ୍ୟୟ ବୋଲି ବୁଝାଉଥାଏ) । ଦୁଇଟି କ୍ଷେତ୍ରର ତୁଳନା ଦ୍ୱାରା ହୁସେର୍ଲ ଏହି ବିଷୟକୁ ବୁଝାଇଛନ୍ତି । ଗୋଟିଏ ଶ୍ୱେତ ବସ୍ତୁର ପ୍ରତ୍ୟକ୍ଷାନୁଭୂତ କ୍ଷେତ୍ରରେ, ତାହାର ପ୍ରତ୍ୟକ୍ଷଣ କରି ଆମେ ସନ୍ତୁଷ୍ଟ ରହିପାରୁ, ଏବଂ ଘଟଣାକ୍ରମେ ତହିଁରେ କିଛି ଗୋଟିକର ପାର୍ଥକ୍ୟ ଆମେ ଲକ୍ଷ୍ୟ କରିପାରୁଁ । ଏଥି କିମ୍ବା କମନ୍ତ୍ରେ ଅଭିବ୍ୟକ୍ତି ଓ ଅର୍ଥର ଆବଶ୍ୟକତା ନାହିଁ । କିନ୍ତୁ ଏହି କ୍ଷେତ୍ରରେ ଆମେ "ଏହା ଶ୍ୱେତ ଅଟେ"—ଏହି ଚିନ୍ତାକୁ ମଧ୍ୟ ଗଢ଼ କରିପାରୁ । ଏବେ ପ୍ରତ୍ୟକ୍ଷଣକାରୀ ପ୍ରତ୍ୟକ୍ଷଣ ସହିତ ଏପରି ଏକ ମାନସିକ କିମ୍ବା ସଂଯୋଗ କରିଛୁ, ଯାହା ବ୍ୟକ୍ତ କରେ, ପ୍ରତ୍ୟକ୍ଷୀଭୂତ ବସ୍ତୁର ଅର୍ଥ କରେ ଏବଂ ଯାହା ପ୍ରତ୍ୟକ୍ଷୀଭୂତ, ସେଥିରେ ବସ୍ତୁକୁ ଅର୍ଥାତ୍ ବାସ୍ତବ ଉପାଦାନକୁ ପୃଥକ କରେ । ତେଣୁ ଏହି ବିଷୟଟିକୁ ସାଧାରଣଭାବେ କହିଲେ, ଅଭିବ୍ୟକ୍ତି ହେଉଛି ଏପରି ଏକ ଆକାର ଯାହା ତାତ୍ପର୍ଯ୍ୟକୁ "ସମ୍ପ୍ରତ୍ୟୟର ଏବଂ ତଦ୍ଦ୍ୱାରା 'ସାମାନ୍ୟ'ର 'ତର୍କ' ଜଗତକୁ" ଉନ୍ନୀତ କରେ (ଇଡ଼ନ ସ୍ତ୍ର୍ ଆଇନେର ରାଇନେନ ଫେନୋମେନୋଲୋଗି, ପୃ ୨୫୭) । ଅଭିବ୍ୟକ୍ତିର କାର୍ଯ୍ୟ, ଅର୍ଥାତ୍ ଏହି

(୧) Geyser, କଥିତଗ୍ରନ୍ଥ, ପୃ ୨୯ ।

ଅସାଧାରଣ ଅଭିପ୍ରାୟର କାର୍ଯ୍ୟ ହେଉଛି "ପ୍ରକାଶ କରିବାରେ ନିଜକୁ ନିଃଶେଷିତ କରିବା ଏବଂ ଏହି କାର୍ଯ୍ୟ ନୂତନଭାବେ ପ୍ରବେଶ କରିବା ସଂପ୍ରତ୍ୟୟର ଆକାର ଦ୍ୱାରା ସଂପାଦିତ ହୁଏ" (କଥିତ ଗ୍ରନ୍ଥ ପୃ ୨୫୮) । ଆହୁରି ମଧ୍ୟ, 'ପ୍ରକାଶ କରିବା' ହେଉଛି ଏକ ଅନୁକରଣ କ୍ରିୟା; ଏହା ଏକ ଉତ୍ପାଦକ କ୍ରିୟା ନୁହେଁ ।

'ଅଭିବ୍ୟକ୍ତି' ଓ 'ଅର୍ଥ'—ଏହି ଶବ୍ଦମାନଙ୍କ ଦ୍ୱାରା ହୁସେର୍ଲ ମୂଳତଃ ସଂପ୍ରତ୍ୟୟ ଗୁଡ଼ିକର ବର୍ଣ୍ଣନା ଦେଇଛନ୍ତି; କିନ୍ତୁ ଏତଦ୍ଦ୍ୱାରା ଅବଧାରଣ ଓ ସିଦ୍ଧାନ୍ତଗୁଡ଼ିକ ମଧ୍ୟ ବର୍ଣ୍ଣିତ ହୋଇଛି । "ଶୁଦ୍ଧ ତର୍କ, ଯେଉଁଠାରେ ସଂପ୍ରତ୍ୟୟ, ଅବଧାରଣ, ସିଦ୍ଧାନ୍ତ-ଗୁଡ଼ିକର ଆଲୋଚନା କରେ, ସେଠାରେ ବସ୍ତୁତଃ କେବଳ ଏହି ଆଦର୍ଶ ସହିତ ମାନଙ୍କର ବିଗ୍ଧର କରେ । ଏଗୁଡ଼ିକୁ ଏଠାରେ ଆମେ ଅର୍ଥ ବୋଲି ଅଭିହିତ କରିଛୁ" (ଲୋଗସେଞ୍ ଉଣ୍ଟେର ଜୁଖୁନଗେନ, ୨ୟ-୧—ପୃ ୯୧୬) । ସାଧାରଣତଃ, ଏହା "ସୁସ୍ପଷ୍ଟ ଯେ ତର୍କଶାସ୍ତ୍ର ଅର୍ଥମାନଙ୍କୁ ଅର୍ଥରୂପେ ହିଁ ନେଇ ସେଗୁଡ଼ିକର ଜ୍ଞାନଭଣ୍ଡାର ହେବା ସୁନିଶ୍ଚିତ । ଏହା ହେଉଛି ଅର୍ଥ ଗୁଡ଼ିକର ମୁଖ୍ୟ ପ୍ରକାର ଭେଦ ଓ ପାର୍ଥକ୍ୟ-ମାନଙ୍କ ତଥା ସେଗୁଡ଼ିକ ଉପରେ ସଂପୂର୍ଣ୍ଣରୂପେ ଆଧାରିତ ନିୟମଗୁଡ଼ିକର (ଅର୍ଥାତ୍ ଆଦର୍ଶ ନିୟମ ଗୁଡ଼ିକର) ଜ୍ଞାନ । ଏହାର କାରଣ ହେଉଛି, ଯେ କୌଣସି ପ୍ରକାର ଅର୍ଥଗତ ପାର୍ଥକ୍ୟ ମଧ୍ୟ ଏହି ସାର ପାର୍ଥକ୍ୟମାନଙ୍କ ଅନ୍ତର୍ଭୁକ୍ତ; ଏହି ଅର୍ଥଗୁଡ଼ିକ ବସ୍ତୁ ସମ୍ବଳିତ ହେଉ ବା ବସ୍ତୁ ବିରହିତ ହେଉ, ସତ୍ୟ ହେଉ ବା ମିଥ୍ୟା ହେଉ, ସେଥିରେ କିଛି ଯାଏ ଆସେ ନା...... ।" (ତନ୍ନୈବ, ପୃ ୯୧) । ପ୍ରତ୍ୟେକ ଚିନ୍ତା କ୍ଷେତ୍ରରେ, ଅର୍ଥ ବା ପ୍ରକାଶ କ୍ରିୟାମାନଙ୍କ ଏକ ଯଥୋପଯୁକ୍ତ ପରିସର ଥାଏ । ଏହି କ୍ରିୟାମାନଙ୍କ ଇନ୍ଦ୍ରିୟାନୁଭୂତ ମୂଳକ ଶବ୍ଦ ଅଥବା ସଜ୍ଞାନର ବସ୍ତୁ କାହାରି ସହିତ ତାଦାତ୍ମ୍ୟ ନଥାଏ । "ଇନ୍ଦ୍ରିୟ ପ୍ରତ୍ୟକ୍ଷମୂଳକ ଶବ୍ଦଧ୍ୱନି ସ୍ତରର ଅପକର୍ଷଣ ପରେ, ପ୍ରକୃତରେ ଯେ ଆହୁରି ଏକ ସ୍ତର ବିନ୍ୟାସ ରହିଛି, ଏହା ସୁସ୍ପଷ୍ଟରୂପେ ହୃଦୟଙ୍ଗମ କରିବା ସହଜ ନୁହେଁ । ଏହି ପରବର୍ତ୍ତୀ ସ୍ତରଟି ହେଉଛି ଆମେ ଯେପରିଭାବେ ତାହାକୁ ଏଠାରେ ଗ୍ରହଣ କରିଛୁ । ଏହା କହିବାର ତାତ୍ପର୍ଯ୍ୟ ହେଉଛି ଯେ ପ୍ରତ୍ୟେକ କ୍ଷେତ୍ରରେ, ଏପରିକି ଅସ୍ପଷ୍ଟ, ଶୂନ୍ୟ ଓ କେବଳ ଶାବ୍ଦିକ ଚିନ୍ତା କ୍ଷେତ୍ରରେ ସୁଦ୍ଧା ଅର୍ଥ ପ୍ରକାଶ କରିବାର ଏକ ସ୍ତର ଏବଂ ପ୍ରକାଶିତ ବିଷୟର ଏକ ଅନ୍ତର୍ନିହିତ ସ୍ତରଥାଏ । ଏହି ସ୍ତର ଦ୍ୱୟର ସାର ସମ୍ବନ୍ଧଗୁଡ଼ିକୁ ବୁଝିବା ଆହୁରି କଷ୍ଟସାଧ୍ୟ" (ଇଡ଼ିନ୍ ସ୍ତୁ ଆଇନେର ରାଇନେନ୍ ଫେନୋମେନୋଲୋଗି, ପୃ ୨୫୯ ) ।

ହୁସେର୍ଲ ଆହୁରି କେତେକ ପାର୍ଥକ୍ୟ ପ୍ରଦର୍ଶନ କରିବାକୁ ଅଗ୍ରସର ହୋଇଛନ୍ତି । ସେଗୁଡ଼ିକ ହେଉଛି ଯାହାକୁ ସେ 'ଅର୍ଥ ଅଭିପ୍ରାୟ'

ଓ 'ଉପଲବ୍ଧ—ଅର୍ଥ' (er full te Bedeutungen) ବୋଲି କହିଛନ୍ତି ସେ ଦୁଇଟିର ପାର୍ଥକ୍ୟ; 'ଅର୍ଥ-ପ୍ରଦାୟକ' କ୍ରିୟା ଓ 'ଅର୍ଥ-ଉପଲବ୍ଧକ' କ୍ରିୟା—ଏ ଦୁଇଟିର ପାର୍ଥକ୍ୟ (ଲୋଗିଟେଯ୍ ଉଣ୍ଟେରଜୁଖୁନଗେନ୍,-୧—ପୃ ୩୮); ଏବଂ ଅର୍ଥର ମନସ୍ତାତ୍ତ୍ୱିକ ଆଲୋଚନା ଓ ବସ୍ତୁନିଷ୍ଠ—ପ୍ରପଞ୍ଚବାଦମୂଳକ ଆଲୋଚନା– ଏ ଦୁଇଟିର ପାର୍ଥକ୍ୟ । (୧) ପ୍ରପଞ୍ଚବାଦ ଦୃଷ୍ଟିରୁ ଆମେ ଯେତେବେଳେ 'ମୌଳିକ ସଂଖ୍ୟା' ଅଭିବ୍ୟକ୍ତିର ଅର୍ଥ ଜିଜ୍ଞାସା କରୁ, ସେତେବେଳେ ଏହି ଅଭିବ୍ୟକ୍ତିଟିକୁ ତାହାର ନିଜସ୍ୱ ସ୍ୱଭାବ ଦୃଷ୍ଟିରୁ ଓ ମୌଳିକ ସଂଖ୍ୟା ରୂପେ ହିଁ ଆମେ ନିର୍ଦ୍ଦେଶ କରୁଛୁ (meinen) ଏଠାରେ ତାହାର କୌଣସି ବିଶେଷତ୍ୱର (Besonderheit), ବା ତାହା କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିଦ୍ୱାରା ଏକ ବକ୍ତୃତାରେ ଯେପରି ବ୍ୟବହୃତ ହୋଇଛି, ସେହି ବ୍ୟବହାରର; ଅଥବା ତାହା ଅମୁକ ପୁସ୍ତକରେ ଯେପରି ଅମୁକଭାବେ ଲିପିବଦ୍ଧ ହୋଇଛି, ସେହି ବିଷୟର ବିଚାର ଏଠାରେ କରାଯାଉ ନାହିଁ, ଏଠାରେ ବରଂ ଆମେ କେବଳ ଏତିକି ପଚାରୁଛୁ ଯେ, ମୌଳିକ ସଂଖ୍ୟା' ଅଭିବ୍ୟକ୍ତିଟିର ହିଁ ଅର୍ଥ କଣ ? ଏବେ କିମ୍ବା ଆଗ କେତେବେଳେ ଅମୁକ ଅମୁକ ଲୋକ ଏହି ଅଭିବ୍ୟକ୍ତିର ଅର୍ଥ କଣ ବୋଲି ଚିନ୍ତା କରିଥିଲେ ବା ଅନୁଭବ କରିଥିଲେ, ସେହି ବିଷୟରେ ମଧ୍ୟ ଆମେ ଏଠାରେ ପ୍ରଶ୍ନ କରୁନାହିଁ । ଆମେ ଏଠାରେ ସାଧାରଣଭାବେ ପଚାରୁଛୁ—ଅବସ୍ଥା ନିର୍ବିଶେଷରେ 'ମୌଳିକ ସଂଖ୍ୟା'ର ନିଜସ୍ୱ ଅର୍ଥ କଣ ? ଏହି ଅବସ୍ଥାକୁ ବ୍ୟକ୍ତ କରିବାପାଇଁ ହୁସେର୍ଲ୍ କହିଛନ୍ତି ଯେ ଏ ପ୍ରକାର ପ୍ରଶ୍ନମାନଙ୍କରେ ଯାହା ପଚରା ଯାଇଛି, ତାହା ହେଉଛି ଏକ ଅଭିବ୍ୟକ୍ତିଗତ ଏବଂ 'ଉପକାଠରେ', 'ଉପକାଠରୂପେ', 'ପ୍ରତ୍ୟୟରୂପେ' ଓ 'ଆଦର୍ଶ ଐକ୍ୟରୂପେ' ଅର୍ଥଗତ ବ୍ୟାପାର । କାରଣ ଏଠାରେ ଯାହା ନିର୍ଦ୍ଦେଶ କରାଯାଇଛି, ତାହା ହେଉଛି ଏକ ଓ ସେହି ଏକ ଅର୍ଥ ଏବଂ ଏକ ଓ ସେହି ଏକ ଅଭିବ୍ୟକ୍ତି । ଏ ଦୁଇଟିକୁ ଯେପରିଭାବେ ଚିନ୍ତା କରାଯାଇଥାଏ ବା ବ୍ୟକ୍ତ କରାଯାଇଥାଏ, ସେଥିରେ କିଛି ଯାଏ ଆସେ ନାହିଁ (ଲୋଗିସେଯ୍ ଉଣ୍ଟେରଜୁଖୁନଗେନ, ୨ୟ-୧— ପୃ ୪୨ ଓ ତତ୍ପରବର୍ତ୍ତୀ ପୃଷ୍ଠା ) । ଏଥିରୁ ଜଣାପଡ଼ୁଛି ଯେ ଅର୍ଥଗୁଡ଼ିକର ଅର୍ଥାତ୍ ଆଦର୍ଶ ବସ୍ତୁମାନଙ୍କ ଅସ୍ତିତ୍ୱ ରହିବା ସୁନିଶ୍ଚିତ; କାରଣ ଆମେ ଯେତେବେଳେ କହୁଁ ଯେ ଚାରି ହେଉଛି ଏକ ଯୋଡ଼ ସଂଖ୍ୟା, ସେତେବେଳେ ଆମେ ଚାରିକୁ ଯେପରିଭାବେ ବିଧେୟାନ୍ୱିତ କରୁଛୁ ତାହା ସତ୍ୟ (ତତ୍ରୈବ, ପୃ ୧୨୫) । କିନ୍ତୁ ଏଗୁଡିକର ସ୍ଥିତି, ଏଗୁଡ଼ିକୁ ଚିନ୍ତା କରିବା ଉପରେ ନିର୍ଭରଶୀଳ ନୁହେଁ । ଏଗୁଡ଼ିକର ଶାଶ୍ୱତ ଆଦର୍ଶ

---

(୧) Geyser, ପୃ ୨୨ ।

ସ୍ଥିତ ରହିଛି । (୧) "ଅର୍ଥ ଯାହା ଅଛି, ତାହା ବର୍ଣ୍ଣ ଓ ସ୍ୱରରେ ଅବ୍ୟବହିତରୂପେ ଆମ ପକ୍ଷରେ ଦତ୍ତ ହୋଇପାରେ । ଏହାର ଅଧିକନ୍ତର ସଙ୍କେତ ସମ୍ବନ୍ଧୀୟ ନୁହେଁ । ଏହା ଏକ ବର୍ଣ୍ଣନାତ୍ମକ ଚରମ ସତ୍ତା । ଯେ କୌଣସି ସମୟରେ ଆମେ ଯଦି ଏକ ଅଭିବ୍ୟକ୍ତିକୁ ସମ୍ପୂର୍ଣ୍ଣ କରୁ ବା ବୁଝିପାରୁ, ଆମପାଇଁ ତାହାର କିଛି ଅର୍ଥ ଥାଏ; ଏବଂ ଆମେ ତାହାର ତାତ୍ପର୍ଯ୍ୟ ସମ୍ବନ୍ଧରେ ବାସ୍ତବତଃ ସଚେତନ ରହୁ ।" ଅର୍ଥ, ଅର୍ଥ ମଧ୍ୟରେ ଥିବା ପାର୍ଥକ୍ୟମାନ ମଧ୍ୟ ସାକ୍ଷାତ୍‌ଭାବେ ଦତ୍ତ; ଅର୍ଥର ପ୍ରପଞ୍ଚବାଦରେ ଆମେ ଏହି ପାର୍ଥକ୍ୟଗୁଡ଼ିକୁ 'ପ୍ରତୀକାତ୍ମକ—ଶୂନ୍ୟ', 'ସ୍ୱଜ୍ଞାତ୍ମକଭାବେ ଉପଲବ୍ଧ' ଇତ୍ୟାଦି ରୂପେ ଶ୍ରେଣୀ ବିଭାଗ କରିପାରୁ । ତାଦାତ୍ମ୍ୟ କରଣ, ପୃଥକ୍ କରଣ, ସମ୍ବନ୍ଧ ସଂସ୍ଥାପନ ଓ ଅପକର୍ଷଣର ସାମାନ୍ୟୀକରଣ ପରି କ୍ରିୟାଗୁଡ଼ିକ ଦ୍ୱାରା ଆମେ "ମୌଳିକ ତାର୍କିକ ସଂପ୍ରତ୍ୟୟମାନ ପାଇଥାଉ ଏଗୁଡ଼ିକ ଅର୍ଥର ଆଦ୍ୟମ ପାର୍ଥକ୍ୟମାନଙ୍କର ଆଦର୍ଶ ଧାରଣା ବ୍ୟତୀତ ଅନ୍ୟ କିଛି ନୁହେଁ ।" (ତତ୍ରୈବ, ପୃ ୧୮୩)

## ୨—ବର୍ଟ୍ରାଣ୍ଡ ରସେଲ

ଶ୍ରୀ ରସେଲଙ୍କ ସର୍ବାଧିକ ପ୍ରସିଦ୍ଧ ମତ ତାଙ୍କର ପ୍ରିନ୍‌ସିପଲ୍‌ସ ଅଫ ମେଥେମେଟିକ୍ସ (ଗଣିତର ନୀତି ସମୂହ) ଗ୍ରନ୍ଥର ୪୭ ପୃଷ୍ଠାରେ ରହିଛି । (ଏବେ ଅବଶ୍ୟ, ତାଙ୍କର ଅଧିକ ଗ୍ରହଣୀୟ ମନସ୍ତାତ୍ତ୍ୱିକ ମତ, ଯାହା ଆମର ତୃତୀୟ ପରିଚ୍ଛେଦରେ ଆଲୋଚିତ ହୋଇଛି, ତାହାମଧ୍ୟରେ ଏବଂ ମନିଷ୍ଟ (ଏକତ୍ୱବାଦୀ) ପତ୍ରିକା (୧୯୧୮-୧୯୧୯) ରେ ରହିଥିବା ତାଙ୍କ ନିବନ୍ଧଗୁଡ଼ିକ ମଧ୍ୟରେ ତାଙ୍କର ଉପସର୍ଗୀକ ମତକୁ ମିଶାଇ ତାଙ୍କ ବକ୍ତବ୍ୟ ସମ୍ବନ୍ଧରେ ଧାରଣା କରିବାକୁ ହେବ ।) ଉପସର୍ଗୀକ କ୍ଷେତ୍ରରେ, ରସେଲ ପରିଭାଷାପ୍ରତି ସ୍ୱଭାବ ସମ୍ବନ୍ଧୀୟ କେତେକ ପ୍ରାଚୀନ ମତ ଏବଂ ବ୍ରାଡଲେଙ୍କ ସିଦ୍ଧାନ୍ତ (୧) ସହିତ ତାଙ୍କର ବିଶେଷଣ-ମୂଳର ସମ୍ବନ୍ଧ ବିଷୟ ଆଲୋଚନା କରିଛନ୍ତି । ବ୍ରାଡ଼ଲେଙ୍କ ଏହି ସଂପୃକ୍ତ ସିଦ୍ଧାନ୍ତଟି ହେଉଛି; "ପ୍ରତ୍ୟେକ ଶବ୍ଦ ପ୍ରତ୍ୟୟ ସଙ୍କେତରୂପେ ବ୍ୟବହୃତ ହୁଏ । ଏହି ପ୍ରତ୍ୟୟମାନଙ୍କ ଯାହା ଥାଏ, ତାହାକୁ ସେ ଅର୍ଥ ବୋଲି ଅଭିହିତ କରିଛନ୍ତି । ପୁଣି ପ୍ରତ୍ୟେକ ଅବଧାରଣରେ ଏପରି କୌଣସି କିଛି ଥାଏ, ଯାହା ହେଉଛି ଅବଧାରଣର ସତ୍ୟ ଉଦ୍ଦେଶ୍ୟ"; ଏହି ଉଦ୍ଦେଶ୍ୟ ଏକ ପ୍ରତ୍ୟୟ ନୁହେଁ" ଏବଂ ଏହାର ଅର୍ଥ ନଥାଏ । ଶ୍ରୀ ରସେଲ କହନ୍ତି, "ଅର୍ଥ ... ହେବା ହେଉଛି ଏବଂ ଏକ

(୧) ତତ୍ରୈବ, ପୃ ୩୬ ।

(୧) Logic ୧ମ ଖଣ୍ଡ, ୧ମ ପରିଚ୍ଛେଦ ୧୬, ୧୮, (ପୃ ୪୮—୫୬)

ଧାରଣା ଯାହା ତାର୍କିକ ଓ ମନସ୍ତାତ୍ତ୍ୱିକ ଉପାଦାନମାନଙ୍କ ଦ୍ୱାରା ବିଭ୍ରାନ୍ତିକରଭାବେ ଗଠିତ । ଏକ ସରଳ ଦୃଷ୍ଟିକୋଣରୁ ସମସ୍ତ ଶବ୍ଦର ଅର୍ଥ ରହିଛି । ଏହି ଦୃଷ୍ଟିକୋଣଟି ହେଉଛି ଯେ ଶବ୍ଦଗୁଡ଼ିକ ପ୍ରତୀକ ଏବଂ ପ୍ରତୀକଗୁଡ଼ିକ ନିଜଠାରୁ ଭିନ୍ନ ଅନ୍ୟ କିଛି ପରିବର୍ତ୍ତେ ବ୍ୟବହୃତ ହୁଏ । କିନ୍ତୁ ଏକ ପ୍ରତିଜ୍ଞପ୍ତି, ଘଟଣାମୂଳକ ହୋଇ ନଥିଲେ, ଶବ୍ଦସଙ୍କଳିତ ନୁହେଁ; ତାହା ଶବ୍ଦସୂଚିତ ସତ୍ତ୍ୱ ସମ୍ବଳିତ । ସୁତରାଂ ଯେଉଁ ଦୃଷ୍ଟିକୋଣରୁ ଶବ୍ଦଗୁଡ଼ିକର ଅର୍ଥ ରହିଛି, ସେହି ଦୃଷ୍ଟିକୋଣରୁ ଅର୍ଥ ତର୍କଶାସ୍ତ୍ରରେ ଅବାନ୍ତର । କିନ୍ତୁ ଜଣେ ମନୁଷ୍ୟପରି ସଂପ୍ରତ୍ୟୟମାନଙ୍କ ଅନ୍ୟ ଏକ ଦୃଷ୍ଟିକୋଣରୁ ଅର୍ଥ ରହିଛି । ସେଗୁଡ଼ିକ ନିଜସ୍ୱ ତାର୍କିକ ସ୍ୱଭାବରେ ପ୍ରତୀକାତ୍ମକ ବୋଲି କୁହାଯାଇ ପାରେ, କାରଣ ସେଗୁଡ଼ିକର ସେହି ଗୁଣ ରହିଛି, ଯାହାକୁ ମୁଁ ବାଚ୍ୟାର୍ଥ ସୂଚିତକରଣ ବୋଲି ଅଭିହିତ କରିଛି । ଏହାର ତାତ୍ପର୍ଯ୍ୟ ହେଉଛି, ଯେତେବେଳେ ଗୋଟିଏ ପ୍ରତିଜ୍ଞପ୍ତିରେ ଜଣେ ମନୁଷ୍ୟ ସଂପ୍ରତ୍ୟୟ ରହିଥାଏ (ଯଥା—'ସହରରେ ଜଣେ ମନୁଷ୍ୟ ସହିତ ମୋର ଦେଖା ହେଲା), ପ୍ରତିଜ୍ଞପ୍ତିଟି ଜଣେ ମନୁଷ୍ୟ ସଂପ୍ରତ୍ୟୟ ସମ୍ବନ୍ଧୀୟ ନୁହେଁ; ତାହା ହେଉଛି ଏକ ସଂପୂର୍ଣ୍ଣ ଭିନ୍ନ ବସ୍ତୁ ସମ୍ବନ୍ଧୀୟ, ଅର୍ଥାତ୍ ତାହା ସଂପ୍ରତ୍ୟୟ ଦ୍ୱାରା ବାଚ୍ୟାର୍ଥରୂପେ ସୂଚିତ କୌଣସି ବାସ୍ତବ ଦ୍ୱିପଦ ସମ୍ବନ୍ଧୀୟ । ସୁତରାଂ ଏ ପ୍ରକାର ସଂପ୍ରତ୍ୟୟମାନଙ୍କ ଅଣମନସ୍ତାତ୍ତ୍ୱିକ ତାତ୍ପର୍ଯ୍ୟ ବିଶିଷ୍ଟ ଏକ ଅର୍ଥ ଥାଏ । ଏହି ଦୃଷ୍ଟିରୁ ଆମେ ଯେତେବେଳେ 'ଏହା ଜଣେ ମନୁଷ୍ୟ' ବୋଲି କହୁଁ, ଆମେ ଯେତେବେଳେ ଏପରି ଏକ ପ୍ରତିଜ୍ଞପ୍ତି ଗଠନ କରୁଛୁଁ, ଯହିଁରେ ଏକ ସଂପ୍ରତ୍ୟୟ ହୋଇ ନଥିବା ବିଷୟ ସହିତ ଏକ ସଂପ୍ରତ୍ୟୟ କୌଣସି ଏକ ଅର୍ଥରେ ସଂଯୋଜିତ । କିନ୍ତୁ ଉପର୍ଯ୍ୟୁକ୍ତଭାବେ ଯଦି ଅର୍ଥର ବ୍ୟାଖ୍ୟା କରାଯାଏ, ତେବେ, ଯେଉଁ ସତ୍ତ୍ୱା ଜନ ଦ୍ୱାରା ସୂଚିତ, ତାହାର କୌଣସି ଅର୍ଥ ନାହିଁ; କିନ୍ତୁ ଶ୍ରୀ ବ୍ରାଉଲେ ଏହାକୁ ସ୍ୱୀକାର କରିନାହାନ୍ତି । ସଂପ୍ରତ୍ୟୟ କ୍ଷେତ୍ରରେ ମୁଁ ବା, ଯେଉଁ ସଂପ୍ରତ୍ୟୟଗୁଡ଼ିକ ବାଚ୍ୟାର୍ଥରୂପେ କିଛି ସୂଚିତ କରେ, କେବଳ ସେହି ସଂପ୍ରତ୍ୟୟଗୁଡ଼ିକର ହିଁ ଅର୍ଥ ଥାଏ । ମୋର ବିଶ୍ୱାସ, ପ୍ରତିଜ୍ଞପ୍ତିମାନଙ୍କରେ ଶବ୍ଦଗୁଡ଼ିକ ରହିଥାଏ ବୋଲି ଧାରଣା କରିବା ହେତୁ ଏହି ଗଣ୍ଡଗୋଳର ସୃଷ୍ଟି ହୁଏ । ପୁଣି ଏହି ଧାରଣାର କାରଣ ହେଉଛି ଯେ ପ୍ରତିଜ୍ଞପ୍ତି-ଗୁଡ଼ିକ ମୁଖ୍ୟତଃ ମାନସିକ ଏବଂ ସଂଜ୍ଞାନଗୁଡ଼ିକ ସହିତ ସମାନ ବୋଲି ମନେ କରିବା ।"

## ୩ । ଫ୍ରେଗେ

ଫ୍ରେଗେଙ୍କ ଅର୍ଥସିଦ୍ଧାନ୍ତ ତାଙ୍କ ବେଗ୍ରିଫସ୍କ୍ରିଫ୍ଟ ଗ୍ରୁଣ୍ଡଲାଗେନ୍ ଡେ଼ଆରି ଆରିଥ୍‌ମେଟିକ (ଅଙ୍କଶାସ୍ତ୍ର ଭିତ୍ତିର ଧାରଣା ପ୍ରୟାସ) ଏବଂ 'ବେଗ୍ରିଫ ଉଣ୍ଡ ଗେଗେନଷ୍ଟାଣ୍ଡ'

(ଧାରଣା ଓ ବସ୍ତୁ) ଏବଂ "ଜିନ୍ ଉଣ୍ଡ ବେଡଏଟୁଙ୍ଗ" (ଅର୍ଥ ଓ ସୂଚନା) ସମ୍ବନ୍ଧୀୟ ନିବନ୍ଧମାନଙ୍କରେ ପ୍ରଦତ୍ତ ହୋଇଛି । ଫ୍ରେଗେଙ୍କ ସିଦ୍ଧାନ୍ତର ଏକ ସୁବିଧା ଜନକ ସାରାଂଶ ଶ୍ରୀ ରସେଲ୍‌ଙ୍କ ଦ୍ୱାରା ତାଙ୍କ ପ୍ରିନ୍‌ସିପଲ୍‌ସ ଅଫ ମେଥେମେଟିକ୍‌ସର ପୃ ୫୦୨ ରେ ଦିଆ ଯାଇଛି । ଆମେ ଏଠାରେ ସେହି ସାରାଂଶର ହିଁ ଅନୁସରଣ କରୁଛୁ । ରସେଲ୍‌ଙ୍କ ମତରେ ଫ୍ରେଗେଙ୍କ କୃତ "ସୂକ୍ଷ୍ମ ପାର୍ଥକ୍ୟମାନଙ୍କରେ ଭରପୂର ହୋଇ ରହିଛି ଏବଂ ତର୍କଶାସ୍ତ୍ରର ଲେଖକମାନେ ଯେଉଁ ପ୍ରଥାଗତ ଦୋଷଗୁଡ଼ିକର ଶିକାର ହୋଇଛନ୍ତି, ସେହି ସବୁ ଦୋଷରୁ ଏହା ମୁକ୍ତ ।' ଫ୍ରେଗେ ଅର୍ଥ (sihn) ଓ ସୂଚନା (Bedeutung) ମଧ୍ୟରେ ଯେଉଁ ପାର୍ଥକ୍ୟର ଅବତାରଣା କରିଛନ୍ତି, ତାହା ସମ୍ପୂର୍ଣ୍ଣତଃ ନ ହେଲେ ସୁଦ୍ଧା ସ୍ଥୂଳତଃ, ସପ୍ରତ୍ୟୟ ରୂପେ ସପ୍ରତ୍ୟୟ ଓ ଯାହା ସପ୍ରତ୍ୟୟ ଦ୍ୱାରା ବାଚ୍ୟାର୍ଥ ରୂପେ ସୂଚିତ ମଧ୍ୟରେ ଶ୍ରୀ ରସେଲ୍‌ଙ୍କ ଦ୍ୱାରା କରାଯାଇଥିବା ପାର୍ଥକ୍ୟ (ପ୍ରିନ୍‌ସିପଲ୍‌ସ ପୃ ୪୭) ସହିତ ସମାନ । ଏଠାରେ ବିଚାର କରାଯାଉଥିବା ପ୍ରଥମ ଦୁଇଟି ରଚନାରେ ଫ୍ରେଗେ ଏହି ପାର୍ଥକ୍ୟ ରକ୍ଷା କରି ନ ଥିଲେ । କିନ୍ତୁ ଏହାର ଉଲ୍ଲେଖ ବେଗ୍ରିଫ ଉଣ୍ଡ ଗେଗେନ— ଷ୍ଟାଣ୍ଡରେ ରହିଛି ଏବଂ ଏହା ଜିନ୍ ଉଣ୍ଡ ବେଡ ଏଟୁଙ୍ଗରେ ବିଶେଷଭାବେ ଆଲୋଚିତ ହୋଇଛି । ଏହି ପାର୍ଥକ୍ୟର ଅବତାରଣା ପୂର୍ବରୁ ସେ ମନେ କରୁଥିଲେ ଯେ ତାଦାତ୍ମ୍ୟର ସମ୍ପର୍କ ବସ୍ତୁଗୁଡ଼ିକର ନାମ ସହିତ ରହିଛି (ବେଗ୍ରିଫ୍‌ସ୍କ୍ରିଫ୍‌ଟ, ପୃ ୧୩) । ସେ କହିଛନ୍ତି, "କ ଓ ଖ ମଧ୍ୟରେ ତାଦାତ୍ମ୍ୟ ରହିଛି" ର ଅର୍ଥ ହେଉଛି କ-ସଙ୍କେତ ଓ ଖ-ସଙ୍କେତ ଉଭୟର ତାତ୍ପର୍ଯ୍ୟ ସମାନ (ବେଗ୍ରିଫ୍‌ସ୍କ୍ରିଫ୍‌ଟ, ପୃ ୧୫) । ଏହି ସଂଜ୍ଞା ଶ୍ରୀ ରସେଲ୍‌ଙ୍କ ମତରେ, "ଅନ୍ତତଃ ବାଚନିକ ଭାବେ ଚକ୍ରକ ଦୋଷଦୁଷ୍ଟ" । ଶ୍ରୀ ରସେଲ୍ ପ୍ରିନ୍‌ସିପଲ୍‌ସର ୬୪ ରେ ତାଦାତ୍ମ୍ୟର ଯେଉଁ ବ୍ୟାଖ୍ୟା ଦେଇଛନ୍ତି, ଅଧିକାଂଶତଃ ତାହାର ଅନୁରୂପଭାବେ ଫ୍ରେଗେ ପରବର୍ତ୍ତୀ କାଳରେ ତାଦାତ୍ମ୍ୟର ବ୍ୟାଖ୍ୟା ଦେଇଥିଲେ । ସେ କହିଛନ୍ତି ଯେ "ତାଦାତ୍ମ୍ୟର ଧାରଣା ନିମନ୍ତେ ମନନର ଆବଶ୍ୟକତା ରହିଛି, କାରଣ ଏଥି ସହିତ ଅନେକ ପ୍ରଶ୍ନ ଜଡ଼ିତ ଏବଂ ସେଗୁଡ଼ିକର ଉତ୍ତର ଦେବା ଅତି ସହଜ ନୁହେଁ । ଏହା ଏକ ସମ୍ବନ୍ଧ କି ? ଏହା ବସ୍ତୁମାନଙ୍କ (gegenstande) ମଧ୍ୟରେ ସମ୍ବନ୍ଧ କି ବସ୍ତୁମାନଙ୍କ ନାମ ଗୁଡ଼ିକ ବା ସଙ୍କେତ ଗୁଡ଼ିକ ମଧ୍ୟରେ ସମ୍ବନ୍ଧ ?" (ଜିନ୍ ଉଣ୍ଡ ବେଡଏଟୁଙ୍ଗ, ପୃ ୨୫ ) ସେ ଆହୁରି କହିଛନ୍ତି ଯେ ଯେଉଁ ଅର୍ଥରେ ଦତ୍ତ ହେବାର ରୀତି ରହିଛି, ସେହି ଅର୍ଥକୁ ସୂଚନା (Bedeutung) ଆମକୁ ପୃଥକ୍ କରିବାକୁ ପଡ଼ିବ । ଉଦାହରଣ ସ୍ୱରୂପ, 'ସନ୍ଧ୍ୟାତାରା' ଓ 'ପ୍ରଭାତ ତାରା'ର ସୂଚନା ଏକ, କିନ୍ତୁ ସେ ଦୁଇଟିର ଅର୍ଥ ସମାନ ନୁହେଁ । ସାଧାରଣତଃ, ଗୋଟିଏ ଶବ୍ଦ ତାହାର ସୂଚନା ପରିବର୍ତ୍ତେ ବ୍ୟବହୃତ ହୁଏ । ଆମେ ଯଦି ତାହାର ଅର୍ଥ ବିଷୟରେ କହିବାକୁ ଚାହିଁ, ତେବେ ଆମେ ଓଲଟ କମାର ବ୍ୟବହାର କରିବା ଆବଶ୍ୟକ କିମ୍ବା ଏହିପରି ଅନ୍ୟ କୌଣସି ଉପାୟ ଅବଲମ୍ବନ

କରିବା ଦରକାର । ଗୋଟିଏ ସ୍ୱକୀୟ ନାମର ସୂଚନା ହେଉଛି ସେହି ବସ୍ତୁ ଯାହାକୁ ତାହା ସୂଚିତ କରେ । ତାହାର ସହବୃତ୍ତି ଉପସ୍ଥାପନା ସଂପୂର୍ଣ୍ଣରୂପେ ବ୍ୟକ୍ତିନିଷ୍ଠ । ଅର୍ଥ ହେଉଛି ଏ ଦୁଇଟିର ଅନ୍ତର୍ବର୍ତ୍ତୀ, ତାହା ବ୍ୟକ୍ତିନିଷ୍ଠ ନୁହେଁ, କିନ୍ତୁ ତଥାପି ତାହା ବସ୍ତୁ ମଧ୍ୟ ନୁହେଁ । ଏକ ସ୍ୱକୀୟ ନାମ ତାହାର ଅର୍ଥକୁ ବ୍ୟକ୍ତ କରେ ଏବଂ ତାହାର ସୂଚନାକୁ ସୂଚିତ କରେ ।

ଶ୍ରୀ ରସେଲ୍ ତାଙ୍କ ମନ୍ତବ୍ୟରେ ସଂଯୋଗ କରିଛନ୍ତି ଯେ "ମୋର ମତ ଅପେକ୍ଷା ଏହି ସୂଚନା ସିଦ୍ଧାନ୍ତ ଅଧିକ ବ୍ୟାପକ ଓ ସାର୍ବିକ । ପ୍ରତ୍ୟେକ ସ୍ୱକୀୟ ନାମର ଦୁଇଟି ଦିଗ ରହିଛି ବୋଲି ମନେ କରାଯିବା ବିଷୟରୁ ଏହା ଜଣାପଡୁଛି । ମୋର ମନେ ହୁଏ, ସଂପ୍ରତ୍ୟୟରେ ଦି (the) ଯୋଗକରି ଯେଉଁ ସ୍ୱକୀୟ ନାମ ଗଠନ କରାଯାଇଥାଏ, କେବଳ ସେହି ପ୍ରକାର ସ୍ୱକୀୟ ନାମ ଗୁଡ଼ିକର ଅର୍ଥ ଥାଏ । ଜନ ପରି ଶବ୍ଦ ଗୁଡିକ କେବଳ ସୂଚନା ଦିଏ, ଏଗୁଡ଼ିକର ଅର୍ଥ ନ ଥାଏ । ମୁଁ ଯେପରି ଗ୍ରହଣ କରିଛି, ଯଦି ତାହାକୁ ସ୍ୱୀକାର କରାଯାଏ, ଅର୍ଥାତ୍ ସଂପ୍ରତ୍ୟୟ ଗୁଡ଼ିକ ବସ୍ତୁ ହୋଇପାରେ ଏବଂ ସେଗୁଡିକର ସ୍ୱକୀୟ ନାମ ରହିପାରେ, ତେବେ ଏକଥା ପ୍ରାୟ ସୁପ୍ରତ୍ୟକ୍ଷ ଯେ ସେଗୁଡ଼ିକର ସ୍ୱକୀୟନାମ ଖିବେ କୌଣସି ସ୍ୱତନ୍ତ୍ର ଅର୍ଥ ବିନା କେବଳ ସେହି ବସ୍ତୁଗୁଡ଼ିକୁ ସୂଚିତ କରିବ । କିନ୍ତୁ ଏହାର ବିପରୀତ ମତ, ଯଦି ଓ ଏକ ଅନବସ୍ଥା ଦୋଷ ଆଡ଼କୁ ଅଗ୍ରସର କରାଇ ନିଏ, ତଥାପି ତାର୍କିକତା ଦୃଷ୍ଟିରୁ ଅସମ୍ଭବ ପରି ମନେହୁଏ ନାହିଁ ।"

## ୪ ଗୋମ୍ପେର୍ସ

ଏଇଚ-ଗୋମ୍ପେର୍ସଙ୍କ ଗ୍ରନ୍ଥ ଭର୍ଏଲଷ୍ଟାନ ସାଉଁଟ୍ଜେନ୍ଲେହେରେ( ପ୍ରତ୍ୟୟବିଜ୍ଞାନ ନୀତି) (୧୯୦୮)., ୨ୟ ଖଣ୍ଡରେ ତାଙ୍କ ମତର ବିଶଦ ବର୍ଣ୍ଣନା ରହିଛି । ଏହାର ୧ମ ଭାଗ ସଂଜ୍ଞାସଜ୍ଞୀ ମୀମାଂସାର ଆଲୋଚନା ପାଇଁ ବିନିଯୁକ୍ତ ହୋଇଛି । ଅଧ୍ୟାପକ ଡିଟ୍ରିକ ତାଙ୍କ ଗ୍ରନ୍ଥ ପ୍ରୋବ୍ଲେମେ ଡେଆର ଷ୍ଟ୍ରାଖପାଇକୋଲୋଗି (ଭାଷାମନୋବିଜ୍ଞାନ ସମସ୍ୟା) (୧୯୧୩)ରେ ଗୋମ୍ପେର୍ସଙ୍କ ନୀତିର ଉପଯୋଗ କରିଛନ୍ତି । ନିମ୍ନଲିଖିତ ସାରାଂଶଟି ଡିଟ୍ରିକ୍‌ଙ୍କ ବିବରଣୀ ଉପରେ ଆଧାରିତ :—

ପ୍ରତ୍ୟେକ ସଂପୂର୍ଣ୍ଣ ଉକ୍ତି (Aussâge)ରେ ଆମେ ନିମ୍ନୋକ୍ତ ବିଷୟର ପାର୍ଥକ୍ୟ ଲକ୍ଷ୍ୟ କରି ପାରିବା ।

(କ) ଧ୍ୱନିବର୍ଗ (Aussage-laute) ଅର୍ଥାତ୍ ଉକ୍ତିର ବାଚନିକ ଆକାର ବା ଆକୃତିର ଉଦ୍ଭବବିବେ କହିଲେ ଧ୍ୱନିବିନ୍ୟାସ (Lautung) ।

(ଖ) ଭାବ (Aussage-inhat), ଅର୍ଥାତ୍ ଉକ୍ତିର ତାତ୍ପର୍ଯ୍ୟ (Sinn) ।

(ଗ) ଭିତ୍ତି .Aussage-gru idlage), ଅର୍ଥାତ୍ (ବାସ୍ତବ ଘଟଣା (Tatsaehe), ଯାହା ସହିତ ଉକ୍ତି ସଂପୃକ୍ତ ।

ଏହି ତନୋଟି ଉପାଦାନର ସମ୍ବନ୍ଧକୁ ନିମ୍ନପ୍ରକାରେ ବର୍ଣ୍ଣନା କରାଯାଇ ପାରେ : ଧ୍ୱନିବର୍ଗ (ଧ୍ୱନିବନ୍ୟାସ) ହେଉଛି ଭାବର ଅଭିବ୍ୟକ୍ତି (Ausdruck) ଓ ଭିତ୍ତିର ସୂଚକ (Bezei-Chnung); ପକ୍ଷାନ୍ତରେ, ଭାବ ହେଉଛି ଭିତ୍ତିର ବ୍ୟାଖ୍ୟା (Auffa-ssung) । ଧ୍ୱନିଗୁଡ଼ିକରୁ ଭାବର ଅଭିବ୍ୟକ୍ତି ବୋଲି ବିଚାର କରାଯାଉଥିବା ଦୃଷ୍ଟିରୁ ସେଗୁଡ଼ିକୁ ଉକ୍ତି (Aussage) ସହିତ ଏକ ଶ୍ରେଣୀଭୁକ୍ତ କରାଯାଏ । ଭିତ୍ତିକୁ ଭାବଦ୍ୱାରା ବୁଝା ପଡୁଥିବା ଘଟଣା ରୂପେ ବିଚାର କରାଯାଉ ଥିବା ଦୃଷ୍ଟିରୁ, ଏହାକୁ ବ୍ୟକ୍ତ ଘଟଣା (ausgesagte Sachverhalt) ବୋଲି, ଅଥବା ସରଳଭାବେ ଘଟଣା ବୋଲି କୁହାଯାଇ ପାରେ । ଅଭିବ୍ୟକ୍ତ ଘଟଣା ଓ ଉକ୍ତି ମଧ୍ୟରେ ବର୍ତ୍ତମାନ ସମ୍ବନ୍ଧକୁ ଅର୍ଥ (Bėdeutung) କୁହାଯାଏ । (୧)

ଗୋମ୍ପର୍ଜ୍‌ଙ୍କ ମତାନୁସାରେ ଯେଉଁ ଧ୍ୱନିବର୍ଗ ଏକ ସଂପୂର୍ଣ୍ଣ ଉକ୍ତିର ସଂବାଦୀ, ଯଥା—"ଏହି ପକ୍ଷୀଟି ଉଡୁଛି", ତାହାର ଏକ ପଞ୍ଚବିଧ ଉପସ୍ଥାପନ ମୂଳକ କାର୍ଯ୍ୟ ରହିଛି । ସୁତରାଂ ଧ୍ୱନିରୂପେ ଉକ୍ତିକୁ ପାଞ୍ଚୋଟି ଶିରୋନାମର ଅନ୍ତର୍ଭୁକ୍ତ କରି ବିଚାର କରାଯାଇ ପାରେ ।

(୧) ଏହା ନିଜକୁ ଉପସ୍ଥାପିତ କରେ । ଏଠାରେ, ଏହା କେବଳ ଧ୍ୱନିରୂପେ ବିବେଚିତ, ଅର୍ଥାତ୍ ସଂପୃକ୍ତ ଭାଷା ସହିତ ଅପରିଚିତ ଜଣେ ବ୍ୟକ୍ତି ଯେପରି ଭାବେ ଏହାକୁ ପ୍ରତ୍ୟକ୍ଷୀଭୂତ କରେ, ଏହା ତଦ୍ରୂପଭାବେ ଏଠାରେ ଗୃହୀତ ।

(୨) 'ଏହି ପକ୍ଷୀଟି ଉଡୁଛି'—ଏହି ଘଟୁଥିବା ଘଟଣାମୂଳକ ଅବସ୍ଥା (Tatbestand) କୁ ଏହା ଉପସ୍ଥାପିତ କରେ । ଯେଉଁ ଭାବର ଅଭିବ୍ୟକ୍ତି ନିମନ୍ତେ ଏହା ସାଧାରଣତଃ ବ୍ୟବହୃତ ହୁଏ, ଏଠାରେ ତାହାହିଁ ବିବେଚିତ । ଏହାକୁ ବ୍ୟକ୍ତ କରୁଥିବା ବା ଶୁଣୁଥିବା ପ୍ରତ୍ୟେକ ବ୍ୟକ୍ତି ଯେପରି ଚିନ୍ତାକରେ, ସେହି ଚିନ୍ତାର ତାତ୍ପର୍ଯ୍ୟ ଏଠାରେ ବିଚାର୍ଯ୍ୟ ।

---

(୧) Gomperz, କଥିତ ଅନୁଚ୍ଛେଦ, ପୃ ୬୧ ।

(୩) ପୁଣି, 'ଏହି ପକ୍ଷୀଟି ଉଡ଼ୁଛି'—ଏହି ଘଟଣାକୁ ମଧ୍ୟ ଏହା ଉପସ୍ଥାପିତ କରେ; ଅର୍ଥାତ୍, 'ଏହି ପକ୍ଷୀଟି ଉଡ଼ୁଛି'—ଏହି ଚିନ୍ତା ଦ୍ୱାରା ବୁଝା ପଡ଼ୁଥିବା ଏବଂ ଏହି ଧ୍ୱନିବର୍ଗ ଦ୍ୱାରା ସୂଚିତ ହେଉଥିବା ସତ୍ତ୍ୱର ପ୍ରତ୍ୟେକ ଅଂଶକୁ ଏହା ଉପସ୍ଥାପିତ କରେ। (ଏହା ବହୁ ବିଭିନ୍ନ ପ୍ରକାର ହୋଇପାରେ—ଏକ କ୍ଷୁଦ୍ର ଶୁକଜାତୀୟ ପକ୍ଷୀ ଅଥବା ଏକ ଇଗଲ୍ ପକ୍ଷୀ ଅଥବା କେବଳ 'ଗୋଟାଏ କିଛି ଗତିଶୀଳ ହେଉଛି')।

(୪) 'ଏହି ପକ୍ଷୀଟି ଉଡ଼ୁଛି'—ଏହି ପ୍ରତିଜ୍ଞପ୍ତିକୁ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ବଚନ ରୂପେ ଏହା ଉପସ୍ଥାପିତ କରେ। ଏଠାରେ ଧ୍ୱନି ଏକ ଭାଷାଗତ ଧ୍ୱନିଭାବେ ରୂପାନ୍ତରିତ। 'ଏହି ପକ୍ଷୀଟି ଉଡ଼ୁଛି'—ଏହି ଘଟୁଥିବା ଘଟଣାମୂଳକ ଅବସ୍ଥାର ତାତ୍ପର୍ଯ୍ୟ ଏହି ଭାଷାଗତ ଧ୍ୱନି ବ୍ୟକ୍ତ କରେ; ଏବଂ ଏହି ଧ୍ୱନି ତାତ୍ପର୍ଯ୍ୟ ସଂବଳିତ ହୋଇ ଉକ୍ତିଟିକୁ ଗଠନ କରେ।

(୫) ଏହା ପୁଣି ପ୍ରତିଜ୍ଞପ୍ତିରେ ବ୍ୟକ୍ତ ଘଟଣା ମଧ୍ୟ ଉପସ୍ଥାପିତ କରେ। ଉଭୟ ଭିତ୍ତି ଓ ଭାବ ଠାରୁ ଏହି ଘଟଣା ସ୍ୱକୀୟ ସ୍ୱାଭାବିକ ଗୁଣ ଦୃଷ୍ଟିରୁ ପୃଥକ୍ ବୋଲି ବିବେଚିତ ହୁଏ। "ଭୌତିକ ସତ୍ତ୍ୱର ଏପରି କିଛିଅଂଶ ଉପସ୍ଥିତ ରହିଛି, ଯାହା ଏକ ଗୁଣ ବା ଏକ ପ୍ରଣାଳୀର ଅଧିକାରୀ ବୋଲି, ଯାହା ସକ୍ରିୟ ବା ନିଷ୍କ୍ରିୟ ଇତ୍ୟାଦି ବୋଲି ଚିନ୍ତା କରାଯାଇ ପାରେ—ଏତିକି ମାତ୍ର ଏହି ପ୍ରତିଜ୍ଞପ୍ତି ବ୍ୟକ୍ତ କରେ କହିଲେ ଠିକ୍ ହେବନାହିଁ। ଏହା ବରଂ ବ୍ୟକ୍ତ କରେ ଯେ ଏକ ଭୌତିକ ପ୍ରଣାଳୀ ସଂଘଟିତ ହେଉଛି; ତହିଁରେ ଏକ ସକ୍ରିୟ ବସ୍ତୁ ଅର୍ଥାତ୍ ଗୋଟିଏ ପକ୍ଷୀ, ଏକ କ୍ରିୟା (ଉଡ଼ିବା) ଏବଂ ସେହି ବସ୍ତୁର ଅବ୍ୟବହିତ ଉପସ୍ଥିତି, ଯାହା 'ଏହି' ଦ୍ୱାରା ସୂଚିତ ଏହି ତିନିଗୋଟିକୁ ପୃଥକ୍ କରିବାକୁ ହେବ। ଭିନ୍ନ ଭାବରେ କହିଲେ, ପ୍ରତିଜ୍ଞପ୍ତିଟି ଯାହା ବ୍ୟକ୍ତ କରୁଛି, ତାହା ହେଉଛି 'ଏହି ପକ୍ଷୀର ଉଡ଼ିବା'। ଏହା ମଧ୍ୟ ସମଭାବରେ ଏକ ଭୌତିକ ସତ୍ତ୍ୱର ଅଂଶ, କିନ୍ତୁ ଏହା ପ୍ରକାଶ-ଭଙ୍ଗୀରେ ଦ୍ୱ୍ୟର୍ଥକତା ନାହିଁ। ଏହା ଭୌତିକ ସତ୍ତ୍ୱର କେବଳ ସାଧାରଣଭାବେ ଏକ ଅଂଶ ନୁହେଁ; ଅଧିକ ସଠିକ୍‌ଭାବେ, ଏହା ଏକ ଭୌତିକ ପ୍ରଣାଳୀ ଏବଂ ସମ୍ପୂର୍ଣ୍ଣ ନିର୍ଦ୍ଦିଷ୍ଟଭାବେ ଏହା ଏକ ଭୌତିକ କ୍ରିୟା। କିନ୍ତୁ ଏ ଗୁଡ଼ିକ ହେଉଛି କେବଳ ବିଧେୟ ଏବଂ ଧ୍ୱନିବର୍ଗକୁ ଧ୍ୱନିବର୍ଗ ରୂପେ ହିଁ ଗ୍ରହଣ କରି, ଏଗୁଡ଼ିକୁ ତାହାର ବିଧେୟରୂପେ ବ୍ୟକ୍ତ କରାଯାଇ ପାରି ନଥାନ୍ତା।......ଭିନ୍ନ ଭାବରେ କହିଲେ, 'ଏହି ପକ୍ଷୀଟି ଉଡ଼ୁଛି'; 'ଏହା ଏକ ପକ୍ଷୀ' ଏବଂ 'ମୁଁ ଏକ ଜୀବନ୍ତ ବସ୍ତୁ ଦେଖୁଛି'—ଏହି ତିନୋଟିଯାକ ପ୍ରତିଜ୍ଞପ୍ତିର ଭିତ୍ତି ଏକ ହୋଇପାରେ, କିନ୍ତୁ ଏହି ପ୍ରତିଜ୍ଞପ୍ତିମାନଙ୍କ ଦ୍ୱାରା ପ୍ରକାଶିତ ଘଟଣା ପ୍ରତ୍ୟେକ କ୍ଷେତ୍ରରେ ଅନ୍ୟ କ୍ଷେତ୍ରମାନଙ୍କଠାରୁ ଭିନ୍ନ; କାରଣ ପ୍ରଥମ କ୍ଷେତ୍ରରେ ଯାହା କୁହାଯାଇଛି, ତାହା ହେଉଛି 'ଏହି ପକ୍ଷୀର

ଉଡ଼ିବା', ଦ୍ୱିତୀୟ କ୍ଷେତ୍ରରେ, 'ଏହି ର ପକ୍ଷୀ ହେବା' ବିଷୟ ବୁଝାଯାଇଛି ଏବଂ ତୃତୀୟ କ୍ଷେତ୍ରରେ; 'ମୋ ଦ୍ୱାରା ଏକ ଜନ୍ତୁ ବସ୍ତୁ ଦେଖାଯିବା' ବିଷୟ ବୁଝାଯାଉଛି । ଯଦି ଏହି ପ୍ରତଜ୍ଞପ୍ତି ମାନଙ୍କ ଭିତ୍ତି ଏକ ଓ ଅଭିନ୍ନ, କିନ୍ତୁ ବ୍ୟକ୍ତ ଘଟଣା ଏକ ଓ ଅଭିନ୍ନ ନୁହେଁ, ତେବେ ଏଥିରୁ ଜଣାପଡୁଛି ଯେ ଭିତ୍ତି ସହିତ ଘଟଣା ସମାନ ହେବା ସମ୍ଭବପର ନୁହେଁ ।" ଘଟଣାକୁ ଭବ ବା ତାତ୍ପର୍ଯ୍ୟ ( Inhalt oder Sinn ) ସହିତ ଅଭିନ୍ନ ବୋଲି ବିଚାରିବା ମଧ୍ୟ ଠିକ୍ ନୁହେଁ, କାରଣ ଭବ ବା ତାତ୍ପର୍ଯ୍ୟ "କୌଣସି ଭୌତିକ ବସ୍ତୁ ନୁହେଁ, ତାହା ହେଉଛି କେତେକ ତାର୍କିକ ନିର୍ଦ୍ଧାରଣ ( Bestim mungen )ର ସମଷ୍ଟି ।

ଓଟ୍ରିକ୍ କହୁଛନ୍ତି ଯେ ଏହିସମସ୍ତ ବିଷୟରୁ ଅର୍ଥ ନାମଧେୟ ଉକ୍ତଗତ ଉପାଦାନର ଅନବଦ୍ୟ ସମ୍ବନ୍ଧାତ୍ମକ ଗୁଣ ନ୍ୟସ୍ତ । ଅର୍ଥକୁ କେବଳ ସୂଚନା ( Bezeichnung ) ସହିତ ସମାନ କରି ଦିଆଯାଇ ନପାରେ । ସେ କହୁଛନ୍ତି ଯେ ଏକ ଏବଂ ସେହି ଏକ ଧ୍ୱନି ଯଥା—[ ଇଂରାଜୀ ଭାଷାରେ ] ଟପ୍ ( top ) ଅତ୍ୟନ୍ତ ଭିନ୍ନ ଭିନ୍ନ ଭିତ୍ତିର ସୂଚନା ଦେଇପାରେ; ଏବଂ ମାର୍ଟିନାକ୍ଙ୍କ ସହିତ ଏକମତ ହୋଇ ଆମେ ଯଦି ସଙ୍କେତ ଓ ଯାହା ସୂଚିତ-ଏ ଦୁଇଟିର ସମ୍ବନ୍ଧରେ ଅର୍ଥକୁ ସୀମିତ ରଖୁ; ତେବେ ଆମେ କୌଣସି ସନ୍ତୋଷଜନକ ସିଦ୍ଧାନ୍ତରେ ଉପନୀତ ହୋଇପାରିବା ନାହିଁ । ଅନୁରୂପଭାବେ ଅର୍ଥକରଣ ( Auffassung ) ଗୋଟିଏ ବହୁ-ଏକ ସମ୍ବନ୍ଧ ହୋଇପାରେ । ଆହୁରି ମଧ୍ୟ ଉପର୍ଯ୍ୟୁକ୍ତ ସମ୍ବନ୍ଧ କ୍ରମରେ ଅର୍ଥ ପଦକୁ ବ୍ୟବହାର କରିବା ଦ୍ୱାରା ଭାଷାତ୍ମକ ଉପାଦାନ ବାଦ୍ ପଡ଼ିଯିବ । ଅଭିବ୍ୟକ୍ତି ( Ausdruck )ର ସମ୍ବନ୍ଧ ସହିତ ମଧ୍ୟ ଅର୍ଥକୁ ସମାନ କରି ଦିଆଯାଇ ନପାରେ । ପରିଶେଷରେ, ମନେହୁଏ ଯେ ଅର୍ଥ ହେଉଛି

(୧) Dr. E. H. F. Beckଙ୍କ Die Impersonalien ( ୧୯୨୨ ) ସମ୍ବନ୍ଧୀୟ ପ୍ରବନ୍ଧ ହେଉଛି Gomperz-Dittrichଙ୍କ ବିଶ୍ଳେଷଣର ଏକ ପ୍ରୟୋଗ । ଆମର ( ଇଂରାଜୀ ଭାଷାର ) ଉପର୍ଯ୍ୟୁକ୍ତ ଆଲୋଚନାରେ ବ୍ୟବହୃତ କେତେକ ଇଂରାଜୀ ସମାର୍ଥକ ଶବ୍ଦ କ୍ରମରେ ଆମେ ତାଙ୍କଠାରେ ଋଣୀ । ଏହି ମତ ସମ୍ବନ୍ଧରେ ସେ ଆମକୁ ଲେଖିଛନ୍ତି ଯେ, "ସାମଗ୍ରିକ ସମ୍ମୋହାତ୍ମକ ଅନୁଭୂତି ( Gesamteindrucksgefuhl ) ଉପରେ ପ୍ରାଧାନ୍ୟ ଅର୍ପଣର ଆବଶ୍ୟକତା ରହିଛି । ବକ୍ତା ଓ ଶ୍ରୋତାର କେତେକ ସମ୍ମୋହାତ୍ମକ ଅନୁଭୂତି ସାଧାରଣ ହୋଇଥାଏ । ଏହି ଅନୁଭୂତିମାନଙ୍କ ଏକ ସାଧାରଣ ବିଷୟବସ୍ତୁ

ଏକ ନିର୍ଦ୍ଦିଷ୍ଟ କିନ୍ତୁ ଜଟିଳ ସମ୍ବନ୍ଧ । ଏହି ସମ୍ବନ୍ଧ 'ସାମଗ୍ରିକ ରୂପ' ( Total-impression ) ଓ ସାଧାରଣ ସମ୍ବେଗାତ୍ମକ ଅନୁଭୂତି ମତବାଦ ଉପରେ ଆଧାରିତ । ଗୋଟିଏ ଗୋଷ୍ଠୀର ଉଦ୍‌ବୋଧାନୁଭବବାଦୀ ( Pathempiricists ) ଏହି ମତ ଉପରେ ପ୍ରାଧାନ୍ୟ ଅର୍ପଣ କରନ୍ତି । "ଯେ କୌଣସି ଧ୍ୱନି ଯେ କୌଣସି ଭିତ୍ତିର ସୂଚନା ଦେଇପାରେ; କିନ୍ତୁ ଯେତେବେଳେ ଧ୍ୱନିଟି ଏକ ସାର୍ବିକ-ବିଲକ୍ଷଣ ଭାବରେ ଗଠନ ମାଧ୍ୟମରେ ଏକ ଉକ୍ତି ହୁଏ ଏବଂ ଏହି ଭାବ ଗୋଟିଏ ଘଟଣା ( Sachverhalt ) ଭିତ୍ତି ( Grundlage ) ହୁଏ, କେବଳ ସେତିକିବେଳେ ହିଁ ଧ୍ୱନିଟି ଅର୍ଥ ଜ୍ଞାପନ କରେ ।" (୧)

## ୫—ବାଲ୍‌ଡୁଇନ୍

ଅର୍ଥ ସମସ୍ୟାର ଆଲୋଚନା ଅଧ୍ୟାପକ ବାଲ୍‌ଡୁଇନ୍ ଯେଉଁ ଭାବରେ କରିଛନ୍ତି, ତାହାର ସର୍ବୋତ୍ତମ ଅଧ୍ୟୟନ ତାଙ୍କର ଥଟ୍ ଏଣ୍ଡ ଥିଙ୍ଗ୍‌ସ ( ଚିନ୍ତା ଓ ବସ୍ତୁ ) ଗ୍ରନ୍ଥରେ ରହିଛି । ତାଙ୍କ ଗ୍ରନ୍ଥର ୨ୟ ଖଣ୍ଡରେ ଯେଉଁ ବିଷୟର ଆଲୋଚନା ରହିଛି ତାହାକୁ ସେ 'ପରୀକ୍ଷଣମୂଳକ ତର୍କ' ଆଖ୍ୟା ଦେଇଛନ୍ତି । ଏଥିର ୭ମ ପରିଚ୍ଛେଦଟି ତାର୍କିକ ଅର୍ଥର ଅଭିବୃଦ୍ଧି ବିଷୟକ ଆଲୋଚନା ନିମନ୍ତେ ବିନିଯୁକ୍ତ ହୋଇଛି । "ମନେହୁଏ, ଆମର ଯେଉଁ ପ୍ରଣାଳୀ ସମ୍ବନ୍ଧୀୟ ପଦ୍ଧତି ଦ୍ୱାରା ସର୍ବାଧିକ ସୁବିଧା ମିଳିବାର ଆଶା ରହିଛି, ତାହା ବିଧେୟାନ୍ୱିତକରଣର ଅଗ୍ରଗତିର ବିଭିନ୍ନ ଆକାରଗୁଡ଼ିକୁ ବା ସ୍ତରଗୁଡ଼ିକୁ ନେଇ ଏକାଦିକ୍ରମେ ପ୍ରତ୍ୟେକ କ୍ଷେତ୍ରରେ ତାହାର ଗଠନଗତ ଓ ଅଭିଜ୍ଞାମୂଳକ ଅର୍ଥ କଣ

---

ଓ କେତେକ ସାଧାରଣ ପ୍ରତିବର୍ତ୍ତି ଥାଏ । ପ୍ରତ୍ୟେକ ସଫଳଭାବ ବିନିମୟ କ୍ଷେତ୍ରରେ, ସମ୍ପୃକ୍ତ ପ୍ରତିବର୍ତ୍ତି, ତାହା ଧ୍ୱନିବିନ୍ୟାସ, ଅଙ୍ଗଭଙ୍ଗୀ ବା ଲିପିବଦ୍ଧ ପ୍ରତୀକ ଯାହା ହୋଇଥାଉ ନା କାହିଁକି; ସାଧାରଣ ( ବିଲକ୍ଷଣସାର୍ବିକ ) ସମ୍ବେଗାତ୍ମକ ଅନୁଭୂତିକୁ ପୁନଃସଂସ୍ଥାପନ କରେ ଏବଂ ଏହି ଅନୁଭୂତି ତାହାର ଭିତ୍ତି ଆଡ଼କୁ ପ୍ରତ୍ୟାବର୍ତ୍ତିତ ହୁଏ । ସଙ୍କେତ ପଦର ଏକ ବ୍ୟାପକ ପ୍ରୟୋଗ ପରିସର ରହିଥିବାରୁ ଏହାକୁ ଧ୍ୱନିବିନ୍ୟାସ ପାଇଁ ବ୍ୟବହାର କରାଯାଇପାରେ । ସୁତରାଂ ସଙ୍କେତ ହେଉଛି ଏକ ସମ୍ବେଗାତ୍ମକ ଅବସ୍ଥାର ନିକଟବର୍ତ୍ତୀ ଜ୍ଞାନାତ୍ମକ କାରଣ ଏବଂ ପରିଶେଷରେ ହେଉଛି ଏହି ସମ୍ବେଗାତ୍ମକ ଅବସ୍ଥାର ଭିତ୍ତିର ମଧ୍ୟ ଜ୍ଞାନାତ୍ମକ କାରଣ । (୧) Dittrich, କଥିତ ଗ୍ରନ୍ଥ, ପୃ ୫୨ ।

ତାହା ବିଚାର କରେ । ଏଠାରେ ଏହି ଅର୍ଥର 'କଣ' ସମ୍ବନ୍ଧରେ ପ୍ରଶ୍ନୋତ୍ଥାପନ କରାଯାଏ, ଅର୍ଥାତ୍ ପ୍ରସଙ୍ଗୀଭୂତ ଓ ସାମାଜିକ ଅବସ୍ଥାରୁ ଲବ୍ଧ ଜ୍ଞାନର ଏକ ଅଂଶରୂପେ ତାହାର ବର୍ତ୍ତମାନ ଅବସ୍ଥାରେ ଅର୍ଥ କଣ, ଏହା ହିଁ ଏଠାରେ ବିବେଚ୍ୟ । ଏହି 'କଣ'ଟି ହିଁ ହେଉଛି ଅବଧାରଣର ବିଷୟବସ୍ତୁ । ଏହା ସ୍ଥିରୀକୃତ ହେବାପରେ ଏ ପ୍ରକାର ଅର୍ଥର ଉପକରଣାତ୍ମକ ବ୍ୟବହାର ସବନ୍ଧରେ ପ୍ରଶ୍ନୋତ୍ଥାପନ କରାଯାଇପାରେ । ଏହି ଅର୍ଥକୁ ଉପକରଣାତ୍ମକଭାବେ ବିଚାର କଲେ, ତଦ୍ଦ୍ୱାରା ଯେଉଁ 'ପ୍ରସ୍ତାବ' ସୂଚିତ ବା ଅଭିପ୍ରେତ, ତାହା ହେଉଛି ଅର୍ଥର ଉପକରଣାତ୍ମକ ବ୍ୟବହାର । ଏହି ପରବର୍ତ୍ତୀ ପ୍ରଶ୍ନକୁ ଆମେ ଅର୍ଥର 'କାହିଁକି' ସବନ୍ଧୀୟ ପ୍ରଶ୍ନ ବୋଲି ଅଭିହିତ କରିପାରୁଁ । ଏଠାରେ ବିଚାର୍ଯ୍ୟ ବିଷୟ ହେଉଛି କେଉଁ-ଉଦ୍ଦେଶ୍ୟ-ନିମନ୍ତେ ବା ପରିଣତି । ଏହି ପରିଣତି ବ୍ୟକ୍ତିଗତ ହୋଇପାରେ ବା ସାମାଜିକ ହୋଇପାରେ । ଏଠାରେ ଅର୍ଥ ହେଉଛି ଏକ ପରୀକ୍ଷଣ—ପଦ୍ଧତି ପ୍ରୟୋଗଯୋଗ୍ୟ ଅର୍ଥ । ପୂର୍ବବର୍ତ୍ତୀ ପରିଚ୍ଛେଦରେ 'ପଦ୍ଧତିବଦ୍ଧ ନିର୍ଦ୍ଧାରଣ' ପ୍ରଣାଳୀ ସବନ୍ଧରେ ଏକ ସ୍ଥୂଳ ବିବରଣୀ ଦିଆଯାଇଛି । ଏହି ପ୍ରଣାଳୀ ଦ୍ୱାରା ଅର୍ଥଗୁଡ଼ିକ ତାର୍କିକ ସ୍ତରରେ ବୃଦ୍ଧିପ୍ରାପ୍ତ ହୁଏ; ସମଗ୍ର ପ୍ରଣାଳୀଟିକୁ ଆଗରୁ 'ନିର୍ବାଚନ-ମୂଳକ ଚିନ୍ତନ' ଆଖ୍ୟା ଦିଆଯାଇଛି । ଏହି ଅଭିବ୍ୟକ୍ତିର ବ୍ୟବହାର ଆମେ ଯଦି ଅବ୍ୟାହତ ରଖୁଁ, ତେବେ କୁହାଯାଇପାରେ ଯେ ପ୍ରତ୍ୟେକ ଦତ୍ତ ଅର୍ଥ ହେଉଛି ଉଭୟ ଏକ ପ୍ରସ୍ତାବର ବ୍ୟାଖ୍ୟାରୂପେ ବିଧେୟାନ୍ୱିତକରଣ ଏବଂ ବ୍ୟାଖ୍ୟା ନିମନ୍ତେ ଏକ ପ୍ରସ୍ତାବ ରୂପେ ବିଧେୟାନ୍ୱିତକରଣ । ସେହି ଅର୍ଥରେ ବିଶ୍ୱାସ କରୁଥିବା ବ୍ୟକ୍ତି ନିଜର ବ୍ୟାଖ୍ୟା-ସ୍ୱରୂପ ହିଁ ତାହାକୁ ଅନ୍ୟ ଜଣଙ୍କ ସମକ୍ଷରେ ପ୍ରସ୍ତାବରୂପେ ଉପସ୍ଥାପିତ କରେ । ଜଣେ ପ୍ରଶ୍ନକର୍ତ୍ତା ତାହାକୁ ଏକ ପ୍ରସ୍ତାବ ସ୍ୱରୂପ ହିଁ ଶ୍ରୋତା ସମକ୍ଷକୁ ଶ୍ରୋତାର ବ୍ୟାଖ୍ୟା ନିମନ୍ତେ ଆଣେ । ତେଣୁ ଏହି ପଦ୍ଧତି ଦ୍ୱାରା ଆମେ ଅଗ୍ରଗତି କରିପାରୁଁ ...... ।"

ଅ. ୧୦ରେ, ଗୃକଣ ପୃଷ୍ଠା ପରେ, ଆମେ "କେତେକ ସିଦ୍ଧାନ୍ତ ସଂଗ୍ରହଣ କରୁଁ । ଯେଉଁ ଉକ୍ତିଗୁଡ଼ିକ ଆମକୁ ନିହିତାର୍ଥ ଓ ସ୍ୱୀକାର୍ଯ୍ୟ ମଧ୍ୟରେ ଥିବା ମୌଳିକ ପାର୍ଥକ୍ୟ ଆଡ଼କୁ ଦୃଷ୍ଟି ଆକର୍ଷଣ କରାଏ, ସେଗୁଡ଼ିକରୁ ଏହି ସିଦ୍ଧାନ୍ତମାନ ଲବ୍ଧ ।" ଏ ବିଷୟର ଉପସ୍ଥାପନ ନିମ୍ନୋକ୍ତ ଭାବେ କରାଯାଇଛି—

"କୌଣସି ପ୍ରାକଳ୍ପିକ ବା ସମ୍ଭାବନାମୂଳକ ତାତ୍ପର୍ଯ୍ୟ ଅବଶେଷ ନ ରହିବା ପର୍ଯ୍ୟନ୍ତ ଅବଧାରଣ ପ୍ରକ୍ରିୟା ଦ୍ୱାରା ବିଶ୍ଳେଷିତ ଏବଂ ଅଦ୍ୟାବଧି ସ୍ଥିରୀକୃତ ଅର୍ଥରୂପେ ନିହିତାର୍ଥର ସଂଜ୍ଞା ଦିଆଯାଇ ଥିଲା । ଭିନ୍ନ ଭାବରେ କହିଲେ, ନିହିତାର୍ଥ ହେଉଛି କେବଳ ସେହି ଅର୍ଥ ଯଦ୍ଦ୍ୱାରା ବିଶ୍ୱାସ, ଅର୍ଥାତ୍ ଅବଧାରଣରେ ସ୍ୱୀକାର ଅଭିବୃତ୍ତି ଗଠିତ ହୁଏ । ଏହି ଶିରୋନାମରେ ଆମେ ଦୁଇଟି ପ୍ରକାର ଅର୍ଥ ପାଉଁ । ପ୍ରଥମଟି ହେଉଛି ବିଧେୟାନ୍ୱିତ-

କରଣର ବିଷୟବସ୍ତୁ, ଅର୍ଥାତ୍ ଚେତନାର ଅନ୍ତର୍ବସ୍ତୁ । ଦ୍ୱିତୀୟଟି ହେଉଛି ଅବଧାରଣରେ ପ୍ରାକ୍ ସ୍ୱୀକାର, ଅର୍ଥାତ୍ ଯେଉଁ ନିରୂପଣ ପରସ୍ପରରେ ବିଧେୟାନ୍ୱିତକରଣ ସମୀଚୀନ ହୁଏ ବା ଯୁକ୍ତିଯୁକ୍ତ ହୁଏ...... ।"

ଏତଦ୍ ଅନନ୍ତର ( ପୃ ୨୧୯ ) ପ୍ରଶ୍ନ ଉଠେ, "ଯେଉଁ ଅର୍ଥ ସାର୍ବଜନୀନ ହେବା ହେତୁ ସାମାନ୍ୟ, ତଥାପି କେଉଁ ଦୃଷ୍ଟିକୋଣରୁ ତାହା ପୁଣି ଐକିକ ହୋଇପାରେ ?" ଏହାର ଉତ୍ତର ନିମ୍ନରୂପ, "ଯଦି ଐକିକ ଅର୍ଥ ଦ୍ୱାରା ଆମେ କେବଳ ସେହି ପ୍ରକାର ଅର୍ଥକୁ ହିଁ ବୁଝୁ, ଯହିଁରେ ସାର୍ବଜନୀନତାର ଅଭାବ ଥାଏ; ତେବେ ତାର୍କିକ ଅର୍ଥରେ ନିଶ୍ଚିତଭାବେ ଐକିକ ଅର୍ଥର ସ୍ଥାନ ନାହିଁ, କାରଣ ଏକ ଅବଧାରଣରେ ଯେତେବେଳେ ଐକିକତାମୂଳକ ଏକ ଅର୍ଥ କରାଯାଏ, ସେତେବେଳେ ଯେଉଁ ଚିହ୍ନଗୁଡ଼ିକ ତାହାକୁ ଐକିକ କରିବାରେ ସହାୟକ ହୁଏ, ଠିକ ସେହି ଚିହ୍ନଗୁଡ଼ିକ ହିଁ ସାର୍ବଜନୀନତାର ଆକାର-ମାନଙ୍କ ମଧ୍ୟରୁ ଗୋଟିକ ଦ୍ୱାରା ସାମାନ୍ୟୀକୃତ ହୁଏ । ଅର୍ଥାତ୍ ଏଠାରେ ଦର୍ଶାଇ-ଦିଆଯାଏ ଯେ ସେହି ଏକ ବ୍ୟକ୍ତିର ଅଥବା ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ଭିନ୍ନ ଭିନ୍ନ ଅନୁଭୂତିରେ ଗୋଟିଏ ବିଷୟ ବାରମ୍ବାର ଘଟେ । ତେଣୁ ଯେଉଁ ଐକିକତାର ତାତ୍ପର୍ଯ୍ୟର ସାମାନ୍ୟୀ-କରଣ ସମ୍ଭବପର ନୁହେଁ, ତାହା ସାକ୍ଷାତ ମୂଲ୍ୟବୋଧର ବା ଅବ୍ୟବହିତ ଅନୁଭୂତିର ପରିସର ଅନ୍ତର୍ଭୁକ୍ତ ହୋଇଯାଏ ।" ବାଲ୍ଡୁଇନ୍ କହିଛନ୍ତି ଯେ ଏହି ବିଷୟର ଉଦାହରଣ ଅନାୟାସରେ ଦିଆଯାଇପାରେ । "ମନେକର, ମୁଁ ଏକ ବକ୍ତବ୍ୟ ଦିଏ ଯେ 'ଏହି ବର୍ଣ୍ଣର ଏହା ଏକମାତ୍ର କମଳା ଲେମ୍ବୁ ।' ଏହିପରି କହିବା ଦ୍ୱାରା, ଏହି କମଳା ଲେମ୍ବୁର ଏକ ସାର୍ବଜନୀନ ଅର୍ଥ ମୁଁ ଦୁଇ ପ୍ରକାରରେ କହିପାରେ । ମୋର ଅର୍ଥ ହେଉଛି, ମୋ ସହିତ ତୁମେ ମଧ୍ୟ ଦେଖିପାରିବ ଯେ ଏହା ଏହି ବର୍ଣ୍ଣର ଏକମାତ୍ର କମଳା ଲେମ୍ବୁ । ପଶ୍ଚାତ୍ତରେ, ମୁଁ ନିଜେ ସେହି ବିଷୟକୁ ମୋର ଅନୁଭୂତିର ବାରମ୍ବାର ସଙ୍ଘଟନ କରାଇ ଦେଖିପାରିବ ଯେ ତାହା ହେଉଛି ସେହି ଗୋଟିଏ ମାତ୍ର କମଳା ଲେମ୍ବୁ ।"

ପରିଶେଷରେ ( ପୃ ୪୨୩ ) ତାଙ୍କର ପାରିଭାଷିକ ଶବ୍ଦାବଳୀ ସଂବନ୍ଧରେ ଏ ଡବ୍ଲ୍ୟୁ ମୁଅର ଯେଉଁ ଅସୁବିଧାର ପ୍ରଶ୍ନ ଉତ୍ଥାପନ କରିଥିଲେ, ତାହାର ଉତ୍ତର ସ୍ୱରୂପ ବାଲ୍ଡୁଇନ୍ ନିମ୍ନୋକ୍ତ ବ୍ୟାଖ୍ୟା ଦେଇଛନ୍ତି—

"ଆମର ଆପେକ୍ଷିକତା ଗୁଡ଼ିକ ହେଉଛି ବିପରୀତ-ଅର୍ଥାବଳୀ, ଦ୍ୱୈତତ୍ତ୍ୱ, ପାରସ୍ପରିକ ଉପକରଣ ରୂପେ କାର୍ଯ୍ୟକାରିତା ଓ ମଧ୍ୟବର୍ତ୍ତିତା । ଏହି ବୈପରୀତ୍ୟ, ଦ୍ୱୈତତ୍ତ୍ୱ ଲକ୍ଷ୍ୟର ସାଧନ ଇତ୍ୟାଦିକୁ ଅପସାରଣ କରିବା ଦ୍ୱାରା ଆପେକ୍ଷିତାଗୁଡ଼ିକ ନିରାକୃତ ହୁଏ

ଏବଂ ଯେଉଁ ଏକମାତ୍ର 'ନିରପେକ୍ଷତା' ଗ୍ରହଣଯୋଗ୍ୟ, ତାହା ମିଳିଥାଏ । କେବଳ ଏହି ନିରପେକ୍ଷତାରେ ହିଁ ପହଞ୍ଚିବାକୁ ଅନୁଭୂତ ସମର୍ଥ । ଡ୍ରମେ଼ାଣ୍ଡ ପଚାରୁ, ଏହା ପୁଣି ନୂତନ ଆପେକ୍ଷିକତା ରୂପେ କାହିଁକି ପରିବର୍ତ୍ତିତ ହୁଏ ନାହିଁ, ତେବେ ମୋର ଉତ୍ତର ହେଉଛି ଯେ ବସ୍ତୁତଃ ଏହା ଏହିପରିଭାବେ ପରିବର୍ତ୍ତିତ ହୁଏ, କିନ୍ତୁ ଅର୍ଥତଃ ଏହା ହୁଏ ନାହିଁ, କାରଣ ଅର୍ଥ ହେଉଛି ଏ ପ୍ରକାର ସମସ୍ତ ମଧ୍ୟବର୍ତ୍ତିତାର ସାମାନ୍ୟ । ସୌନ୍ଦର୍ଯ୍ୟ କ୍ଷେତ୍ରରେ ଉପଜାତ ମଧ୍ୟବର୍ତ୍ତିତା ଯଦି ମାନସିକ 'ସକ୍ରିୟତା'ର ଅଗ୍ରଗମନର ପ୍ରତ୍ୟେକ କ୍ଷେତ୍ରରେ ଏକ ବିଲକ୍ଷଣ ଅର୍ଥ ହୋଇଥାଏ, ତେବେ ଠିକ୍ ଏହା ହିଁ ହେଉଛି ତାହାର ମୂଲ୍ୟ ଯେ ନୂତନ ଦ୍ୱୈତତ୍ୱର ମଧ୍ୟବର୍ତ୍ତିତା ପାଇଁ ଯେ କୌଣସି ନୂତନ ଦାବୀକୁ ଏହା ମୂଳରୁ ଅଗ୍ରାହ୍ୟ କରିଦିଏ । ସୁତରାଂ ସୌନ୍ଦର୍ଯ୍ୟ କେବଳ ଏହି ଅର୍ଥରେ ହିଁ ନିରପେକ୍ଷ ଯେ ଏହି ପଦର ଅର୍ଥ ଯେ କୌଣସି ବିଷୟ ହୋଇପାରେ । ଏହା ଅଗ୍ରଗାମିତା ଦୃଷ୍ଟିରୁ ତଥା ଅନ୍ତର୍ବସ୍ତୁ ବା ସମ୍ବନ୍ଧ ଦୃଷ୍ଟିରୁ ସାମାନ୍ୟ । ଏହା ପ୍ରଜନନାତ୍ମକ ବର୍ଦ୍ଧିତ ସ୍ନାୟବିକ କ୍ରିୟାମାନଙ୍କରେ ତଥା ସ୍ଥିର ଦ୍ୱୈତତ୍ୱମାନଙ୍କରେ ମଧ୍ୟବର୍ତ୍ତିତା କରେ । ଏହାପରେ ବଲ୍‌ଡୁଇନ୍ ଅର୍ଥ ବିଷୟ ପ୍ରତି ଧ୍ୟାନ ଦେଇଛନ୍ତି—

"ଅର୍ଥ ସମ୍ବନ୍ଧରେ ମୋର ମତ ହେଉଛି ଯେ କେବଳ ଉପସ୍ଥିତ ଅନ୍ତର୍ବସ୍ତୁ ବ୍ୟତୀତ ଅର୍ଥ ଜାତ ହେବାପରେ, ଆବଶ୍ୟକରୂପେ ଓ ବୈପରୀତ୍ୟ ଦ୍ୱାରା ଅନ୍ତର୍ବସ୍ତୁ ମଧ୍ୟ ଅର୍ଥ ହୋଇଯାଏ; କାରଣ ତାପରେ ସଚେତନତା ଅନ୍ତର୍ବସ୍ତୁ ଓ ଅର୍ଥର ଉଭୟଙ୍କୁ, କେବଳ ଗୋଟିକୁ ଅଥବା ଉଭୟର ପାର୍ଥକ୍ୟକୁ ଅଭିପ୍ରାୟ ବା ଅର୍ଥ ସ୍ୱରୂପ ଗ୍ରହଣ କରିପାରେ । ୧ମ ଖଣ୍ଡରେ ମୁଁ ଉଲ୍ଲେଖ କରିଛି ଯେ ଅର୍ଥ ଜାତହେବା ସହିତ ଅର୍ଥଗୁଡ଼ିକ (ବହୁବଚନରେ) ମଧ୍ୟ ଜାତ ହୁଏ । ଗୋଟିଏ ଅନ୍ତର୍ବସ୍ତୁର ଠିକ୍ କେବଳ ଉପସ୍ଥିତିକୁ ହିଁ ଧାରଣା କରିବା ହେଉଛି, ତାହାକୁ ଏକ ଅର୍ଥରୂପେ ଗ୍ରହଣ କରିବା । ଅନ୍ତର୍ବସ୍ତୁ ଅର୍ଥ ହୁଏ, ଯେତେବେଳେ ଅନ୍ୟ କୌଣସି ବିଷୟକୁ ମନେ ନକରି କେବଳ ତାହାକୁ ହିଁ ମନେ କରିବାକୁ ସଚେତନତା ସମର୍ଥ ହୁଏ । ସୁତରାଂ, ଯାହା ମନେକରାଯାଇଛି, ସେଥିନିମନ୍ତେ ଅର୍ଥ ଶବ୍ଦର ବ୍ୟବହାର କରାଯାଇପାରେ (ଯଥା—ମୋର 'କହିବାର ଅର୍ଥ ଏଇଆ), ଗୋଟିଏ ଅନ୍ତର୍ବସ୍ତୁ ସହିତ ଯାହା ସଂପୃକ୍ତ, କେବଳ ତାହାରି ପାଇଁ ମଧ୍ୟ ଅର୍ଥ ଶବ୍ଦର ବ୍ୟବହାର କରାଯାଇପାରେ (ଯଥା—ଏହାର ଅନେକ କିଛି ପରବର୍ତ୍ତୀ ବ୍ୟବହାରକୁ ଅନ୍ତର୍ଭୁକ୍ତ କରିପାରେ । ଯେତେବେଳେ ପୂର୍ବବର୍ତ୍ତୀ ଅର୍ଥରେ, ମୁଁ କହେଁ 'ମୋର କହିବାର ଅର୍ଥ କୁକୁଡ଼ା', ସେତେବେଳେ ମାନସିକ ପ୍ରତିମା ବାହାରେ କୁକୁଡ଼ା ଦ୍ୱାରା ଯାହା ସୂଚିତ ତହିଁରେ 'ଅର୍ଥକୁ' ସୀମିତ ରଖିବା ମୋର ଅଭିପ୍ରାୟ ନୁହେଁ । ଏଠାରେ ମୋର ଅଭିପ୍ରାୟ ହେଉଛି ସମଗ୍ର ପକ୍ଷୀ ।

ଉଲ୍ଲେଖ କରାଯାଇପାରେ ଯେ ଅଧ୍ୟାପକ ବଲ୍‌ଡୁଇନ୍‌ଙ୍କ ପରଭାଷାକୁ ସି, ଏସ, ପାୟର୍ସ ଅତି ଉଚ୍ଚ ପ୍ରଶଂସା କରିଛନ୍ତି । ଏବେ ତାଙ୍କ ମତାମତ ପ୍ରତି ଆମେ ଧ୍ୟାନ ଦେବା ।

## ୭—ସି: ଏସ୍: ପାୟର୍ସ:

ସଙ୍କେତଗୁଡ଼ିକର ଅର୍ଥର ଏକ ବିବରଣୀ ଦେବା ନିମନ୍ତେ ସର୍ବାଧିକ ସୁଦୂର-ପ୍ରସାରୀ ଓ ଦୃଢ ପ୍ରତିଜ୍ଞ ପ୍ରୟାସ ଆମେରିକାୀୟ ତର୍କବିଦ୍ ସି. ଏସ୍. ପାୟର୍ସଙ୍କ ଦ୍ୱାରା କରାଯାଇଛି । ପାୟର୍ସଙ୍କ ରଚନାରୁ ହିଁ ଉଇଲିଅମ୍ ଜେମସ୍ ଅର୍ଥ କ୍ରିୟାବାଦର ଧାରଣା ଲାଭ କରିଥିଲେ ଏବଂ ସେହି ପାରିଭାଷିକ ପଦଟିକୁ ଗ୍ରହଣ କରିଥିଲେ । ପାୟର୍ସଙ୍କ ଦ୍ୱିପଦୀ ସମ୍ବନ୍ଧମାନଙ୍କ ବୀଜଗଣିତ ସ୍କ୍ରୋଏଡରଙ୍କ ଦ୍ୱାରା ପରିବର୍ଦ୍ଧିତ ହୋଇଥିଲା । ଦୁର୍ଭାଗ୍ୟକୁ ତାଙ୍କର ପାରିଭାଷିକ ଶବ୍ଦ ସମ୍ଭାର ଏତେ ଦୁର୍ବୋଧ ଯେ ତାହାର ଆୟତ୍ତ କରିବା ପାଇଁ ସମୟ ଦେବାକୁ ଅଧିକାଂଶ ବ୍ୟକ୍ତି ଆଗ୍ରହୀ ହୋଇ ନାହାନ୍ତି ଏବଂ ସେ ଆରବ୍ଧ କରିଥିବା କାର୍ଯ୍ୟ ଅସମ୍ପୂର୍ଣ୍ଣ ରହିଯାଇଛି । ଡିସେମ୍ବର ୧୯୦୮ରେ ସେ ଲେଡ଼ି ଭିଏଲ୍‌ବିଙ୍କୁ ଲେଖିଥିଲେ, "ମୋର ମୃତ୍ୟୁ ପୂର୍ବରୁ ତର୍କଶାସ୍ତ୍ର ସମ୍ବନ୍ଧରେ ଫେଣ୍ଡ୍ରେ ଗ୍ରନ୍ଥକରେ ଲେଖା ସମାପ୍ତ କରିବାକୁ ଏବେ ମୁଁ ପ୍ରାଣାନ୍ତ ହୋଇ କାର୍ଯ୍ୟ କରୁଛି । ଏହି ଗ୍ରନ୍ଥଟି କେତେକ ଚିନ୍ତାଶୀଳ ବ୍ୟକ୍ତିଙ୍କ ଦୃଷ୍ଟି ଆକର୍ଷଣ କରିବ ଏବଂ ସେମାନଙ୍କ ଦ୍ୱାରା କିଛି ପ୍ରକୃତରେ ଉତ୍ତମ ହୋଇଥିବା କାର୍ଯ୍ୟ ମୁଁ କରାଇ ନେବି ।" ପାୟର୍ସଙ୍କ ସଙ୍କେତ ସମ୍ବନ୍ଧୀୟ ପ୍ରକାଶିତ ନିବନ୍ଧଗୁଡ଼ିକ ଉପରେ ତାଙ୍କ ଚିଠି ପତ୍ରର ଯେଉଁ ଅଂଶଗୁଡ଼ିକ ଆଲୋକପାତ କରିବାରେ ସହାୟକ ହେବ, ସେଗୁଡ଼ିକର ଏଠାରେ ପୁନରୁଦ୍ଧାର କରା-ଯାଉଛି । ସାର ଚ୍ଚାର୍ଲସ୍ ଭିଏଲବିଙ୍କ ଅନୁଗ୍ରହରୁ ଏହା ସମ୍ଭବପର ହୋଇପାରିଛି ।

୧୮୬୭ ସାଲ ମେ ମାସ ୧୪ ତାରିଖ ଲେଖାଥିବା ଗୋଟିଏ ପ୍ରବନ୍ଧରେ (ପ୍ରୋସିଡ଼ିଂସ୍ ଅଫ୍ ଆମେରିକାନ୍ ଏକାଡେମୀ ଆର୍ଟସ୍ ଏଣ୍ଡ ସାଇନ୍‌ସ (ବୋଷ୍ଟନ) ୭ମ (୧୮୬୮), ୨୯୫) ପାୟର୍ସ ତର୍କଶାସ୍ତ୍ରର ସଂଜ୍ଞା ଦେଇଛନ୍ତି । ତଦନୁଯାୟୀ, ତର୍କଶାସ୍ତ୍ର ହେଉଛି ସତ୍ୟତାର ପ୍ରତୀକମାନଙ୍କ ଆକାରଗତ ସର୍ତ୍ତାବଳୀର ସୂତ୍ର; ଅର୍ଥାତ୍ ଏହା ହେଉଛି ସମ୍ପୃକ୍ତ ବସ୍ତୁବର୍ଗ ପ୍ରତି ପ୍ରତୀକମାନଙ୍କ ନିର୍ଦ୍ଦେଶର ସୂତ୍ର । ପଛକାଳରେ ସେ ସ୍ୱୀକାର କରିଥିଲେ ଯେ ବିଜ୍ଞାନ ଅନୁସନ୍ଧାନରେ ପରିବର୍ତ୍ତିତ ସୂତ୍ରରେ ପର୍ଯ୍ୟବସିତ ନୁହେଁ; ଶବ୍ଦଗୁଡ଼ିକର ଅର୍ଥ ଜାଣିବାର ଗୁରୁକାଠି ହେଉଛି ସେଗୁଡ଼ିକର ଇତିହାସ, ସେଗୁଡ଼ିକର ବ୍ୟୁତ୍ପତ୍ତି ନୁହେଁ । ବିଜ୍ଞାନ ପରି ଏକ ଶବ୍ଦ କ୍ଷେତ୍ରରେ ଏହା ବିଶେଷଭାବେ ସତ୍ୟ, କାରଣ ପ୍ରଗତିର ଧାରଣା ହିଁ ହେଉଛି ଏହା ଅତି ନିବିଡ଼ଭାବେ

କରନ୍ତି ।” ତାପରେ, ସେ ସ୍ପଷ୍ଟୀକରଣ କଲେ ଯେ “ସମ୍ପୃକ୍ତ ବସ୍ତୁବର୍ଗ ପ୍ରତି ପ୍ରତୀକ-ମାନଙ୍କ ସ୍ୱଭାବ, ଏବଂ କେବଳ ପ୍ରତୀକ ନୁହେଁ, ସମସ୍ତ ପ୍ରକାର ସଙ୍କେତର ସ୍ୱଭାବ ଅନୁସନ୍ଧେୟ ହୋଇଥାଏ । ସୁତରାଂ ଯେଉଁ ବ୍ୟକ୍ତି ଏବେ ପ୍ରତୀକମାନଙ୍କ ବସ୍ତୁବର୍ଗ ପ୍ରତି ଯେଥାର୍ଥିକର ନିର୍ଦ୍ଦେଶ ବିଷୟ ଅନୁସନ୍ଧାନ କରୁଛି ସେ ସାଧାରଣ ସଙ୍କେତ ସିଦ୍ଧାନ୍ତର ସମସ୍ତ ଶାଖାର ମୌଳିକ ଅଧ୍ୟୟନ କରିବାକୁ ବାଧ୍ୟ ହେବ ।” ଏହି କଥା ସେ ୧୯୦୮ରେ ଲେଖିଥିଲେ । ଉପର୍ଯ୍ୟୁକ୍ତ ଅଧ୍ୟୟନକୁ ସେ ସଙ୍କେତ ମୀମାଂସା (Semeiotie) ଆଖ୍ୟା ଦେଇଥିଲେ ଏବଂ ଏହାର ମୌଳିକ ତତ୍ତ୍ୱର ବ୍ୟାଖ୍ୟା ୧୯୦୬ରେ ମନସ୍ତ୍ୱ ପତ୍ରିକାର ଏକ ନିବନ୍ଧରେ “ଅର୍ଥ କ୍ରିୟାତ୍ମକବାଦ (Pragmaticism)ର ଏକ ବ୍ୟାଖ୍ୟାର ଉପକ୍ରମଣିକା” ଶିରୋନାମ ଦେଇ ପ୍ରକାଶ କରିଥିଲେ ।

ଏହି ନିବନ୍ଧରେ ଉଲ୍ଲେଖ ରହିଛି ଯେ ପ୍ରତ୍ୟେକ ସଙ୍କେତର “ଏକ ବସ୍ତୁ (odject) ଓ ଏକ ବ୍ୟାଖ୍ୟାତ (Interpretant) ଥାଏ । ବ୍ୟାଖ୍ୟାତ ହେଉଛି ଯାହା ସଙ୍କେତ ଦ୍ୱାରା ଅନ୍ତର୍ମନରେ, ଅର୍ଥାତ୍ ବ୍ୟାଖ୍ୟାକାରଠାରେ ଜାତ ହୁଏ । ଏକ ଭାବ, ବା ନିୟମ ବା ସଙ୍କେତକୁ ବ୍ୟାଖ୍ୟାତରୂପେ ନିର୍ଦ୍ଧାରଣ କରିବା ଦ୍ୱାରା ତାହା ଜାତ ହୋଇଥାଏ । ଏହି ନିର୍ଦ୍ଧାରଣଟି ହିଁ ହେଉଛି ବ୍ୟାଖ୍ୟାତ । କିନ୍ତୁ ଏହା ସ୍ପଷ୍ଟ କରିଦେବା ଆବଶ୍ୟକ ଯେ ସାଧାରଣତଃ ଦୁଇଟି ବସ୍ତୁ ଏବଂ ଦୁଇଟିରୁ ଅଧିକ ବ୍ୟାଖ୍ୟାତ ଥାଏ । ବସ୍ତୁ ଦୁଇଟି ହେଉଛି ଅବ୍ୟବହିତ ବସ୍ତୁ (Immediate object) ଓ ଗତିଶୀଳ ବସ୍ତୁ (Dynamical object); ଏ ଦୁଇଟିର ପାର୍ଥକ୍ୟ ଆମକୁ ରକ୍ଷା କରିବାକୁ ହେବ । ସଙ୍କେତଟି ହିଁ ବସ୍ତୁକୁ ଯେପରିଭାବେ ଉପସ୍ଥାପିତ କରେ ତାହା ହେଉଛି ଅବ୍ୟବହିତ ବସ୍ତୁ; ସୁତରାଂ ଏହାର ଅସ୍ତିତ୍ୱ ସଙ୍କେତରେ ଏହାର ଉପସ୍ଥାପନ ଉପରେ ନିର୍ଭରଶୀଳ । ଗତିଶୀଳ ବସ୍ତୁ ହେଉଛି ସେହି ସତ୍ତ୍ୱ, ଯାହା କୌଣସି ଉପାୟରେ ସଙ୍କେତକୁ ତାହାର ଉପସ୍ଥାପନରୂପେ ନିର୍ଦ୍ଧାରିତ ହେବାର ବ୍ୟବସ୍ଥା କରେ । ବ୍ୟାଖ୍ୟାତ କ୍ଷେତ୍ରରେ ମଧ୍ୟ ଆମକୁ ଅନୁରୂପଭାବେ ପାର୍ଥକ୍ୟ ରକ୍ଷା କରିବାକୁ ହେବ । ପ୍ରଥମତଃ ସଙ୍କେତଟିକୁ ହିଁ ଯଥାର୍ଥଭାବେ ବୁଝିବା ଦ୍ୱାରା ଯେପରିଭାବେ ବ୍ୟାଖ୍ୟାତ ପ୍ରକାଶିତ ହୋଇଥାଏ, ତାହା ହେଉଛି ଅବ୍ୟବହିତ ବ୍ୟାଖ୍ୟାତ (Immediate Interpretant); ଏହାକୁ ସାଧାରଣତଃ ସଙ୍କେତର 'ଅର୍ଥ' ବୋଲି କୁହାଯାଇଥାଏ । ଦ୍ୱିତୀୟତଃ ଆମକୁ ଗତିଶୀଳ ବ୍ୟାଖ୍ୟାତ (Dynamical Interpretant)କୁ ଲକ୍ଷ୍ୟ କରିବାକୁ ହେବ । ସଙ୍କେତ-ଏକ ସଙ୍କେତରୂପେ ପ୍ରକୃତରେ ଯାହା ନିର୍ଦ୍ଧାରଣ କରେ, ସେହି ବାସ୍ତବ ପରିଣତି ହେଉଛି ଗତିଶୀଳ ବ୍ୟାଖ୍ୟାତ । ପରିଶେଷରେ ରହିଛି ସେହି ବ୍ୟାଖ୍ୟାତ ଯାହାକୁ ମୁଁ ଆପାତତଃ, ଚୂଡ଼ାନ୍ତ ବ୍ୟାଖ୍ୟାତ (Final Inter-

pretant) ବୋଲି ଅଭିହିତ କରୁଛି । ଯେଉଁ ଭାବରେ ସଙ୍କେତ ନିଜ ସହିତ ତାହାର ବସ୍ତୁ ସମ୍ବନ୍ଧାନ୍ୱିତ ବୋଲି ଉପସ୍ଥାପିତ କରିବସେ, ତାହାକୁ ନିର୍ଦ୍ଦେଶ କରୁଥିବା ବ୍ୟାଖ୍ୟାତ ହେଉଛି ଚୂଡ଼ାନ୍ତ ବ୍ୟାଖ୍ୟାତ । ମୁଁ ସ୍ୱୀକାର କରୁଛି ଯେ ଏହି ତୃତୀୟ ବ୍ୟାଖ୍ୟାତ ସମ୍ବନ୍ଧୀୟ ମୋ ନିଜ ଧାରଣା ଏ ପର୍ଯ୍ୟନ୍ତ ଅସ୍ପଷ୍ଟତାରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ହୋଇପାରି ନାହିଁ ।'' ତାପରେ ଯେଉଁ ବିଷୟର ଉଲ୍ଲେଖ କରାଯାଇଛି, ତାହା ହେଉଛି 'ସଙ୍କେତମାନଙ୍କ ଦଶଗୋଟି ବିଭାଗ; ଏଗୁଡ଼ିକ ଉପରେ ମୋର ବିଶେଷ ଅଧ୍ୟୟନର ଆବଶ୍ୟକତା ରହିଛି ବୋଲି ମୋର ମନେହେଉଛି । ଏଗୁଡ଼ିକ ମଧ୍ୟରୁ ଛଅଗୋଟି ବିଭାଗ ବ୍ୟାଖ୍ୟାତର ସ୍ୱଭାବସିଦ୍ଧ ଗୁଣ ସହିତ ଓ ତିନିଗୋଟି ବିଭାଗ ବସ୍ତୁର ସ୍ୱଭାବସିଦ୍ଧ ଗୁଣ ସହିତ ସମ୍ପୃକ୍ତ । ଏହିପରିଭାବେ ଗୋଟିଏ ସଙ୍କେତର ଗତିଶୀଳ ବସ୍ତୁ ସହିତ ସେହି ସଙ୍କେତର ବିଭିନ୍ନ ସମ୍ଭବପର ସମ୍ବନ୍ଧମାନଙ୍କ ଉପରେ ବିଗ୍ରହ (Icons) ସୂଚ (Indices) ଓ ପ୍ରତୀକ (Symbol)ରୂପେ ବିଭାଜନ ନିର୍ଭରଶୀଳ । କେବଳ ଗୋଟିଏ ବିଭାଗ ସଙ୍କେତର ସ୍ୱକୀୟ ପ୍ରକୃତି ସହିତ ସମ୍ପୃକ୍ତ । ଏହି ବିଷୟରେ ସେ ନିମ୍ନୋକ୍ତ ବିବରଣୀ ଲେଖିଛନ୍ତି—

''ଗୋଟିଏ ପାଣ୍ଡୁଲିପି ବା ମୁଦ୍ରିତ ପୁସ୍ତକରେ ରହିଥିବା ବିଷୟ ବସ୍ତୁର ପରିମାଣ ନିର୍ଣ୍ଣୟନର ଏକ ସାଧାରଣ ପଦ୍ଧତି ହେଉଛି ଶବ୍ଦ ଗୁଡ଼ିକର ସଂଖ୍ୟା ଗଣନ । ଗୋଟିଏ ପୃଷ୍ଠାରେ ସାଧାରଣତଃ ପ୍ରାୟ କୋଡ଼ିଏଟି ସେହି (the) ରହିବ । ଏହି ପଦ୍ଧତିରେ ଏଗୁଡ଼ିକୁ କୋଡ଼ିଏଟି ଶବ୍ଦ ବୋଲି ଗଣାଯିବା ସ୍ୱାଭାବିକ । କିନ୍ତୁ 'ଶବ୍ଦ' ଶବ୍ଦର ଅନ୍ୟ ଏକ ଅର୍ଥରେ ଇଂରାଜୀ ଭାଷାରେ (the) ହେଉଛି କେବଳ ଗୋଟିଏ ଶବ୍ଦ । ଏହା କୌଣସି ଐକିକ ବସ୍ତୁ ବା ଐକିକ ଘଟଣା ନୁହେଁ । ତେଣୁ ଏହା ଗୋଟିଏ ପୃଷ୍ଠାରେ ଆଖିଦୃଶିଆ ଭାବେ ରହିବା ଉଚିତ ବା କୌଣସି କହିବା କଥାରେ ସ୍ପଷ୍ଟଭାବେ ଶୁଣାଯିବା ଉଚିତ ବୋଲି ପ୍ରସ୍ତାବ ଦେବା ଅସମ୍ଭବ । ଏହାର ସ୍ଥିତି ନାହିଁ । ଏହା ସ୍ଥିତିଶୀଳ ବସ୍ତୁମାନଙ୍କୁ କେବଳ ନିର୍ଦ୍ଧାରଣ କରେ । ଏ ପ୍ରକାର ନିର୍ଦ୍ଦିଷ୍ଟ ରୂପେ ତାତ୍ପର୍ଯ୍ୟ ବିଶିଷ୍ଟ ହୋଇଥିବା ଆକାରକୁ ପ୍ରରୂପ (type) ଆଖ୍ୟା ଦେବାପାଇଁ ମୁଁ ପ୍ରସ୍ତାବ ଦେଉଛି । ଗୋଟିଏ ଐକିକ ଘଟଣା ଯାହା ଥରେମାତ୍ର ଘଟେ ଏବଂ ଯାହାର ତାଦାତ୍ମ୍ୟ ସେହି ଥରେ ଘଟିବାରେହିଁ ସୀମିତ, କିମ୍ବା କୌଣସି ରକମର ଗୋଟିଏ ଐକିକ ବସ୍ତୁ, ଯାହା କୌଣସି ଏକ ସ୍ଥାନରେ କୌଣସି ଏକ ମୁହୂର୍ତ୍ତରେ ରହିଛି ତାହାର ବିଗ୍ରହ କରାଯାଉ । ଏ ପ୍ରକାର ଏକ ଘଟଣା ଯେଉଁଠାରେ ଓ ଯେତେବେଳେ ଘଟେ, କେବଳ ସେହି ସ୍ଥାନରେ ଓ ସେହି ସମୟରେହିଁ ତାତ୍ପର୍ଯ୍ୟ ଯୁକ୍ତ ହୁଏ; ଯଥା—ଖଣ୍ଡିଏ ପୁସ୍ତକର ଗୋଟିଏ ପୃଷ୍ଠାର ଗୋଟିଏ ଧାଡ଼ିର ଯେ କୌଣସି ଗୋଟିଏ ମାତ୍ର ଶବ୍ଦ । ଏହାକୁ ମୁଁ ଚିହ୍ନ (Token)

ବୋଲି କହିବ । ଏକ ଅନିର୍ଦ୍ଦିଷ୍ଟ ତାତ୍ପର୍ଯ୍ୟଯୁକ୍ତ ଗୁଣ, ଯଥା—କଥା କହିବାର ସ୍ୱର-ଭଙ୍ଗୀକୁ ପ୍ରରୂପ କୁହାଯାଇ ପାରିବ ନାହିଁ, କି ଚିହ୍ନ କୁହାଯାଇ ପାରିବ ନାହିଁ । ଏପରି ଏକ ସଙ୍କେତକୁ ଭଙ୍ଗୀ (Tone) ବୋଲି କହିବାକୁ ମୁଁ ପ୍ରସ୍ତାବ ଦେଉଛି । ପ୍ରରୂପ ବ୍ୟବହୃତ ହୋଇ ପାରିବା ନିମନ୍ତେ ତାହାକୁ ଏକ ଚିହ୍ନରେ ରୂପାୟିତ ହେବାକୁ ପଡ଼ିବ ଏବଂ ସେହି ଚିହ୍ନ ପ୍ରରୂପର ଓ ତଦ୍ଦ୍ୱାରା ପ୍ରରୂପର ତାତ୍ପର୍ଯ୍ୟରେ ନିହିତ ବସ୍ତୁର ସଙ୍କେତ ହେବ । ପ୍ରରୂପର ଏପ୍ରକାର ଏକ ଚିହ୍ନକୁ ପ୍ରରୂପର ଏକ ଦୃଷ୍ଟାନ୍ତ (Instance) ବୋଲି ଅଭିହିତ କରିବାକୁ ମୁଁ ପ୍ରସ୍ତାବ ଦେଉଛି । ଏହିପରି ଭାବେ ବିଚାର କଲେ, ଗୋଟିଏ ପୃଷ୍ଠାରେ 'ଦି' (the) ପ୍ରରୂପର କୋଡ଼ିଏଟି ଦୃଷ୍ଟାନ୍ତ ରହିପାରେ ।''

ପାର୍ଥକ୍ୟ ମାନଙ୍କୁ ଏପ୍ରକାର ନାମଯୁକ୍ତ କରି ପାୟର୍ସ ସେଗୁଡ଼ିକରେ ବିଶେଷ-ଭାବେ ଅନୁରକ୍ତ ରହିବାର କାରଣ ହେଉଛି ଯେ ସେଗୁଡ଼ିକର ପ୍ରୟୋଗ ଦ୍ୱାରା ଏକ 'ଅସ୍ତିତ୍ୱପରକ ରେଖାଚିତ୍ର' ପଦ୍ଧତିର ବ୍ୟାଖ୍ୟା ଦେବା ଓ ପରିବର୍ଦ୍ଧନ କରିବା ସମ୍ଭବପର । ଏହି ପଦ୍ଧତି ଦ୍ୱାରା ପ୍ରତୀକ ଶିଳ୍ପମାନ ଗଠନ କରାଯାଇ ପାରିବ ଏବଂ ''ତର୍କ ଶାସ୍ତ୍ରର ସର୍ବାଧିକ ଦୁରୂହ ସମସ୍ୟାମାନଙ୍କ ସମାଧାନରେ ସେହି ପ୍ରତୀକଶିଳ୍ପ-ମାନଙ୍କୁ ନେଇ ପରୀକ୍ଷଣ କରାଯାଇ ପାରିବ ।'' ପାୟର୍ସ ଲେଖିଛନ୍ତି ଯେ ''ଯଦିଓ ଏକ ପ୍ରତୀକ ଚିତ୍ରର ସାଧାରଣତଃ କେତେକ ପ୍ରତୀକପ୍ରକ୍ରିୟାଗତ ବୈଶିଷ୍ଟ୍ୟ ଥିବ, ତଥାପି ମୁଖ୍ୟତଃ ତାହାର ବସ୍ତୁର ଗଠନଗତ ସମ୍ବନ୍ଧମାନଙ୍କ ଆକାର ଗୁଡ଼ିକର ଏହା ବିଗ୍ରହ ।'' ପୁଣି ଏହି ଶବ୍ଦାବଳୀର ବ୍ୟବହାର କରି କୁହା ଯାଇପାରେ ଯେ ଯେଉଁ କ୍ରୁଶୋ ବାଲୁକା ଉପରେ ଦେଖିଥିଲେ, ''ତାହା ତାଙ୍କ ପକ୍ଷରେ କୌଣସି ଏକ ଜୀବର ସୂଚୀ ହୋଇଥିଲା, ପକ୍ଷାନ୍ତରେ ଏକ ପ୍ରତୀକ ରୂପେ ତାହା ତାଙ୍କ ମନରେ ଏକ ମନୁଷ୍ୟର ପ୍ରତ୍ୟୟ ଜାଗରୂକ କରିଥିଲା ।'' ଏଠାରେ ପୁନରୁଦ୍ଧାର କରା ଯାଇଥିବା ବିଷୟରେ ତାହାର ପ୍ରତ୍ୟେକ ପ୍ରଣେତା ନିଜ ମତବାଦର କି ବିଶିଷ୍ଟ ପ୍ରୟୋଗମାନ କରିଛନ୍ତି, ତହିଁରେ ଆମେ ଅନୁରକ୍ତ ନୋହୁଁ କିନ୍ତୁ ତାଙ୍କ ଗବେଷଣାର ତାର୍କିକ ସ୍ୱଭାବ ଉପରେ ସେ ଯେପରି ନିରବଚ୍ଛିନ୍ନ ଭାବେ ପ୍ରାଧାନ୍ୟ ଅର୍ପଣ କରିଛନ୍ତି, ଏବଂ ମନସ୍ତତ୍ତ୍ୱକୁ ବର୍ଜନ କରିବାର ଅଭିଳାଷ ପୋଷଣ କରିଅଛନ୍ତି, ସେହି ଦୃଷ୍ଟିରୁ ସାର୍ବଜନୀନ ଅନୁରକ୍ତିର ଆଧାର ଏକ ତ୍ରିକୋଟିକ ବିଭାଜନ ବିଷୟ ଏଠାରେ ଉଲ୍ଲେଖ କରାଯାଇପାରେ । ମନିଷ୍ଟ ପତ୍ରିକାର ଏକ ପ୍ରବନ୍ଧରେ (୨୬ଶ ଖଣ୍ଡ; ୧୯୧୬-୧୭, ପୃ ୭୫) ପାୟର୍ସ ତର୍କଶାସ୍ତ୍ରର ଏକ ସଂଜ୍ଞା

(୧) ଏ ସବୁ ତ୍ରିକୋଟିକ ବିଭାଜନ ପରି ମନେହୁଏ ଏବଂ ସଂକେତର ମୁଖ୍ୟତଃ ତ୍ରିପଦୀ ସ୍ୱଭାବର ଏକ ଗୁଣ ଏଗୁଡ଼ିକ ଦ୍ୱାରା ଗଠିତ ହୁଏ ।

ଦେଇଛନ୍ତି । ସେ ସେଠାରେ କହିଛନ୍ତି ଯେ ‘ସତ୍ତା’ ସହିତ ସହାଯ ହେବା ନିମନ୍ତେ ଏକ ବିବୃତ କ କ ସତ୍ତିର ପୂରଣ କରିବା ଆବଶ୍ୟକ,” ଏହି ସମସ୍ୟାର ଆଲୋଚନା ହେଉଛି ତର୍କଶାସ୍ତ୍ରର ବିଷୟବସ୍ତୁ । “ବିଶ୍ୱାସ ରୂପେ ହିଁ ବିଶ୍ୱାସ ଗୁଡ଼ିକର ଯେଉଁ ଗୁଣମାନ ଥାଏ, ତାହାର ଅଧ୍ୟୟନକୁ ଡକ୍‌ଟର ହ୍ୱୋଟମ୍ ମଧ୍ୟ ପରିକଳ୍ପନା ମୂଳକ ବ୍ୟାକରଣ ଆଖ୍ୟା ଦେଇଥିଲେ । ଦ୍ୱିତୀୟତଃ ରହିଛି ସେହି ସାଧାରଣ ସର୍ତ୍ତଗୁଡ଼ିକର ଅଧ୍ୟୟନ, ଯେଉଁ-ଗୁଡ଼ିକର ନିୟନ୍ତ୍ରଣାଧୀନ ହୋଇ ଏକ ସମସ୍ୟା ସମାଧାନ ନିମନ୍ତେ ଉପସ୍ଥାପିତ ହୁଏ ଓ ତାପରେ ଯେଉଁ ନିୟନ୍ତ୍ରଣାଧୀନ ହୋଇ ଗୋଟିଏ ପ୍ରଶ୍ନ ଅନ୍ୟ ଏକ ପ୍ରଶ୍ନ ଦିଗରେ ଅଗ୍ରସର କରାଇଦିଏ । ଏହା ହେଉଛି ଶାବ୍ଦିକ ଅଳଙ୍କାର ଶାସ୍ତ୍ର । ଲେଡ଼ି ୱେଲବିଙ୍କ ନିକଟକୁ ଲେଖିବା ପତ୍ରରେ ପାୟର୍ସ ମନ୍ତବ୍ୟ ଦେଇଥିଲେ ଯେ ଅର୍ଥର ଅଧ୍ୟୟନ ନିମନ୍ତେ ଲେଡ଼ି-ୱେଲ୍ବି ଯେଉଁ ସୂଚନା ଶାସ୍ତ୍ର (Significs) ପଦର ବ୍ୟବହାର କରନ୍ତି, “ତାହାର ନାମରୁ ମନେହେବ ଯେ ତାହା ଯେପରି ସଙ୍କେତ ମୀମାଂସାର ଏକ ଅଂଶ ଏବଂ ତାହା ସଙ୍କେତର ବ୍ୟାଖ୍ୟାତ ସହିତ ସମ୍ବନ୍ଧ ବିଷୟରେ ଅନୁସନ୍ଧାନ କରେ । (ଏହି ଅଧ୍ୟୟନ ଯେତେବେଳେ ସଂକେତ ଗୁଡ଼ିକରେ ସୀମିତ ଥାଏ, ତାହାର ନାମ ଶାବ୍ଦିକ ଅଳଙ୍କାର ଶାସ୍ତ୍ର ରଖାଯାଉ ବୋଲି ମୁଁ ୧୮୬୭ ରେ ପ୍ରସ୍ତାବ ଦେଇଥିଲି ।)” ଲେଡ଼ି ୱେଲ୍‌ବିଙ୍କୁ ସେ ବିଶେଷ ଅନୁରୋଧ କରିଥିଲେ ଯେ ସେ ସଙ୍କେତମୀମାଂସାର ତଥା ତାଙ୍କର ରେଖା ଚିତ୍ରମାନଙ୍କର ଏକ ବୈଜ୍ଞାନିକ ଅଧ୍ୟୟନ କରନ୍ତୁ (“ଆପଣ ମୋର ରେଖାଚିତ୍ର ଗୁଡ଼ିକର ଅଧ୍ୟୟନ କରନ୍ତୁ, ଏହା ମୋର ଏକାନ୍ତ ଇଚ୍ଛା, କାରଣ ମୋ ମତରେ, ଏହି ଅଧ୍ୟୟନ ଅତି ଚମତ୍କାର ଭାବେ ତାର୍କିକ ବିଶ୍ଳେଷଣର, ଅର୍ଥାତ୍ ସଙ୍କେତର, ଯଥାର୍ଥ ସ୍ୱଭାବ ଓ ପଦ୍ଧତି ଉଦ୍‌ଘାଟନ କରାଇଦିଏ । କିପରି ଭାବେ ଯେ ଏହି ଅଧ୍ୟୟନ ଦ୍ୱାରା ଏହି କାର୍ଯ୍ୟ ସାଧିତ ହୁଏ, ତାହା ଅବଶ୍ୟ, ସହଜରେ ଧରିହୁଏ ନାହିଁ, କିନ୍ତୁ ଏହି କଳା ସମ୍ବନ୍ଧରେ ମୋର ବିବରଣୀ ପ୍ରକାଶ ପାଇବା ପରେ ତାହା ସହଜ ହୋଇଯିବ ।”) ୧୯୦୪ ରେ ପାୟର୍ସ ଆଉ ଏକ ଚିଠି ଲେଖିଥିଲେ । ଏହା ହେଉଛି ମନିଷ୍ଟ ପତ୍ରିକାରେ ତାଙ୍କ ମୁଖ୍ୟ ପ୍ରବନ୍ଧ ପ୍ରକାଶ ପାଇବାର ଅଲ୍ପଦିନ ପୂର୍ବର ଲେଖା । ଏହିଁରେ ସେ ସଂକେତମାନଙ୍କ ବର୍ଗୀକରଣର ବିଶଦ ବର୍ଣ୍ଣନା ଦେଇଛନ୍ତି ।

ତାଙ୍କ ମନ୍ତବ୍ୟର ପ୍ରାକ୍ କଥନ ସ୍ୱରୂପ ସେ ଯୋର ଦେଇ କହିଛନ୍ତି ଯେ “ଏକ ସଂକେତର ଦୁଇଟି ବସ୍ତୁ ଥାଏ; ଗୋଟିଏ ହେଉଛି ବସ୍ତୁ ଗୋଟିକ, ଅପରଟି ହେଉଛି ବସ୍ତୁଟି ଯେପରି ଭାବେ ଉପସ୍ଥାପିତ । ସଂକେତର ତିନୋଟି ବ୍ୟାଖ୍ୟାତ ମଧ୍ୟ ଥାଏ; ଏହି ତିନୋଟି ହେଉଛି ବ୍ୟାଖ୍ୟାତ ଗୋଟିକ, ଯେପରି ତାହା ଅନୁଭୂତ ଏବଂ ଯେପରି ଭାବେ ବ୍ୟାଖ୍ୟାତ ରୂପେ ତାହା ଉପସ୍ଥାପିତ ବା ବୁଝାଯାଉ ବୋଲି ଅଭିପ୍ରେତ ! ସଂକେତ

ଗୁଡ଼ିକର ନିଜସ୍ୱ ଭୌତିକ ପ୍ରକୃତି ଦୃଷ୍ଟିରୁ, ସେଗୁଡ଼ିକର ବସ୍ତୁ ସହିତ ସମ୍ବନ୍ଧ ଦୃଷ୍ଟିରୁ ଏବଂ ସେଗୁଡ଼ିକର ବ୍ୟାଖ୍ୟାତାମାନଙ୍କ ସହିତ ସମ୍ବନ୍ଧ ଦୃଷ୍ଟିରୁ ସେଗୁଡ଼ିକୁ ଭାଗ ଭାଗ କରାଯାଇ ପାରେ ।

"ଗୋଟିଏ ସଙ୍କେତର ନିଜସ୍ୱ ପ୍ରକୃତି ଦୃଷ୍ଟିରୁ, ତାହା ପ୍ରାତିଭାସିକ ପ୍ରକୃତିବିଶିଷ୍ଟ ହୋଇପାରେ; ସେତେବେଳେ ମୁଁ ତାହାକୁ ଏକ କ୍ୱାଲିସାଇନ୍ (qualisign=ଗୁଣ ସଙ୍କେତ) କହେଁ । ଦ୍ୱିତୀୟତଃ ତାହା ଗୋଟିଏ ଐକିକ ବସ୍ତୁ ବା ଘଟଣା ହୋଇପାରେ; ସେତେବେଳେ ମୁଁ କହିପାରେଁ ଯେ ତାହା ଏକ ସିନ୍ ସାଇନ୍ (Sinsign=ଐକିକ ସଙ୍କେତ) (ଶବ୍ଦାଂଶ sin ହେଉଛି Semel, simul, singular ପ୍ରଭୃତି ଶବ୍ଦର ପ୍ରଥମ ଶବ୍ଦାଂଶ) । ତାହା ଏକ ସାମାନ୍ୟ ସ୍ୱରୂପ ପ୍ରକୃତି ବିଶିଷ୍ଟ ମଧ୍ୟ ହୋଇପାରେ; ସେତେବେଳେ ତାହାକୁ ମୁଁ ଏକ ଲେଜିସାଇନ୍ (legisign=ନିୟମିତ ସଙ୍କେତ) କହେଁ । ଅଧିକାଂଶ କ୍ଷେତ୍ରରେ, 'ଶବ୍ଦ' ପଦକୁ ଆମେ ଯେପରିଭାବେ ବ୍ୟବହାର କରୁଁ, ଅର୍ଥାତ୍ ଆମେ ଯେତେବେଳେ କହୁଁ ଯେ 'ସେହି' (the) ହେଉଛି ଗୋଟିଏ 'ଶବ୍ଦ' ଏବଂ 'ଏକ' (an) ହେଉଛି ଆଉ ଗୋଟିଏ 'ଶବ୍ଦ' ସେଠାରେ 'ଶବ୍ଦ' ହେଉଛି ଏକ ଲେଜି ସାଇନ୍ । କିନ୍ତୁ ଆମେ ଯେତେବେଳେ ଖଣ୍ଡିଏ ପୁସ୍ତକର ଗୋଟିଏ ପୃଷ୍ଠା ସମ୍ବନ୍ଧରେ କହୁଁ ଯେ ତହିଁରେ '୨୫୦ଟି ଶବ୍ଦ' ଏବଂ ସେଗୁଡ଼ିକ ମଧ୍ୟରୁ କୋଡ଼ିଏଟି ହେଉଛି 'ସେହି', ସେଠାରେ 'ଶବ୍ଦ' ହେଉଛି ଏକ ସିନ୍‌ସାଇନ୍ । ଏହିପରି ଭାବେ ଯେତେବେଳେ ଏକ ଲେଜିସାଇନ୍ ଏକ ସିନ୍‌ସାଇନକୁ ରୂପାୟିତ ହୋଇଯାଏ, ମୁଁ ସିନ୍ ସାଇନକୁ ଲେଜିସାଇନ୍‌ର ପ୍ରତିରୂପ (replica) ବୋଲି କହେଁ । ଲେଜି ସାଇନ୍ ଓ କ୍ୱାଲିସାଇନ୍ ମଧ୍ୟରୁ କୌଣସିଟି ଗୋଟିଏ ଐକିକ ବସ୍ତୁ ନୁହେଁ । ଏ ଦୁଇଟିର ପାର୍ଥକ୍ୟ ହେଉଛି ଯେ ଲେଜି ସାଇନ୍‌ର ଏକ ନିର୍ଦ୍ଦିଷ୍ଟ ତାଦାତ୍ମ୍ୟ ରହିଛି, ଯଦିଓ ସାଧାରଣତଃ ଏହାର ବହୁବିଧ ପ୍ରତୀୟମାନତା ସମ୍ଭବପର । ଉଦାହରଣ ସ୍ୱରୂପ, ଇଂରାଜୀର &, (and) ଏବଂ ଏହାର ଉଚ୍ଚାରଣ ଧ୍ୱନି, ପ୍ରତ୍ୟେକଟି ଗୋଟିଏ ଗୋଟିଏ ଶବ୍ଦ । ପକ୍ଷାନ୍ତରେ, କ୍ୱାଲି ସାଇନର କୌଣସି ତାଦାତ୍ମ୍ୟ ନାହିଁ । ଏହା ହେଉଛି ପ୍ରତୀୟମାନତାର ଗୁଣମାତ୍ର ଏବଂ ଏହାର ପ୍ରଥମ ବ୍ୟବହାର ସହିତ ଦ୍ୱିତୀୟ ବ୍ୟବହାର ସର୍ବଦା ସମାନ ହୋଇ ନ ଥାଏ । ତାଦାତ୍ମ୍ୟ ପରିବର୍ତ୍ତେ ଏଠାରେ ଥାଏ ଅତ୍ୟନ୍ତ ସାଦୃଶ୍ୟ । ଏହା ଭିନ୍ନ ଭିନ୍ନ କ୍ଷେତ୍ରରେ ବହୁପରିମାଣରେ ଭିନ୍ନ ଭିନ୍ନ ହୋଇ ନ ପାରେ; କାରଣ ତାହା ଯଦି ହୁଏ, ତେବେ ତାହାକୁ ସେହି ଏକ କ୍ୱାଲିସାଇନ୍ କୁହାଯାଇ-ପାରିବ ନାହିଁ ।"

ସଙ୍କେତର ଅନ୍ୟାନ୍ୟ ମୁଖ୍ୟ ବିଭାଗର ବ୍ୟାଖ୍ୟା ଦେବାକୁ ପାୟର୍ସ କହନ୍ତି ଯେ "ସଙ୍କେତର ନିଜ ଗତିଶୀଳ ବସ୍ତୁ ସହିତ ସମ୍ବନ୍ଧ ଦୃଷ୍ଟିରୁ ମୁଁ ସଂକେତ ଗୁଡ଼ିକୁ ବିଗ୍ରହ,

ସୂଚୀ ଓ ପ୍ରତୀକ ରୂପେ ଭାଗ କରେ (ଏହି ବିଭଜନ ମୁଁ ୧୮୯୭ ରେ ଦେଖାଇଥିଲି) । ବିଗ୍ରହର ମୁଁ ଦେଇଥିବା ସଂଜ୍ଞା ହେଉଛି ଏହା ଏପରି ଏକ ସଂକେତ ଯାହା ତାହାର ନିଜସ୍ୱ ଆଭ୍ୟନ୍ତରୀଣ ସ୍ୱଭାବ ହେତୁରୁ ତାହାର ଗତିଶୀଳ ବସ୍ତୁଦ୍ୱାରା ନିର୍ଦ୍ଧାରିତ ହୁଏ । କାଳ୍ପନିକ ଦୃଶ୍ୟ ପରି ଏକ କ୍ୱାଲିସାଇନ୍ ହେଉଛି ଏକ ବିଗ୍ରହ । ହେଉରେ ସ୍ୱର ସଂଯୋଜକର ଅଭିପ୍ରାୟ ଅନୁଯାୟୀ ଉପସ୍ଥାପିତ ବୋଲି ବିବେଚିତ ଏକ ସଂଗୀତ ଦ୍ୱାରା ଉଦ୍ଦିଷ୍ଟ ସ୍ଥାୟୀତ୍ୱର ଗୁଣ ଏକ କ୍ୱାଲିସାଇନ୍ ହେଉଛି ଏକ ବିଗ୍ରହ । ଗୋଟିଏ ବୈଜ୍ଞିକ ପ୍ରତୀକ ଚିତ୍ରପରି ଏକ ସିନ୍ ସାଇନ୍, ଯଥା— ଭ୍ରାନ୍ତିର ତାରତମ୍ୟ ପ୍ରଦର୍ଶକ ଏକ ରେଖାଚିତ୍ର, ମଧ୍ୟ ହେଉଛି ଏକ ବିଗ୍ରହ । ମୁଁ ସୂଚୀର ସଂଜ୍ଞା ଦେଇଛି ଯେ ଏହା ଏପରି ଏକ ସଂକେତ ଯାହା ତାହାର ଗତିଶୀଳ ବସ୍ତୁ ସହିତ ବାସ୍ତବ ସମ୍ପର୍କରେ ଅନ୍ୱିତ ହେବା ହେତୁ ତଦ୍ଦ୍ୱାରା ନିର୍ଦ୍ଧାରିତ ହୁଏ । ଏକ ସ୍ୱକୀୟ ନାମ (ଲେଜିସାଇନ୍) ହୋଇଛି ଏକ ସୂଚୀ । ଗୋଟିଏ ରୋଗର ଏକ ଲକ୍ଷଣ ଶରୀରରେ ଦେଖାଯିବା ହେଉଛି ଏକ ସୂଚୀ .(ଲକ୍ଷଣ ଗୋଟିକ ହେଉଛି ଏକ ଲେଜିସାଇନ୍; ଏହା ଏକ ଭିନ୍ନ ସ୍ୱଭାବର ସାଧାରଣ ପ୍ରରୂପ । ଗୋଟିଏ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଦେଖାଯିବା ହେଉଛି ଏକ ସିନ୍ ସାଇନ୍) ପ୍ରତୀକର ମୋର ସଂଜ୍ଞା ହେଉଛି, ଏହା ଏପରି ଏକ ସଂକେତ ଯାହା ତାହାର ଗତିଶୀଳ ବସ୍ତୁଦ୍ୱାରା ଯେପରି ବୁଝାଯାଏ, କେବଳ ସେହି ଅର୍ଥରେ ହିଁ ବୁଝାଯିବ ବୋଲି ତଦ୍ଦ୍ୱାରା ନିର୍ଦ୍ଧାରିତ । ସୁତରାଂ ଏହା ହୁଏତ ଏକ ପ୍ରଥା କିମ୍ବା ଅଭ୍ୟାସ କିମ୍ବା ତାହାର ବ୍ୟାଖ୍ୟାତର ବା ତାହାର ବ୍ୟାଖ୍ୟାତ କ୍ଷେତ୍ରର ଯାହାର ଏକ ନିର୍ଦ୍ଧାରଣ ହେଉଛି ବ୍ୟାଖ୍ୟାତ) ଏକ ସ୍ୱାଭାବିକ ପ୍ରବୃତ୍ତି । ପ୍ରତ୍ୟେକ ପ୍ରତୀକ ଅନିବାର୍ଯ୍ୟ ରୂପେ ଏକ ଲେଜିସାଇନ୍; କାରଣ ଲେଜିସାଇନ୍‌ର ଏକ ପ୍ରତିରୂପ (replica) କୁ ଏକ ପ୍ରତୀକ ବୋଲି କହିବା ଭ୍ରାନ୍ତ ଯୁକ୍ତି ।"

ସଂକେତର ଅବ୍ୟବହିତ ବସ୍ତୁ ଦୃଷ୍ଟିରୁ, ତାହା ଏକ ଗୁଣରେ କିମ୍ବା ଏକ ସ୍ଥିତିଶୀଳ ବସ୍ତୁର କିମ୍ବା ଏକ ନିୟମର ସଙ୍କେତ ହୋଇପାରେ । ପକ୍ଷାନ୍ତରେ,

---

(୧) (୧୯୦୬ ର) (Monist) ପତ୍ରିକା ଅନ୍ତର୍ଗତ ପ୍ରବନ୍ଧରେ ରହିଛି ଯେ ଅଭ୍ୟାସକୁ ପ୍ରତୀକ ଅଙ୍ଗୀଭୂତ କରନ୍ତି; ଅନ୍ତତଃ ଯେ କୌଣସି ବୌଦ୍ଧିକ ଅଭ୍ୟାସର ପ୍ରୟୋଗ କ୍ଷେତ୍ରରେ ପ୍ରତୀକ ଅପରିହାର୍ଯ୍ୟ" (ପୃ ୪୯୫) । ପୁଣି ତହିଁରେ "ସଂପୂର୍ଣ୍ଣ ବିଶୁଦ୍ଧ ପ୍ରତୀକ ଗୁଡ଼ିକ କେବଳ ସୁପରିଜ୍ଞାତ ବସ୍ତୁଗୁଡିକୁହିଁ ତାତ୍ପର୍ଯ୍ୟ ସ୍ୱରୂପ ସୂଚିତ କରିପାରେ; ଏବଂ ସେହି ବସ୍ତୁଗୁଡିକ ଯେପର୍ଯ୍ୟନ୍ତ ସୁପରିଜ୍ଞାତ କେବଳ ସେପର୍ଯ୍ୟନ୍ତ ସେଗୁଡ଼ିକ ତଦ୍ରୂପଭାବେ ସୂଚିତ ।"

ତାହାର ତାତ୍ପର୍ଯ୍ୟରୂପେ ସୂଚିତ ବ୍ୟାଖ୍ୟାତ ସହିତ ତାହାର ସମ୍ବନ୍ଧ ଦୃଷ୍ଟିରୁ ତାହାକୁ ଏକ ରେମି (Rheme=ଶବ୍ଦ) ବା ଏକ ଡ଼ିସେଣ୍ଟ (Dicent=ଦୁଇଅଙ୍ଗ ବିଶିଷ୍ଟ) ବା ଏକ ଆର୍ଗୁମେଣ୍ଟ (Argument=ଯୁକ୍ତି) ବୋଲି କୁହାଯାଏ । "ଏହା ପ୍ରାଚୀନ ପ୍ରଣାଳୀରେ କରାଯାଉ ଥିବା ପଦ, ତର୍କ ବାକ୍ୟ ଓ ଯୁକ୍ତିରୂପେ ବିଭଜନର ସମ୍ବାଦୀ । ସଙ୍କେତଗୁଡ଼ିକୁ ସାଧାରଣଭାବେ ପ୍ରୟୋଗଯୋଗ୍ୟ କରିବା ଲକ୍ଷ୍ୟରେ ଏହାର ପ୍ରକାରାନ୍ତର ବିଧାନ କରାଯାଇଛି । ପଦ ହେଉଛି କେବଳ ଏକ ଜାତିନାମ ବା ସ୍ୱକୀୟ ନାମ । ମୁଁ ଜାତିବାଚକ ବିଶେଷ୍ୟ ପଦକୁ ବଚନର ଏକ ମୁଖ୍ୟ ଅନିବାର୍ଯ୍ୟ ଅଂଶ ବୋଲି ବିବେଚନା କରେ ନାହିଁ । ବାସ୍ତବିକ, କେବଳ ଆର୍ଯ୍ୟଭାଷାମାନଙ୍କରେ ଏବଂ ବାସ୍କ (Basque) ଭାଷାରେ ହିଁ ବିଶେଷ୍ୟ ପଦ ବଚନର ଏକ ସ୍ୱତନ୍ତ୍ର ଅଂଶରୂପେ ପୂର୍ଣ୍ଣତା ବିକାଶ ଲାଭ କରିଛି । ବ୍ୟାପକଭାବେ ବ୍ୟବହୃତ ହେଉ ନଥିବା କେତେକ ଭାଷାରେ ହୁଏତ ଏହା ବିକାଶ ଲାଭ କରିଥାଇ ପାରେ । ଅନ୍ୟ ସେମିଟିକ୍ ଭାଷାମାନଙ୍କରେ ଜାତିବାଚକ ବିଶେଷ୍ୟ ପଦ ସାଧାରଣତଃ ଆକାର ଦୃଷ୍ଟିରୁ ଏକ ବାଚନିକ ବ୍ୟାପାର ଏବଂ ପ୍ରଥାଗତ-ଭାବେ ସତ୍ତା ଦୃଷ୍ଟିରୁ ମଧ୍ୟ ତଦ୍ରୂପ । ମୁଁ ଯେତେଦୂର ଜାଣେ ଅଧିକାଂଶ ଭାଷାରେ ଏହି ପଦ ଏହିପରିଭାବେ ହିଁ ବ୍ୟବହୃତ ହୁଏ । ସୁତରାଂ ମୋର ତର୍କଶାସ୍ତ୍ରର ସାର୍ବିକ ବୀଜଗଣିତରେ କୌଣସି ଜାତିବାଚକ ବିଶେଷ୍ୟ ପଦ ସ୍ଥାନ ପାଇନାହିଁ ।"

ରେମିର ସଂଜ୍ଞାରୂପେ କୁହାଯାଇଛି, ଏହା ଏକ "ସଙ୍କେତ ଯାହା ଏପରିଭାବେ ଉପସ୍ଥାପିତ ଯେ ତାହାର ତାତ୍ପର୍ଯ୍ୟରୂପେ ସୂଚିତ ବ୍ୟାଖ୍ୟାତରେ ସତେ ଯେପରି ତାହା ଏକ ସ୍ୱଭାବଗିଦ୍ଧ ଗୁଣ ବା ଚରିତ୍ରପରି ମନେହେବ (ଅଥବା ତାହା ତହିଁରେ ପ୍ରକୃତରେ ତଦ୍ରୂପ ଅଟେ) । 'ହଁ' କିମ୍ବା 'ନା' ବ୍ୟତୀତ ଅଧିକାଂଶ ଐକିକ ଶବ୍ଦପରି ଏହି ସଙ୍କେତ ସତ୍ୟ ନୁହେଁ କି ମିଥ୍ୟା ନୁହେଁ । ଆଧୁନିକ ଭାଷାମାନଙ୍କ ଶବ୍ଦାବଳୀ ଏତାଦୃଶ ହେବା ହେଉଛି ଏହି ଭାଷାମାନଙ୍କର ଏକ ବୈଶିଷ୍ଟ୍ୟ କହିଲେ ଚଳେ ।

ଡ଼ିସେଣ୍ଟର ସଂଜ୍ଞାରୂପେ କୁହାଯାଇଛି, ଏହା 'ଏକ ସଙ୍କେତ ଯାହା ଏପରିଭାବେ ଉପସ୍ଥାପିତ ଯେ ତାହାର ତାତ୍ପର୍ଯ୍ୟରୂପେ ସୂଚିତ ବ୍ୟାଖ୍ୟାତରେ ସତେ ଯେପରି ତାହା ତାହାର ବସ୍ତୁ ସହିତ ଏକ ବାସ୍ତବ ସମ୍ବନ୍ଧରେ ଅନ୍ୱିତ ପରି ମନେହେବ (ଅଥବା ତାହାକୁ ବିବୃତ ସ୍ୱରୂପ ଦିଆଗଲେ ତାହା ପ୍ରକୃତରେ ତଦ୍ରୂପ ହେବ) ।" ପାୟର୍ସଙ୍କ ଅନୁସାରେ ଏକ ପ୍ରତିଜ୍ଞପ୍ତି ଜର୍ମନ ଭାଷାରେ ସାତ୍ସ (Satz=ବାକ୍ୟ) ନୁହେଁ । "ଠିକ୍ ଯେଉଁପରି ଏକ ସମ୍ଭାବ୍ୟତା ତାହାର ବାସ୍ତବୀକରଣ ସହିତ ସମ୍ପୃକ୍ତ, ସେହିପରି ପ୍ରତିଜ୍ଞପ୍ତି ଏକ ବିବୃତି ସହିତ ସମ୍ବନ୍ଧାନ୍ୱିତ, ଏହି ବିବୃତି ମାନସିକ ଓ ସ୍ୱଗତ ହୋଇପାରେ ଅଥବା ବାହ୍ୟତଃ ପ୍ରକାଶିତ ହୋଇପାରେ ।" ଏହି ବିଷୟକୁ ସ୍ପଷ୍ଟ କରିଦେବା ନିମନ୍ତେ

ସେ ମନସ୍ତ୍ତ୍ୱ ପତ୍ରିକା (୧୯୦୫, ପୃ ୧୭୨)ରେ ଅନୁବାଦ ହୋଇଥିଲେ । ଏଠାରେ ପ୍ରତିଜ୍ଞପ୍ତିର ସଙ୍ଗ ଏକ ଉଦ୍ଦେଶ୍ୟ ପ୍ରତୀକରୂପେ ଦିଆଯାଇଛି ।

"ଉଦ୍ଦେଶ୍ୟ ଏକ ବିବୃତି ନୁହେଁ । ଏହା ଏକ ସଙ୍କେତ ଯାହା ଏକ ବିବୃତି ହେବା ନିମନ୍ତେ ସମର୍ଥ । କିନ୍ତୁ ବିବୃତି ହେଉଛି ଏକ ଉଦ୍ଦେଶ୍ୟ । ମୋର ଉପସ୍ଥିତ ମତାନୁସାରେ, (ଭବିଷ୍ୟତରେ ହୁଏତ ଏ ସମ୍ବନ୍ଧରେ ମୁଁ ଅଧିକ ଜ୍ଞାନାଲୋକ ପାଇପାରେ), ବିବୃତି ଦେବା କିମ୍ବା ଏକ ବିଶୁଦ୍ଧ ତାତ୍ପର୍ଯ୍ୟଜ୍ଞାପକ କିମ୍ବା ନୁହେଁ । ଯଦି ବିବୃତ ପ୍ରତିଜ୍ଞପ୍ତି ସତ୍ୟ ନହୁଏ, ତେବେ ମିଥ୍ୟାବାଦୀ ଯେଉଁ ଦଣ୍ଡ ପାଇବା କଥା, ସେହି ଦଣ୍ଡ ପାଇବାକୁ ବିବୃତି ଦେଇଥିବା ବ୍ୟକ୍ତି ପ୍ରସ୍ତୁତ ରହିବା ବିଷୟ ଏହା ଜ୍ଞାପନ କରେ । ଅବଧାରଣ କିମ୍ବା ହେଉଛି ଏକ ବିଶ୍ୱାସର ଆତ୍ମସ୍ୱୀକୃତି । ଆଚରଣର ଭିତ୍ତିରୂପେ ଏକ ପ୍ରତିଜ୍ଞପ୍ତିକୁ ସ୍ୱେଚ୍ଛାକୃତଭାବେ ଗ୍ରହଣ କରିନେବାରେ ବିଶ୍ୱାସ ପର୍ଯ୍ୟବସିତ । କିନ୍ତୁ ମୋର ମନେହୁଏ, ଏହି ବିଚାରଧାରାରେ ସନ୍ଦେହର ଅବକାଶ ରହିଛି । ପ୍ରତିଜ୍ଞପ୍ତିର ସ୍ୱଭାବ ବିଷୟରେ କେଉଁ ମତଟି ସର୍ବାଧିକ ସରଳ, ତାହା ହିଁ ଏଠାରେ ବିଚାର୍ଯ୍ୟ । ଯାହାହେଉ, ଉଦ୍ଦେଶ୍ୟ ବିବୃତି ନୁହେଁ ବୋଲି ମୁଁ ଗ୍ରହଣ କରିଛି ଏବଂ ଏତଦ୍ଦ୍ୱାରା ମୁଁ ଗ୍ରହଣ କରିବା ସ୍ୱାଭାବିକ ଯେ ଆର୍ଗୁମେଣ୍ଟ ବାସ୍ତବତଃ କୌଣସି ଘଟଣାକୁ ଗ୍ରହଣ କରିବା ନିମନ୍ତେ ନିବେଦନ ହେବାର ଆବଶ୍ୟକତା ନାହିଁ । ତେଣୁ ମୁଁ ଆର୍ଗୁମେଣ୍ଟର ସଙ୍ଗ ଦେଇଛି ଯେ ଏହା ଏକ ସଙ୍କେତ ଯାହା ତାହାର ତାତ୍ପର୍ଯ୍ୟରୂପେ ସୂଚିତ ବ୍ୟାଖ୍ୟାତରେ ଅର୍ଥାତ୍ ସିଦ୍ଧାନ୍ତର ଏକ ସଙ୍କେତରୂପେ ଉପସ୍ଥାପିତ ନୁହେଁ, ତାହା ସତେ ଯେପରି ବ୍ୟାଖ୍ୟାତର ଏକ ସଙ୍କେତ, ସେହିପରିଭାବେ ଉପସ୍ଥାପିତ । ପକ୍ଷାନ୍ତରେ, ସମ୍ଭବତଃ ତାହା ହେଉଛି, ଯେଉଁ ଜଗତରେ ହେତୁବାକ୍ୟଗୁଡ଼ିକୁ ସତ୍ୟ ବୋଲି ଗ୍ରହଣ କରି ନିଆଯାଏ, ସେହି ଜଗତରେ ତଦ୍ଦ୍ୱାରା ନିର୍ଦ୍ଦେଶିତ ଅବସ୍ଥାର ସତେ ଯେପରି ତାହା ଏକ ସଙ୍କେତ, ସେହିପରିଭାବେ ତାହା ଉପସ୍ଥାପିତ ।"

ନିର୍ଦ୍ଦିଷ୍ଟଭାବେ, ଏକ ସଙ୍କେତ ତାହାର ଗତିଶୀଳ ବ୍ୟାଖ୍ୟାତ ପାଇଁ ଯୋଗ୍ୟ ବିବେଚିତ ହୋଇପାରେ ।

୧—ଗୋଟିଏ ଆର୍ଗୁମେଣ୍ଟର ଗତିଶୀଳ ବ୍ୟାଖ୍ୟାତ ନିମନ୍ତେ କେବଳ ଏଥିପାଇଁ ହିଁ ତାହା ଉପସ୍ଥାପିତ ହୋଇପାରେ ଯେ ତାହା ଏପରି ଏକ ସଙ୍କେତ ଯାହାର ଯୌକ୍ତିକତା ସ୍ୱୀକୃତ ହେବ ।

୨—ବାରମ୍ବାର ପ୍ରୟୋଗ କିମ୍ବା ଦ୍ୱାରା ଗୋଟିଏ ଆର୍ଗୁମେଣ୍ଟ କିମ୍ବା ଗୋଟିଏ ଉଦ୍ଦେଶ୍ୟ ତାହାର ବ୍ୟାଖ୍ୟାତ ଉପରେ ପ୍ରଭାବ ପକାଇପାରେ ।

୩—ବିଶ୍ବର ନିମନ୍ତେ ଗୋଟିଏ ଆର୍ଗୁମେଣ୍ଟ କିମ୍ବା ଏକ ଡିସେଣ୍ଟକୁ ତାହାର ବ୍ୟାଖ୍ୟାତ ପାଇଁ ଉପସ୍ଥାପିତ କରାଯାଇପାରେ । ଏକ ରେମିର ହିଁ ଏହି ସାମର୍ଥ୍ୟ ଥାଏ ।

"ପରିଶେଷରେ ସଙ୍କେତର ଅବ୍ୟବହୃତ ବ୍ୟାଖ୍ୟାତ ସହିତ ତାହାର ସମ୍ବନ୍ଧ ଦୃଷ୍ଟିରୁ ନିମ୍ନଲିଖିତ ତିନୋଟି ଶ୍ରେଣୀରେ ମୁଁ ସଙ୍କେତଗୁଡ଼ିକୁ ଭାଗ କରିବା ପାଇଁ ଆଗ୍ରହାନ୍ୱିତ—

୧—ଯେଉଁଗୁଡ଼ିକ ଚିନ୍ତାରେ କିମ୍ବା ସମସ୍ତପ୍ରକାର ଅନ୍ୟାନ୍ୟ ସଙ୍କେତର ଅସୀମ ଶୃଙ୍ଖଳରେ ବ୍ୟାଖ୍ୟେୟସ୍ୱ ।

୨—ଯେଉଁଗୁଡ଼ିକ ବାସ୍ତବ ଅନୁଭୂତିରେ ବ୍ୟାଖ୍ୟେୟସ୍ୱ ।

୩—ଯେଉଁଗୁଡ଼ିକ ଅନୁଭବ ବା ଦୃଶ୍ୟମାନତାର ଗୁଣରେ ବ୍ୟାଖ୍ୟେୟସ୍ୱ ।

ଏଠାରେ ସିଦ୍ଧାନ୍ତ ହେଉଛି ଯେ ସର୍ବମୋଟ ଦଶଟି ମୁଖ୍ୟ ଶ୍ରେଣୀର ସଙ୍କେତ ରହିଛି—

୧—କ୍ୱାଲସାଇନ୍ ୨—ବିଗ୍ରହମୂଳକ ସିନ୍‌ସାଇନ୍ ୩— ବିଗ୍ରହମୂଳକ ଲେଜି-ସାଇନ୍ ୪—ନିଦର୍ଶନ (Vestiges) ବା ରେମିମୂଳକ ସୂଚ୍ୟର୍ଥକ ସିନ୍‌ସାଇନ୍ ୫— ସ୍ୱକୀୟନାମ ବା ସୂଚ୍ୟର୍ଥକ ଲେଜିସାଇନ୍ ୬— ରେମିମୂଳକ ପ୍ରତୀକ ୭—ଡିସେଣ୍ଟ ସିନ୍‌ସାଇନ୍ (ଯଥା—ଲୋକକଥା ସମ୍ବଳିତ ଏକ ଛବି ୮—ଡିସେଣ୍ଟ ସୂଚ୍ୟର୍ଥକ ଲେଜି-ସାଇନ୍ ୯—ପ୍ରତିଜ୍ଞପ୍ତି ବା ଡିସେଣ୍ଟ-ପ୍ରତୀକ ୧୦—ଆର୍ଗୁମେଣ୍ଟ ।

ପଦ, ତର୍କବାକ୍ୟ ଓ ଯୁକ୍ତି ସମ୍ବନ୍ଧୀୟ ସୁପରିଚିତ ତାର୍କିକ ପାର୍ଥକ୍ୟର ଏହିପରି ଭାବେ କରାଯାଇଥିବା ଆଲୋଚନା ମନିଷ୍ଟ (୧୯୦୬)ର ପ୍ରବନ୍ଧରେ ପ୍ରଦତ୍ତ ବିବରଣୀଠାରୁ କିଯ୍ଦତ୍ ପରିମାଣରେ ଭିନ୍ନ । ସେହି ପ୍ରବନ୍ଧରେ ବୁଝାଇ ଦିଆଯାଇଛି ଯେ, "ପ୍ରଥମ ଦୁଇଟି ଅଙ୍ଗର ସବିଶେଷ ସମ୍ପ୍ରସାରଣ ଆବଶ୍ୟକ ।" ଯେଉଁଠାରେ ଆମକୁ ସେମି (Seme) ଫେମି (Pheme) ଏବଂ ଡଲୋମ (delome)ର ଧାରଣା ଦିଆଯାଇଛି ।

"ସେମି ହେଉଛି ଗୋଟିଏ ବସ୍ତୁର କେତେକ ଦୃଷ୍ଟିରୁ ଏକ ପ୍ରତିନିଧି ବା ସଙ୍କେତ ସ୍ୱରୂପ; ସୁତରାଂ ସେମି ଦ୍ୱାରା ମନେ କରାଯାଇଛି ଯେ ଏହା ଏପରି କିଛି ଯାହା ଗୋଟିଏ ବସ୍ତୁର ସ୍ଥାନାପନ୍ନ ସ୍ୱରୂପ କୌଣସି ଉଦ୍ଦେଶ୍ୟ ସାଧନ କରେ । ଯେଉଁ ତାର୍କିକ ପଦ ଏକ ଜାତିନାମ, ତାହା ଏକ ସେମି । ଉଦାହରଣ ସ୍ୱରୂପ, 'ମନୁଷ୍ୟର ନୈତିକତା' ପଦଟି

ହେଉଛି ଏକ ଯେମି । ଯେମି ଦ୍ୱାରା ମୁଁ ଏପରି ଏକ ସଙ୍କେତ ମନେକରୁଛି ଯାହା ବୈୟାକରଣିକ ବାକ୍ୟ ସହିତ ସମାନ । ଏହି ବାକ୍ୟଟି ପ୍ରଶ୍ନମୂଳକ, ଆଦେଶାତ୍ମକ ବା ବିବୃତିମୂଳକ ହୋଇପାରେ । ଯେ କୌଣସି କ୍ଷେତ୍ରରେ, ଏ ପ୍ରକାର ଏକ ସଙ୍କେତ ତାହାର ବ୍ୟାଖ୍ୟାକାର ଉପରେ କୌଣସି ରକମର ବାଧ୍ୟତାମୂଳକ ପ୍ରଭାବ ପକାଇବା ପାଇଁ ଅଭିପ୍ରେତ । ଏହି ଜିପଦୀର ତୃତୀୟ ଅଂଶ ସ୍ୱରୂପ ମୁଁ ବେଳେବେଳେ ଡିଲୋମ (delome) ଶବ୍ଦର ବ୍ୟବହାର କରିଛି, ଯଦିଓ ଏ କ୍ଷେତ୍ରରେ ଆର୍ଗୁମେଣ୍ଟ ଶବ୍ଦର ବ୍ୟବହାର ମଧ୍ୟ ସଂଅସ୍ଥ ପରିମାଣରେ ଉତ୍ତମ ହେବ । ଏହି ସଙ୍କେତର ଏପରି ଏକ ଆକାର ରହିଛି ଯାହା ବ୍ୟାଖ୍ୟାକାରର ନିଜ ଆତ୍ମନିୟନ୍ତ୍ରଣ ମାଧ୍ୟମରେ ତାହାକୁ ପ୍ରଭାବିତ କରିବଯେ । ଏହି ଚିନ୍ତା ବା ସଙ୍କେତରେ ଏପରି ଏକ ପରିବର୍ତ୍ତନ ଉପସ୍ଥାପିତ କରେ, ଯତେ ଯେପରି ସେହି ପରିବର୍ତ୍ତନ ବ୍ୟାଖ୍ୟାକାରଠାରେ ଜାତ ହେବ ।"

ପାସ୍ୱର୍ସ କହନ୍ତନ୍ତି ଯେ ରେଖାଚିତ୍ର ହେଉଛି ଏକ ଯେମି "ଏବଂ ଅନ୍ତତଃ ଏପର୍ଯ୍ୟନ୍ତ ମୋ ଦ୍ୱାରା କରାଯାଇଥିବା ବ୍ୟବହାରରେ ତାହା ହେଉଛି ଏକ ପ୍ରତିଜ୍ଞପ୍ତି । ଗୋଟିଏ ଆର୍ଗୁମେଣ୍ଟ ଏକ ରେଖାଚିତ୍ର-ଶୃଙ୍ଖଳ ଦ୍ୱାରା ଉପସ୍ଥାପିତ ହୁଏ ।"

"ସର୍ବଶେଷ ବିଶ୍ଳେଷଣରେ ସମସ୍ତ ଜ୍ଞାନ ଓ ସମସ୍ତ ଚିନ୍ତାର ଅବ୍ୟବହିତ ବସ୍ତୁ ସ୍ୱରୂପ ପ୍ରତ୍ୟକ୍ଷ"ର ଏକ ଆଲୋଚନା ଏହାପରେ ଦିଆଯାଇଛି ।

"ଏହି ମତ କୌଣସି ପ୍ରକାରେ ଅର୍ଥକ୍ରିୟାତ୍ମକ ବାଦର ବିରୋଧୀ ନୁହେଁ । ଅର୍ଥକ୍ରିୟାତ୍ମକ ବାଦ ସମସ୍ତ ଯଥାର୍ଥ ଚିନ୍ତାର ଅବ୍ୟବହିତ ବ୍ୟାଖ୍ୟାତ ଆଚରଣ ବୋଲି ଗ୍ରହଣ କରେ । ଏକ ସୁସ୍ଥ ଜ୍ଞାନମୀମାଂସା ନିମନ୍ତେ ଜ୍ଞାନର ବସ୍ତୁ ଓ ତାହାର ବ୍ୟାଖ୍ୟାନ ମଧ୍ୟରେ ଏକ ସ୍ଫଟିକ-ସ୍ପଷ୍ଟ ପାର୍ଥକ୍ୟ ରକ୍ଷାକରିବା ଠାରୁ ଅଧିକ ଅପରିହାର୍ଯ୍ୟ ବିଷୟ ଆଉକିଛି ନାହିଁ । ଏକ ସୁସ୍ଥ ଭୌଗୋଳିକ ଧାରଣା ନିମନ୍ତେ ଯେପରି ଉତ୍ତର-ଅକ୍ଷାଂଶ ଓ ଦକ୍ଷିଣ-ଅକ୍ଷାଂଶ ମଧ୍ୟରେ ଏକ ସ୍ଫଟିକ-ସ୍ପଷ୍ଟ ପାର୍ଥକ୍ୟ ରକ୍ଷାକରିବାଠାରୁ ଅଧିକ ଅପରିହାର୍ଯ୍ୟ ବିଷୟ ଆଉକିଛି ନାହିଁ, ଜ୍ଞାନମୀମାଂସା କ୍ଷେତ୍ରରେ ଉପର୍ଯ୍ୟୁକ୍ତ ପାର୍ଥକ୍ୟର ସ୍ଥାନ ମଧ୍ୟ ତଦ୍ରୂପ । ଏହି ଦୁଇଟି ପାର୍ଥକ୍ୟ ମଧ୍ୟରୁ କୌଣସିଟି ଅପରଠାରୁ ଅଧିକ ମୌଳିକ ନୁହେଁ । ଆମେ ଆମର ପ୍ରତ୍ୟକ୍ଷଗୁଡ଼ିକ ପ୍ରତି ସଚେତନ—ଏହି ସିଦ୍ଧାନ୍ତରେ କୌଣସି ମତଦ୍ୱୈଧ ନାହିଁ ବୋଲି ମୋର ମନେହୁଏ । କିନ୍ତୁ ଅବ୍ୟବହିତ ପ୍ରତ୍ୟକ୍ଷଣରେ ଏହା ଘଟେ ନାହିଁ । ଅବ୍ୟବହିତ ପ୍ରତ୍ୟକ୍ଷଣମୂଳକ ଏକ ବ୍ୟାପାର ପ୍ରତ୍ୟକ୍ଷ ନୁହେଁ । ପ୍ରତ୍ୟକ୍ଷ ହେଉଛି ଏକ

ଫେମି; କିନ୍ତୁ ଏକ ଅବ୍ୟବହିତ ପ୍ରତ୍ୟକ୍ଷମୂଳକ ଘଟଣା ହେଉଛି ଏକ ଫେମି । ଏଠାରେ ବରଂ ଏହା ହିଁ କହିବା ଠିକ୍ ଯେ ଯେଉଁ ପ୍ରତ୍ୟକ୍ଷମୂଳକ ଅବଧାରଣରେ ଅବ୍ୟବହିତ ବ୍ୟାଖ୍ୟାତ ହେଉଛି ପ୍ରତ୍ୟକ୍ଷମୂଳକ ଘଟଣା ତାହା ଏକ ଫେମି । ଏହାର ତାତ୍ପର୍ଯ୍ୟ ହେଉଛି, ପ୍ରତ୍ୟକ୍ଷର ସାକ୍ଷାତ୍ ବ୍ୟାଖ୍ୟାତ, ଅର୍ଥାତ୍ ପ୍ରତ୍ୟକ୍ଷଟି ଯାହା ଗଠଣୀଳ ବସ୍ତୁ, ତାହା ପ୍ରତ୍ୟକ୍ଷର ଅବ୍ୟବହିତ ବସ୍ତୁଠାରୁ ପୃଥକ୍ । ଏହି ପାର୍ଥକ୍ୟ ରକ୍ଷାକରିବା ବେଶ୍ ଆୟାସସାଧ୍ୟ (ମନସ୍ତତ୍ତ୍ୱର ଇତିହାସ ଏହା ପ୍ରଦର୍ଶନ କରି ଦେଇଛି), କିନ୍ତୁ ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଆମ ଚିନ୍ତାଧାରାକୁ ବ୍ୟାହତ ନ କରିବାକୁ ଏବେ ଲକ୍ଷ୍ୟ କରାଯାଉ ଯେ ପ୍ରତ୍ୟକ୍ଷର ସାକ୍ଷାତ୍ ବସ୍ତୁ ଅତ୍ୟଧିକ ପରିମାଣରେ ଅସ୍ପଷ୍ଟ ହୋଇଥିଲେ ହେଁ, ତଥାପି ଏହି ଅଭାବ (ଏହି ଅସ୍ପଷ୍ଟତା ଏକ ଅଭାବ ସହିତ ପ୍ରାୟ ସମାନ) ନିମ୍ନଲିଖିତଭାବେ ସ୍ୱାଭାବିକ ଚିନ୍ତା ଦ୍ୱାରା ପୂରଣ ହୋଇଥାଏ—ସମଗ୍ର ଜଟିଳ ପ୍ରତ୍ୟକ୍ଷସମଷ୍ଟିର ଏକ ପରବର୍ତ୍ତୀ ଗଠଣୀଳ ବ୍ୟାଖ୍ୟାତ ହେଉଛି ପ୍ରକୃତିମୂଳକ ଚିନ୍ତାରେ ଉପସ୍ଥାପିତ ପ୍ରତ୍ୟକ୍ଷ-ମୂଳକ ଜଗତର ଏପରି ଏକ ଫେମି, ଯାହା ପ୍ରତ୍ୟେକ ପ୍ରତ୍ୟକ୍ଷର ମୂଳ ଅବ୍ୟବହିତ ବସ୍ତୁକୁ ନିର୍ଦ୍ଧାରଣ କରେ । ଅବଶ୍ୟ ଏକଥା ବୁଝିରଖିବା ଆବଶ୍ୟକ ଯେ ଏଠାରେ ମୁଁ ମାନସିକ ପ୍ରକ୍ରିୟାମାନଙ୍କ ମନସ୍ତତ୍ତ୍ୱ ସମ୍ବନ୍ଧରେ କହୁନାହିଁ, ମୁଁ କହୁଛି ସେଗୁଡ଼ିକର ତାର୍କିକ ସ୍ୱଭାବ ସମ୍ବନ୍ଧରେ । ପରବର୍ତ୍ତୀ ବ୍ୟାଖ୍ୟାତଗୁଡ଼ିକ ପ୍ରତ୍ୟକ୍ଷମୂଳକ ଜଗତକୁ ବିଭିନ୍ନ ପ୍ରକାରେ ବିଶେଷିତ କରିବା ଦ୍ୱାରା ଲବ୍ଧ ଜଗତମାନଙ୍କ ନୂତନ ଫେମିମାନ ଯୋଗାଇଥାନ୍ତି । କିନ୍ତୁ ଏହି ସବୁଗୁଡ଼ିକ ହେଉଛି ପ୍ରତ୍ୟକ୍ଷମାନଙ୍କ ବ୍ୟାଖ୍ୟାତ ।

ପରିଶେଷରେ, ବିଶେଷଭାବେ ଆମେ ଏପରି ଏକ ଫେମି ପାଉଁ, ଯାହା ଏହି ଜଗତ ଗୁଡ଼ିକ ମଧ୍ୟରୁ ସର୍ବୋଚ୍ଚ ଜଗତର ଅନ୍ତର୍ଭୁକ୍ତ । ଏହା ପ୍ରତ୍ୟେକ ସତ୍ୟ ପ୍ରତିଜ୍ଞପ୍ତିର ବସ୍ତୁ ରୂପେ ବିବେଚିତ ହୁଏ । ଯଦି ଏହାର କୌଣସି ନାମ ଦିଆଯାଏ, ଯଦିଓ ଏହି ନାମଟି କିଛି ପରିମାଣରେ ଭ୍ରାନ୍ତିକାରକ, ତେବେ ତାହା ହେଉଛି, ପରମ ସତ୍ୟତା ।

ଏତିକ ବୁଝାଯିବା ପରେ ପୁଣି ପଛକୁ ଫେରି ଏହି ପ୍ରଶ୍ନଟି ଉତ୍ଥାପନ କରାଯାଉ ; ପ୍ରତ୍ୟକ୍ଷ ହେଉଛି ଏକ ଫେମି ଏବଂ ପ୍ରତ୍ୟକ୍ଷମୂଳକ ଅବଧାରଣ ହେଉଛି ଏକ ଫେମି; ତାହାହେଲେ ପ୍ରତ୍ୟକ୍ଷମୂଳକ ଅବଧାରଣ ପ୍ରତ୍ୟକ୍ଷର ଗଠଣୀଳ ବ୍ୟାଖ୍ୟାତ ହୁଏ କିପରି ? ନିଶ୍ଚିତଭାବେ, ଏହା ଫେମିମାନଙ୍କ ସ୍ୱାଭାବିକ ଗୁଣ ନୁହେଁ । ଫେମିମାନଙ୍କ ଏ ପ୍ରକାର ବିସ୍ତାର ଯେଉଁ ସବୁ ଦୃଷ୍ଟାନ୍ତ ଏହି ମୁହୂର୍ତ୍ତରେ ମୋ ମନରେ ଉଦିତ ହେଉଛି, ସେ ସବୁ ଗୁଡ଼ିକ ହେଉଛି, ପ୍ରତ୍ୟକ୍ଷର ଦୃଷ୍ଟାନ୍ତ, ଯଦିଓ ଏହାର ଅନ୍ୟାନ୍ୟ ଦୃଷ୍ଟାନ୍ତ ଯେ ରହିଛି

ଏଥିରେ ସନ୍ଦେହ ନାହିଁ । ସମସ୍ତ ପ୍ରତ୍ୟକ୍ଷ ଏହିପରି ଭାବେ ସମଗୋତ୍ର ସମ୍ପନ୍ନ ହୋଇ କାର୍ଯ୍ୟ କରେନାହିଁ; ତଥାପି ଏଗୁଡ଼ିକ ପ୍ରତ୍ୟକ୍ଷ ହୋଇଥିବାରୁ କୌଣସିମତେ ନ୍ୟୂନ ଶିକ୍ଷାପ୍ରଦ ନୁହେଁ । ଯାହାହେଉ, ହେ ପାଠକ, ମୁଁ ଅନୁରୋଧ କରୁଛି, ନିଜେ ନିଜେ ଏହି ବିଷୟକୁ ଚିନ୍ତାକରି ଦେଖିବ । ତାପରେ ତୁମେ ନିଜେହିଁ ଦେଖିପାରିବ, ତୁମର ସ୍ୱାଧୀନଭାବେ ଗଠିତ ମତ ମୋ ମତ ସହିତ ସମାନ ହେଉଛି କି ନା । ମୋର ଇଚ୍ଛା, ମୁଁ ଏହା ଜାଣିପାରନ୍ତି କି ! ମୋର ମତ ହେଉଛି ଯେ ଏକ ବିଶୁଦ୍ଧ ପ୍ରତ୍ୟକ୍ଷମୂଳକ ବିଗ୍ରହର ସାକ୍ଷାତ୍ ଗତିଶୀଳ ବ୍ୟାଖ୍ୟାତ ରୂପେ ଏକ ଫେମି ରହି ନ ପାରେ । ପ୍ରତ୍ୟକ୍ଷମୂଳକ ବିଗ୍ରହ ସମ୍ବନ୍ଧରେ ଚିନ୍ତା କରିବାକୁ ଯାଇ ପ୍ରକୃତରେ ମହାନ୍ ହୋଇଥିବା ବହୁ ମନସ୍ତତ୍ତ୍ୱବିତ୍ ମଧ୍ୟ ସୁପ୍ରତ୍ୟକ୍ଷରୂପେ ମନେ କରିଛନ୍ତି ଯେ ପ୍ରତ୍ୟକ୍ଷ ହେଉଛି ମନଶ୍ଚକ୍ଷୁ ସମକ୍ଷରେ ପ୍ରତିମାମାନଙ୍କ ଗତି । ଏହା ବହୁ ପରିମାଣରେ ଏକ ଚିତ୍ରଶାଳାର ମଧ୍ୟ ଦେଇ ପଦଚାରଣା କରୁଥିବା ସମସ୍ୟର ଜଣକର ଅନୁଭୂତ ତୁଲ୍ୟ । ମୁଁ ଯେ କାହିଁକି ଏହିପରି ଭାବୁଛି, ତାହା ତୁମକୁ କହିଦେବାକୁ ଏକାଧିକ କାରଣରୁ ମୋର ଅଭିଳାଷ ହେଉଛି, ଯଦିଓ ମୋର ପ୍ରଦତ୍ତ କାରଣ ଗୁଡ଼ିକ ଅବାନ୍ତର ପରି ଜଣା ପଡ଼ୁଛି ବୋଲି ତୁମର ବର୍ତ୍ତମାନ ଅବସ୍ଥାରେ ହୁଏତ ଧାରଣା ହେବ । ତଥାପି ମୁଁ ଭାବୁଛି, ମୋ ସମ୍ବନ୍ଧରେ ଏତକ ଜାଣିବା ପାଇଁ ତୁମେ ଗୋଟିଏ କଥା ବୁଝିରଖ । ମୁଁ ହୁଏତ ଭ୍ରାନ୍ତ ହୋଇଥାଇ ପାରେ । କିନ୍ତୁ ମୁଁ ଯେତେବେଳେ ଦୃଢ଼ତାର ସହିତ କହୁଛି ଯେ ମୋର ମତ ଗ୍ରହଣ କରିବାକୁ ମୋତେ ଅତି ଗୁରୁତ୍ୱପୂର୍ଣ୍ଣ କାରଣ ମାନ ବାଧ୍ୟ କରନ୍ତି, ସେତେବେଳେ ମୁଁ ଦୈବିକ ଅନ୍ଧକାରରେ ଏତେଦୂର ନିମଜ୍ଜିତ ହୋଇ ଯାଇନାହିଁ ଯେ ଦାର୍ଶନିକ ସତ୍ୟର ମୁଁ ଲଘୁଭାବରେ ବିଚାର କରୁଛି । ପୁଣି ଏକଥା ମଧ୍ୟ ବୁଝାଯିବା ଉଚିତ ବୋଲି ମୁଁ ଚାହେଁ ଯେ ଏହି କାରଣ ଗୁଡ଼ିକ ଆଦୌ ମନସ୍ତାତ୍ତ୍ୱିକ ନୁହେଁ; ଏଗୁଡ଼ିକ ସମ୍ପୂର୍ଣ୍ଣରୂପେ ତାର୍କିକ କାରଣ । ମୋର କାରଣର ସାରାଂଶକୁ ସଂକ୍ଷେପରେ କହିଲେ ଏହାହିଁ ହେବ; ଏକ ଫେମିକୁ ଗୋଟିଏ ବିନ୍ଦୁ ବିଗ୍ରହ ତାହାର ବ୍ୟାଖ୍ୟାତ ରୂପେ ଗ୍ରହଣ କରିବା ଅଯୌକ୍ତିକ ହେବ । ଏକ ପ୍ରତ୍ୟକ୍ଷମୂଳକ ଅବ-ଧାରଣ ସୁସ୍ପଷ୍ଟ ରୂପେ ଆତ୍ମନିୟନ୍ତ୍ରଣାଧୀନ ନୁହେଁ; କିନ୍ତୁ ଚିନ୍ତା ଆତ୍ମନିୟନ୍ତ୍ରଣାଧୀନ ନ ହେବା ଅସମ୍ଭବ । ତେଣୁ ମୋ ମତରେ ଗୋଟିଏ ଅପରର ବ୍ୟାଖ୍ୟାତ ହେବା ଅଯୌକ୍ତିକ । ମୁଁ ଭାବୁଛି, ଏହିପରି ଭାବେ କାରଣ ପ୍ରଦର୍ଶନ ହୁଏତ ତୁମର ବିଦ୍ରୂପ ବା ବିରକ୍ତି ଅଥବା ଉଭୟ ବିଦ୍ରୂପ ଓ ବିରକ୍ତି ଜାତ କରିବ, କିନ୍ତୁ ଯଦି ଏହା ହୁଏ, ତଥାପି ମୁଁ ତୁମର ବୁଦ୍ଧିକୁ ଦୋଷ ଦେବିନାହିଁ ।''

ତାରିଖ ୧୪ ମାର୍ଚ୍ଚ ୧୯୦୯ ଲେଖାଥିବା ଏକ ଚିତ୍ତାକର୍ଷକ ଚିଠି ରହିଛି । ଏଥିରେ ଲେଡ଼ି ଭିଏଲ୍‌ବିଙ୍କ ନିଜର ବ୍ୟାଖ୍ୟା-ତ୍ରିପଦୀ ସମ୍ବନ୍ଧରେ ଆଲୋଚନା କରାଯାଇଛି ।

ପାସ୍ର୍ସ ଲେଖିଛନ୍ତି, "ମୁଁ ସ୍ୱୀକାର କରୁଛି ଯେ ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକାରେ ଆପଣଙ୍କ ପ୍ରବନ୍ଧ ପଢ଼ିବା ପୂର୍ବରୁ ଆପଙ୍କେ ସମ୍ବିତ୍ତି (Sense), ଅର୍ଥ (Meaning) ଓ ତାତ୍ପର୍ଯ୍ୟ (Significance) ସମ୍ପର୍କୀୟ ତ୍ରିକୋଟିକ ବିଭଜନ ଯଥାର୍ଥରେ କେତେ ମୌଳିକ, ତାହା ମୁଁ ହୃଦୟଙ୍ଗମ କରି ନ ଥିଲି । ଏତେ ଗୁରୁତ୍ୱପୂର୍ଣ୍ଣ ହୋଇଥିବା ସଂପ୍ରତ୍ୟୟ ମାନଙ୍କ ସଂଜ୍ଞା ବହୁକାଳ ଧରି ସମ୍ପୂର୍ଣ୍ଣରୂପେ ଅପରିକଳ୍ପିତ ରହିବ, ଏହା ଆଶା କରାଯାଇ ନ ପାରେ ।......ଏବେ ମୁଁ ଦେଖୁଛି ଯେ ମୋର (ତିନପ୍ରକାର ବ୍ୟାଖ୍ୟାତ ସମ୍ବନ୍ଧୀୟ) ବିଭଜନ ଆପଣଙ୍କ ବିଭଜନର ପ୍ରାୟ ସହସଂପାତୀ ହୋଇଯାଉଛି । ଯଦି ଉଭୟ ବିଭଜନ ଯଥାର୍ଥ, ତେବେ ଉଭୟ ପୂର୍ଣ୍ଣମାତ୍ରାରେ ସଂପାତୀ ହେବା ହିଁ ଉଚିତ । ମୋର ତ୍ରିକୋଟିକ ବିଭଜନ କଲାବେଳେ ଆପଣଙ୍କ ସୂତ୍ରକଦ୍ୱାରା ମୁଁ ପ୍ରଭାବିତ ହୋଇଛି ପରି ମୋତେ ଆଦୌ ଲାଗୁନାହିଁ ।" ଏପରିକି ତାଙ୍କ ଏକ ଅଚେତନ ପୂର୍ବସ୍ମୃତି ସୂଚ୍ଛା ଥିଲା ବୋଲି ସେ ବିଶ୍ୱାସ କରୁ ନଥିଲେ । ତେଣୁ ସେ କହୁଥିଲେ ଯେ "ଆପଣଙ୍କ ଚିନ୍ତା ମହିତ ମୋ ଚିନ୍ତା ପ୍ରାୟ ସମାନ ହେବା ଦେଖି ଏକ ପ୍ରକାର ଆନନ୍ଦୋଚ୍ଛ୍ୱାସ ଅନୁଭୂତ ହେଉଛି ।

ତାପରେ, ଉଭୟ ଚିନ୍ତାଧାରାରେ କେତେଦୂର ମତୈକ୍ୟ ରହିଛି ତାହା ପରୀକ୍ଷା କରି ଦେଖିବାକୁ ପାସ୍ର୍ସ ଅଗ୍ରସର ହୋଇଛନ୍ତି "ଆପଣଙ୍କ 'ଅର୍ଥ' ସହିତ ମୋର ଗତିଶୀଳ ବ୍ୟାଖ୍ୟାତକୁ ତୁଳନା କଲେ ତହିଁରେ ସର୍ବାଧିକ ଅମେଳ ରହିଥିବା ପରି ଜଣାପଡ଼ୁଛି । ମୁଁ ଯଦି 'ଅର୍ଥ' ଶବ୍ଦକୁ ଠିକ୍‌ଭାବେ ବୁଝି ପାରିଥାଏ, ତେବେ ସଂକେତର ବକ୍ତା (ବାଚନିକ ଭାବେ ହେଉ ଅଥବା ଲିଖିତଭାବେ ହେଉ) ବ୍ୟାଖ୍ୟାକାରର ମନରେ ଯେଉଁ ପରିଣତି ଉଦ୍ଭବ କରିବାକୁ ଅଭିପ୍ରାୟ ରଖେ, ତହିଁରେ ହିଁ ଅର୍ଥ ପର୍ଯ୍ୟବସିତ । ଗୋଟିଏ ସଂକେତଦ୍ୱାରା ସଙ୍କେତର ଏକ ବ୍ୟାଖ୍ୟାକାର ଠାରେ ବାସ୍ତବରେ ଜାତ ହେଉଥିବା ସାକ୍ଷାତ୍ ପରିଣତିରେ ମୋର ଗତିଶୀଳ ବ୍ୟାଖ୍ୟାତ ପର୍ଯ୍ୟବସିତ । ମୁଁ ଭାବୁଛି, ଗୋଟିଏ ସୀମିକ ମନ ଉପରେ କିମ୍ବା କେତେଗୁଡ଼ିଏ ବାସ୍ତବ ସୀମିକ ମନ ମଧ୍ୟରୁ ପ୍ରତ୍ୟେକଟିର ମନରେ ସ୍ୱାଧୀନ କ୍ରିୟାଦ୍ୱାରା ଗୋଟିଏ ସଙ୍କେତର ପରିଣତି ହେବା ବିଷୟରେ ଆପଣଙ୍କ 'ଅର୍ଥ' ଓ ମୋର 'ଗତିଶୀଳ ବ୍ୟାଖ୍ୟାତ' ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ମୋର ବିଶ୍ୱାସ, ମୋର ଚରମ ବ୍ୟାଖ୍ୟାତ ଆପଣଙ୍କ ତାତ୍ପର୍ଯ୍ୟ ସହିତ ସମ୍ପୂର୍ଣ୍ଣତଃ ସମାନ । ଉଭୟ କ୍ଷେତ୍ରରେ ଏହା ହେଉଛି ସଙ୍କେତକୁ ତାହାର ସମ୍ପୂର୍ଣ୍ଣ ପରିଣତି ଉଦ୍ଭବ କରିବାକୁ ଯେଉଁ ପରିସ୍ଥିତିରେ ସୁଯୋଗ ମିଳିବ, ସେହି କ୍ଷେତ୍ରରେ ଯେ କୌଣସି ମନ ଉପରେ ତାହା ଯେଉଁ ପରିଣତି ଜାତ କରିବ । ମୁଁ ଭାବୁଛି, ମୋର ଅବ୍ୟବହିତ ବ୍ୟାଖ୍ୟାତ ସମ୍ପୂର୍ଣ୍ଣତଃ ନ ହେଲେ ଅନ୍ତତଃ ବହୁ ଅଧିକ ପରିମାଣରେ ଆପଣଙ୍କ 'ସଂବିତ୍ତି' ସହିତ ସମାନ । କାରଣ ଅବ୍ୟବହିତ ବ୍ୟାଖ୍ୟାତ ଦ୍ୱାରା ମୁଁ ଯାହା ମନେକରୁଛି, ତାହା ହେଉଛି ସମଗ୍ର ଅବିଶ୍ଳେଷିତ

ପରିଣତି, ଯାହା ସଙ୍କେତ ଜାତ କରିବ ବୋଲି ନିର୍ଣ୍ଣୀତ, ଏବଂ ସଙ୍କେତ ପ୍ରଥମରୁ ଜାତ କରୁଥିବା ପରିଣତି ଅଥବା ତତ୍ସମ୍ବନ୍ଧରେ କୌଣସି ମନନ କିମ୍ବା ବିନା ସଙ୍କେତ ଦ୍ୱାରା ଏକ ମନ ଉପରେ ଜାତ ହେବାର ସମ୍ଭାବନା ଥିବା ପରିଣତି ସହିତ ଏହି ଅବିଶ୍ଳେଷିତ ପରିଣତିର ତାଦାତ୍ମ୍ୟ ରକ୍ଷା କରିବା ମୋର ଏକ ରୀତି ହୋଇ ରହିଛି । ଆପଣଙ୍କର ସଂବିତ୍ତି ପଦର ସଂଜ୍ଞା ଦେବାକୁ ଆପଣ କୌଣସି ଠାରେ ଚେଷ୍ଟା କରିଥିବା ବିଷୟ ମୁଁ ଜାଣେ ନାହିଁ, କିନ୍ତୁ ଆପଣ ଏ ବିଷୟରେ ଯାହା କହିଛନ୍ତି, ତାହାର ଅଧ୍ୟୟନ ଦ୍ୱାରା ମୋର ଧାରଣା ଜନ୍ମିଛି ଯେ ଏହା ହେଉଛି ଏକ ସଙ୍କେତକୁ ବୁଝିପାରିବା ନିମନ୍ତେ ସୁଯୋଗ୍ୟ ମନଉପରେ ସଂକେତର ପ୍ରଥମ ପ୍ରଭାବ । ଆପଣ କହିଛନ୍ତି ଯେ ଏହା ହେଉଛି ଇନ୍ଦ୍ରିୟବୋଧ ମୂଳକ ଏବଂ ଏହାର କୌଣସି ପ୍ରଙ୍କଳ୍ପାତ୍ମକ ଉପାଦାନ ନାହିଁ । ଏଥିରୁ ମୁଁ ମନେ କରୁଛି ଯେ ଏହା 'ରୂପ'-ପ୍ରକୃତି ବିଶିଷ୍ଟ । ସୁତରାଂ ମୁଁ ଯେତେ ଦୂର ଦେଖିପାରୁଛି, ଏହା ହେଉଛି ଠିକ୍ ମୋର ଅବ୍ୟବହିତ ବ୍ୟାଖ୍ୟାତ । ଆପଣଙ୍କ ପ୍ରଯୋଜିତ ପାର୍ଥକ୍ୟ-ଗୁଡ଼ିକର ଅଭିବ୍ୟକ୍ତି ନିମନ୍ତେ ଆପଣ ପ୍ରଚଳିତ ଭାଷାରୁ ଶବ୍ଦମାନ ଗ୍ରହଣ କରିଛନ୍ତି, କିନ୍ତୁ ମୁଁ ଏହି ପ୍ରଚଳିତ ଶବ୍ଦଗୁଡ଼ିକୁ ବର୍ଜନ କରିଛି ଏବଂ ଯେଉଁ ଶବ୍ଦଗୁଡ଼ିକ ବିଜ୍ଞାନର ବ୍ୟବହାର ପାଇଁ ଉପଯୋଗୀ ହେବ ବୋଲି ମୋର ମନେ ହେଉଛି, ସେହିପରି କେତେକ ଶବ୍ଦ ଉଦ୍ଭାବନ କରିଛି । ମୋର ଅବ୍ୟବହିତ ବ୍ୟାଖ୍ୟାନର ବର୍ଣ୍ଣନା ନିମ୍ନୋକ୍ତରୂପେ ଦିଆଯାଇ-ପାରେ, ଏହା ହେଉଛି ଏକ ସଂକେତ-ପରିଣତିର ସେତିକି ଅଂଶ, ଯାହା କଣିକର ଯଥେଷ୍ଟ ପରିଚିତ ଥିବା କୌଣସି ବିଷୟରେ ସଙ୍କେତଟି ପ୍ରୟୋଗଯୋଗ୍ୟ କି ନୁହେଁ ତାହା କହିବାକୁ ସେହି ବ୍ୟକ୍ତିକୁ ସମର୍ଥ କରିବ ।"

ଅର୍ଥ ଓ ଅଭିପ୍ରାୟ ସମ୍ବନ୍ଧରେ ପାସ୍ପର୍ସ କହିଛନ୍ତି, "ସଂକେତ ରୂପେ କାର୍ଯ୍ୟ କରୁଥିବା ଯେ କୌଣସି ବିଷୟ ସହିତ ମୋର ତିନପ୍ରକାର ବ୍ୟାଖ୍ୟାତ କିଛି ମୌଳିକ ତତ୍ତ୍ୱ ସଂଯୋଗ କରୁଛି । ଏହାହିଁ ମୋର ଧାରଣା । ଏବେ ଦେଖାଯିବ ଯେ ପ୍ରାକୃତିକ ସଂକେତ ଓ ଲକ୍ଷଣ (Symptoms) ଗୁଡ଼ିକର କୌଣସି ବକ୍ତା ନାହିଁ ସୁତରାଂ, ଯାହା ଅର୍ଥର ସଂଜ୍ଞା ବକ୍ତାର ଅଭିପ୍ରାୟ ରୂପେ ଦିଆଯାଏ, ତେବେ ଏଗୁଡ଼ିକର କୌଣସି ଅର୍ଥ ନାହିଁ । 'ସବଶକ୍ତିମାନ୍‌ଙ୍କ ଉଦ୍ଦେଶ୍ୟ' ସମ୍ବନ୍ଧରେ କହିବାକୁ ମୁଁ ନିଜକୁ ପ୍ରଶ୍ରୟ ଦିଏ-ନାହିଁ । କାରଣ ଯଦି ବା ସେ କିଛି ଅଭିଳାଷ କରନ୍ତି, ତାହା ସଙ୍ଗେ ସଙ୍ଗେ ସମ୍ପନ୍ନ ହୋଇଯାଏ । ମୋର ଧାରଣା ଭୂଲ୍ ହୋଇପାରେ । କିନ୍ତୁ ମୋର ମନେ ହୁଏ ଅଭିପ୍ରାୟ ହେଉଛି ଅଭିଳାଷ ଓ ତାହାର ପୂରଣ ନିମନ୍ତେ ପ୍ରସ୍ତୁତି—ଏ ଦୁଇଟି ମଧ୍ୟରେ ଥିବା ସମସ୍ତବ୍ୟବଧାନ । ଯାହାହେଉ, ମୋର ଧାରଣା ହେଉଛି ଯେ କେବଳ ସସୀମ ଜୀବର ହିଁ ଅଭିଳାଷ ରହିପାରେ । ଆଲୋଚ୍ୟ ବିଷୟର ସାରମର୍ମ ସେ ନିମ୍ନୋକ୍ତ ଭାବେ ଦେଇଛନ୍ତି :—

"ମୋର ମନେ ହୋଇଛି ଯେ ଆପଣଙ୍କର ସଙ୍କେତ, ଅର୍ଥ ଓ ତାତ୍ପର୍ଯ୍ୟ (Signification)ର ଧାରଣା ପ୍ରତ୍ୟକ୍ଷମୂଳକ ଅପାର ଅନୁଭୂତିଶୀଳତାରୁ ଲବ୍ଧ । ଏହି କ୍ଷେତ୍ରରେ ଆପଣଙ୍କ ପ୍ରତିଦ୍ୱନ୍ଦ୍ୱୀ ହେବାର ସାମର୍ଥ୍ୟ ମୋର ନାହିଁ । କିନ୍ତୁ ମୋର ନିତ୍ରଶ୍ରସ୍ତ ବ୍ୟାଖ୍ୟାନ ସଙ୍କେତର ସଜ୍ଞାରୁ ମୁକ୍ତ ପ୍ରକ୍ରିୟା ଦ୍ୱାରା ଲବ୍ଧ କରାଯାଇଛି । ଏଠାରେ, କ ପ୍ରକାର ବସ୍ତୁ ଲକ୍ଷ୍ୟ କରିବା ଉଚିତ, ତାହାର ବିଗ୍ଭର କରାଯାଇଛି, ଏବଂ ତାପରେ ତାହାର ଉପସ୍ଥିତି ଅନ୍ୱେଷଣ କରାଯାଇଛି । ପ୍ରତ୍ୟେକ ସଙ୍କେତର କୌଣସି ବ୍ୟାଖ୍ୟାକାର ରହିବା ପୂର୍ବରୁ ସଙ୍କେତର ସ୍ୱକୀୟ ସ୍ୱତନ୍ତ୍ର ବ୍ୟାଖ୍ୟେୟତା ନିଶ୍ଚୟ ରହିବ । ଏହି ତଥ୍ୟରେ ମୋର ଅବ୍ୟବହିତ ବ୍ୟାଖ୍ୟାତ ନିହିତ । ମୋର ଗତିଶୀଳ ବ୍ୟାଖ୍ୟାତ ହେଉଛି ଯାହା ପ୍ରତ୍ୟେକ ବ୍ୟାଖ୍ୟା କ୍ରିୟାରେ ଅନୁଭୂତ ଏବଂ ଯାହା ଯେ କୌଣସି ଅନ୍ୟ ବ୍ୟାଖ୍ୟାତର ଅନୁଭୂତି ଠାରୁ ଭିନ୍ନ । ପରିଶେଷରେ, ସଙ୍କେତକୁ ଯଦି ଯଥେଷ୍ଟ ପରିମାଣରେ ବିଗ୍ଭର କରାଯାଏ, ତେବେ ପ୍ରତ୍ୟେକ ବ୍ୟାଖ୍ୟାକାର ବ୍ୟାଖ୍ୟାଦ୍ୱାରା ଯେଉଁ ଏକମାତ୍ର ପରିଣତି ଲବ୍ଧ କରିବା ସୁନିଶ୍ଚିତ, ତାହା ହେଉଛି ମୋର ଚରମ-ବ୍ୟାଖ୍ୟାତ । ଅବ୍ୟବହିତ ବ୍ୟାଖ୍ୟାତ ହେଉଛି ଏକ ଅପକର୍ଷଣ । ଏହା ଏକ ସମ୍ଭାବ୍ୟତାରେ ପର୍ଯ୍ୟବସିତ । ଗତିଶୀଳ ବ୍ୟାଖ୍ୟାତ ହେଉଛି ଗୋଟିଏ ବାସ୍ତବିକ ଘଟଣା । ଚରମ ବ୍ୟାଖ୍ୟାତ ହେଉଛି ସେହି ବ୍ୟାଖ୍ୟାତ ଯେଉଁ ଆଡ଼କୁ ବାସ୍ତବତା ଅଗ୍ରସର କରାଇ ନଏ ।"

୧୯୦୮ର ଶେଷ ଆଡ଼କୁ ଲେଖାଯାଇଥିବା ଖଣ୍ଡେ ଚିଠିରେ 'ବ୍ୟାଖ୍ୟାତ' ସମ୍ବନ୍ଧୀୟ ପାସ୍ୱର୍ସଙ୍କ ଧାରଣା ଅଧିକ ସ୍ପଷ୍ଟୀକୃତ ହୋଇଛି । ଯାହାରୁ ଆମେ ଏହି ଚିଠିର କେତେକ ଉଦ୍ଧୃତାଂଶ ଦେଉଛୁ । ସେ ଜୋର ଦେଇ ଏହି ଚିଠିରେ କହିଛନ୍ତି ଯେ ବ୍ୟାଖ୍ୟାକରଣର ସମସ୍ତ ସମସ୍ୟାରେ ସଙ୍କେତ-ସ୍ୱଭାବର ଏକ ଯଥାର୍ଥ ଓ ବ୍ୟାପକ ଆଲୋଚନା ସହିତ କର୍ମାରମ୍ଭ କରିଯିବା ହେଉଛି ଏକ ଅନିବାର୍ଯ୍ୟ ଆବଶ୍ୟକତା । "ସଂକେତର ମୋର ସଜ୍ଞା ହେଉଛି, ତାହାହିଁ ସଂକେତ, ଯାହା ତାହାର ବସ୍ତୁ ବୋଲି ବୁଝାଯାଉଥିବା ଅନ୍ୟ ଏକ ବସ୍ତୁଦ୍ୱାରା ଏପରିଭାବେ ନିର୍ଦ୍ଧାରିତ ଏବଂ ଜଣେ ବ୍ୟକ୍ତି ଉପରେ ଏପରି ଏକ ପରିଣତିର ନିର୍ଦ୍ଧାରଣ କରେ ଯେ ଫଳତଃ ସଂକେତ ଦ୍ୱାରା ଏହି ପରିଣତିଟି ବ୍ୟବହିତ ରୂପେ ନିର୍ଦ୍ଧାରିତ ହୁଏ । ଏହି ପରିଣତିକୁ ମୁଁ ସଂକେତର ବ୍ୟାଖ୍ୟାତ ବୋଲି ଅଭିହିତ କରିଛି । ସରଳୀକରଣ ଉଦ୍ଦେଶ୍ୟରେ ହିଁ ଅନନ୍ୟୋପାୟ ହୋଇ 'ଜଣେ ବ୍ୟକ୍ତି ଉପରେ' ଅଭିବ୍ୟକ୍ତିଟିର ମୁଁ ଏଠାରେ ପ୍ରବେଶ କରାଇଛି, କାରଣ ଏହି ବିଷୟକ ମୋର ନିଜ ବ୍ୟାପକତର ଧାରଣାକୁ ବୋଧଗମ୍ୟ କରାଇବାର ଆଶା ମୁଁ ଛାଡ଼ି ସାରିଛି । ମୁଁ ମନୋଟି ଜଗତର ସ୍ଥିତି ସ୍ୱୀକାର କରେଁ । ନିଶ୍ଚିତ

ମାଧ୍ୟରେ ତାରତମ୍ୟ ଥିବା ତିନି ପ୍ରକାର ସତ୍ତା ଅଧିଷ୍ଠିତ ହେବାରେ ଏ ତିନୋଟି ପରସ୍ପର ପୃଥକ୍ । ଏହି ଜଗତମାନଙ୍କ ମଧ୍ୟରୁ ଗୋଟିକର ପରିସରରେ କେବଳ ସେହି ପ୍ରକାର ସତ୍ତା ଅନ୍ତର୍ଭୁକ୍ତ, ଯାହାର ଅସ୍ତିତ୍ୱ ନିଜ ଉପରେ ହିଁ ନିର୍ଭରଶୀଳ; ଅବଶ୍ୟ ଏହି ଜଗତର ପ୍ରତ୍ୟେକ ସତ୍ତା ଏପରି ଯେ ତାହା ଏକ ଚେତନା ସମକ୍ଷରେ ଉପସ୍ଥାପିତ ହେବା ଆବଶ୍ୟକ, ଅଥବା ତାହା ତାହାର ସାମଗ୍ରିକ ସତ୍ତା ସମକ୍ଷରେ ଏତାଦୃଶ ଭାବେ ଉପସ୍ଥାପିତ ହେବା ନିମନ୍ତେ ସମର୍ଥ ହେବା ଆବଶ୍ୟକ । ଏହି ଜଗତର ବସ୍ତୁଗୁଡ଼ିକୁ ପାସ୍ର୍ଚ ପ୍ରତ୍ୟସ୍ତ୍ୱ ବା ସମ୍ଭାବ୍ୟତା ବୋଲି ଅଭିହିତ କରିଥିଲେ । ଦ୍ୱିତୀୟ ଅର୍ଥାତ୍ ବାସ୍ତବ ଜଗତର ବସ୍ତୁଗୁଡ଼ିକ ହେଉଛି ବାସ୍ତବତା; ଏବଂ ତୃତୀୟ ଜଗତର ବସ୍ତୁଗୁଡ଼ିକ ହେଉଛି ଆବଶ୍ୟକତା (Necessitanto) ।

'ସଂକେତମାନଙ୍କ ବସ୍ତୁର ପ୍ରକାରତା 'ସମ୍ଭାବ୍ୟତା' ହୋଇପାରେ (ଯଥା— ଗୋଟିଏ କୋନରୂଲ୍ୟ ଜ୍ୟାମିତିକ ଚିତ୍ରକୁ ସ୍ପର୍ଶ କରି ତାହାର ଭିତରେ କିମ୍ବା ତାହାକୁ ବେଷ୍ଟନ କରି ତାହାର ବାହାରେ ଅଙ୍କିତ ଏକ ଷଡ଼ଭୁଜକ୍ଷେତ୍ର) । ଏହି ବସ୍ତୁର ପ୍ରକାରତା 'ବାସ୍ତବତା' ହୋଇପାରେ (ବାୟୁମାପକ ଯନ୍ତ୍ରରେ ଯେପରି ଘଟେ) । ପୁଣି ଏହି ବସ୍ତୁର ପ୍ରକାରତା 'ଆବଶ୍ୟକତା' ମଧ୍ୟ ହୋଇ ପାରେ (ସେହି (the) ପରି ଏକ ଶବ୍ଦ ଅଥବା ଅଭିଧାନ ଅନ୍ତର୍ଭୁକ୍ତ ଅନ୍ୟ କୌଣସି ଶବ୍ଦ) । ଏକ 'ସମ୍ଭାବ୍ୟତା'—ମୂଳକ ସଂକେତକୁ ପାସ୍ର୍ଚ ଟୋନ୍ (Tone, ଭଙ୍ଗୀ) ଆଖ୍ୟା ଦେଇଛନ୍ତି; ମନିଷ୍ଟ ପତ୍ରିକାର ପ୍ରବନ୍ଧରେ ଏହାହିଁ କହାଯାଇଛି ("ଯଦିଓ ଏହା ପରିବର୍ତ୍ତେ ମୁଁ 'ମାର୍କ' (Mark, ନିଶାଣ) ପଦ ବ୍ୟବହାର କରିବାକୁ ସ୍ୱୀକାର କରି ଦେଖୁଛି") । ଏକ 'ବାସ୍ତବତା'-ମୂଳକ ସଂକେତକୁ ସେ ଟୋକନ୍ (Token, ଚିହ୍ନ) ଆଖ୍ୟା ଦେଇଛନ୍ତି ଏବଂ ଏକ 'ଆବଶ୍ୟକତା' ମୂଳକ ସଂକେତକୁ ସେ ଟାଇପ୍ (Type, ପ୍ରରୂପ) ଆଖ୍ୟା ଦେଇଛନ୍ତି ।

"ଗୋଟିଏ ସଂକେତର ଦୁଇଗୋଟି ବସ୍ତୁକୁ ପୃଥକ କରିଯିବା ପ୍ରଥାଗତ ଓ ଯଥାର୍ଥ । ଏ ଦୁଇଟି ହେଉଛି ସଂକେତ ବହିଃସ୍ଥ ବ୍ୟବହୃତ ବସ୍ତୁ ଏବଂ ସଂକେତ ଅନ୍ତର୍ଗତ ଅବ୍ୟବହୃତ ବସ୍ତୁ । ତାହାର ବ୍ୟାଖ୍ୟାତ ହେଉଛି ସଂକେତ ଜଣାଉଥିବା ସମସ୍ତ ବିଷୟ । ସଂକେତର ବସ୍ତୁସହିତ ପରିଚୟ ଲାଭ ନିମନ୍ତେ ଆନୁଷଙ୍ଗିକ ଅନୁଭୂତି ଆବଶ୍ୟକ । ବ୍ୟବହୃତ ବସ୍ତୁ ହେଉଛି ସଂକେତ ବହିଃସ୍ଥ ବସ୍ତୁ । ମୁଁ ତାହାକୁ ଗତିଶୀଳ (Dynamoid) ବସ୍ତୁ ବୋଲି ଅଭିହିତ କରୁଛି । ସଂକେତ ତାହାକୁ ଏକ ସୂଚନା ଦ୍ୱାରା ହିଁ ସୂଚିତ କରିବା ସୁନିଶ୍ଚିତ; ଏହି ସୂଚନା ବା ତନ୍ନିହିତ ସତ୍ତା ହେଉଛି ଅବ୍ୟବହୃତ ବସ୍ତୁ ।"

ଯେତେବେଳେ ଗଠଣୀଳ ବସ୍ତୁ ଏକ 'ସମ୍ଭାବ୍ୟତା' ହୋଇଥାଏ, ସେତେବେଳେ ସଂକେତଟି ଅପକର୍ଷଣମୂଳକ ହେବ (ଯଥା—ସୌନ୍ଦର୍ଯ୍ୟ ଶବ୍ଦ) । ଯେତେବେଳେ ଗଠଣୀଳ ବସ୍ତୁ ବାସ୍ତବ ହୋଇଥାଏ, ସେତେବେଳେ ସଂକେତଟି ମୂର୍ତ୍ତିମୂଳକ (ଯେ କୌଣସି ଗୋଟିଏ ବାୟୁମାପକ ଯନ୍ତ୍ର ଅଥବା ଏକ ଘଟଣା ଶୃଙ୍ଖଳାର ଏକ ଲିଖିତ ବିବରଣୀ) । ତୃତୀୟତଃ, "ଯେଉଁ ସଂକେତର ଗଠଣୀଳ ବସ୍ତୁ ହେଉଛି ଏକ ଆବଶ୍ୟକତା, ତାହାକୁ 'ସମଷ୍ଟିମୂଳକ' (Collective) ଆଖ୍ୟାଦେବା ବ୍ୟତୀତ ଅନ୍ୟ ଅଧିକ ଉତ୍ତମ ନାମ ଦେବା ଅବସ୍ଥାରେ ବର୍ତ୍ତମାନ ମୁଁ ନାହିଁ । ସଂପୃକ୍ତ ବିଷୟର ଅଧ୍ୟୟନ ନ କରିବା ପର୍ଯ୍ୟନ୍ତ ଏହି ନାମଟି କାନକୁ ଯେତେ ଖରାପ ଶୁଣାଯାଉଛି, ପ୍ରକୃତରେ ଏହା ସେତେ ଖରାପ ନାମ ନୁହେଁ । କିନ୍ତୁ ମୋ ପରି ଜଣେ ବ୍ୟକ୍ତି ଯେ ଶବ୍ଦଗୁଡ଼ିକ ଠାରୁ ସଂପୂର୍ଣ୍ଣତଃ ଭିନ୍ନ ଏକ ପ୍ରତୀକ-ପଦ୍ଧତି ମାଧ୍ୟମରେ ଚିନ୍ତା କରେ, ତାହା ପକ୍ଷରେ ନିଜ ଚିନ୍ତାକୁ ଶବ୍ଦଗୁଡ଼ିକରେ ରୂପାନ୍ତରିତ କରିବା ଅତ୍ୟନ୍ତ ଓ ପ୍ରାୟଶଃ ବିଭ୍ରାନ୍ତିକର ହୋଇଯାଏ । ଯଦି ଅବ୍ୟବହିତ ବସ୍ତୁଟି ଏକ 'ସମ୍ଭାବ୍ୟତା' (ଅର୍ଥାତ୍ ଯଦି ଗଠଣୀଳ ବସ୍ତୁଟି ତାହାର ଗୁଣ ଇତ୍ୟାଦି ଦ୍ୱାରା ଅଳ୍ପାଧିକ ପରିମାଣରେ ଅସ୍ପଷ୍ଟ ଭାବେ ସର୍ବଦା ସୂଚିତ ହୁଏ), ତେବେ ମୁଁ ସଂକେତଟିକୁ ବର୍ଣ୍ଣନାତ୍ମକ (Descriptive) ବୋଲି ଅଭିହିତ କରେଁ । ଯଦି ଅବ୍ୟବହିତ ବସ୍ତୁଟି ଏକ ସଂଘଟନ, ତେବେ ମୁଁ ସଂକେତଟିକୁ ଆଖ୍ୟାତ୍ମକ (Designative) ବୋଲି ଅଭିହିତ କରେଁ । ଯଦି ଅବ୍ୟବହିତ ବସ୍ତୁଟି ଏକ 'ଆବଶ୍ୟକତା' ତେବେ ମୁଁ ସଂକେତଟିକୁ ସଂଯୋଗାତ୍ମକ (Copulant) ବୋଲି ଅଭିହିତ କରେଁ, କାରଣ ଏହି କ୍ଷେତ୍ରରେ ବ୍ୟାଖ୍ୟାକାରଙ୍କୁ ବସ୍ତୁଟିକୁ ଏପରି ଭାବେ ଚିହ୍ନିତ କରିବାକୁ ପଡିବ ଯେପରିକି ସଂକେତଟି ଏକ ଆବଶ୍ୟକ ହେଉଥିବା ବିଷୟର ଉପସ୍ଥାପନ କରି ପାରିବ ।"

ଏକ ସମ୍ଭାବ୍ୟତା ବ୍ୟତୀତ ଅନ୍ୟ କିଛିକୁ ଏକ ସମ୍ଭାବ୍ୟତା ନିର୍ଦ୍ଧାରଣ କରି ନପାରେ; ଏବଂ ଏକ ଆବଶ୍ୟକତାର ନିର୍ଦ୍ଧାରଣ ଏକ ଆବଶ୍ୟକତା ବ୍ୟତୀତ ଅନ୍ୟ କିଛି ଦ୍ୱାରା ହୋଇ ନପାରେ । ତାପରେ ସେ କହିଛନ୍ତି, "ସୁତରାଂ ସ କତର ସଙ୍କାରୁ ନିଃସୃତ ହେଉଛି ଯେ ଯେହେତୁ ଗଠଣୀଳ ବସ୍ତୁ ଅବ୍ୟବହିତ ବସ୍ତୁକୁ ନିର୍ଦ୍ଧାରଣ କରେ, ସଂକେତ ଲକ୍ଷିତ ବ୍ୟାଖ୍ୟାତ (Destirate Interpretant)କୁ ନିର୍ଦ୍ଧାରଣ କରେ;

ଲକ୍ଷିତ ବ୍ୟାଖ୍ୟାତ କାର୍ଯ୍ୟକାରୀ ବ୍ୟାଖ୍ୟାତ (Effective Interpretant)କୁ ନିର୍ଦ୍ଧାରଣ କରେ;

କାର୍ଯ୍ୟକାରୀ ବ୍ୟାଖ୍ୟାତ ଏକାଧିକ ବ୍ୟାଖ୍ୟାତ (Explicit Interpretant)କୁ ନିର୍ଦ୍ଧାରଣ କରେ;

ସେହି ହେତୁରୁ, ଛଅଗୋଟି ତ୍ରିକୋଟିକ ବିଭଜନ ପରସ୍ପର ସ୍ୱାଧୀନ ହୋଇଥିଲେ ଯେପରି ୭୨୯ଟି ସଙ୍କେତ ଶ୍ରେଣୀ ନିର୍ଦ୍ଧାରଣ କରନ୍ତା, ସେହିପରି ନକରି, ତାହା ପରିବର୍ତ୍ତେ ମାତ୍ର ୨୮ଟି ସଙ୍କେତ ଶ୍ରେଣୀ ଦେଇଥାଏ । ମୁଁ (ପ୍ରାସ୍ତୁତଃ ସମର୍ଥନ କରୁଛି ବୋଲି ନକହି) ଦୃଢ ମତ ପୋଷଣ କରୁଛି ଯେ ସଙ୍କେତମାନଙ୍କ ଆହୁରି ସ୍ୱେଟି ତ୍ରିକୋଟିକ ବିଭଜନ ରହିଛି ଏବଂ ଏଗୁଡିକ ମଧ୍ୟ ସେହି ଏକପ୍ରକାର ପ୍ରାଧାନ୍ୟ ବିଶିଷ୍ଟ । କିନ୍ତୁ ଏସବୁ ଗୁଡିକୁ ବିଚାରକୁ ନେଲେ, ୫୯୦୪୯ଟି ସଙ୍କେତ-ଶ୍ରେଣୀ ହେବା ପରିବର୍ତ୍ତେ ସର୍ବମୋଟ ୬୬ଟି ସଙ୍କେତ ଶ୍ରେଣୀ ହେବ । ଏହି ୪ଟି ଅତିରିକ୍ତ ତ୍ରିକୋଟିକ ବିଭଜନ ମଧ୍ୟରୁ ପ୍ରଥମ ଗୋଟିକ ନିଶ୍ଚିତରୂପେ ହେଉଛି ବିଗ୍ରହ (ବା ଛାୟାରୂପ) (ICons (or Simulacra) ), ସୂଚୀ (Indices) ଓ ପ୍ରତୀକ (Symbols)ରୂପେ ବିଭଜନ । ଅନ୍ୟ ତିନୋଟି ବିଭଜନ ହେଉଛି ବ୍ୟାଖ୍ୟାତ ସମ୍ବନ୍ଧୀୟ । ମୋର ଦୃଢ଼ ବିଶ୍ୱାସ, ଏଥିରୁ ଗୋଟିଏ ହେଉଛି ପ୍ରସ୍ତାବମୂଳକ (Suggestive), ଅନୁଜ୍ଞାମୂଳକ (Imperative) ଓ ବିବରଣୀମୂଳକ (Indicative) ରୂପେ ବିଭଜନ; ଏଠାରେ ପ୍ରଶ୍ନମୂଳକ ବିଚାରକୁ ଅନୁଜ୍ଞାମୂଳକ ବିଚାରର ଅନ୍ତର୍ଭୁକ୍ତ କରାଯାଇଛି । ଅନ୍ୟ ଦୁଇଟି ବିଭଜନ ମଧ୍ୟରୁ, ମୁଁ ଭାବୁଛି ଗୋଟିଏ ନିଶ୍ଚିତରୂପେ ହେଉଛି ସହଜାତ ପ୍ରବୃତ୍ତି (Instinct), ଅନୁଭୂତି (Experience) ଓ ଆକାର (Form) ଦ୍ୱାରା ସଙ୍କେତମାନଙ୍କ ବ୍ୟାଖ୍ୟାତଗୁଡ଼ିକର ନିର୍ଦ୍ଧାରଣ ଦୃଷ୍ଟିରୁ ସଙ୍କେତଗୁଡ଼ିକର ବିଭଜନ । ମୁଁ ଭାବୁଛି, ଅବଶିଷ୍ଟ ବିଭଜନ ଗୋଟିକ ହେଉଛି ଯାହାକୁ (ମନିଷ୍ଟ ୧୯୦୬) ପ୍ରବନ୍ଧରେ ମୁଁ ସେମି, ଫେମି ଓ ଡିଲୋମ ଆଖ୍ୟା ଦେଇ ଉପସ୍ଥାପିତ କରିଛି ।

---

# ପରିଶିଷ୍ଟ-ଙ

## ନେତିମୂଳକ ଘଟଣା ସମ୍ବନ୍ଧରେ ପଦେ

ଘଟଣାବିଷୟକ ଆଲୋଚନାରେ ପ୍ରବେଶ କରିବାକୁ ଏକାଧିକ ପନ୍ଥା ଉନ୍ମୁକ୍ତ ରହିଛି; କିନ୍ତୁ ନେତିମୂଳକ ଘଟଣା ବିଷୟକ ବାଦାନୁବାଦର ବିଚାର ଦ୍ୱାରା କର୍ମାରମ୍ଭ କରିବା ବୋଧହୁଏ ଏ କ୍ଷେତ୍ରରେ ସର୍ବୋତ୍ତମ ; କାରଣ ଏହି ବାଦାନୁବାଦର ବିଚାର ଦ୍ୱାରା ଏତତ୍ ସମ୍ପୃକ୍ତ ସମସ୍ୟାଗୁଡ଼ିକର ଧାରଣା ସୁସ୍ପଷ୍ଟ ହୋଇଯାଏ । ଶ୍ରୀ ରାଫେଲ୍ ଡେମସ୍ ନିଜର ଅଧିକ ବୁଦ୍ଧିମାନ୍ ଅଣଦାର୍ଶନିକ ଚାଳିଶ ପରିଚିତ ଲୋକଙ୍କୁ ପ୍ରଶ୍ନ ପଚାରି ଏକ ଅନୁସନ୍ଧାନ ଚଳାଇଥିଲେ । ତାଙ୍କର ପ୍ରଶ୍ନ ଥିଲା ବ୍ୟକ୍ତିଗତଭାବେ ସେମାନେ କେବେ କୌଣସି ନେତିମୂଳକ ଘଟଣାର ସମ୍ମୁଖୀନ ହୋଇଛନ୍ତି କି ନା । ଏହି ଅନୁସନ୍ଧାନର ଫଳାଫଳ ସେ ୧୯୧୭ରେ ମାଇଣ୍ଡ ପତ୍ରିକାରେ ପ୍ରକାଶ କରିଥିଲେ । ସମସ୍ତ ଉତ୍ତରଦାତା ଏ ବିଷୟରେ ଏକମତ ହୋଇଥିଲେ ଯେ "ଏକ ନଞର୍ଥକ ପ୍ରତିଜ୍ଞପ୍ତି ଦ୍ୱାରା ବ୍ୟକ୍ତ ଜ୍ଞାନର ପ୍ରତ୍ୟେକ କ୍ଷେତ୍ର ହେଉଛି ପ୍ରକୃତରେ ସଦର୍ଥକ ସ୍ୱଭାବବିଶିଷ୍ଟ ଏବଂ ତାହା ଏପରି ଧରଣର ଯେ ସେମାନେ ତାହାକୁ ବୁଝିବାକୁ ଅସମର୍ଥ ।"

ଅନୁଭୂତ ଲବ୍ଧ ଏହି ମତକୁ କୌଣସି ଉତ୍ତମ କାରଣ ନ ଦର୍ଶାଇ ବିରୋଧ କରିବାକୁ ଲେଖକ ଚାହୁଁ ନଥିଲେ । ସୁତରାଂ, ନେତିମୂଳକ ଘଟଣାଗୁଡ଼ିକ ହେଉଛି ଜଗତର ଏକ ମୁଖ୍ୟ ଉପାଦାନ—ଏହି ପ୍ରାଚୀନ ସିଦ୍ଧାନ୍ତରେ ସନ୍ଦେହ ପ୍ରକାଶ କରିବାକୁ ସେ ସାହସ ବାନ୍ଧି ତାହାର ପରିବର୍ତ୍ତେ ବିପରୀତ ପ୍ରତିଜ୍ଞପ୍ତି ସମ୍ବନ୍ଧୀୟ ଏକ ମତବାଦ ସେ ଉପସ୍ଥାପନ କରିଥିଲେ । ଏହି ମତବାଦ ଅନୁସାରେ "ଜନ୍ ଇଂଲଣ୍ଡରେ ନାହିଁ" —ବାକ୍ୟକୁ କୌଣସି ଏକ ସଦର୍ଥକ ପ୍ରତିଜ୍ଞପ୍ତି ("ଜନ୍ ଫ୍ରାନ୍ସ୍‌ରେ ଅଛି")ର ଏକ ବର୍ଣ୍ଣନାରୂପେ ଅର୍ଥ କରାଯାଏ । ମୂଳରୁ ନାସ୍ତି କରାଯାଇ ଥିବା ସଦର୍ଥକ ପ୍ରତିଜ୍ଞପ୍ତି ("ଜନ୍ ଇଂଲଣ୍ଡରେ ଅଛି") ସହିତ ଉପର୍ଯ୍ୟୁକ୍ତ ସଦର୍ଥକ ପ୍ରତିଜ୍ଞପ୍ତିଟି ଅସମଞ୍ଜସ । ନେତିମୂଳକ ଘଟଣାର ସ୍ୱୀକାରରୁ ନିସ୍ତାର ପାଇବା ପାଇଁ ଏକ ଅଦମ୍ୟ ବାସନା ପ୍ରିନ୍‌ସିପିଆ ମେଥେମେଟିକାର ଲେଖକଙ୍କର ମଧ୍ୟ ମନରେ ପ୍ରାୟଶଃ ରହିଆସିଥିଲା ଏବଂ ଏହି ବାସନା ପ୍ରତ୍ୟେକ ମନୁଷ୍ୟର ହୃଦୟରେ ପ୍ରୋଥିତ ବୋଲି ଆଗରୁ ସେ ଉଲ୍ଲେଖ କରିଥିଲେ । କିନ୍ତୁ ଏହାସତ୍ତ୍ୱେ ଉପର୍ଯ୍ୟୁକ୍ତ ତାର୍କିକ ନିସ୍ତାର ପନ୍ଥାଟି ତାହାଙ୍କୁ ଏକ ଚକ୍ରାନ୍ତ ପରି ମନେହେଲା । ସେ ଯୁକ୍ତିଟିକୁ ତନ୍ନତନ୍ନ କରି ପରୀକ୍ଷା ନ କରି ରହିପାରିଲେ

ନାହିଁ ଏବଂ ପରିଶେଷରେ ତା'ହାକୁ ଅଗ୍ରାହ୍ୟ କରିଦେବାକୁ ବାଧ୍ୟ ହୋଇଥିଲେ । ସେ ଦର୍ଶାଇ ଦେଲେ 'ଅସମ୍ଭବ' କହିବା ଯାହା 'ସମ୍ଭବ ନୁହେଁ' କହିବା ମଧ୍ୟ ତାହା । ସୁତରାଂ ଏହି ବ୍ୟାଖ୍ୟାକରଣଟି ହିଁ ଅତିରିକ୍ତଭାବେ ନେତିମୂଳକ ଘଟଣାଟିକୁ ସ୍ୱୀକାର କରି ନେଇଛି । ଏହି ନୂତନ ନେତିମୂଳକ ଘଟଣାର ନିରାକରଣ ପାଇଁ ପୁଣି ଯଦି ଏହି ଅର୍ଥ-କରଣ ପଦ୍ଧତିକୁ ଆଉଥରେ ପ୍ରୟୋଗ କରାଯାଏ, ତେବେ ଏହି ପ୍ରୟୋଗ ଦ୍ୱାରା ପୁଣି ଏକ ଅବାଞ୍ଛିତ ନେତିମୂଳକ ଘଟଣା ପ୍ରବେଶ ଲାଭ କରିବ ଏବଂ ଏହା ଏହିପରି ଚାଲିବ ।

ଯାହାହେଉ, ଏଠାରେ ଉଲ୍ଲେଖଯୋଗ୍ୟ ଯେ ଯଥା ସମୟରେ ଶ୍ରୀ ଡବ୍ଲ୍ୟୁ, ଇ, ଜନସନ୍ ଆଲୋଚନାରେ ପ୍ରବେଶ କରି ମାଇଣ୍ଡ ପତ୍ରିକାରେ ନିମ୍ନୋକ୍ତ ମନ୍ତବ୍ୟଟିର ବ୍ୟବହାର କଲେ ! "ଆମେ ଏଠାରେ କେବଳ ଏତିକି କହିପାରୁ ଯେ 'ଅସମ୍ଭବ'ର ଅର୍ଥ ହେଉଛି 'ସମ୍ଭବ ସହିତ ଅସମ୍ଭବ', ଅଥବା ଭିନ୍ନଭାବରେ କହିଲେ ସମ୍ଭବ ଯେପରି ଏକ ଚରମ ପଦାର୍ଥକ ସମ୍ବନ୍ଧ, ଅସମ୍ଭବ ମଧ୍ୟ ଠିକ୍ ସେହିପରି ଏକ ଚରମ ପଦାର୍ଥକ ସମ୍ବନ୍ଧ ।" ଏ ବିଷୟରେ ଆହୁରି ଅଧିକ ଯଥାର୍ଥତା ଆଶା କରିବା କଥା । ବାସ୍ତବିକ ଅଧ୍ୟାପକ ଏଟନ୍‌ଙ୍କ ସିମ୍ବୋଲିଜମ୍ ଏଣ୍ଡ ଟ୍ରୁଥ (ପ୍ରତୀକ ପଦ୍ଧତି ଓ ସତ୍ୟତା) (୧୯୨୫) ପୁସ୍ତକରେ ଏ ପ୍ରକାର କେତେକ ଅସଂଗତି ବିଷୟରେ ଉଲ୍ଲେଖ ରହିଛି ।

ଏବେ ପ୍ରତୀକ ପଦ୍ଧତିର ସୂତ୍ର ପ୍ରୟୋଗ କରି ଆମେ ବିନା ବାକ୍‌ବିତଣ୍ଡାରେ ଏହି ବିବାଦର ସମାଧାନ କରିପାରିବା । ପ୍ରଥମତଃ ସମସ୍ୟାଟି କଣ, ଯେଉଁପ୍ରତି ଆମକୁ ଧ୍ୟାନ ଦେବାକୁ ହେବ । ତାପରେ ଯେଉଁ ସଙ୍କେତ ସିଦ୍ଧାନ୍ତ ଉପରେ ପ୍ରତୀକ ପଦ୍ଧତିର ସୂତ୍ର ନିର୍ଭରଶୀଳ, ତାହାର ପ୍ରୟୋଗ ଆମେ କରିପାରିବା ଏବଂ ଯେଉଁ କାରଣରୁ ବିବାଦ ଉପୁଜୁଛି, ତାହା ଦର୍ଶାଇ ଦେଇ ପାରିବା ।

ଏଠାରେ ସମସ୍ୟାଟି ହେଉଛି 'ନାଃ' ଉପସର୍ଗ କିମ୍ବା ତତ୍ତୁଲ୍ୟ କୌଣସି ପଦଯୁକ୍ତ କେତେକ ଜଟିଳ ପ୍ରତୀକର ନିର୍ଦ୍ଦେଶ୍ୟ ସମ୍ବନ୍ଧୀୟ ବିଷୟ । ଏହା ହେଉଛି ଏହି ନିର୍ଦ୍ଦେଶ୍ୟ ମାନଙ୍କରୁ କୌଣସିଟିର ପ୍ରତୀକ ଏକ 'ନେତିମୂଳକ ଘଟଣା' ଅଟେ କି 'ଆଦୌ କୌଣସି ଘଟଣା ନୁହେଁ" ତାହାର ନିର୍ଣ୍ଣୟନ ସମ୍ବନ୍ଧୀୟ ଏବଂ ଏହି ଗୁରୁତ୍ୱପୂର୍ଣ୍ଣ ନିର୍ଣ୍ଣୟନର ପରିଣତି ଯାହା ହେବ ବୋଲି ମନେ କରାଯାଏ, ତତ୍ସମ୍ବନ୍ଧୀୟ ଏକ ବିଷୟ । ନେତିମୂଳକ ହେବା ସମସ୍ୟାକୁ ଆପାତତଃ ଭ୍ରୂକ୍ଷେପ ନକରି ଘଟଣା ଉପରେ ଧ୍ୟାନ ଦେବା ଦ୍ୱାରା ଆମେ ଏହି ବିଷୟର ସର୍ବୋତ୍ତମ ବ୍ୟାଖ୍ୟା ଦେଇପାରିବା ।

"ୱେମ ଚାର୍ଲସ୍ ଫାଶି କାଠରେ ମୃତ୍ୟୁବରଣ କରିଥିଲେ" ଏହି ପ୍ରତିଜ୍ଞପ୍ତି ବା ଜଟିଳ ପ୍ରତୀକକୁ ଏକ ଜଟିଳ ନିର୍ଦ୍ଦେଶ୍ୟର ନିର୍ଦ୍ଦେଶ ନିମନ୍ତେ ବ୍ୟବହାର କରାଯାଏ । ଏକ

ଶବ୍ଦ ବିନ୍ୟାସର ଯେତେବେଳେ କୌଣସି ନିର୍ଦ୍ଦେଶ୍ୟ ନଥାଏ, ତାହା ଏକ ପ୍ରତୀକ ହୋଇପାରେ ନାହିଁ; ତାହା ନିରର୍ଥକ ହୋଇଯାଏ । ଐତିହାସିକମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଛି ଯେ ଏହି କ୍ଷେତ୍ରରେ ସମ୍ପୃକ୍ତ ନିର୍ଦ୍ଦେଶ୍ୟଟି ଏପରି ଏକ ପର୍ଯ୍ୟାୟ ବିଶିଷ୍ଟ, ଯାହାକୁ ସେମାନେ 'ଐତିହାସିକ ଘଟଣା' ବୋଲି ଅଭିହିତ କରନ୍ତି ।

ଅନୁରୂପଭାବେ, "ଗ୍ରେଟ୍ ଆଲେକ୍‌ଜାଣ୍ଡାର ଜଣେ ମୃଗୀ-ଧରାଲୀ ଥିଲେ"— ଏହି ଜଟିଳ ସଙ୍କେତର ଏପରି ଏକ ନିର୍ଦ୍ଦେଶ୍ୟ ରହିଛି, ଯାହାକୁ ଐତିହାସିକମାନେ ଐତିହାସିକ ପର୍ଯ୍ୟାୟର ବହିର୍ଭୁକ୍ତ କରନ୍ତି । ସେମାନେ ଏହିପରି କରିବାର କାରଣ ହେଉଛି ଯେ ଯେଉଁସବୁ ସ୍ଥାନରେ ଏହି ନିର୍ଦ୍ଦେଶ୍ୟ ଯଥୋପଯୋଗୀ ହୁଅନ୍ତା, ସେହି ସ୍ଥାନଗୁଡ଼ିକ ଅନ୍ୟାନ୍ୟ ନିର୍ଦ୍ଦେଶ୍ୟ ଦ୍ୱାରା ଅଧିକୃତ । (ଯଦି ସେମାନେ ପ୍ରତୀକବାଦୀ ହୋଇଥାନ୍ତି), ସେମାନେ ଏଠାରେ କହିବେ ଯେ ଏହି ନିର୍ଦ୍ଦେଶ୍ୟ ଅନ୍ୟ କୌଣସି ପର୍ଯ୍ୟାୟଭୁକ୍ତ । (୧)ଏହା ହୁଏତ ରବେଲେଙ୍କ ନାରକୀୟ ଘଟଣା—ପର୍ଯ୍ୟାୟଭୁକ୍ତ କିମ୍ବା ଅନ୍ୟ କୌଣସି କାଳ୍ପନିକ ଘଟଣା—ପର୍ଯ୍ୟାୟଭୁକ୍ତ କିମ୍ବା କୌଣସି ବ୍ୟକ୍ତିର କଳ୍ପନାପ୍ରସୂତ ଏକ ଘଟଣା ହୋଇଥାଇପାରେ । ଘଟିଯାଇଥିବା ଘଟଣାର ବ୍ୟାପକ ଅର୍ଥରେ ଅବଶ୍ୟ ଏ ସମସ୍ତ ଘଟଣା ହେଉଛି 'ଐତିହାସିକ' ।

ଗୋଟିଏ ଦତ୍ତ ପ୍ରତୀକର ନିର୍ଦ୍ଦେଶ୍ୟକୁ ଆମେ ଯେଉଁ ପର୍ଯ୍ୟାୟର ପରିସରରେ ଅନ୍ୱେଷଣ କରିଥାଉଁ, ଯେତେବେଳେ ତାହା ସେହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ ହୋଇଥାଏ, ସେତେବେଳେ ଆମେ ସାଧାରଣତଃ କହୁଁ ଯେ "ପ୍ରତୀକଟି ("୧ମ ଗ୍ରେଡ୍ ଫାଣି-

---

(୧) 'ସ୍ଥାନ' ଓ 'ନିର୍ଦ୍ଦେଶ୍ୟ'— ପ୍ରତୀକଦ୍ୱୟ ଏଠାରେ ଯେପରିଭାବେ ବ୍ୟବହୃତ ହୋଇଛି, ସେ ବିଷୟରେ ଜାଣିବାକୁ ପଞ୍ଚମ ପରିଚ୍ଛେଦ ଦ୍ରଷ୍ଟବ୍ୟ । ଆମେ ଯେତେବେଳେ କହୁଁ ଯେ ଗୋଟିଏ ନିର୍ଦ୍ଦେଶ୍ୟ କୌଣସି ଏକ 'ପର୍ଯ୍ୟାୟ'ର ଅନ୍ତର୍ଭୁକ୍ତ, ସେତେବେଳେ 'ପର୍ଯ୍ୟାୟ' ପଦଟି ହେଉଛି ଏକ ସଂକ୍ଷିପ୍ତୀକରଣ । ନିର୍ଦ୍ଦେଶର ଯେଉଁ ଅଂଶଗୁଡ଼ିକର ସହାୟତାରେ ଆମେ ସତ୍ୟାପନର ଚେଷ୍ଟା କରୁ, ସେହି ଅଂଶଗୁଡ଼ିକ ସମ୍ବନ୍ଧେ ନିର୍ଦ୍ଦେଶ୍ୟର 'ପର୍ଯ୍ୟାୟ' ପଦ ବ୍ୟବହୃତ ହୋଇଛି । ସର୍ବାଧିକ ବ୍ୟାପକ ଭାବେ ଯେଉଁ ପର୍ଯ୍ୟାୟମାନ ସାଧାରଣତଃ ବ୍ୟବହୃତ ହୁଏ, ସେଗୁଡ଼ିକ ହେଉଛି 'ଐତିହାସିକ', 'ବାସ୍ତବ', 'ଭୌତିକ', 'ମନସ୍ତାତ୍ତ୍ୱିକ', 'କାଳ୍ପନିକ', ସ୍ୱପ୍ନମୂଳକ' ଇତ୍ୟାଦି । 'ନାଟ୍ୟ ପର୍ଯ୍ୟାୟ'ପରି କେତେକ ପର୍ଯ୍ୟାୟ କ୍ଷେତ୍ରରେ ବିଶିଷ୍ଟ ଧରଣର ଗୌଣ ସମସ୍ୟା ଉଠିଥାଏ

କାଠରେ ମୁଖାବରଣ କରଥିଲେ') ଏକ ଘଟଣା ବ୍ୟକ୍ତ କରୁଛି ।" ପକ୍ଷାନ୍ତରେ ଆମେ କହୁଁ, "ଏହା ଏକ ଘଟଣା ଯେ (ପ୍ରତୀକଟିର ଉଦ୍ଧାର କରଦେଉଁ) । ଅଧିକ ସାଧାରଣ କହିବା ପଦ୍ଧତି ହେଉଛି, "(ପ୍ରତୀକଟି-ଅର୍ଥାତ୍ ୧ମ ଗ୍ୱାଲ୍ସ୍ ଇତ୍ୟାଦି) ସତ୍ୟ ଅଟେ ।" ଏହି ବିଭିନ୍ନ ଭଙ୍ଗୀର ବଚନର ନିର୍ଦ୍ଦେଶ୍ୟ ସମାନ । ଏହି ନିର୍ଦ୍ଦେଶ୍ୟକୁ ଅଧିକ ଯଥାଯଥ ଭାବେ ନିମ୍ନୋକ୍ତ ଜଟିଳ ପ୍ରତୀକଦ୍ୱାରା ନିର୍ଦ୍ଦେଶ କରାଯାଏ—"ନିର୍ଦ୍ଦେଶ୍ୟଟି ଯେଉଁ ପର୍ଯ୍ୟାୟର (ପ୍ରସଙ୍ଗକ୍ରମେ ଅଥବା ପ୍ରକାଶ୍ୟଭାବେ) ଅନ୍ତର୍ଭୁକ୍ତ ବୋଲି ନିର୍ଦ୍ଦେଶ କରା-ଯାଇଛି, ତାହା ସେହି ପର୍ଯ୍ୟାୟଭୁକ୍ତ ଅଟେ ।"

ପକ୍ଷାନ୍ତରେ, ଆମେ ଅନ୍ୱେଷଣ କରିବାକୁ ଅଗ୍ରସର ହୋଇଥିବା ପର୍ଯ୍ୟାୟର ଅନ୍ତର୍ଭୁକ୍ତ ନହୋଇ ଯେତେବେଳେ ନିର୍ଦ୍ଦେଶ୍ୟଟି ଅନ୍ୟ କୌଣସି ପର୍ଯ୍ୟାୟର ଅନ୍ତର୍ଭୁକ୍ତ ହୋଇଥାଏ, ସେତେବେଳେ, ବିଷୟ ପର୍ଯ୍ୟାୟ ସମ୍ବନ୍ଧୀୟ ଆମ ଜ୍ଞାନ ପର୍ଯ୍ୟାପ୍ତ ହୋଇ-ଥିଲେ, ଆମେ ନିମ୍ନୋକ୍ତ ଉକ୍ତିମାନ ଦେଇଥାଉଁ—

(୧) ୧ମ ଗ୍ୱାଲ୍ସ୍ ତାଙ୍କ ଶଯ୍ୟାରେ ମୁଖାବରଣ କରଥିଲେ—ଉକ୍ତିଟି ଘଟଣାର ବିପରୀତ ।

(୨) (ପ୍ରତୀକଟି, ଅର୍ଥାତ୍ ୧ମ ଗ୍ୱାଲ୍ସ୍ ଇତ୍ୟାଦି) ଗୋଟିଏ ଘଟଣାକୁ ବ୍ୟକ୍ତ କରୁନାହିଁ ।

(୩) (ପ୍ରତୀକଟି) ଯାହା ବ୍ୟକ୍ତ କରୁଛି, ତାହା ଘଟଣା ନୁହେଁ ।

(୪) ଏହା ଏକ ଘଟଣା ନୁହେଁ ଯେ (ପ୍ରତୀକଟି)

(୫) (ପ୍ରତୀକଟିର ଯଥାସ୍ଥାନରେ ଏକ 'ନ'ର ପ୍ରବେଶ କରାଇ) ହେଉଛି ଏକ ଘଟଣା ।

ଦେଖାଯିବ ଯେ ଏହି ସମସ୍ତ ବିଭିନ୍ନ ଭଙ୍ଗୀର ବଚନର ନିର୍ଦ୍ଦେଶ୍ୟ ସମାନ । ଭାଷାଗତ ସୁବିଧା ନିମନ୍ତେ ସଙ୍କେତଗୁଡ଼ିକର କି ପ୍ରକାର ପରିବର୍ତ୍ତନ ହୋଇଥାଏ, ତାହାର ଏକ ଦୃଷ୍ଟାନ୍ତ ଉପର୍ଯ୍ୟୁକ୍ତ ଉକ୍ତିମାନ ଯୋଗାଇ ଦେଉଛି । କିନ୍ତୁ ଏହି ପରିବର୍ତ୍ତନର ପରିଣତି ତାର୍କିକମାନଙ୍କ ପକ୍ଷରେ କ୍ଲେଶଦାୟକ ହିଁ ହୋଇଥାଏ । ୧ମ ଉକ୍ତିଟି ସର୍ବାଧିକ ଅପୂର୍ବ ଧରଣର ଏକ ଅଭିବ୍ୟକ୍ତି । ଏହା ହେଉଛି ଏକ ସମ୍ପ୍ରସାରଣର ସଂକ୍ଷିପ୍ତୀକୃତ ଆକାର; ଶ୍ରୀ ଜେମସ୍‌ଙ୍କ ମତବାଦ ଦିଗରେ ଏହା ସମ୍ପ୍ରସାରିତ । କିନ୍ତୁ ୫ମ ଉକ୍ତିଟି ଏପରି ଏକ ପରିବର୍ତ୍ତନ ଯାହା ତାଙ୍କର ବିରୋଧୀଙ୍କ ମତ ସପକ୍ଷରେ ଯିବ ।

"ଘଟଣା ଅଟେ" ବଦଳରେ "ସତ୍ୟ ଅଟେ" ଅଥବା "ହେଉଛି ଏକ ସତ୍ୟତା" ପ୍ରତିସ୍ଥାପନ କରିହେବ ପାରେ । ସେହିପରି "ଘଟଣା ନୁହେଁ" ବଦଳରେ ଆମେ "ମିଥ୍ୟା ଅଟେ" ଅଥବା "ସତ୍ୟ ନୁହେଁ", ପ୍ରତିସ୍ଥାପନ କରିପାରୁ । ଆମର ଗଦ୍ୟ ସାହିତ୍ୟରେ ଗୋଟିଏ କଥାକୁ ଭିନ୍ନ ଭିନ୍ନ ଢଙ୍ଗରେ କହିବାରୁ ନିଷ୍କୃତି ପାଇବାକୁ କେତେ ପ୍ରକାର ବିକଳ୍ପ ବଚନଭଙ୍ଗୀ ଆମ ହାତରେ ରହିଛି, ତାହା ଟେନୋର୍ନ ସ୍ୱାନୁରକ୍ତ ଅଷ୍ଟାବଙ୍କାନନ୍ଦ୍ ଙ୍କ ଦ୍ୱାରା ନିର୍ଦ୍ଧାରିତ କରିହେଇ ପାରିବ । ଉପର୍ଯ୍ୟୁକ୍ତ ଉକ୍ତିଗୁଡ଼ିକ ଦ୍ୱାରା ନିର୍ଦ୍ଦେଶିତ ନିର୍ଦ୍ଦେଶ୍ୟଯୁକ୍ତ ଏକ ଅଧିକ ସଂଖ୍ୟାପଦଯୁକ୍ତ ଜଟିଳ ହେଉଛି ନିମ୍ନ ପ୍ରକାର—

(ପ୍ରତୀକ)ର ନିର୍ଦ୍ଦେଶ୍ୟ ଯେଉଁ ପର୍ଯ୍ୟାପ୍ତର (ପ୍ରସଙ୍ଗକ୍ରମେ ଅଥବା ପ୍ରକାଶ୍ୟଭାବେ) ଅନ୍ତର୍ଭୁକ୍ତ ବୋଲି ନିର୍ଦ୍ଦେଶ କରାଯାଇଛି, ତାହା ସେହି ପର୍ଯ୍ୟାପ୍ତଠାରୁ ଭିନ୍ନ ଆଉ ଏକ ପର୍ଯ୍ୟାପ୍ତର ଅନ୍ତର୍ଭୁକ୍ତ ଅଟେ ।

'ନିର୍ଦ୍ଦେଶ୍ୟ' ଓ 'ପର୍ଯ୍ୟାପ୍ତ'—ଏହି ଦୁଇଟି ପ୍ରତୀକାତ୍ମକ ଉପକରଣକୁ ପରିହାର କରି ଆହୁରି ଯଥାର୍ଥଭାବେ କହିଲେ, ଏହା ନିମ୍ନୋକ୍ତ ପ୍ରକାର ହେବ—

(ପ୍ରତୀକ)କୁ ବ୍ୟବହାର କରୁଥିବା ନିର୍ଦ୍ଦେଶର ଯେଉଁ ଆଂଶିକ ନିର୍ଦ୍ଦେଶମାନ ରହିଛି, ସେଗୁଡ଼ିକ ସମ୍ମିଳିତଭାବେ କୌଣସି ଘଟଣାର ନିର୍ଦ୍ଦେଶ ଗଠନ କରୁନାହିଁ ।

ଏଥିରୁ ଜଣାପଡୁଛି ଯେ ଘଟଣା ହେଉଛି ଏପରି ଏକ ନିର୍ଦ୍ଦେଶ୍ୟ, ଯାହା ତାହାର ନିର୍ଦ୍ଧାରିତ ପର୍ଯ୍ୟାପ୍ତର ଅନ୍ତର୍ଭୁକ୍ତ ଅଟେ । 'ଘଟଣା'ର ଏହି ସଂଜ୍ଞା ଦ୍ୱାରା ଆମର ଆଲୋଚ୍ୟ ସମସ୍ୟା ଅର୍ଥାତ୍ 'ନେତିମୂଳକ ଘଟଣା ସମସ୍ୟା' ସମାହିତ ହୋଇଯାଉଛି । ଅନ୍ୟ କୌଣସି ସଂଜ୍ଞା ଏହାର ସମାଧାନ କରି ନପାରେ । ଜଟିଳ ପ୍ରତୀକ (୧), ଅର୍ଥାତ୍ "୧ମ ଚାର୍ଲ୍‌ସ୍ ଫାଶିକାଠରେ ମୃତ୍ୟୁ ବରଣ କରିନଥିଲେ"ର ନିର୍ଦ୍ଦେଶ୍ୟ କେତେକ ଅଂଶରେ ଜଟିଳ ପ୍ରତୀକ (୨), ଅର୍ଥାତ୍ "୧ମ ଚାର୍ଲ୍‌ସ୍ ଫାଶିକାଠରେ ମୃତ୍ୟୁ ବରଣ କରିଥିଲେ"ର ନିର୍ଦ୍ଦେଶ୍ୟ ସହିତ ସମାନ; କିନ୍ତୁ ଏ ଦୁଇଟିର ନିର୍ଦ୍ଧାରିତ ପର୍ଯ୍ୟାପ୍ତ ଭିନ୍ନ ଭିନ୍ନ । ଅଧିକ ସ୍ପଷ୍ଟଭାବେ ବ୍ୟକ୍ତ କଲେ, (୧)ର ସମ୍ପ୍ରସାରିତ ଆକାର ହେଉଛି— "୧ମ ଚାର୍ଲ୍‌ସ୍ ଫାଶିକାଠରେ ମୃତ୍ୟୁବରଣ କରିଥିଲେ'—ପ୍ରତୀକର ନିର୍ଦ୍ଦେଶ୍ୟ ଐତିହାସିକ ଘଟଣା ପର୍ଯ୍ୟାପ୍ତଠାରୁ ଭିନ୍ନ ଆଉ ଏକ ପର୍ଯ୍ୟାପ୍ତର ଅନ୍ତର୍ଭୁକ୍ତ ଅଟେ ।"; (୨)ର ସମ୍ପ୍ରସାରିତ ଆକାର ହେଉଛି : "୧ମ ଚାର୍ଲ୍‌ସ୍ ଫାଶିକାଠରେ ମୃତ୍ୟୁ ବରଣ କରିଥିଲେ" ପ୍ରତୀକର ନିର୍ଦ୍ଦେଶ୍ୟ ଐତିହାସିକ ଘଟଣା ପର୍ଯ୍ୟାପ୍ତର ଅନ୍ତର୍ଭୁକ୍ତ ଅଟେ ।" ଐତିହାସିକମାନେ ଦେଖାନ୍ତି ଯେ "୧ମ ଚାର୍ଲ୍‌ସ୍ ଫାଶିକାଠରେ ମୃତ୍ୟୁ ବରଣ କରିଥିଲେ"ର ନିର୍ଦ୍ଦେଶ୍ୟ

ଐତିହାସିକ ପର୍ଯ୍ୟାୟଭୁକ୍ତ ହୋଇ ରହିଛି । ତେଣୁ ଆମେ କହିପାରୁ ଯେ (୧) ମିଥ୍ୟା ଅଟେ ଏବଂ (୨) ସତ୍ୟ ଅଟେ । କିନ୍ତୁ ଏହିପରିଭାବେ କହିବା ଦ୍ୱାରା ଆମେ କେବଳ ବିକଳ୍ପ ବଚନ ଭଙ୍ଗୀର ବ୍ୟବହାର କରୁଥାଉ ।

ଏ ଦୁଇଟିର ବିପରୀତ ଉକ୍ତି, ଅର୍ଥାତ୍ (୧) "ମେ ଗ୍ରେଟ୍‌ସ ତାଙ୍କ ଶଯ୍ୟାରେ ମୃତ୍ୟୁବରଣ କରି ନଥିଲେ" ଏବଂ (୨) "ମେ ଗ୍ରେଟ୍‌ସ ତାଙ୍କ ଶଯ୍ୟାରେ ମୃତ୍ୟୁବରଣ କରିଥିଲେ" କ୍ଷେତ୍ରରେ ମଧ୍ୟ ଅନୁରୂପ ଭାବେ ବିଗ୍ରହ କରାଯାଏ । (୧)ର ସଂପ୍ରସାରିତ ରୂପ ହେଉଛି— "ମେ ଗ୍ରେଟ୍‌ସ ତାଙ୍କ ଶଯ୍ୟାରେ ମୃତ୍ୟୁବରଣ କରିଥିଲେ"ର ନିର୍ଦ୍ଦେଶ୍ୟ ଐତିହାସିକ ଘଟଣା ପର୍ଯ୍ୟାୟଠାରୁ ଭିନ୍ନ ଆଉ ଏକ ପର୍ଯ୍ୟାୟର ଅନ୍ତର୍ଭୁକ୍ତ ଅଟେ ।" ସେହିପରି (୨)ର ସଂପ୍ରସାରିତ ରୂପ ହେଉଛି : "ମେ ଗ୍ରେଟ୍‌ସ ତାଙ୍କ ଶଯ୍ୟାରେ ମୃତ୍ୟୁବରଣ କରିଥିଲେ'ର ନିର୍ଦ୍ଦେଶ୍ୟ ଐତିହାସିକ ଘଟଣା ପର୍ଯ୍ୟାୟର ଅନ୍ତର୍ଭୁକ୍ତ ଅଟେ ।" ଐତିହାସିକମାନେ ଦେଖନ୍ତି ଯେ (୨) ର ନିର୍ଦ୍ଦେଶ୍ୟ ଦ୍ୱାରା ଯେଉଁ 'ସ୍ଥାନ' ପୂରଣ ହୋଇଥାନ୍ତା, ତାହା ଅନ୍ୟ କୌଣସି ନିର୍ଦ୍ଦେଶ୍ୟ ଦ୍ୱାରା ଅଧିକୃତ ହୋଇଛି । ତେଣୁ ଆମେ କହିପାରୁ ଯେ (୧) ସତ୍ୟ ଅଟେ ଏବଂ (୨) ମିଥ୍ୟା ଅଟେ । ପ୍ରକାରାନ୍ତରେ ଆମେ କହିପାରୁ ଯେ (୧) ଏକ ଘଟଣାକୁ ନିର୍ଦ୍ଦେଶ କରୁଛି ଏବଂ (୨) ସେହିପରି ଭାବେ ନିର୍ଦ୍ଦେଶ କରୁନାହିଁ; କିମ୍ବା ଯାହା ଘଟଣା ନୁହେଁ ତାହାକୁ ହିଁ (୨) ନିର୍ଦ୍ଦେଶ କରୁଛି କିମ୍ବା (୨) ଏକ ନେତିମୂଳକ ଘଟଣାକୁ ନିର୍ଦ୍ଦେଶ କରୁଛି । କିନ୍ତୁ ଏହିପରି ଭାବେ କହିବା ଦ୍ୱାରା ଆମେ କେବଳ ବିକଳ୍ପ ଉକ୍ତିମାନ ଦେଇଥାଉଁ । ଭାଷାଗତ ସୁବିଧା ନିମନ୍ତେ ହିଁ ଏହି ସଂକ୍ଷିପ୍ତ ଉକ୍ତିମାନଙ୍କ ଅଭିବୃଦ୍ଧି ଘଟିଛି ।

ଦଉଡ଼ି ଖଣ୍ଡିକରେ ଗଣ୍ଠିଟିଏ ଥାଉ କି ନଥାଉ, ତାହା ଦ୍ୱାରା ଗୋଟିଏ ପୁଡ଼ିଆ ବାନ୍ଧି ଦେଇ ହେବ । ଯେଉଁ ପୁଡ଼ିଆଗୁଡ଼ିକ ଗଣ୍ଠି ରହିଥିବା ଦଉଡ଼ିରେ ବନ୍ଧା ଯାଇ ଥାଏ, ସେଗୁଡ଼ିକର ଅଧିକ କିଛି ବିଶେଷତ୍ୱ ନଥାଏ, ସେଗୁଡ଼ିକ 'ଗଣ୍ଠି-ଗର୍ଭ ପୁଡ଼ିଆ' ନୁହେଁ କି 'ଗଣ୍ଠିଳ ପୁଡ଼ିଆ' ନୁହେଁ । ସେଗୁଡ଼ିକ କେବଳ ସାଦାସିଧା ପୁଡ଼ିଆ । ସେହିପରି ନେତି-ମୂଳକ ଉପାଦାନଯୁକ୍ତ ପ୍ରତିଜ୍ଞପ୍ତି ଏବଂ ଏ ପ୍ରକାର ଉପାଦାନ ରହିତ ପ୍ରତିଜ୍ଞପ୍ତି ମଧ୍ୟରେ ପ୍ରତିଜ୍ଞପ୍ତି ହିସାବରେ ପାର୍ଥକ୍ୟ ରହିଥିଲେ ସୁଦ୍ଧା ଏହି ପାର୍ଥକ୍ୟର ତାତ୍ପର୍ଯ୍ୟ ନୁହେଁ ଯେ ନିର୍ଦ୍ଦେଶିତ ବସ୍ତୁମାନଙ୍କରେ ମଧ୍ୟ ସମାନ୍ତରାଳ ପାର୍ଥକ୍ୟ ରହିଛି କିମ୍ବା ଏକ ବିଶିଷ୍ଟ ଶ୍ରେଣୀର ନେତିମୂଳକ ଘଟଣା ରହିଛି । ଏ ବିଷୟଟି ଏବେ ସୁପ୍ରତ୍ୟକ୍ଷ ହୋଇଯାଇଛି । ଆହୁରି ମଧ୍ୟ, ଯେତେବେଳେ ଏକ ନେତିମୂଳକ ଉପାଦାନ ପ୍ରତୀକମାନଙ୍କ ମଧ୍ୟରେ ସମ୍ବନ୍ଧର ସୂଚନା ଦେବାକୁ ହିଁ କେବଳ ବ୍ୟବହୃତ ହୋଇଥାଏ, ସେତେବେଳେ

ଉପର୍ଯ୍ୟୁକ୍ତ ତଥ୍ୟଟି ସମ୍ପର୍କରେ ନିଶ୍ଚିତରୂପେ ସତ୍ୟ । ଏହା ହେଉଛି ପେଆନୋଙ୍କ ଚତୁର୍ଥ ସ୍ୱୀକାର୍ଯ୍ୟ, ଅର୍ଥାତ୍ "ଶୂନ କୌଣସି ସଂଖ୍ୟାର ପରବର୍ତ୍ତୀ ସଂଖ୍ୟା ନୁହେଁ" ତୁଲ୍ୟ । ଯେଉଁ କ୍ଷେତ୍ରରେ ଆମେ ଅନ୍ୟକୌଣସି ଭାଷାଗତ ଉପକରଣ-ମାଧ୍ୟମରେ ବସ୍ତୁକୁ ନିର୍ଦ୍ଦେଶିତ କରି-ବାକୁ ଅସମର୍ଥ ହେଉ, ସେଠାରେ ଆମେ ନେତିମୂଳକ ଉପାଦାନର ବ୍ୟବହାର କରୁ । ଯେତେବେଳେ ଗୋଟିଏ ଘଟଣା ସଦର୍ଥକ କି ନେତିମୂଳକ—ଏ ବିଷୟରେ, କିମ୍ବା 'ନେତିମୂଳକ ଘଟଣା' ରହୁଛି କି ନା—ଏ ବିଷୟରେ ଆମେ ବାଦାନୁବାଦରେ ପ୍ରବୃତ୍ତ, ସେତେବେଳେ ଆମେ କେବଳ ବିକଳ୍ପ ଗଦ୍ୟଶୈଳୀର ହିଁ ସମାଲୋଚନାରେ ନିୟୋଜିତ ।

ଉପର୍ଯ୍ୟୁକ୍ତ ବିଷୟଗୁଡ଼ିକୁ ଉପେକ୍ଷା କରି ଯିବାର ପରିଚ୍ଛେଦରୁ ଯେଉଁ ଶିକ୍ଷା ମିଳୁଛି, ତାହାକୁ ଏମିବା (ଏକକୋଷୀ ଜୀବ) ବିଷୟକ ଏକ କ୍ଷୁଦ୍ର କାଳ୍ପନିକ ଗଳ୍ପ ମାଧ୍ୟମରେ ସୂଚାଇ ଦେବା ବୋଧହୁଏ ସର୍ବୋତ୍ତମ ହେବ ।

ସଙ୍କଳ୍ପ କହିଲା, "ପ୍ରିୟେ ଏମିବା, ଅବଗତ ହୁଅ", ଏବଂ ଏମିବା ନିଜକୁ ଅବଗତ କଲା । ଏତଦ୍ୱାରା କୌଣସି କ୍ଷୁଦ୍ର ପରିବର୍ତ୍ତନ ହେଲା ନାହିଁ, କିନ୍ତୁ ଯେଉଁ ସ୍ଥାନରେ ବନ୍ୟ ସମସ୍ତ ନିରବଚ୍ଛିନ୍ନ ଭାବେ ବୃଦ୍ଧି କରିବାରେ ଲାଗିଥାଏ, ସେହି ସ୍ଥାନରେ ବହୁ ବ୍ୟାଘାତର ସୃଷ୍ଟି ହେଲା । ପରବର୍ତ୍ତୀ କାଳରେ ମନୁଷ୍ୟ ଦେଖାଦେଲା । କିପରି ତାହା ସେ ଜାଣେ ନା । ମନୁଷ୍ୟ ପରିବର୍ତ୍ତନକୁ ପ୍ରଗତି ବୋଲି ଆଖ୍ୟା ଦେଲା ଏବଂ କିପରିକୁ ଈଶ୍ୱର ବୋଲି ଆଖ୍ୟା ଦେଲା ।......ଏହାର କାରଣ ହେଉଛି ଯେ ବଚନ ସର୍ବଦା ଏକ ସାନ୍ତ୍ୱନାଦାତା ହୋଇ ରହିଥିଲା । ଯେତେବେଳେ ମନୁଷ୍ୟ ବଚନର ଅଂଶମାନଙ୍କ [ପଦମାନଙ୍କ] ଅଧ୍ୟୟନ କରି ବସିଲା, ସେତେବେଳେ ସେ ନିଜ ପାଇଁ ଶବ୍ଦଗୁଡ଼ିକର ଏକ ସାରଣି ତିଆରି କଲା । ତାପରେ ସେ ଆପଣା କଥା ନିଜେ ଶୁଣିଲା; ମସ୍ତକ ଅବନତ କରି ସେ ସୃଷ୍ଟି କଲା ଅପକର୍ଷଣମାନ । ପୁଣି ସେମାନଙ୍କୁ ସେ ବସ୍ତୁର ରୂପ ଦେଲା ଓ ସେମାନଙ୍କ ଗୁଣ କୀର୍ତ୍ତନ କରିବାକୁ ଲାଗିଲା । ଏହିପରି ଭାବେ ପୃଥିବୀରେ ଧର୍ମାନୁଷ୍ଠାନ, ରାଷ୍ଟ୍ର ଓ ବିବାଦର ଉତ୍ପତ୍ତି ହେଲା; କାରଣ ବସ୍ତୁକୃତ ଓ ପ୍ରଶଂସା ଆରୋପିତ ଅପକର୍ଷଣମାନଙ୍କ ପାଇଁ ନିଜ ଜୀବନ ଉତ୍ସର୍ଗ କରିବାକୁ ମନୁଷ୍ୟ ମନୁଷ୍ୟକୁ ପ୍ରାୟଶଃ ପ୍ରବର୍ତ୍ତାଇବାକୁ ଲାଗିଲା । ଉତ୍ତର ପୁରୁଷମାନେ ମଧ୍ୟ ନିଜ ପୂର୍ବ ପୁରୁଷମାନଙ୍କ ତୁଲ୍ୟ କାର୍ଯ୍ୟ କରିବାକୁ ଶିକ୍ଷା ଦିଆଯାଇ ଥିଲା । ପରିଶେଷରେ, ମନୁଷ୍ୟ ନିଜର ଶବ୍ଦଗୁଡ଼ିକୁ ଖାଇବା ଆରମ୍ଭ କଲା ।

ଯାହାହେଉ, ବହୁକାଳପରେ, ବିଶ୍ୱର ବୃଦ୍ଧିର ଆବିର୍ଭାବ ହେଲା । ବିଶ୍ୱର ବୃଦ୍ଧି ମନୁଷ୍ୟକୁ ପଚାରିଲା, "କେଉଁ କାରଣରୁ ତୁମେ ଏପରି କରିଛ ?" ମନୁଷ୍ୟ ଉତ୍ତର ଦେଲା, "ବଚନେ ମୋର ପ୍ରକୃତ ଉଦ୍‌ଘାଟନ କରିଛି ।"

ବସ୍ତୁର ବୁଦ୍ଧି ତାହାକୁ କହିଲା, "ଏବେ ତୁମେ ଯାଅ, ଏବଂ ପ୍ରକୃତ ସତ୍ୟର ଅନ୍ୱେଷଣ କର । ସେ ପ୍ରଦର୍ଶନ କରିବ ଯେ ମହୁମାଛି ମୁଣ୍ଡ ଭିତରେ ଗୁଣ୍ଗୁଣ୍ କରେ-ନାହିଁ, ତାହା ଗୁଣ୍ଗୁଣ୍ କରେ ଟୋପି ଉପରେ ।"

କିନ୍ତୁ ମନୁଷ୍ୟ ବସ୍ତୁର ବୁଦ୍ଧିର କଥା ଶୁଣିଲା ନାହିଁ । ତାହାର ପାପର ମାତ୍ରା ଆହୁରି ବଢ଼ିଗଲା, କାରଣ ସେ ଥିଲା ଅହଂକାରୀ ଗର୍ବୀ ଓ ଏକଜିଦିଆ । ଦାର୍ଶନିକ ଓ ଅର୍ଥନୀତିଜ୍ଞ ରୂପେ ସେ କହିଲା—"ଏହି ବିଷୟ ପ୍ରତି ଆମ ସଯତ୍ନ ଚିନ୍ତା ପ୍ରୟୋଗ କରିବାକୁ ଆମେ ପ୍ରବୃତ୍ତ ହେବୁଁ ।" ପୁଣି ଏକ ମୂଢ଼ ଫେରିଅଲା ଯୋଦ୍ଧାରୂପେ ସେ ପଚାରିଲା, "ଆଇ, ମହାସମର ସମୟରେ ତୁମେ କଣ କହିଥିଲ କି ?" କିନ୍ତୁ ଏକ ସାଧାରଣ ବ୍ୟକ୍ତିରୂପେ ସେ ଦ୍ୱ୍ୟର୍ଥକତାମୂଳକ ଶବ୍ଦସମ୍ଭାରକୁ ନେଇ ପୂର୍ଣ୍ଣପ୍ରାଣରେ ତହିଁରେ ନିମଜ୍ଜିତ ରହିବାରୁ ବିରତ ହେଲାନାହିଁ । ଇତ୍ୟବସରରେ ମନୁଷ୍ୟ ରଚିତ ଫାଶ କ୍ରମେ କ୍ରମେ ସଙ୍କୁଚିତ ହେଉଥିଲା ଏବଂ ତାହାର ସ୍ୱର ଅସ୍ପଷ୍ଟ ହୋଇ ଆସୁଥିଲା ।

ତାପରେ, ମନୁଷ୍ୟ ଉପରେ ବସ୍ତୁର ବୁଦ୍ଧିର ଦୟା ଜାତ ହେଲା । ସେ ପୁଣି ଥରେ ମନୁଷ୍ୟକୁ କୋମଳଭାବେ କହିଲା, "ମନୁଷ୍ୟ, ଏବେ ଯାଅ, ସୁରୁଚିସଙ୍ଗତ ବ୍ୟବହାର କର । ତୁମେ ଯେଉଁ ଶବ୍ଦଫାଶ ରଚନା କରିଥିଲ, ତାହାକୁ ଦୂରକୁ ଫିଙ୍ଗିଦିଅ, ଯେପରି ତାହା ଗଳାଚିପି ତୁମକୁ ମାରି ନ ପକାଏ । ଦେଖ, ପ୍ରକୃତ ସତ୍ୟ ସମସ୍ତ ବିଷୟ ଉପରେ ଆଲୋକପାତ କରି ସ୍ପଷ୍ଟ କରିଦେଉଛି । ବୈଜ୍ଞାନିକ ନିୟମମାନ କଣ କି ? ସେଗୁଡ଼ିକ ତୁମ ନିଜର ସପ୍ରତ୍ୟୟମୂଳକ ସଂକ୍ଷିପ୍ତୀକରଣ ନୁହେଁ କି?"

ମନୁଷ୍ୟ ଲଜ୍ଜିତ ହେଲା ।

ବସ୍ତୁର ବୁଦ୍ଧି ପୁଣି ପଚାରିଲା, "ସଂଖ୍ୟା କଣ ? ଏହା ଶ୍ରେଣୀମାନଙ୍କ ଏକ ଶ୍ରେଣୀ ନୁହେଁ କି ? ପୁଣି ସେହି ଶ୍ରେଣୀଗୁଡ଼ିକ ମଧ୍ୟ ତୁମ ନିଜର ସୁବିଧାଜନକ ମନଗଢ଼ା କଥା ନୁହେଁ କି ? Mountain top (ପର୍ବତ ଶିଖର ; top=ଲଟୁ) କଥା ବିଚାର କର । ଏହା ଗୁଣ୍ଗୁଣ୍ ଧ୍ୱନି କରେ ନାହିଁ କି ଘୂର୍ଣ୍ଣନ କରେ ନାହିଁ । ତେଣୁ ଗୁଣ୍ଗୁଣ୍ ଧ୍ୱନି ଶୁଣିବାକୁ କାନ ଡେରିବାରୁ ବିରତ ହୁଅ । ଯେଉଁ ଜାଲ କେବେ ବୁଣାହୋଇ-ନାହିଁ, ତାହାର ଗଣ୍ଠି ଖୋଲିବାକୁ ବ୍ୟସ୍ତ ହୁଅ ନାହିଁ ।"

ମନୁଷ୍ୟ ଉତ୍ତର ଦେଲା, "ତାହା ଠିକ୍ କଥା ।"

ତାପରେ ବସ୍ତୁରବୁଦ୍ଧି ଓ ମନୁଷ୍ୟ ଉଭୟେ ୧୯୨୩—ସ୍ତୋତ୍ର ଗାନକଲେ, "ସର୍ବୋଚ୍ଚ ସ୍ଥାନର ଅଧିକାରୀ ମନୁଷ୍ୟର ଜୟ ହେଉ, କାରଣ ମନୁଷ୍ୟ ହିଁ ଶବ୍ଦାବଳୀର ପ୍ରଭୁ"—ଉଣେଇଶ ଶହ ତେଇଶି ।

ଆମ କାନରେ ଏ ପର୍ଯ୍ୟନ୍ତ ସେହି ସ୍ତୋତ୍ରର ଧ୍ୱନି ପ୍ରତିଧ୍ୱନିତ ହେଉଛି ।

ଏହିପରି ଭାବେ ଏମିବାର ଅବଗତି ଏକ ଭ୍ରାନ୍ତିର ଅବଗତିରୂପେ ପରିସମାପ୍ତି ଲାଭ କଲା ।

ଏକ ପ୍ରାଚୀନ ଆଫ୍ରିକୀୟ ପ୍ରବାଦ ରହିଛି—"ଈଶ୍ୱର ଯେତେବେଳେ ସାହାରା ମରୁଭୂମି ସୃଷ୍ଟି କଲେ, ସେ ହସିଉଠିଲେ ।" କିନ୍ତୁ ମନୁଷ୍ୟ ଧୂଳିର ବ୍ୟବହାରମାନ ଆବିଷ୍କାର କରିବା ସମ୍ଭାବନା ଏବେ ମଧ୍ୟ ରହିଛି ।



## ଏହି ସଂସ୍ଥାଦ୍ୱାରା ପ୍ରକାଶିତ ତର୍କ ଓ ଦର୍ଶନ ଶାସ୍ତ୍ର ସମ୍ବନ୍ଧୀୟ
### ଅନ୍ୟାନ୍ୟ ପାଠ୍ୟ ପୁସ୍ତକ

**ଇଣ୍ଟର ମିଡ଼ିଏଟ୍ :**

| | | | |
|---|---|---|---|
| ୧ | ତର୍କଶାସ୍ତ୍ର ପରିଚୟ ( ୧ମଭାଗ ) | ଡକ୍ଟର ଗଣେଶ୍ୱର ମିଶ୍ର | ଟ ୪.୫୦ |
| ୨ | ତର୍କଶାସ୍ତ୍ର ପରିଚୟ ( ୨ୟଭାଗ ) | ଡକ୍ଟର ସତ୍ୟବାଦୀ ମିଶ୍ର | ଟ ୫.୦୦ |

**ବି. ଏ. :**

| | | | |
|---|---|---|---|
| ୩ | ପାଶ୍ଚାତ୍ୟ ଦର୍ଶନର ସାଂସ୍କୃତିକ ଇତିହାସ | ଅଧ୍ୟାପକ ହୃଦାନନ୍ଦ ରାୟ | ଟ ୧୨.୦୦ |
| ୪ | ଭାରତୀୟ ଦର୍ଶନ | ଅଧ୍ୟାପକ ଗୌରାଙ୍ଗ ଚରଣ ନାୟକ | ଟ ୧୧.୫୦ |